# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**July - 2016**


୭୨ ଭାଗ ୧୨ଶ ସଂଖ୍ୟା ଆଷାଢ଼-ଶ୍ରାବଣ ଜୁଲାଇ - ୨୦୧୬




---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**

ଜୁଲାଇ - ୨୦୧୬

# ସୂଚୀ



ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ





ସ୍ନାନମଣ୍ଡପରେ ଚତୁର୍ଦ୍ଧାମୂର୍ତ୍ତି



**ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।**

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗା
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉଚ୍ଛ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟଶ୍ୱେରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଡ଼ୈ ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଟେଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଳାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ଲେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଛିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର



# ଶ୍ରୀଜଗନ୍ନାଥାଷ୍ଟକ

ଗୋପଅଙ୍ଗନା–ବଦନ–  କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ  କଲାକ ମୋଦେ ମଗନ
ରମା ଶମ୍ଭୁ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)

ବାମକରେ ମୁରଲିକା  ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି  ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)



ଯେହୁ ମହୋଦଧିତୀରେ  ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି  ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା–ପାରାବାର  ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ  ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)



ଯେ ପ୍ରଭୁ କରୁଣାସିନ୍ଧୁ  ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି  ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)



ବିରଞ୍ଚି ଶିରଭୂଷଣ ପଦ୍ମପଳାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଲେଷ ସୁଖେ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)



ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଳେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)




**(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)**

(ସଂସ୍କୃତରେ ଲିଖିତ 'ଜଗନ୍ନାଥାଷ୍ଟକମ୍'କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ 'କଳିଙ୍ଗ ଭାରତୀ'ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୭ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗରେ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)





ଦୂତୀ ଚାନ୍ଦ





ଶ୍ରାବଣୀ ନନ୍ଦ

## ରିଓ ଅଲମ୍ପିକ୍ସ ଯୋଗ୍ୟତା ହାସଲ ନିମନ୍ତେ ଓଡ଼ିଶା ଗର୍ବିତ...

# ଶ୍ରଦ୍ଧାଞ୍ଜଳି



ସୁପ୍ରତିଷ୍ଠିତ ସାହିତ୍ୟିକ ତଥା ଉତ୍କଳ ପ୍ରସଙ୍ଗର ପୂର୍ବତନ ସମ୍ପାଦକ
ସ୍ୱର୍ଗତ ମହାପାତ୍ର ନୀଳମଣି ସାହୁଙ୍କୁ ଉତ୍କଳ ପ୍ରସଙ୍ଗ ପରିବାର ତରଫରୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।



# ସମ୍ପାଦକୀୟ



ଯୁଗଯୁଗ ଧରି ଓଡ଼ିଶା ତଥା ଓଡ଼ିଆମାନଙ୍କର ଆଧାତ୍ମିକ ଓ ସାଂସ୍କୃତିକ ଚେତନାର କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀଜଗନ୍ନାଥ । ସେ ସାମ୍ୟ ଓ ମୈତ୍ରୀର ପ୍ରତୀକ ଏବଂ ମୂଳାଧାର । ସାଂସ୍କୃତିକ ମୂଲ୍ୟବୋଧ ଓ ଧାର୍ମିକ ଭାବନାର ସେ ହେଉଛନ୍ତି ଏକମାତ୍ର ସମନ୍ୱୟକାରୀ ଶକ୍ତି । ଗବେଷକମାନଙ୍କ ମତରେ ଶ୍ରୀଜଗନ୍ନାଥ ସଂସ୍କୃତି ଅଦ୍ୟାବଧି ରହସ୍ୟାବୃତ୍ତ । ଚେତନାର ଗୋଟିଏ କୋଠରି ଉନ୍ମୁକ୍ତ ହେଲେ ଅନ୍ୟ ଏକ କୋଠରିର ସନ୍ଧାନ ମିଳିଥାଏ । କିନ୍ତୁ ବିଭିନ୍ନ ମତବାଦର ଊର୍ଦ୍ଧ୍ୱରେ ସେ ହେଉଛନ୍ତି ସହସ୍ରାଶୀର୍ଷା ପୁରୁଷ, ସହସ୍ରାକ୍ଷ, ସହସ୍ରପାଦ ପୁଣି ଅପାଣିପାଦ । ସେ ସର୍ବଶ୍ରେଷ୍ଠ, ତାଙ୍କର କ୍ଷେତ୍ର ଶ୍ରୀକ୍ଷେତ୍ର । କପିଳ ସଂହିତାରେ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖ ଅଛି:

ସର୍ବେଷାଂ ଚୈବ ଦେବାନାଂ, ରାଜା ଶ୍ରୀପୁରୁଷୋତ୍ତମଃ ।<br>ସର୍ବେଷାଂ ଚୈବ କ୍ଷେତ୍ରାଣାଂ, ରାଜା ଶ୍ରୀପୁରୁଷୋତ୍ତମଃ ।।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଉପଲକ୍ଷ୍ୟ କରି ତାଙ୍କୁ ହିଁ ଉତ୍କଳର ନେତା ସ୍ୱୟଂ ନାରାୟଣ ବୋଲି ଅଭିହିତ କରିଥିଲେ ।

ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ପ୍ରତିବର୍ଷ ଆଷାଢ ମାସ, ଶୁକ୍ଳପକ୍ଷ, ଦ୍ୱିତୀୟା ତିଥିରେ ଭାଇ ଓ ଭଉଣୀଙ୍କୁ ସାଙ୍ଗରେ ନେଇ ରଥାରୂଢ ହୋଇ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାଆନ୍ତି । ଏହା ହେଉଛି ନବଦିନାତ୍ମକ ଯାତ୍ରା । ଗମନାଗମନ ଦିବସ ଦ୍ୱୟକୁ ବାଦ୍‌ଦେଲେ ଶ୍ରୀଜୀଉମାନେ ଗୁଣ୍ଡିଚା ମନ୍ଦିରରେ ୭ଦିନ ପାଇଁ ଅବସ୍ଥାନ କରିଥାଆନ୍ତି । ମହାପ୍ରଭୁଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ରଥଯାତ୍ରା ହେଉଛି ସର୍ବଶ୍ରେଷ୍ଠ ଯାତ୍ରା ।

ରଥରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଦର୍ଶନରେ ଅଶେଷ ପୁଣ୍ୟ ଅର୍ଜନ କରାଯାଏ ବୋଲି ବିଶ୍ୱାସ ରହିଛି । ଶ୍ରୀମନ୍ଦିର ରତ୍ନସିଂହାସନରେ ଠାକୁରମାନଙ୍କୁ ଦର୍ଶନ କରିବାର ବିଧି ସଙ୍ଗେ, ରଥରେ ଥରେ ମାତ୍ର ମହାପ୍ରଭୁଙ୍କର ଦର୍ଶନ କଲେ ମଣିଷ ପୁନର୍ଜନ୍ମରୁ ମୁକ୍ତିଲାଭ କରିବାର ବିଶ୍ୱାସ କାହିଁ କେଉଁ କାଳରୁ ରହିଆସିଛି ।

ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ କି, ବିଗତ ବର୍ଷ ଅନୁଷ୍ଠିତ ନୂତନ ସହସ୍ରାବ୍ଦର ପ୍ରଥମ ନବକଳେବର ରଥଯାତ୍ରା, ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ଓଡିଶା ସରକାରଙ୍କ ନିମନ୍ତେ, ସ୍ୱତନ୍ତ୍ର ଆହ୍ୱାନ ସୃଷ୍ଟି କରିବା ସହ ପରିଚାଳନାଗତ ସୁଯୋଗ ପ୍ରଦାନ କରିଥିଲା । ନବକଳେବରର ସଫଳ ଆୟୋଜନରେ ଓଡିଶା ସରକାର ଯଥାସାଧ୍ୟ ନିଜର ସାମର୍ଥ୍ୟ ପ୍ରୟୋଗ କରିଥିଲେ । ଏକବିଂଶ ଶତାବ୍ଦୀର ଏହି ପ୍ରଥମ ନବକଳେବର ପାରମ୍ପରିକ ଉତ୍ସାହ ଉଦ୍ଦୀପନା ବଜାୟ ରଖିଥିଲା ବେଳେ ଏପରି ଏକ ବିରାଟ ଆୟୋଜନଟିକୁ ସାଫଲ୍ୟ ମଣ୍ଡିତ କରିପାରିଥିଲା ।

ରାଜ୍ୟର ସାମୂହିକ ଉନ୍ନତି କଳ୍ପେ ଓଡିଶା ସରକାର କୃଷକ, ମହିଳା, ଯୁବକଯୁବତୀ ଓ ସମାଜର ପଛୁଆ ବର୍ଗର ବିକାଶ ଉପରେ ଯଥେଷ୍ଟ ଗୁରୁତ୍ୱାରୋପ କରୁଛନ୍ତି । ଭାଷା ଗୋଟିଏ ଜାତିର ପରିଚୟ ହୋଇଥିବା ଦୃଷ୍ଟିରୁ, ଆମ ଭାଷା ଓଡିଆର ଉତ୍ତରୋତ୍ତର ଉନ୍ନତି ଦିଗରେ ରାଜ୍ୟ ସରକାର ନିରନ୍ତର ଉଦ୍ୟମ କରିଆସୁଛନ୍ତି । ଆମ ଓଡିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଲାଭ କରିପାରିଛି । ଆଧୁନିକ ସମୟର ଆବଶ୍ୟକତା ପରିପୂରଣ କରିବା ନିମନ୍ତେ ପ୍ରାଚୀନ ଭାଷା ଓଡିଆ ଅତ୍ୟନ୍ତ ଉପାଦେୟ ସାବ୍ୟସ୍ତ ହୋଇଛି । ରାଜ୍ୟ ସରକାର ଓଡିଆ ଭାଷାର ବିକାଶ ଓ ଓଡିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ବଜାୟ ରଖିବା ଦିଗରେ ପ୍ରତିଶ୍ରୁତିବଦ୍ଧ । ଓଡିଶା ସରକାରୀ ଭାଷା ନିୟମ ପ୍ରଣୟନ ଖୁବ୍ ଜୋର୍‌ସୋର୍‌ରେ ଆଗେଇଚାଲିଛି । ଏହାଦ୍ୱାରା ଓଡିଶାରେ ସମସ୍ତ ସରକାରୀ କାର୍ଯ୍ୟ ଓଡିଆ ଭାଷାରେ ସାଧିତ ହୋଇପାରିବ । ଅନ୍ୟପକ୍ଷରେ, ଜଙ୍ଗଲ ଅଧିକାର ଅଧିନିୟମ ଅନ୍ତର୍ଗତ ଜମି ବନ୍ଦୋବସ୍ତ କ୍ଷେତ୍ରରେ ଓଡିଶା ସମଗ୍ର ଦେଶରେ ଅଗ୍ରଣୀ ଭୂମିକା ନିର୍ବାହ କରିପାରିଛି । ନିଯୁକ୍ତି ସୁଯୋଗ ସୃଷ୍ଟି ଲକ୍ଷ୍ୟରେ, ବିଗତ ଦୁଇ ବର୍ଷ ମଧ୍ୟରେ ରାଜ୍ୟର ୩.୩ ଲକ୍ଷ ଯୁବକଯୁବତୀଙ୍କୁ ଆତ୍ମନିଯୁକ୍ତି କୌଶଳ ପ୍ରଶିକ୍ଷଣ ଦିଆଯାଇପାରିଛି । ଆଗାମୀ ୩ ବର୍ଷ ମଧ୍ୟରେ ରାଜ୍ୟ ସରକାର ୮ ଲକ୍ଷ ଯୁବକଯୁବତୀଙ୍କୁ ନିଯୁକ୍ତି ଲାଭ ଦିଗରେ ସମର୍ଥ କରିବା ନିମନ୍ତେ ସେମାନଙ୍କୁ ପ୍ରଶିକ୍ଷିତ କରିବାର ଯୋଜନା ରଖିଛନ୍ତି । ବିଗତ ୧୦ରୁ ୧୫ ବର୍ଷ ମଧ୍ୟରେ ଆମ ରାଜ୍ୟ ଅନେକ ଇଂଜିନିୟରିଂ ଏବଂ ମେଡିକାଲ୍ ପ୍ରତିଷ୍ଠାନ ଆରମ୍ଭ କରିବା ସହ ପୂର୍ବ ଭାରତର ଏକ ପ୍ରମୁଖ ଶିକ୍ଷାକେନ୍ଦ୍ର ରୂପେ ପ୍ରତିଭାତ ହୋଇଛି । ଏତଦ୍‌ବ୍ୟତୀତ, ଅନେକ ସରକାରୀ ପରିଚାଳିତ ଶିକ୍ଷାନୁଷ୍ଠାନ ଓ ଗବେଷଣା କେନ୍ଦ୍ର ଖୋଲାଯିବାକୁ ଉଦ୍ୟମ ଅବ୍ୟାହତ ଅଛି । ରାଜ୍ୟରେ ବହୁସଂଖ୍ୟକ କର୍ପୋରେଟ୍ ଫାର୍ମ ସେମାନଙ୍କ ପ୍ରତିଷ୍ଠାନ କାର୍ଯ୍ୟକାରୀ କରିଛନ୍ତି ଏବଂ ଆହୁରି ଅନେକ ପ୍ରତିଷ୍ଠାନ ଆଗାମୀ ଦିନରେ ଖୋଲାଯିବାର ଯୋଜନା ରହିଛି । ବିକାଶର ପରିଭାଷା ସ୍ୱରୂପ ଭୁବନେଶ୍ୱର ଦେଶରେ ପ୍ରଥମ ସ୍ମାର୍ଟ ସିଟିର ମାନ୍ୟତା ହାସଲ କରିପାରିଛି ।

ନିଜର ବକ୍ତବ୍ୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ମହୋଦୟ ଯଥାର୍ଥରେ କହିଛନ୍ତି ଯେ, 'ରାଜ୍ୟ ସରକାର ଅନେକ ପ୍ରମୁଖ କାର୍ଯ୍ୟକ୍ରମରେ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଛି । ବର୍ତ୍ତମାନ ପ୍ରତ୍ୟେକ କ୍ଷେତ୍ରର ସମତୁଲ ବିକାଶ ନିମନ୍ତେ ଆମର କାର୍ଯ୍ୟକ୍ରମକୁ ବ୍ୟାପକ କରିବାକୁ ପଡିବ ।' ବାସ୍ତବିକ୍ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାରୁ ଓଡିଶା ରାଜ୍ୟ ନିରନ୍ତର ଅଭିବୃଦ୍ଧି ହାସଲ କରିଚାଲିଛି । ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡିଶା ରାଜ୍ୟ ଗଠନର ୮୦ ବର୍ଷ ପୂର୍ତ୍ତି ନିମନ୍ତେ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ଆୟୋଜନ ହେଉଛି । ସଂଯୋଗବଶତଃ, ଏହି ସମୟରେ ପ୍ରବାଦ ପୁରୁଷ ବିଜୁ ବାବୁଙ୍କ ଜନ୍ମ ଶତବାର୍ଷିକୀ ମଧ୍ୟ ପାଳିତ ହେଉଛି । ପ୍ରତ୍ୟେକ ବର୍ଗର କଲ୍ୟାଣକୁ ଗୁରୁତ୍ୱ ଦେଇ ଓଡିଶା ବର୍ତ୍ତମାନ ବିକାଶ ତଥା ସାମୂହିକ ଅଭିବୃଦ୍ଧି ଦିଗରେ ଏହାର ଯାତ୍ରା ଅବ୍ୟାହତ ରଖିଛି ।

ରଥଯାତ୍ରାର ଏହି ସ୍ୱତନ୍ତ୍ର ବିଶେଷାଙ୍କ ପ୍ରକାଶ କରିବା ଦିଗରେ ମାନ୍ୟବର ମୁଖ୍ୟମନ୍ତ୍ରୀ, ମାନ୍ୟବର ମନ୍ତ୍ରୀ, କମିଶନର ତଥା ଶାସନ ସଚିବ, ନିର୍ଦ୍ଦେଶକ ଏବଂ ସୂଚନା ଓ ଲୋକସଂପର୍କ ବିଭାଗର ସମସ୍ତ କର୍ମଚାରୀଙ୍କ ସାଧୁ ଉଦ୍ୟମ ନିମନ୍ତେ ମୁଁ କୃତଜ୍ଞତା ପ୍ରକାଶ କରୁଛି । ପୁସ୍ତକଟିର ପ୍ରକାଶନ ଦିଗରେ ସହାୟତା କରିଥିବା ଓଡିଶା ସରକାରୀ ମୁଦ୍ରଣାଳୟର ନିର୍ଦ୍ଦେଶକଙ୍କ ସମେତ ସମସ୍ତ କର୍ମଚାରୀଙ୍କୁ ମଧ୍ୟ ଧନ୍ୟବାଦ ଅର୍ପଣ କରୁଛି ।

ଜୟ ଜଗନ୍ନାଥ ।

ସମ୍ପାଦକ



# ମର୍ତ୍ତ୍ୟରେ ଅମର୍ତ୍ତ୍ୟ ଲାବଣ୍ୟ ବିଜେ

ପ୍ରଫେସର ଶରତ ଚନ୍ଦ୍ର ରଥ

ଭାରତବର୍ଷର ଚାରିଧାମ ମଧ୍ୟରେ ପୁରୁଷୋତ୍ତମ ଧାମ ଅନ୍ୟତମ । ପଶ୍ଚିମରେ ଦ୍ୱାରକା, ଉତ୍ତରରେ ବଦ୍ରିନାଥ, ଦକ୍ଷିଣରେ ରାମେଶ୍ୱର ଏବଂ ପୂର୍ବରେ ପୁରୁଷୋତ୍ତମ ଧାମ ଅବସ୍ଥିତ । ଏଇ ଚାରିଧାମ ଭିତରେ ପୁରୁଷୋତ୍ତମ ଧାମର ସ୍ୱତନ୍ତ୍ରତା ରହିଛି । ସ୍ୱତନ୍ତ୍ରତାର କେତେଗୋଟି କାରଣ ରହିଛି । ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ଯେ ପ୍ରଳୟ କାଳରେ କେବଳ ନୀଳଗିରି ବ୍ୟତୀତ ଅନ୍ୟସବୁ ସ୍ଥାନ ଜଳମଗ୍ନ ହୋଇଥିଲା । ତେଣୁ ଏହାକୁ ଅମଗ୍ନ ଭୂମି ବୋଲି କୁହାଯାଏ । ପବିତ୍ରତାର ଶୀର୍ଷ ସ୍ଥାନରେ ଥିବାରୁ ଏହାକୁ ପ୍ରଳୟ ଜଳ ସ୍ପର୍ଶ କରିପାରିନଥିଲା । ପୁନଶ୍ଚ ଏହି କ୍ଷେତ୍ର ହେଉଛି ସ୍ୱୟଂ ପୁରୁଷୋତ୍ତମଙ୍କର ବପୁସ୍ୱରୂପ । ପୁରୁଷୋତ୍ତମ ସ୍ୱଇଚ୍ଛାରେ ଏହିଠାରେ ସୁରାସୁରମାନଙ୍କୁ ଅତିକ୍ରମ କରି ଦେହଧାରଣ କରିଛନ୍ତି । ଏହି ସ୍ଥାନରେ ତେଣୁ ଶାନ୍ତି, ବୈରାଗ୍ୟ ଓ ଜ୍ଞାନର ପ୍ରାବଲ୍ୟ ଅନୁଭବ କରିହୁଏ । ଅଜ୍ଞାନତାର ବିଲୋପ ଏବଂ ଜ୍ଞାନର ବିସ୍ତାର ନିମନ୍ତେ ଏପରି ସ୍ଥାନ ମର୍ତ୍ତ୍ୟରେ ଦୁର୍ଲ୍ଲଭ । ମର୍ତ୍ତ୍ୟରେ ଅମର୍ତ୍ତ୍ୟର ଲାବଣ୍ୟର ଗନ୍ତାଘର ଏହି ନୀଳାଦ୍ରି ଧାମ । ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡ ଦ୍ୱିତୀୟ ଅଧ୍ୟାୟରେ କୁହାଯାଇଛି –

‘ଅହୋ ସୁଦୁର୍ଲ୍ଲଭଂ କ୍ଷେତ୍ରମଜ୍ଞାନାନାଂ ବି ମୋଚକମ୍<br>
କି ପୁନଃ ସତତଂ ଶାନ୍ତି ବୈରାଗ୍ୟ–ଜ୍ଞାନ ସଂଯୁତମ୍ ।’

ଅର୍ଥାତ ସର୍ବଦା ଶାନ୍ତି, ବୈରାଗ୍ୟ ଓ ଜ୍ଞାନଯୁକ୍ତ ଲୋକଙ୍କ ପକ୍ଷେ ଯେପରି, ଅଜ୍ଞାନ ଜୀବକୁଳ ପକ୍ଷେ ମଧ୍ୟ ସେହିପରି ଏହି କ୍ଷେତ୍ର ମୋକ୍ଷ ଦାନ କରିଥାଏ ।

ପୁନଶ୍ଚ କୁହାଯାଏ ଏହି କ୍ଷେତ୍ରରେ ଯମରାଜଙ୍କ କର୍ତ୍ତୃତ୍ୱ ନାହିଁ । ସାଗର ତଟଠାରୁ ଅକ୍ଷୟବଟର ମୂଳ ପର୍ଯ୍ୟନ୍ତ ସ୍ଥାନରେ କୀଟପତଙ୍ଗ ତଥା ମନୁଷ୍ୟ ଯେ କେହି ଦେହ ତ୍ୟାଗ କଲେ ଭଗବାନ ତାକୁ ମୁକ୍ତି ପ୍ରଦାନ କରନ୍ତି । ଏହି ପ୍ରସଙ୍ଗ ସ୍କନ୍ଦ ପୁରାଣରେ ଉଲ୍ଲିଖିତ ହୋଇଛି । ଉତ୍କଳ ଖଣ୍ଡର ଚତୁର୍ଥ ଅଧ୍ୟାୟରେ ଉଲ୍ଲେଖ ଅଛି–

‘ସିନ୍ଧୁ ରାଜସ୍ୟ ସଲିଳାଦ୍ ଯାବନ୍ମୂଳଂ ବଟସ୍ୟ ବୈ<br>
କୀଟ ପକ୍ଷୀ ମନୁଷ୍ୟାଣାଂ ମରଣାଦ୍ ମୁକ୍ତି ଦୋ ମତଃ ।’

ଏହି ମୁକ୍ତିର ନାମ ସାଯୁଜ୍ୟ ମୁକ୍ତି । କୁହାଯାଇଛି ଯେ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଅବସ୍ଥିତ ସାର୍ଦ୍ଧ ତ୍ରିକୋଟି ସଂଖ୍ୟକ ତୀର୍ଥ ମଧ୍ୟରେ ଏକମାତ୍ର ପୁରୁଷୋତ୍ତମ କ୍ଷେତ୍ରରେ ଏହି ମୁକ୍ତି ସମ୍ଭବ ଓ ସୁଲଭ । ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡର ଚତୁର୍ଥ ଅଧ୍ୟାୟରେ ଏହା ଉପସ୍ଥାପିତ ହୋଇଛି ।

‘ତେଷାମୟଂ ତୀର୍ଥରାଜଃ କୀର୍ତ୍ତିତଃ ପୁରୁଷୋତ୍ତମଃ<br>
ସର୍ବେଷାଂ ମୁକ୍ତି କ୍ଷେତ୍ରାଣାଂ ଇଦଂ ସାଯୁଜ୍ୟଦଂମତମ୍ ।’



ପୁନଶ୍ଚ ଏହି କ୍ଷେତ୍ରରେ ସର୍ବ ଦେବତା ବାସ କରନ୍ତି । ପୁରୁଷୋତ୍ତମ ସ୍ୱୟଂ ଅବସ୍ଥାନ କରୁଥିବାରୁ ବ୍ରହ୍ମ ପୁରାଣ ଅନୁସାରେ ଉତ୍କଳ ହେଉଛି ଜଗତରେ ଶ୍ରେଷ୍ଠ । ଏଠାରେ ଗନ୍ଧର୍ବ, ଅପ୍ସରା, ପିତୃ, ଦେବତା, ଚତୁର୍ବେଦ, ବିଭିନ୍ନ ଶାସ୍ତ୍ର, ପ୍ରଜାପତି ସମେତ ସମସ୍ତେ ବିଦ୍ୟମାନ । ଏପରିକି ଯେଉଁ ବ୍ୟକ୍ତିମାନେ ଏହି କ୍ଷେତ୍ରରେ ବାସ କରନ୍ତି, ସେମାନଙ୍କର ଜୀବନ ଧନ୍ୟ ବୋଲି କୁହାଯାଇଛି । ପୂର୍ବ ଜନ୍ମର ପୁଣ୍ୟଫଳରେ ଏହି ତୀର୍ଥରେ ବାସ କରିବାକୁ ସୁଯୋଗ ମିଳିଥାଏ । ବ୍ରହ୍ମ ପୁରାଣର ବୟାଳିଶ ଅଧ୍ୟାୟରେ କୁହାଯାଇଛି –

'ଯେ ବସନ୍ତ୍ୟୁତ୍କଳେ କ୍ଷେତ୍ରେ ପୁଣ୍ୟେ ଶ୍ରୀପୁରୁଷୋତ୍ତମେ
ସଫଳଂ ଜୀବିତଂ ତେଷାଂ ଉତ୍କଳାନାଂ ସୁମେଧସାମ୍ ।'

ପୁନଶ୍ଚ ଅପୌରୁଷେୟ ଦାରୁ ମୂର୍ତ୍ତି ଓ ମହାପ୍ରସାଦର ସ୍ଥିତି ଯୋଗୁଁ ପୁରୁଷୋତ୍ତମ ଧାମର ପ୍ରସିଦ୍ଧି ବହୁଗୁଣିତ ହୋଇଛି । ଦାରୁମୂର୍ତ୍ତି ବେଦାନ୍ତ ସମର୍ଥିତ । ଭଗବାନ ସ୍ୱଇଚ୍ଛାରେ ଏହି ଧାମରେ ପ୍ରକଟିତ ହୋଇଥିବାରୁ ଏହି ଧାମ ଅନ୍ୟ ସମସ୍ତ ଧାମ ଅପେକ୍ଷା ଅଧିକ ପବିତ୍ର ଏବଂ ପରମ ପ୍ରଭୁଙ୍କର ଅଧିକ ପ୍ରିୟ । ଏହି କ୍ଷେତ୍ରରେ ଭଗବାନ କେବଳ ଭୋଜନ କରନ୍ତି, ଅନ୍ୟ କ୍ଷେତ୍ରରେ ନୁହେଁ । ସ୍କନ୍ଦପୁରାଣ କହେ –

'ତତ୍ରୈବ ଭଗବାନ ପଶ୍ୟତ୍ୟନ୍ୟତ୍ର ଚକ୍ଷୁଷା'।

ମହାପ୍ରସାଦରେ ଜାତିବର୍ଣ୍ଣରେ ବିଚାର ନ ଥାଏ । ଏହାକୁ ଅନ୍ନବ୍ରହ୍ମ ଭାବରେ ବିଚାର କରାଯାଏ । ଗଙ୍ଗାନଦୀର ଜଳକୁ ଜଳବ୍ରହ୍ମ, ମହାପ୍ରସାଦକୁ ଅନ୍ନ ବ୍ରହ୍ମ ଏବଂ ବ୍ରଜ ଧୂଳିକୁ ରେଣୁ ବ୍ରହ୍ମ କୁହାଯାଏ । ଗଙ୍ଗାଜଳ ଯେପରି ସବୁ ସଂପ୍ରଦାୟ ପାଇଁ ଆଦରଣୀୟ, ମହାପ୍ରସାଦ ସେପରି ସମସ୍ତ ସଂପ୍ରଦାୟ ପାଇଁ ବରଣୀୟ । ମହାପ୍ରସାଦ ପ୍ରସ୍ତୁତ କରିବା ସମୟରେ ଅତ୍ୟନ୍ତ ଯତ୍ନଶୀଳ ହେବାକୁ ହୋଇଥାଏ । ପାକଶାଳାର ପରିବେଶ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଶାସ୍ତ୍ରର ଉକ୍ତି ଯଥା ଅନ୍ନ ତଥା ମନ କଥାଟି ମନସ୍ତତ୍ତ୍ୱ ବିଦ୍‌ମାନଙ୍କ ଦ୍ୱାରା ସମର୍ଥିତ । ପାକ ସମୟରେ ପରସ୍ପର ମଧ୍ୟରେ କଳି ଝଗଡ଼ା ନ କରିବା, ବିଷାଦଗ୍ରସ୍ତ ନହେବା, ଶୋକ ନ କରିବା ଇତ୍ୟାଦିକୁ ନିର୍ଦ୍ଦେଶ ଦିଆଯାଇଛି । ଖୁସି ମନରେ ପାକକ୍ରିୟା ସଂପାଦନା କରିବାକୁ ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ଉଲ୍ଲେଖ ରହିଛି । ମା'ଙ୍କ ପ୍ରସାଦରୁ ଏହାକୁ ମହାପ୍ରସାଦ ବୋଲି କୁହାଯାଏ । ଶ୍ରୀଜୀଉଙ୍କ ନିକଟରେ ନିବେଦିତ ଅନ୍ନ ପୀଠେଶ୍ୱରୀ ମା' ବିମଳାଙ୍କୁ ସମର୍ପିତ ହେବାପରେ ତାହା ମହାପ୍ରସାଦରେ ପରିଣତ ହୁଏ । ଭୋଗ, ପ୍ରସାଦ, ମହାପ୍ରସାଦ ଓ କୈବଲ୍ୟ ମଧ୍ୟରେ ପ୍ରଭେଦ ରହିଛି । ବିନା ମନ୍ତ୍ରରେ ନୈବେଦ୍ୟକୁ ମୁଖ୍ୟ ଦେବତାଙ୍କ ସମ୍ମୁଖରେ ଦେଖାଇ ଦେଲେ ତାହା ଭୋଗ ହୁଏ । ଦେବତାଙ୍କ ପାଖରେ ଆସନଠାରୁ ନୈବେଦ୍ୟ ପର୍ଯ୍ୟନ୍ତ ମନ୍ତ୍ରପାଠ ପୂର୍ବକ ସମର୍ପିତ ହେଲେ ତାହାକୁ ପ୍ରସାଦ କୁହାଯାଏ । ଯଜ୍ଞାଗ୍ନିରେ ପାକ କରାଯାଇ ଯନ୍ତ୍ର ଉପରେ ରଖାଯାଇ ନୃସିଂହ ମନ୍ତ୍ରରେ ସଂସ୍କାର କରାଯାଇ ମା' ବିମଳାଙ୍କୁ ସମର୍ପଣ କରାଯିବା ପରେ ତାହା ମହାପ୍ରସାଦ ପଦବାଚ୍ୟ ହୋଇଥାଏ । ମହାପ୍ରସାଦ ପରେ ଭୈରବୀ ଚକ୍ରରେ ସମର୍ପିତ ହେଲେ ତାହା କୈବଲ୍ୟରେ ପରିଣତ ହୁଏ ।

ପୁନଶ୍ଚ ଶ୍ରୀଜଗନ୍ନାଥ ହେଉଛନ୍ତି ସାକ୍ଷାତ ପୁରୁଷୋତ୍ତମ । ସେ ହେଉଛନ୍ତି ସତ୍‌–ଚିତ୍‌–ଆନନ୍ଦର ସଂପୂର୍ଣ୍ଣ ସ୍ୱରୂପ । ସେ କୌଣସି ଅବତାର ନୁହନ୍ତି, ସ୍ୱୟଂ ଅବତାରୀ । ତାଙ୍କଠାରୁ ଅବତାରମାନେ ଜାତ ହୁଅନ୍ତି । ତେଣୁ ସେ ଶ୍ରୀକୃଷ୍ଣ, ଶ୍ରୀରାମ ଇତ୍ୟାଦିଙ୍କ ରୂପରେ ବିମଣ୍ଡିତ ହୁଅନ୍ତି ଓ ବେଶରେ ବିଭୂଷିତ ହୁଅନ୍ତି । ମାତ୍ର ଶ୍ରୀକୃଷ୍ଣ ଓ ଶ୍ରୀରାମ କେଉଁଠାରେ ଶ୍ରୀଜଗନ୍ନାଥଙ୍କ ରୂପ ଧାରଣ କରନ୍ତି ନାହିଁ । ଶ୍ରୀଜଗନ୍ନାଥ ସଚ୍ଚିଦାନନ୍ଦଙ୍କର ପ୍ରତୀକ, ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ତେଣୁ ସେ ପ୍ରତିମା ନୁହନ୍ତି ପ୍ରତୀକ ମାତ୍ର । କ୍ଷର ଓ ଅକ୍ଷରର ଊର୍ଦ୍ଧ୍ୱରେ ସ୍ଥିତ ସେ ଏକାଧାରରେ ବିଶ୍ୱାତୀତ, ବିଶ୍ୱଗତ ଓ ବ୍ୟଷ୍ଟିଗତ । ସେ ଏକାଧାରରେ ସଗୁଣ ଓ ନିର୍ଗୁଣ, ସାକାର ଓ ନିରାକାର । କୌଣସି ରାଣୀଙ୍କ ଅଧୀରତା ଯୋଗୁଁ ନୁହେଁ ସେ ନିଜେ ହିଁ ନିଜକୁ ଏପରି ନିର୍ମାଣ କରିଛନ୍ତି । ଅର୍ଥାତ ଏହି ମୂର୍ତ୍ତି ତାଙ୍କର ଆତ୍ମନିର୍ମାଣର କୃତି ଓ କୀର୍ତ୍ତି । ଏଇ ମୂର୍ତ୍ତିର ତତ୍ତ୍ୱ ତନ୍ତ୍ରଯାମଳ, ବାୟୁପୁରାଣ, ଅଗ୍ନିପୁରାଣ, ବ୍ରହ୍ମପୁରାଣ, କୂର୍ମପୁରାଣ,



ଶିବପୁରାଣ, କପିଳସଂହିତା, ଗରୁଡ଼ପୁରାଣ, ବିଷ୍ଣୁପୁରାଣ, ସ୍କନ୍ଦପୁରାଣ, ବ୍ରହ୍ମାଣ୍ଡପୁରାଣ, ଭବିଷ୍ୟପୁରାଣ ସମେତ ବହୁ ଶାସ୍ତ୍ର ଓ ପୁରାଣରେ ଉଲ୍ଲେଖ ରହିଛି ।

ପବିତ୍ର ମର୍ତ୍ତ୍ୟବୈକୁଣ୍ଠ ପୁରୁଷୋତ୍ତମ କ୍ଷେତ୍ରର ମହତ୍ତ୍ୱ ସମ୍ବନ୍ଧରେ ଶିବପୁରାଣରେ କୁହାଯାଇଛି –

ପୁରୁଷୋତ୍ତମାତ୍ ପରଂ କ୍ଷେତ୍ରଂ ନାସ୍ତ୍ୟନ୍ୟତ ଭବମୋଚନମ୍
ତତ୍ର ସାକ୍ଷାତ୍ ପରଂବ୍ରହ୍ମ ଦାରୁବ୍ରହ୍ମ ଶରୀର ଭୃତ୍ ॥

ଅର୍ଥାତ ମୁକ୍ତିଲାଭ କରିବା ନିମନ୍ତେ ପୁରୁଷୋତ୍ତମ କ୍ଷେତ୍ର ଛଡ଼ା ଅନ୍ୟ କ୍ଷେତ୍ର ସଂସାରରେ ନାହିଁ । ଏହି କ୍ଷେତ୍ରରେ ସାକ୍ଷାତ ପରଂବ୍ରହ୍ମ ଦାରୁ ବ୍ରହ୍ମ ରୂପେ ଶରୀର ଧାରଣ କରିଛନ୍ତି ।

ପୁନଶ୍ଚ ନୀଳାଚଳ ଏକାଧାରରେ ଧାମ ଓ କ୍ଷେତ୍ର । ଧାମ ଓ କ୍ଷେତ୍ର ଭିତରେ ସାମାନ୍ୟ ପାର୍ଥକ୍ୟ ରହିଛି । ଅବତାରମାନେ ଯେଉଁଠାରେ ଜନ୍ମଗ୍ରହଣ କରନ୍ତି ତାକୁ କ୍ଷେତ୍ର ବୋଲି କୁହାଯାଏ । ଯେଉଁଠାରେ ଲୀଳା ରଚନା କରିଥାନ୍ତି ତାକୁ ଧାମ କୁହାଯାଏ । ଶ୍ରୀଜଗନ୍ନାଥ ଏହିଠାରେ ଆବିର୍ଭୂତ ହୋଇ ଲୀଳା ରଚନା କରୁଥିବାରୁ ଏହାକୁ ଧାମ ଓ କ୍ଷେତ୍ର ଉଭୟ ଅର୍ଥରେ ବୁଝିବାକୁ ହୁଏ ।

ଅନ୍ୟ ଧାମମାନଙ୍କର ନାମ ପ୍ରତିମାମାନଙ୍କ ନାମରେ ହୋଇଛି । ମାତ୍ର ନୀଳାଚଳଧାମ ପୁରୁଷୋତ୍ତମ ନାମରେ ନାମିତ ହୋଇଛି । ପୁରୁଷୋତ୍ତମଙ୍କର କୌଣସି ନିର୍ଦ୍ଦିଷ୍ଟ ନାମ ନାହିଁ, ତେଣୁ ସେ ଧାମର କୌଣସି ନିର୍ଦ୍ଦିଷ୍ଟ ନାମ ନ ହୋଇ ପୁରୁଷୋତ୍ତମ ଧାମ, ପୁରୁଷୋତ୍ତମ ତୀର୍ଥ ହୋଇଅଛି । ଦେବତାଙ୍କର ନାମ ପୁରୁଷୋତ୍ତମ ପୁଣି ଧାମର ନାମ ପୁରୁଷୋତ୍ତମ । ଏପରି ସଂଯୋଗ ଅନ୍ୟତ୍ର ଦେଖାଯାଏ ନାହିଁ । କବି ସମ୍ରାଟଙ୍କ ଭାଷାରେ–

ଶୁଣ କୋବିଦେ ଭରତଖଣ୍ଡେ ପୁଣ୍ୟଧାମ
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ॥

ପୁରୁଷୋତ୍ତମ ହେଉଛନ୍ତି ସବୁ ଦେବତାମାନଙ୍କ ମଧ୍ୟରେ ରାଜା ବା ସର୍ବଶ୍ରେଷ୍ଠ । ସେହିପରି ପୁରୁଷୋତ୍ତମ କ୍ଷେତ୍ର ହେଉଛି ସମସ୍ତ କ୍ଷେତ୍ରମାନଙ୍କର ରାଜା ଅର୍ଥାତ ସର୍ବଶ୍ରେଷ୍ଠ । କପିଳ ସଂହିତାରେ କୁହାଯାଇଛି –

'ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ॥

ଅର୍ଥାତ ସମସ୍ତ ତୀର୍ଥ ବା କ୍ଷେତ୍ରମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ସର୍ବଶ୍ରେଷ୍ଠ, ସମସ୍ତ ଦେବତାମାନଙ୍କ ମଧ୍ୟରେ ପୁରୁଷୋତ୍ତମ ଜଗନ୍ନାଥ ସର୍ବଶ୍ରେଷ୍ଠ । ସେ ଜଗତର ନାଥ ସ୍ୱୟଂ ଜଗନ୍ନାଥ । ସେ ରାମନାଥ ନୁହନ୍ତି କି ଦ୍ୱାରକାନାଥ ନୁହନ୍ତି । ଜଗତ ଅର୍ଥାତ ଯାହା ଗତିଶୀଳ ଅର୍ଥାତ ଚରାଚର ସବୁକିଛିର ନାଥ । ତାଙ୍କୁ କେବଳ ଭକ୍ତିରେ ଅନୁଭବ କରିହୁଏ । ତାଙ୍କୁ ଜ୍ଞାନରେ ଜାଣିହୁଏ ନାହିଁ । ସୂର୍ଯ୍ୟ ତାଙ୍କୁ ଦେଖାଇ ପାରନ୍ତି ନାହିଁ, ଚନ୍ଦ୍ର ତାଙ୍କୁ ଦେଖାଇ ପାରନ୍ତି ନାହିଁ, ଅଗ୍ନି ମଧ୍ୟ । ଶ୍ରୀମଦ୍ ଭଗବଦ୍ ଗୀତାର ଶ୍ଳୋକାଂଶଟି ଏଥି ନିମନ୍ତେ ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ ।

'ତଦ୍ ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ'

ଅର୍ଥାତ ସେହି ସ୍ୱୟଂ ପ୍ରକାଶଙ୍କୁ ସୂର୍ଯ୍ୟ ପ୍ରକାଶିତ କରିପାରନ୍ତି ନାହିଁ, ଚନ୍ଦ୍ର ବା ଅଗ୍ନି କେହି ପ୍ରକାଶିତ କରିପାରନ୍ତି ନାହିଁ ।

ପୁନଶ୍ଚ ଭ୍ରାତୃଭାବର ପ୍ରତୀକ ହେଉଛି ଶ୍ରୀଜଗନ୍ନାଥ ତତ୍ତ୍ୱ । ରତ୍ନ ସିଂହାସନରେ ଭ୍ରାତା ଓ ଭଗିନୀଙ୍କ ସ୍ଥିତି ଏହି ତତ୍ତ୍ୱର ଉଦ୍‌ଘୋଷକ । ସବୁ ସଂପ୍ରଦାୟଙ୍କୁ ଆପଣାର କରିବାରେ ଏହି ତତ୍ତ୍ୱର ସାର୍ଥକତା ନିହିତ । ସବୁ ଦେବତାଙ୍କୁ ବିଶେଷତଃ ତ୍ରିନାଥଙ୍କର ସମନ୍ୱୟ ରତ୍ନ ସିଂହାସନରେ ଘଟିଅଛି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ତିନି ଦେବତା ସେଠାରେ ରହିଛନ୍ତି । ସାରଳା ଦାସଙ୍କ ଭାଷାରେ –

ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ ହରି ବ୍ରହ୍ମା ।



ଯିଏ ଜଗନ୍ନାଥ ସିଏ ହରି ଅର୍ଥାତ ସିଏ ଶ୍ରୀକୃଷ୍ଣ ସିଏ ଶ୍ରୀରାମ । ସୁଭଦ୍ରା ପରିଣୟ କାବ୍ୟରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କହନ୍ତି –

'ସିନ୍ଧୁରେ ଯେ ସେତୁ କରି ରାବଣ ଛେଦିଲେ
ସେ ଟି କ୍ଷେତ୍ରବରେ ଦାରୁ ରୂପେ ବିଜେ କଲେ ।'

ଭାଦ୍ରବ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ଶ୍ରୀକୃଷ୍ଣ ଜନ୍ମ ଉତ୍ସବ ଶ୍ରୀମନ୍ଦିରରେ ପାଳିତ ହୁଏ । ଏହାପରେ ନନ୍ଦୋତ୍ସବ, କୋଳିବିକା, ବନ ଭୋଜି ବେଶ, ପ୍ରଳମ୍ବାସୁର ବଧ, କାଳୀୟ ଦଳନ ଏକାଦଶୀ ପ୍ରଭୃତିର ପାଳନ କହିଦିଏ ଯେ ଶ୍ରୀଜଗନ୍ନାଥଙ୍କ ଭିତରେ ସ୍ୱୟଂ ଶ୍ରୀକୃଷ୍ଣ ବିଦ୍ୟମାନ । ଦିବାକର ଦାସଙ୍କ ମତରେ–

'ଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦ ବଳା
କଳାକ ଷୋଳ କଳା କରି, ଗୋପେ ବିହରେ ନରହରି ।'

ଶ୍ରୀଜଗନ୍ନାଥ ପୁଣି ଶୈବମାନଙ୍କ ପାଇଁ ଶିବ, ଶାକ୍ତମାନଙ୍କ ପାଇଁ ଦକ୍ଷିଣକାଳିକା, ଗାଣପତ୍ୟମାନଙ୍କ ପାଇଁ ଗଣପତି, ସୌରମାନଙ୍କ ପାଇଁ ସୂର୍ଯ୍ୟ, ବୈଷ୍ଣବମାନଙ୍କ ପାଇଁ ମହାବିଷ୍ଣୁ, ବୌଦ୍ଧମାନଙ୍କ ପାଇଁ ବୁଦ୍ଧ, ଜୈନମାନଙ୍କ ପାଇଁ ଜୀନ ଦେବ । ଏଇ ପରିପ୍ରେକ୍ଷୀରେ ଦ୍ୱାଦଶ ଶତାବ୍ଦୀର କବି ଉଦୟନାଥ ଆଚାର୍ଯ୍ୟଙ୍କ ଉକ୍ତି ସ୍ମରଣକୁ ଆସେ ।

'ଯଂ ଶୈବାଃ ସମୁପାସତେ ଶିବ ମିତିବ୍ରହ୍ମେତି ବେଦାନ୍ତିନଃ
ବୌଦ୍ଧଃ ବୁଦ୍ଧ ଇତି ପ୍ରମାଣ ପଟବଃ କର୍ତ୍ତେତିନୈୟାୟିକାଃ
ଅର୍ହନ୍ନିତ୍ୟଥ ଜୈନ ଶାସନ ରତାଃ କର୍ମେତି ମୀମାଂସକାଃ
ସୋୟଂବଃ ବିଦ୍‌ଧାତୁ ବାଞ୍ଛିତଫଳଃ ତ୍ରୈଲୋକ୍ୟନାଥୋ ହରିଃ ।'

ବର୍ତ୍ତମାନ ବିଶ୍ୱରେ ସମ୍ପଦ ବଢ଼ିଛି । ସୁଖ ସୁବିଧା ବଢ଼ିଛି ବୈଜ୍ଞାନିକ ଉଦ୍ଭାବନ ଯୋଗୁଁ । ସୂଚନା ଓ ପ୍ରଯୁକ୍ତିବିଦ୍ୟାର ପ୍ରସାର ହେତୁ ବହୁ ଅସମ୍ଭବ ଲାଗୁଥିବା କଥା ସମ୍ଭବ ହୋଇଛି । ଆଉ ଭୌତିକ ଦୂରତା ଆଗପରି ଅକଳ୍ପନୀୟ ହୋଇ ରହିନାହିଁ । ଘରେ ବସି ଦୂରରେ ଥିବା ଆତ୍ମୀୟଙ୍କ ଦେଖା ସହିତ କଥାବାର୍ତ୍ତା ମଧ୍ୟ ସମ୍ଭବ ହେଉଛି । ଅଳ୍ପ ସମୟରେ ବହୁ କାର୍ଯ୍ୟ ସଂପାଦିତ ହୋଇପାରୁଛି ଏଇ ବୈଜ୍ଞାନିକ ଯନ୍ତ୍ରପାତି ମାଧ୍ୟମରେ । ସେଥିପାଇଁ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ନିକଟରେ କୃତଜ୍ଞତା ଜଣାଇବାର ଅଛି ।

ଏତେ କଥା ସତ୍ତ୍ୱେ ଯେଉଁ କଥାଟି କମି କମି ଯାଉଛି ତାହା ହେଉଛି ଭ୍ରାତୃଭାବ, ପାରସ୍ପରିକ ଅନୁମୋଦନ, ଶ୍ରଦ୍ଧା, ବିଶ୍ୱାସ ଓ ଆନ୍ତରିକତା । ଏହି ଭାବ ରହିଛି ଶ୍ରୀଜଗନ୍ନାଥ ସଂସ୍କୃତିରେ । ମହାପ୍ରସାଦରେ ଜାତିଆଣ ଭାବ ନାହିଁ । ସବୁ ସଂପ୍ରଦାୟ ପାଇଁ ତାହା ଅତ୍ୟନ୍ତ ମୂଲ୍ୟବାନ ଅତି ଆଦରର ଧନ । ପୂଜା ପଦ୍ଧତି ଓ ମନ୍ତ୍ରରେ ରହିଛି ବିଭିନ୍ନ ସାଂପ୍ରଦାୟିକ ସଦ୍‌ଭାବନାର ମୂଳକଥା । ବାର ମାସରେ ତେର ପର୍ବ ଅସଲ ଆଧାତ୍ମିକତାର ମହତ୍ତ୍ୱକୁ ପ୍ରଚାର କରୁଛି । ଧାର୍ମିକତା ନୁହେଁ ଆଧାତ୍ମିକତା ହିଁ ବର୍ତ୍ତମାନର ବିଶ୍ୱ ଗ୍ରାମ ଗଠନ ପାଇଁ ଏକାନ୍ତ ଜରୁରୀ । ସେହି ଆଧାତ୍ମ୍ୟ ଭାବନା ହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ମୌଳିକତା । ଏଥିରେ ସମଗ୍ର ମାନବ ଜାତି ପ୍ରତି ଶ୍ରଦ୍ଧା ରହିଛି । ରଥଯାତ୍ରା ଏପରି ଏକ ଯାତ୍ରା ଯେତେବେଳେ ବଡ଼ଦାଣ୍ଡରେ ସମଗ୍ର ପୃଥିବୀର ସବୁ ସ୍ଥାନର ଲୋକ ଏକତ୍ରିତ ହୋଇପାରନ୍ତି ଓ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଥାନ୍ତି । ଅତଏବ ବିଭିନ୍ନ ଦିଗରୁ ବିଚାର କଲେ ଜଣାଯାଏ ଯେ ସ୍ୱୟଂ ପୁରୁଷୋତ୍ତମ ଯିଏ ସଗୁଣ ଓ ନିର୍ଗୁଣ ସ୍ୱରୂପର ଉର୍ଦ୍ଧ୍ୱରେ ଯିଏ ରୂପ ଓ ଅରୂପର ଉର୍ଦ୍ଧ୍ୱରେ ସେ ଶ୍ରୀଜଗନ୍ନାଥ ଭାବରେ ନୀଳାଚଳ ଧାମରେ ବିରାଜମାନ କରିଛନ୍ତି । ମର୍ତ୍ତ୍ୟରେ ଅମର୍ତ୍ତ୍ୟର ଭାବ, ପ୍ରଭାବ ଓ ଅନୁଭବ ଶ୍ରୀଜଗନ୍ନାଥ ସଂସ୍କୃତିରେ ମୂର୍ତ୍ତିମନ୍ତ ହୋଇଛି । ମର୍ତ୍ତ୍ୟରେ ଅମର୍ତ୍ତ୍ୟର ଲାବଣ୍ୟ ଶ୍ରୀଜଗନ୍ନାଥ ରୂପରେ ବାସ୍ତବରେ ବିରାଜିତ ହୋଇଛନ୍ତି, ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ ।

କେଦାରଗୌରୀ ଆପାର୍ଟମେଣ୍ଟ
ଗ୍ୟାରେଜ ଛକ, ଭୁବନେଶ୍ୱର–୨



# ଶ୍ରୀଜଗନ୍ନାଥ ସଂସ୍କୃତିରେ ସମନ୍ୱୟ ଭାବ

ଡକ୍ଟର ଶରତ ଚନ୍ଦ୍ର ବିଶ୍ୱାଳ

ଆଦିମ ଶାବର ସଂସ୍କୃତିର ଦେବତା ରୂପେ ଶ୍ରୀଜଗନ୍ନାଥ ସର୍ବଜନବିଦିତ । କିନ୍ତୁ ସମୟର ପ୍ରବାହରେ ଶ୍ରୀଜଗନ୍ନାଥ ସଂସ୍କୃତି ଭିତରେ ବିଭିନ୍ନ ଧର୍ମର ଅପୂର୍ବ ସମନ୍ୱୟ ଏହାକୁ କରିଛି ମହିମାମଣ୍ଡିତ ତଥା ଅଦ୍ୱିତୀୟ । ଏହି ସଂସ୍କୃତି ହିଁ ସବୁ ବର୍ଣ୍ଣ ତଥା ସଂପ୍ରଦାୟର ଏକ ମହାମିଳନର କ୍ଷେତ୍ର । ପୃଥିବୀରେ ଦେଖାଯାଉଥିବା ମାନବମାନଙ୍କର ବର୍ଣ୍ଣ ଅନୁସାରେ ଶ୍ରୀଜଗନ୍ନାଥ ହେଉଛନ୍ତି ବିଷୁବ ମଣ୍ଡଳୀୟ କୃଷ୍ଣ ବର୍ଣ୍ଣର ମାନବମାନଙ୍କର, ଶ୍ରୀବଳଭଦ୍ର ପଶ୍ଚିମ ଦେଶର ଗୌର ବର୍ଣ୍ଣର ମାନବମାନଙ୍କର, ମା' ସୁଭଦ୍ରା ହେଉଛନ୍ତି ଚୀନ୍, ଜାପାନ, ନେପାଳ ଇତ୍ୟାଦିର ହରିଦ୍ରା ବର୍ଣ୍ଣର ମଣିଷମାନଙ୍କର ଓ ସୁଦର୍ଶନ ହେଉଛନ୍ତି ଲୋହିତ ବର୍ଣ୍ଣର ଲୋହିତ ଭାରତୀୟ ମାନବମାନଙ୍କର ପ୍ରତୀକ । ସମଗ୍ର ପୃଥିବୀର ସମସ୍ତ ମାନବମାନଙ୍କର ପ୍ରତିନିଧିତ୍ୱ କରନ୍ତି ଏହି ଚତୁର୍ଦ୍ଧାମୂର୍ତ୍ତି । ବିବିଧତା ଓ ବିଭିନ୍ନତା ମଧ୍ୟରେ ଶାନ୍ତି, ସାମ୍ୟ, ମୈତ୍ରୀ, ପ୍ରୀତି, ଏକତା ଓ ସଂହତି ହିଁ ଏହି ଧର୍ମର ବୈଶିଷ୍ଟ୍ୟ ।



ବିଭିନ୍ନ ଧର୍ମ ଓ ସଂପ୍ରଦାୟର ଉପାସକମାନେ ଶ୍ରୀଜଗନ୍ନାଥଙ୍କୁ ନିଜର ଆରାଧ୍ୟ ରୂପେ ଗ୍ରହଣ କରିଛନ୍ତି । ନରସିଂହ ମୁନି, ନରହରିତୀର୍ଥ, ନରସିଂହ ଯତି, ବାସୁଦେବ ଯତି, ଶଙ୍କରାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ, ନିମ୍ବାର୍କାଚାର୍ଯ୍ୟ, ବିଷ୍ଣୁ ସ୍ୱାମୀ, ମାଧ୍ୱାଚାର୍ଯ୍ୟ ଆଦି ଅନେକ ସାଧୁ, ସନ୍ଥ ପୁରୀରେ ଅବସ୍ଥାନ ପୂର୍ବକ ନିଜ ନିଜ ମତ ପ୍ରଚାରର ପ୍ରକୃଷ୍ଟ ସ୍ଥଳ ରୂପେ ବାଛି ନେଇଥିଲେ । ଉଲ୍ଲେଖଯୋଗ୍ୟ ଯେ, ମଧ୍ୟଯୁଗୀୟ ମୁସଲମାନ ଶାସକମାନଙ୍କ ଶାସନ ସମୟରେ ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳ ପରାଧୀନ ହୋଇ ଇସ୍‌ଲାମ ପ୍ରଭାବରେ ପ୍ରଭାବିତ ହେବା ବେଳେ ଓଡ଼ିଶା ହିଁ ଏକମାତ୍ର ସ୍ୱାଧୀନ ହିନ୍ଦୁରାଜ୍ୟ ଥିଲା । ବିଭିନ୍ନ ସ୍ଥାନରୁ ବିତାଡ଼ିତ ଓ ପଳାୟିତ ପଣ୍ଡିତ, ବୁଦ୍ଧିଜୀବୀ ଓ ଧର୍ମ ପ୍ରଚାରକମାନଙ୍କର ନିରାପଦ ଆଶ୍ରୟସ୍ଥଳ ଥିଲା ଜଗନ୍ନାଥଙ୍କ ପବିତ୍ର ପୁରୁଷୋତ୍ତମ ଧାମ । ଦକ୍ଷିଣ ଓ ଉତ୍ତର ଭାରତର ବିଭିନ୍ନ ଧର୍ମ ସଂପ୍ରଦାୟର ଆଶ୍ରୟ ଭୂମି ରୂପେ କଳିଙ୍ଗ ଧର୍ମ ସମନ୍ୱୟର ପୀଠ ରୂପେ ପୁରୀ ଓ ଦାରୁବ୍ରହ୍ମ ଜଗନ୍ନାଥ ସବୁ ସଂପ୍ରଦାୟର ଆରାଧ୍ୟ ରୂପେ ସମ୍ମାନିତ ହେବାକୁ ଲାଗିଲେ ।

ସନ୍ଥ କବୀର ଏ କ୍ଷେତ୍ର ପ୍ରତି ଆକୃଷ୍ଟ ହୋଇ ତାଙ୍କର ହିନ୍ଦୁ ଓ ମୁସଲ୍‌ମାନ ଉଭୟ ସଂପ୍ରଦାୟର ଶିଷ୍ୟ ଭକ୍ତମାନଙ୍କ ସହ ଆସି ଏଠାରେ ଅବସ୍ଥାନ କରିବା ସହ ପରମ ଭକ୍ତି ଓ ଶ୍ରଦ୍ଧାରେ ଅନେକ ଭାବପୂର୍ଣ୍ଣ, ଭକ୍ତି ରସାତ୍ମକ ଜଗନ୍ନାଥ ଭଜନ



ରଚନା କରିଛନ୍ତି । ଯବନ ଭକ୍ତ ସାଲବେଗଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିର ଅପୂର୍ବ ପରାକାଷ୍ଠା ସ୍ୱରଚିତ ଭଜନ ଓ ଜଣାଣଗୁଡ଼ିକରେ ସୁସ୍ପଷ୍ଟ । ସନ୍ଥ ସୁରଦାସ, ସନ୍ଥ ତୁଳସୀଦାସ ମଧ୍ୟ ଏହି ପୀଠ ପ୍ରତି ଆକର୍ଷିତ ହୋଇ ଆସି ଜଗନ୍ନାଥଙ୍କ ଭିତରେ ନିଜ ଇଷ୍ଟ ଦର୍ଶନ କରିବା ସହ ପ୍ରଭୁଙ୍କ ମହିମା ପ୍ରଚାର କରିଯାଇଛନ୍ତି । ପଞ୍ଜାବରୁ ଗୁରୁ ନାନକ ଓ ବଙ୍ଗଳାରୁ ଶ୍ରୀଚୈତନ୍ୟ ମଧ୍ୟ ଏ ପୀଠକୁ ଆସି ମହାପ୍ରଭୁଙ୍କ ପ୍ରେମରେ ତଲ୍ଲୀନ ହୋଇ ତାଙ୍କର ଗୁଣକୀର୍ତ୍ତନ କରିଯାଇଛନ୍ତି ।

ସମୟର ପ୍ରବାହରେ କିଭଳି ବିଭିନ୍ନ ସଂସ୍କୃତି, ଧର୍ମ ଓ ସଂପ୍ରଦାୟର ପ୍ରଭାବ ଏହି ସଂସ୍କୃତିରେ ସମନ୍ୱିତ ହୋଇ ଏହାକୁ ଏକ ବିଶ୍ୱବ୍ୟାପକ, ଉଦାର ରୂପ ପ୍ରଦାନ କରିଛି – ତାହା ହିଁ ଏଠାରେ ଆଲୋଚ୍ୟ ।

ମୂଳତଃ, ଆଦିବାସୀ ଶବର ପୂଜିତ ଦେବତା ନୀଳମାଧବ, ପରବର୍ତ୍ତୀ ସମୟରେ ଶ୍ରୀଜଗନ୍ନାଥ ହୋଇଥିବାରୁ ଏବେ ମଧ୍ୟ ଶବର – ଦଇତାପତିମାନେ ନବକଳେବର, ଅଣସର ସେବା ଓ ରଥଯାତ୍ରା ସମୟରେ ଜଗନ୍ନାଥଙ୍କର ପୂଜାର୍ଚ୍ଚନା କରୁଅଛନ୍ତି ।

ଅଷ୍ଟ୍ରିକ 'ଜଗତ' ଶବ୍ଦ ସହିତ 'ନାଥ' ଯୋଗ କରାଯାଇ 'ଜଗନ୍ନାଥ' ଶବ୍ଦ ସୃଷ୍ଟି ହୋଇଛି । ଏହା ଜୈନମାନଙ୍କର ତୀର୍ଥଙ୍କର ଋଷଭନାଥ, ପାର୍ଶ୍ୱନାଥ, ନେମିନାଥଙ୍କ ଭଳି । ଋଷଭନାଥଙ୍କ ଗର୍ଭକଲ୍ୟାଣ ଦିବସରେ ଜିନଙ୍କ ପ୍ରତିମାକୁ ରଥରେ ସ୍ଥାପନ କରାଯାଇ ନଗର ପରିକ୍ରମା କରାଯାଏ । ଏହି ରଥଯାତ୍ରାର ପ୍ରଭାବ ଜଗନ୍ନାଥଙ୍କ ରଥଯାତ୍ରାରେ ଦେଖିବାକୁ ମିଳେ । ସେହିଭଳି ଜଗନ୍ନାଥଙ୍କ ସ୍ନାନ ଯାତ୍ରାର ଉପଚାର ଜୈନପ୍ରତିମାର ସ୍ନାନଯାତ୍ରା ଭଳି । ସ୍ନାନ ପରେ ଜଗନ୍ନାଥଙ୍କ ବନକଲାଗି ଓ ନବ ଯୌବନ ବେଶଭଳି ଜୈନ ପ୍ରତିମା ନୂତନ ରଂଗୀକରଣ ବିଧି ରହିଛି । ପୁନଶ୍ଚ କଳ୍ପବଟ, ନୀଳଚକ୍ର, ଚକ୍ରକ୍ଷେତ୍ର ଜୈନ ପରଂପରାରେ ସମ୍ମାନିତ ହୋଇଥାନ୍ତି ।

ସମ୍ୟକ୍ ଜ୍ଞାନ, ସମ୍ୟକ୍ ବିଶ୍ୱାସ ଓ ସମ୍ୟକ୍ କର୍ମକୁ ଜୈନ ତ୍ରିରତ୍ନ କୁହାଯାଏ । ଅନୁରୂପ ଭାବେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତ୍ରିରତ୍ନର ପ୍ରତୀକ ଭାବେ ଗୃହୀତ ହୋଇଥାନ୍ତି । ଜଗନ୍ନାଥ ସଂସ୍କୃତିରେ ବ୍ୟବହୃତ 'କୈବଲ୍ୟ' ଶବ୍ଦ ଜୈନମାନଙ୍କର ଏକ ବହୁ ବ୍ୟବହୃତ ଶବ୍ଦ ।

ସେହିଭଳି ବୌଦ୍ଧଧର୍ମ ସହିତ ଶ୍ରୀଜଗନ୍ନାଥ ସଂସ୍କୃତିର ବହୁ ସାମଞ୍ଜସ୍ୟ ଥିବାର ଦେଖିବାକୁ ମିଳେ । ମୂର୍ତ୍ତି ପୂଜା ବିରୋଧୀ ବୌଦ୍ଧ ଧର୍ମରେ ସମୟକ୍ରମେ ବୁଦ୍ଧଙ୍କ ମୂର୍ତ୍ତି ପୂଜା ଆରମ୍ଭ ହୋଇ ମହାଯାନପନ୍ଥୀଙ୍କର ଉଦ୍‌ଭବ ହେବା ଫଳରେ ବୁଦ୍ଧଙ୍କୁ ଏକ ଅବତାର ଭାବେ ଗ୍ରହଣ କରିନେବା ହିନ୍ଦୁମାନଙ୍କ ପକ୍ଷରେ ସହଜ ହୋଇଗଲା । ବିଷ୍ଣୁ ପୁରାଣ ଓ ଜୟଦେବଙ୍କ ଗୀତଗୋବିନ୍ଦରେ ଦଶଅବତାର ମଧ୍ୟରେ ବୁଦ୍ଧଙ୍କୁ ଗ୍ରହଣ କରାଗଲା । ଓଡ଼ିଶାର ସଂସ୍କୃତି ଓ ସାହିତ୍ୟରେ ଏପରିକି ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଶ୍ରୀଜଗନ୍ନାଥ ଓ ବୁଦ୍ଧ ଏକ ବୋଲି ବର୍ଣ୍ଣନା ରହିଛି । ଓଡ଼ିଶା ଏକଦା ବୌଦ୍ଧଧର୍ମର ଲୀଳାଭୂମି ଥିଲା । ସିଂହଳରୁ ମିଳିଥିବା ପାଲିଭାଷାରେ ଲିଖିତ 'ଦାଠା ବଂଶ'ନାମକ ଗ୍ରନ୍ଥରେ କଳିଙ୍ଗରେ ଦନ୍ତପୁର ନାମରେ ଏକ ବୌଦ୍ଧତୀର୍ଥ ଥିବାର ବର୍ଣ୍ଣନା ଅଛି । ଏଠାରେ ବୁଦ୍ଧଙ୍କ ଦନ୍ତ ପୂଜା ହେଉଥିଲା । କଳିଙ୍ଗରାଜା ବ୍ରହ୍ମଦତ୍ତ ଏହି ବୌଦ୍ଧଦନ୍ତ ପୂଜାପାଇଁ ଏକ ବିରାଟ ମନ୍ଦିର ନିର୍ମାଣ କରିଥିଲେ । ଡକ୍ଟର ରାଜେନ୍ଦ୍ରଲାଲ୍ ମିତ୍ର ପୁରୀକୁ 'ଦନ୍ତପୁରୀ' ବୋଲି ମତ ଦେଇଛନ୍ତି । ଜଗନ୍ନାଥଙ୍କ ବିଗ୍ରହରେ ଏହି ଦନ୍ତ ଏବେ ମଧ୍ୟ ରହିଛି ବୋଲି ରହିଥିବା ମତବାଦ ଅବଶ୍ୟ ଅଧିକ ଗବେଷଣାସାପେକ୍ଷ ।

ଉତ୍କଳରେ ଖ୍ରୀ ୮ମ ଶତାବ୍ଦୀରୁ ଆରମ୍ଭ କରି ପ୍ରାୟ ୨୦୦ ବର୍ଷଧରି ବୌଦ୍ଧଧର୍ମାବଲମ୍ବୀ ରାଜାମାନେ ରାଜତ୍ୱ କରୁଥିବାବେଳେ ଜାତୀୟ ଦେବତା ପୁରୁଷୋତ୍ତମ ଜଗନ୍ନାଥଙ୍କୁ ବୁଦ୍ଧଙ୍କ ପ୍ରତୀକ ମହାଯାନ-ସଂପ୍ରଦାୟର 'ଜଗନ୍ନାଥ' (ବୁଦ୍ଧ) ରୂପେ ଆରାଧନା କରାଗଲା । ଫଳତଃ, ବୌଦ୍ଧମନ୍ଦିରମାନଙ୍କରେ ଯେପରି 'ଥେରି' ବା 'ଦେବଦାସୀ'ଙ୍କ ସେବା ପ୍ରଚଳିତ ଥିଲା, ସେପରି ପ୍ରଥା ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ 'ମାହାରି ସେବା' ନାମରେ ପରିବର୍ତ୍ତିତ ହେଲା ।



ରାଜା ବଜ୍ରଯାନପନ୍ଥୀ ସାଧକ ଇନ୍ଦ୍ରଭୂତି ତାଙ୍କ 'ଜ୍ଞାନ ସିଦ୍ଧି' ଗ୍ରନ୍ଥରେ ବୁଦ୍ଧ ଓ ଶ୍ରୀଜଗନ୍ନାଥ ଅଭେଦ ବୋଲି ଦର୍ଶାଇଛନ୍ତି । ଯଥା –

'ପ୍ରଣିପତ୍ୟ ଜଗନ୍ନାଥ, ସର୍ବଜିନ ବରାର୍ଚ୍ଚିତମ୍<br>
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।<br>
ସର୍ବଦଂ ସର୍ବସତ୍ତ୍ୱେଭ୍ୟଃ ସର୍ବଜ୍ଞଂ ବରବଜ୍ରିଣମ୍ ।<br>
ଭକ୍ତ୍ୟାହଂ ସର୍ବ ଭାବେନ ବକ୍ଷେ ତତ୍ ସାଧନଂ ପରମ୍ ।

ଅର୍ଥାତ୍, ଜଗନ୍ନାଥ ଜୀନ ଶ୍ରେଷ୍ଠ ଦ୍ୱାରା ପୂଜିତ, ସର୍ବ ବୁଦ୍ଧରୂପୀ, ସିଦ୍ଧିବ୍ୟାପୀ ଏବଂ ଆକାଶତୁଲ୍ୟ ଅଟନ୍ତି । ସେ ସମସ୍ତ ପ୍ରାଣୀଙ୍କୁ ସମସ୍ତ ହିଁ ଦାନ କରନ୍ତି । ସେ ସର୍ବଜ୍ଞ ଓ ବଜ୍ରଯାନୀଙ୍କ ମଧ୍ୟରେ ଶ୍ରେଷ୍ଠ । ମୁଁ ଭକ୍ତିରେ ସେ ଜଗନ୍ନାଥଙ୍କୁ ପ୍ରଣାମ କରି ତାହାଙ୍କ ସାଧନାର ଉପାୟ କହୁଛି ।

ଚୀନ୍ ପରିବ୍ରାଜକ ଫାହିୟାନ୍‌ଙ୍କ ବିବରଣୀରୁ ବୁଦ୍ଧମୂର୍ତ୍ତିଙ୍କର ରଥଯାତ୍ରା ପ୍ରସଙ୍ଗ ସହିତ ଶ୍ରୀଜୀଉଙ୍କ ଘୋଷଯାତ୍ରାର ସାମଞ୍ଜସ୍ୟ ଲକ୍ଷଣୀୟ । ଏହାଛଡ଼ା ମହାପ୍ରସାଦକୁ ଜାତି, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସେବନର ବିଧି ବୌଦ୍ଧ ତାନ୍ତ୍ରିକ ପରଂପରାରୁ ପ୍ରତିଫଳିତ । ଶ୍ରୀଜଗନ୍ନାଥଙ୍କର ବୁଦ୍ଧଙ୍କ ସହ ଏତାଦୃଶ ସାମ୍ୟକୁ ଲକ୍ଷ୍ୟ କରି ଶୁଦ୍ରମୁନି ସାରଳାଦାସ ଲେଖିଛନ୍ତି –

ବଉଦ୍ଧ ରୂପରେ କଳିଯୁଗେ ଅବତାର<br>
ହୋଇଣ ପାପୀ ଜନଙ୍କୁ କରୁଛ ଉଦ୍ଧାର ।।<br>
ବନ୍ଦଇ ଶ୍ରୀଜଗନ୍ନାଥ ନୀଳଗିରିବାସୀ<br>
ବଉଦ୍ଧ ରୂପରେ ନୀଳକନ୍ଦରେ ଛନ୍ତି ବସି ।।

ଜେନେରାଲ କଲିଙ୍ଗହାମ୍‌ଙ୍କ ମତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି ବୌଦ୍ଧ ତ୍ରିରତ୍ନ । ପୁରୀ ଜଗନ୍ନାଥ ମନ୍ଦିର ସିଂହଦ୍ୱାର ତୋରଣର ଉପରି ଭାଗରେ ଖୋଦିତ ଦଶାବତାର ମୂର୍ତ୍ତିରେ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ ଅଛନ୍ତି ।

ଏହାଛଡ଼ା ସିଦ୍ଧ ସାଧକ ଅଚ୍ୟୁତାନନ୍ଦ ଦାସ 'ଶୂନ୍ୟ ସଂହିତା'ରେ, ଯଶୋବନ୍ତଙ୍କର ଶିଷ୍ୟ ସନ୍ଥ କବି ସୁଦର୍ଶନ ଦାସ 'ଚୌରାଅଶୀ ଆଜ୍ଞା'ରେ, ଶିଶୁ ଅନନ୍ତ ଦାସ 'ଗୁପ୍ତ ଟୀକା'ରେ ଏବଂ କବି ଚୈତନ୍ୟ ଦାସ 'ଶ୍ରୀଚୈତନ୍ୟ ଭାଗବତ'ରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ଭାବରେ ଗ୍ରହଣ କରିଛନ୍ତି ।

କେବଳ ରଥଯାତ୍ରା ନୁହେଁ ଜଗନ୍ନାଥଙ୍କ ସ୍ନାନଯାତ୍ରା ମଧ୍ୟ ବୁଦ୍ଧଙ୍କ ସ୍ନାନଯାତ୍ରା ଭଳି । ଜଗନ୍ନାଥଙ୍କ ରତ୍ନବେଦୀକୁ 'ବୁଦ୍ଧବେଦୀ' କୁହାଯାଏ । ଜଗନ୍ନାଥ ପୀଠରେ ଜାତିଭେଦ ଶୂନ୍ୟତା ମଧ୍ୟ ବୌଦ୍ଧ ପ୍ରଭାବରୁ ସୃଷ୍ଟି ବୋଲି ଅନୁମିତ ହୁଏ ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ଶୈବ ଧର୍ମର ପ୍ରଭାବ ଦେଖିବାକୁ ମିଳେ । ଏଠାରେ ଶ୍ରୀବଳଭଦ୍ରଙ୍କୁ ଶିବ, ଶ୍ରୀସୁଭଦ୍ରାଙ୍କୁ ବ୍ରହ୍ମା ଓ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ରୂପେ ଅଭିହିତ କରାଯାଇଛି ।

ଶୁଦ୍ରମୁନି ସାରଳା ଦାସଙ୍କ ଭାଷାରେ–

'ରାମକୃଷ୍ଣ ସୁଭଦ୍ରା ଯେ ତିନି ପ୍ରତିମା<br>
ଶ୍ରୀ ପୁରୁଷୋତ୍ତମେ ବିଜେ ହଳୀ, ହରି ବ୍ରହ୍ମା'।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପୂର୍ବରୁ ବାଇଶି ପାହାଚ ଉପରେ ପ୍ରଥମେ କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିବାର ବିଧି ରହିଛି । ଏହାଛଡ଼ା ଚନ୍ଦନ ଯାତ୍ରାରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନଙ୍କ ସହ ଲୋକନାଥ, ଯମେଶ୍ୱର ମାର୍କଣ୍ଡେଶ୍ୱର, କପାଳ ମୋଚନ ଓ ନୀଳକଣ୍ଠେଶ୍ୱର– ପଞ୍ଚଶିବ ପଞ୍ଚୁପାଣ୍ଡବ ରୂପେ ପଟୁଆରରେ ଯାଆନ୍ତି । ଶ୍ରୀମନ୍ଦିରରେ ଜୀଉମାନଙ୍କର ବହୁମୂଲ୍ୟ ଅଳଙ୍କାର ଥିବା ଭଣ୍ଡାରଘରର ରକ୍ଷକ ହେଉଛନ୍ତି ମହାପ୍ରଭୁ ଶ୍ରୀଲୋକନାଥ ।

ଖ୍ରୀଷ୍ଟିୟ ୭ମ ଶତାବ୍ଦୀରୁ ଓଡ଼ିଶାରେ ତାନ୍ତ୍ରିକ ମତ ପ୍ରାଧାନ୍ୟ ଲାଭ କରିଥିଲା । ଫଳତଃ ଶ୍ରୀଜଗନ୍ନାଥଙ୍କ ପୂଜାବିଧିରେ ଶାକ୍ତ ଧର୍ମର ପ୍ରଭାବ ପରିଲକ୍ଷିତ ହେଲା । ଶ୍ରୀକ୍ଷେତ୍ରରେ ବିମଳାଙ୍କ ପୀଠ ହେଉଛି ଅନ୍ୟତମ ପ୍ରଧାନ ଶାକ୍ତ ପୀଠ । ଏଠାରେ ଲକ୍ଷ୍ମୀଙ୍କ ଅପେକ୍ଷା ବିମଳାଙ୍କ ପ୍ରାଧାନ୍ୟ ରହିଛି । ଶ୍ରୀକ୍ଷେତ୍ରରେ ଜଗନ୍ନାଥ ହେଉଛନ୍ତି ଭୈରବ ଓ ବିମଳା ଭୈରବୀ ।



ଶ୍ରୀଜଗନ୍ନାଥଙ୍କ ବର୍ତ୍ତମାନ ପୂଜା ପଦ୍ଧତିରେ ବୈଦିକୀ ପଦ୍ଧତି ସହ ଯନ୍ତ୍ର ଉପାସନା ଓ ବୀଜମନ୍ତ୍ର ଉପାସନାର ଏକ ସୁନ୍ଦର ସମନ୍ୱୟ ଘଟିଛି । ତନ୍ତ୍ରରେ ଦେବତା ଅପେକ୍ଷା ମନ୍ତ୍ର ଯନ୍ତ୍ରର ଗୁରୁତ୍ୱ ଅଧିକ । ରତ୍ନସିଂହାସନ ଉପରେ ତାରାଯନ୍ତ୍ର, ଭୁବନେଶ୍ୱରୀ ଯନ୍ତ୍ର ଓ ଶ୍ୟାମା ଯନ୍ତ୍ର ଖୋଦିତ ହୋଇ ତାହା ଉପରେ ଶ୍ରୀ ବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ ଉପବେଶନ କରିଛନ୍ତି ଓ ପୂଜା ପାଉଛନ୍ତି । କେତେକ ଏହାକୁ ଭୈରବୀ ଚକ୍ର ବୋଲି କହନ୍ତି । ଏହା ମୂଳତଃ, ତାନ୍ତ୍ରିକ ପଛୀ ଚକ୍ରପୂଜାର ପ୍ରମାଣ ବହନ କରେ ।

ପୁନଶ୍ଚ, ତନ୍ତ୍ରାଚାରର ଅନ୍ୟତମ ବିଭାବ ହେଉଛି ଶ୍ମଶାନ । ଶ୍ରୀମନ୍ଦିରର ଉତ୍ତର ଦିଗରେ ଅର୍ଥାତ୍ ଶ୍ରୀମନ୍ଦିରର ବାହାର ବେଢ଼ାରେ ଏକ ଦେବଶ୍ମଶାନ ଅଛି, ଯାହା 'କୋଇଲି ବୈକୁଣ୍ଠ' ନାମରେ ପରିଚିତ । ଏଠାରେ ନବକଳେବର ସମୟରେ ପୁରାତନ ବିଗ୍ରହମାନଙ୍କୁ ପାତାଳି କରାଯାଏ । ଏହି ପାତାଳି ସ୍ଥଳରେ ବିଦ୍ୟମାନ ଦେବୀ 'ଶ୍ମଶାନ ଚଣ୍ଡୀ ବା ମଶାଣି ଚଣ୍ଡୀ'।

ଶ୍ରୀକ୍ଷେତ୍ରରେ ଜଗନ୍ନାଥ ପୁରୁଷୋତ୍ତମ ବିଷ୍ଣୁ ଭାବରେ ପୂଜା ପାଉଥିଲେ ବି ତାଙ୍କର ପ୍ରସାଦ ମହାପ୍ରସାଦ ଭାବରେ ଗୃହୀତ । ତନ୍ତ୍ରର ଚକ୍ର ପୂଜାରେ ପଞ୍ଚମାକାର ନୈବେଦ୍ୟ ଭାବରେ ଅର୍ପିତ ହେବାପରେ ମହାପ୍ରସାଦ ହୁଏ । ଜାତି, ବର୍ଣ୍ଣ, ନିର୍ବିଶେଷରେ ଏହା ସମସ୍ତଙ୍କ ଗ୍ରହଣଯୋଗ୍ୟ । ଜଗନ୍ନାଥଙ୍କ ପାଖରେ ପଞ୍ଚମାକାର ଅର୍ଚ୍ଚନା କୌଳାଚାର ମତରେ କରାଯାଏ ।

ସର୍ବୋପରି ଶ୍ରୀଜଗନ୍ନାଥ ମନ୍ଦିର ଏକ ଯନ୍ତ୍ର ଉପରେ ପ୍ରତିଷ୍ଠିତ । ଏହା ଶ୍ରୀଯନ୍ତ୍ର ନାମରେ ପରିଚିତ । ଏହି ଯନ୍ତ୍ରର କେନ୍ଦ୍ର ଭାଗରେ ରତ୍ନସିଂହାସନ ଉପରେ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତି ଅବସ୍ଥାନ କରିଥିବା ବେଳେ ଯନ୍ତ୍ରର ବିଭିନ୍ନ କୋଣରେ ଯେଉଁ ପାର୍ଶ୍ୱ ଶକ୍ତିମାନେ ଅଧିଷ୍ଠିତ ଅଛନ୍ତି, ସେମାନେ ହେଉଛନ୍ତି ଯଥାକ୍ରମେ ମଙ୍ଗଳା, ବିମଳା, ଭୁବନେଶ୍ୱରୀ, ଲକ୍ଷ୍ମୀ ଓ ଶୀତଳା ।

ବୈଷ୍ଣବ ଧର୍ମ ସହିତ ଶ୍ରୀଜଗନ୍ନାଥ ସଂସ୍କୃତିର ଅଭେଦ ସଂପର୍କ ଦେଖିବାକୁ ମିଳେ । ବୈଷ୍ଣବମାନଙ୍କର ଉପାସ୍ୟ ଦେବତା ହେଉଛନ୍ତି ରାଧାକୃଷ୍ଣ । କୃଷ୍ଣଲୀଳାର ପ୍ରଖ୍ୟାତ ପ୍ରଚାରକ ନିମ୍ବାର୍କ ସ୍ୱାମୀ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କୁ ଏକ ବୋଲି ପ୍ରତିପାଦିତ କରିଛନ୍ତି । ଶ୍ରୀକୃଷ୍ଣ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କ ପୂର୍ବ ଜନ୍ମର ଦେବତା । କବି ଜୟଦେବଙ୍କ ଗୀତଗୋବିନ୍ଦରେ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟଲୀଳା ବର୍ଣ୍ଣନା କରାଯାଇଥିବାରୁ ଶ୍ରୀଜଗନ୍ନାଥଙ୍କ ପାଖରେ ତାହା ଗ୍ରହଣୀୟ ହୋଇଛି । ଶ୍ରୀମନ୍ଦିରରେ ଅନୁଷ୍ଠିତ ଦେବ ଦୀପାବଳୀ ପର୍ବରେ ଶ୍ରୀଜଗନ୍ନାଥ ଶ୍ରାଦ୍ଧ ବେଶ ହୋଇ ତାଙ୍କ ପୂର୍ବପୁରୁଷ ବସୁଦେବ, ଦେବକୀ, ନନ୍ଦରାଜା, ଯଶୋଦା ଓ ଦଶରଥ ପ୍ରଭୃତିଙ୍କୁ ଶ୍ରାଦ୍ଧ ଦେଇ ଦୀପଦାନ କରନ୍ତି । ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ମନ୍ତ୍ରରେ ପୂଜା କରାଯାଉଥିବାବେଳେ ବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ରରେ ପୂଜା କରାଯାଏ । ଭାଦ୍ରକୃଷ୍ଣ ଅଷ୍ଟମୀରେ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ପାଳିତ ହୁଏ । ଦଶମୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ କାଳୀୟ ଦଳନ ବେଶ, ବନଭୋଜି ବେଶ, ପ୍ରଳମ୍ବାସୁର ବଧ ବେଶ, ବକାସୁର ବଧ ବେଶ, କୃଷ୍ଣ ବଳରାମ ବେଶ ଇତ୍ୟାଦି କରାଯିବା ସହ ଶ୍ରୀମନ୍ଦିରରେ ଝୁଲଣଯାତ, ରୁକ୍ମିଣୀ ବିବାହ ଆଦି ଅନୁଷ୍ଠିତ ହୁଏ । କାର୍ତ୍ତିକ ମାସରେ ଶ୍ରୀଜଗନ୍ନାଥ ରାଧା ଦାମୋଦର ବେଶ ହୁଅନ୍ତି । ଶ୍ରୀମନ୍ଦିର ଗାତ୍ରରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ଚିତ୍ର ବୈଷ୍ଣବ ପ୍ରଭାବକୁ ସାବ୍ୟସ୍ତକରେ।

ଉତ୍ତର ଭାରତର ପ୍ରସିଦ୍ଧ ରାମଭକ୍ତ ସନ୍ଥ ତୁଳସୀ ଦାସ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ରାମ, ଲକ୍ଷ୍ମଣ ଓ ସୀତା ରୂପେ ଦର୍ଶନ କରି ଅଭିଭୂତ ହୋଇଯାଇଥିଲେ । ପଞ୍ଚସଖା ସାଧକ ବଳରାମ ଦାସ ସ୍ୱରଚିତ 'ଜଗମୋହନ ରାମାୟଣ'ରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ଅବତାର ରୂପେ ଗ୍ରହଣ କରିଛନ୍ତି । ଚୈତ୍ର ଶୁକ୍ଳ ନବମୀ (ରାମ ନବମୀ) ଦିନ ଶ୍ରୀମନ୍ଦିରରେ ଶ୍ରୀରାମ ଜନ୍ମ ଉତ୍ସବ ପାଳନ କରାଯାଏ । ପୁଷ୍ୟାଭିଷେକରେ ଶ୍ରୀଜଗନ୍ନାଥ ରଘୁନାଥ ବେଶ ହୁଅନ୍ତି ।

ଗାଣପତ୍ୟ ଧର୍ମ ସହିତ ଶ୍ରୀଜଗନ୍ନାଥଙ୍କର ନିବିଡ଼ି ସଂପର୍କ ଦେଖିବାକୁ ମିଳେ । ଏହି ଧର୍ମରେ ଶ୍ରୀଜଗନ୍ନାଥଙ୍କୁ ଉପାସ୍ୟ





ଦେବତା ଗଣପତି ଭାବରେ ଗ୍ରହଣ କରାଯାଇଛି । ସ୍ନାନ ପୂର୍ଣ୍ଣମୀ ଦିନ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ଗଣପତି ବେଶ ଧାରଣ କରନ୍ତି । ମହାରାଷ୍ଟ୍ରର ପ୍ରସିଦ୍ଧ ସନ୍ଥ ଗଣପତି ଭଟ୍ଟ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ତାଙ୍କର ଇଷ୍ଟଦେବତା ସିଦ୍ଧିଦାୟକ ଗଣେଶଙ୍କୁ ଦର୍ଶନ କରି ଜୀବନକୁ କୃତାର୍ଥ କରିଥିଲେ ।

କେବଳ ସେତିକ ନୁହେଁ, ଏହି କ୍ଷେତ୍ରରେ ଯବନ ସାଲବେଗ ପ୍ରଭୁ ଜଗନ୍ନାଥଙ୍କ ଅପାର କୃପା ଲାଭ କରି ରୋଗରୁ ଆରୋଗ୍ୟ ଲାଭ କରିବା ସହ ମହାପ୍ରଭୁଙ୍କର ପରମଭକ୍ତ ପାଲଟି ଯାଇଥିଲେ । ସେହିଭଳି ଯବନ ତକି ଖାଁ ଓ କଳାପାହାଡ଼ ଅନ୍ତିମ ସମୟରେ ଶ୍ରୀଜଗନ୍ନାଥଙ୍କ ପ୍ରତି ନିଜ ନିଜ ଅନ୍ତରର ଗଭୀର ଭକ୍ତିଜ୍ଞାପନ କରିବା ସହ ପ୍ରଭୁଙ୍କର ଭକ୍ତ ଭାବରେ ଶ୍ରୀଚରଣରେ ଶରଣ ନେଇଥିଲେ ।

ଖ୍ରୀଷ୍ଟଧର୍ମର ପ୍ରତିଷ୍ଠାତା ମହାପୁରୁଷ ଯୀଶୁଙ୍କ ସଂପର୍କିତ ଗବେଷଣାରୁ ଜଣାପଡ଼େ ଯେ ସେ ମାତ୍ର ଚଉଦବର୍ଷ ବୟସରେ କେତେକ ବଣିକମାନଙ୍କ ଗହଣରେ ଭାରତ ଆସି ଜଗନ୍ନାଥ ପୀଠରେ ପହଞ୍ଚିଲେ । ଭାରତ ଆଗମନର ଉଦ୍ଦେଶ୍ୟ ଥିଲା ନିଜକୁ ଉନ୍ନତ ମାନବ ରୂପେ ଗଢ଼ିବା ଓ ମହାପୁରୁଷ ବୁଦ୍ଧଙ୍କର ଧର୍ମନୀତି ଶିକ୍ଷା କରିବା । ଶ୍ରୀକ୍ଷେତ୍ରରେ ଶ୍ୱେତକାୟ ବ୍ରହ୍ମପୂଜକମାନେ ତାଙ୍କୁ ଆନନ୍ଦର ସହ ଗ୍ରହଣ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ଏଠାରେ ଯୀଶୁ ଭାରତୀୟ ଭାଷା ଶିକ୍ଷା କରିବା ସହ ବେଦଗ୍ରନ୍ଥ ଅଧ୍ୟୟନ କରି ତାହାକୁ ଉତ୍ତମ ରୂପେ ବୁଝିବା ପାଇଁ ଶିକ୍ଷା ଲାଭ କରିଥିଲେ । ଯୀଶୁ ଭାରତବର୍ଷରେ ମୋଟ ବାରବର୍ଷ କଟାଇବା ପରେ ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ କରି ସେଠାରେ ସ୍ୱଧର୍ମ ପ୍ରଚାର କାର୍ଯ୍ୟରେ ଲିପ୍ତ ହୋଇଥିଲେ । ଏଥିରୁ ଶ୍ରୀକ୍ଷେତ୍ର କିଭଳି ସମନ୍ୱୟର ପୀଠ ଥିଲା ତାହା ପ୍ରତିପାଦିତ ହୋଇଥାଏ ।

ଏହି ଜଗନ୍ନାଥ ସଂସ୍କୃତି ମହାମିଳନ ଓ ଅପୂର୍ବ ସମନ୍ୱୟର ସଂସ୍କୃତି । ଏହି ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ସମସ୍ତେ ନିଜର କରିବାକୁ ଆସି ସେହି ବିଶାଳ କଳେବର ଭିତରେ ଯେପରି ସମାହିତ ହୋଇଯାଇଛନ୍ତି, ତାହା ହିଁ ଏ ସଂସ୍କୃତିର ବିଶେଷତ୍ୱ । ସବୁ ଧର୍ମ ଓ ମତବାଦକୁ ନିଜ ଭିତରେ କୋଳାଗ୍ରତ କରି ଏବଂ ସବୁ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଉଠି ଏଠାରେ ସାମ୍ୟ, ଶାନ୍ତି, ମୈତ୍ରୀ ଓ ପ୍ରୀତିର ପତିତପାବନ ବାନା ଫର୍‌ଫର୍ ହୋଇ ଉଡ଼ୁଥାଏ । ସେହି ସମନ୍ୱୟର ଅନ୍ୟତମ ପ୍ରତୀକ ଶ୍ରୀକ୍ଷେତ୍ରର ବିଶ୍ୱ ପ୍ରସିଦ୍ଧ ରଥଯାତ୍ରାର ବିଶାଳ ଜନସ୍ରୋତ ଭିତରୁ କେବଳ ମାନବତାର ଜୟ ଜୟକାର ଛଡ଼ା ଅନ୍ୟ କିଛି ଶୁଭେ ନାହିଁ ।

ଅଧ୍ୟାପକ
ଇତିହାସ ବିଭାଗ, ଡ଼େଲାଙ୍ଗ ମହାବିଦ୍ୟାଳୟ
ଡ଼େଲାଙ୍ଗ, ପୁରୀ





# ସେ ସେବ୍ୟ ପୁଣି ସେ ସେବକ

**ପଣ୍ଡିତ ସୂର୍ଯ୍ୟମଣି ଖୁଣ୍ଟିଆ**

ମହାପ୍ରଭୁ ଶ୍ରୀଜଗନ୍ନାଥ ଯେ ବିସ୍ମୟକର ଦେବତା ଏକଥା ଆଉ ବାରମ୍ବାର କହିବାର ପ୍ରୟୋଜନ ନାହିଁ । କେଉଁ ତତ୍ତ୍ୱ କେଉଁ ଉପାଦାନକୁ ଆଧାର କରି ସେ ନୀଳାଦ୍ରିର ରତ୍ନସିଂହାସନ ଉପରେ ବସିଛନ୍ତି, ସେ କଥା ବହୁ ପ୍ରାଜ୍ଞ ପଣ୍ଡିତ ଚିନ୍ତାକରି ମଧ୍ୟ ସ୍ଥିର କରିପାରି ନାହାନ୍ତି । ସେ ସମସ୍ତ ଯୁକ୍ତି, ତର୍କ ଓ ବିତର୍କର ବହୁ ଊର୍ଦ୍ଧ୍ୱରେ । ସେ ଅନାଦି, ସେ ଅନନ୍ତ ଓ ସେ ଅଚିନ୍ତ୍ୟ, ଅଭାବନୀୟ । ସାଧାରଣ ମଣିଷ ପାଖରେ ଏତେବେଶି ଜ୍ଞାନ ନାହିଁ ଯେ ତାଙ୍କୁ କଳନା କରିପାରିବ । ସମସ୍ତଙ୍କ ବିଚାରରେ ସେ ସେବ୍ୟ – ଅର୍ଥାତ୍ ସମସ୍ତ ଜୀବଜଗତର ସେ ସେବାର ଅଧିକାରୀ । ଜୀବମାତ୍ରକେ ତାଙ୍କର ସେବା କରନ୍ତି । ଜୀବ ତାଙ୍କର ସେବକ, ସେବ୍ୟ ଭାବରେ ତାଙ୍କର ସେବା କଲେ ସେବକ ଭବ ସାଗରରୁ ପାରିହୁଏ ।



ଶ୍ରୀରାମ ଚରିତ ମାନସ ଉତ୍ତରକାଣ୍ଡ ୧୧୯ (କ) ଦୋହାରେ କହିଛନ୍ତି ସନ୍ଥ ତୁଳସୀଦାସ । ଜୀବ ଓ ଈଶ୍ୱର ଭିତରେ ସେ ଭାବଟି ସୃଷ୍ଟି ନ ହେଲେ ଅର୍ଥାତ୍ ଜୀବନ ସେବକ ଓ ଈଶ୍ୱର ସେବ୍ୟ... ସେଇ ଭାବଟି ସୃଷ୍ଟି ନ ହେଲେ ଭବ ସଂସାରକୁ ପାର ହୋଇହୁଏ ନାହିଁ ।

କିନ୍ତୁ ଶ୍ରୀଜଗନ୍ନାଥ ଚେତନାରେ ଯିଏ ସେବ୍ୟ ସେଇ ହିଁ ସେବକ । ପୁଣି ଯିଏ ସେବକ ସେ ସେବ୍ୟ । ଶ୍ରୀଜଗନ୍ନାଥ ଯେପରି ଏ ଜୀବନଜଗତର ସେବ୍ୟ, ସେହିପରି ସେ ସମଗ୍ର ଜୀବଜଗତର ସେବକ । ଏକ ଅନନ୍ୟ ଭାବନା । ଏ ଭାବନାକୁ ହୃଦୟଙ୍ଗମ କରିବା କଠିନ ବ୍ୟାପାର । ସ୍କନ୍ଦପୁରାଣ ବୈଷ୍ଣବଖଣ୍ଡ ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ ଦଶମ ଅଧ୍ୟାୟ ୧୦୭ ଶ୍ଳୋକରେ ବଡ଼ ଚମତ୍କାର ଭାବରେ ଏହି କଥାଟି କୁହାଯାଇଛି । ଶ୍ଳୋକଟି ଏହିପରି –

ସେବ୍ୟ ସେବକ ଭାବୋହି
ଭେଦୋନାଥ ପ୍ରବର୍ତ୍ତତେ
ଅନ୍ତର୍ଯ୍ୟାମୀଯଦା ଦେବ
ସର୍ବେଷାଂ ହୃଦି ସଂସ୍ଥିତଃ
ସେବ୍ୟୋ ବା ସେବକୋ ବାପି
ତ୍ୱତ୍ତୋ ନାନ୍ୟୋସ୍ତି କଶ୍ଚନ

ଅର୍ଥାତ୍ – ହେ ନାଥ ! ମୁଁ ସେବକ ତମେ ସେବ୍ୟ, ଏଇମାତ୍ର ଭେଦ ବିଦ୍ୟମାନ । ହେ ଅନ୍ତର୍ଯ୍ୟାମିନ୍ ! ହେ ଦେବ ! ତୁମେ ଯେତେବେଳେ ସମସ୍ତଙ୍କ ଅନ୍ତରରେ ଅବସ୍ଥାନ କର ସେତେବେଳେ ସେବ୍ୟ ହୁଅ ଅଥବା ସେବକ ହୁଅ । ତୁମ ଭିନ୍ନ ଅନ୍ୟ କେହି ନାହିଁ । ଏହି ଭାବନାଟି ଯେପରି ଅନନ୍ୟ ସେହିପରି ଜଟିଳ । ତାଙ୍କ ବିନା ଦ୍ୱିତୀୟ କେହି ନାହିଁ । ସେ ଜୀବ ଭିତରେ ରହି ସେବକ



ପୁଣି ଈଶ୍ୱର ରୂପରେ ବା ଜଗନ୍ନାଥ ରୂପରେ ସେବ୍ୟ । ଯେ ଜୀବ ସେଇ ଈଶ୍ୱର । ଜୀବ ଭିତରେ ଆତ୍ମା ସ୍ୱରୂପରେ ସେ କାର୍ଯ୍ୟରତ ।

ତେଣୁ ଜୀବ ଭିତରେ ସେ ରହି ସେବକ ପୁଣି ଈଶ୍ୱର ବା ଜଗନ୍ନାଥଙ୍କ ରୂପରେ ସେ ସେବ୍ୟ । ସେହି ହିଁ ଜୀବନ ଭିତରେ ସେବାର ଭାବନା ଉଦ୍ରେକ କରି ତ୍ରିଜଗତରେ ସେବା କରିବାର ସୁଯୋଗ ସୃଷ୍ଟି କରନ୍ତି । ଜୀବ ଏବଂ ଈଶ୍ୱରଙ୍କ ଭିତରେ ଭେଦଭାବନା ସୃଷ୍ଟି କରିବା ଅପରାଧୀୟ ବ୍ୟାପାର । ଯିଏ ଜୀବ ସେ ଈଶ୍ୱର – ଯେ ଈଶ୍ୱର ସେ ଜୀବ । ଦୁଇଟିଯାକ ଚରିତ୍ର ତାଙ୍କର । ଜୀବ ଏବଂ ଈଶ୍ୱର ଅଭିନ୍ନ ।

ବାସ୍ତବରେ ଏହି ତତ୍ତ୍ୱଟିକୁ ଉପଲବ୍ଧି କରିବା ମୋଟେ ସହଜ ବ୍ୟାପାର ନୁହେଁ । କିନ୍ତୁ ପୁରାଣମାନଙ୍କ ପୃଷ୍ଠାରେ କାହାଣୀ ଆକାରରେ ଏଇ ତଥ୍ୟଟିକୁ ବ୍ୟାଖ୍ୟା କରାଯାଇଛି । ଶ୍ରୀକୃଷ୍ଣ ଭଗବାନ । ସେ ଅର୍ଜୁନଙ୍କର ସେବ୍ୟ – ପୁଣି ସେବକ । ସେ ଅର୍ଜୁନଙ୍କ ଜୀବନରଥକୁ ଚଳାଇବାବେଳେ ସେବ୍ୟ – ପୁଣି ଅର୍ଜୁନଙ୍କର କପିଧ୍ୱଜ ରଥକୁ ଚଳାଇବାବେଳେ ସେ ସେବକ ।

ଶ୍ରୀକୃଷ୍ଣ ସୁଦାମାଙ୍କର ସେବ୍ୟ – ପୁଣି ସୁଦାମାଙ୍କର ପାଦକୁ ଘଷିମାଜି ଧୋଇଲାବେଳେ ସେ ସେବକ ।

ସାଧାରଣ ମଣିଷ ମୁଁ କରୁଛି ବୋଲି ସବୁବେଳେ ଅଭିମାନ କରେ ।

'ଅହମ୍ କରୋମିତି ବୃଥାଭିମାନଃ' (ଅଧ୍ୟାତ୍ମ ରାମାୟଣ)

ସତରେ 'ମୁଁ କରୁଛି... ମୁଁ କରୁଛି' ବୋଲି ଜୀବ ଅଭିମାନ କରେ । ମାତ୍ର ଜୀବ କ'ଣ କିଛି କରେ ? କର୍ତ୍ତା ବା କଳାବାଲା ଜଣେ । ପାଣ୍ଡବ ଗୀତାର ସେଇ ପବିତ୍ର ଶ୍ଳୋକଟି ସମସ୍ତ ଶଙ୍କାର ସମାଧାନ କରିଦିଏ । ଦୁର୍ଯ୍ୟୋଧନ ଯେତେବେଳେ ମୃତ୍ୟୁଶଯ୍ୟାରେ ସେତିକିବେଳେ ସେ ଭଗବାନ ଶ୍ରୀକୃଷ୍ଣଙ୍କୁ କହିଛନ୍ତି ––

ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତି<br>
ଜାନାମି ପାପଂ ନ ଚମେ ନିବୃତ୍ତିଃ<br>
କେନାପି ଦେବେନ ହୃଦି ସ୍ଥିତେନ<br>
ଯଥା ନିଯୁକ୍ତୋସ୍ମି ତଥା କରୋମି ।<br>
(ପାଣ୍ଡବ ଗୀତା – ୫୮)

ଅର୍ଥାତ୍ – ଦୁର୍ଯ୍ୟୋଧନ କହିଛନ୍ତି, ହେ ହୃଷୀକେଶ ! ଆପଣ କ'ଣ ଭାବୁଛନ୍ତି ଧର୍ମ କ'ଣ ମୁଁ ଜାଣିନାହିଁ, ମୁଁ ଜାଣେ ଧର୍ମ କ'ଣ ? ତଥାପି ଧର୍ମରେ ମୋର ପ୍ରବୃତ୍ତି ଜନ୍ମିନାହିଁ । ଜାଣିଛି ପାପ କ'ଣ – ତଥାପି ତହିଁରୁ ନିବୃତ୍ତି ହେଉନାହିଁ । କାରଣ କୌଣସି ଜଣେ ଦେବତା ମୋ ହୃଦୟରେ ରହି ମୋତେ ଯେଉଁ ନିର୍ଦ୍ଦେଶ ଦେଉଛନ୍ତି (ସେ ଆପଣେ ନିଶ୍ଚୟ) ମୁଁ ସେହିପରି କରୁଛି । ଅର୍ଥାତ୍ ସେବ୍ୟହୋଇ ଜୀବର ହୃଦୟରେ ବସିବା ଓ କିପରି ସେବା କରାଯିବା ଉଚିତ୍ ସେଥିପାଇଁ ନିର୍ଦ୍ଦେଶ ଦେବା ଏସବୁ ଜଣକର କାର୍ଯ୍ୟ । ତେଣୁ ପୁଣିଥରେ କୁହାଯାଇ ପାରିବ ସେ ସେବ୍ୟ – ପୁଣି ସେ ସେବକ ।

ଏଇ ସିଦ୍ଧାନ୍ତ ନେଲାବେଳେ ମନରେ ପ୍ରଶ୍ନ ଉଠେ – ଏହିପରି ଭାବନାଟି ସାଧାରଣ ମଣିଷ ମନରେ ଜାଗ୍ରତ ହେବା କ'ଣ ସହଜ ବ୍ୟାପାର ? ମଣିଷ ତ ଆତ୍ମାଭିମାନ ବା ଅହଂକାରରେ ଏପରି ମଜ୍‌ଗୁଲ୍ ଯେ ବେଳେବେଳେ ସେ ଈଶ୍ୱରଙ୍କ ସତ୍ତାକୁ ବି ଭୁଲିଯାଏ ଏବଂ ନିଜକୁ ଏ ଜଗତର ସର୍ବମୟ କର୍ତ୍ତା ବୋଲି ବିଚାର କରେ । ମାତ୍ର ସେଇ ସ୍କନ୍ଦପୁରାଣ ପୁରୁଷୋତ୍ତମ ମାହାତ୍ମ୍ୟମ୍ ଦଶମ ଅଧ୍ୟାୟ ୧୦୮ ଶ୍ଳୋକରେ ସେ କଥାଟି ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଯଥା –

ଇତି ଭାବନାୟା କୃତାବଧାନାଃ<br>
ପ୍ରଣମନ୍ତଃ ସତତଂ ଚ କୀର୍ତ୍ତୟନ୍ତଃ<br>
ହରିମବ୍‌ଜଜବନ୍ଦ୍ୟ ପାଦପଦ୍ମଂ<br>
ପ୍ରଭବଂଜତ ସ୍ତୃଣବଜ୍ଜ ଗଜ୍ଜନେଷୁ ।

ଅର୍ଥାତ୍ ଏହିପରି ଭାବନା କରି ଏକାଗ୍ର ଚିତ୍ତରେ ଯେଉଁମାନେ ବ୍ରହ୍ମାଙ୍କ ଦ୍ୱାରା ଯାହାଙ୍କ ପାଦପଦ୍ମ ବନ୍ଦନୀୟ ଏତାଦୃଶ ଶ୍ରୀହରିଙ୍କୁ ସଦାସର୍ବଦା ପ୍ରଣାମ କରନ୍ତି ଏବଂ ତଦ୍‌ଗତ



ପ୍ରାଣରେ ତଦୀୟ ନାମ ସଂକୀର୍ତ୍ତନ କରନ୍ତି, ସେମାନଙ୍କ ନିକଟରେ ଜଗତବାସୀ ନିଖିଳଲୋକ ତୃଣବତ୍ ତୁଚ୍ଛ ।

ଏପରି ଭାବନାର ବଶବର୍ତ୍ତୀ ହେବା ବା ସେହି ଭାବନା ଅନୁଯାୟୀ ନିଜର ଦୈନନ୍ଦିନ ଜୀବନକୁ ପରିଚାଳନା କରିବା ସହଜ ବ୍ୟାପାର ନୁହେଁ । ଜୀବନରେ ଏହି ଭାବନାଟିକୁ ଯେଉଁ ବ୍ୟକ୍ତି ଅନୁଭବ କରନ୍ତି ଶାସ୍ତ୍ର ତାଙ୍କୁ ବୈଷ୍ଣବ ବୋଲି କହନ୍ତି । ବୈଷ୍ଣବ ହେବା ସହଜ କଥା ନୁହଁ । ଚିତାଚୈତନ୍ୟ କରି ବିଚିତ୍ରମାଳାମାନ ଗଳାରେ ଧାରଣ କଲେ କେହି ବୈଷ୍ଣବ ହୁଅନ୍ତି ନାହିଁ । ବୈଷ୍ଣବ ହେବା ପାଇଁ ଯେଉଁ ପରମ ଗୁଣର ଆବଶ୍ୟକ ସେକଥା ସେହି ଅଧ୍ୟାୟର ୧୦୯ ଶ୍ଳୋକରେ କୁହାଯାଇଛି ।

ଉପକୃତି କୁଶଳା ଜଗଦ୍‌ସ୍ୱଜସ୍ରଂ<br>
ପରକୁଶଳାନି ନିଜାନିମନ୍ୟେମନ୍ୟମାନାଃ<br>
ଅପିପରାପରି ଭାବନେ ଦୟାର୍ଦ୍ରାଃ<br>
ଶିବମନସଃ ଖଳୁ ବୈଷ୍ଣବାଃ ପ୍ରସିଦ୍ଧାଃ ।

ଅର୍ଥାତ୍ ଯେଉଁମାନେ ସର୍ବଦା ଅନ୍ୟର ଉପକାର କରିବାରେ କୁଶଳ, ଅନ୍ୟ ପ୍ରାଣୀର କୁଶଳରେ ନିଜର କୁଶଳ ମନେ କରନ୍ତି, ପର ଦୁଃଖରେ କାତର ହୋଇ କେବଳ ଅନ୍ୟର ମଂଗଳ କାମନା କରନ୍ତି, ତାଦୃଶ ଦୟାବାନ୍ ସଦାଶୟ ବ୍ୟକ୍ତିଗଣ ହିଁ ବୈଷ୍ଣବ ବୋଲି ବିଖ୍ୟାତ ।

ସମଗ୍ର ମାନବ ସମାଜ ପାଇଁ ଏ ଶ୍ଳୋକଟି ଉପାଦେୟ । ବିଶ୍ୱରେ ଯେତେଧର୍ମ ପ୍ରଚାର କରାଯାଇଛି ବା ଏଯାବତ୍ ଯେତେ ଧର୍ମ ବଂଚି ରହିଛି, ସବୁ ଧର୍ମରେ ବୋଧହୁଏ ଏଇ କଥାଟିକୁ ମୂଳମନ୍ତ୍ର କରାଯାଇଛି । ଏପରି କୌଣସି ଧର୍ମ ନାହିଁ ଯେଉଁଥିରେ ପରୋପକାର କରିବାର କଥା କୁହାଯାଇନି । ଅନ୍ୟକୁ ନିଜ ପରି ବିଚାରକରି ପରୋପକାର କରିବାର ବାଣୀ ସବୁଧର୍ମର ଧର୍ମଯାଜକମାନେ କହିଛନ୍ତି । ଏପରିକି ମହିମାଧର୍ମର ପରମସନ୍ଥ ଭୀମଭୋଇ କହିଦେଲେ –

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁଦେଖୁ କେବା ସହୁ ।<br>
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ॥

ମଣିଷ ଅନ୍ୟ ଜଣକୁ ନିଜପରି ମଣି କେତେବେଳେ, ଯେତେବେଳେ ସେ ବିଶ୍ୱାସ କରିବ ଯେ ତା' ଭିତରେ ଥିବା ଈଶ୍ୱର ଅନ୍ୟ ଭିତରେ ବି ଅଛନ୍ତି । ଯେତେବେଳେ ସିଏ ନିଜକୁ ଜଣେ ବୈଷ୍ଣବ କରିଦେବ, ସେତେବେଳେ ସେ ଅନୁଭବ କରିବ ସେ ନିଜେ ସେବକ ଓ ସେ ନିଜେ ସେବ୍ୟ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଉଛି ନିଜ ଭିତରେ ସେବକ ଭାବଟିକୁ ଉଦ୍ରେକ କରିବା ।

ଶ୍ରୀଜଗନ୍ନାଥ ଚେତନା ଭିତରେ ଏଇ ସେବକ ଭାବଟିକୁ ସର୍ବୋଚ୍ଚ ସ୍ଥାନରେ ରଖାଯାଇଛି । ଶ୍ରୀଜଗନ୍ନାଥଙ୍କ ପ୍ରଥମ ସେବକ ଶ୍ରୀଶ୍ରୀଗଜପତି ମହାରାଜ ଶ୍ରୀଜଗନ୍ନାଥଙ୍କର ସେବକ... ପୁଣି ଜଗତବାସୀଙ୍କ ପାଇଁ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ବିଗ୍ରହ – ସେ ସେବ୍ୟ । କେଡ଼େ ଚମତ୍କାର ଭାବନା ସତେ । ମହାପ୍ରଭୁ ଶ୍ରୀଜଗନ୍ନାଥ ସେବକ ହୋଇ ଭକ୍ତର ସେବା କରିପାରନ୍ତି । ଭକ୍ତର ମଂଗଳ ପାଇଁ ସେ ସବୁକିଛି କରିପାରନ୍ତି । ସେ ଭକ୍ତ ପଛରେ ଧାଇଁପାରନ୍ତି । ଶ୍ରୀବତ୍ସବ୍ରାହ୍ମଣର ପଦଚିହ୍ନକୁ ହୃଦୟରେ ଧାରଣ କରିପାରନ୍ତି । ସେ ନିଜେ ଆଚରଣ କରି ଅନ୍ୟକୁ ଶିଖାଇ ଦିଅନ୍ତି ସେବକଟିଏ ହେବା ପାଇଁ । ତାଙ୍କ ଦର୍ଶନରେ ସେବକର ସ୍ଥାନ ସେବ୍ୟଠାରୁ ବହୁ ଉର୍ଦ୍ଧ୍ୱରେ । ତାଙ୍କ ସେବକ ଭିତରେ କିଏ କେଉଁ ଜାତିର, କେଉଁ ଧର୍ମର ସେ କଥା ସେ ବିଚାର କରନ୍ତି ନାହିଁ । ସେଇଥିପାଇଁ ତ ଯବନ ସେବକ ସାଲବେଗଙ୍କ ପାଇଁ ରଥ ଅଟକାଇ ଦେଇପାରନ୍ତି ବା ବଳରାମ ଦାସଙ୍କର ବାଲିରଥରେ ବସିବା ପାଇଁ ବାଙ୍କିମୁହାଣ ପର୍ଯ୍ୟନ୍ତ ଧାଇଁ ଯାଇପାରନ୍ତି ।

ସେଥିପାଇଁ ଭକ୍ତର ଐକାନ୍ତିକ ଭକ୍ତିର ଆବଶ୍ୟକ । ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟରେ ଆଉ ଗୋଟିଏ ଚମତ୍କାର ଶ୍ଳୋକ କୁହାଯାଇଛି –

ବିଗଳିତମଦମାନ ଶୁଦ୍ଧଚିତ୍ତାଃ<br>
ପ୍ରସଭ ବିନଶ୍ୟ ଦହଙ୍କୃତିପ୍ରଶାନ୍ତାଃ





ନରହରିମମରାପ୍ତବଂଧୁମିଷ୍ଟ
କ୍ଷୟିତଶୁଚଃ ଖଳୁବୈଷ୍ଣବାଜୟନ୍ତି ॥

ଯେଉଁମାନଙ୍କର ଦର୍ପ ଅଭିମାନ ଓ ସମସ୍ତ ଅହଂକାର ବିଗଳିତ ହୋଇଅଛି, ଦେବତାମାନଙ୍କର ଆତ୍ମୀୟବନ୍ଧୁ ଶ୍ରୀନରହରିଙ୍କୁ ଅର୍ଚ୍ଚନା କରି ଯାହାଙ୍କ ଚିତ୍ତ ନିର୍ମଳ ହୋଇଅଛି, ଶ୍ରୀହରିଙ୍କର ଚରଣାରବିନ୍ଦ ସେବା କରି ଯେଉଁମାନେ ଶୋକମୁକ୍ତ ହୋଇଛନ୍ତି, ସେମାନେ ବୈଷ୍ଣବ ଓ ସର୍ବୋତ୍‌ଭାବରେ ସେମାନଙ୍କର ଜୟ ହୋଇଥାଏ ।

ଶ୍ରୀଜଗନ୍ନାଥ ଚେତନାରେ ଏଇ ଭାବନାଟି ଅତ୍ୟନ୍ତ ଧୀର ଭାବରେ ଅନ୍ତଃସଲିଳା ଫଲ୍‌ଗୁପରି ବହି ଚାଲିଛି । ପରକୁ ନିଜପରି ମଣି ପରର ଉପକାର କରିବା ଏବଂ ପରକୁ ଆପଣାର କରିବା ଭାବଟି ହିଁ ଜଗନ୍ନାଥ ଚେତନାର ମୂଳାଧାର । ମନ ଭିତରେ ଥିବା ସମସ୍ତ ଗର୍ବ ଅହଂକାରକୁ ତ୍ୟାଗକରି ମନକୁ ସଫା କରିଦେଇ ବାହୁବିସ୍ତାରି ତାଙ୍କ ଆଡ଼କୁ ହାତ ବଢ଼ାଇଦେଲେ ସେ ଭକ୍ତଙ୍କୁ କୋଳେଇ ନେଇ ଆପଣାର କରିନିଅନ୍ତି ସେତେବେଳେ ଭକ୍ତ ଭଗବାନ ଏକାକାର ହୋଇଯାଆନ୍ତି । ସେବ୍ୟ ଓ ସେବକ ଭିତରେ ଭେଦ ରହେ ନାହିଁ । ସେ ସେହି ମୂଳତତ୍ତ୍ୱଟିକୁ ଆବୋରି ଧରି ବସିଛନ୍ତି ରତ୍ନସିଂହାସନ ଉପରେ । ଯେପରି ସେ ଡାକିଡାକି କହୁଛନ୍ତି – ମୁଁ ଖାଲି ସେବ୍ୟ ନୁହେଁରେ ମଣିଷ... ମୁଁ ସେବକ । ମୁଁ ଜୀବଜଗତର ପ୍ରଥମ ସେବକ, ମୋ ସେବାରେ ମୋଟେ ବିରାମ ନାହିଁ । ଟିକିଏ ଯେଉଁଠି ବିରାମ ନେଇଗଲେ ପୃଥିବୀ ସ୍ଥାଣୁ ପାଲଟିଯିବ, ସ୍ଥିର ହୋଇଯିବ, ପୃଥିବୀ ଚହଲି ଯିବ । ନର୍କରେ ପରିଣତ ହୋଇଯିବ ।

ତେଣୁ ମଣିଷ ଯେତିକି ତାଙ୍କର ସେବା କରେ, ତା' ତୁଳନାରେ ତାଙ୍କର ସେବା ସହସ୍ରଗୁଣ । ଏ ଆଲୋଚନାକୁ ଶେଷ କରିବା ପୂର୍ବରୁ ପୁଣି ସେଇ ମୂଳ ଶ୍ଳୋକକୁ ମନେ ପକାଇବା ବିଧେୟ ହେବ ।

ସେବ୍ୟୋ ବା ସେବକୋ ବାପି । ଆମ ମନରେ ବାରମ୍ବାର ପ୍ରଶ୍ନ ଉଠେ ସେ ସେବ୍ୟ ନା ସେବକ ? ବୈଷ୍ଣବମାନଙ୍କ ମତରେ ସେ ସେବ୍ୟ ପୁଣି ସେ ସେବକ ।

ଶ୍ରୀଜଗନ୍ନାଥ ଚେତନା ଓ ଦର୍ଶନକୁ ନେଇ ରାଶିରାଶି କଥା କୁହାଚାଲିଛି । ଏତେ କୁହାଗଲାଣି ଯେ ତା'ର କଳନା କରାଯାଇ ପାରିବ ନାହିଁ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଂଚିବା ସହଜ ବ୍ୟାପାର ନୁହେଁ । ଜଣେ ସାଧାରଣ ଚିନ୍ତକ ଏତିକି ଅନ୍ତତଃ ସ୍ୱୀକାର କରି ସନ୍ତୁଷ୍ଟ ହେଉ ଯେ ଶ୍ରୀଜଗନ୍ନାଥ ହେଉଛନ୍ତି ପରମ ସେବ୍ୟ ଓ ପରମ ସେବକ । ଜୀବ ଯେତିକି ତାଙ୍କୁ ମନେପକାଏ ଈଶ୍ୱର ଶ୍ରୀଜଗନ୍ନାଥ ସହସ୍ରଗୁଣରେ ଜୀବଜଗତର ସେବାରେ ଲାଗିଛନ୍ତି । ତେବେ ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟମ୍ ଦଶମ ଅଧ୍ୟାୟ ୬୬ ଶ୍ଳୋକରେ ଯାହା କୁହାଯାଇଛି, ତାକୁ ସ୍ମରଣ କରାଯାଇପାରେ –

ଚତୁର୍ବର୍ଗ ଫଳାଭକ୍ତିର୍ବିଷ୍ଣୌ ନାଲ୍ପତପଫଳମ୍

ଅର୍ଥାତ୍ ଭଗବାନ ବିଷ୍ଣୁଙ୍କ ପ୍ରତି ଭକ୍ତି ଜନ୍ମିଲେ ଚତୁର୍ବର୍ଗ ଫଳଲାଭ ହୋଇଥାଏ । ବିଶ୍ୱମାନବ ସମାଜକୁ ସେଇ ଫଳ ମିଳୁ, ଏହା ହିଁ ଆଜିର ଭାବନା ହେବା ଉଚିତ ।

ବେଗନା, ଧନେଶ୍ୱର
କୋରାଇ, ଯାଜପୁର–୭୫୫୦୨୨





# ଶଙ୍କା ପଞ୍ଚକମ୍

ପଣ୍ଡିତ ସୂର୍ଯ୍ୟନାରାୟଣ ରଥଶର୍ମା

**୧) ଚତୁଃଧାମ ମଧ୍ୟରେ ପୁରୀ (ପୁରୁଷୋତ୍ତମ) କାହିଁକି ପରିଗଣିତ ହେଲା ?**

ତପସ୍ୟା, ଯଜ୍ଞ, ସେବାପୂଜା ଓ ନାମ ଆର୍ଯ୍ୟସାଧନ ମାର୍ଗର ମୁଖ୍ୟ ଚାରିଗୋଟି ଉପାୟ ଅଟେ। ଚତୁର୍ମାର୍ଗଂ ହି ସାଧନମ୍ ହି ସାଧନମ୍ ଏହି ଚାରିଗୋଟି ମାର୍ଗକୁ କେନ୍ଦ୍ରକରି ଚାରିଧାମର ସ୍ଥାପନ ହୋଇଅଛି। ଭଗବାନ ନରନାରାୟଣ ସତ୍ୟଯୁଗରେ ବଦ୍ରିକାଶ୍ରମରେ



ତପସ୍ୟା କରି ତାକୁ ତପୋଭୂମି ରୂପରେ ସତ୍ୟଯୁଗର ଧାମ ରୂପରେ ପ୍ରତିଷ୍ଠା କରିଲେ।

ତ୍ରେତାଯୁଗରେ ସ୍ୱୟଂ ରାମଚନ୍ଦ୍ର ମହାଯଜ୍ଞରୁ ବାହାରି ରାମେଶ୍ୱରରେ ଶିବ ଓ ବିଷ୍ଣୁଙ୍କର ମିଶ୍ର ଯଜ୍ଞ କରି ସମନ୍ୱୟ ମତର ପ୍ରତିଷ୍ଠା କରି ଯଜ୍ଞ ସ୍ୱରୂପ ଯୁଗଧାମ ପ୍ରତିଷ୍ଠା କରିଲେ।

ଦ୍ୱାପର ଯୁଗରେ ଦ୍ୱାରକାରେ ସ୍ୱୟଂ ଶ୍ରୀକୃଷ୍ଣ ରାଜତ୍ୱ କରି ସେବା ଭାବରେ ପରାକାଷ୍ଠା (ଗୁରୁତ୍ୱ) ବଢାଇ ମୂଳ ଦ୍ୱାରକାକୁ ସେବାପୂଜାରେ ପ୍ରତୀକ ତୃତୀୟ ଯୁଗଧାମ ରୂପରେ ପ୍ରତିଷ୍ଠା କଲେ। କଳିରେ ସ୍ୱୟଂ ବ୍ରହ୍ମ ପୁରୁଷୋତ୍ତମ ଓଁକାର ବା ବ୍ରହ୍ମ ନାମରେ ପ୍ରତୀକ ରୂପରେ ପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ପ୍ରକଟ ହୋଇ ହରିକୀର୍ତ୍ତନ ସୂତ୍ରରେ ନାମମୟ ଧାମର ପ୍ରତିଷ୍ଠା କରିଲେ ।

ଧାମ ବ୍ରହ୍ମେଣ ସ୍ଥାପିତମ୍ ଅର୍ଥାତ୍ ଚାରିଗୋଟି ମୁଖ୍ୟ ଧାମ ସାଧନ ମାର୍ଗ ଉପରେ ଆଧାରିତ ହୋଇଥିବାରୁ ଜଗଦ୍‌ଗୁରୁ ଶଙ୍କର ଜ୍ୟୋତି, ଦ୍ୱାରକା, ସେତୁଶଙ୍କର ଓ ପୁରୀ ଏହି ୪ ଧାମ ପ୍ରତିଷ୍ଠା କରିଥିଲେ। ଆପ୍ତ ପ୍ରମାଣରୁ ଏହାହିଁ ଜଣାଯାଏ।

କୃତେଚ ବଦ୍ରିନାଥ ଶ୍ଚ ତ୍ରେତାୟାଂ ସେତୁଶଙ୍କରମ୍
ଦ୍ୱାପରେ ଦ୍ୱାରକାନାଥଂ କଳୌ ଶ୍ରୀ ପୁରୁଷୋତ୍ତମଂ

ସାଧନା ଉପରେ ଏହା ପ୍ରତିଷ୍ଠିତ ଅଟେ। ତେଣୁ ଏହି ଚିନ୍ତା ଅତି ପ୍ରାଚୀନ ଓ ସର୍ବଜନମାନ୍ୟ ଅଟେ।

କୃତେ ଚ ତପଶ୍ଚର୍ଯ୍ୟାଶ୍ଚ ତ୍ରେତୟାଂ ଯୁଗେ ମଖଃ
ଦ୍ୱାପରେ ପରିଚର୍ଯ୍ୟାଶ୍ଚ କଳୌ ନାମଂ ହି କେବଳମ୍।

**୨) ପୁରୀର ପ୍ରାଚୀନ ନାମ କ'ଣ ?**

ପୁରୀର ନାମ ମାର୍କଣ୍ଡେୟ ପୁରାଣରେ ଥିଲେ ମଧ୍ୟ ଏହାର ସର୍ବପ୍ରାଚୀନ ନାମ 'ଅନ୍ତର୍ବେଦୀ' ମହାଭାରତ ବନ ପର୍ବରେ ଅନ୍ତର୍ବେଦୀ ମିତିଖ୍ୟାତମ୍ ଆସିଅଛି।



ଗୀତର ପୁରୁଷୋତ୍ତମ ଯୋଗରେ (୧୫ଦଶ ଅଧ୍ୟାୟ) ଏହା ଲୋକରେ ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ର ରୂପରେ ହିଁ ନେଇଛନ୍ତି।

ସ୍କନ୍ଦ ପୁରାଣ ୧୨ ଅଧ୍ୟାୟରେ ପୁରୀ ଶଙ୍ଖାକାର ହୋଇଥିବାରୁ ଶଙ୍ଖକ୍ଷେତ୍ର ନାମରେ ମାନିଛନ୍ତି ଓ ସେହି କ୍ଷେତ୍ରରେ ଅଷ୍ଟଶକ୍ତି, ଅଷ୍ଟଶମ୍ଭୁ ଓ ପଞ୍ଚତୀର୍ଥ ଥିବାର ବର୍ଣ୍ଣନା କରିଅଛନ୍ତି।

ଦେବୀଭାଗବତ, କାଳୀକାପୁରାଣ ନୀଳତନ୍ତ୍ର ଏହିଠାରେ ସତୀଙ୍କର ପାଦ ପଡ଼ିଥିବାରୁ ଏହାକୁ ପାଦାପୀଠ ବା ଉଡ୍ଡୀୟାନ ପୀଠ ନାମଦେଇ ବିମଳାଙ୍କୁ ଭୈରବୀ ଓ ଜଗନ୍ନାଥଙ୍କୁ ଭୈରବ ବୋଲି କହିଛନ୍ତି।

ସ୍କନ୍ଦପୁରାଣ, ବାମଦେବ ସଂହିତା, କପିଳ ସଂହିତା, ଏଠାରେ ନୀଳପର୍ବତ ନାମକ ପବିତ୍ର ପର୍ବତର ଗୁହାରେ ପ୍ରଭୁ ପ୍ରଥମେ ବିରାଜିତ ଥିବାରୁ ଏହି କ୍ଷେତ୍ରକୁ 'ନୀଳାଦ୍ରି' ନାମ ଦେଇଛନ୍ତି।

ନୀଳଶିଖର ଶୃଙ୍ଗସ୍ଥ ବିଭ୍ରତିବପୁ ସ୍କନ୍ଦ ପୁରାଣ ୭।୭୧ ତଥା ତନ୍ତ୍ର ବିଶେଷତଃ ନୀଳତନ୍ତ୍ର, ଉଡ୍ଡାନ ତନ୍ତ୍ର, M.S.S କହନ୍ତି। ଏଠାରେ ନୀଳ ନାମକ ତନ୍ତ୍ର ମାର୍ଗର କେନ୍ଦ୍ର ଥିଲା । ତେଣୁ ଏହା ନୀଳକ୍ଷେତ୍ର ଅଟେ। ବାସ୍ତବରେ ତାରାତନ୍ତ୍ର ପ୍ରଥମ ପ୍ରକାରଣ ୮ମ ଶ୍ଳୋକ (ବାରଣାସୀ ପ୍ରକାଶନ)ରେ ମହାନୀଳ ଏକ ସାଧନା ମାର୍ଗଥିଲା। ନୀଳ ସରସ୍ୱତୀ ସାଧକମାନେ ଏହାକୁ ନୀଳକ୍ଷେତ୍ର କହନ୍ତି ।

ମହାଚୀନ ମାନୀଳଂ ନ ସାଧୟତି ଯୋ ନରାଃ
ନ ତସ୍ୟ ଶୋଧନ ଶକ୍ତିଂ କୁମ୍ଭିପାକେମହୀୟତେ ।

ତେଣୁ ପୁରାଣ ଯୁଗ ପୂର୍ବରୁ ଏହାର ନାମଥିଲା ଅନ୍ତର୍ବେଦୀ, ପୁରାଣଯୁଗରେ ପୁରୁଷୋତ୍ତମ କ୍ଷେତ୍ର, ଶଙ୍ଖକ୍ଷେତ୍ର, ନୀଳାଦ୍ରି ନାମ ଖ୍ୟାତ ଥିଲା। ତନ୍ତ୍ର ମତରେ ଏହାର ନାମ ଉଡ୍ଡୀୟାନ ପୀଠ ଅଟେ। ଏହି ପାଞ୍ଚଗୋଟି ପ୍ରାଚୀନ ନାମ ବ୍ୟତୀତ ଏହାକୁ ପତିତ ପାବନ କ୍ଷେତ୍ର, ମର୍ତ୍ତ୍ୟବୈକୁଣ୍ଠ, ଯମନିକ କ୍ଷେତ୍ର ପ୍ରଭୃତି କେତେଗୁଡିଏ ନାମକୁ ସଂସ୍କୃତ ସାହିତ୍ୟ ସ୍ୱୀକାର କରିଅଛନ୍ତି। ପ୍ରାଚୀନ ଐତିହାସିକ ଶିଳାଲିପିରେ ମଧ୍ୟ ପୁରୀ ପୁରୁଷୋତ୍ତମ କ୍ଷେତ୍ର ବୋଲି ବିଦିତ ହୋଇଛି।

ତାହା ମଧ୍ୟରୁ ଚନ୍ଦ୍ରିକା ଦେବୀଙ୍କର ୧୨୭୮ ଖ୍ରୀଷ୍ଟାବ୍ଦରେ ଅନନ୍ତ ବାସୁଦେବଙ୍କ ଅବସ୍ଥିତ ବିଷୟ ଉଲ୍ଲେଖ କରାଯାଉଛି। ଦାଶଗୋଦା ତାମ୍ରଶାସନରେ ରାଘବ ଦେବ ପୁରୁଷୋତ୍ତମ ନାମକୁ ପ୍ରଖ୍ୟାତ କରାଇ ଅଛନ୍ତି।

### ୩) ଜଗନ୍ନାଥଙ୍କର ପ୍ରଥମ ସ୍ଥାପନକର୍ତ୍ତା କିଏ ?

ଜଗନ୍ନାଥଙ୍କର ପ୍ରଥମ ସ୍ଥାପନ କର୍ତ୍ତା ବ୍ରହ୍ମାଙ୍କର ପଞ୍ଚମପୁରୁଷ, ସୂର୍ଯ୍ୟବଂଶର ରାଜା ଇନ୍ଦ୍ରଦ୍ୟୁମ୍ନ, ସେ ଅବନ୍ତୀ ଦେଶର ରାଜା ଥିଲେ। ସତ୍ୟଯୁଗରେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରଥମେ ଜଗନ୍ନାଥ ପ୍ରକଟ ହେଲେ ବୋଲି ସ୍କନ୍ଦପୁରାଣ କହନ୍ତି।

ଯସ୍ତୁ ସାକ୍ଷାତ ଜଗନ୍ନାଥଃ ଆବିର୍ଭୂତଃ କୃତେନ (୨୧ ଅଧ୍ୟାୟ) ସତ୍ୟ ଯୁଗରେ ଏହି ପୌରାଣିକ ପୁରୁଷ ପୂଜା ଖ୍ୟାତ ପାଇଁ ଚେଷ୍ଟା କରିଥିଲେ। ତ୍ରେତୟା ଯୁଗର କ୍ଷେତ୍ରଥିଲା, ମାତ୍ର ପୂଜା ଋଷିମାନଙ୍କ ଦ୍ୱାରାହିଁ ହେଉଥିଲା। ରାଜା ରତ୍ନଗ୍ରୀବ ତ୍ରେତାଯୁଗରେ ଦର୍ଶନ କରିବାକୁ ଆସିଥିବା ପଦ୍ମପୁରାଣ କହନ୍ତି।

ଏହି ଇନ୍ଦ୍ରଦ୍ୟୁମ୍ନଙ୍କ ସମୟ ହେଲା, ଦ୍ୱିତୀୟ ପରାର୍ଦ୍ଧ ସ୍ୱାୟମ୍ଭୁବ ମନୁଙ୍କ ରାଜତ୍ୱ କାଳର ଶ୍ୱେତ ବାରାହକଳ୍ପ। ଏତେ ବେଳକୁ ଦାରୁପୂଜା ଆରମ୍ଭ ହୋଇଥିଲା। ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରୀମନ୍ଦିରର ଶ୍ରାଦ୍ଧ ପରମ୍ପରାନୁସାରେ ଆଶ୍ୱମେଧି ଇନ୍ଦ୍ରଦ୍ୟୁମ୍ନ କହନ୍ତି, କେହି କେହି ଇନ୍ଦ୍ରଭୂତି, କେହିକେହି ବା ଇନ୍ଦ୍ରବୋଲି ମଧ୍ୟ କହନ୍ତି। ମାତ୍ର ଯାହା ଜଣାଯାଏ ଯେତେବେଳେ ଯେଉଁ ରାଜା ଜଗନ୍ନାଥଙ୍କ ପୂଜାରେ ନିକଟତମ ବ୍ୟକ୍ତି ରୂପରେ ଆସିଛନ୍ତି ସେ ନିଜକୁ ଇନ୍ଦ୍ରଦ୍ୟୁମ୍ନ ବୋଲାଇଥିବା ମାଦାଳପାଞ୍ଜିର ଯଯାତି କେଶରୀଙ୍କ ଇତିହାସରୁ ଜଣାଯାଏ। କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ମତରେ ତାହା ୧୫୬ କୋଟି ବର୍ଷ ତଳର କଥା ।



(ପୁରୁଷୋତ୍ତମ କ୍ଷେତ୍ରର ଇତିବୃତ୍ତ ପୁସ୍ତକ) ବାସ୍ତବରେ ସ୍ୱାୟମ୍ଭୁବ ମନୁଙ୍କ କାଳକୁ ଧରିଲେ ଏହା ସ୍ମରଣାତୀତ କାଳର କଥା ହେବ।

ସାମ୍ପ୍ରତ ମେ ଦ୍ୱିତୀୟ ତୁ ପରାର୍ଦ୍ଧେ ସସମସ୍ଥିତ
ମନୁ ସ୍ୱାୟମ୍ଭୁ ର୍ବୋନମ ଶ୍ୱେତ ବାରାହ କଳ୍ପକେ

ଶ୍ଳୋକରୁ ଜଣାଯାଏ ଇନ୍ଦ୍ରଦ୍ୟୁମ୍ନ ନାମକ ପୌରାଣିକ ରାଜା ସତ୍ୟଯୁଗରେ ଜଗନ୍ନାଥ ପୂଜାର ପ୍ରଚଳନ କରାଇଥିଲେ। କିନ୍ତୁ ଇତିହାସରେ ଏହା ସମର୍ଥନ କରେନାହିଁ।

**୪) ମୋଗଲ ଆକ୍ରମଣ ବେଳେ ପ୍ରଭୁଙ୍କ ମହିମା କେଉଁଠି ଥିଲା ?**

ମୁକ୍ତିପ୍ରଦ ପ୍ରଭୁ ଜଗନ୍ନାଥଙ୍କ ମହିମା ଭୌତିକ ଧାରଣାରେ ଚିନ୍ତା କରାଯାଇ ନ ପାରେ। ତାଙ୍କର ଥିବା ନ ଥିବା ସବୁ ସମାନ, ତଥାପି ଦେଖିଲେ ଜଣାଯାଏ ଜଗନ୍ନାଥ ମହାପ୍ରଭୁ ଯଥେଷ୍ଟ ମହିମା ପ୍ରକାଶ କରିଅଛନ୍ତି। ପ୍ରଥମ ଆଚାର୍ଯ୍ୟ ରାଜଦେବ ରାଜଗୁରୁଙ୍କ ସମୟରେ ଭାନୁଦେବ ୩ୟଙ୍କ ସମୟରେ, ଶକାବ୍ଦ ୧୨୮୨ ବା ଖ୍ରୀଷ୍ଟାବ୍ଦ ୧୩୬୦ର ବୃଷମାସରେ ସୁଲତାନ ଫିରୁଜ ଖାଁ ପ୍ରଥମେ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ଜଗନ୍ନାଥଙ୍କୁ ସ୍ପର୍ଶ କରିବାକୁ ଆସିଥିଲା। ମାଦାଳପାଞ୍ଜି ସମ୍ପର୍କୀୟ ବିବରଣୀରୁ ଜଣାଯାଏ ସେ ମନ୍ଦିରରେ ପ୍ରବେଶ କଲା ମାତ୍ରେ ଅନ୍ଧପରି ହୋଇଗଲା ଓ ବଡ ବିକଳ ହୋଇ ବାଡ ଡେଇଁ ପଳାଇଲା। ତାହାଦେଖି ଭାନୁଦେବ ଖାଲି ପଡିଥିବା ମେରଦା ଘରକୁ ଲୋକଙ୍କ ବ୍ୟବହାର ପାଇଁ ଦେଇଦେବାରୁ ସରଘରଗୁଡିକ ଭାନୁଦେବ ଖଞ୍ଜା ନାମରେ ଖ୍ୟାତ ହେଲା। ଏହି କାରଣରୁ Sriatae Firuja Sahi ପ୍ରସ୍ତାବରେ ସେ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ଅପବିତ୍ର କରିବା କଥା ଲେଖାଥିଲେ ମଧ୍ଯ Tarikha E Firuja Sahi ତାଙ୍କର ଅପକୃତ୍ୟର ନାମ ପର୍ଯ୍ୟନ୍ତ ନେଇ ନାହାନ୍ତି। ଏହାପରେ ୧୪୨୧ରେ ନିଶଙ୍କଭାନୁଙ୍କ ସମୟରେ ସୁଲତାନ ହୋସେନ ଘୋରି ମୁଗଲ ଜଗନ୍ନାଥଙ୍କୁ ଛୁଇଁବାକୁ ଚେଷ୍ଟାକରି ପାରି ନଥିଲା।

ଚୈତନ୍ୟଦେବଙ୍କ ଆଗମନ ପୂର୍ବରୁ ମୁରଥାନଗାଜି ଇସ୍ମାଇଲ ଜଗନ୍ନାଥଙ୍କୁ ନେଇଯିବା ପାଇଁ ଉଦ୍ୟମ କରିଥିଲେ। ମାତ୍ର ୧୦୦୯ ଖ୍ରୀଷ୍ଟାବ୍ଦରେ ଗୋଦାବର ରାଜଗୁରୁ ସାହାସ ଆକ୍ରମଣର ଖବର ପାଇ ହୁଳୁହୁଳିଆ କୂଳରୁ ପ୍ରଭୁଙ୍କୁ ଚାପରେ ବସାଇ ଚିଲିକାର କୌଣସି ସ୍ଥାନକୁ ନେଇଯାଇଥିଲେ। ମାତ୍ର ୧୫୨୨ରେ ଶ୍ରୀଚୈତନ୍ୟ ଆସିବା ବେଳକୁ ପ୍ରଭୁମାନେ ଫେରି ଆସିଥିଲେ। ପ୍ରଭୁଙ୍କ ମାୟାରେ ସୁରଥାନ ଶକ୍ତ ବେମାର ପଡି ପୁରୀ ଯାଇନଥିଲା। ପ୍ରବାଦ ବଚନ ଅଛି–

ସୁରଥାନ ପାତିଶା ଯେ ଘେନିଯିବ ବୋଲି
ଚିଲିକା କୁଦକୁ ନେଲେ ଭଗତ ଯେ ଡରି
ମାତ୍ର ଚାରିଦିନ ମାତ୍ର କୁବେର ରହିଲେ
ସୁରଥାନ ବାଧକିରେ କଟରୁ ବାହୁଡିଲା
ପ୍ରଭୁଙ୍କ ମହିମାରୁ ଦେହ ଯେ ପଠାଟି ଗଲା ।
(ଜଗନ୍ନାଥଙ୍କ ବାହର ବିଜେ ଗୀତ)

କଳାପାହାଡ ୧୫୬୮ରେ ଆସିଲେ ବଟମାଧବଙ୍କୁ ନେଇଥିଲେ, ଜଗନ୍ନାଥଙ୍କୁ ସେବକମାନେ ମନ୍ଦିର ମଧ୍ୟରେ ଲୁଚାଇ ରଖିଥିଲେ। ପରିଶେଷରେ ଏକ ଦୀର୍ଘ ସମୟ ପାଇଁ ରହିଥିଲେ ଚଢ଼େଇ ଗୁହାରେ ଏକରାମ ଖାଁ ଅପବିତ୍ର କରିଦେବା ଭୟରେ। ଏହା Riaz us Salatin English page 302 ପୃଷ୍ଠାରେ ବର୍ଣ୍ଣିତ ହୋଇଛି। ଆଉରଙ୍ଗଜେବଙ୍କର ଜିଦ୍ ଥିଲା ଯେ ସେ ଜଗନ୍ନାଥଙ୍କୁ ନିଶ୍ଚିତ ଅପବ୍ରିତ କରିବେ। ମାତ୍ର ସେ ଜଗନ୍ନାଥଙ୍କୁ ଇଷ୍ଟଦେବ ରୂପରେ ହିଁ ଦେଖିଲେ। ଜଗନ୍ନାଥଙ୍କର ତିଳକ ଅବିକଳ ରୂପରେ ମକ୍କାର ପ୍ରଧାନ ଦେବତାଙ୍କ ସହିତ ଜଡିତ ଅଟେ। ଆଲମ ଇ ପିର୍ ନାମରେ ରମଦୟିତି ଗୋସ୍ୱାମୀ ବଡମଠ ମହନ୍ତଙ୍କ ମାର୍ଫତରେ ଜଗନ୍ନାଥଙ୍କୁ ଭୂମିଦାନ କରିଥିଲେ ପ୍ଲେଟ ଆର୍କଇଭସ୍‌ର ଦସ୍ତାବିଜରୁ ଏହା ପ୍ରମାଣ ହୁଏ। ଏଠାରେ ମୁଖ୍ୟତଃ ଉଲ୍ଲେଖ କରିବାର କଥା ଯେ ମକ୍କାର ପବିତ୍ର ପୀଠ ଉପରେ ଜଗନ୍ନାଥଙ୍କୁ ତିଳକ ପରି ସାଙ୍କେତ ଅଛି। ଏହି ବିଷୟ ଜାଣି ନ ଥିବା ବହୁ ମୋଗଲ ଜଗନ୍ନାଥଙ୍କୁ ଅପବିତ୍ର କରିବାକୁ ଆପ୍ରାଣ ଚେଷ୍ଟା କରି



ବିଫଳ ମନୋରଥ ହୋଇଛନ୍ତି । ଏହାଙ୍କୁ ପ୍ରଭୁଙ୍କ ଅପୂର୍ବ ମହିମା ବୋଲି କହିବା । ସେବକମାନେ ପ୍ରଭୁଙ୍କୁ ନିଜର ଅନ୍ତରଙ୍ଗ ମନେ କରୁଥିବାରୁ ଅପବିତ୍ର କରାଇ ନଦେବାକୁ ଭକ୍ତି ଶ୍ରଦ୍ଧାର ସହିତ ନେଇଛନ୍ତି ସିନା ଆକ୍ରମଣ ପ୍ରତିହତ ହୋଇଛି କେବଳ ପ୍ରଭୁଙ୍କ କୃପାରୁ । ମୋଗଲ ଇସଲାମ ବନ୍ଧୁ ଏତେ ଆକ୍ରମଣ ସତ୍ତ୍ୱେ ଜଗନ୍ନାଥଙ୍କୁ ଭକ୍ତିକରି ଆସୁଛନ୍ତି ।

**୫) ବିଭିନ୍ନ ଯୁଗରେ ପ୍ରଭୁଙ୍କର ସ୍ଥିତି ଓ ଆଦର୍ଶ ।**

ପୁରାଣାଦି ପ୍ରାଚୀନ ସାହିତ୍ୟରେ ଜଗନ୍ନାଥ ସବୁ ଯୁଗରେ ଊଣା ଅଧିକେ ପ୍ରଭାବବାନ୍ ଥିଲେ । ଐତିହାସିକ ଦୃଷ୍ଟିରେ ଗ୍ରାମୀଣ ବା ବୈଦିକ ସମାଜରେ ସେ ଥିଲେ ଯୂପମୟ ରୂପ । ପ୍ରାକ୍ ଗୁପ୍ତକାଳର ସେ ପ୍ରତୀକ । ସେ ଉତ୍ତରଗୁପ୍ତ କାଳରେ ପ୍ରଣବମୟ ରୂପ । ମହାଭାରତ କାଳରେ ସେ ଅନ୍ତର୍ବେଦୀ ବା ପବିତ୍ର ବେଦୀ ରୂପରେ । ଗୁପ୍ତୋତ୍ତର କାଳରେ ସେ ତ୍ରିରତ୍ନ, ତତ୍ ପୂର୍ବରୁ ସେ କଳିଙ୍ଗ ଜୀନ । ପ୍ରାଚୀନ ପୁରାଣ କାଳରେ ସେ ପୁରୁଷୋତ୍ତମ । ପୁରାଣ (ଐତିହାସିକ ମତରେ)ରେ ସେ ଅବତାର ବା କୃଷ୍ଣ ଅଟନ୍ତି । ତନ୍ତ୍ର ମତରେ ସେ ଶକ୍ତିଶାଳୀ ଯନ୍ତ୍ରାରୂଢ ବିଗ୍ରହ । ତେଣୁ ସବୁମତର ଆଖ୍ୟାୟିକା ପୂରି ରହିଛି ତାଙ୍କ ଇତିହାସରେ, ଚରିତ୍ରରେ ଏହାହିଁ ବୈଚିତ୍ର । ଏହା ଯଦି ପୂର୍ବାଚାର୍ଯ୍ୟ ସୃଷ୍ଟିକରି ନଥାନ୍ତେ ତାହାହେଲେ ଜଗନ୍ନାଥଙ୍କୁ ସମନ୍ୱୟବାଦର ପ୍ରତୀକ କୁହାଯିବା କଠିନ ହୋଇଥାନ୍ତା । ସେହି କାରଣରୁ ଜଗନ୍ନାଥ ମନ୍ଦିରରେ ପୂଜା, ଅର୍ଚ୍ଚନା ପୌରାଣିକ ମତବାଦ ମଧ୍ୟରେ ବ୍ରାହ୍ମଣଗୋଷ୍ଠୀ (ସୂତ୍ରଧାରୀ)ଙ୍କ ଦ୍ୱାରା ଓଁ ମୂର୍ତ୍ତି ଓ ତାହାର ସମ୍ବନ୍ଧୀୟ ସମସ୍ତ କ୍ରିୟାଧିକାର ଦୟିତା ବା ଶାବରଙ୍କ ଉପରେ ନ୍ୟସ୍ତ ହୋଇଛି । ଏହା କମ୍ ସମନ୍ୱୟର ପ୍ରତୀକ ନୁହେଁ । ସବୁ ଅନୈକ୍ୟ ମଧ୍ୟରେ ଐକ୍ୟତା । ଐକ୍ୟତା ମଧ୍ୟରେ ଅନୈକ୍ୟତା ଏହାର ମୂଳ ଆଦର୍ଶ ଅଟେ ।

ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରଚାରକ
ଜଗନ୍ନାଥ ଧାମ, ପୁରୀ

# କିସ ବହି ନାମ ଜଗନ୍ନାଥ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା



କିସ ଲାଭ ବହି ନାମ ଜଗନ୍ନାଥ
ସରବେ ଦେଶରେ ଯଦି ହୋଇଲେ ଅନାଥ ?

କିସ ଲାଭ ନାମ ଥାଇ ସ୍ୱର୍ଗଦ୍ୱାର
ଜୀବନର କର୍ମ ଯଦି ଟାଣେ ସଦା ନର୍କପୁର

ଜନନୀ ଚକ୍ଷୁରୁ ଯଦି ଅଶ୍ରୁ ନପାରିଛ ପୋଛି
କିସ ଲାଭ ଏ ଜଗତେ ବହୁଦିନ ବଞ୍ଚି ?

ଦେବରାଜ ସବୁକରୁ ଭୋଗ
କମଳାଙ୍କୁ ନିଅନ୍ତୁ କେଶବ
ଆମ ଲୋଡା ହଳାହଳ ବିଷ
କରିବାକୁ ଦୁନିଆର ଦୁଃଖକୁ ଲାଘବ

ସ୍ୱର୍ଗ ସମ୍ପଦରେ ନାହିଁ ଅଧିକାର
ଜନତାଙ୍କ ଦୁଃଖ ଯଦି ନହୋଇଲା ଦୂର ।

ପୂର୍ବତନ ବିଧାୟକ, ମାହାଙ୍ଗା



# ଶ୍ରୀଜଗନ୍ନାଥଙ୍କ ପତିତପାବନ ଯାତ୍ରା

**ଡକ୍ଟର ସର୍ବେଶ୍ୱର ସେଣ**

କୋଟିବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ ଓଡ଼ିଶା ଭୂମିକୁ ନିଜର ବାସସ୍ଥାନ ରୂପେ ଗ୍ରହଣ କରିଛନ୍ତି । ଅନୁଗୃହୀତ କରିଛନ୍ତି ଓଡ଼ିଆ ଜାତିକୁ । ପବିତ୍ର ହୋଇଯାଇଛି ଏ ଦେଶ ମାଟି, ପାଣି, ପବନ। ସେ ଯେ ଓଡ଼ିଶାର, ଏକଥା କହିବାରେ ଦ୍ୱିଧାବୋଧ କରାଯାଇ ନପାରେ। କିନ୍ତୁ ସାରା ବିଶ୍ୱ ତାଙ୍କ ପାଦପଦ୍ମାଶ୍ରୟୀ। ମହାବାହୁ, ଭକ୍ତଜନ-ପ୍ରାଣ ବଲ୍ଲଭ, ଦୀନବନ୍ଧୁ, ଦଇତାରି, କରୁଣାସାଗର, କୃପାସିନ୍ଧୁ, ମହାପ୍ରଭୁ- ଏମିତି ଶ୍ରଦ୍ଧାଳୁମାନେ ତାଙ୍କୁ ଡ଼ାକନ୍ତି । ସହସ୍ର ନାମରେ ଆପଣାଙ୍କୁ ସମର୍ପି ଦିଅନ୍ତି ସେଇ ଦର୍ପଦଳନ, ବଇରୀ ଗଞ୍ଜନଙ୍କ ନିକଟରେ। ଓଡ଼ିଆର ସେ ଗେହ୍ଲାପୁଅ କାଳିଆ, କାଳିଆଦିଅଁ, କାଳିଆ ସାଆନ୍ତ। ଏମିତି ସମ୍ବୋଧନରେ ଭରି ରହିଛି ଶ୍ରଦ୍ଧା, ଭକ୍ତି, ପ୍ରେମ ଅକଳନୀୟ ଆନ୍ତରିକତା, ଆତ୍ମୀୟତା। ଶ୍ରୀମନ୍ଦିର ରତ୍ନ ସିଂହାସନରେ ବିଜେ କାଳିଆରାଜା, ଛାଠିଏ ପଉଟିଭୋଗ, ସଜମଲ୍ଲିଫୁଲ ଗଜରା, ଦେବଦାସୀ ନାଚ, ଗଜମୋତିଚୁନ ପାନ, ପାଟପତନୀ, ତୂଳୀତଳ୍ପ ଶେଯ- ଏସବୁ ନିତି ଖଞ୍ଜା ତାଙ୍କ ପାଇଁ। ସବୁ ବିଳାସପୂର୍ଣ୍ଣ ବ୍ୟବସ୍ଥା ସତ୍ତ୍ୱେ ସାଧାରଣ ଓଡ଼ିଆଟିଏ ପରି ତାଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟା। ନୀତି-କାନ୍ତି, ନୈବେଦ୍ୟ, ସେବା, ପର୍ବପର୍ବାଣି, ଯାନି ଯାତ୍ରା- ପ୍ରତିଟିରେ ରହିଛି ଓଡ଼ିଆ ଜୀବନ କଥା, ପ୍ରଥା, ପରଂପରା। ଗୋଟେ କଥାରେ କହିଲେ, ଜଗନ୍ନାଥ ସଂସ୍କୃତି ହିଁ ଓଡ଼ିଶା ସଂସ୍କୃତି । ସ୍ୱୟଂ ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ଧର୍ମ, ଧନ, ଗୌରବ, ଐତିହ୍ୟ, ସାହିତ୍ୟ, ସଂସ୍କାର, ଜାତୀୟତା- ସବୁକିଛି। ଓଡ଼ିଶା ଜଗନ୍ନାଥଙ୍କୁ ନେଇ ମହିମାନ୍ୱିତା, ବିଶ୍ୱବିଦିତା। ଠାକୁରଦେଶ କହିଲେ ଓଡ଼ିଶାକୁ ହିଁ ବୁଝାଏ। ଏହା ଜଗନ୍ନାଥ ଦେଶର ସ୍ୱତନ୍ତ୍ର ପରିଚୟ ।

ଶ୍ରୀଜଗନ୍ନାଥଙ୍କ ମର୍ତ୍ତ୍ୟଲୀଳା, ଅଲୌକିକ ବିଭୂତି ବିଶ୍ୱକଲ୍ୟାଣ ପାଇଁ ଉଦ୍ଦିଷ୍ଟ। ତାଙ୍କୁ ଶ୍ରୀମନ୍ଦିରରେ ଦର୍ଶନ କଲେ ଅଶେଷ ପୁଣ୍ୟ ମିଳେ ଏପରିକି ଜଗନ୍ନାଥ ତୀର୍ଥ ସ୍ମରଣରେ କୈବଲ୍ୟ ପ୍ରାପ୍ତ ହୁଏ। ଭକ୍ତି ରଜ୍ଜୁରେ ସେ ଆବଦ୍ଧ। ଶ୍ରୀକ୍ଷେତ୍ରରେ ନାହିଁ ଭେଦାଭେଦ । ଆଚଣ୍ଡାଳ ବ୍ରାହ୍ମଣ ସମସ୍ତେ ଏକ, ଅଭିନ୍ନ। ରତ୍ନବେଦୀରେ ତାଙ୍କୁ ସବୁ ସଂପ୍ରଦାୟର ଭକ୍ତଗଣ ଦର୍ଶନ କରିବା ସମ୍ଭବ ହୋଇନଥାଏ। ସେଇଥିପାଇଁ କାଳିଆ ସାଆନ୍ତେ ବରଷକେ ଥରୁଟିଏ ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ, ରଥାରୂଢ଼ ହୋଇ ଯାଆନ୍ତି ଗୁଣ୍ଡିଚା ମନ୍ଦିର। ତାଙ୍କ ଦର୍ଶନରେ ଭକ୍ତଜନ ମନ-ଚାତକ ତୃଷ୍ଣା ମେଣ୍ଟେ। ଯଥାର୍ଥରେ ସେ ପତିତଜନ ପରିତ୍ରାତା ପତିତପାବନ। ନୀଳାଚଳ ନାଥ ଜଗନ୍ନାଥ ଜଗତର ଆନନ୍ଦ କନ୍ଦ, ଭକ୍ତଜନ ଦୁଃଖହାରୀ। ତାଙ୍କୁ ଭକ୍ତିପୂତ ପ୍ରଣତି ବାଢ଼େ ସାରା ବିଶ୍ୱ। ଭକ୍ତଟିଏ ଗଦ୍‌ଗଦ୍ ହୋଇ ଗାଇଥାଏ, ନୀଳାଚାଳ ନିବାସାୟ ନିତ୍ୟାୟ ପରମାତ୍ମନେ/ ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ/ ଜଗଦାନନ୍ଦ କନ୍ଦାୟ ପ୍ରାଣତାର୍ତ୍ତି ହରାୟ ଚ/ ନୀଳାଚଳ ନିବାସାୟ ଜଗନ୍ନାଥାୟତେ ନମଃ। ଉତ୍କଳାଧୀଶ୍ୱରଙ୍କ ଏହି ଯାତ୍ରାକୁ ନବଦିନଯାତ୍ରା, ଗୁଣ୍ଡିଚାଯାତ୍ରା, ରଥଯାତ୍ରା, ଅନ୍ତର୍ବେଦୀ ମହୋତ୍ସବ, ଆଡ଼ପମଣ୍ଡପ ଯାତ୍ରା, ଉତ୍ତରାଭିମୁଖୀ ଯାତ୍ରା, ଦକ୍ଷିଣାଭିମୁଖୀ ଯାତ୍ରା, ଘୋଷଯାତ୍ରା, ମହାବେଦୀ ଉତ୍ସବ ଭାବେ ନାମିତ କରାଯାଇଛି। ଗୁଣ୍ଡିଚା, ବାହୁଡ଼ା – ଏ ଦୁଇ ଉତ୍ସବ ଏକ ରଥୋତ୍ସବ। ଏହା ତ୍ରିଅବୟନା ଯାତ୍ରା (ଶ୍ରୀଗୁଣ୍ଡିଚା ଯାତ୍ରା, ମହାବେଦୀରେ ସାତଦିନ ଅବସ୍ଥାନ, ବାହୁଡ଼ା ଯାତ୍ରା) ଭାବେ ପ୍ରସିଦ୍ଧ। ଧୂଳି ଧୂଷରିତ ବଡ଼ଦାଣ୍ଡରେ ଭକ୍ତଙ୍କ ଗହଣରେ ହଲି ହଲି, ଝୁଲି ଝୁଲି ଆସନ୍ତି



ଶ୍ରୀଜଗନ୍ନାଥ। ତାଙ୍କୁ ଦେଖିଲେ ସ୍ୱତଃ ପ୍ରତୀୟମାନ ହୁଏ ସେ କେବଳ କୋଟିବ୍ରହ୍ମାଣ୍ଡ ପ୍ରଭୁ ନୁହନ୍ତି ପତିତ ପାବନ। ଏଣୁ ଶ୍ରୀଗୁଣ୍ଡିଚା ଯାତ୍ରାର ଅନ୍ୟ ନାମ ପତିତପାବନ ଯାତ୍ରା। ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧ ଦ୍ୱାଦଶ ଯାତ୍ରା ମଧ୍ୟରେ ସ୍ନାନ, ଗୁଣ୍ଡିଚାଯାତ୍ରା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଆଷାଢ଼ ମାସ, ପୁଷ୍ୟା ନକ୍ଷତ୍ରଯୁକ୍ତ ଶୁକ୍ଳ ଦ୍ୱିତୀୟା। ପ୍ରଭୁ ପହଣ୍ଡି ବିଜେ କରନ୍ତି 'ନନ୍ଦିଘୋଷ'କୁ। ବଡ଼ଭାଇ ଶ୍ରୀବଳଭଦ୍ର ତାଳଧ୍ୱଜ ରଥାରୂଢ଼, ଦେବୀ ସୁଭଦ୍ରା 'ଦେବୀଦଳନ' ରଥରେ, ତାଙ୍କ ସୁରକ୍ଷା ପାଇଁ ଆୟୁଧ ସୁଦର୍ଶନ ମଧ୍ୟ ବିଜେ କରନ୍ତି ତାଙ୍କ ରଥରେ। ଗହଗହ ନାଦରେ ଫାଟିପଡେ ବଡ଼ଦାଣ୍ଡ। କୋଟି କୋଟି ଭକ୍ତଙ୍କ ହରିବୋଲ, ହୁଳହୁଳି ଧ୍ୱନିରେ ପ୍ରକମ୍ପିତ ଚଉଦିଗ। ଇନ୍ଦ୍ର ପୁଷ୍ପବୃଷ୍ଟି କରନ୍ତି, ସବୁ ଦେବାଦେବୀ ଓହ୍ଲାଇ ଆସନ୍ତି ବଡ଼ ଦାଣ୍ଡକୁ, ଦର୍ଶନ କରନ୍ତି ମହାପ୍ରଭୁଙ୍କ ଏଇ ଅନନ୍ୟ ଲୀଳାକୁ। ଉତ୍କଳର ଗଜପତି ଠାକୁର ରାଜା ହାତରେ ସୁବର୍ଣ୍ଣ ସମାର୍ଜନୀ ଧରି ରଥରେ ଛେରା ପହଁରା କରନ୍ତି। ସାରା ବିଶ୍ୱ ଦେଖେ ଏ ବିରଳ ଦୃଶ୍ୟ। ମହାପ୍ରଭୁଙ୍କ ଅଶେଷ ଦୟା, ଅନୁକମ୍ପାରୁ ତାଙ୍କର ପାର୍ଥିବ ପଦମର୍ଯ୍ୟାଦା, ଉଲ୍ଲେଖନୀୟ ସଫଳତା, ସୁଖ ସମୃଦ୍ଧି– ସବୁ ସମ୍ଭବ ହୋଇଛି। କିନ୍ତୁ ରାଜା ସାଧାରଣ ପ୍ରଜାଠାରୁ ମଧ୍ୟ ବଡ଼ ନୁହନ୍ତି। ଛେରା ପହଁରା ପରଂପରାରେ ସୂଚିତ ହୋଇଛି ଜଗନ୍ନାଥ ସଂସ୍କୃତିର ସାମ୍ୟବାଦୀ ଚେତନା। ଅନୁରୂପ ଭାବଟି ରଥଟଣାରେ ପ୍ରକଟିତ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଶ୍ରଦ୍ଧାଳୁମାନେ ରଥ ଦଉଡି ଭିଡି ନିଅନ୍ତି ଗୁଣ୍ଡିଚା ମନ୍ଦିର। ବାହୁଡା ଦଶମୀରେ ଶ୍ରୀଜୀଉମାନଙ୍କର ପହଣ୍ଡି ବିଜେ ପରେ, ପୁନଶ୍ଚ ରଥ ଟାଣି ଟାଣି ଆଣନ୍ତି। ଏହି ମନୋରମ ଦୃଶ୍ୟ ଦେଖିଲେ ପତିତପାବନ ଯାତ୍ରାର ସାର୍ଥକତା ସ୍ୱତଃ ଉପଲବ୍ଧ ହୋଇଥାଏ। ଏହାର ପବିତ୍ରତା, ମହାନତା ତଥା ପ୍ରାସଙ୍ଗିକତା ସମ୍ପର୍କରେ ଦେବୀ ଭାଗବତରେ ବର୍ଣ୍ଣିତ ଅଛି ।

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ହିଁ ଗଣଦେବତା। ହିନ୍ଦୁଧର୍ମର ଅନ୍ୟ କୌଣସି ଦେବତା ଗଣ ଦେବତା ନୁହନ୍ତି। ସାଧାରଣ ଜନତାଙ୍କ ଆଧ୍ୟାତ୍ମିକ ଅଭିଳାଷରୁ ଜଗନ୍ନାଥ ଉଦ୍ଭୂତ। ଯେତେବେଳେ ଋକ୍ ବେଦର ପ୍ରାଚୀନତମ ମନ୍ତ୍ରାବଳୀ ଅଜ୍ଞାତ ଥିଲା, ସେସମୟରେ ମଧ୍ୟ ଓଡ଼ିଶାର ସରଳ ବିଶ୍ୱାସୀ ଶବରମାନେ ତାଙ୍କୁ ଦାରୁଦେବତା ରୂପେ ପୂଜା ଆରାଧନା କରୁଥିଲେ ନିଜର ଭୋଜନ ପାଇଁ ଉଦ୍ଦିଷ୍ଟ ଖାଦ୍ୟକୁ ନୈବେଦ୍ୟ ରୂପେ ସମର୍ପଣ କରୁଥିଲେ। ପରବର୍ତ୍ତୀ କାଳରେ ଶତାବ୍ଦୀ ଶତାବ୍ଦୀ ଧରି ରାଜକୀୟ ବିଳାସ ଢ଼ଙ୍ଗରେ ତାଙ୍କର ପୂଜାର୍ଚ୍ଚନା ଚଳିଆସିଛି। ବ୍ରାହ୍ମଣ, ଶବର ସେବାୟତମାନେ ମହାପ୍ରଭୁଙ୍କ ନୀତି ସହ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ । ଶ୍ରୀଜୀଉମାନଙ୍କର ସ୍ନାନଯାତ୍ରାଠାରୁ ଅଣସର ବିଧି ଘୋଷଯାତ୍ରା ସମାପନ ହେବାଯାଏ ଦଇତା ସେବକମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ମହାମିଳନ କହିଲେ ଅତ୍ୟୁକ୍ତି ହେବ ନାହିଁ। ଅନୁରୂପ ଭାବରେ ମହାପ୍ରଭୁଙ୍କ ନବକଳେବର ବିଧି ସମ୍ପନ୍ନ କରିବାରେ ଦଇତାପତିମାନଙ୍କର ମଧ୍ୟ ମୁଖ୍ୟ ଭୂମିକା ରହିଥାଏ।

ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପ୍ରତୀକାତ୍ମକ। ଏଣୁ ବିଭିନ୍ନ ଧର୍ମାବଲମ୍ବୀମାନେ ତାଙ୍କୁ ନିଜ ନିଜର ଇଷ୍ଟ ଦେବତା ଭାବେ ଆପଣେଇ ନେବାରେ କୌଣସି ଅସୁବିଧା ହୁଏନି। ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ପାଇଁ ସେ ତଥାଗତ ବୁଦ୍ଧ, ଜୈନଙ୍କ ପାଇଁ ମହାବୀର ଜୀନ, ବୈଷ୍ଣବମାନଙ୍କର ସେ ଶ୍ରୀ ବିଷ୍ଣୁ ଓ ଗୌଡୀୟମାନଙ୍କ କଳାକାହ୍ନୁ। ଶାକ୍ତମାନେ ତାଙ୍କୁ ମହାଭୈରବ, ଗାଣପତ୍ୟମାନେ ଗଣପତି ରୂପେ ଗ୍ରହଣ କରିଛନ୍ତି। ଏଣୁ ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ସଂପ୍ରଦାୟର ନୁହଁନ୍ତି । ଜଗନ୍ନାଥ ଧର୍ମ ଅସାମ୍ପ୍ରଦାୟିକ ଧର୍ମ। ଏହାର ଚାକ୍ଷୁସ ପ୍ରମାଣ ଶ୍ରୀଜୀଉଙ୍କ ଘୋଷଯାତ୍ରା।

ପତିତପାବନ ଯାତ୍ରାରେ ପତିତଜନ ଉଦ୍ଧାର ଆଦର୍ଶ ପ୍ରକଟିତ। ରଥାରୂଢ଼ ଶ୍ରୀଜଗନ୍ନାଥ ଗୁଣ୍ଡିଚା ଯାତ୍ରାରେ ଉଭା ହୁଅନ୍ତି ଭକ୍ତଙ୍କ ଗହଣରେ। ଭକ୍ତ ଭଗବାନ ଏକ, ଏକାକାର ହୋଇଯାନ୍ତି। ବହୁ ବର୍ଷ ଧରି ଓଡ଼ିଶାର ଠାକୁର ରାଜାମାନେ ଗମ୍ଭୀରାରେ ରଖି ସମସ୍ତ ପ୍ରକାର ଭୋଗବିଳାସ ଖଞ୍ଜା କରିଥିଲେ ମଧ୍ୟ ରଥଯାତ୍ରାରେ ମହାପ୍ରଭୁ ସାଧାରଣ ଭକ୍ତଙ୍କୁ ଦର୍ଶନ ଦିଅନ୍ତି। ତାହା ସ୍ମରଣ କରାଇଦିଏ ଅତୀତକୁ। ଏକଦା ସେ ସରଳ, ନିଷ୍କପଟ ଶବରମାନଙ୍କ ସଂସ୍ପର୍ଶରେ ଆସୁଥିଲେ । ଅଧୁନା ମଧ୍ୟ ସହସ୍ର ସହସ୍ର ଭକ୍ତଜନଙ୍କୁ ଦର୍ଶନ ଦେଉଛନ୍ତି, କୃପାବାରି ବର୍ଷଣ



କରୁଛନ୍ତି। ସତରେ ଏମିତି ଠାକୁର ବ୍ରହ୍ମାଣ୍ଡରେ ନାହାନ୍ତି, ଯିଏ ସ୍ୱୟଂ ଆସନ୍ତି ପତିତଜନଙ୍କ ପାଖକୁ। ମର୍ତ୍ତ୍ୟ ପରିଣତ ହୋଇଯାଏ ଭୂସ୍ୱର୍ଗରେ ।

ଶ୍ରୀଜଗନ୍ନାଥଙ୍କୁ ସାମ୍ୟର ପ୍ରତୀକ ରୂପେ ଗ୍ରହଣ କରାଯାଇଛି। ରତ୍ନ ସିଂହାସନାରୂଢ଼ ଚତୁର୍ଦ୍ଧାମୂର୍ତ୍ତିଙ୍କ ବର୍ଣ୍ଣରୁ ମାନବ ସମାଜରେ ଥିବା ସମତାର ସୂଚନା ମିଳିଥାଏ। ବଳଭଦ୍ରଙ୍କ ଶୁକ୍ଳ ବର୍ଣ୍ଣ ପ୍ରତିମାକୁ ଶ୍ୱେତକାୟ କକେସୀୟ ସୁଭଦ୍ରାଙ୍କ ହରିଦ୍ରାବର୍ଣ୍ଣ ମଙ୍ଗୋଲୀୟ, ଜଗନ୍ନାଥଙ୍କ କୃଷ୍ଣବର୍ଣ୍ଣ କୃଷ୍ଣକାୟ ନିଗ୍ରୋ, ରକ୍ତବର୍ଣ୍ଣ ସୁଦର୍ଶନଙ୍କୁ ଲୋହିତ ଭାରତୀୟଙ୍କ ପ୍ରତୀକଭାବେ ଗ୍ରହଣ କରାଯାଏ। ହିନ୍ଦୁ ଶାସ୍ତ୍ରାନୁଯାୟୀ ଶ୍ୱେତବର୍ଣ୍ଣକୁ ବ୍ରାହ୍ମଣ, ରକ୍ତବର୍ଣ୍ଣକୁ କ୍ଷତ୍ରିୟ, ହରିଦ୍ରାବର୍ଣ୍ଣକୁ ବୈଶ୍ୟ, କୃଷ୍ଣବର୍ଣ୍ଣକୁ ଶୂଦ୍ରମାନଙ୍କ ସହିତ ସଂଯୁକ୍ତ କରାଯାଇଛି। ଏହି ବର୍ଣ୍ଣଗୁଡ଼ିକ ଜାତିର ପ୍ରତୀକ। ଫଳତଃ ଶ୍ରୀମନ୍ଦିରରେ ଅବା ପତିତପାବନ ଯାତ୍ରାରେ ବର୍ଣ୍ଣଭେଦର ବିଚାର ନାହିଁ। ଶ୍ରୀଜଗନ୍ନାଥ ସାର୍ବଜନୀନ ଦେବତା । ଯିଏ ତାଙ୍କୁ ଯେଉଁଠି ଡାକିଲା, ଯେଭଳି ନିଜକୁ ସମର୍ପଣ କଲା, ସେହି ପ୍ରକାର ଫଳ ପ୍ରାପ୍ତହେଲା। ଯବନ କବି ସାଲବେଗ ନନ୍ଦିଘୋଷ ରଥରେ ପରଂବ୍ରହ୍ମ ଜଗନ୍ନାଥଙ୍କୁ ଦେଖିବାକୁ ବ୍ୟାକୁଳ ହୋଇପଡ଼ିଛନ୍ତି। ନିଜକୁ ହୀନ, ଯବନ କହି ସମର୍ପଣ କରିଦେଇଛନ୍ତି ତାଙ୍କରି ପଦାରବିନ୍ଦରେ। ରଚନା କରିଛନ୍ତି ରାଶି ରାଶି ଭଜନ। ବିହ୍ୱଳ ହୋଇ ଗାଇଛନ୍ତି, ଜଗବନ୍ଧୁ ହେ ଗୋସାଇଁ/ ତୁମ ଶ୍ରୀଚରଣ ବିନୁ ଅନ୍ୟଗତି ନାହିଁ/ ସାତଶ ପଂଚାଶ କୋଶ ଚାଲି ନପାରଇ/ ମୋ ଯିବା ଯାଏ ନନ୍ଦିଘୋଷେ ଥିବ ରହି// ଭକ୍ତକବି ପ୍ରାଣ ବୃନ୍ଦାବନ ଶିରିରେ ପରିପୂର୍ଣ୍ଣ ହୋଇଯାଇଛି, ମନ ପ୍ରାଣ ଆତ୍ମା ତୃପ୍ତ ହୋଇଛି। ଭକ୍ତ ଦାସିଆ ବାଉରି ଆପଣାର ହୃଦ-ଭକ୍ତି ଅର୍ଘ୍ୟ ନିବେଦନ କରିଛନ୍ତି ବାଡି ନଡ଼ିଆଟିଏ ଧରି। ଭାବବିନୋଦିଆ ହରି ହାତ ବଢ଼ାଇ ନେଇ ଯାଇଛନ୍ତି ତା' ହାତରୁ ନଡ଼ିଆଟି। ମତ୍ତ ବଳରାମ ଦାସଙ୍କ ମାନ ରକ୍ଷା ପାଇଁ ବାଙ୍କୀ ମୁହାଣୀରେ ବିଜେ କରିଛନ୍ତି ବାଲିରଥରେ। ଗର୍ବ ମତ୍ତ ଠାକୁରରାଜା, ଅହଂକାରୀ ପୂଜାରୀଙ୍କ ଗର୍ବଗଞ୍ଜନ କରିଛନ୍ତି ମହାପ୍ରଭୁ, ଭକ୍ତର ଟେକ ରଖିଛନ୍ତି। ଏସବୁ କିମ୍ବଦନ୍ତୀର ଅଂଶବିଶେଷ ମାତ୍ର ଘୋଷଯାତ୍ରାରେ ବିଶ୍ୱର ସବୁ ଧର୍ମାବଲମ୍ବୀ ଭକ୍ତଙ୍କ ଏକତ୍ର ସମାବେଶ, ଏହାକୁ ଗଣଯାତ୍ରାରେ ପରିଣତ କରିଛି। ମହାପ୍ରଭୁଙ୍କ ଘୋଷଯାତ୍ରାର ଆଉ ଗୋଟିଏ ବିଶେଷତ୍ୱ ପରିଲକ୍ଷିତ। ପତିତଜନଙ୍କ ପାଇଁ ପ୍ରଭୁ ଏହି ସମୟରେ ଦଶାବତାର ରୂପ ଧାରଣ କରନ୍ତି। କୁସୁମଲାଗି ବେଳେ ମୀନ ଅବତାର, ସେନାପଟା ବାହୁଟି ଲାଗି ବେଳେ ନରସିଂହ, ରଥାରୂଢ଼ ବେଳେ ବାମନ, ଆଡ଼ପ ଡୋରଲାଗି ସମୟରେ ପରଶୁରାମ, ଆଡ଼ପରୀଖାରେ ରାଘବଚନ୍ଦ୍ର ଅବତାର, ହେରାେତ୍ସବରେ ବ୍ରଜେନ୍ଦ୍ର ନନ୍ଦନ, ଅନ୍ତର୍ବେଦୀ ମହୋତ୍ସବ ବେଳେ ବୌଦ୍ଧ ଅବତାର ଧାରଣ କରି ଭକ୍ତଜନ ମନ ମୋହି ନିଅନ୍ତି। କାଳିଆର ଏ ଲୀଳା ତା' ଭକ୍ତଙ୍କ ପାଇଁ ଯାହା, ଅବ୍ୟକ୍ତ, ଅସାଧାରଣ ନିଶ୍ଚୟ। ବଡ଼ଦାଣ୍ଡରେ ଗଡୁଛି ନନ୍ଦିଘୋଷ। ମହାପ୍ରଭୁ ଯାଇଥିଲେ ଉତ୍ତରାଭିମୁଖୀ ହୋଇ ଗୁଣ୍ଡିଚାମନ୍ଦିର, ଦକ୍ଷିଣାଭିମୁଖୀ ହୋଇ ବାହୁଡୁଛନ୍ତି ନୀଳକନ୍ଦର। ପାପୀ, ତପି, ଯୋଗୀ, ଭୋଗୀ, ରୋଗୀ, ରାଜା, ରଙ୍କ – ସଭିଏଁ ଦେଖୁଛନ୍ତି ଚକାନୟନକୁ। ଭାଗ୍ୟଦେବୀ ଅନୁକୂଳ ହେଲେ ଏମନ୍ତ ଦୁର୍ଲ୍ଲଭ ଦୃଶ୍ୟ ଦେଖିବାର ଅପୂର୍ବ ସୁଯୋଗ ପ୍ରାପ୍ତ ହୁଏ। ମିଳିଯାଏ ପ୍ରତିପଦରେ ଅଶ୍ୱମେଧ ଯଜ୍ଞାନୁଷ୍ଠାନର ପୁଣ୍ୟଫଳ। ଯଥାର୍ଥରେ ନୀଳାଦ୍ରି ମହୋଦୟ ଷୋଳଶ ଅଧ୍ୟାୟରେ ଉଲ୍ଲେଖ ଅଛି, ଉତ୍ତରାଭିମୁଖେ ଜାତେ ତଥା ଦକ୍ଷିଣାଦିଙ୍ଗ୍ ମୁଖେ/ ରଥ ତ୍ରୟେ ଜନୋଯସ୍ତୁ ଭକ୍ତି ଶ୍ରଦ୍ଧାନ୍ୱିତଃ ପରମ୍/ ରାମକୃଷ୍ଣଂ ସୁଭଦ୍ରାଂ ଚ ପଶ୍ୟେନ୍ମାର୍ଗେ ରଥେ ସ୍ଥିତମ୍/ ପଦେ ପଦେଶ୍ୱମେଧାନାଂ ଫଳଂ ପ୍ରାପ୍ୟ ମହୀତଳେ। ବଡଦେଉଳ ଚୂଡ଼ାରେ ଫରଫର ଉଡୁଛି ନେତ। ଭକ୍ତଟି ଅଧିର ହୋଇ ଗାଉଛି, ନୀଳଚକ୍ରେ ହୋ ଦେଖ ଉଡୁଛି ବାନା, ପତିତ ପାବନ ନାମଟି ଯା' ନାଁ / ଜଗତ ଜନ-ଉଦ୍ଧାରଣ ପାଇଁ ତ ଦାରୁବ୍ରହ୍ମଙ୍କ ଏ ଘୋଷଯାତ୍ରା। ଭକ୍ତଟିଏ କରୁଣା ସାଗରରୁ ବିନ୍ଦୁଟିଏ ପାଇବା ପାଇଁ ବର୍ଷବର୍ଷ ଚାତକ ନୟନରେ ଚାହିଁରହେ। କିନ୍ତୁ ସ୍ୱୟଂ ଶ୍ରୀଜଗନ୍ନାଥ ତା ପାଇଁ ଓହ୍ଲାଇ ଆସନ୍ତି ରତ୍ନବେଦୀରୁ। ନବଦିନ ବ୍ୟାପୀ ଏହି ପତିତପାବନ ଯାତ୍ରା। ସାରା ବିଶ୍ୱବାସୀ ସନ୍ଦର୍ଶନ କରି କୈବଲ୍ୟ ପ୍ରାପ୍ତ ହୁଅନ୍ତି। ସତରେ ଏମିତି ଠାକୁର ଆଉ କାହିଁ ଅଛନ୍ତି !

ସା/ପୋ-ପୁରୁଷୋତ୍ତମପୁର,କେନ୍ଦ୍ରାପଡ଼ା



# ଦ୍ୱିତୀୟ ଶ୍ରୀକ୍ଷେତ୍ର ବାରିପଦା

**ଭାଗବତ ପଣ୍ଡା**

ସମୁଦ୍ରର ଉତ୍ତର ଭାଗରେ ଯେଉଁ ପାପନାଶନକାରୀ ମୁକ୍ତିଦାୟୀ ଗୋପନୀୟ କ୍ଷେତ୍ର ସେଠାରେ ମୋର ନିବାସ ସ୍ଥାନ । ଠିକ୍ ସେହିପରି ମେଘାସନ ଚାରୁକୁଞ୍ଜ ପରିବେଷ୍ଟିତ ପବିତ୍ର କଳକଳ ନାଦିନୀ ବୁଢ଼ାବଳଙ୍ଗର ଉତ୍ତର ଦିଗରେ ଅବସ୍ଥିତ ବାରିପଦା ସହର । ଯେଉଁଠି ପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନଙ୍କ ସହିତ ବଡଦେଉଳରେ ବିରାଜମାନ କରୁଛନ୍ତି । ଯିଏ କି ପୌରାଣିକ ମତବାଦ ତଥା ଲୋକପ୍ରବାଦର ଭିତ୍ତିଭୂମି ଉପରେ ଦ୍ୱିତୀୟ ଶ୍ରୀକ୍ଷେତ୍ରର ମାନ୍ୟତା ଲାଭ କରିଛି ।

ବହୁ ପୁରାତନ କାଳରୁ ମୟୂରଭଞ୍ଜ ରାଜ୍ୟର ରାଜଧାନୀ ଶିମିଳିପାଳ ପର୍ବତମାଳାର ପଶ୍ଚିମ ଦିଗ ଖିଚିଂଠାରେ ଅବସ୍ଥିତ ଥିଲା ଓ ପରେ ବହଳଦାକୁ ସ୍ଥାନାନ୍ତରିତ ହୋଇଥିଲା । ଗମନାଗମନ ସୁବିଧା ନ ଥିବାରୁ ସେଠାରୁ କଟକ ବା ପୁରୀ ସହିତ ଯୋଗାଯୋଗ ରଖିବା କଷ୍ଟକର ଥିଲା । ଏକଦା ମୟୂରଭଞ୍ଜର ତତ୍କାଳୀନ ଶାସକ ବାସୁଳି ଭଞ୍ଜ ନିଜର ପୁତ୍ର ଜଗନ୍ନାଥ ଭଞ୍ଜ ଓ ପାଟରାଣୀଙ୍କ ସହିତ ତୀର୍ଥାଟନ ଉଦ୍ଦେଶ୍ୟରେ ପୁରୀ ଯାଇଥିଲେ । ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରି ପୁରୀରେ ଅବସ୍ଥାନ କାଳରେ ହଠାତ୍ ମହାରାଣୀଙ୍କର ବିୟୋଗ ହେବାରୁ ତାଙ୍କର ପୁତ୍ର ଜଗନ୍ନାଥ ଭଞ୍ଜ ବିବ୍ରତ ହୋଇପଡିଲେ । ସେତେବେଳେ ପୁରୀର ରାଜା ଥାଆନ୍ତି ଗଜପତି ପ୍ରତାପରୁଦ୍ର ଦେବ । ପ୍ରତାପରୁଦ୍ରଦେବ ଜଗନ୍ନାଥ ଭଞ୍ଜଙ୍କ ସୌନ୍ଦର୍ଯ୍ୟ ଓ ବ୍ୟବହାରରେ ମୁଗ୍ଧ ହୋଇ ତାଙ୍କ କନ୍ୟାଙ୍କୁ ସମର୍ପଣ କଲେ ଓ ଯୌତୁକ ଭାବେ ବାରିପଦା ଦଣ୍ଡପାଟ ପ୍ରଦାନ କରିଥିଲେ । ତାପରେ ଜଗନ୍ନାଥ ଭଞ୍ଜ ବାରିପଦାରେ ବଗସାମଲଗଡ ନିର୍ମାଣ କରାଇ ସେଠାକୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ୧୫୪୦ ମସିହାରେ ଜଗନ୍ନାଥ ଭଞ୍ଜଙ୍କ ମୃତ୍ୟୁ ହେବାରୁ ତାଙ୍କର ପୁତ୍ର ନୀଳକଣ୍ଠ ଭଞ୍ଜ



ରାଜସିଂହାସନ ଆରୋହଣ କରି ୨୫ ବର୍ଷ ରାଜ୍ୟ ଶାସନ କରିବା ସହିତ ୧୫୬୫ ମସିହାରେ ଇହଲୀଳା ସମ୍ବରଣ କଲେ । ତାଙ୍କ ପରେ ତାଙ୍କର ପୁତ୍ର ବୈଦ୍ୟନାଥ ଭଞ୍ଜ ଶ୍ରୀଚୈତନ୍ୟଙ୍କ ପଞ୍ଚଶିଷ୍ୟ ରସିକଦେବ ଗୋସ୍ୱାମୀଙ୍କ ଦ୍ୱାରା ଗୌଡୀୟ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ ।

ପ୍ରଭୁ ନୀଳାଦ୍ରି ବିହାରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି ଥିଲା । ପ୍ରଭୁ ଜଗନ୍ନାଥଙ୍କୁ ରଥାରୂଢ଼



ଅବସ୍ଥାରେ ଦର୍ଶନ କରିବା ପାଇଁ ପ୍ରବଳ ଇଚ୍ଛା ଜାଗ୍ରତ ହେବାରୁ ସେ ପାତ୍ର, ମନ୍ତ୍ରୀ ଓ ପୁରୋହିତଙ୍କର ପରାମର୍ଶକ୍ରମେ ଜ୍ୟେଷ୍ଠ ମାସ ୧୨ ଦିନ ଶୁକ୍ଳ ସପ୍ତମୀ ବୁଧବାରର ଅମୃତ ବେଳାରେ ନିଜର ସୈନ୍ୟସାମନ୍ତ ଓ ପାତ୍ର ମନ୍ତ୍ରୀଙ୍କ ସହ ଯିବାକୁ ମନସ୍ଥ କଲେ । ନିର୍ବିଘ୍ନ ଯାତ୍ରା ନିମନ୍ତେ ଦେବୀ ଜ୍ୱାଳାମୁଖୀଙ୍କୁ ଅର୍ଚ୍ଚନା ତଥା ରାଜବଂଶର ଚିର ଆରାଧ୍ୟା ମା' କୀଚକେଶ୍ୱରୀଙ୍କୁ ଆରାଧନା କରି ତାଙ୍କର ଆଶୀର୍ବାଦ ଭିକ୍ଷା ପୂର୍ବକ ଯାତ୍ରା ଆରମ୍ଭ କଲେ । ମହାମନ୍ତ୍ର ଶଙ୍ଖଧ୍ୱନୀ ଓ ପୁରୋହିତଙ୍କ ମଙ୍ଗଳାଷ୍ଟକ ପାଠରେ ଗଗନ ପବନ ନିନାଦିତ ହେଉଥିବା ବେଳେ ସର୍ବମଙ୍ଗଳ ଜଗନ୍ନାଥଙ୍କୁ ସ୍ମରଣ କରି ବାହାରି ପଡିଲେ ଭଞ୍ଜ ନରେଶ ।

ରଥାରୂଢ ବାମନରୂପୀ ଭଗବାନଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୁଏ ନାହିଁ । ଏହି ସୌଭାଗ୍ୟର ଅଧିକାରୀ ହେବା ପାଇଁ ମହାରାଜା ଉତ୍କଣ୍ଠାର ସହିତ ଆଗେଇ ଚାଲିଲେ ଶ୍ରୀକ୍ଷେତ୍ର ଅଭିମୁଖେ । ସ୍ଥାନେ ସ୍ଥାନେ ବିଶ୍ରାମ ନେଇ ମଠ ମନ୍ଦିର ଧର୍ମଶାଳାରେ ଅବସ୍ଥାନ କରି ଯଜ୍ଞକ୍ଷେତ୍ର ଯାଜପୁର ଦର୍ଶନ, ପୁଣ୍ୟତୋୟା ବୈତରଣୀରେ ସ୍ନାନ ସମାପନ ପୂର୍ବକ ଆଗେଇ ଚାଲିଥାନ୍ତି । କିଛି ଦିନ ପରେ ନାରୀକେଳ ବନବେଷ୍ଟିତ ପିପିଲିଠାରେ ପହଞ୍ଚିବା ବେଳକୁ ଗଜପତିଙ୍କର ପାଇକ ସର୍ଦ୍ଦାର ବକ୍ସି ବଳିୟାର ସିଂ ଭଞ୍ଜ ରାଜାଙ୍କୁ ସାକ୍ଷାତ କରି କହିଲେ – ଏ ସୈନ୍ୟ ସାମନ୍ତଙ୍କ ସହିତ ଆପଣ କୁଆଡେ ବାହାରିଛନ୍ତି ? ପ୍ରତ୍ୟୁତ୍ତରରେ ମହାରାଜା ବୈଦ୍ୟନାଥ ଭଞ୍ଜ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଆସିଥିବା ବିଷୟ ଜଣାଇଲେ । ସେତେବେଳେ ଚାଲୁକ୍ୟ ବଂଶର ଶ୍ରୀ ମୁକୁନ୍ଦ ଦେବ ଗଜପତି ପଦରେ ଅଧିଷ୍ଠିତ ଥିବାରୁ ତାଙ୍କର ବିନା ଅନୁମତିରେ ଶ୍ରୀକ୍ଷେତ୍ର ପ୍ରବେଶ ନିଷିଦ୍ଧ ବୋଲି ଜଣାଇଲେ । ଅଠରନଳାଠାରେ ଅପେକ୍ଷା କରିବାକୁ କହି ପାଇକ ସର୍ଦ୍ଦାର ଗଜପତିଙ୍କ ନିକଟକୁ ଅନୁମତି ଆଣିବାକୁ ଗଲେ । ଗଜପତିଙ୍କର ନିର୍ଦ୍ଦେଶ ହେଲା ଭଞ୍ଜ ନରେଶ ଯଦି ଜଗନ୍ନାଥଙ୍କ ଦର୍ଶନ ଇଚ୍ଛା କରନ୍ତି, ତା ହେଲେ ରାଜକୀୟ ବେଶ ପୋଷାକ ତଥା ସୈନ୍ୟ ସାମନ୍ତଙ୍କୁ ପରିତ୍ୟାଗ କରି ଏକାକୀ ଜଣେ ସାଧାରଣ ଭକ୍ତ ଭାବରେ ପ୍ରଭୁଙ୍କର ଦର୍ଶନ କରିପାରିବେ । ଏକଥା ଶୁଣି ସଙ୍ଗେ ସଙ୍ଗେ ଦୁଃଖ ଓ ଅପମାନରେ ମହାରାଜାଙ୍କ ଶରୀର ପ୍ରକମ୍ପିତ ହେବାକୁ ଲାଗିଲା । କ'ଣ କରିବେ ? ଯାହା କାଳିଆର ଇଚ୍ଛା । ଲୀଳାମୟ ଲୀଳା ପୁରୁଷୋତ୍ତମ, ପରଂବ୍ରହ୍ମ, ପରାତ୍ପର, ପରମେଶ୍ୱରଙ୍କ ଲୀଳା ଅତୀବ ବିଚିତ୍ର । କାହାର ବା ସାଧ୍ୟ ଅଛି ବୁଝିବାକୁ ପ୍ରଭୁଙ୍କର ବୈଚିତ୍ର୍ୟମୟ ଲୀଳାର ଗୂଢ ତତ୍ତ୍ୱ । ଭକ୍ତକୁ ବାରମ୍ବାର ପରୀକ୍ଷା କରିଥାନ୍ତି ପ୍ରଭୁ । ଭକ୍ତର ଭଗବାନ । ସମସ୍ତ ବେଦ ଉପନିଷଦ ନେତି ନେତି କହି ଯାହାଙ୍କର ଲୀଳା ବର୍ଣ୍ଣନାରେ ଅସମର୍ଥ ଛାର ମଣିଷ ବା କାହୁଁ ଜାଣି ପାରିବ ତାଙ୍କୁ ।

ଯା ମାୟା ଦେବେ ଅଗୋଚର
କାହୁଁ ଜାଣିବ ଛାର ନର ।

ଅର୍ଥାତ୍ – ଯାହାଙ୍କ ମହିମା ଦେବତାମାନଙ୍କୁ ମଧ୍ୟ ଅଗୋଚର, ଏ ଛାର ମଣିଷ ବା କାହୁଁ ଜାଣି ପାରିବ ତାଙ୍କର ମହିମାକୁ । ଶାସ୍ତ୍ରରେ ବର୍ଣ୍ଣନା ଅଛି –

ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବା ନ ଜାନନ୍ତି କୁତଃ ମନୁଷ୍ୟାଃ ।

କିଂ କର୍ତ୍ତବ୍ୟବିମୂଢ ରାଜା ଧୈର୍ଯ୍ୟର ସହ ସେହି ଅଠରନଳାଠାରେ ରାତ୍ରି ଯାପନ କଲେ । ପ୍ରଜାବତ୍ସଳ ରାଜା ନିଜର ସମସ୍ତ ଅନୁଚରମାନଙ୍କୁ ଦର୍ଶନରୁ ବଞ୍ଚିତ କରି ନିଜେ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଠିକ୍ ମନେ କଲେ ନାହିଁ । ପୁଣି ରାଜପୋଷାକ ପରିତ୍ୟାଗ ପୂର୍ବକ ଆଖିକୁ ତାଙ୍କର ନିଦ ଆସିଲା ନାହିଁ । ବିନିଦ୍ର ରଜନୀରେ ପ୍ରାର୍ଥନା କରୁଥାନ୍ତି ସେହି ପୁରୁଷୋତ୍ତମଙ୍କୁ ।

ଯେ ପ୍ରଭୁ ସର୍ବ ଅନ୍ତର୍ଯ୍ୟାମୀ, ଦୀନବାନ୍ଧବ ଦେବ ସ୍ୱାମୀ ।
ନ ସହେ ସେବକ ବେଦନା, ଏଥି ନିମନ୍ତେ ଚକ୍ରେ ବାନା ।
ଉଡୁଛି ଫର ଫର ହୋଇ, ଭକ୍ତକୁ ରଖିବାର ପାଇଁ ।

ସେହି ପତିତପାବନ ମାନ ଉଦ୍ଧାରଣ ଜଗନ୍ନାଥଙ୍କୁ ଚିନ୍ତା କରି ଭଞ୍ଜାଧିପତି କହୁଥାନ୍ତି – ହେ କୃପାସିନ୍ଧୁ, ଭକ୍ତବତ୍ସଳ



ଅନ୍ତର୍ଯ୍ୟାମୀ ମୁଁ ଜାଣେ ତୁମେ କେବେ ଭକ୍ତକୁ ନିରାଶ କରିବ ନାହିଁ । ମୁଁ ବର୍ତ୍ତମାନ କେଉଁ ମୁହଁ ନେଇ ମୋ ରାଜ୍ୟକୁ ଫେରିଯିବି ? ଅପମାନଭରା ମୁହଁ ମୁଁ କିପରି ପ୍ରଜାମାନଙ୍କୁ ଦେଖାଇବି ?

ପ୍ରଭୁ ଜଗନ୍ନାଥ ଜଗୁ ଜୀବନ
ଭକ୍ତହୃଦ ସର ପଦ ତପନ
ନୀଳମହୀଧର ମର୍କତ ମଣି
ଅପାର ସଂସାର ସିନ୍ଧୁ ତରଣୀ
ଭକ୍ତର ଚିର ଅଧୀନ ଯେ
ଭୃତ୍ୟର ମହିମା ପ୍ରଚାରୁଛ ବକ୍ଷେ
ବହିଣ ଚରଣ ଚିହ୍ନ ଯେ ।

ହେ ଜଗନ୍ନାଥ ନୀଳାଦ୍ରି ବିହାରୀ ଆପଣ ମୋ ଭଳି ଅଧମକୁ ଦର୍ଶନ ଦେଇ ଧନ୍ୟ କରନ୍ତୁ । ରାତ୍ରିର ଚତୁର୍ଥ ପ୍ରହରରେ ଏହିଭଳି ଚିନ୍ତା କରି କରି କିଛି ସମୟ ଆଖିକୁ ନିଦ ଆସିଯାଇଥିବା ବେଳେ ଭକ୍ତ ବତ୍ସଳ ବଡଠାକୁର ବଳଭଦ୍ର ରତ୍ନ ସିଂହାସନ ଛାଡି ଅଠରନଳାଠାରେ ଉପସ୍ଥିତ ହୋଇ ମହାରାଜାଙ୍କୁ ସ୍ୱପ୍ନାଦେଶ ପ୍ରଦାନ ପୂର୍ବକ କହିଲେ – ହେ ମୋର ଭକ୍ତ ଭଞ୍ଜ ନରେଶ ! ତୁମେ ତୁମ ରାଜ୍ୟକୁ ଫେରିଯାଅ । ଅହଂ ଭକ୍ତ ପରାଧୀନଃ । ଭକ୍ତି ଦ୍ୱାରା ତୁମେ ମୋତେ ଜୟ କରି ମୋର ସେବାର୍ଚ୍ଚନାର ଅଧିକାରୀ ହୋଇପାରିଛ । ନିଜ ରାଜ୍ୟରେ ମନ୍ଦିର ନିର୍ମାଣ କରି ମୋର ବିଗ୍ରହ ପ୍ରତିଷ୍ଠା କର । ମୁଁ ସେଠାକୁ ପ୍ରତିଦିନ ସନ୍ଧ୍ୟା ଆଳତୀ ସମୟରେ ଯାଇ ବିଜେ ହେବି ।

ଏଠାରେ ଏକ ପ୍ରଶ୍ନ ଉଠେ ଶ୍ରୀକ୍ଷେତ୍ରରେ ମହାପ୍ରଭୁ ଜଗନ୍ନାଥ ପ୍ରତିଷ୍ଠିତ ହୋଇ ସାରିବା ପରେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ବରପ୍ରଦାନ ପୂର୍ବକ କହିଥିଲେ –

ମୁଁ ତ୍ରିବାର ସତ୍ୟ କରି କହୁଛି ଏଠାକାର ଦେଉଳ ଓ ପ୍ରତିମା ଭାଙ୍ଗିଗଲେ ମଧ୍ୟ ମୁଁ କଦାପି ଏ ସ୍ଥାନ ଛାଡି ଯିବି ନାହିଁ । ପୁଣି କହିଛନ୍ତି –

ଧନ୍ୟୋହଂ କୃତକୃତ୍ୟୋହଂ ତବ ଭକ୍ତ୍ୟାନୁପୋତ୍ତମ
ନୀଳାମାଧବ ରୂପେଣ ତିଷ୍ଠାମି କନ୍ଦରେ ସଦା ।

ଅର୍ଥାତ୍ – ହେ ରାଜକୁଳ ତିଳକ ଇନ୍ଦ୍ରଦ୍ୟୁମ୍ନ ମୁଁ ତୁମର ଶ୍ରଦ୍ଧା ଭକ୍ତିରେ ଧନ୍ୟ ଓ କୃତ୍ୟ କୃତ୍ୟ । ଏହି କନ୍ଦରରେ ନୀଳମାଧବ ରୂପରେ ମୁଁ ସର୍ବଦା ରହିଥିବି । ତେଣୁ ରତ୍ନ ସିଂହାସନରେ ପୂଜିତ ସପ୍ତାବରଣ ମୂର୍ତ୍ତି ମଧ୍ୟରୁ କେବଳ ନୀଳମାଧବ ରୂପରେ ଜଗନ୍ନାଥ ସଦା ସର୍ବଦା ରତ୍ନ ସିଂହାସନରେ ରହିଥାନ୍ତି । ଏକଥା ସ୍ମରଣ କରି ମହାରାଜା ବୈଦ୍ୟନାଥ ଭଞ୍ଜ କରୁଣାମୟଙ୍କର କରୁଣା ଲାଭ କରିଥିବା ଯୋଗୁଁ କୃତ୍ୟ କୃତ୍ୟ ହୋଇ ନିଜର ଜୀବନକୁ ଧନ୍ୟ ମନେ କଲେ । ସେ ଆନନ୍ଦରେ ଏଭଳି ବିହ୍ୱଳ ହୋଇଗଲେ ଯେ, ଅଳ୍ପକାଳ ଭିତରେ ସଂଜ୍ଞାହୀନ ହୋଇପଡିଲେ । କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ଭଗବାନ ଜଗନ୍ନାଥଙ୍କୁ ଅଶେଷ କୃତଜ୍ଞତା ଜଣାଇ ରାଜା ଅନ୍ୟ ଏକ ଶ୍ରୀକ୍ଷେତ୍ରର ଅଧିକାରୀ ହୋଇଥିବା ଯୋଗୁଁ ଆନନ୍ଦରେ ଅଧୀର ହୋଇପଡିଲେ । କାରଣ ସେ ଯେଉଁ ମନ୍ଦିର କରିବେ ସେଇ ବିଗ୍ରହରେ ସ୍ୱୟଂ ଜଗନ୍ନାଥ ବିରାଜିତ ହେବେ । ଏଣୁ ଯେଉଁଠି ଜଗନ୍ନାଥ ସେଇଠି ଶ୍ରୀକ୍ଷେତ୍ର । ମହାରାଜା ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି ମହାପ୍ରଭୁଙ୍କ ମନ୍ଦିର ନିର୍ମାଣ ପାଇଁ ସମସ୍ତ ଆୟୋଜନ କଲେ ଏବଂ ରାଜ୍ୟର ସମସ୍ତ ପ୍ରଜାଙ୍କୁ ଜଣାଇଦେଲେ । ରାଜବାଟୀଠାରୁ ଅନତି ଦୂରରେ ବଳଙ୍ଗ ନଦୀର ଉତ୍ତର ପାର୍ଶ୍ୱରେ ଏକ ବାଉଁଶ ବଣକୁ ସଫା କରି ସେଠାରେ ମନ୍ଦିର ନିର୍ମାଣ ପାଇଁ ଭୂମି ପୂଜା କରାଗଲା । ହେଲେ ରାଜାଙ୍କ ମନରେ ସବୁବେଳେ ଗୋଟିଏ ଚିନ୍ତା ମନ୍ଦିରର ନକ୍ସା କିପରି ହେବ ? ଶିଳ୍ପ ଶାସ୍ତ୍ରରେ ଅଭିଜ୍ଞ ବ୍ୟକ୍ତି କେଉଁଠୁ ମିଳିବେ ? ଏହି ଚିନ୍ତାରେ ଥିବା ସମୟରେ ହଠାତ୍ ଦିନେ ଗଜପତି ମୁକୁନ୍ଦ ଦେବଙ୍କ ଆଦେଶ ଲାଭ କରି ଜନୈକ ଦୂତ ମହାରାଜାଙ୍କୁ ସନ୍ଦେଶ ଦେଲା । ଜଗନ୍ନାଥଙ୍କ ସ୍ୱପ୍ନାଦେଶ କ୍ରମେ ଦେଉଳ ତୋଳିବା ପାଇଁ ନକ୍ସାକାରକ ଓ ଅଭିଜ୍ଞ କାରିଗର ପୁରୀରୁ ଗଜପତି ମହାରାଜା ପଠାଇଦେବେ ବୋଲି ଦୂତ ପ୍ରକାଶ କଲା । ତା'ପରେ ବୈଦ୍ୟନାଥ ଭଞ୍ଜ ଓଡ଼ିଶାର ଗଜପତିଙ୍କ ସହାୟତାରେ ଅଭିଜ୍ଞ



ସ୍ଥପତି, ଶିଳ୍ପୀ ଓ କାରିଗର ଆଣି ବାରିପଦାର ଦକ୍ଷିଣ ଦିଗରେ ବଳଙ୍ଗ ନଦୀ କୂଳରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ପ୍ରଭୁ ବଡ ଠାକୁର ବଳଭଦ୍ରଙ୍କ ଦ୍ୱାରା ଆଦିଷ୍ଟ ହୋଇ ଏହି ମନ୍ଦିର ନିର୍ମାଣ କରାଯାଇଥିବାରୁ ମହାରାଜା ଏହାର ନାମ ଶ୍ରୀହରି ବଳଦେବଜୀଉ ମହାପ୍ରଭୁ ବିଜେ ବୋଲି ଏହାର ନାମକରଣ କରିଥିଲେ । ତେବେ ଏହା ଲୋକମୁଖରେ ବଡଜଗନ୍ନାଥ ମନ୍ଦିର ନାମରେ ପରିଚିତ । ଶ୍ରୀଜଗନ୍ନାଥଙ୍କ ରତ୍ନ ସିଂହାସନ ମଧ୍ୟରେ ଶାଳଗ୍ରାମ ସ୍ଥାପିତ କରାଗଲା ଓ ଦକ୍ଷ ବଢେଇଙ୍କ ଦ୍ୱାରା ମହାନିମ୍ବ କାଠ ସଂଗ୍ରହ କରି ଚତୁର୍ଦ୍ଧାମୂର୍ତ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଗଢାଗଲା ଏବଂ ୧୫୭୫ ମସିହାରେ ମହାଆଡମ୍ବର ସହକାରେ ବୈଦିକ ରୀତି ନୀତି ଅନୁଯାୟୀ ମନ୍ଦିର ଓ ବିଗ୍ରହ ପ୍ରତିଷ୍ଠା କରାଗଲା । ଶ୍ରୀକ୍ଷେତ୍ର ଅନୁରୂପ ସମସ୍ତ ଦେବନୀତି ମଧ୍ୟ ବାରିପଦାର ଏହି ମନ୍ଦିରରେ ଖଞ୍ଜା ଯାଇଥିଲା ଓ ମନ୍ଦିରର ପରିଚାଳନା ପାଇଁ ଅନେକ ଭୂ–ସମ୍ପତ୍ତି ମଧ୍ୟ ପ୍ରଦାନ କରାଯାଇଥିଲା । କାଳକ୍ରମେ ଜଗନ୍ନାଥଙ୍କ ସମସ୍ତ ଉତ୍ସବ ପୁରୀର ରୀତିନୀତି ଅନୁଯାୟୀ ଅନୁଷ୍ଠିତ ହେଲା । ଏହି ମନ୍ଦିରରେ ଶ୍ରୀକ୍ଷେତ୍ର ଅନୁରୂପ ସମସ୍ତ ଦେବ ନୀତି ପାଳିତ ହେଉଥିଲେ ମଧ୍ୟ ଏଠାକାର କିଛି ସ୍ୱତନ୍ତ୍ରତା ରହିଅଛି । ଶ୍ରୀମନ୍ଦିରରେ ଛପନଭୋଗର ବ୍ୟବସ୍ଥା ଥିବା ବେଳେ ଏଠାରେ ତା'ର ବ୍ୟତିକ୍ରମ ଦେଖାଯାଏ । ସେଠାରେ ମାଟି କୁଡୁଆରେ ଶ୍ରୀଜୀଉଙ୍କୁ ପ୍ରସାଦ ଲାଗି ହେଉଥିଲା ବେଳେ ଏଠାରେ ଶାଳପତ୍ର ନିର୍ମିତ ଖଲିରେ ଭୋଗ ଲାଗିଥାଏ । ଏଠାରେ ହେଉଥିବା କେତେକ ସ୍ୱତନ୍ତ୍ର ଭୋଗ ମଧ୍ୟରୁ ଦଳାଖେଚୁଡି, ରାମରୋଚକ, ଗୁଡ ଆରିସାର ବୈଶିଷ୍ଟ୍ୟ ରହିଛି । ୧୯୭୬ ମସିହା ଆନ୍ତର୍ଜାତିକ ମହିଳା ସମ୍ବତ୍ସରଠାରୁ ଏଠାକାର ସୁଭଦ୍ରାଙ୍କ ଦର୍ପଦଳନ ରଥକୁ କେବଳ ମହିଳାମାନେ ଟାଣିବାର ବ୍ୟବସ୍ଥା ରହିଛି । ଏଠାରେ ଶ୍ରୀଜଗନ୍ନାଥଙ୍କ ମହାନ୍ ପର୍ବ ରଥଯାତ୍ରା ମହାସମାରୋହରେ ଅନୁଷ୍ଠିତ ହେଲେ ମଧ୍ୟ ଏହାର ବୈଚିତ୍ର୍ୟ ଅଲଗା । ଏହି ରଥଯାତ୍ରା ପ୍ରଥମେ ତିନିଦିନ ଓ ବାହୁଡା ବେଳକୁ ମଧ୍ୟ ତିନିଦିନ ଧରି ଚାଲେ । ମୟୂରଭଞ୍ଜ ଜିଲ୍ଲା ଏକ ଆଦିବାସୀ ବହୁଳ ଜିଲ୍ଲା ହୋଇଥିବାରୁ ଦୂରଦୂରାନ୍ତରୁ ବହୁ ଭକ୍ତ ସେମାନଙ୍କର ପାରମ୍ପରିକ ପୋଷାକ ପରିଧାନ କରି ଏହି ରଥଯାତ୍ରା ଦେଖିବାକୁ ଆସିଥାନ୍ତି । ବିଶେଷ କରି ଆଦିବାସୀ ମହିଳା ଓ ପୁରୁଷମାନେ ସେମାନଙ୍କର ରଙ୍ଗବେରଙ୍ଗର ପେଡି ଧରି ଖୋସାରେ ବଣଫୁଲ ଖୋସି ବିଭିନ୍ନ ପ୍ରକାର ରୂପା ଗହଣାରେ ଭରପୂର ହୋଇ ସୁନ୍ଦର ନୃତ୍ୟ ପରିବେଷଣ କରୁଥିବା ବେଳେ ଆଜି ସେମାନଙ୍କର ଉପସ୍ଥିତି ନଗଣ୍ୟ । ସେମାନଙ୍କ କଣ୍ଠରୁ ନିସୃତ ଆଦିବାସୀ ସଂଗୀତର ଲହରୀ ଓ ମାଦଳ ଧୁମସା ବଂଶୀୟ କେନ୍ଦରାର ସ୍ୱର ଅତ୍ୟନ୍ତ ମନୋମୁଗ୍ଧକର । ବାସ୍ତବିକ୍ ଏହି ଯାତ୍ରା ଭକ୍ତ ଓ ଭଗବାନଙ୍କ ଏକ ଅପୂର୍ବ ମିଳନର ପର୍ବ ହିସାବରେ ଗ୍ରହଣ କରାଯାଇଛି । ବର୍ତ୍ତମାନ ମୟୂରଭଞ୍ଜ ଜିଲ୍ଲାରେ ବିଭିନ୍ନ ସ୍ଥାନରେ ରଥଯାତ୍ରା ପାଳିତ ହେଉଥିଲେ ମଧ୍ୟ ବାରିପଦାରେ ରଥଯାତ୍ରା ନିଶ୍ଚିତଭାବେ ଏକ ସ୍ୱତନ୍ତ୍ରତା ଆଜି ପର୍ଯ୍ୟନ୍ତ ବଜାୟ ରଖି ବିଶ୍ୱର ରଥଯାତ୍ରା ହିସାବରେ ସ୍ୱୀକୃତି ଲାଭ କରି ଭଂଜଭୂମିର ଗୌରବକୁ ଅକ୍ଷୁଣ୍ଣ ରଖିଛି, ଏହା ନିଃସନ୍ଦେହ ।

---

ଶୁନଗଡିଆ, ୱାର୍ଡ ନଂ ୨୦, ବାରିପଦା
ମୟୂରଭଞ୍ଜ – ୭୫୭୦୦୧







# କବି କଣ୍ଠେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା

ଅପୂର୍ବ ରଂଜନ ରାୟ

ପରମେଶ୍ୱରଙ୍କ ସାନ୍ନିଧ ଓ ଦର୍ଶନ ପାଇଁ ଏକମାତ୍ର ଭକ୍ତିପଥ ହେଉଛି ଯଥାର୍ଥ । ଭକ୍ତି ବିନା ତାଙ୍କୁ ପାଇବା ସମ୍ଭବପର ନୁହେଁ । ମଣିଷର ମୁକ୍ତି ପାଇଁ ତିନୋଟି ପଥ– ଜ୍ଞାନ, ଭକ୍ତି ଓ କର୍ମ ଉଦ୍ଦିଷ୍ଟ ହୋଇଥିଲେ ହେଁ ଭକ୍ତି ମାର୍ଗ ହେଉଛି ଏଥିପାଇଁ ମାର୍ଗ । ଭକ୍ତିକୁ ମନୀଷୀମାନେ କହନ୍ତି – 'ଭଜ' ଶବ୍ଦରୁ ଏହା ଉତ୍ପନ୍ନ ହୋଇଛି । ଭଜକୁ ସେବା ବା ପୂଜା ଅର୍ଚ୍ଚନା ଭାବରେ ବ୍ୟବହାର କରାଯାଇଥାଏ । ଭକ୍ତ ଭଗବାନଙ୍କ ନିକଟରେ ନିଜକୁ ଉତ୍ସର୍ଗ କରି ଦେବାର ଏକମାତ୍ର ମାଧ୍ୟମ ହେଉଛି ଭକ୍ତି । ପରମେଶ୍ୱରଙ୍କ ନିକଟରେ ନିଜକୁ ସମର୍ପଣ କରିବା ଓ ତାଙ୍କ ପ୍ରତି ଅନୁରାଗୀ ହେବା ହେଉଛି ଭକ୍ତି ଲକ୍ଷଣ । ପରମେଶ୍ୱରଙ୍କୁ ପ୍ରେମ କରିବା ହେଉଛି ଭକ୍ତିଭାବର ପରମ ନିଦର୍ଶନ, ଏହା ନାରଦ କହିଥାଆନ୍ତି । ଭକ୍ତ ବ୍ୟାକୁଳତା ହୃଦୟରେ ତା' ପ୍ରଭୁଙ୍କ ପାଇଁ ପ୍ରାର୍ଥନା କଲେ, ତା' ବ୍ୟର୍ଥ ହୁଏ ନାହିଁ । ଅନ୍ୟ ଆଡ଼କୁ ଲକ୍ଷ୍ୟ ନ ରଖି, କେବଳ ଗୋଟିଏ ମାର୍ଗରେ ଧାଇଁଲେ ଭକ୍ତ ସେଇଠି ପହଞ୍ଚିପାରେ ।



ଓଡ଼ିଆ ସାହିତ୍ୟରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା ବହୁ ଭାବରେ ବର୍ଣ୍ଣିତ ହୋଇଛି । ଓଡ଼ିଆ ସାହିତ୍ୟର ଆଦି ବିକାଶ ପଥରେ ଧର୍ମ ଏକମାତ୍ର ମାଧ୍ୟମ ହୋଇଥିବାରୁ ସେହି କାଳରେ ସ୍ରଷ୍ଟାମାନଙ୍କ ଲେଖନୀରେ ମହାପ୍ରଭୁ ଶ୍ରୀଜଗନ୍ନାଥ ବର୍ଣ୍ଣିତ ହେବା ସ୍ୱାଭାବିକ । ସପ୍ତମ ଶତାବ୍ଦୀରୁ ଏହି ଧାରା ଚାଲି ଆସିଥିବା ଲକ୍ଷ୍ୟ କରାଯାଏ । ତାଙ୍କ ମହିମା ଓ ଅଲୌକିକ ଦର୍ଶନ ସାରସ୍ୱତ ଜଗତକୁ ଋଦ୍ଧିମନ୍ତ କରିଛି । ମହାପ୍ରଭୁଙ୍କ ଅକଳ୍ପନୀୟ ସୌନ୍ଦର୍ଯ୍ୟ ଯୁଗେ ଯୁଗେ କବି, ଲେଖକ ଓ ସାରସ୍ୱତ ସାଧକଙ୍କୁ ମୁଗ୍ଧ ଓ ଚକିତ କରିଛି । କବି ସାରଳା ଦାସ ତାଙ୍କ ରୂପ ବର୍ଣ୍ଣନା କରି ଲେଖିଛନ୍ତି –

> ଜୟ ହେ ନୀଳ ସୁନ୍ଦର ପୁରୁଷ ଉତ୍ତମ
> ବ୍ରହ୍ମା ରୁଦ୍ର ଅବତାର ତୁମ୍ଭେ ପୂର୍ଣ୍ଣ ବ୍ରହ୍ମ ।
> ଶ୍ୱେତ ପୀତ କୃଷ୍ଣବର୍ଣ୍ଣ ତିନୋଟି ମୂରତି
> ସତ୍ତ୍ୱ, ରଜ, ତମୋ ଗୁଣ ହୋଇ ବିରାଜନ୍ତି ।
> ମଧ୍ୟରେ ବ୍ରହ୍ମ ଧରିଣ ସୁଭଦ୍ରାର ରୂପ
> ରଜୋଗୁଣେ ଜଗନ୍ନାଥ ସୁନ୍ଦର ସ୍ୱରୂପ ।

ଅନ୍ତରଙ୍ଗ ଭକ୍ତ, ଭଗବାନଙ୍କୁ ଥରେ ପାଇଗଲେ, ତାଙ୍କଠାରୁ ସେ ଭିନ୍ନ ମନେକରେ ନାହିଁ । ଅଭିନ୍ନ ଭାବ ଭିତରେ ଦୁହିଁଙ୍କ ସମ୍ପର୍କ ଗଢ଼ିଉଠେ । ତାଙ୍କୁ ପାଇଗଲା ପରେ କୋଟି କୋଟି ଟଙ୍କା ପ୍ରଲୋଭନ ଦେଖାଇ, କୌଣସି ବ୍ୟକ୍ତିଠାରୁ ମହାପ୍ରଭୁଙ୍କୁ ନେଇପାରେ ନାହିଁ । ବିଶ୍ୱ ସାହିତ୍ୟରେ ଏଭଳି ସମର୍ପଣର ଭାବ କେଉଁଠି ଦୃଶ୍ୟମାନ ହୁଏ ନାହିଁ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ଅଣାକାର ରୂପେ ବର୍ଣ୍ଣିତ ହୋଇ ସୁଦ୍ଧା, ସାକାର ରୂପରେ ବି କଳ୍ପିତ ହୋଇଛନ୍ତି । ଗୌତମ ବୁଦ୍ଧଙ୍କ ଦେହାନ୍ତ ପରବର୍ତ୍ତୀ କାଳରେ ଯେଉଁମାନେ ତାଙ୍କୁ ଭକ୍ତିର ଆତ୍ମୀୟ



ରଜ୍ଜୁରେ ଆବଦ୍ଧ କରିବାକୁ ଚାହିଁଥିଲେ, ସେମାନେ ତାଙ୍କୁ ସାକାର ରୂପରେ କଳ୍ପନା କରିବା ସହିତ ଏହି ଭାବରେ ଆରାଧନା କରିବାକୁ ଉତ୍କଣ୍ଠା ପ୍ରକାଶ କରିଥିଲେ । ଭକ୍ତ ନିଜ ଆରାଧ୍ୟ ମହାପ୍ରଭୁଙ୍କ ପାଖରେ ବାନ୍ଧି ହୋଇଥିଲେ, ସେ ଆଉ ନିର୍ଗୁଣ, ନିରାକାର ରୂପରେ ପ୍ରତିଭାତ ହୁଅନ୍ତି ନାହିଁ । ସାକାର ରୂପରେ ମହାପ୍ରଭୁ ଉତ୍ତୀର୍ଣ୍ଣ ହୋଇପଡ଼ନ୍ତି । କବି ବଳରାମ ଦାସ ତାଙ୍କ 'ଭାବ ସମୁଦ୍ର'ରେ ଶ୍ରୀଜଗନ୍ନାଥଙ୍କୁ ସାକାର ରୂପରେ ବର୍ଣ୍ଣନା କରିଛନ୍ତି –

ନାଥ ତୋ' ନିର୍ଗୁଣ ନାମ ଅଟଇ
ମୋହର ମନରୁ ଦଣ୍ଡେ ନ ଯାଇ ।

ଭକ୍ତ ପାଇଁ ସେ ସାକାର ହୋଇଥିବା ହେତୁ, ଭକ୍ତ ଦ୍ୱାରା ନିର୍ମିତ 'ବାଲିରଥ' ଜଗନ୍ନାଥଙ୍କର ଆଦରଣୀୟ ହୋଇଛି । ଭକ୍ତ ଯେତେବେଳେ ବାଲିରେ ରଥ ନିର୍ମାଣ କରି ଅନ୍ତରର ସହିତ ତାଙ୍କୁ ପ୍ରାର୍ଥନା କରିଛି, ସେତେବେଳେ ନନ୍ଦିଘୋଷରୁ ଓହ୍ଲାଇ ଆସିଛନ୍ତି ଓ ଭକ୍ତ ନିର୍ମିତ ବାଲିରଥରେ ମହାପ୍ରଭୁ ବିରାଜମାନ କରିଛନ୍ତି । ଏହି ହେଉଛି ଭକ୍ତ ପାଇଁ ଶ୍ରୀଜଗନ୍ନାଥଙ୍କର ମହିମା ଓ କରୁଣା । ଯିଏ ଅବ୍ୟକ୍ତ, ତାଙ୍କୁ ସଗୁଣ ତତ୍ତ୍ୱ ରେ ବର୍ଣ୍ଣନା କରାଯାଇଛି । ଅନାମ ଓ ଅଣାକାର ରୂପୀ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ରାମ, କୃଷ୍ଣ ପ୍ରଭୃତି ବିଭିନ୍ନ ସାକାର ରୂପରେ କଳ୍ପନା କରାଯାଇଛି ।

କବି ଶିଶୁ ଅନନ୍ତ ଦାସ, ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସାକାର ରୂପରେ କଳ୍ପନା କରିଛନ୍ତି । କବି ତାଙ୍କୁ ରୂପରେ ବର୍ଣ୍ଣନା କରିବା ସହିତ ତାଙ୍କଠାରେ ଚାରିବେଦର ବୈଶିଷ୍ଟ୍ୟ ରହିଛି ବୋଲି କହିଛନ୍ତି । କବିଙ୍କ ଭାଷାରେ –

ପରମ ପୁରୁଷ ଦେଉଳ
ନୀଳଚକ୍ର ଯେ ଶୂନ୍ୟ ଠୁଳ
ନେତ ଯେ ବ୍ରହ୍ମା ବିଷ୍ଣୁ ହର
ଉଡ଼ୁଣ ଅଛି ଚକ୍ରପର ।
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ
ବୁଦ୍ଧ ସ୍ୱରୂପେ ବିହରଇ ।
ମାୟାକୁ ଦିଶଇ ସ୍ୱରୂପ
ସକଳ ରୂପ ଯହି ଗୋପ୍ୟ ।
ଅଲେଖ ଅରୂପ ଅଚ୍ୟୁତ
ଅକ୍ଷୟ କ୍ଷୟ, ସର୍ବଜାତ ।

କବି ଅଚ୍ୟୁତାନନ୍ଦଙ୍କ ଦୃଷ୍ଟିରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଲୀଳାମୟ ଶ୍ରୀକୃଷ୍ଣ ଏକ–ଅଭିନ୍ନ । ଯଦୁବଂଶର ଅଧିବାସୀମାନେ ଶ୍ରୀଜଗନ୍ନାଥଙ୍କ ସେବା କରିବା ପାଇଁ ବ୍ରହ୍ମର୍ଷି ଅଭିଶାପ ବଳରେ ସେମାନେ ମହାପ୍ରଭୁଙ୍କ ସେବକ ହୋଇ ରହିଛନ୍ତି । ସ୍ୱୟଂ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ରୂପରେ ନୀଳାଦ୍ରିରେ ପୂଜା ପାଇଛନ୍ତି । ସେଠାରେ ପୂଜିତ ଦିଅଁଙ୍କୁ ଶୂନ୍ୟ ବୁଦ୍ଧ ରୂପରେ କବି ବର୍ଣ୍ଣନା କରିଛନ୍ତି । ସେହି ବୁଦ୍ଧରୂପୀ ଦିଅଁ ଭକ୍ତମାନଙ୍କ ଗୁହାରି ଶୁଣିପାରନ୍ତି ବୋଲି କବି କଳ୍ପନା କରି 'ଶୂନ୍ୟ ସଂହିତା'ରେ ଲେଖିଛନ୍ତି –

ଅବତାର ଦଶ ଏହି ଦାରୁରୂପ
ଏହି ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ
ବିଜେ ରତ୍ନ ସିଂହାସନ ।

କବି ଦେବଦୁର୍ଲଭ ଦାସ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ କରୁଣା ଆଶାୟୀ ହୋଇଛନ୍ତି । ତାଙ୍କ ରଚିତ 'ରହସ୍ୟ ମଞ୍ଜରୀ' କାବ୍ୟରେ ଗୋପୀଙ୍କର ବୈଶିଷ୍ଟ୍ୟ ସହିତ ପ୍ରେମମୟୀ ରାଧାଙ୍କର ପ୍ରୀତିଜଗତର ସ୍ୱଚ୍ଛତା ଉପରେ ଗୁରୁତ୍ୱ ଦେଇଥିଲେ ହେଁ ସେ କେବେ ଜଗନ୍ନାଥଙ୍କୁ ଅବହେଳା କରିନାହାନ୍ତି । କାବ୍ୟର ପ୍ରଥମ ଛାନ୍ଦରେ କାବ୍ୟକାର ନୀଳାଦ୍ରି ବିହାରୀଙ୍କ ମହିମା ବର୍ଣ୍ଣନା କରିଛନ୍ତି । କବି ଦେବଦୁର୍ଲଭ ଏହି କାବ୍ୟରେ କରୁଣା ଭିକ୍ଷୁ ରୂପେ ଠାକୁର ଶ୍ରୀଜଗନ୍ନାଥଙ୍କ ନିକଟରେ ମୁକ୍ତ କଣ୍ଠରେ ଗାଇଛନ୍ତି–

ତୁମ୍ଭ ବିନୁ ଜଗନ୍ନାଥେ କେହି ମୋର ନାହିଁ
ଗଞ୍ଜି ମାରୁଅଛ କେତେ ଦୋଷ ମୋ ଗୋସାଇଁ ।



କେଶଧରି ରଖିନେଇ ଶ୍ରୀଚରଣ ତଳେ
ଅନାଥ ଦେବର ଫେଡ ଦୁଃସହ ଆକୁଳେ ।

କବିଶେଖର ଚିନ୍ତାମଣି ମହାନ୍ତିଙ୍କ ହୃଦୟରେ ଅଭିମାନ ଭରିଯାଇଛି। କୁପୁତ୍ରମାନଙ୍କୁ ସୁପିତା ଶ୍ରଦ୍ଧା କରିଥାଏ। ପୁତ୍ରର ଜୀବନରୁ ଦୁଃଖ ଲାଘବ ପାଇଁ ପିତା ଦୃଷ୍ଟି ରଖିଥାଏ । ଏଥିରୁ ଅବହେଳା ହେଲେ ପିତାର ପିତୃତ୍ୱର ହାନୀଘଟେ। ଅକ୍ଷମ, ଅସମର୍ଥ ସନ୍ତାନ ପ୍ରତି ଦୟା ପ୍ରଦର୍ଶନ କାମନା କରି କବିଶେଖରଙ୍କ ଲେଖନୀରୁ ଝରିଆସିଛି –

ମୁଁ ସିନା କୁପୁତ୍ର କିନ୍ତୁ ତୁମ୍ଭେତ ସୁପିତା
କିପାଇଁ ନିଭାଉନାହଁ ହୃଦୁ ତୀବ୍ର ଚିତା।
ପିତୃପଦ ତାକୁ ମାନେ
ଅଧିକ ଦୟା ଯେ କରେ ଅକ୍ଷମ ସନ୍ତାନେ।

ମହାପ୍ରଭୁଙ୍କର ବହୁ ଯାତ୍ରା – ବହୁପର୍ବ । ଏହି ପର୍ବରେ ସେ ନାନା ବେଶରେ ଉଭା ହୁଅନ୍ତି । ସ୍ନାନ ଯାତ୍ରାରେ ତାଙ୍କୁ ଦର୍ଶନକରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଭକ୍ତିରେ ବିହ୍ୱଳ ହୋଇପଡ଼ିଛନ୍ତି । ଭକ୍ତି ଅର୍ଘ୍ୟ ବାଢ଼ିବା ପାଇଁ ସେ ଅତ୍ୟନ୍ତ ଗଦ୍ ଗଦ୍ ଚିତ୍ତରେ ଆତ୍ମବିଭୋର ହୋଇପଡ଼ିବା ବେଳେ ତାଙ୍କ ଲେଖନୀରୁ ଝରିଆସିଛି ସୁନ୍ଦର ହୃଦୟସ୍ପର୍ଶୀ ଚଉପଦୀ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାଳ୍ପନିକ କାବ୍ୟ, ଅଥଚ ସେହି କାବ୍ୟରେ ମହାପ୍ରଭୁଙ୍କ ସ୍ନାନଯାତ୍ରାର ରୂପ ଜୀବନ୍ତ ଭାବେ ଫୁଟିଉଠୁଛି –

କୋଟି କନ୍ଦର୍ପ ଲାବଣ୍ୟ ମୂର୍ତ୍ତି ଦରଶନ
ଦେବାକୁ ସୁବେଶେ ବିଜେ ରତ୍ନ ସିଂହାସନ ।

କବି ନିଜକୁ ଅଜାମିଳ ପରି ପାପୀ ମନେକରି, ମହାପ୍ରଭୁଙ୍କ ଭଜନ ଗାନରେ ଆପଣାକୁ ହଜାଇ ଦେଇଛନ୍ତି । ପାପ, ଅପରାଧ ତଥା ସକଳ ଦୋଷରୁ କେବଳ ସେହି ବଡ଼ ଠାକୁର ମୁକ୍ତି ଦେଇପାରିବେ ବୋଲି କବିଙ୍କର ଶେଷ ଭରସା । ସେଥିପାଇଁ କବି ଯଦୁମଣି ଅତ୍ୟନ୍ତ ବ୍ୟାକୁଳ ପ୍ରାଣରେ ତାଙ୍କୁ ଡାକିଛନ୍ତି । ଲୟ ରଖି ତାଙ୍କ ଉଦ୍ଦେଶ୍ୟରେ ଜୀବନକୁ ହଜାଇ ଦେଇଛନ୍ତି । ଜନସମାଜର ସମସ୍ତ ପାପୀଙ୍କୁ ସେ ଉଦ୍ଧାର କରିଛନ୍ତି– ସକଳ ପାପ ଧୋଇ ଦେବାରେ ତାଙ୍କର ହାତ ପ୍ରସାରିତ ହୋଇଛି । ସେ ଯେମିତି ସବୁ ପାପକୁ ନିଜ ହାତରେ ପୋଛି ଦେଇ ମୁକ୍ତ ମଣିଷ କରିବା ପାଇଁ ଚାହିଁଛନ୍ତି । କବି ଯଦୁମଣି ଏହି ଭରସାରେ ଗାଇଛନ୍ତି –

ଲୋଭ ମାୟା ମୋହ ଭ୍ରମଛନ୍ଦ ଦ୍ୱନ୍ଦ୍ୱ
ଏସବୁ ପଛକୁ ପକା
ମହାପ୍ରଭୁ ସାହା ଥାଉ ଥାଉ
ଆଉ କାହାକୁ ନକର ଶଙ୍କା ।

ଅଶାନ୍ତ ମନକୁ ଶାନ୍ତ କରିବାରେ ଏକମାତ୍ର ଜଗନ୍ନାଥ ହିଁ ଭରସା । ଅନ୍ଧକାର ପଥରେ ଆଲୋକ ଦର୍ଶନ ଲାଗି ସେହି ହିଁ ଦିଗ୍‌ଦର୍ଶକ । ଏ ଜୀବନ ବିଷୟାସକ୍ତ ହୋଇଗଲା ପରେ ସେଥିରୁ ମୁକ୍ତ କରିବା ପାଇଁ ମହାପ୍ରଭୁ ଆଶିଷ ଢ଼ାଳି ଦିଅନ୍ତି । କବି ଲେଖନୀରେ ସନ୍ଧ୍ୟାଧୂପ ବେଳର ମହାପ୍ରଭୁଙ୍କ ବର୍ଣ୍ଣନା ଅତ୍ୟନ୍ତ ଆକର୍ଷଣୀୟ । ଧୂପ କର୍ପୂରର ବାସ୍ନା ଭାସି ଆସିବା ସହିତ ଦୀପ ଜଳି ଉଠୁଛି – ଜଗମୋହନରେ ଚନ୍ଦ୍ର, ପବନ, ଇନ୍ଦ୍ର ପ୍ରମୁଖ ଉପସ୍ଥିତ । ହରିନାମ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ । ଚାମର ପଡୁଛି । ଏତେବେଳେ ମହାପ୍ରଭୁଙ୍କ ନୟନ ଯୁଗଳ, କାଳିନ୍ଦୀ ହ୍ରଦରେ ଥିବା ଶ୍ୱେତପଦ୍ମରେ ଶୋଭା ପାଉଥିବା କେଶର ଉପରେ ସତେଯେପରି ଦୁଇଗୋଟି ଭଅଁର ପରି ଦିଶୁଛନ୍ତି । ଏହି ସନ୍ଧ୍ୟା ଧୂପର ପରିବେଶକୁ ବର୍ଣ୍ଣନା କରି କବି ଜଗନ୍ନାଥ ଦାସ କହିଛନ୍ତି –

ମନାଇ ହୋ !
ତିନି ଧୂପରେ ଯେହୁ ସାର
କେହି କହିପାରିବ ଯେ ଜଗନ୍ନାଥଙ୍କ ଲୀଳା
ବ୍ରହ୍ମା ରୁଦ୍ରଙ୍କୁ ଅଗୋଚର ।

ମହାପ୍ରଭୁଙ୍କର ବାରମାସରେ ତେର ପର୍ବ । ଏହି ପର୍ବମାନଙ୍କରେ ଦିଅଁଙ୍କୁ ସୁନ୍ଦର ଭାବରେ ବେଶ କରିଦିଆଯାଏ ।



ବୈଶାଖମାସ ଶୁକ୍ଳ ତୃତୀୟା ତିଥିଠାରୁ ଫାଲ୍‌ଗୁନ ମାସ ପୂର୍ଣ୍ଣିମା ତିଥି ପର୍ଯ୍ୟନ୍ତ ସେ ବିଭିନ୍ନ ବେଶରେ ସଜ୍ଜିତ ହୁଅନ୍ତି । ଏହିସବୁ ବେଶ ଭୂଷଣକୁ ନେଇ କବି ଲେଖନୀ ସୁନ୍ଦର-ରସାଳ ବର୍ଣ୍ଣନା କରିଛି । ଆଷାଢ଼ମାସ ଶୁକ୍ଳ ଏକାଦଶୀ ତିଥିରେ ସୁନାବେଶକୁ କବି ଆକର୍ଷଣୀୟ କରି ବର୍ଣ୍ଣନା କରିବା ସହିତ ଭାଦ୍ରବ ମାସ କୃଷ୍ଣ ଦଶମୀ ତିଥିରେ ବଣଭୋଜି ବେଶର ବର୍ଣ୍ଣନା ଆକର୍ଷଣୀୟ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ହାତୀ ବେଶକୁ କବି ଯେପରି ବର୍ଣ୍ଣନା କରିଛନ୍ତି, ବୈଶାଖ ମାସର ଶୁକ୍ଳ ତୃତୀୟା ତିଥିରେ ହେଉଥିବା ଚନ୍ଦନ ଲାଗି ବେଶକୁ କବି ବର୍ଣ୍ଣନାରେ ମଧ୍ୟ ସେପରି ହୃଦୟଗ୍ରାହୀ କରିଛନ୍ତି । ଆଶ୍ୱିନ ମାସ ଶୁକ୍ଳ ଏକାଦଶୀ ତିଥିଠାରୁ, କାର୍ତ୍ତିକ ଶୁକ୍ଳ ଦଶମୀ ତିଥି ଯାଏଁ ରାଇଦାମୋଦର ବେଶ, କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଲକ୍ଷ୍ମୀ ନୃସିଂହ ବେଶ, ମାଘମାସରେ ପଦ୍ମବେଶ, ଫାଲଗୁନ ମାସ ପୂର୍ଣ୍ଣିମା ତିଥିରେ ରାଜବେଶ ଆଦି ହେଉଥିବା ଦୃଶ୍ୟକୁ କବି ଲେଖନୀ ଆକର୍ଷଣୀୟ ଭାବେ ବର୍ଣ୍ଣନା କରିଛି । ସରଳ ଭକ୍ତ ପ୍ରାଣରେ ମହାପ୍ରଭୁ ଯେପରି ଭାବରେ ବନ୍ଧା ହୋଇଛନ୍ତି, କବି ଲେଖନୀରେ ମଧ୍ୟ ସେପରି ସେ ଯୁଗେ ଯୁଗେ ଚିତ୍ରିତ ହୋଇଛନ୍ତି । ଗବେଷକ ଓ ସମାଲୋଚକ ଆଜି ସେହି ବର୍ଣ୍ଣନାକୁ ସମୀକ୍ଷା କରିବା ବେଳେ ଆତ୍ମବିଭୋର ହୋଇପଡୁଛନ୍ତି। ସମାଲୋଚକ ଆଲୋଚନା ବେଳେ ସେହି କବି ଲେଖନୀର ଚିତ୍ରଣରୁ ଥଳକୂଳ ପାଏ ନାହିଁ। ଏପରି କଳ୍ପନାତୀତ ବର୍ଣ୍ଣନା କେବଳ ଜଣେ କବିର ଭକ୍ତିଭାବନା ଯୋଗୁଁ ସମ୍ଭବପର ହୋଇଥାଏ। ଭକ୍ତ ଯେତେବେଳେ ଗଦ୍‌ଗଦ୍ ଚିତ୍ତରେ ଭକ୍ତିରେ ତଲ୍ଲୀନ ହୋଇଯାଏ ସେତେବେଳେ ସେ ଏହିପରି ପ୍ରାଣଚହଲା ମର୍ମସ୍ପର୍ଶୀ ଛନ୍ଦ ରଚନା ପାଇଁ ସମ୍ଭବ ହୁଏ। କବି ଲେଖନୀର ସେହି ଚିତ୍ରିତ ଛନ୍ଦରୁ କିଞ୍ଚିତ ମାତ୍ର ଏଠାରେ ଉପସ୍ଥାପିତ ହେଲା।

**ସହାୟକ ଗ୍ରନ୍ଥସୂଚୀ**


୧. ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଗ୍ରନ୍ଥମନ୍ଦିର, କଟକ-୨ ।

୨. ଶ୍ରୀଜଗନ୍ନାଥ ପଦ୍ୟାବଳୀ : ସଂ. ଡକ୍ଟର କ୍ଷେତ୍ରବାସୀ ନାୟକ, ପୁସ୍ତକଭଣ୍ଡାର, ବ୍ରହ୍ମପୁର ।

୩. ସାହିତ୍ୟ, ଇତିହାସ ଓ ସଂସ୍କୃତି : ପଠାଣି ପଟ୍ଟନାୟକ, କଟକ ଟ୍ରେଡିଙ୍ଗ କମ୍ପାନୀ, କଟକ-୨ ।

୪. ପ୍ରାଚୀନ ଓଡ଼ିଆ ଗୀତି କବିତାରେ ଶ୍ରୀଜଗନ୍ନାଥ : ଡକ୍ଟର ହରିଶ୍ଚନ୍ଦ୍ର ବେହେରା, ଫ୍ରେଣ୍ଡସ୍ ପବ୍ଲିସରସ୍ ।

୫. ଭାବ ସମୁଦ୍ର : କି ବଳରାମ ଦାସ ।

୬. ରହସ୍ୟ ମଞ୍ଜରୀ : କବି ଦେବଦୁର୍ଲଭ ଦାସ, ପ୍ରାଚୀ ସାହିତ୍ୟ ସମିତି, କଟକ ।

୭. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ।



ସଂପାଦକ,
'ସାଳନ୍ଦୀ ସମାଚାର'
ମଠସାହି, ଭଦ୍ରକ








# ରାସ ତତ୍ତ୍ୱରେ ରାଧା

ଅଭିରାମ ନାୟକ

ପୃଥିବୀରେ ମନୁଷ୍ୟ ଏକମାତ୍ର ପ୍ରାଣୀ ଯେ କି ଧର୍ମାଶ୍ରୟୀ । ଧର୍ମୀୟ ପ୍ରସଙ୍ଗ ଶ୍ରବଣ, ପଠନ ଦ୍ୱାରା ସୁସ୍ଥ ମାନସିକତା ଲାଭ କରି ହୁଏ । ସନାତନ ହିନ୍ଦୁ ଧର୍ମରେ ପରମ ଆରାଧ୍ୟ ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି ଏକ ତତ୍ତ୍ୱଭିତ୍ତିକ ପ୍ରସଙ୍ଗ । ଏହି ତତ୍ତ୍ୱ ନିଃସୃତ ଅମୃତ ଆସ୍ୱାଦନ ଦ୍ୱାରା ଜୀବନରେ ଚରମ ସିଦ୍ଧି ପ୍ରାପ୍ତି ସମ୍ଭବ । ଏଥିପାଇଁ ଭୌତିକ ଜ୍ଞାନ ନୁହେଁ ହୃଦୟରେ ଭାବାବେଗ ଜିଜ୍ଞାସା ଅପରିହାର୍ଯ୍ୟ ।



ଆଜକୁ ପାଞ୍ଚ ହଜାର ବର୍ଷ ପୂର୍ବେ ଦ୍ୱାପର ଯୁଗରେ କୌଣସି ଏକ ଭାଦ୍ରବ କୃଷ୍ଣପକ୍ଷ ଅଷ୍ଟମୀ ତିଥି ନିଶାର୍ଦ୍ଧରେ କଂସର ବନ୍ଦୀଶାଳାରେ କୃଷ୍ଣ ଜନ୍ମ ହୋଇଥିଲେ । ପ୍ରତ୍ୟେକ କୃଷ୍ଣ ଅଷ୍ଟମୀର ନିଶାର୍ଦ୍ଧ ହେଉଛି ସେହି ରାତ୍ରିରେ ଚନ୍ଦ୍ରଙ୍କ ଉଦୟ ସମୟ । ଅର୍ଥାତ୍ ଘନ ଅନ୍ଧକାର ମଧ୍ୟରୁ ଚନ୍ଦ୍ର ଉଦୟ ହୋଇ ଆସୁଥିବା ବେଳେ କୃଷ୍ଣଙ୍କ ଜନ୍ମ ମହାନ୍ଧକାର ମଧ୍ୟରେ ଆଲୋକ ଉଦ୍ଭାସନର ସଙ୍କେତ ଦିଏ ।

କୃଷ୍ଣ ଯେ ସ୍ୱୟଂ ଭଗବାନ ଏକଥା ଜନ୍ମ ମାତ୍ରେ ବସୁଦେବ, ପରେ ପରେ ଉଗ୍ରସେନ ଓ ସମୟକ୍ରମେ ଅନ୍ୟ ସିଦ୍ଧ ସାଧକମାନେ ଜାଣିପାରିଥିଲେ । କୃଷ୍ଣଙ୍କର ଶୈଶବ ବ୍ରଜପୁରରେ ଅତିବାହିତ ହୋଇଥିଲା । (ଗୋପ, ବୃନ୍ଦାବନ ସମେତ ମଥୁରାର ଆଖପାଖ ଅଞ୍ଚଳକୁ ବ୍ରଜଧାମ ବା ବ୍ରଜପୁର କୁହାଯାଏ)

ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରେ ଭାଦ୍ରବ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଗୋକୁଳର ସାମନ୍ତ ରାଜା ବୃଷଭାନୁଙ୍କ ପତ୍ନୀ କୀର୍ତ୍ତିଦା ପ୍ରଭାତ ସ୍ନାନ ପାଇଁ ଯାଇଥିବା ପୁଷ୍କରିଣୀରେ ଏକ ପ୍ରସ୍ଫୁଟିତ କଇଁଫୁଲ ଉପରେ ଶିଶୁକନ୍ୟାଟିଏ ଶୋଇଥିବାର ଦେଖି ତାକୁ ଅତି ଆଦରରେ ନେଇଆସି ତାହାର ନାମ ରଖିଥିଲେ ରାଧା । ସେହିଦିନଠାରୁ ତିନି ଦିନ ପରେ ଯଶୋଦାଙ୍କ କୋଳରେ ଥିବା କୃଷ୍ଣଙ୍କ ସଂସ୍ପର୍ଶରେ ଆସିବା ମାତ୍ରେ ଜନ୍ମରୁ ମୁଦ୍ରିତ ଥିବା ରାଧାଙ୍କର ଚକ୍ଷୁ ପଲକ ଖୋଲି ଯାଇଥିଲା ଓ ସେ ପ୍ରଥମେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିଥିଲେ । କୈଶୋରାବସ୍ଥାରେ ରାଧା ଆୟାନ (ଚନ୍ଦ୍ରସେଣା) ନାମକ ଜଣେ ବହୁଜନ୍ମ ସାଧନାସିଦ୍ଧ ଗୋପାଳକୁ ନାମକୁ ମାତ୍ର ବିବାହ କରିଥିଲେ । ରାଧାଙ୍କ ଶାଶୁଙ୍କ ନାମ ଜଟିଳା ଓ ନଣନ୍ଦଙ୍କ ନାମ କୁଟିଳା । ସମ୍ପର୍କରେ ରାଧା କୃଷ୍ଣଙ୍କ ମାଇଁ । ବଙ୍ଗଳା କବି ଚଣ୍ଡୀ



ଦାସ, ମିଥିଳା କବି ବିଦ୍ୟାପତି ଓ କେତେକ ଓଡ଼ିଆ କବି ସେମାନଙ୍କ ରଚନା ମାଧମରେ ରାଧାଙ୍କୁ କୃଷ୍ଣଙ୍କର ଭକ୍ତିପ୍ରବଣା ପ୍ରେମମୟୀ ବାଲ୍ୟ ବାନ୍ଧବୀ ଭାବରେ ବର୍ଣ୍ଣନା କରିଛନ୍ତି ।

ବାଳକ କୃଷ୍ଣ ଗୋପପୁରରେ ଦାମ, ସୁଦାମ, ସୁବଳ ଓ ମଧୁମଙ୍ଗଳ ଆଦି ସାଥୀମାନଙ୍କ ସହ ଖେଳାଲୀଳା କରିଥିଲେ । ମାତ୍ର ଏଗାର ବର୍ଷ ବୟସରେ ସେ ଗୋପ ତ୍ୟାଗ କରି ମଥୁରା ଯାତ୍ରା କରିଥିଲେ । ଏହି ଯାତ୍ରା ଥିଲା ଅଣଲେଉଟା ।

ଅପୂର୍ବ କାନ୍ତି ଓ ମନୋରମ ଶରୀର ଗଠନ ସହିତ ରତ୍ନଖଚିତ କୁଣ୍ଡଳ, ପୀତବସ୍ତ୍ର, ମୟୂରପୁଚ୍ଛ ତଥା ବନମାଳ ସୁଶୋଭିତ ରାଜାଘରର ଅଲିଅଳ ପୁଅ ଶ୍ରୀକୃଷ୍ଣଙ୍କ ରୂପ ସୌଷ୍ଠବ ତ୍ରିଭୁବନରେ ସବୁଠୁ ସୁନ୍ଦର କାମଦେବଙ୍କଠାରୁ କୋଟି କୋଟି ଗୁଣରେ ଅଧିକ ମନୋହର ଥିଲା ।

କୃଷ୍ଣଙ୍କ ଶରୀର କୋଟିଏ କନ୍ଦର୍ପ ଶୋଭାରୁ ବଳି ଶୋଭନୀୟ ଥିଲା । ତ୍ରିଭଙ୍ଗୀ ଠାଣିରେ ସୁମଧୁର ବଂଶୀ ବାଦନ ବାଳକ କୃଷ୍ଣଙ୍କ ଅନିନ୍ଦ୍ୟ ସୌନ୍ଦର୍ଯ୍ୟକୁ ବହୁ ଗୁଣରେ ଆକର୍ଷଣୀୟ କରୁଥିଲା । ଏତଦ୍‌ଭିନ୍ନ ପୂତନା, ଶକଟା, ତୃଣାବର୍ତ୍ତ, ବତ୍ସା, ବକା, ଅଘା ଆଦି ଶକ୍ତିଶାଳୀ ଅସୁର ଅସୁରୀମାନଙ୍କୁ ଅତି ସହଜରେ ନିପାତ କରିବା ସଙ୍ଗେ ସଙ୍ଗେ ଗୋବର୍ଦ୍ଧନ ଧାରଣ, କାଳୀୟ ଦଳନ ଆଦି କାର୍ଯ୍ୟ ସମ୍ପାଦନ କରି ସେ ଜଣେ ଅସାମାନ୍ୟ ଶିଶୁର ପରିଚୟ ଦେଇଥିଲେ । ତେଣୁ ବ୍ରଜ ଧାମରେ କୃଷ୍ଣ ଥିଲେ ସମସ୍ତଙ୍କ ଆକର୍ଷଣର କେନ୍ଦ୍ର ବିନ୍ଦୁ ।

ନାରୀମାନେ ସ୍ୱଭାବତଃ ସ୍ନେହଶୀଳା । ଶିଶୁ ସୁଲଭତା ପ୍ରତି ପ୍ରତ୍ୟେକ ନାରୀର ଦୁର୍ବଳତା ରହିଥାଏ । ଏଣୁ ରାଧାଙ୍କ ସମେତ ଗୋପପୁରର ନାରୀମାନେ (ଗୋପୀମାନେ) ଦିବ୍ୟ ବାଳକ କୃଷ୍ଣଙ୍କୁ ଅତ୍ୟନ୍ତ ସ୍ନେହ ଆଦର କରୁଥିଲେ । ଅନେକ ଗୋପୀ ଯଶୋଦାଙ୍କର ସମବୟସ୍କା ଥିଲେ । ଗୋପୀମାନଙ୍କ ମମତାରେ ବାନ୍ଧି ହୋଇ କୃଷ୍ଣ ସେମାନଙ୍କ ସହ ବିଭିନ୍ନ କୌତୁକ କରୁଥିଲେ । ଗୋପୀମାନଙ୍କ ସହ କୃଷ୍ଣଙ୍କର ଅବାଧ ମିଳାମିଶା ଓ ସମ୍ପର୍କକୁ କୌଣସି ପରିସ୍ଥିତିରେ ଅଶୁଭ ଦୃଷ୍ଟିରେ ବିଚାର କରାଯାଇ ନପାରେ । କୃଷ୍ଣ ଯେ ସ୍ୱୟଂ ଭଗବାନ ଏହା ତାଙ୍କର ଅଲୌକିକ କାର୍ଯ୍ୟକଳାପରୁ ସ୍ପଷ୍ଟ ପ୍ରମାଣିତ । ଗୋପପୁରରେ ଜନ୍ମ ଗ୍ରହଣ କରି ଥିବା ଗୋପୀ ଗୋପାଳମାନେ ମଧ ଜଣେ ଜଣେ ସିଦ୍ଧତପା ଦିବ୍ୟାତ୍ମା ।

'ଅନେକ ଜନ୍ମ ତପ କରି ଏବେ ହୋଇଲେ ଗୋପ ନାରୀ'
(ଭାଗବତ ୧୦/୩୦)

ପଦ୍ମପୁରାଣ ପାତାଳ ଖଣ୍ଡରେ ଉଗ୍ରତପା, ସତ୍ୟତପା, ହରିଧାମ, ଜାବାଳି ଓ କୁଶଧ୍ୱଜଙ୍କ ପରି ମହାନ ଋଷିଙ୍କ ବର୍ଣ୍ଣନା ରହିଛି, ଯେଉଁମାନେ ତପସ୍ୟା କରି ସିଦ୍ଧିଲାଭ ସ୍ୱରୂପ ଦ୍ୱାପରରେ ଗୋପୀ ଭାବେ ବ୍ରଜପୁରରେ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀରାମ ଅବତାରରେ ଭଗବାନଙ୍କ ସ୍ୱରୂପ ସୌନ୍ଦର୍ଯ୍ୟ ନିକଟରେ ନିଜକୁ ସମର୍ପଣ କରି ଦେଇଥିବା ଅନେକ ଋଷି ଭଗବାନଙ୍କ ବରପ୍ରାପ୍ତ ହୋଇ ଗୋପୀ ଭାବେ ଜନ୍ମନେଇଥିଲେ । ସେହିପରି ଅନେକ ଦେବ କନ୍ୟା, ତପସ୍ୱୀ ଓ ସିଦ୍ଧପୁରୁଷ ଭଗବାନଙ୍କ ପ୍ରତ୍ୟକ୍ଷ ସାନ୍ନିଧ ଲାଭ ପାଇଁ ପରବର୍ତ୍ତୀ ଜନ୍ମରେ ଗୋପୀ ହୋଇଥିଲେ । ଗୋପୀମାନଙ୍କର ସାଧନାର ଫଳ ଏତେ ସମୃଦ୍ଧ ଥିଲା ଯେ ବ୍ରହ୍ମା, ଶଙ୍କର ନାରଦ ଆଦି ଦେବତା ତଥା ଉଦ୍ଧବ, ଅକ୍ରୂର ଆଦି ବ୍ରହ୍ମଜ୍ଞମାନେ ତାଙ୍କର ଉପାସନା କରୁଥିଲେ । ଜନ୍ମଜନ୍ମାନ୍ତର ନିରବଚ୍ଛିନ୍ନ ତପସ୍ୟାରେ ସିଦ୍ଧିଲାଭ କରିଥିବା ଗୋପୀମାନେ କୃଷ୍ଣଙ୍କର ବାସ୍ତବ ଭଗବତ ସ୍ୱରୂପକୁ ଚିହ୍ନି ପାରିଥିଲେ । ତେଣୁ ସେମାନେ ନିଜର ପୁତ୍ର, କନ୍ୟା, ସ୍ୱାମୀ ଓ ପରିଜନଙ୍କ ଅପେକ୍ଷା କୃଷ୍ଣଙ୍କୁ ଅଧିକ ଭଲ ପାଉଥିଲେ । ସେମାନେ ଜାଣିଥିଲେ ଯେ ପରମ ପ୍ରେମମୟ ଶ୍ରୀକୃଷ୍ଣଙ୍କ ବାହୁ ଛାୟା ତଳେ ରହିଲେ ଆତ୍ମୀୟମାନଙ୍କର ମଙ୍ଗଳ ହେବା ସହ ସହଜରେ ସଂସାର ସାଗର ପାରିହୋଇଯିବ । କେବଳ ଗୋପୀମାନେ ନୁହନ୍ତି ଗୋପାଳମାନେ ମଧ ନିଜ ନିଜର ପୁଣ୍ୟ ବଳରେ କୃଷ୍ଣଙ୍କର ଭଗବତ ଶକ୍ତିକୁ ଅନ୍ତରରେ ଉପଲବ୍ଧି କରି ପାରିଥିଲେ ।

'ଇତି ନନ୍ଦାଦୟୋ ଗୋପାଃ କୃଷ୍ଣରାମ କଥାଂ ମୁଦା
କୁର୍ବନ୍ତୋ ରମମାଣାଶ୍ଚ ନାବିନ୍ଦନ୍‌ଭବ ବେଦନାମ୍ ।'
(ଭାଗବତ ୧୦/୧୧/୫୮)



ନନ୍ଦ ଆଦି ଗୋପାଳମାନେ ବଡ଼ ଆନନ୍ଦରେ ରାମ କୃଷ୍ଣଙ୍କ କଥା ଚର୍ଚ୍ଚା କରନ୍ତି । ସେମାନେ ଏସବୁ କଥାରେ ଏତେ ତନ୍ମୟ ହୋଇ ଯାଆନ୍ତି ଯେ ସେମାନଙ୍କୁ ସଂସାରରେ କୌଣସି ଦୁଃଖକଷ୍ଟ ଜଣାପଡେ ନାହିଁ । ସରଳ ନିଷ୍ପାପ ଗୋପୀ ଗୋପାଳମାନେ ସେମାନଙ୍କ ମନ, ଶରୀର, ଆଚରଣ ଓ କର୍ମ ସବୁକିଛି କୃଷ୍ଣଙ୍କୁ ସମର୍ପି ଦେଇଥିଲେ । ଭାବଗ୍ରାହୀ ଭଗବାନ ମଧ୍ୟ ଗୋପବାସୀଙ୍କ ପ୍ରେମ ବନ୍ଧନରେ ଆବଦ୍ଧ ହୋଇ କେବଳ ସେମାନଙ୍କ ଆନନ୍ଦ ପାଇଁ ଲୀଳା ରଚନା କରୁଥିଲେ । ନନ୍ଦ ରାଜାଙ୍କ ଘରେ ଦଧି, ଦୁଗ୍ଧ ଓ ଲବଣିର କୌଣସି ଅଭାବ ନଥିଲେ ମଧ୍ୟ କୃଷ୍ଣ ସାଥୀମାନଙ୍କ ସହ ମିଶି ପଡୋଶୀ ଘରୁ ଲବଣି ଚୋରି କରୁଥିଲେ । ତତ୍ତ୍ୱାର୍ଥରେ ତାହା ଚୋରି ନଥିଲା, ତାହା ଥିଲା ସମର୍ପିତ ଗୋପୀ ଗୋପାଳଙ୍କ ପୂଜା ଗ୍ରହଣର ଏକ ମାଧ୍ୟମ ।

ଏକଦା ସ୍ନାନରତା ଗୋପୀମାନଙ୍କ ବସ୍ତ୍ରକୁ ବୃକ୍ଷ ଡାଳକୁ ଉଡ଼ାଇ ପ୍ରଭୁ ସେମାନଙ୍କୁ ବିବ୍ରତ କରିଥିଲେ । ଏହାର ପ୍ରଚ୍ଛନ୍ନ କାରଣ ଏହି ଯେ ଗୋପୀମାନେ ଶାସ୍ତ୍ରନୀତି ଉଲ୍ଲଂଘନ ପୂର୍ବକ ଉଲଗ୍ନ ସ୍ନାନ କରୁଥିଲେ । ଉଲଗ୍ନ ସ୍ନାନ ବରୁଣ ଦେବତାଙ୍କ ପ୍ରତି ଅବମାନନା ଓ ତାମସିକ ପ୍ରକୃତି ଜାଗ୍ରତକାରୀ । ହୃଦୟ ପବିତ୍ର ଥିଲେ ମଧ୍ୟ ଆଚରଣ ମର୍ଯ୍ୟାଦା ହାନିକାରକ ହୋଇଥିଲେ ସାଧନାରେ ସିଦ୍ଧି ମିଳେ ନାହିଁ । ସେତେବେଳେ କାତ୍ୟାୟନୀ ଦେବୀଙ୍କ ବ୍ରତ କରିଥିବା ଗୋପୀମାନଙ୍କ ସିଦ୍ଧିଲାଭ ପଥରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଉଲଗ୍ନ ସ୍ନାନକୁ ବାରଣ କରିବା ପାଇଁ ଶ୍ରୀକୃଷ୍ଣ ବସ୍ତ୍ରହରଣ ଲୀଳା ରଚନା କରି ଗୋପୀମାନଙ୍କୁ ପ୍ରାୟଶ୍ଚିତ କରାଇଥିଲେ । (ବ୍ୟାସଦେବଙ୍କ କୃତ ସଂସ୍କୃତ ଭାଗବତ ୧୦/୨୨/୧୯ ଓ ଜଗନ୍ନାଥ ଦାସଙ୍କ ଓଡିଆ ଭାଗବତରେ ଏହାର ପ୍ରମାଣ ରହିଛି)

ପଥଭ୍ରଷ୍ଟ ଗୋପୀମାନଙ୍କୁ କୃଷ୍ଣ କହିଛନ୍ତି –

ଏ ନୋହେ ତୁମ୍ଭର ଉଚିତ ବିଶେଷେ କରିଅଛ ବ୍ରତ  
ବିବସ୍ତ୍ର ହୋଇ ଜଳେ ପଶି କୂଳେ ଉଠିଲ ଏବେ ଆସି  
ଏ ବଡ଼ ଅପରାଧ ହୋଇ ନରକେ ପଡ଼ିବଟି ଯାଇ ॥  
(ଭାଗବତ ୧୦/୨୩)

ଛଳନାବର୍ଜିତ ହୋଇ ପ୍ରବୃତ୍ତିର ଆବରଣ ନଷ୍ଟ ହୋଇଯିବା ହିଁ ବସ୍ତ୍ରହରଣର ତତ୍ତ୍ୱାର୍ଥ । ଅହଂଭାବ ଦୂର ହୋଇ ପ୍ରବୃତ୍ତି ମାର୍ଜିତ ହେଲେ ଗୋବିନ୍ଦ କୃପା ମିଳେ ।

ଭାଗବତ ମଧ୍ୟରେ ସର୍ବଶ୍ରେଷ୍ଠ ଭକ୍ତି ରସ ହେଉଛି ରାସଲୀଳା । ଏହି ଲୀଳା ଶ୍ରବଣ, ପଠନ, ମନନ ଓ ଚିନ୍ତନ ଦ୍ୱାରା ଜନ୍ମ ଜନ୍ମାନ୍ତର ପାପ କ୍ଷୟ ହୋଇଯାଏ । ରାସ ଅର୍ଥ ରସ ରଙ୍ଗ ଯୁକ୍ତ ନୃତ୍ୟ ।

ଗୋପପୁର ସବୁଦିନ ପାଇଁ ତ୍ୟାଗ କରିବା ପୂର୍ବରୁ ଗୋପୀମାନଙ୍କ ଜନ୍ମ ଜନ୍ମର ଇଚ୍ଛା ପୂରଣ ପାଇଁ ଭକ୍ତ ବାଞ୍ଛାକଳ୍ପତରୁ ଶ୍ରୀକୃଷ୍ଣ ରାସଲୀଳା ପରିକଳ୍ପନା କରିଥିଲେ । ଦଶ ବର୍ଷ ବୟସର ବାଳକ ଶ୍ରୀକୃଷ୍ଣ କୌଣସି ଏକ କାର୍ତ୍ତିକ ପୂର୍ଣ୍ଣିମାର ଜ୍ୟୋତ୍ସ୍ନାବିଧୌତ ରଜନୀରେ ପବିତ୍ର ବୃନ୍ଦାବନ ଧାମରେ ତାଙ୍କ ମୋହନ ବଂଶୀ ବାଦନ କଲେ ।

ଅଦ୍ୱିତୀୟ ସେ ବଂଶୀ ସ୍ୱନ ପ୍ରଭାବରେ ପଥର ତରଳି ଯାଉଥିଲା, ପଶୁମାନେ ହିଂସ୍ର ସ୍ୱଭାବ ଭୁଲି ଯାଉଥିଲେ, ମୃତ କାଷ୍ଠ ସବୁ ପଲ୍ଲବିତ ହୋଇଯାଉଥିଲା, ଯମୁନାର ସ୍ରୋତ ଓ ଜଳଚର ଜୀବମାନେ ସ୍ଥିର ହୋଇଯାଉଥିଲେ । ପକ୍ଷୀମାନେ କାକଳି, ପବନ ଓ ଚନ୍ଦ୍ର ନିଜ ନିଜର ଗତି ଭୁଲି ଯାଉଥିଲେ । ଧ୍ୟାନସ୍ଥ ଯୋଗୀମାନଙ୍କ ଧ୍ୟାନ ଭଗ୍ନ ହୋଇଯାଉଥିଲା ଓ ବ୍ରଜପୁରରେ ଗୋପୀମାନେ ବ୍ୟଗ୍ର ବିବ୍ରତ ହୋଇପଡୁଥିଲେ ।

ସେ ବଂଶୀ ସ୍ୱନର ଆଉ ଏକ ସ୍ୱତନ୍ତ୍ରତା ଏହି ଯେ ପ୍ରତ୍ୟେକ ଗୋପୀ ଶୁଣୁଥିଲେ ଯେପରି ବଂଶୀ କେବଳ ତାଙ୍କ ନାମ ଧରି ଡାକୁଛି । ବଂଶୀ ସ୍ୱନ ଶୁଣିବା ମାତ୍ରେ ଗୋପୀମାନେ ନିଜ ନିଜର ଦୈନନ୍ଦିନ ଗୃହ କର୍ମକୁ ତତ୍କ୍ଷଣାତ୍ ବନ୍ଦ ରଖି ବଂଶୀ ସ୍ୱନ ଆଡ଼କୁ ଧାଇଁବାକୁ ଲାଗିଲେ । ଏଠାରେ ସୂଚାଇ ଦିଆଯାଇପାରେ ଯେ ଗୋପୀମାନଙ୍କ ଆତ୍ମୀୟମାନଙ୍କର କୃଷ୍ଣଙ୍କ ଉପରେ ଏତେ ଅଗାଧ ବିଶ୍ୱାସ ଥିଲା ଯେ ରାତ୍ରି ହୋଇଥିଲେ ମଧ୍ୟ ସେମାନଙ୍କର କୌଣସି ଶଙ୍କା ନଥିଲା ଓ ସେମାନେ ଗୋପୀମାନଙ୍କୁ ବୃନ୍ଦାବନ ଯିବାରେ ପ୍ରତିବନ୍ଧକ ଲଗାଇ ନଥିଲେ ।



ପରମ ସାଧ୍ୱୀ ଗୋପୀମାନେ ରାସସ୍ଥଳରେ ଯୋଗେଶ୍ୱରେଶ୍ୱର ଶ୍ରୀକୃଷ୍ଣଙ୍କୁ ମନ ମଧ୍ୟରେ ପୂଜା କରୁଥିଲେ ।

ଗୋପୀମାନଙ୍କ ବ୍ୟାକୁଳ ପ୍ରାର୍ଥନାରେ ମୁଗ୍ଧ ଭଗବାନ ଅସଂଖ୍ୟ କୃଷ୍ଣ ରୂପ ଧାରଣ କରି ନୃତ୍ୟ ଗୀତଯୁକ୍ତ ରାସରେ ନିମଗ୍ନ ହୋଇଥିଲେ । ସମସ୍ତ ଗୋପୀମାନଙ୍କ ଇଛା ସମାନ ନଥିଲା । ତେଣୁ ପ୍ରତ୍ୟେକ ଗୋପୀ ପାଇଁ ଜଣେ କୃଷ୍ଣ ରାସ କରୁଥିଲେ । ଅସଂଖ୍ୟ ଗୋପୀଙ୍କ ସହ ଏକ ସମୟରେ ନୃତ୍ୟ କରୁଥିଲେ ମଧ୍ୟ ପ୍ରତ୍ୟେକ ଗୋପୀ ଅନୁଭବ କରୁଥିଲେ ଯେ ସେ ହିଁ ସ୍ୱତନ୍ତ୍ର ଓ ଏକାନ୍ତ ଭାବେ ସ୍ୱୟଂ କୃଷ୍ଣଙ୍କର ସାନ୍ନିଧ୍ୟ ଲାଭ କରୁଛନ୍ତି । ରାସ ଲୀଳାରେ କୃଷ୍ଣ କେଉଁ ଗୋପୀଙ୍କର କେଉଁ ଇଛା ପୂରଣ କଲେ ସେକଥା କେବଳ ସେ ଗୋପୀ ହିଁ ଜାଣନ୍ତି ।

ଗୋପୀକେ ଗୋବିନ୍ଦ ଗୋଟିଏ
ରୂପ ହୋଇଲେ ଏହି ପ୍ରାୟେ । (ଶରତ୍ ରାସ) ।

'ଯୋଗ ମାୟାର ବଳେ ହରି
ଷୋଳ ସହସ୍ର ରୂପ ଧରି' (ଭାଗବତ ୧୦/୩୦)

'ଗୋପୀକେ କୃଷ୍ଣ ରୂପ ହୋଇ
ଲୀଳା ବିନୋଦେ ଭାବଗ୍ରାହୀ' (ଭାଗବତ ୧୦/୩୪)

ତେଣୁ ଭଗବାନଙ୍କର ଏହି ଦିବ୍ୟଲୀଳାର ରହସ୍ୟ ପ୍ରାକୃତ ଜଗତରେ ବ୍ୟାଖ୍ୟା କରାଯାଇ ନପାରେ । ଶ୍ରୀ ବଲ୍ଲଭାଚାର୍ଯ୍ୟ, ଶ୍ରୀ ଶ୍ରୀଧର ସ୍ୱାମୀ, ଶ୍ରୀ ଜୀବ ଗୋସ୍ୱାମୀ ଆଦି ପଣ୍ଡିତମାନେ ମହାରାସ ଉପରେ ଟୀକା କରି ଏହାକୁ ଅପ୍ରାକୃତ (ଅନୁଭବ୍ୟ, ମାତ୍ର ଇନ୍ଦ୍ରିୟାତୀତ) ବା ଦିବ୍ୟଲୀଳା ବୋଲି ପ୍ରକାଶ କରିଛନ୍ତି । କୃଷ୍ଣଙ୍କର ସେଦିନର ସେ ମହାରାସ ଦର୍ଶନ କରି ସ୍ୱର୍ଗର ଦେବତାମାନେ କୃତକୃତ୍ୟ ହୋଇଥିଲେ ।

ସେଦିନ ପୂର୍ଣ୍ଣିମାର ପ୍ରଲମ୍ବିତ ରାସ ରାତ୍ରି ଶେଷ ହେବା ସଙ୍ଗେ ସଙ୍ଗେ ଗୋପୀମାନେ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରିଥିଲେ । ରାସ ମାଧ୍ୟମରେ ନିଜ ସହ ମିଳାମିଶାର ସୁଯୋଗ ଦେଇ ଗୋପୀମାନଙ୍କୁ ସାଯୁଜ୍ୟ ମୋକ୍ଷ ପ୍ରଦାନ ପୂର୍ବକ ଶ୍ରୀକୃଷ୍ଣ ପ୍ରାରମ୍ଭିକ ବାଲ୍ୟଲୀଳା ସମାପନ କରି ଏଗାର ବର୍ଷ ବୟସରେ ଗୋପପୁର ସବୁଦିନ ପାଇଁ ତ୍ୟାଗ କରିଥିଲେ । ଯେଉଁ ରାସ ଦର୍ଶନ ପାଇଁ ଦେବତାମାନେ ବ୍ୟାକୁଳିତ ଥିଲେ, ଦେବ କନ୍ୟାମାନେ ପୁଷ୍ପ ବୃଷ୍ଟି କରୁଥିଲେ, ସେଥିରେ କୌଣସି ଅଶିଷ୍ଟତା କଳ୍ପନା କରାଯାଇ ନପାରେ । କେଉଁ ଗୋପୀଙ୍କ ସହ କୃଷ୍ଣ କି ଲୀଳା କରୁଥିଲେ ତାହା କେବଳ ସେହି ଗୋପୀଙ୍କୁ ଜଣାଥିଲା ।

ମହାରାସକୁ କାଳ୍ପନିକ ପୁଟ ଦିଆଯାଇ କେତେକସ୍ଥଳେ ଲୌକିକତା ପ୍ରଦର୍ଶନ କରାଯାଇଛି । ନିଷ୍କଳଙ୍କ କୃଷ୍ଣ ଚରିତ୍ରରେ ପରକୀୟା ପ୍ରୀତିର ବିକୃତ ଦୃଷ୍ଟିଭଙ୍ଗୀ ଥିବା ବର୍ଣ୍ଣନାମାନ କବିମାନଙ୍କ ସ୍ୱୀୟ ଭାବପ୍ରବଣତାର ପରିପ୍ରକାଶ ମାତ୍ର ।

ମହାରାସ ଅବ୍ୟକ୍ତ, କେବଳ ସୂକ୍ଷ୍ମ ଦର୍ଶନରେ ଅନୁଭବ୍ୟ । ଏଥିରେ ଭାଗ ନେଇଥିବା ଗୋପୀମାନଙ୍କ କାମନା ବାସନା ନଥିଲା, ଥିଲା ପାରମାର୍ଥିକ ଆନନ୍ଦ ।

ବ୍ରଜପୁର ବୃନ୍ଦାବନରେ ଯମୁନା କୂଳରେ ପୂର୍ଣ୍ଣିମା ରାତ୍ରିରେ ଷୋଳସହସ୍ର ଗୋପୀଙ୍କ ସହ ଭଗବାନ ଶ୍ରୀକୃଷ୍ଣ ରାସ ରଚନା କରିଥିଲେ । ସ୍ଥୂଳ ଦୃଷ୍ଟିରେ ବର୍ଣ୍ଣିତ ଉପରୋକ୍ତ ପ୍ରସଙ୍ଗକୁ ବୈଷ୍ଣବ (ବିଷ୍ଣୁ ଭକ୍ତ) ମାନେ ଭିନ୍ନ ଭାବେ ଗ୍ରହଣ କରିଛନ୍ତି । ସେମାନଙ୍କ ମତରେ ବ୍ରଜ ଅର୍ଥ ବ୍ୟାପ୍ତି । ସମଗ୍ର ପୃଥିବୀ ହେଉଛି ବ୍ରଜପୁର ।

'ଶୃଣୁତଂ ଦଣ୍ଡଚିଣ୍ଡୌମେରହସ୍ୟଂ ବ୍ରଜଭୂମିଜଂ
ବ୍ରଜନଂ ବ୍ୟାପ୍ତିରିତ୍ୟୁକ୍ତ୍ୟା ବାପନାତ୍ ବ୍ରଜ ଉଚ୍ୟତେ ।'

(ସ୍କନ୍ଦପୁରାଣ–୨ୟ ବୈଷ୍ଣବ ଖଣ୍ଡ)

ବୃନ୍ଦା ଅର୍ଥ ତୁଳସୀ । ତୁଳସୀ ଭଗବାନଙ୍କର ଅତି ପ୍ରିୟ । ଅନେକ ତୁଳସୀ ଗଛ ଯେଉଁସ୍ଥାନରେ ଥିଲା ତାହାକୁ ବୃନ୍ଦାବନ କୁହାଯାଉଥିଲା । (କେ. ଏମ୍. ମୁନ୍‌ସୀଙ୍କ କୃଷ୍ଣାବତାର) । ଅର୍ଥାତ୍ କୃଷ୍ଣଙ୍କ ପ୍ରିୟ ସ୍ଥାନ ହିଁ ବୃନ୍ଦାବନ । ଯମୁନା ହେଉଛି ସୂର୍ଯ୍ୟ ଦେବଙ୍କ କନ୍ୟା ଓ ଯମଙ୍କ ଭଉଣୀ । ତେଣୁ ଯମୁନା ହେଉଛି କାଳ ବା ସମୟର ପ୍ରତୀକ । ପୂର୍ଣ୍ଣିମା ହେଉଛି ପୂର୍ଣ୍ଣତାର ପ୍ରତୀକ । ଏଠାରେ ପୂର୍ଣ୍ଣିମା ରାତ୍ରି ଅର୍ଥ ଜୀବନର ଶେଷ କ୍ଷଣ । ଗୋପପୁରରେ



ସମସ୍ତ ଗୋପୀ ରାସରେ ଅଂଶ ଗ୍ରହଣ କରିପାରି ନଥିଲେ । ଅଂଶ ଗ୍ରହଣ କରିଥିବା ଗୋପୀଙ୍କ ସଂଖ୍ୟା ଷୋଳସହସ୍ର ।

ଏଠାରେ ଷୋଳସହସ୍ର ଅର୍ଥ ସଂଖ୍ୟା ବାଚକ ୧୬,୦୦୦ ନୁହେଁ । ଷୋହଳ ଏକ ପୂର୍ଣ୍ଣ ବାଚକ ଶବ୍ଦ । ଭଗବାନ ଷୋଳ କଳାର ଅଧିକାରୀ, ଅର୍ଥାତ ସମସ୍ତ ସଦ୍‌ଗୁଣର ଅଧିକାରୀ । ଷୋଡ଼ଶ ଉପଚାର ପୂଜା ଅର୍ଥ ସବୁ ପ୍ରକାର ପୂଜା । ତେଣୁ ଷୋଳସହସ୍ର ଗୋପୀ ଅର୍ଥ ତପସ୍ୟାରେ ସିଦ୍ଧିଲାଭ କରି ଭଗବାନଙ୍କୁ ବରଣ କରିଥିବା ସମସ୍ତ ଗୋପୀ ।

ଅନେକ ଜନ୍ମ ତପସ୍ୟା ଫଳରେ ଗୋପୀ ଜନ୍ମ ହୋଇଥିବା ପରି ଅନେକ ଜନ୍ମ ତପସ୍ୟା ଫଳରେ ମନୁଷ୍ୟ ଶରୀର ମିଳିଥାଏ ବୋଲି ପରମ ଶାସ୍ତ୍ର ଭାଗବତ ସମେତ ଅନେକ ପୁରାଣରେ ବାରମ୍ବାର କୁହାଯାଇଛି ।

ଭଗବାନ ହେଉଛନ୍ତି ଗୋପୀମାନଙ୍କ ପ୍ରାଣ । ତତ୍ତ୍ୱ ଜ୍ଞାନୀ ଉଦ୍ଧବ ଗୋପପୁର ଆସିବା ସମୟରେ ଗୋପୀମାନଙ୍କ ପ୍ରତି ସନ୍ଦେଶ ଦେଇ କୃଷ୍ଣ କହିଥିଲେ :

ସେମାନେ ମୋହର ଦେହ ମୁଁ ହିଁ ତାଙ୍କ ପ୍ରାଣ
ତାଙ୍କ ଠାରେ ଉଦ୍ଧବ ମଣିବ ନାହିଁ ଆନ ।

(ଭକ୍ତଚରଣ ଦାସ, ମଥୁରା ମଙ୍ଗଳ ୨୪/୨୭)

ଚିରପ୍ରବହମାନ ସମୟ ଯମୁନା କୂଳରେ ଏ ବ୍ୟାପକ ପୃଥିବୀ ବ୍ରଜ ଭୂମିରେ ପ୍ରତ୍ୟେକ ମାନବ ଜଣେ ଜଣେ ଗୋପୀ । ମାତ୍ର ରାସ ଲୀଳାର ଅମୃତ ଆସ୍ୱାଦନ ସମସ୍ତଙ୍କ ଜୀବନରେ ସମ୍ଭବ ହୁଏ ନାହିଁ । ବିଶ୍ୱାବସୁ, ବିଦ୍ୟାପତି, ଦାସିଆ, ମାଣିକ ପରି ଅତି ସାଧାରଣ ବ୍ୟକ୍ତି ପ୍ରଭୁଙ୍କ ସାକ୍ଷାତ ସାନିଧ୍ୟ ଲାଭ କରିପାରିଥିବା ବେଳେ ଅତି ଅସାଧାରଣ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ପୁରୁଷୋତ୍ତମ ଦେବଙ୍କ ଭାଗ୍ୟରେ ତାହା ଲେଖା ନଥିଲା । କର୍ତ୍ତବ୍ୟ ସାଧନରେ ସିଦ୍ଧିଲାଭ ପୂର୍ବକ ନିଜକୁ ଷୋଳସହସ୍ର ଗୋପୀ ତାଲିକାରେ ଅନ୍ତର୍ଭୁକ୍ତ କରାଇଲେ ଅବଶ୍ୟ ଜୀବନର ଅନ୍ତିମ କ୍ଷଣରେ ଇଷ୍ଟ ଦର୍ଶନ ସମ୍ଭବ ହେବ । ଗୋପୀମାନଙ୍କୁ ସବୁଦିନ ପାଇଁ ତ୍ୟାଗ କରିବା ପୂର୍ବରୁ ରାସ ସଂରଚନା କରାଯାଇଥିଲା । ସେହିପରି ଜୀବାତ୍ମା ସବୁଦିନ ପାଇଁ ଏ ଶରୀର ତ୍ୟାଗ କରିବା ପୂର୍ବରୁ ପୂର୍ଣ୍ଣିମା ରାତ୍ରିରେ ଅର୍ଥାତ୍ ପୂର୍ଣ୍ଣ ଜୀବନର ଶେଷ ସୂର୍ଯ୍ୟ ଉଦୟ ପୂର୍ବରୁ ନିଶ୍ଚୟ ପ୍ରଭୁ ମୋହନ ବଂଶୀ ବାଦନ କରି ରାସ ପାଇଁ ଆହ୍ୱାନ ଦେବେ । ଆଉ କେହି ଶୁଣିପାରୁନଥିବା ସେହି ବଂଶୀ ସ୍ୱନ ଅଲକ୍ଷ୍ୟରେ ଅସ୍ଥିର ମନକୁ ବୃନ୍ଦାବନକୁ ଆକର୍ଷି ନେଇ ପରମ ତୃପ୍ତି ନିମିତ୍ତ ରାସରେ ନିମଜ୍ଜିତ କରାଇବ, ଏହା ହିଁ ରାସକ୍ରୀଡାର ତାତ୍ତ୍ୱିକ ସନ୍ଦେଶ ।

ମହାରାସର ଅନ୍ୟ ଏକ ଅବ୍ୟକ୍ତ ଚରିତ୍ର ହେଉଛନ୍ତି ଶ୍ରୀରାଧା । ରାଧା ଶବ୍ଦ ଅତି ପ୍ରାଚୀନ । ପୃଥିବୀର ସର୍ବପ୍ରଥମ ରଚନା 'ବେଦ'ରେ ରାଧା ଶବ୍ଦ ରହିଛି । 'ସ୍ତୋତ୍ରଂ ରାଧାନାଂ ପତେ ଗିର୍ବା ହୋବୀର ଯସ୍ୟତେ' (ଶ୍ରୀଋଗ୍‌ବେଦ ୧/୩୦/୫) । ଏଠାରେ 'ରାଧାନାଂ ପତେ ବା ରାଧାପତି ଅର୍ଥ ସୃଷ୍ଟିକର୍ତ୍ତା ଭଗବାନ । ବେଦରେ 'କୃଷ୍ଣ' ଶବ୍ଦ ନାହିଁ । ବେଦ ସୃଷ୍ଟିର ଅନେକ ବର୍ଷପରେ ରଚିତ 'ମହାଭାରତ'ରେ ପ୍ରଥମେ କୃଷ୍ଣଙ୍କର ଆବିର୍ଭାବ ଘଟିଛି । ମହାଭାରତରେ 'ରାଧା' ଶବ୍ଦ ନାହିଁ । (ରାଜତରଙ୍ଗିଣୀ ଓ ବୃହତ୍ ସଂହିତା ମତେ ଆଜକୁ ୪୩୦୦ ରୁ ୪୪୦୦ ବର୍ଷ ପୂର୍ବେ କୁରୁକ୍ଷେତ୍ର ଯୁଦ୍ଧ ହୋଇଥିଲା) । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ କୃଷ୍ଣଙ୍କୁ ପ୍ରାଧାନ୍ୟ ଦିଆଯାଇ ସୃଷ୍ଟ 'ଶ୍ରୀମଦ୍ ଭାଗବତ' ଓ ହରିବଂଶ ପୁରାଣ ଆଦିରେ ମଧ ରାଧା ଶବ୍ଦ ନାହିଁ । କୃଷ୍ଣ ଚରିତ୍ରରେ ରାଧାଙ୍କ ସଂଯୋଗ ଅତି ରହସ୍ୟାବୃତ ଓ ପରମ ତତ୍ତ୍ୱ ସମ୍ବଳିତ ଅଟେ ।

ଦଶମ ଶତାବ୍ଦୀରେ ରଚିତ ବ୍ରହ୍ମବୈବର୍ତ୍ତ ପୁରାଣ ଓ ତତ୍ ପରବର୍ତ୍ତୀ ରଚନାଗୁଡ଼ିକରେ ରାଧାକୃଷ୍ଣଙ୍କ ସମ୍ପର୍କରେ ବର୍ଣ୍ଣନା ରହିଛି । ମାତ୍ର ଏ ସମସ୍ତ ପୁରାଣ ବର୍ଣ୍ଣିତ 'ରାଧା' କୃଷ୍ଣଙ୍କ ଲୀଳା ଏବଂ ମାଧୁର୍ଯ୍ୟରେ ସଂଯୁକ୍ତ 'ରାଧା' ନୁହନ୍ତି, ସେ ରାଧା କେବଳ କୃଷ୍ଣ ତତ୍ତ୍ୱ ଜିଜ୍ଞାସାରେ ସୀମିତ । ଦ୍ୱାଦଶ ଶତାବ୍ଦୀରେ ବୈଷ୍ଣବ କବି ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ'ରେ ସର୍ବ ପ୍ରଥମେ ରାଧା କୃଷ୍ଣଙ୍କ ରାସ ଲୀଳାର ସର୍ଜନା କରାଯାଇଛି । ଭାଗବତରେ



'ଶରତ୍ ରାସ'ର ବର୍ଣ୍ଣନା ଥିବାବେଳେ, ଗୀତଗୋବିନ୍ଦରେ 'ବସନ୍ତ ରାସ'ର ବର୍ଣ୍ଣନା ରହିଛି । ଗୀତଗୋବିନ୍ଦରେ କୃଷ୍ଣଙ୍କୁ ସ୍ୱୟଂ ବିଶ୍ୱକର୍ତ୍ତା ଭଗବାନ ଭାବେ ବର୍ଣ୍ଣନା କରାଯାଇଛି । ଗୀତଗୋବିନ୍ଦରେ ବର୍ଣ୍ଣିତ ଦଶ ଅବତାରର କ୍ରମ ସମଗ୍ର ଭାରତରେ ଗୃହୀତ । ପ୍ରତ୍ୟେକ ଅବତାର ସ୍ତୁତିର ତୃତୀୟ ପଂକ୍ତିରେ 'କେଶବ ଧୃତ' ଲେଖି ଜୟଦେବ କୃଷ୍ଣ (କେଶବ ଶବ୍ଦର ଅନ୍ୟ ଏକ ନାମ)ଙ୍କୁ ଅବତାରି ଭାବେ ପ୍ରକାଶ କରିଛନ୍ତି ।

ଏଠାରେ କୃଷ୍ଣଙ୍କୁ ସୂର୍ଯ୍ୟ ମଣ୍ଡଳ ମଣ୍ଡନକାରୀ, ପୁନର୍ଜନ୍ମ ନିବାରକ, ମୁନିଜନ ହୃଦ ବିହାରୀ ହଂସ ଭାବେ ପ୍ରକାଶ କରାଯାଇ ତାଙ୍କର ଈଶ୍ୱରତ୍ୱକୁ ସୁଦୃଢ କରାଯାଇଛି । ସେହିପରି ଗୀତଗୋବିନ୍ଦ ବର୍ଣ୍ଣିତ ରାଧା ହେଉଛନ୍ତି ସ୍ୱୟଂ ଲକ୍ଷ୍ମୀ ।

x x x

ଶ୍ରୀ ବାସୁଦେବ ରତି କେଳି କଥା ସମେତ
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।

(ଗୀତଗୋବିନ୍ଦ)

(ଶ୍ରୀ ଅର୍ଥାତ୍ ଲକ୍ଷ୍ମୀ (ରାଧା) ଏବଂ ବାସୁଦେବ କୃଷ୍ଣ (ନାରାୟଣ) ଏ ଦୁହିଁଙ୍କ ରତି କେଳି କଥାଯୁକ୍ତ ଏହି ଗ୍ରନ୍ଥକୁ କବି ଜୟଦେବ ରଚନା କରିଛନ୍ତି ।)

ଏଥିରୁ ପ୍ରମାଣିତ ଯେ ଗୀତଗୋବିନ୍ଦରେ ଲକ୍ଷ୍ମୀ–ନାରାୟଣଙ୍କ ଲୀଳା ବର୍ଣ୍ଣନା କରାଯାଇଛି । ଶୃଙ୍ଗାର ରସ ଆଧାରିତ ଜୟଦେବଙ୍କ ପରିକଳ୍ପିତ ଗୀତଗୋବିନ୍ଦ ଭକ୍ତମାନଙ୍କୁ କାନ୍ତାଭକ୍ତି ମାଧ୍ୟମରେ ଭଗବତ ପ୍ରାପ୍ତିର ମାର୍ଗ ପ୍ରଦର୍ଶନ କରେ । ଗୀତଗୋବିନ୍ଦରେ କବିଙ୍କ ସମର୍ପଣଭାବ ଓ ନିବେଦନ ଏତେ ଗଭୀର ଯେ ସ୍ୱୟଂ ନାରାୟଣ ଏହାକୁ ଗ୍ରହଣ କରି ନେଇଛନ୍ତି । ଅଭିମାନିନୀ ରାଧାଙ୍କର ମାନ ଭଞ୍ଜନ ପାଇଁ କୌଣସି ଏକ ପରିସ୍ଥିତିରେ କୃଷ୍ଣ କହୁଛନ୍ତି 'ହେ ପ୍ରିୟେ ତୁମେ ତୁମର ପାଦକୁ ମୋ ମସ୍ତକ ଉପରେ ମଣ୍ଡନ ସ୍ୱରୂପ ସ୍ଥାପନ କର' । ଏହିପରି ଏକ ଅଦ୍ଭୁତ ପରିକଳ୍ପନା ଏକଦା ଜୟଦେବଙ୍କ ମନକୁ ଆସିଲା । ପ୍ରଭୁଙ୍କ ମର୍ଯ୍ୟାଦା ହାନିକୁ ଅନୁଭବ କରି ସେ ଏଥିପାଇଁ ଲେଖନୀ ଚାଳନା କରି ନପାରି ଚିନ୍ତିତ ରହିଲେ । ଭକ୍ତଙ୍କ ଭାବପ୍ରବଣତାକୁ ଗ୍ରହଣ କରି ବିଶ୍ୱଚିନ୍ତାମଣି ଭଗବାନ ସ୍ୱୟଂ ଜୟଦେବ ବେଶ ଧାରଣ କରି ପତ୍ନୀ ପଦ୍ମାବତୀଙ୍କଠାରୁ ଅଧାଲେଖା ଗୀତଗୋବିନ୍ଦ ପୋଥି ନେଇ ସ୍ୱହସ୍ତରେ ଲେଖି ଦେଇଥିଲେ –

'ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ୍' ।

(ଗୀତଗୋବିନ୍ଦ ୧୦ମ ସର୍ଗ)

ସ୍ନାନରୁ ଫେରି ପଦପୂରଣ ହୋଇଥିବା ପୋଥି ଦେଖି ଜୟଦେବ କୃତକୃତ୍ୟ ହୋଇଥିଲେ ।

ପତି ପତ୍ନୀ ମଧ୍ୟସ୍ଥ କାମ ଭାବର ବର୍ଣ୍ଣନା ସତ୍ତ୍ୱେ କବିଙ୍କ ଭକ୍ତିମତ୍ତା ଯୋଗୁଁ ସ୍ୱୟଂ ଭଗବାନଙ୍କ ଦ୍ୱାରା ଗୃହୀତ ହୋଇଥିବା ହେତୁ 'ଗୀତ ଗୋବିନ୍ଦ' ଯୁଗ ଯୁଗ ପାଇଁ ପ୍ରଣମ୍ୟ ହୋଇ ରହିବ ।

ରାଧାକୃଷ୍ଣଙ୍କର ମାନ, ଅଭିମାନ, ଅନୁନୟ, ବିନୟ, ମିଳନ, ବିଚ୍ଛେଦ ଓ ପୁନର୍ମିଳନ ଗାଥା ଆଧାରିତ ଏକ କାଳ୍ପନିକ ଗୀତିନାଟ୍ୟ ହେଲେ ମଧ୍ୟ 'ଗୀତଗୋବିନ୍ଦ'ର ଅନ୍ତଃସ୍ୱର ହେଉଛି ଆତ୍ମା ପରମାତ୍ମାର ମିଳନ । ଆତ୍ମା ହେଉଛି ପରମାତ୍ମାଙ୍କର ଅଂଶ ବିଶେଷ । ପରମାତ୍ମାଙ୍କୁ ଭୁଲି ଆତ୍ମା ରହି ପାରେନା । ଆତ୍ମା ଓ ପରମାତ୍ମାଙ୍କ ସମ୍ପର୍କ ଅତି ନିବିଡ଼ । ଗୀତଗୋବିନ୍ଦ ମଧ୍ୟସ୍ଥ ରସରାସ ରସିକେନ୍ଦ୍ର ମୌଳି, ଚିନ୍ମୟ ସଚ୍ଚିଦାନନ୍ଦଘନ, ଅଖିଳରସାମୃତ ବିଗ୍ରହ, ବିଶ୍ୱ ମୋହନ, ପୂର୍ଣ୍ଣବ୍ରହ୍ମ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି 'ପରମାତ୍ମା' ଓ ଭଗବାନଙ୍କ ସ୍ୱରୂପଭୂତା, ଆହ୍ଲାଦିନୀ ଶକ୍ତି, ମହାଭାବ ସ୍ୱରୂପିଣୀ, ନିତ୍ୟ ନିକୁଞ୍ଜେଶ୍ୱରୀ, ପ୍ରେମମୟୀ ଶ୍ରୀରାଧା ହେଉଛନ୍ତି 'ଆତ୍ମା' । ରାସ ହେଉଛି ନବଧା ଭକ୍ତି ସହ ପ୍ରେମ ଭକ୍ତିର ସମିଶ୍ରିତ ପରିପ୍ରକାଶ ।

ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଉପାସନା ନିମ୍ବାର୍କାଚାର୍ଯ୍ୟ ଆରମ୍ଭ କରିଥିବା ଗବେଷକମାନେ ମତ ଦିଅନ୍ତି ।



(ବଳଦେବଜୀ ଉପାଧ୍ୟାୟଙ୍କ ରଚିତ 'ଭାରତୀୟ ବାଙ୍ଗମୟମେ ରାଧା' ପୃଷ୍ଠା ୩୯୯-୪୦୦)

ଦ୍ୱାଦଶ ଶତାବ୍ଦୀ ପରବର୍ତ୍ତୀ କବିମାନେ ରାଧାକୃଷ୍ଣ ସମ୍ପର୍କକୁ ବିଭିନ୍ନ ଭାବେ ବର୍ଣ୍ଣନା କରିଛନ୍ତି । ଶ୍ରୀଚୈତନ୍ୟ ରାଧା ଭାବନାରେ କୃଷ୍ଣ ପ୍ରାପ୍ତି ପାଇଁ ନାମ ସଂକୀର୍ତ୍ତନକୁ ମାଧ୍ୟମ କରି ରାଧାକୃଷ୍ଣ ପ୍ରେମ ଭକ୍ତିର ପ୍ଲାବନ ସୃଷ୍ଟି କରିଛନ୍ତି । ରାଧା ଶବ୍ଦ ପ୍ରତୀକାତ୍ମକ । ଯାହାକୁ ସ୍ମରଣ କଲେ କୋଟି ଜନ୍ମାର୍ଜିତ ପାପ, ଆୟୁ କ୍ଷୟ ଦୂର ହୋଇ ସଂସାର ବନ୍ଧନରୁ ମୁକ୍ତି ମିଳେ । ସେହିଁ ରାଧା । (ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷ) ।

ପ୍ରେମ, ଭକ୍ତି, ଆଦର୍ଶ ଗୁଣ, କର୍ମ, ସମ୍ପର୍କ, ତ୍ୟାଗ, ସମର୍ପଣ ଆଦିର ସର୍ବଶ୍ରେଷ୍ଠ ପ୍ରତୀକ ହେଉଛନ୍ତି ରାଧା । ରାଧା ବିନା ଈଶ୍ୱର ଅସମ୍ପୂର୍ଣ୍ଣ । ତେବେ ପ୍ରଶ୍ନ ଉଠିପାରେ ରାଧାଙ୍କୁ ଏକ ନାରୀ ଚରିତ୍ର ଭାବେ ପ୍ରକାଶ କରାଗଲା କାହିଁକି ? ଉତ୍ତରରେ ଏହା ଦର୍ଶାଯାଇପାରେ ଯେ ସୃଷ୍ଟି ସର୍ଜନା ପାଇଁ ନାରୀ ପୁରୁଷ ଉଭୟଙ୍କର ସମ୍ପୃକ୍ତି ଅପରିହାର୍ଯ୍ୟ । ସୃଷ୍ଟି ସର୍ଜନା ପାଇଁ ଈଶ୍ୱରରୂପି ପୁରୁଷ ଓ ପ୍ରକୃତିରୂପିଣୀ ଶ୍ରୀରାଧାଙ୍କର ଆବିର୍ଭାବ । କେବଳ ଶକ୍ତି କୌଣସି କାର୍ଯ୍ୟ କରିପାରେ ନାହିଁ । ଶକ୍ତିକୁ କାର୍ଯ୍ୟରେ ଲଗାଇବା ପାଇଁ ଶକ୍ତିମାନ ଆବଶ୍ୟକ । ଏହି ନ୍ୟାୟରେ ରାଧା ହେଉଛନ୍ତି ଶକ୍ତି ଓ କୃଷ୍ଣ ଶକ୍ତିମାନ । ଉଭୟଙ୍କ ସଂଯୋଗ ଜଗତ କଲ୍ୟାଣ ପାଇଁ ଅଭିପ୍ରେତ । ତେଣୁ ବୈଷ୍ଣବମାନେ ରାଧାଙ୍କୁ କୃଷ୍ଣଙ୍କର ମାତା, ଭଗ୍ନୀ, ସ୍ତ୍ରୀ, ଆତ୍ମା ଭାବେ ବିଭିନ୍ନ ସ୍ଥଳେ ଗ୍ରହଣ କରିଛନ୍ତି । ରାଧାକୃଷ୍ଣ ଏକ ଓ ଅଭିନ୍ନ ବୋଲି ମଧ୍ୟ ବିଦିତ ।

### (୧) ମାତା

ସୃଷ୍ଟିକାଳେ ଚ ସା ଦେବୀ ମୂଳ ପ୍ରକୃତିରୀଶ୍ୱରୀ
ମାତା ଭବେନ୍ମହା ବିଷ୍ଣୋଃ ସ ଏବଚ ମହାନ୍ ବିରାଟ୍

(ଶ୍ରୀ ନାରଦ ପଞ୍ଚରାତ୍ର)

ଶ୍ରୀରାଧା ହେଉଛନ୍ତି ମୂଳ ପ୍ରକୃତି ବା ଈଶ୍ୱରୀ । ଯେଉଁ ମହାବିଷ୍ଣୁଙ୍କଠାରୁ ଜଗତ ସୃଷ୍ଟି ହୋଇଛି ସେହି ବିରାଟ ପୁରୁଷଙ୍କ ମାତା ହେଉଛନ୍ତି ଶ୍ରୀରାଧା ।

ଈଶ୍ୱରଙ୍କ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ମହାଲକ୍ଷ୍ମୀ ହେଉଛନ୍ତି ରାଧାଙ୍କର ବାମ ସମ୍ଭୂତା । ଅର୍ଥାତ୍ ଲକ୍ଷ୍ମୀ ହେଉଛନ୍ତି ରାଧାଙ୍କର ଅଂଶ ବିଶେଷ । ସୁତରାଂ ଶ୍ରୀରାଧା ସର୍ବବିଧ ଐଶ୍ୱର୍ଯ୍ୟର ମୂଳ ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ।

ଶ୍ରୀକୃଷ୍ଣ ପରମ ପୁରୁଷ ଓ ରାଧିକା ନିତ୍ୟଶକ୍ତି । ସର୍ବ ଲକ୍ଷ୍ମୀ ତାଙ୍କର ଅଂଶ ସ୍ୱରୂପା । ଦୁର୍ଗା ଆଦି ଦେବୀଗଣ ତାଙ୍କର କୋଟି କୋଟି ଅଂଶରୁ ଏକ କଳା ମାତ୍ର । ମହାଲକ୍ଷ୍ମୀ, ଦୁର୍ଗାଙ୍କ ସମେତ ସମସ୍ତଙ୍କର ସୃଷ୍ଟିକର୍ତ୍ତ୍ରୀ ରାଧା ହେଉଛନ୍ତି ଆଦିମାତା ଓ କୃଷ୍ଣଙ୍କର ମାତା ।

**(୨) ଭଗ୍ନୀ–** ଗୌଡ଼ୀୟ ବୈଷ୍ଣବମାନେ ନୀଳାଚଳରେ ପୂଜିତ ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ଓ ଦେବୀ ସୁଭଦ୍ରାଙ୍କୁ ରାଧା ଭାବେ ବିଶ୍ୱାସ କରନ୍ତି ।

ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ଯଶୋବନ୍ତ ଦାସ ତାଙ୍କ ରଚିତ 'ପ୍ରେମଭକ୍ତି ବ୍ରହ୍ମ ଗୀତା'ରେ ଜଗନ୍ନାଥଙ୍କୁ କୃଷ୍ଣ ଓ ସୁଭଦ୍ରାଙ୍କୁ ରାଧା ବୋଲି ଦର୍ଶାଇଛନ୍ତି ।

### (୩) ପତ୍ନୀ

ଦ୍ୱିତୀୟ ଶତାବ୍ଦୀରେ ରଚିତ ଗାଥା ସପ୍ତସତୀ, ଗର୍ଗ ସଂହିତା ଓ ତାମିଲ ଭାଷାରେ ରଚିତ ପ୍ରାଚୀନ କାବ୍ୟ 'ଶିଳା ପାଦିକରମ୍'ରେ ରାଧାଙ୍କୁ କୃଷ୍ଣଙ୍କର ପତ୍ନୀ ବୋଲି ବର୍ଣ୍ଣନା ରହିଛି ।

ଶ୍ରୀମନ୍ଦିରରେ ବସନ୍ତ ଉତ୍ସବ ଓ ଝୁଲଣ ଉତ୍ସବ ପାଳନ ସମୟରେ 'ଶ୍ରୀଦେବୀ' ରତ୍ନ ସିଂହାସନରୁ ବାହାରକୁ ଆସି ମଦନ ମୋହନଙ୍କ ସହ ଉତ୍ସବ ପାଳନରେ ଅଂଶ ଗ୍ରହଣ କରୁଥିବାରୁ ଶ୍ରୀଦେବୀଙ୍କୁ ନାଗାର୍ଜୁନ ମାର୍ଗୀମାନେ 'ରାଧା' ବୋଲି ଗ୍ରହଣ କରନ୍ତି ।



## (୪) ଆତ୍ମା

ରାଧା ହେଉଛନ୍ତି କୃଷ୍ଣଙ୍କ ଆତ୍ମା । ସର୍ବଦା ରାଧାଙ୍କ ସହ ଅର୍ଥାତ୍ ଆତ୍ମା ସହ ବିହାର କରୁଥିବା ହେତୁ କୃଷ୍ଣଙ୍କର ଅନ୍ୟନାମ ଆତ୍ମାରାମ ।

ଦ୍ୱାପର ଯୁଗ ଶେଷରେ ଭଗବାନ କୃଷ୍ଣ ତାଙ୍କର ସମସ୍ତ ଶକ୍ତି ଭାଗବତ ମହାପୁରାଣରେ ନ୍ୟସ୍ତ କରିଦେଇଥିଲେ । ତେଣୁ ଭାଗବତ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ସାକ୍ଷାତ ଶବ୍ଦମୟୀରୂପ ।

କୃଷ୍ଣ ଚରିତ ପ୍ରାଧାନ୍ୟ ଭାଗବତରେ ରାଧା ଶବ୍ଦ ନଥିବା ରହସ୍ୟମୟ ଅଟେ । ଅବଶ୍ୟ କୃଷ୍ଣଙ୍କର ଜଣେ ଅତିପ୍ରିୟ ଗୋପୀଙ୍କୁ ଆରାଧିକେ ସମ୍ବୋଧନ କରାଯାଇ ଭାଗବତରେ 'ରାଧା' ଭାବର ଝଲକ ଦିଆଯାଇଛି ।

ବୃନ୍ଦାବନରେ ଥରେ ଗୋପୀମାନେ ଜଣେ ନିର୍ଦ୍ଦିଷ୍ଟ ଗୋପୀଙ୍କୁ ଦୃଷ୍ଟିରେ ରଖି ବିଚାର କରୁଛନ୍ତି । ବୋଧହୁଏ ସେ ନିଶ୍ଚୟ ସର୍ବଶକ୍ତିମାନ ଭଗବାନ କୃଷ୍ଣଙ୍କର ଆରାଧିକା ହୋଇଥିବେ । ସେଥିପାଇଁ ତାଙ୍କ ଉପରେ ପ୍ରସନ୍ନ ହୋଇ ଆମକୁ ଛାଡ଼ି ଗୋବିନ୍ଦ ତାଙ୍କୁ ଧରି ଏକାନ୍ତକୁ ଚାଲିଗଲେ ।

ଭାଗବତରେ ରାଧାଙ୍କର କୌଣସି ଭୂମିକା ପ୍ରକାଶ କରାଯାଇ ନାହିଁ ।

ଭାଗବତରେ ରାଧା ନଥିବା ସମ୍ପର୍କରେ ଶ୍ରୀଚୈତନ୍ୟଙ୍କ ପ୍ରଶ୍ନର ଉତ୍ତରରେ ଓଡ଼ିଆ ଭାଗବତାକାର ଶ୍ରୀଜଗନ୍ନାଥ ଦାସ କହିଥିଲେ –

'ଶରୀରମ୍ ଦୃଶ୍ୟତେ ସାକ୍ଷାତ୍ ଉହ୍ୟ ପ୍ରାଣ ସଦା ବହିଃ
ସାହି ଭାଗବତେ ଉହ୍ୟା ରାସ ରାସେଶ୍ୱରୀ ସ୍ୱୟଂ'

ଅର୍ଥାତ୍ ଶରୀର ଦୃଶ୍ୟମାନ ହେଉଥିବା ସ୍ଥଳେ ଆତ୍ମା ଅଦୃଶ୍ୟ । ସେହି ନ୍ୟାୟରେ କୃଷ୍ଣରୂପୀ ଭାଗବତ ଦୃଶ୍ୟମାନ ହେଉଥିବା ସ୍ଥଳେ ଭାଗବତଙ୍କର ଆତ୍ମା ରାଧା ଅଦୃଶ୍ୟ ଓ କେବଳ ଅନୁଭବ ଯୋଗ୍ୟ ଅଟନ୍ତି ।

## (୫) ଏକ ଓ ଅଭିନ୍ନ

(କ) ରାଧାକୃଷ୍ଣ ଏକ ଆତ୍ମା ଦୁଇ ଦେହଧରି
ଅନ୍ୟୋନ୍ୟେ ବିଳସେ ରସ ଆସ୍ୱାଦନ କରି ।

(ଶ୍ରୀ ଚୈତନ୍ୟ ଚରିତାମୃତ)

ରସ ଆସ୍ୱାଦନ କରିବା ଓ ପ୍ରିୟଜନଙ୍କର ବଶ୍ୟତା ସ୍ୱୀକାର କରି ରସ ଆସ୍ୱାଦନ କରାଇବା ଉଦେଶ୍ୟରେ ଏକ ଆତ୍ମା ହୋଇ ମଧ ରାଧାକୃଷ୍ଣ ଦୁଇ ଦେହ ଧାରଣ କରିଛନ୍ତି ।

(ଖ) ସେ ଯେ ରାଧିକା କୃଷ୍ଣର ଜୀବନ
ରାଧାକୃଷ୍ଣ ନୁହନ୍ତି ଭିନ୍ନାଭିନ୍ନ ।

(ଗୋବିନ୍ଦ ଗୀତା)

ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ମୁଁ ଯେପରି ବିଶ୍ୱର କାର୍ଯ୍ୟ, କାରଣ ଓ ପରମ ପ୍ରାପ୍ତି ଦାୟକ ତ୍ରିତତ୍ତ୍ୱର ଅଧୀଶ୍ୱର, ସେହିପରି ଶ୍ରୀରାଧା ନିତ୍ୟ ଆନନ୍ଦମୟୀ ହୋଇ କାର୍ଯ୍ୟ କାରଣ ସ୍ୱଭାବସ୍ଥିତା ଅଟନ୍ତି । ତତ୍ତ୍ୱଦର୍ଶୀମାନେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଅଭିନ୍ନ ବିଚାର କରନ୍ତି । ସେମାନଙ୍କ ମତରେ ଈଶ୍ୱରଙ୍କର ଯେଉଁ ଶକ୍ତି ସର୍ଜନ କାମ କରନ୍ତି ସେ ବ୍ରହ୍ମା, ସଂହାର କାର୍ଯ୍ୟ କରୁଥିବା ଶକ୍ତି ମହେଶ୍ୱର ଓ ପାଳନ କାର୍ଯ୍ୟ କରୁଥିବା ସ୍ୱରୂପ ବିଷ୍ଣୁ ଅଟନ୍ତି । ଅର୍ଥାତ୍ ଈଶ୍ୱର ଆଦେଶ ଦେବାବେଳେ ଶକ୍ତିମାନ ଓ କାର୍ଯ୍ୟ କରୁଥିବା ବେଳେ ଶକ୍ତି । ସୁଦର୍ଶନ ହେଉଛନ୍ତି ଈଶ୍ୱରଙ୍କର ଶକ୍ତି । ରାଧାଷ୍ଟମୀ ଦିନ ଶ୍ରୀମନ୍ଦିରରେ ସୁଦର୍ଶନଙ୍କ ପୂଜା ଓ ଭ୍ରମଣ ଆଦି ନୀତି ସମ୍ପାଦନର ପରମ୍ପରା ଥିବା ହେତୁ ସୁଦର୍ଶନଙ୍କୁ ଶ୍ରୀରାଧା ବୋଲି ମଧ କେହି କେହି କହିଥାଆନ୍ତି ।

ସର୍ବଗୁଣସମ୍ପନ୍ନା, ସମସ୍ତଙ୍କୁ ଆକର୍ଷିତ କରୁଥିବା 'ରାଧା' ଆଦି ଲକ୍ଷ୍ମୀ ଓ କୃଷ୍ଣଙ୍କର ଆଦିଶକ୍ତି ଅଟନ୍ତି ।

ଷୋଡଶ ଶତାବ୍ଦୀ ପୂର୍ବବର୍ତ୍ତୀ ପ୍ରସିଦ୍ଧ ଜଗନ୍ନାଥାଷ୍ଟକମ୍‌ରେ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ଭାବେ ବର୍ଣ୍ଣନା କରାଯାଇଛି । ଯଥା –



ରସାନନ୍ଦୀ ରାଧା ସରସ ବପୁରାଲିଙ୍ଗନ ସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ

ଶ୍ରୀରାଧା ଦେବୀଙ୍କ ପ୍ରେମପୂର୍ଣ୍ଣ ତନୁ ଆଲିଙ୍ଗନରେ ବିଭୋର
ପ୍ରଭୁ ଜଗନ୍ନାଥେ ନୟନର ପଥେ ଗୋଚର ହୁଅନ୍ତୁ ମୋର ।

ସାରଳା ଦାସଙ୍କ ମହାଭାରତ, ପଞ୍ଚସଖା ମଧ୍ୟରେ ବୟୋଜ୍ୟେଷ୍ଠ ବଳରାମ ଦାସଙ୍କ ବେଦାନ୍ତ ସାର ଗୁପ୍ତଗୀତା, ଈଶ୍ୱର ଦାସଙ୍କ ଶ୍ରୀଚୈତନ୍ୟ ଭାଗବତ ଆଦି ଅନେକ ଗ୍ରନ୍ଥରେ ଜଗନ୍ନାଥ ହିଁ ରାଧାକୃଷ୍ଣଙ୍କର ସମ୍ମିଳିତ ମୂର୍ତ୍ତି ବୋଲି ପ୍ରକାଶ କରାଯାଇଛି । ଅନେକ ଅନୁଭବୀ ଭକ୍ତ ମଧ୍ୟ ଏଥିରେ ଏକମତ ହୋଇଛନ୍ତି ।

କି ଅବକାଶେ ମୁଁ ଦେଖିଲି ଶୋଭା ନୀଳାଦ୍ରି ପତି
ରାଧାକୃଷ୍ଣ ଏକ ହୋଇଣ ସୁଖେ ଲୀଳା କରନ୍ତି ।

(ଭାଗବତାକାର ଜଗନ୍ନାଥ ଦାସଙ୍କ 'ଶୈବାଗମ ଭାଗବତ')

ଶ୍ରୀଜଗନ୍ନାଥଙ୍କର ପ୍ରତୀକ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଶ୍ରୀମନ୍ଦିରର ବହୁ ସ୍ଥାନରେ ପୂଜା ପାଉଛନ୍ତି ।

ସିଂହଦ୍ୱାର ଦେଇ ଶ୍ରୀମନ୍ଦିର ପ୍ରବେଶ କଲେ ବାମପାର୍ଶ୍ୱ କାନ୍ଥରେ, ମନ୍ଦିର ବେଢ଼ା ମଧ୍ୟସ୍ଥ ସତ୍ୟନାରାୟଣ ମନ୍ଦିର ସନ୍ନିକଟ ତିନୋଟି ସ୍ଥାନରେ, ମୁକ୍ତି ମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର ପାର୍ଶ୍ୱରେ ରାଧାକୃଷ୍ଣଙ୍କର ଦର୍ଶନ ମିଳେ । ବାଇଶି ପାହାଚ ଦେଇ ଜଗମୋହନକୁ ପ୍ରବେଶ ପଥର ବାମପଟେ, ବିମଳାଙ୍କ କୂପ ନିକଟସ୍ଥ ପଶୁ ପାଳକ ନିଯୋଗ ପାର୍ଶ୍ୱରେ, ବିମଳାଙ୍କ ମନ୍ଦିର ବାମ ପାର୍ଶ୍ୱରେ, ନବଗ୍ରହ ମନ୍ଦିର ପାର୍ଶ୍ୱରେ ଓ ପାତାଳେଶ୍ୱର ମନ୍ଦିର ପାର୍ଶ୍ୱରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ମନ୍ଦିରମାନଙ୍କରେ ପୂଜା ପାଉଛନ୍ତି । ଶ୍ରୀମନ୍ଦିରର ବାହାର ବେଢ଼ାରେ ଅନେକ ସ୍ଥାନରେ ରାଧାକୃଷ୍ଣଙ୍କର ଯୁଗଳ ବିଗ୍ରହମାନ ରହିଛନ୍ତି ।

ଉପରୋକ୍ତ ଆଲୋଚନାରୁ ଏହା ଅବିସମ୍ବାଦିତ ଯେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ପ୍ରେମ ଆଉ ଭକ୍ତିର ସମିଶ୍ରିତ ପ୍ରତୀକ ବା ଜୀବ ପରମର ମହାମିଳନ । ଯେଉଁ ଅଦୃଶ୍ୟ ଶକ୍ତି ଆଡୁଆଳରେ ରହି ଏ ଦୃଶ୍ୟମାନ ଶରୀରକୁ କ୍ରିୟାଶୀଳ କରୁଛି ସେ ହେଉଛି ଜୀବ ବା ଜୀବାତ୍ମା । ନିଆଁ ଲିଭିଗଲା ପରେ ଶିଖା ଯେପରି ସୂର୍ଯ୍ୟ ମଣ୍ଡଳରେ ମିଶିଯାଏ, ବେଲୁନ୍ ଫାଟିଗଲେ ପବନ ଯେପରି ବାୟୁମଣ୍ଡଳରେ ମିଶିଯାଏ, ଶରୀର ତ୍ୟାଗ କରି ଜୀବ ସେହିପରି ପରମରେ ଲୀନ ହୋଇଯାଏ ।

ରାଧା ହେଉଛନ୍ତି ଜୀବ ଓ କୃଷ୍ଣ ହେଉଛନ୍ତି ପରମ । ସାଂସାରିକ ବନ୍ଧନ ଓ ଅନେକ ବାଧା ବିଘ୍ନ ସତ୍ତ୍ୱେ ରାଧା ସର୍ବଦା କୃଷ୍ଣଙ୍କ ସାନ୍ନିଧ୍ୟ ପାଇଁ ବ୍ୟାକୁଳା ଥିଲେ । ତାଙ୍କର ନିଃସର୍ତ୍ତ ସମର୍ପଣ ଭାବକୁ ଗ୍ରହଣ କରି କୃଷ୍ଣ ସ୍ୱୟଂ ତାଙ୍କ ନିକଟକୁ ଆସୁଥିଲେ ।

ପ୍ରତ୍ୟେକ ଜୀବ ଦିନେ ଯିବ । ମୋହଗ୍ରସ୍ତ କର୍ତ୍ତବ୍ୟ ବଦ୍ଧ ଜୀବ ଯଦି ପ୍ରତିବନ୍ଧକକୁ ପ୍ରତିହତ କରି ପରମ ପ୍ରତି ନିଃସର୍ତ୍ତ ସମର୍ପିତ ହୋଇଯାଏ ତେବେ ଯିବାବେଳେ ନିଶ୍ଚୟ ପରମ ସ୍ୱୟଂ ତାଙ୍କ ନିକଟକୁ ଆସି ମିଳିତ ହୋଇଯିବେ ଓ ଏ କାୟା ଜନ୍ମଜନ୍ମାନ୍ତର ମାୟା ମୁକ୍ତ ହୋଇ ଅବଶ୍ୟ ବୈକୁଣ୍ଠରେ ସ୍ଥାନ ପାଇବ । ଏହା ରାଧା ଭାବ ତଥା ଯୁଗଳ ମୂର୍ତ୍ତି ଉପାସନାର ସନ୍ଦେଶ ।

ଉପବିଭାଗ ଅଧିକାରୀ
ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର





# ଶ୍ରୀଜଗନ୍ନାଥ, ଇନ୍ଦ୍ରବଳ ଓ ଯଯାତି– ଇତିହାସ ବର୍ଣ୍ଣନାରେ ସଙ୍ଗତି ଓ ଅସଙ୍ଗତି

**ରଜତ କୁମାର କର**

ଜଗନ୍ନାଥ ମନ୍ଦିର ନିର୍ମାତା ଇନ୍ଦ୍ରଦ୍ୟୁମ୍ନ ଐତିହାସିକ ପୁରୁଷ ନୁହନ୍ତି । ପୁରାଣ ଏହାଙ୍କର ସ୍ରଷ୍ଟା । ଯେଉଁ ରାଜାଙ୍କ ହାତରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ହେଲା ତାଙ୍କୁ ଇନ୍ଦ୍ରଦ୍ୟୁମ୍ନ ନାମରେ ପରିଚିତ କରାଇଲା କିମ୍ବଦନ୍ତୀ । ଏହି କିମ୍ବଦନ୍ତୀର ଆଧାରରେ ରଚିତ ହେଲା ପୁରାଣ କାହାଣୀ ।



ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ଜଣେ ସହସ୍ର ଯଜ୍ଞ କରାଇଥିବା ଅତ୍ୟନ୍ତ ଦାନଶୀଳ ରାଜା । ସେ ପୁରୀରେ ବିଷ୍ଣୁ ମନ୍ଦିର ତୋଳାଇଥିବା କଥା ସେଥିରେ ନାହିଁ । ଶ୍ରୀମନ୍ଦିର ଓ ବିଗ୍ରହ ନିର୍ମାତାଙ୍କୁ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ଦେଇ ତାଙ୍କ ସମ୍ବନ୍ଧରେ ଅନେକ କାହାଣୀ ସୃଷ୍ଟି କରାଯାଇଛି । ଐତିହାସିକମାନେ ଇତିହାସର ବିଭିନ୍ନ ଚରିତ୍ର ମଧ୍ୟରେ ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ଖୋଜିବାର ପ୍ରୟାସ କରି ବିଫଳ ହୋଇଛନ୍ତି । ଜନମାନସରେ କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ଦୃଢ ଆସନ ଜମେଇ ବସି ରହିଛନ୍ତି ।

ଶ୍ରୀଜଗନ୍ନାଥ ମନ୍ଦିର ସମ୍ବନ୍ଧରେ ଗବେଷଣା କରିଥିବା ଐତିହାସିକ ସତ୍ୟନାରାୟଣ ରାଜଗୁରୁ ତାଙ୍କୁ ଶ୍ୱେତକ ଗଙ୍ଗବଂଶର ଇନ୍ଦ୍ରବର୍ମା ଭାବରେ ପରିଚିତ କରାଇବାକୁ ପ୍ରୟାସ କରିଛନ୍ତି । ଗଞ୍ଜାମର ଶ୍ୱେତକ ମଣ୍ଡଳର ମହେନ୍ଦ୍ର ପର୍ବତ ପାଦଦେଶରେ ଥିବା ବୁଢାର ଶିଙ୍ଗି ଗ୍ରାମର ଶବରମାନେ ବହୁକାଳର ପୂଜିତ ତିନୋଟି ମସୃଣ ପ୍ରସ୍ତରକୁ ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତିଭାବେ ପୂଜା କରୁଥିବାରୁ ଧାର୍ମିକ ଓ ଏହି ଅଞ୍ଚଳର ପ୍ରଭାବଶାଳୀ ରାଜା ଇନ୍ଦ୍ରବର୍ମାଙ୍କୁ ଇନ୍ଦ୍ରଦ୍ୟୁମ୍ନ ବୋଲି ସେ ଅନୁମାନ କରିଛନ୍ତି (ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର ପୁସ୍ତକ) । ଶ୍ରୀଯୁକ୍ତ ରାଜଗୁରୁଙ୍କ ଏ ଅନୁମାନ ଦୃଢ ପ୍ରମାଣଭିତ୍ତିକ ହୋଇପାରି ନାହିଁ ।

'ପୁରୁଷୋତ୍ତମ ଚେତନା' ଶୀର୍ଷକ ପୁସ୍ତକରେ ଗବେଷକ ଶ୍ରୀ ସଦାଶିବ ରଥଶର୍ମା ଉଲ୍ଲେଖ କରିଛନ୍ତି ଯେ ଶ୍ରୀଜଗନ୍ନାଥ ମନ୍ଦିରରେ ଦୁଇଟି ଉତ୍ସବ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ସହ ଜଡିତ । ପ୍ରଥମଟି ଆଷାଢ ଶୁକ୍ଳ ନବମୀର ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ ଓ ଦ୍ୱିତୀୟଟି ମାର୍ଗଶିର ମାସର ଦେବ ଦୀପାବଳୀ ଉତ୍ସବ । ଗୁଣ୍ଡିଚା ଘରେ ନବମୀ ଦିନ ଇନ୍ଦ୍ରଦ୍ୟୁମ୍ନଙ୍କ ତରଫରୁ ଜଗନ୍ନାଥଙ୍କୁ ଆଳତି କରାଯାଏ । ମନେ ହେଉଛି ଜଗନ୍ନାଥ ଉପାସନାର ପ୍ରବର୍ତ୍ତକ ଭାବେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏ ମର୍ଯ୍ୟାଦା ଦିଆଯାଉଛି ।



ଆରତି ବେଳେ କୁହାଯାଏ–

ଦେବ ଦେବ ଜଗନ୍ନାଥ ! ସଂସାରାର୍ଣ୍ଣବ ତାରକଃ
ଗୃହାଣାରାତ୍ରିକ ଦେବେଶ୍ୟେନ୍ଦ୍ରଦ୍ୟୁମ୍ନେନ ସେବିତଃ ।

ଅର୍ଥାତ୍ ହେ ସଂସାର ସାଗରରେ ରକ୍ଷାକାରୀ ଜଗନ୍ନାଥ ! ମହାରାଜା (ଦେବେଶ) ଇନ୍ଦ୍ରଦ୍ୟୁମ୍ନ ସେବିତ ଆରାତ୍ରିକ (ଆଳତି) ଗ୍ରହଣ କର ।

ମାର୍ଗଶିର ମାସ ଅମାବାସ୍ୟା ଦିନ ଶ୍ରୀମନ୍ଦିର ଜଗମୋହନ ମୁଖଶାଳାରେ ଚାଉଳରେ କଳ୍ପବୃକ୍ଷ ଅଙ୍କନ କରାଯାଏ । ତାହାର ଅଗ୍ରଭାଗରେ ଘୃତ ଦୀପ ଦିଆଯାଏ । ରାତ୍ରର ପ୍ରଥମ ପ୍ରହରରେ ପ୍ରଭୁ ସତ୍ୟଯୁଗର ବାମନ ରୂପେ ପିତା କଶ୍ୟପ ଓ ମାତା ଅଦିତିଙ୍କୁ ଶ୍ରାଦ୍ଧର ଦୀପଦାନ ଦେଇ କହନ୍ତି–

ସତ୍ୟଯୁଗୀୟ ଅଦିତି କାଶ୍ୟପାୟ
ବାମନ ରୂପ ପ୍ରଭବାୟ ନମଃ

ଅର୍ଥାତ୍ ମୋତେ ବାମନ ରୂପ ଦେଇଥିବାରୁ ପ୍ରଣାମ ଘେନନ୍ତୁ ।

ଦ୍ୱିତୀୟ ପ୍ରହର ରାତ୍ରରେ କହିବେ ତ୍ରେତାଯୁଗୀୟ କୌଶଲ୍ୟା ଦଶରଥଙ୍କ ଉଦ୍ଦେଶ୍ୟରେ, 'ତ୍ରେତୟାଂ କୌଶଲ୍ୟା ଦଶରଥାୟ ରାମ ରୂପ ପ୍ରଭବାୟ ନମଃ' । ତୃତୀୟ ପ୍ରହର ରାତ୍ରରେ ଦ୍ୱାପରର ଦେବକୀ ବସୁଦେବଙ୍କ ଉଦ୍ଦେଶ୍ୟରେ କହିବେ– 'ଦେବକୀ ବସୁଦେବାୟ କୃଷ୍ଣରୂପ ପ୍ରଭବାୟ ନମଃ ।'

ଏଥିସହ କୁହାଯିବ ବାସୁଦେବ କର୍ମଣେ ଅଶ୍ୱମେଧୀ ଇନ୍ଦ୍ରବଳ ଇନ୍ଦ୍ରଦ୍ୟୁମ୍ନାୟ ଦୀପଦାନ ସଂପାଦୟାମି ।

ଏଥିରୁ ଜଣା ପଡୁଛି ପ୍ରଭୁଙ୍କୁ ବାସୁଦେବ ରୂପେ ଜନ୍ମ କରିଥିବାରୁ ଇନ୍ଦ୍ରବଳ ରୂପୀ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଭୁ ଦୀପଦାନ କରୁଛନ୍ତି । ସ୍ୱର୍ଗତ ଗବେଷକ ଆଇ. ଏ. ଏସ୍ ଅଫିସର ଅନିରୁଦ୍ଧ ଦାସ ଏହାକୁ ଅଧିକ ସ୍ପଷ୍ଟ କରିଛନ୍ତି । ତାଙ୍କ ଅନୁସାରେ ଶ୍ରାଦ୍ଧବେଳେ କୁହାଯାଏ –

'ଅଙ୍ଗିରସ ଗୋତ୍ରାୟ ଅଶ୍ୱମେଧି ଇନ୍ଦ୍ରବଳ ବର୍ମଣେ ଦୀପଦାନ ତୁଭ୍ୟମ୍ ସଂପ୍ରଦଦେ' । ସୋମବଂଶ ପ୍ରଥମେ ପଣ୍ଡୁବଂଶ ଭାବେ ପରିଚିତ ଥିଲା । ପଣ୍ଡୁବଂଶମାନେ ପ୍ରଥମେ ମେଖଳରେ ରାଜତ୍ୱ କରୁଥିଲେ ଓ କୋଶଳର ସର୍ବପୁରିଆ ବଂଶ ସହ ବୈବାହିକ ସମ୍ପର୍କ ରଖିଥିଲେ । କୋଶଳର ଶେଷ ରାଜାଙ୍କୁ ରାଜଧାନୀ ଶ୍ରୀପୁର ରକ୍ଷା କରିବାରେ ସାହାଯ୍ୟ କରିଥିଲେ ରାଜା ଇନ୍ଦ୍ରବଳ । ପରେ ତାଙ୍କୁ ଶ୍ରୀପୁର ସମେତ ଏକ ବିଶାଳ ଅଞ୍ଚଳ ରାଜୁତି କରିବାକୁ ଦିଆଯାଇଥିଲା । ସେ ବୀର ସାହସୀ ଓ ଦିଗ୍‌ବିଜୟୀ ଥିଲେ ।

ଏହି ସର୍ବପୁରିଆ ବଂଶର ଶେଷରାଜା ଅପୁତ୍ରିକ ଥିବାରୁ ଇନ୍ଦ୍ରବଳଙ୍କ ନାତି ତଥା ନନ୍ନଦେବଙ୍କ ପୁତ୍ର ତୀବରଦେବ କୋଶଳ ରାଜା ହେଲେ । ସେ ପରାକ୍ରମୀ ଥିଲେ । ଉତ୍କଳ ଜୟ ପରେ ପୁରୀ ଓ ଗଞ୍ଜାମ ଅଞ୍ଚଳକୁ ନେଇ ଗଠିତ କଙ୍ଗୋଦ ଜୟ କରିବାକୁ ସେ ଉଦ୍ୟମ କରିଥିଲେ । ନିଜ ରାଜ୍ୟ ଶତ୍ରୁ ଆକ୍ରମଣର ସମ୍ମୁଖୀନ ହେବାରୁ ସେ ସେଠାରୁ ଫେରିଆସିଥିଲେ । ସେ ଭ୍ରାତୃ ବିବାଦର ସୁଯୋଗ ନେଇ ଉତ୍କଳକୁ ଯାଇଥିଲେ କିନ୍ତୁ ପରାଜୟର ସମ୍ଭାବନା ଦେଖି ନିଜ ରାଜ୍ୟକୁ ଚାଲି ଯାଇଥିଲେ । ଏହି କଙ୍ଗୋଦ ଅଞ୍ଚଳରେ ପୁରୀର ଶ୍ରୀମନ୍ଦିର ରହିଥିଲା ଓ ପୂର୍ବରୁ କଙ୍ଗୋଦ ଉତ୍କଳ କୋଶଳ ମଧ୍ୟରେ ବ୍ୟବସାୟ ବାଣିଜ୍ୟ ଓ ତୀର୍ଥଯାତ୍ରା ଚାଲିଥିଲା ।

ପାଣ୍ଡୁବଂଶୀମାନେ ଯାଦବବଂଶୀୟ କ୍ଷତ୍ରିୟ ଥିଲେ । ଏହି ବଂଶରେ ଶ୍ରୀକୃଷ୍ଣ ଜନ୍ମ ହୋଇଥିଲେ । ଶ୍ରୀକୃଷ୍ଣଙ୍କ ସ୍ୱର୍ଗାରୋହଣ ପରେ ଏହି ବଂଶ ବାସୁଦେବ ଓ ସଙ୍କର୍ଷଣ ଭାବରେ କୃଷ୍ଣ ବଳରାମଙ୍କୁ ପୂଜା କରୁଥିଲେ । ଉତ୍ତର ଭାରତଠାରୁ ଆରମ୍ଭ କରି ଦକ୍ଷିଣ ଭାରତ ପର୍ଯ୍ୟନ୍ତ ଯାଦବ ବଂଶର ବିଭିନ୍ନ ଶାଖା ରାଜତ୍ୱ କରି ଏହି କୃଷ୍ଣ ବାସୁଦେବବାଦ ପ୍ରଚାର କରିଥିଲେ । ପାଣ୍ଡୁବଂଶୀ ପରମ ବୈଷ୍ଣବ ଥିଲେ ଓ କୋଶଳ ରାଜଧାନୀ ଶ୍ରୀପୁରଠାରେ କୃଷ୍ଣବାସୁଦେବ ଉପାସନାର ପ୍ରବର୍ତ୍ତନ କରି ବାସୁଦେବ ସଙ୍କର୍ଷଣ ପୂଜା କରାଇଥିଲେ । ପ୍ରଥମେ ଏଠି



ସର୍ବପୁରିଆ ରାଜାମାନେ ଥିଲେ। ପାଣ୍ଡୁବଂଶୀ ଇନ୍ଦ୍ରବଳ ତାଙ୍କୁ ଯୁଦ୍ଧରେ ସବୁ ପ୍ରକାର ସାହାଯ୍ୟ କରିବାରୁ ଶ୍ରୀପୁର ଅଞ୍ଚଳରେ ରାଜୁତି କରିବାର ଅଧିକାର ପ୍ରାପ୍ତ ହୋଇଥିଲେ। ରାଜା ହେବା ପରେ ମନେ ହେଉଛି ସେ ତୀର୍ଥାଟନରେ ସମ୍ବଲପୁର ବାଟେ ଶ୍ରୀକ୍ଷେତ୍ରରେ ପଦାର୍ପଣ କରିଛନ୍ତି। ଶ୍ରୀକ୍ଷେତ୍ରରେ ଥିବା ଏକକ ମାଧବ ମୂର୍ତ୍ତିକୁ ସେ ବାସୁଦେବ ସଙ୍କର୍ଷଣ ମୂର୍ତ୍ତିରେ ରୂପାୟିତ କରିବାକୁ ଉଦ୍ୟମ କରିଥିବେ। କୃଷ୍ଣ ବାସୁଦେବବାଦର ପ୍ରଚଳନ ସହ ବାସୁଦେବ ସଙ୍କର୍ଷଣ ମୂର୍ତ୍ତି ସ୍ଥାପନା ତାଙ୍କ ଉଦ୍ୟମରେ ହୋଇ ଥାଇପାରେ। ଏହି ଉପାସନାରେ ବାସୁଦେବ ସଙ୍କର୍ଷଣ ସହ ଏକାନଂଶା ଦୁର୍ଗାଙ୍କ ପୂଜା ବ୍ୟବସ୍ଥା ଥିଲେ ମଧ୍ୟ ବହୁକାଳ ପର୍ଯ୍ୟନ୍ତ କେବଳ ବାସୁଦେବ ସଙ୍କର୍ଷଣ ପୂଜିତ ହେଉଥିଲେ। ସୁଭଦ୍ରା ବା ଏକାନଂଶା ବହୁ ପଛରେ ଆସିଛନ୍ତି। ଭୁବନେଶ୍ୱର ଅନନ୍ତ ବାସୁଦେବ ମନ୍ଦିରରେ ପୂଜିତ ବର୍ତ୍ତମାନର ତ୍ରିମୂର୍ତ୍ତି ଅଳ୍ପକାଳର। ପ୍ରାୟ ୭୦ ବର୍ଷ ପୂର୍ବେ ମାର୍ବଲ ପ୍ରସ୍ତରରେ ଏମାନେ ନିର୍ମିତ ହୋଇଥିଲେ। ପୂର୍ବରୁ ଅନଙ୍ଗଦେବଙ୍କ କନ୍ୟା ଚନ୍ଦ୍ରିକା ଦେବୀ ଯେଉଁ ମୂର୍ତ୍ତି ତାଙ୍କ ପ୍ରତିଷ୍ଠିତ ନୂତନ ମନ୍ଦିରରେ ରଖାଇଥିଲେ, ସେମାନେ ବର୍ତ୍ତମାନ ଅନନ୍ତ ବାସୁଦେବଙ୍କ ଭୋଗ ମଣ୍ଡପ ସାମ୍ନାରେ ଏକ ପରିତ୍ୟକ୍ତ ମନ୍ଦିରରେ ରଖା ହୋଇଛନ୍ତି। ସେଠାରେ ଭୋଗ ପାଇଁ ରଖା ହୋଇଥିବା ପରିବା ଟୋକେଇ ରଖାଯାଉଛି। ସେ ତ୍ରିମୂର୍ତ୍ତି ମଧ୍ୟରେ ବାସୁଦେବ ଚତୁର୍ଭୁଜ, ସଙ୍କର୍ଷଣ ଓ ସୁଭଦ୍ରା ଦ୍ୱିଭୁଜ। ବାସୁଦେବ ଓ ସଙ୍କର୍ଷଣ ବହୁ ପୁରାତନ ମୂର୍ତ୍ତି । ସୁଭଦ୍ରା ସେମାନଙ୍କ ତୁଳନାରେ ନୂତନ ଓ କମନୀୟା। ବାସୁଦେବ ସଙ୍କର୍ଷଣ ବା ଅନନ୍ତ ବାସୁଦେବ ମୂର୍ତ୍ତି ପୂର୍ବରୁ ପରିତ୍ୟକ୍ତ ହୋଇଥିବା ଓ ବର୍ତ୍ତମାନ ମନ୍ଦିର ସାମ୍ନାରେ ଥିବା ବିନ୍ଦୁ ସରୋବର ପାହାଚରେ ଥିବା ବାସୁଦେବ ସଙ୍କର୍ଷଣ ମୂର୍ତ୍ତିଙ୍କ ସହିତ ସାଦୃଶ୍ୟ ରହିଛି। ଏଥିରୁ ମନେ ହେଉଛି, ଦୁଇ ପୁରାତନ ମୂର୍ତ୍ତି କୌଣସି ଭଗ୍ନ ମନ୍ଦିରରୁ ଆଣି ନୂତନ ସୁଭଦ୍ରା ମୂର୍ତ୍ତି ସହିତ ନୂତନ ମନ୍ଦିରରେ ପ୍ରତିଷ୍ଠା କରାଯାଇଛି। ଚୁଆ ଚନ୍ଦନ ଲାଗି କ୍ଷୟ ପ୍ରାପ୍ତି ହେବା ପରେ ତିନି ମୂର୍ତ୍ତିଙ୍କ ଜାଗାରେ ୭୦ବର୍ଷ ତଳେ ନୂଆ ମୂର୍ତ୍ତି ପ୍ରତିଷ୍ଠା ହୋଇଛି।

ଯେଉଁ ଭଗ୍ନ ମନ୍ଦିରରୁ ବାସୁଦେବ ସଙ୍କର୍ଷଣ ମୂର୍ତ୍ତି ଅଣାଯାଇଛି ତାକୁ ସୋମବଂଶର ରାଜା ଜନ୍ମେଜୟଙ୍କ ପୁତ୍ର ପ୍ରଥମ ଯଜାତି କେଶରୀ ବୋଲି ଏ ପ୍ରବନ୍ଧର ଲେଖକ ଅନୁମାନ କରୁଛି। ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରୁ ବରାହ-ମିହିର ତାଙ୍କ (ବୃହତ୍ ସଂହିତା) ଗ୍ରନ୍ଥରେ ପ୍ରତିମା ଲକ୍ଷଣ ନିର୍ଦ୍ଦିଷ୍ଟ କରିଦେଇଛନ୍ତି। ବାସୁଦେବ ସଙ୍କର୍ଷଣଙ୍କ ସହିତ ଏକାନଂଶା ରହିବେ ବୋଲି ବ୍ୟବସ୍ଥା ରହିଛି। ଭାରତର ବିଭିନ୍ନ ସ୍ଥାନରେ ଏଭଳି ମନ୍ଦିର ପ୍ରତିଷ୍ଠା ହୋଇଥିଲାବେଳେ, ଓଡ଼ିଶାରେ ମଧ୍ୟ ପଞ୍ଚମ ଶତାବ୍ଦୀରୁ ଭୁବନେଶ୍ୱରଠାରେ ଏ ପୂଜା ଆରମ୍ଭ ହୋଇଛି। ମାଠର ବଂଶୀୟ ପ୍ରଭଞ୍ଜନଦେବଙ୍କ ପ୍ରତିଷ୍ଠିତ ବିଷ୍ଣୁ ମନ୍ଦିରରେ ଏହି ବାସୁଦେବ ସଙ୍କର୍ଷଣ ପୂଜିତ ହେଉଥିବେ। ଏମାନେ ପରିତ୍ୟକ୍ତ ହୋଇ ବର୍ତ୍ତମାନ ବିନ୍ଦୁ ସରୋବର ପାହାଚ ଉପରେ ରହିଛନ୍ତି।

ଯଯାତି ପ୍ରଥମ ନିଜ ଭଗିନୀ ପୃଥ୍ୱୀ ଦେବୀଙ୍କ ରାଜତ୍ୱ କାଳରେ ଭୁବନେଶ୍ୱରଠାରେ ଏକ ବାସୁଦେବ ମନ୍ଦିର ପ୍ରତିଷ୍ଠା କରାଇ ପାରିଥାନ୍ତି। ଭୋମବଂଶର ପୃଥ୍ୱୀ ଦେବୀଙ୍କ ରାଜଧାନୀ ଥିଲା ଯାଜପୁର। ସ୍ୱାମୀ ଶିବକର ଦେବଙ୍କ ଅକାଳ ମୃତ୍ୟୁ ପରେ ସୋମବଂଶୀ ରାଜା ଜନ୍ମେଜୟଙ୍କ କନ୍ୟା ଏହି ପୃଥ୍ୱୀ ଦେବୀ ତ୍ରିଭୁବନ ମହାଦେବୀ ନାମ ଧାରଣ କରି କ୍ଷମତାକୁ ଆସିଲେ। ତାଙ୍କ ରାଜତ୍ୱ କାଳରେ ଭ୍ରାତା ଯଯାତିଙ୍କର ଅଖଣ୍ଡ କ୍ଷମତା ଥିଲା ଓ ସେ ନିଜ ନାମରେ ଉତ୍କଳର ବ୍ରାହ୍ମଣଙ୍କୁ ଗ୍ରାମଦାନ କରୁଥିଲେ। ଭଗିନୀଙ୍କ ଅନୁରୋଧକ୍ରମେ ସେ ଏକ ସଙ୍କର୍ଷଣ ବାସୁଦେବ ମନ୍ଦିର ନିର୍ମାଣ କରାଇଥିବା ସମ୍ଭବ। ତାଙ୍କ ଭଗିନୀ ପରମ ବୈଷ୍ଣବୀ ଥିଲେ ଓ ସେ ନିଜେ ବୈଷ୍ଣବଭାବାପନ୍ନ ଥିଲେ। ତେଣୁ ସେ ପୃଥ୍ୱୀ ଦେବୀଙ୍କ ସମୟରେ ଶିବ କ୍ଷେତ୍ର ଭୁବନେଶ୍ୱରରେ ବାସୁଦେବ ସଙ୍କର୍ଷଣ ମନ୍ଦିର ପ୍ରତିଷ୍ଠା କରିଥିବା ସମ୍ଭବ। ସେହି ମନ୍ଦିର ଭଗ୍ନ ହେବାପରେ ତାହାରି ପୁରାତନ ମୂର୍ତ୍ତି ନେଇ ଚନ୍ଦ୍ରିକା ଦେବୀ ନୂତନ ମନ୍ଦିରରେ ସ୍ଥାନିତ କରାଇଛନ୍ତି। ପୁରାତନ ଭଗ୍ନମନ୍ଦିର ବର୍ତ୍ତମାନ ମଣିଭଦ୍ରେଶ୍ୱର ମନ୍ଦିର ଭାବରେ ପରିଚିତ ହେଉଛି। ଏଥିରେ ପରବର୍ତ୍ତୀ କାଳରେ ବିଷ୍ଣୁ ମୂର୍ତ୍ତି ପରିବର୍ତ୍ତେ ଶିବଲିଙ୍ଗ ପ୍ରତିଷ୍ଠା କରାଯାଇଛି। ଠିକ୍ ଏହାରି ପାଖରେ



ନିର୍ମିତ ହୋଇଛି ନୂତନ ଅନନ୍ତ ବାସୁଦେବ ମନ୍ଦିର । ଯଯାତି ପ୍ରଥମ ଭୁବନେଶ୍ୱରରେ ମନ୍ଦିର ତୋଳାଇବା ପରେ ଉତ୍କଳ ଜୟ କରିଛନ୍ତି । ସେତେବେଳେ ପୁରୀଠାରେ ସେ ପୁରୁଷୋତ୍ତମ ମନ୍ଦିର ସ୍ଥାପନ କରିଛନ୍ତି । ସେ ପୁରୁଷୋତ୍ତମ ମନ୍ଦିରରେ ଏକକ ମାଧବ ମୂର୍ତ୍ତି ପରିବର୍ତ୍ତେ ବାସୁଦେବ ସଙ୍କର୍ଷଣ ଓ ସୁଭଦ୍ରା ମୂର୍ତ୍ତି ପ୍ରତିଷ୍ଠା କରାଇଛନ୍ତି । ଚୋଡଗଙ୍ଗଦେବ ନୂତନ ମନ୍ଦିର ନିର୍ମାଣ କଲାପରେ ସେଠାରେ ପରବର୍ତ୍ତୀ କାଳରେ ପର୍ଯ୍ୟାୟକ୍ରମେ ଦାରୁ ନିର୍ମିତ ତ୍ରିମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି । ଯଯାତି ୨ୟ ବା ଚଣ୍ଡୀହର ଏ ମନ୍ଦିର ନିର୍ମାଣ କରିନାହାନ୍ତି । ସେ ଲିଙ୍ଗରାଜ ମନ୍ଦିର ଆରମ୍ଭ କରିଥିଲେ । ପରେ ତାଙ୍କ ପୁତ୍ର ଉଦ୍ୟୋତ କେଶରୀ ଏହା ସମ୍ପୂର୍ଣ୍ଣ କରିଛନ୍ତି ।

୧ମ ଯଯାତିଙ୍କ ବିଷୟରେ ମାଦଳା ପାଞ୍ଜି ବିଭ୍ରମ ସୃଷ୍ଟି କରିଛନ୍ତି । ପାଞ୍ଜି ଅନୁସାରେ ଶଙ୍କରାଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ସେ ସୋନପୁରରୁ ପାତାଳି ହୋଇ ପୋତା ହୋଇଥିବା ଜଗନ୍ନାଥଙ୍କୁ ଉଦ୍ଧାର କରିଛନ୍ତି । ରକ୍ତ ବାହୁ ନାମକ ଏକ କାଳ୍ପନିକ ଚରିତ୍ରର ଆକ୍ରମଣ ଭୟରେ ୧୪୦ ବର୍ଷ ଜଗନ୍ନାଥ ଗୋପ୍ୟ ହୋଇଥିଲେ । ମୋଗଲମାନଙ୍କ ଗୋଳ ହେବାରୁ ଏଭଳି କରାଯାଇଛି ବୋଲି ପାଞ୍ଜି କହିଛନ୍ତି । ଯଯାତିଙ୍କ ସମୟରେ ପ୍ରଭୁଙ୍କ ଦାରୁ କଳେବର ହେବାର ପ୍ରମାଣ ମିଳୁନାହିଁ । ଦାରୁରେ କଳେବର ହେବାପରେ ପରବର୍ତ୍ତୀ କାଳରେ ପ୍ରଭୁ ସୋନପୁର ସହ ଓଡିଶାର ବିଭିନ୍ନ ଅଞ୍ଚଳରେ ପାତାଳି ହୋଇଛନ୍ତି ।

ସୋନପୁର ଅଞ୍ଚଳର ଶିକ୍ଷକ ଶ୍ରୀଜଗନ୍ନାଥ ନାୟକ ତାଙ୍କ ରଚିତ 'ତରଭା ଜଗନ୍ନାଥ ମନ୍ଦିର ଇତିବୃତ୍ତ'ରେ କହିଛନ୍ତି– କଳାପାହାଡ ଅତ୍ୟାଚାର ହେତୁ ସୋନପୁରର ତରଭା ଓ ପରେ କୋଟ ସମଲାଇଠାରେ ସୋନପୁର ରାଜାଙ୍କ ଆଜ୍ଞାରେ ପ୍ରଭୁ ଜଗନ୍ନାଥ ପାତାଳି ହୋଇଥିଲେ ।

ଐତିହାସିକ ବିବରଣୀ ଓ କିମ୍ବଦନ୍ତୀ ଭିତରେ ଆକାଶ ପାତାଳ ପ୍ରଭେଦ ରହୁଛି । କେତେକ ଲେଖକ ତାଙ୍କ ପୁସ୍ତକରେ ଶଙ୍କରାଚାର୍ଯ୍ୟ ଓ ଯଯାତିଙ୍କ ମଧ୍ୟରେ ସଂସ୍କୃତରେ ସଂଳାପ ହୋଇଥିବା ପୋଥିରୁ ପ୍ରାପ୍ତ ବୋଲି କହିଛନ୍ତି । ଏହା ପ୍ରମାଣ ସିଦ୍ଧ ନୁହେଁ । ଶଙ୍କରାଚାର୍ଯ୍ୟ ୮୨୦ ଖ୍ରୀଷ୍ଟାବ୍ଦରେ ଅଳ୍ପ ବୟସରେ ଧରାଧାମରୁ ବିଦାୟ ନେଇଛନ୍ତି । ଏହାର ବହୁ ପରେ ଆସିଛି ସୋମବଂଶୀ ରାଜତ୍ୱ । ଯଯାତି ଓ ଶଙ୍କରାଚାର୍ଯ୍ୟଙ୍କ ସାକ୍ଷାତ ସମ୍ଭବ ନୁହେଁ ।

ଇତିହାସକୁ କିମ୍ବଦନ୍ତୀ ସହ ସମତାନରେ ଚଳାଇବା ବେଳେ ବହୁ ଅସୁବିଧା ଉପୁଜୁଛି । ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧୀୟ ତଥ୍ୟ ଅନୁସନ୍ଧାନ କଲାବେଳେ ସତ୍ୟର ଆଶ୍ରୟ ନେବାକୁ ହେବ । ସତର୍କତା ଅବଲମ୍ବନ ଦ୍ୱାରା ଶ୍ରୀଜଗନ୍ନାଥଙ୍କ କଥାମୃତ ସୁପ୍ରତିଷ୍ଠିତ ହୋଇପାରିବ ।

ଅନନ୍ୟ ନିକେତନ, ଏନ୍ ୧/୧୮୩
ନୂଆପଲ୍ଲୀ, ଭୁବନେଶ୍ୱର





# ମର୍ତ୍ତ୍ୟ ମଣ୍ଡଳେ ଦେହ ବହି

ଡକ୍ଟର ଅଭିମନ୍ୟୁ ବରାଳ

ଭାଗବତରେ କୁହାଯାଇଛି – ମର୍ତ୍ତ୍ୟ ମଣ୍ଡଳେ ଦେହ ବହି ଦେବତା ହୋଇଲେ ମରଇ । ଅର୍ଥାତ୍, ମର୍ତ୍ତ୍ୟରେ ଦେହ ଧାରଣ କରିଥିବା ପ୍ରତ୍ୟେକ ଜୀବ ନିଶ୍ଚୟ ମୃତ୍ୟୁବରଣ କରନ୍ତି । ଦେବ, ଦାନବ, ଗନ୍ଧର୍ବ, କିନ୍ନର, ଚାରଣ, ବିଦ୍ୟାଧର – ମର୍ତ୍ତ୍ୟରେ ଜନ୍ମନେଲେ ନିଶ୍ଚୟ ମୃତ୍ୟୁର ଶିକାର ହେବେ । ଏହା ଜଗତର ଏକ ଚିରନ୍ତନ ସତ୍ୟ । ତେଣୁ ଗୀତାରେ କୁହାଯାଇଛି– ଜନ୍ମ ପରେ ମୃତ୍ୟୁ ସୁନିଶ୍ଚିତ ଏବଂ ମୃତ୍ୟୁ ପରେ ମଧ୍ୟ ପୁନର୍ଜନ୍ମ ଅବଶ୍ୟ ହେବ । ଏହା ହିନ୍ଦୁ ଶାସ୍ତ୍ରର ଏକ ବିଶିଷ୍ଟ ଦାର୍ଶନିକ ଅଭିବ୍ୟକ୍ତି । ତେଣୁ ଦେହଧାରୀମାନଙ୍କୁ ମୃତ୍ୟୁ ପାଇଁ ବିଚଳିତ ନହେବାକୁ ଶାସ୍ତ୍ରକାରମାନେ ପରାମର୍ଶ ଦେଇଛନ୍ତି । ଗୀତାରେ ଭଗବାନ ଅର୍ଜୁନଙ୍କୁ କହିଛନ୍ତି – ବସ୍ତ୍ର ପୁରାତନ ବା ପୁରୁଣା ହୋଇଗଲେ ଯେପରି ତାକୁ ତ୍ୟାଗ କରି ନୂତନ ବସ୍ତ୍ର ପରିଧାନ କରିବାକୁ ହୁଏ, ଠିକ୍ ସେହିପରି ଏହି ଦେହ ବା ଶରୀର ପୁରାତନ ବା ଜରାଜୀର୍ଣ୍ଣ ହୋଇଗଲେ ତାକୁ ତ୍ୟାଗ କରି ଆତ୍ମା ଅନ୍ୟ ଏକ ନୂତନ ବିଗ୍ରହ ବା ଶରୀରରେ ଯାଇ ରହନ୍ତି । ପଞ୍ଚଭୂତରେ ନିର୍ମିତ ଶରୀର ନଶ୍ୱର । ଏହା ଚିରସ୍ଥାୟୀ ନୁହେଁ । କିନ୍ତୁ ଆତ୍ମା ଅବିନଶ୍ୱର, ନିତ୍ୟ, ସନାତନ । ଆତ୍ମାର ବିନାଶ ହୁଏ ନାହିଁ । ଦେହ ମାତ୍ର ନଷ୍ଟ ହୋଇଯାଏ ।

ଜନ୍ମ–ମୃତ୍ୟୁ, ଜରା–ବ୍ୟାଧିଜନିତ ଚକ୍ରରେ ଜୀବ ଅହରହ ଘୂର୍ଣ୍ଣାୟମାନ । ସମସ୍ତ ଜୀବଜଗତ ପାଇଁ ଯାହା ପ୍ରଯୁଜ୍ୟ, ପରଂବ୍ରହ୍ମ ହୋଇ ମଧ୍ୟ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରେ ତାହା ମଧ୍ୟ ପ୍ରଯୁଜ୍ୟ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନବକଳେବର ଉତ୍ସବକୁ ଅନୁଧ୍ୟାନ କଲେ ଏହି ସତ୍ୟ ବେଶ୍ ଉପଲବ୍ଧ ହୁଏ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଦାରୁ ନିର୍ମିତ ହୋଇଥିବାରୁ ଏହାର ପରିବର୍ତ୍ତନ ପୂର୍ବକ ନବକଳେବର ଏକାନ୍ତ ଆବଶ୍ୟକ । କାରଣ ଶିଳ୍ପଶାସ୍ତ୍ରରେ ଉଲ୍ଲେଖ ଅଛି – ମଣି ବିଗ୍ରହର ପରମାୟୁ ଦଶହଜାର ବର୍ଷ, ଧାତୁ ବିଗ୍ରହର ସ୍ଥାୟିତ୍ୱ ଏକ ହଜାର ବର୍ଷ, ଦାରୁ ବିଗ୍ରହର ପରମାୟୁ ବାରବର୍ଷ, ଚିତ୍ରପଟ୍ଟର ଆୟୁ ଏକ ବର୍ଷ ଓ ମୃଣ୍ମୟାଦି ବିଗ୍ରହଙ୍କର ମାତ୍ର ଏକମାସ ଅଟେ । ତେଣୁ ଜଗନ୍ନାଥଙ୍କ ବିଗ୍ରହ ଦାରୁ ନିର୍ମିତ ହୋଇଥିବାରୁ ଏହି ବିଗ୍ରହମାନଙ୍କର ପରମାୟୁ ଶାସ୍ତ୍ର ଓ ପରମ୍ପରାନୁଯାୟୀ ବାରବର୍ଷ । ତେଣୁ ବାରବର୍ଷରେ ମହାପ୍ରଭୁଙ୍କ ବିଗ୍ରହ ପରିବର୍ତ୍ତନ କରାଯାଏ । ଏହି ବିଗ୍ରହ ପରିବର୍ତ୍ତନକୁ ନବକଳେବର କୁହାଯାଏ ।

ମହାରାଜ ଇନ୍ଦ୍ରଦ୍ୟୁମ୍ନ ନୀଳସିନ୍ଧୁ ତଟରେ ବଡ ଦେଉଳ ଭଳି ବିଶାଳ ଭବ୍ୟ ମନ୍ଦିର ନିର୍ମାଣ କରି ଛତିଶା ନିଯୋଗ, ଛପନ ଭୋଗ ଓ ଷାଠିଏ ପଉଟି ବ୍ୟଞ୍ଜନର ବ୍ୟବସ୍ଥା କରିପାରିଲେ । ସେ କ'ଣ ଚାହିଁଥିଲେ ମହାପ୍ରଭୁଙ୍କର ମଣିମୟ ବିଗ୍ରହ ନିର୍ମାଣ କରି ରତ୍ନ ସିଂହାସନରେ ଅଧିଷ୍ଠିତ କରିପାରି ନଥାନ୍ତେ ? କିନ୍ତୁ ଏହାର କାରଣ ହେଲା ବିଭିନ୍ନ ଧାତୁ, ପାଷାଣ ବା ମଣି ବିଗ୍ରହର ପୂଜା ଅପେକ୍ଷା ଦାରୁ ବିଗ୍ରହ ପୂଜାରେ ବିଶେଷ ଫଳପ୍ରାପ୍ତି ହୋଇଥାଏ । ପୁନଶ୍ଚ ମଣିଷ ଯେତେବେଳେ ଧାତୁର ବ୍ୟବହାର ଜାଣିନଥିଲା, ସେ ବୃକ୍ଷକୁ ଦେବତା ଭାବରେ ହିଁ ପୂଜା କରୁଥିଲା । ଏବେ ମଧ୍ୟ ବୃକ୍ଷ ପୂଜାର ପ୍ରଚଳନ ରହିଛି । ବରାହ ମିହିର ସ୍ୱୀୟ ବୃହତ୍ ସଂହିତାରେ ଉଲ୍ଲେଖ କରିଛନ୍ତି – କାଷ୍ଠ ଓ ମୃତ୍ତିକାର ମୂର୍ତ୍ତି ପୂଜା କଲେ ଆୟୁ, ଶ୍ରୀ, ବଳ ଓ ବିଜୟ ଦାନ କରେ । ମଣିର ପ୍ରତିମା ମଣିଷର ହିତ ସାଧନ



କରେ । ସୁନାର ପ୍ରତିମା ପୁଷ୍ଟି ସାଧନ କରେ । ରୂପାର ପ୍ରତିମା ଯଶ ପ୍ରାପ୍ତି କରାଏ । ତମ୍ବାର ପ୍ରତିମା ସନ୍ତାନ ବୃଦ୍ଧି କରାଏ । ପଥରର ବା ଶିବଲିଙ୍ଗ ବିଶେଷ ଭୂମି ଲାଭ କରାଏ । କାଶ୍ୟପ ଶିଳ୍ପ ତଥା ଆଗମ ଗ୍ରନ୍ଥରେ ଦାରୁ ବିଗ୍ରହଙ୍କ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଛି ।

ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ବାଙ୍କୀ ମୁହାଣରେ ଭାସୁଥିବା ଦାରୁକୁ ଆଣି ଶ୍ରୀବିଗ୍ରହ ନିର୍ମାଣ କରିଥିଲେ । ଯାହା ଏଯାବତ୍ ଦାରୁବ୍ରହ୍ମ ଭାବରେ ଶ୍ରୀମନ୍ଦିରରେ ପୂଜିତ ହୋଇ ଆସୁଛନ୍ତି । ପ୍ରତ୍ୟେକ ନବକଳେବରରେ ନିମ୍ବଦାରୁ ଅଣାଯାଇ ପ୍ରଭୁଙ୍କ ବିଗ୍ରହ ନିର୍ମାଣ କରାଯାଉଛି । ପ୍ରତିମା ଲକ୍ଷଣ ସୌଧାଗମ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ, ଅଶ୍ୱତ୍ଥ, ଶାଳ, ପିଆଶାଳ, ମୁଣ୍ଡିମୁଣ୍ଡି, ଶିଂଶପା, କେନ୍ଦୁ, ଖଇର, ଦେବଦାରୁ, ଗମ୍ଭାରି, ନିମ୍ବ ଆଦି ବିଭିନ୍ନ ବୃକ୍ଷରେ ବିଗ୍ରହ ନିର୍ମାଣ ହୋଇପାରିବ । କିନ୍ତୁ ଏସବୁ ବୃକ୍ଷ ଅପେକ୍ଷା ନିମ୍ବବୃକ୍ଷ ଦାରୁ ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ଶାସ୍ତ୍ରରେ କୁହାଯାଇଛି – ନିମ୍ବ ପ୍ରଧାନ ମେତେଷାଂ ପ୍ରତିମାନାଂ ବିନିର୍ମିତୌ ॥

ପୁରାତନ ନିମ୍ବବୃକ୍ଷ ମଳୟ ସ୍ପର୍ଶରେ ଚନ୍ଦନ ବୃକ୍ଷରେ ରୂପାନ୍ତରିତ ହୁଏ । ପୁନଶ୍ଚ ଏହି ବୃକ୍ଷର ସ୍ୱାଦ ତିକ୍ତ ହୋଇଥିବାରୁ ଏହା କୌଣସି କୀଟଦ୍ରଷ୍ଟ ହୋଇ ନଷ୍ଟ ହୁଏନାହିଁ । ତେଣୁ ଏହା ଦୀର୍ଘସ୍ଥାୟୀ ହୋଇଥାଏ । ଆୟୁର୍ବେଦାନୁସାରେ ଦ୍ରବ୍ୟଗୁଣାନୁଯାୟୀ ଏହା ବିଭିନ୍ନ ରୋଗ ନିବାରକ ଶକ୍ତି ରୂପେ କାର୍ଯ୍ୟକରେ । ଆଗମ ଶାସ୍ତ୍ରାନୁସାରେ ବୃକ୍ଷକୁ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା– ପୁରୁଷ, ସ୍ତ୍ରୀ ଓ କ୍ଲୀବ । ନିମ୍ବଦାରୁ ପୁରୁଷ ବୃକ୍ଷ ହୋଇଥିବାରୁ ଏହା ଶକ୍ତ ଓ ଶ୍ରେଷ୍ଠ । ଏହି ଉତ୍କୃଷ୍ଟ ନିମ୍ବଦାରୁରେ ବିଷ୍ଣୁ ବିଗ୍ରହ ନିର୍ମାଣ ପାଇଁ ଅତ୍ୟନ୍ତ ଉପଯୁକ୍ତ । ବାମଦେବ ସଂହିତାରେ ନିମ୍ବକୁ ଶ୍ରେଷ୍ଠଦାରୁ ରୂପେ ଗ୍ରହଣ କରାଯାଇଛି । ନିମ୍ବଦାରୁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ପୂଜା କରିପାରିବେ । ନିମ୍ବ ସର୍ବବର୍ଣ୍ଣେ ପୂଜ୍ୟ । ତେଣୁ ଭବିଷ୍ୟ ପୁରାଣରେ କୁହାଯାଇଛି– 'ନିମ୍ବାଦ୍ୟା ସର୍ବ ବର୍ଣ୍ଣାନାଂ ବୃକ୍ଷ ସାଧରଣା ସ୍ମୃତା' ।

ଶ୍ରୀଜଗନ୍ନାଥ ପତିତପାବନ । ଆଚଣ୍ଡାଳ–ବ୍ରାହ୍ମଣ ସମସ୍ତଙ୍କ ଦ୍ୱାରା ସେ ପୂଜିତ । ସେ ଜଗତର ନାଥ – ଜଗନ୍ନାଥ । ତେଣୁ ତାଙ୍କର ବିଗ୍ରହ ନିମ୍ବଦାରୁରେ ହେବା ବିଧେୟ । ଦାରୁ ବିଗ୍ରହ ହେତୁ ଜଗନ୍ନାଥ ତଥା ଚତୁର୍ଦ୍ଧାମୂର୍ତ୍ତିଙ୍କର ବିଗ୍ରହ ପରିବର୍ତ୍ତନର ଆବଶ୍ୟକତା ପଡେ । ତେଣୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହି ବିଗ୍ରହ ପରିବର୍ତ୍ତନକୁ ନବକଳେବର କୁହାଯାଏ । ପୁରାତନ ବିଗ୍ରହରୁ ବ୍ରହ୍ମଙ୍କୁ ନେଇ ନୂତନ ବିଗ୍ରହରେ ସଂସ୍ଥାପନ କରାଯାଏ ।

ଯେଉଁ ବ୍ରହ୍ମଙ୍କୁ ପୁରାତନ ବିଗ୍ରହରୁ ନେଇ ନୂତନ ବିଗ୍ରହରେ ସ୍ଥାପନ କରାଯାଏ, ତାହା କି ପଦାର୍ଥ ଯାହା ଏପର୍ଯ୍ୟନ୍ତ ରହସ୍ୟାବୃତ୍ତ । ଏହା ସଂପୂର୍ଣ୍ଣ ଅଗୋଚର । ସର୍ବୋ ରହସ୍ୟ ପୁରୁଷୋତ୍ତମସ୍ୟ, ଦେବୋ ନଜାନାତି କୁତଃ ମନୁଷ୍ୟା । ଦେବତାମାନେ ମଧ୍ୟ ପୁରୁଷୋତ୍ତମ ରହସ୍ୟ ଭେଦ କରିପାରନ୍ତି ନାହିଁ । ମନୁଷ୍ୟ ବା କେତେ ମାତ୍ର ? ବ୍ରହ୍ମ କର, କର୍ଣ୍ଣ, ନାଶା ତଥା ରୂପ, ରସ, ଗନ୍ଧ, ସ୍ପର୍ଶ ବିହୀନ । ତେଣୁ ଏ ବ୍ରହ୍ମ ପଦାର୍ଥ 'ଅବାଂ ମାନସ ଗୋଚର' । ଏହି ବ୍ରହ୍ମ ପଦାର୍ଥ ଗୌତମ ବୁଦ୍ଧଙ୍କ ଦାନ୍ତ, ତନ୍ତ୍ର ପ୍ରଭାବିତ ଅଷ୍ଟଧାତୁ ନିର୍ମିତ ଯନ୍ତ୍ର, ଶ୍ରୀକୃଷ୍ଣଙ୍କର ନାଭିକମଳ, ସୁବର୍ଣ୍ଣ ନିର୍ମିତ ଶୟନ ଠାକୁର, ପାରଦ ଥିବା ଛୋଟ ପେଟିକା ବା ଫରୁଆ, ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନିର୍ମିତ ଦାରୁ ବିଗ୍ରହଙ୍କର ଅଂଶବିଶେଷ, ପୂର୍ଣ୍ଣବ୍ରହ୍ମ ଶ୍ରୀକୃଷ୍ଣଙ୍କର ପଞ୍ଚ ଭୂତାତ୍ମକ ଶରୀରର ଗୋଟିଏ ମଣି ବିଶେଷ, ଖଣ୍ଡିଏ ନୂତନ ପ୍ରତିଷ୍ଠିତ ଦାରୁ, ଅତ୍ୟନ୍ତ ମୂଲ୍ୟବାନ ମଣିଖଣ୍ଡ ଓ ଜୀବନ୍ତ ଶାଳଗ୍ରାମ ବୋଲି ଜଗନ୍ନାଥ ସଂସ୍କୃତିର ବିଭିନ୍ନ ଗବେଷକମାନେ ସ୍ୱ ସ୍ୱ ମତବ୍ୟକ୍ତ କରିଛନ୍ତି । ସେ ଯାହା ହେଉ ଏହି ବ୍ରହ୍ମ ପଦାର୍ଥଟି ସତ୍ୟ, ଜ୍ଞାନ ଓ ଅନନ୍ତ ତଥା ସଚ୍ଚିଦାନନ୍ଦ ସ୍ୱରୂପ । ଏହା ସର୍ବଶ୍ରେଷ୍ଠ ଏବଂ ସଂସାରର ସମସ୍ତ ପାପତାପ ସ୍ପର୍ଶ ରହିତ ।

ଶ୍ରୀଜଗନ୍ନାଥଙ୍କର ଦାରୁ ବିଗ୍ରହ ହୋଇଥିବାରୁ ଏହାର ପରିବର୍ତ୍ତନ ପ୍ରାୟ ୮, ୧୧ କିମ୍ବା ୧୯ ବର୍ଷରେ ପଡେ । ଯେଉଁବର୍ଷ ଦୁଇଟି ଆଷାଢ଼ ମାସ ପଡେ ସେହିବର୍ଷ ନବକଳେବର ହୁଏ । ପ୍ରତି ୩୨ ମାସରେ ଗୋଟିଏ ଅଧିମାସ, ମଳମାସ ବା ପୁରୁଷୋତ୍ତମ ମାସ ପଡେ । ଯେଉଁବର୍ଷ ଉକ୍ତ



ଅଧିମାସ ଆଷାଢ ମାସରେ ପଡେ ବା ଯୋଡା ଆଷାଢ ହୁଏ, ସେହିବର୍ଷ ମହାପ୍ରଭୁ ନବକଳେବର ହୁଅନ୍ତି । ନବକଳେବର ଦୁଇ ପ୍ରକାର । ଗୋଟିଏ ହେଉଛି ନୂତନ ବିଗ୍ରହ ନିର୍ମାଣ ତଥା ବ୍ରହ୍ମ ପରିବର୍ତ୍ତନ ଓ ଅନ୍ୟଟି ହେଉଛି ଶ୍ରୀଅଙ୍ଗ ଫିଟା । ନୂତନ ବିଗ୍ରହ ନିର୍ମାଣ ଓ ବ୍ରହ୍ମ ପରିବର୍ତ୍ତନ ଯେଉଁ ବର୍ଷ ହୁଏ ସେହିବର୍ଷ ବନଯାଗ ପୂର୍ବକ ଦାରୁ ଅଣାଯାଏ । କିନ୍ତୁ ଶ୍ରୀଅଙ୍ଗ ଫିଟା ବର୍ଷ ଏସବୁ କର୍ମ କରାଯାଏ ନାହିଁ । କେବଳ ମହାପ୍ରଭୁଙ୍କ ଶ୍ରୀଅଙ୍ଗ ଫିଟାଯାଇ ନିର୍ମାଣ (ମରାମତି) କାମ କରାଯାଏ । ଏଥିରେ ବ୍ରହ୍ମଙ୍କୁ ସ୍ପର୍ଶ କରାଯାଏ ନାହିଁ ।

ପୁରାତନ ଘଟରୁ ବ୍ରହ୍ମଙ୍କୁ ନେଇ ନୂତନ ଘଟରେ ସ୍ଥାପନ କରିବା କ୍ରିୟାକୁ ଘଟ ପରିବର୍ତ୍ତନ ବା ବ୍ରହ୍ମ ପରିବର୍ତ୍ତନ କୁହାଯାଏ । ଶ୍ରୀଜୀଉଙ୍କ ନବକଳେବରରେ ଏହା ହେଉଛି ମୁଖ୍ୟ କାର୍ଯ୍ୟ । ଏହି ବ୍ରହ୍ମ ପରିବର୍ତ୍ତନ କାର୍ଯ୍ୟଟି ଅତ୍ୟନ୍ତ ଗୁପ୍ତରେ କରାଯାଏ । ଏହା ପ୍ରଭୁଙ୍କର ଏକ ଗୁପ୍ତ ନୀତି । ଆଷାଢ ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ନିଶାର୍ଦ୍ଧରେ ଅତ୍ୟନ୍ତ ସଂଗୋପନରେ ଏହି ବ୍ରହ୍ମ ପରିବର୍ତ୍ତନ କାର୍ଯ୍ୟ କରାଯାଏ । ଏହିଦିନ ବଡସିଂହାର ଧୂପ ଶେଷ ହେବା ପରେ ମନ୍ଦିର ଶୋଧ କରାଯାଇ ଚାରିଦ୍ୱାର ବନ୍ଦ କରିଦିଆଯାଏ । ମନ୍ଦିର ଭିତର ବେଢାରେ ନିର୍ଦ୍ଦିଷ୍ଟ କେତେଜଣ ଦଇତା ଓ ପତି ମହାପାତ୍ରଙ୍କ ବ୍ୟତୀତ ଅନ୍ୟକେହି ରହନ୍ତି ନାହିଁ । ମନ୍ଦିର ବାହାର ବେଢାସ୍ଥିତ ବାଇଶି ପାହାଚରେ କେବଳ ଦେଉଳ କରଣ ଏକୁଟିଆ ଶ୍ରୀଜଗନ୍ନାଥଙ୍କ ପାଟ ଖଣ୍ଡା ଧରି ଜଗି ରହନ୍ତି । ଦେଉଳ କରଣଙ୍କର ମଧ୍ୟ ଭିତର ବେଢାକୁ ଯିବାର ଅଧିକାର ନାହିଁ । ଏହି ସମୟରେ ମନ୍ଦିର ସମ୍ପୂର୍ଣ୍ଣ ରୂପେ ଅନ୍ଧକାର ରହେ । ତଦନନ୍ତର ଦଇତାମାନେ ନବନିର୍ମିତ ବିଗ୍ରହ ଚତୁଷ୍ଟୟଙ୍କୁ କୋଇଲି ବୈକୁଣ୍ଠସ୍ଥିତ ନିର୍ମାଣ ମଣ୍ଡପରୁ ପହଣ୍ଡି ବିଜେ କରାଇ ଅଣସର ପିଣ୍ଡିକୁ ଆଣନ୍ତି । ରାତିରେ ଶୁଭ ମୁହୂର୍ତ୍ତ ଦେଖି ପୁରାତନ ବିଗ୍ରହରୁ ବ୍ରହ୍ମଙ୍କୁ ବାହାର କରି ନୂତନ ବିଗ୍ରହରେ ସ୍ଥାପନ କରାଯାଏ । ଏହି ବ୍ରହ୍ମ ପରିବର୍ତ୍ତନ କରୁଥିବା କରଣ ସେବକ ସମଗ୍ର ଶରୀରକୁ ବସ୍ତ୍ରାଚ୍ଛାଦନ କରି ମୁଖ, ନାସା ଓ ଚକ୍ଷୁରେ ବାଘମୁହିଁ ବାନ୍ଧି ଅତ୍ୟନ୍ତ ସତର୍କତାର ସହ ଏ କାର୍ଯ୍ୟ ସମ୍ପାଦନ କରନ୍ତି ।

ପରଂବ୍ରହ୍ମ ଜଗତର ନାଥ ଜଗନ୍ନାଥଙ୍କ ନାଭିକମଳରେ ଏହି ବ୍ରହ୍ମ ବିରାଜମାନ । ଏହା ହେଉଛନ୍ତି ଆତ୍ମା । ବ୍ରହ୍ମ ଓ ଆତ୍ମା ମଧ୍ୟରେ ଏକତ୍ୱ ବେଦରେ ପ୍ରତିପାଦିତ ହୋଇଛି । ମଣିଷ ଜୀବାତ୍ମା ଏବଂ ଭଗବାନ ପରମାତ୍ମା । ମଣିଷ ଦେହରୁ ଜୀବାତ୍ମା ଚାଲିଗଲେ, ମଣିଷର ଶରୀରକୁ ଯେପରି ଶ୍ମଶାନକୁ ନେଇ ପୋଡି ଦିଆଯାଏ ଦାରୁବ୍ରହ୍ମ ଜଗନ୍ନାଥ ପକ୍ଷରେ ତାହାହିଁ ଘଟିଥାଏ । ବ୍ରହ୍ମ ପରିବର୍ତ୍ତନ ପରେ ପୁରାତନ ବିଗ୍ରହକୁ ତିନି ଗଡ କରି କୋଇଲି ବୈକୁଣ୍ଠ ଶିଆଳି ଲତା ତଳେ, କୋଠ ସୁଆଁସିଆ ସେବକମାନେ ଖୋଳିଥିବା ଗାତରେ ରକ୍ତବସ୍ତ୍ର ଆଚ୍ଛାଦିତ କରି ଶୁଆଇ ଦିଆଯାଏ । କର୍ପୂର, ଚନ୍ଦନ ଇତ୍ୟାଦି ଦେବା ପରେ ପାଟବସ୍ତ୍ର ଆଚ୍ଛାଦନ ପୂର୍ବକ ଗାତକୁ ବନ୍ଦ କରିଦିଆଯାଏ । ପୁରାତନ ବିଗ୍ରହଙ୍କର ଏହା ଗୋଲକ ବିଶ୍ରାମ । ପୁରାତନ ବିଗ୍ରହଙ୍କ ସହିତ ରଥର ସାରଥି, ଘୋଡା, ପାର୍ଶ୍ୱଦେବତା, ଶୁଆ, ଦ୍ୱାରପାଳ, ଧ୍ୱଜଦଣ୍ଡ ଓ ମହାପ୍ରଭୁଙ୍କର ଖଟ ଶେଯ ଆଦିକୁ ମଧ୍ୟ ପୋତି ଦିଆଯାଏ । ଶିଆଳି ଲତା ତଳେ ପ୍ରଭୁ ଶ୍ରୀକୃଷ୍ଣଙ୍କ ପଦକୁ ମୃଗକର୍ଣ୍ଣ ଭ୍ରମରେ ଜରା ଶବର ଶରାଘାତ କରିଥିଲା । ଭଗବାନ ସେହି ଶିଆଳି ଲତା ତଳେ ଅନ୍ତିମ ବିଶ୍ରାମ କରିଥିଲେ । କୋଇଲି ବୈକୁଣ୍ଠର ଶିଆଳିଲତା ତଳେ ମହାପ୍ରଭୁଙ୍କର ଗୋଲକ ବିଶ୍ରାମ ହିଁ ଦ୍ୱାପର ଯୁଗର ସ୍ମୃତିଚାରଣ କରେ ।

ମାନବ ଲୀଳା କରିବା ପାଇଁ ନିର୍ଗୁଣ ନିରାକାର ବ୍ରହ୍ମ ସଗୁଣ ସାକାର ହୋଇଛନ୍ତି । ପ୍ରଭୁ ଦେହ ଛାଡିବା ପରେ ମଣିଷ ଭଳି ଶୁଦ୍ଧିକ୍ରିୟାଠାରୁ ଆରମ୍ଭ କରି ସମସ୍ତ କାର୍ଯ୍ୟ ଦଇତାମାନେ ସଂପାଦନ କରନ୍ତି । କାରଣ ଦଇତାମାନେ କହନ୍ତି, ଆମେ ତାଙ୍କର ବଂଶଧର-ଭାଇ । ଚୈତ୍ରମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ଅର୍ଥାତ୍ ବାସନ୍ତୀ ଦୁର୍ଗାପୂଜା ଦିନ ଏହି ନବକଳେବର ପ୍ରକ୍ରିୟାର ଶୁଭାରମ୍ଭ ହୋଇ ଦାରୁ ଶ୍ରୀମନ୍ଦିରକୁ ଆସିବା ପର୍ଯ୍ୟନ୍ତ ଚାଲେ । ଏ ସମସ୍ତ କଥା ଏକ ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ । ତେଣୁ ଏଠାରେ ସେସବୁ ଆଲୋଚନା ଅନାବଶ୍ୟକ ।

---

ବର୍ଷଣା, ମନ୍ଦିର ମାର୍ଗ
ସାକ୍ଷୀଗୋପାଳ, ପୁରୀ



# ରଥ ଉପରେ ରାଜବେଶ

**ମହୀମୋହନ ତ୍ରିପାଠୀ**

ବଡ ଠାକୁର ବଳଭଦ୍ର, ମହାପ୍ରଭୁ ଜଗନ୍ନାଥ ଓ ଦେବୀ ସୁଭଦ୍ରା ବର୍ଷତମାମ ବିଭିନ୍ନ ପ୍ରକାର ବେଶରେ ବିମଣ୍ଡିତ ହୁଅନ୍ତି । ଦୈନନ୍ଦିନ ନୀତି, ବିଶେଷ ନୀତି ଓ ପର୍ବପର୍ବାଣି ନୀତିମାନଙ୍କରେ ହେଉଥିବା ବିଭିନ୍ନ ବେଶ ସାମଗ୍ରୀ ଭିତରେ ରହିଛି- ସୂତାବସ୍ତ୍ର, ପାଟବସ୍ତ୍ର, ଫୁଲ, ଫୁଲର ଅଳଙ୍କାର, ସୁନା ଅଳଙ୍କାର, ରତ୍ନ ପଥର, ସୋଲ, ଜରି, ଚନ୍ଦନ, କର୍ପୂର, ତୁଳସୀ, କସ୍ତୁରୀ ଏବଂ ଦୟଣା ପତ୍ର ଇତ୍ୟାଦି । ରତ୍ନବେଦୀରେ ବିରାଜିତ ତ୍ରିମୂର୍ତ୍ତିଙ୍କ ଶ୍ରୀଅଙ୍ଗରେ ବର୍ଷତମାମ (ଅନବସର ସମୟ ବ୍ୟତୀତ) କିଛି ନା କିଛି ସୁନା ଅଳଙ୍କାର ଲାଗି ହୋଇଥାଏ । କେତୋଟି ପର୍ବପର୍ବାଣି ଦିନମାନଙ୍କରେ ଅଧିକ ଅଳଙ୍କାର ଲାଗି କରାଯାଏ । ସେସବୁ ପର୍ବପର୍ବାଣି ହେଲା- ବାମନ ଜନ୍ମ, ରାଧାଦାମୋଦର ବେଶ, ଚାଚେରୀ ବେଶ ଇତ୍ୟାଦି । ସର୍ବାଧିକ ଓ ସମ୍ପୂର୍ଣ୍ଣ ସୁନା ଅଳଙ୍କାର ବେଶକୁ 'ରାଜବେଶ' କୁହାଯାଏ । ସୁତରାଂ 'ସବୁ ରାଜବେଶ ସୁନାବେଶ' କିନ୍ତୁ ସବୁ ସୁନାବେଶ ରାଜବେଶ ନୁହେଁ । ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁସାରେ ରାଜବେଶ ବର୍ଷକୁ ପାଞ୍ଚଥର ହୁଏ । ତାହା ହେଲା- ୧. ଦଶହରା, ୨. କାର୍ତ୍ତିକ ପୂର୍ଣ୍ଣିମା, ୩. ଅଭିଷେକ ବା ପୌଷ ପୂର୍ଣ୍ଣିମା, ୪. ଦୋଳପୂର୍ଣ୍ଣିମା ଓ ୫. ରଥ ଉପରେ ବଡ ଏକାଦଶୀ ।

ଏହି ରାଜବେଶ ବା ବଡ ସୁନାବେଶର ମଧ୍ୟ ବିଭିନ୍ନ ନାମ ଅଛି । ରଥ ଉପରେ ହେଉଥିବା ରାଜବେଶର ଅନ୍ୟନାମ 'ବଡ ତଡାଉ ବେଶ' । କାର୍ତ୍ତିକ ପୂର୍ଣ୍ଣିମାର ରାଜବେଶକୁ 'ରାଜ ରାଜେଶ୍ୱର ବେଶ' କୁହାଯାଏ । 'ତଡାଉ' ଅର୍ଥ ସୁନା । ଶ୍ରୀମନ୍ଦିରର ତଡାଉକରଣ ସେବକ ହେଉଛନ୍ତି ଭଣ୍ଡାର ବା ରତ୍ନଭଣ୍ଡାରକରଣ ସେବକ ।

**ରଥ ଉପରେ ରାଜବେଶର ତାଲିକା**

| | | |
|---|---|---|
| ଶ୍ରୀପୟର- | ୪ | (ଦେବୀଙ୍କର ନାହିଁ) |
| ଶ୍ରୀଭୁଜ- | ୪ | (ଦେବୀଙ୍କର ନାହିଁ) |
| କୀରିଟ- | ୩ | (ପ୍ରତ୍ୟେକ-୧) |
| କାନ- | ୬ | (ପ୍ରତ୍ୟେକ- ୨) |
| ବାହାଡାମାଳି- | ୨ | (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧) |
| ତାବିଜ ମାଳି- | ୧ | (ଶ୍ରୀଜଗନ୍ନାଥଙ୍କର) |
| ହରିଡାକଦମ୍ବ ମାଳି- | ୧ | (ଶ୍ରୀଜଗନ୍ନାଥଙ୍କର) |
| ବାଘନଖି ମାଳି- | ୧ | (ଶ୍ରୀଜଗନ୍ନାଥଙ୍କର) |
| କଦମ୍ବ ମାଳି- | ୪ | (ଶ୍ରୀବଳଭଦ୍ର-୨, ଶ୍ରୀଜଗନ୍ନାଥ-୧, ଦେବୀ-୧) |
| ସେବତୀ ମାଳି- | ୩ | (ପ୍ରତ୍ୟେକ ୧) |
| ହଳ ଓ ମୂଷଳ | (୧୧) | (ଶ୍ରୀବଳଭଦ୍ର) |
| ଚକ୍ର- | ୧ | (ଶ୍ରୀଜଗନ୍ନାଥ) |
| ତିଳକ- | ୨ | (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧) |
| ଆଡକାନି- | ୪ | (ଶ୍ରୀବଳଭଦ୍ର-୨, ଶ୍ରୀଜଗନ୍ନାଥ-୨) |
| ଚନ୍ଦ୍ରସୂର୍ଯ୍ୟ- | ୬ | (ପ୍ରତ୍ୟେକ ୨ଟି) |
| ଅଳକା- | ୩ | (ପ୍ରତ୍ୟେକ ୧ଟି) |
| ଓଡ଼ିଆଣୀ- | ୩ | (ପ୍ରତ୍ୟେକ ୧ଟି) |
| ଚନ୍ଦ୍ରିକା- | ୨ | (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧) |
| ତଡକୀ- | ୨ | (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧) |
| ଶଙ୍ଖ(ରୂପା)- | ୧ | (ଶ୍ରୀଜଗନ୍ନାଥ) |

(ଦ୍ରଷ୍ଟବ୍ୟ- ସୁନାବେଶ/ରାଜବେଶରେ କେବଳ ଶଙ୍ଖଟି ରୂପା)



ସବୁ ରାଜବେଶ ଶ୍ରୀମନ୍ଦିର ଭିତରେ ରତ୍ନସିଂହାସନ ଉପରେ ହେଉଥିବା ବେଳେ କେବଳ ବର୍ଷରେ ଗୋଟିଏ ଦିନ ଆଷାଢ ଶୁକ୍ଳ ଏକାଦଶୀ ତିଥିରେ ତିନିରଥ ଉପରେ ତିନି ଦିଅଁଙ୍କର ରାଜବେଶ ହୁଏ । ରଥ ଉପରେ ଦ୍ୱିପ୍ରହର ଧୂପ ଶେଷ ହେବାପରେ ଏହି ବେଶ ହୁଏ । ଯେଉଁ ବ୍ୟକ୍ତିମାନେ ଶ୍ରୀମନ୍ଦିର ଭିତରକୁ ଯାଇପାରିବାରେ କଟକଣା ରହିଛି, ସେମାନେ ଶ୍ରୀମନ୍ଦିର ବାହାରେ ଏହି ବେଶ ଦର୍ଶନର ସୁଯୋଗ ପାଇପାରୁଛନ୍ତି । ରଥ ଉପରେ ହେଉଥିବା ରାଜବେଶର ଏକ ସ୍ୱତନ୍ତ୍ରତା ରହିଛି । ଏହି ରାଜବେଶରେ ଦୁଇଟି ବିଶିଷ୍ଟ ଅଳଙ୍କାର– ରତ୍ନଚିତା ଏବଂ ରାହୁରେଖା ତିନିଦିଅଁ ପିନ୍ଧିନଥାନ୍ତି । ରଥ ଉପରେ ସେମାନେ ଯାହା ପିନ୍ଧିଥାନ୍ତି ତାହା ସୋଲଚିତା । ସୋଲଚିତା ମଝିରେ ଅଳ୍ପ ପରିମାଣର ସୁନା ଓ ରତ୍ନ ପଥର ବସାଯାଇଥାଏ । ଦେବସ୍ନାନ ପୂର୍ଣ୍ଣିମା ରାତ୍ରିରେ ସ୍ନାନମଣ୍ଡପରୁ ଦିଅଁମାନେ ଅଣସର ପିଣ୍ଡିକୁ ପ୍ରତ୍ୟାବର୍ତ୍ତନ କରିବା ପରେ ଦଇତାପତି ସେବକମାନେ ତିନିଦିଅଁଙ୍କ ଶ୍ରୀମୁଖରୁ ରତ୍ନଚିତା ଓ ସୁବର୍ଣ୍ଣ ରାହୁରେଖା ଅଳଙ୍କାର ବାହାର କରିଦିଅନ୍ତି । ରତ୍ନଚିତାମାନ ଶ୍ରାବଣ ଅମାବାସ୍ୟା ଦିନ ଓ ରାହୁରେଖାମାନ ଭାଦ୍ରବ କୃଷ୍ଣ ପଞ୍ଚମୀ ଦିନ ଦିଅଁଙ୍କୁ ଲାଗି କରାଯାଏ । ଏହିଦିନମାନଙ୍କୁ ଯଥାକ୍ରମେ 'ଚିତାଲାଗି ଅମାବାସ୍ୟା ଓ 'ରେଖା ପଞ୍ଚମୀ' କୁହାଯାଏ ।

ସୁନାବେଶ/ରାଜବେଶ କେବେଠାରୁ ପ୍ରବର୍ତ୍ତିତ ହେଲା ଏ ନେଇ ମତୈକ୍ୟର ଅଭାବ ପରିଲକ୍ଷିତ ହୁଏ । କେତେଜଣ ଗବେଷକଙ୍କ ମତରେ ଏହା ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବ (୩ୟ)ଙ୍କ ସମୟରୁ ଆର୍ଥାତ୍ ତ୍ରୟୋଦଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ମାଦଳାପାଞ୍ଜି (ସମ୍ପାଦନା ପ୍ରଫେସର ଆର୍ତ୍ତବଲ୍ଲଭ)ରେ ଉଲ୍ଲେଖ ଅଛି ଯେ ରାଜା ଅନଙ୍ଗଭୀମ ଦେବ 'ନଗର କଟକେ ଥାଇ ଶ୍ରୀପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦେବଙ୍କୁ ସମସ୍ତ ସମର୍ପି ରାଉତ ପଣେ ଥାଆନ୍ତି । ଓଡ଼ିଶା ରାଜ୍ୟ ରାଜା ଶ୍ରୀଜଗନ୍ନାଥ ମହାପ୍ରଭୁ ଏମନ୍ତ କହି ଅଭିଷେକ ନୋହିଲେ ।' ଏହି ରାଜା 'ପରମେଶ୍ୱରଙ୍କ ଅଳଙ୍କାରକୁ ସୁନା ୨ଲକ୍ଷ ୫୦ ହଜାର ମାଢ' ଦେଇଥିଲେ । ଆଉ କେତେଜଣ ଗବେଷକଙ୍କ ମତରେ ରାଜା କପିଳେନ୍ଦ୍ର ଦେବ (୧୫ଶ ଶତାବ୍ଦୀ) ଏହି ରାଜବେଶ ପ୍ରବର୍ତ୍ତନ କରିଥିଲେ । ସେ ବହୁ ରାଜ୍ୟ ଜୟକରି ଅନେକ ହାତୀ ପିଠିରେ ରତ୍ନ ଅଳଙ୍କାରମାନ ବୋହି ଆଣିଥିଲେ ।

ମହାପ୍ରଭୁ ଜଗନ୍ନାଥ ହେଉଛନ୍ତି ଦେବାଧିଦେବ ଓ ରାଜାଧିରାଜ । ତାଙ୍କର ଦୈନନ୍ଦିନ ଓ ପର୍ବପର୍ବାଣି ନୀତି କାନ୍ତିରେ ମଣିଷ ସୁଲଭ ଚଳଣି ସହିତ ରାଜକୀୟ ଠାଣି ପରିଲକ୍ଷିତ ହୁଏ । ରାଜବେଶ ରାଜକୀୟତାର ପ୍ରତୀକ । ସେ ଓଡ଼ିଶାର ସମ୍ରାଟ ଭାବରେ ବିରାଜିତ । ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରରେ କୃଷ୍ଣ–ବାସୁଦେବ ଭାବରେ ଉପାସିତ । ତାଙ୍କର ପତ୍ନୀଙ୍କ ନାମ ଲକ୍ଷ୍ମୀ, ଯଦିଓ କୃଷ୍ଣଙ୍କ ପାଟରାଣୀ ହିସାବରେ ତାଙ୍କର ନାମ ରୁକ୍ମିଣୀ ହେବା କଥା । ସୁତରାଂ ବିଷ୍ଣୁ, କୃଷ୍ଣ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ କଳ୍ପନା କରାଯାଇଛି । ଭଗବାନ ବିଷ୍ଣୁ ହେଉଛନ୍ତି ଅଳଙ୍କାର ପ୍ରିୟ । ବିଷ୍ଣୁ ବା ନାରାୟଣଙ୍କ ଧ୍ୟାନମନ୍ତ୍ରରେ ଏହାର ସୂଚନା ମିଳେ । ବିଷ୍ଣୁଙ୍କୁ ମଧ୍ୟ ପରମ ହୀରକ କୁହାଯାଏ । ବିଷ୍ଣୁ ସହସ୍ର ନାମରେ ବିଷ୍ଣୁଙ୍କୁ ରତ୍ନଗର୍ଭ, ହିରଣ୍ୟଗର୍ଭ, ହେମାଙ୍ଗ, ସୁବର୍ଣ୍ଣ ବର୍ଣ୍ଣ, ସୁବର୍ଣ୍ଣ ବିନ୍ଦୁ କୁହାଯାଇଛି । ବିଷ୍ଣୁ, କୃଷ୍ଣ ଓ ଇନ୍ଦ୍ର– ଏମାନେ ସୌରବର୍ଗର ଦେବତା । ସ୍ୱର୍ଣ୍ଣକୁ ସୂର୍ଯ୍ୟଙ୍କ ପ୍ରତୀକ ମନେ କରାଯାଏ ।

ଏମ୍–ଏ/୨, ବ୍ରିଟ୍ କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର–୧୨







# ଖିରିଖିଆ ଅଲାରନାଥ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଶ୍ରୀକ୍ଷେତ୍ର ପୁରୀଠାରୁ ପଶ୍ଚିମକୁ ୨୨କିମି. ଗଲେ ପଡ଼ିଥାଏ ବ୍ରହ୍ମଗିରି । ବ୍ରହ୍ମଗିରିରେ ଠାକୁର ଅଲାରନାଥଙ୍କ ମନ୍ଦିର । ଅଲାରନାଥଙ୍କ ଉତ୍ତର ପଶ୍ଚିମ ଦିଗରେ ଶୋଭାମୟୀ ଚିଲିକା ହ୍ରଦ ଓ ପୂର୍ବ ଦକ୍ଷିଣ ଦିଗରେ ବଙ୍ଗୋପସାଗର ଅବସ୍ଥିତ । ଆମ୍ବ, ବକୁଳ, ନାରିକେଳ ବୃକ୍ଷରେ ମନ୍ଦିରଟି ପରିବେଷ୍ଟିତ । ମନ୍ଦିରର ଉଚ୍ଚତା ୫୦ଫୁଟ । ମନ୍ଦିରର ବେଢ଼ା ଭିତରେ ନାଟମନ୍ଦିର ଓ ଜଗମୋହନ ରହିଅଛି । ମୁଖ୍ୟମନ୍ଦିର ଆଗରେ ଉଚ୍ଚ ମୁଖଶାଳା । ଦ୍ୱାରଦେଶରେ ଦୁଇସିଂହ ମନ୍ଦିରର ଶୋଭାବର୍ଦ୍ଧନ କରୁଛନ୍ତି । ମନ୍ଦିରକୁ ଲାଗି ମହାଲକ୍ଷ୍ମୀଙ୍କର ମନ୍ଦିର ରହିଛି । ଲକ୍ଷ୍ମୀଙ୍କ ପ୍ରସ୍ତର ମୂର୍ତ୍ତି ୭ଫୁଟ ଗଭୀର ମାଟିରୁ ଆବିଷ୍କୃତ ହୋଇଥିବା କୁହାଯାଏ । ଭକ୍ତମାନେ ଅଲାରନାଥଙ୍କୁ ଦର୍ଶନ କରିବା ସହ ମହାଲକ୍ଷ୍ମୀଙ୍କ ନିକଟରେ ସୁଖସମୃଦ୍ଧି କାମନା କରିଥାନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ସ୍ନାନଯାତ୍ରା ପରେ ହୋଇଥିବା ଅଣବସର ସମୟରେ ହଜାର ହଜାର ଭକ୍ତ ବ୍ରହ୍ମଗିରି ଯାଆନ୍ତି । ଜଗନ୍ନାଥଙ୍କ ଦର୍ଶନରୁ ବଞ୍ଚିତ ହୋଇଥିବାରୁ ଏହି ସମୟରେ ଅଲାରନାଥଙ୍କ ଦର୍ଶନଲାଭ କରି ନିଜର ଆଶା ପୂର୍ଣ୍ଣ କରିଥାନ୍ତି । ଅଲାରନାଥ ଠାକୁରଙ୍କ ବିଷୟରେ କେତୋଟି କିମ୍ବଦନ୍ତୀ ଶୁଣାଯାଏ ।



ଦକ୍ଷିଣରୁ ଆସିଥିଲେ ଭକ୍ତ ଅଲବିନ୍ଦାଚାର୍ଯ୍ୟ । ସେ ଶ୍ରୀକ୍ଷେତ୍ର ଆସିଥିଲେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ । ବହୁ ଆଶାକରି ସେ ଏତେ ଦୂରରୁ ଆସିଥାନ୍ତି । ହେଲେ ସେ ଦର୍ଶନ କରିବା ସମ୍ଭବ ହେଲା ନାହିଁ । ଠାକୁର ସେତେବେଳେ ଅଣସର ଘରେ ଜ୍ୱରରେ । ତାଙ୍କର ଗୁପ୍ତପୂଜା ଚାଲିଛି । ଅଲବିନ୍ଦାଚାର୍ଯ୍ୟ କଥାଟିକୁ ସହଜରେ ଗ୍ରହଣ କରିପାରିଲେ ନାହିଁ । ଠାକୁରଙ୍କୁ ଦର୍ଶନ କରିବା ପାଇଁ ମନ ତାଙ୍କର ଅଥୟ ହେଲା । ସେବକମାନଙ୍କୁ ସେ ଗୁହାରୀ କଲେ , ଅଣସର ଘର ଭିତରକୁ ଛାଡ଼ିଦେବା ପାଇଁ । ଠାକୁରଙ୍କ ଗୁପ୍ତନୀତି ଚାଲିଥିବା ବେଳେ ବାହାର ଲୋକ କାହାକୁ ଛାଡ଼ିବା ବିଧି ନାହିଁ । ସେବକମାନେ ଅଲବିନ୍ଦାଚାର୍ଯ୍ୟଙ୍କୁ ଅନୁମତି ଦେଲେ ନାହିଁ । ସେବକମାନଙ୍କ ବାରଣ ଶୁଣି ସେ ସଂପୂର୍ଣ୍ଣ ଭାଙ୍ଗି ପଡ଼ିଲେ । ଏତେ ଦୂରରୁ କଷ୍ଟ ସହି ଆସିଛନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିପାରିବେ ନାହିଁ ? ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ପ୍ରଭୁଙ୍କ ଉପରେ ଅଭିମାନ କରି ତାଙ୍କୁ ଗାଳିଦେଲେ । 'ଏଇଆ କ'ଣ ମୋ ଭାଗ୍ୟରେ ଲେଖାଅଛି ପ୍ରଭୁ ! ଏତେ କଷ୍ଟ ପରିଶ୍ରମ ମୋର ବୃଥା ହେଲା ସିନା । ଏ ଜୀବନ ରଖି କି ଲାଭ । ଯାଉଛି ସମୁଦ୍ରରେ ଝାସଦେଇ ପ୍ରାଣତ୍ୟାଗ କରିବି । ପ୍ରଭୁଙ୍କ ମହିମାରେ କଳଙ୍କ ଲାଗୁ ।' ଏକଥା କହି ସେ ଶ୍ରୀମନ୍ଦିର ତ୍ୟାଗକରି ବାହାରକୁ ଚାଲିଆସିଲେ । ଏକମୁଖା ହୋଇ ଆଗେଇ ଚାଲିଲେ ସମୁଦ୍ରତଟକୁ । ମନରେ ତାଙ୍କର ଜିଦ୍ । ପ୍ରଭୁ ଦର୍ଶନ ଦେଲେ ନାହିଁ । ଅସୁସ୍ଥ ଥିବା କହି ତାଙ୍କୁ ଫେରେଇ ଦେଲେ । ସେଥିପାଇଁ ସେ ପ୍ରାଣତ୍ୟାଗ



କରିବେ । ଅନ୍ଧାର ରାତିରେ ଅଲବିନ୍ଦାଚାର୍ଯ୍ୟ ଚାଲିଥାନ୍ତି । ବହୁ ଦୂର ଆସିବାପରେ ହଠାତ୍ ଦେଖିବାକୁ ପାଇଲେ , ତାଙ୍କୁ କିଏ ଜଣେ ପଶ୍ଚାଦ୍‌ଧାବନ କରୁଛି । ଅଳ୍ପ ସମୟ ପାଇଁ ସେ ଦଣ୍ଡାୟମାନ ହେଲେ । ଦେଖିଲେ, ତାଙ୍କ ପଛରେ ଆସୁଛନ୍ତି ଜଣେ ଅଦ୍ଭୁତ ମଣିଷ ବିରାଟକାୟ ଚେହେରା । ମର୍କଟ ପରି ମୁଖମଣ୍ଡଳ । ଅଲବିନ୍ଦାଚାର୍ଯ୍ୟ ପ୍ରଶ୍ନ କଲେ, ଆପଣ କିଏ ? ମୋ ପଛରେ ଏମିତି ଆସୁଛନ୍ତି କାହିଁକି ? ବିରାଟକାୟ ମଣିଷ ଉତ୍ତର ଦେଲେ, ମୁଁ ହେଉଛି ସ୍ୱର୍ଗଦ୍ୱାରର ରକ୍ଷକ । ମୋତେ ଶ୍ମଶାନ ମହାବୀର ରୂପେ ସମସ୍ତେ ଜାଣନ୍ତି । ପ୍ରଭୁ ଶ୍ରୀଜଗନ୍ନାଥ ମୋତେ ଆଦେଶ ପ୍ରଦାନ କରିଛନ୍ତି, ଆପଣଙ୍କୁ ଫେରେଇ ନେବା ପାଇଁ । ଏବେ ପ୍ରଭୁ ଅସୁସ୍ଥ ଅଛନ୍ତି । ପନ୍ଦରଦିନ ଗଲେ ସେ ସୁସ୍ଥ ହେବେ । ତା'ପରେ ପ୍ରଭୁଙ୍କର ନବଯୌବନ ଆପଣ ଦର୍ଶନ କରିପାରିବେ । ପ୍ରଭୁଙ୍କର ଏହି ଦର୍ଶନ ପରେ ଶ୍ରୀଗୁଣ୍ଡିଚା ଉତ୍ସବ ଅନୁଷ୍ଠିତ ହେବ । ତିନି ରଥରେ ଭଗ୍ନୀ, ଭ୍ରାତାଙ୍କ ସହ ସେ ଗୁଣ୍ଡିଚା ମନ୍ଦିର ଅଭିମୁଖେ ଯାତ୍ରା କରିବେ । ଆଉ ପନ୍ଦରଦିନ ପରେ ଆପଣ ସେହି ଯାତ୍ରା ଉତ୍ସବ ଉପଭୋଗ କରି ଆନନ୍ଦ ପାଇବେ । ଅଲାରବିନ୍ଦାଚାର୍ଯ୍ୟ ମନା କଲେ । କହିଲେ, ମୁଁ ଆଉ ପ୍ରତ୍ୟାବର୍ତ୍ତନ କରିବି ନାହିଁ ।

ପ୍ରଭୁ ଚାହିଁଥିଲେ ମୁଁ ତାଙ୍କ ଦର୍ଶନ କରି ମୋ ଚକ୍ଷୁ ପବିତ୍ର କରିଥାନ୍ତି । କିନ୍ତୁ ପ୍ରଭୁ ମୋତେ ସେହି ସୁଯୋଗ ଦେଲେ ନାହିଁ । ଘରୁ ବାହାରିବା ଦିନଠାରୁ ଅନ୍ନ ଜଳ ଛୁଇଁ ନାହିଁ । ସ୍ଥିର କରିଥିଲି ପ୍ରଭୁଙ୍କ ଦର୍ଶନ ଲାଭ ପରେ ଅନ୍ନ ଜଳ ସ୍ପର୍ଶ କରିଥାନ୍ତି । ଏବେ ନିରାଶ ହୋଇ ମୁଁ ଫେରିଯାଉଛି । ସମୁଦ୍ରରେ ଝାସଦେଇ ଜୀବନ ତ୍ୟାଗ କରିବି । ଏହାକହି ଅଲବିନ୍ଦାଚାର୍ଯ୍ୟ ଆଉ ଅପେକ୍ଷା କଲେ ନାହିଁ । ସିଧା ଚାଲିଲେ ଆଗକୁ ଆଗକୁ । ଶ୍ମଶାନ ମହାବୀର ସେହି ସ୍ଥାନରୁ ରାତିର ଅନ୍ଧକାର ମଧ୍ୟରେ କୁଆଡ଼େ ଉଭାନ୍ ହୋଇଗଲେ । ଅଲବିନ୍ଦାଚାର୍ଯ୍ୟ ଦକ୍ଷିଣରୁ ପଶ୍ଚିମକୁ ବୁଲିପଡ଼ି ଚାଲିଲେ । ଆଗକୁ ଆଗକୁ ଚାଲୁଥାନ୍ତି । ତାଙ୍କ ଚକ୍ଷୁରୁ ଧାରଧାର ଲୋତକ ନିର୍ଗତ ହେଉଥାଏ । ଏହିପରି ଚାଲୁଚାଲୁ କେତେବେଳେ ପ୍ରଭାତ ହୋଇସାରିଛି ସେ ଜାଣିପାରିଲେ ନାହିଁ । ସମୁଦ୍ର ମଧ୍ୟ ରହିସାରିଲାଣି ବହୁ ଦୂରରେ । ଆଗରେ ଜଳାଶୟଟିଏ ଦେଖି ସେ ଅଟକି ଗଲେ । ଦଣ୍ଡାୟମାନ ହୋଇ ଚକ୍ଷୁରୁ ଲୋତକ ପୋଛିଲେ । ତା'ପରେ ଚାହିଁଲେ ଜଳାଶୟକୁ । ଏହା କୂଳରେ ଗୋଟିଏ ଦୃଶ୍ୟ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ସେଠି ଠିଆ ହୋଇଛନ୍ତି ସ୍ୱୟଂ ନାରାୟଣ । ହାତରେ ତାଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମ । ଅଲବିନ୍ଦାଚାର୍ଯ୍ୟ ବିଶ୍ୱାସ କରିପାରିଲେ ନାହିଁ ନିଜ ଚକ୍ଷୁକୁ । ଏହା ସ୍ୱପ୍ନ ନୁହେଁତ ! କିଛି ସମୟ ଚାହିଁଲା ପରେ ଜାଣିପାରିଲେ, ଏହା ସ୍ୱପ୍ନ ନୁହେଁ ସତ୍ୟ । ସ୍ୱୟଂ ଭଗବାନ ଭକ୍ତର ଜୀବନ ବଞ୍ଚାଇବା ପାଇଁ କଷ୍ଟ ସହି ଏଠାକୁ ଆସିଛନ୍ତି । ଶରୀରରେ ଅସୁସ୍ଥତାର ଚିତ୍ର ସ୍ପଷ୍ଟ ହୋଇଛି ଏମିତି ଅବସ୍ଥାରେ ସେ କେବଳ ଭକ୍ତ ପାଇଁ ଆସିଛନ୍ତି ସିନା ।

ଅଲବିନ୍ଦାଚାର୍ଯ୍ୟ ଲମ୍ୱହୋଇ ଠାକୁରଙ୍କ ପାଦତଳେ ପଡ଼ିଗଲେ । କହିଲେ ମୋତେ କ୍ଷମା କରନ୍ତୁ ପ୍ରଭୁ । ଆପଣଙ୍କୁ ଗାଳି କରି ମୁଁ ପାପ କରିଛି । ଦେହ ଅସୁସ୍ଥ ଥିବା ବେଳେ ଆପଣଙ୍କୁ କଷ୍ଟଦେଇ ମୁଁ ଅପରାଧ କରିଛି । ଠାକୁରଙ୍କ ଓଠରେ ହସ ଫୁଟି ଉଠିଲା । ସେ କହିଲେ, ଉଠ ଭକ୍ତ । ତମେ ପବିତ୍ର, ନିର୍ମଳ । ତୁମର କିଛି ଅପରାଧ ହୋଇନାହିଁ । ମୁଁ କେବଳ ତୁମକୁ ସନ୍ତୁଷ୍ଟ କରିବା ପାଇଁ ଏତେଦୂର ଆସିଛି । କୁହ ତୁମର କ'ଣ ଇଚ୍ଛା ? ଅଲବିନ୍ଦାଚାର୍ଯ୍ୟ ପାଖରେ ଠାକୁରଙ୍କୁ ପାଇ ଖୁସିରେ ଫାଟି ପଡ଼ୁଥିଲେ । କରଯୋଡ଼ି କହିଲେ , 'ଆପଣ ଏହି ସ୍ଥାନରେ ସବୁଦିନ ପାଇଁ ଏମିତି ଅବସ୍ଥାରେ ରହନ୍ତୁ । ଏଣିକି ଅଣସରରେ ଅସୁସ୍ଥ ରହିଥିବା ସମୟତକ ଭକ୍ତମାନେ ଏଠାରେ ଆପଣଙ୍କୁ ଦର୍ଶନ କରି ସମାନ ଫଳପ୍ରାପ୍ତି ହେବେ । ଠାକୁର ତଥାସ୍ତୁ କହିଲା ପରେ ଭକ୍ତ ଅଲବିନ୍ଦାଚାର୍ଯ୍ୟଙ୍କର ପ୍ରାଣବାୟୁ ଉଡ଼ିଗଲା । ସେ ମୁକ୍ତିପାଇ ସ୍ୱର୍ଗାରୋହଣ କଲେ । ପ୍ରଭୁ ସେହିଦିନଠାରୁ ସେଠାରେ ପୂଜାପାଇ ଆସୁଛନ୍ତି । ଅଲବିନ୍ଦାଚାର୍ଯ୍ୟଙ୍କ ନାମାନୁସାରେ ପ୍ରଭୁଙ୍କ ନାମ ଅଲାରନାଥ ବୋଲି କେହି କେହି ମତପ୍ରଦାନ କରିଛନ୍ତି ।

ପ୍ରଭୁଙ୍କ ସଂପର୍କରେ ଆଉ ଗୋଟିଏ କିମ୍ବଦନ୍ତୀ ଶୁଣାଯାଏ । ପ୍ରାଚୀନ କାଳରେ ଏକ ଦରିଦ୍ର କମା ବ୍ରାହ୍ମଣ ପୂଜକ



ଥିଲେ । ତାଙ୍କ ନାମ ଶ୍ରୀକେତନ ପଣ୍ଡା । ସେ ଭିକ୍ଷା କରି ଜୀବିକା ନିର୍ବାହ କରନ୍ତି । ତାଙ୍କର ମଧୁସୂଦନ ନାମରେ ଜଣେ ବାରବର୍ଷର ପୁତ୍ର ଥିଲା । ପିତାଙ୍କ ଅନୁପସ୍ଥିତିରେ ପୁତ୍ର ମଧୁସୂଦନ ଠାକୁରଙ୍କ ସେବା ପୂଜା କରୁଥିଲା । ଦିନେ ସେ ଠାକୁରଙ୍କୁ ଆଣି ଖିରି ଭୋଗ ଅର୍ପଣ କଲା । କହିଲା –

'ଆସ ଅଲାର ଖାଅ ଖିରି
ବାପା ଯାଇଛି ଭିକ୍ଷା କରି
ମୋତେ ନଆସେ ପୂଜା କରି
ଆସ ଅଲାର ଖାଅ ଖିରି'

ଅବୋଧ ବାଳକ ମଧୁସୂଦନର ଶିଶୁସୁଲଭ ନିବେଦନରେ ପ୍ରଭୁ ସନ୍ତୁଷ୍ଟ ହୋଇ ଖିରିତକ ଖାଇଦେଲେ । ତାପରେ ସେ ଖାଲି ତାଟିଆ ଆଣି ଫେରିଆସିଲା ଘରକୁ । ଏହା ଦେଖି ମା' ତା'ର ପଚାରିଲେ , ଆରେ ଭୋଗ କ'ଣ କଲୁ ? ମଧୁ ଉତ୍ତର ଦେଲା, ଠାକୁର ସବୁ ଖାଇ ଦେଲେ ମା' । ଏ କଥାକୁ ବିଶ୍ୱାସ କଲେ ନାହିଁ । ତା'ର ପିତା ଶ୍ରୀକେତନଙ୍କୁ କହିଲେ । ଶ୍ରୀକେତନ କଥାର ସତ୍ୟତା ପରୀକ୍ଷା କରିବା ପାଇଁ ଦିନେ ଲୁଚି ରହିଲେ । ସତକୁସତ ପ୍ରଭୁ ଗରମ ଖିରି ଖାଇବାକୁ ଲାଗିଲେ । ଏତିକିବେଳେ ଲୁଚି ରହିଥିବା ପିତା ଶ୍ରୀକେତନ ଆସି ଦ୍ୱାର ଖୋଲି ଦେଲେ । ଗରମଖିରି ପ୍ରଭୁଙ୍କ ଶ୍ରୀଅଙ୍ଗରେ ବାଜି ଫୋଟକା ହୋଇଗଲା । ସେହି ଫୋଟକା ଚିହ୍ନ ଆଜିଯାଏଁ ଠାକୁରଙ୍କ ଦେହରେ ରହିଛି । ସେହିଦିନଠାରୁ ଖିରି ଭୋଗ ଠାକୁରଙ୍କ ଅତିପ୍ରିୟ ଜାଣି ଭକ୍ତମାନେ ଏହାକୁ ସମର୍ପଣ କରି ଆନନ୍ଦ ପାଉଛନ୍ତି ।

ଶ୍ରୀଚୈତନ୍ୟଦେବଙ୍କ ସଂପର୍କରେ ମଧ ଗୋଟିଏ କିମ୍ବଦନ୍ତୀ ରହିଛି । ତାହା ଏଠାରେ ପ୍ରଣିଧାନଯୋଗ୍ୟ । ଥରେ ଶ୍ରୀଚୈତନ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଶ୍ରୀମନ୍ଦିର ଯିବାବେଳେ ଜାଣିବାକୁ ପାଇଲେ ଯେ ପ୍ରଭୁ ଏବେ ଅଣସର ଘରେ । ତାଙ୍କର ଗୁପ୍ତ ପୂଜାନୀତି ଚାଲିଛି । ମନସ୍ତାପରେ ସେ ଶ୍ରୀମନ୍ଦିରରୁ ଚାଲି ଆସିଲେ । ପ୍ରଭୁଙ୍କ ଦର୍ଶନ ପାଇନଥିବାରୁ ତାଙ୍କ ମନରେ ଦୁଃଖ କହିଲେ ନସରେ । ଏମିତି ବିଷାଦ ଅବସ୍ଥାରେ ନିଜର ଜୀବନକୁ ହେୟ ମଣିଲେ । ସମୁଦ୍ରରେ ପ୍ରାଣ ବିସର୍ଜନ ଦେବାକୁ ସ୍ଥିର କଲେ । ସମୁଦ୍ର ତଟରେ ପାଦଦେବା ସମୟରେ ଶୂନ୍ୟବାଣୀ ହେଲା, ହେ ଚୈତନ୍ୟ ଦେବ ! ତୁମ ଭକ୍ତିର ପଟାନ୍ତର ନାହିଁ । ତୁମେ ଏଠାରୁ ପଶ୍ଚିମ ଦିଗରେ କିଛିଦୂର ଗଲେ ବ୍ରହ୍ମଗିରି ନାମକ ଏକ ସ୍ଥାନ ମିଳିବ । ସେଠାରେ ମୋର ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ ରୂପ ଦର୍ଶନ ପାଇବ । ଏହି ଶୂନ୍ୟବାଣୀ ଅନୁଯାୟୀ ଶ୍ରୀଚୈତନ୍ୟ ପଶ୍ଚିମକୁ ଯାତ୍ରାକରି ପ୍ରଭୁ ଅଲାରନାଥଙ୍କ ଦର୍ଶନ କଲେ । ସେଠାରେ ସେ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଦଣ୍ଡପ୍ରଣାମ କରିଥିଲେ । ଦଣ୍ଡପ୍ରଣାମ ପରେ ସେହି ପ୍ରସ୍ତର ଚଟାଣରେ ତାଙ୍କ ଦିବ୍ୟ ଶରୀରର ଚିହ୍ନ ଦେଖିବାକୁ ମିଳିଲା । ସର୍ବାଙ୍ଗ ଚିହ୍ନ ଥିବା ସେହି ପ୍ରସ୍ତରଟି ଏବେ ମଧ ଅଲାରନାଥଙ୍କ ମନ୍ଦିର ବେଢ଼ାରେ ସାଇତା ହୋଇ ରହିଛି । ଏହାକୁ ଦର୍ଶନ କରି ଭକ୍ତମାନେ ଆନନ୍ଦ ଲାଭ କରି ଆସୁଛନ୍ତି ।

ପ୍ରଭୁ ଶ୍ରୀଅଲାରନାଥଙ୍କୁ ନେଇ ଗୋଟିଏ ପୌରାଣିକ ମତବାଦ ରହିଛି । ସତ୍ୟଯୁଗରେ ସ୍ୱୟଂ ବ୍ରହ୍ମା ବ୍ରହ୍ମଲୋକରୁ ଏହି ସ୍ଥାନକୁ ଆସି ବିଷ୍ଣୁ ଭଗବାନଙ୍କୁ ତପସ୍ୟା କରିଥିଲେ । ବ୍ରହ୍ମାଙ୍କ ତପୋଭୂମି ହୋଇଥିବାରୁ ଏହି ସ୍ଥାନର ନାମ ବ୍ରହ୍ମଗିରି । ଦକ୍ଷିଣ ଭାରତର ତାମିଲମାନଙ୍କ ଏହା ଏକ ଆକର୍ଷଣୀୟ ପୀଠ । ସେମାନେ ଆସି ଏହି ପୀଠରେ ଭଗବାନ ବିଷ୍ଣୁଙ୍କର ପଞ୍ଚରାତ୍ର ବିଧିରେ ପୂଜା ଆରମ୍ଭ କରିଥିଲେ । ତାମିଲି ଭାଷାରେ 'ଅଲବାର' ଶବ୍ଦର ଅର୍ଥ 'ଭକ୍ତ' । ଏହି ଭକ୍ତମାନଙ୍କର ନାଥ ହେବା କାରଣରୁ ପ୍ରଭୁଙ୍କ ନାମ ଅଲବାରନାଥ ବା ଅଲାରନାଥ ହୋଇଛି ।

ନାଗାବଗିଚା, ପ୍ରଥମଗଳି
ମଧୁବନ, ପୁରୀ



# ଶ୍ରୀମନ୍ଦିରର ସ୍ଥାପତ୍ୟ ଓ ଚିତ୍ରକଳାର ଐତିହ୍ୟ

ଡକ୍ଟର ପୂର୍ଣ୍ଣଚନ୍ଦ୍ର ସାହୁ

ଉତ୍କୃଷ୍ଟ କଳା ହେତୁ ଆମ ରାଜ୍ୟର ନାମ ଉତ୍କଳ । ପୁରୀ–କୋଣାର୍କ ମନ୍ଦିର, ପ୍ରାଚୀ ନଦୀ ତଟ ତୁଳସୀପୁରର ପ୍ରାଚୀନ ବାରାହୀ ମନ୍ଦିର, ସୁନ୍ଦରଗଡ଼ ଜିଲ୍ଲାର ଓଷାକୋଠି, କେନ୍ଦୁଝର ଜିଲ୍ଲାର ସୀତାବାଞ୍ଜୀ, ଖୋର୍ଦ୍ଧା ଜିଲ୍ଲାର ଖଣ୍ଡଗିରି ଓ ଉଦୟଗିରି ପାହାଡ଼ ଗୁମ୍ଫା, ଧଉଳି ପାହାଡ଼ ପ୍ରଭୃତି ସ୍ଥାନର କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ କିଛିନା କିଛି ଐତିହ୍ୟ ରହିଛି । ବିଶେଷତଃ ଏସବୁ ଚିତ୍ରକଳା ଓ ଭାସ୍କର୍ଯ୍ୟରେ ରାମାୟଣ, ମହାଭାରତର ବିଷୟବସ୍ତୁ, ଶ୍ରୀକୃଷ୍ଣଙ୍କ ବହୁବିଧ ଲୀଳା, ରାଜା–ମହାରାଜାଙ୍କ ଦିଗ୍‌ବିଜୟ ସମର ଯାତ୍ରା, କଳିଙ୍ଗ ସାଧବମାନଙ୍କ ଦୁଃସାହସିକ ସାମୁଦ୍ରିକ ନୌବାଣିଜ୍ୟ, ତତ୍କାଳୀନ ସାମାଜିକ, ସାଂସ୍କୃତିକ, ଆଧାତ୍ମିକ, ଜୀବନର ଚିତ୍ର, ବିଭିନ୍ନ ପଶୁପକ୍ଷୀର ସ୍ଥାପତ୍ୟ ରହିଥିବାରୁ ଉତ୍ତର ପିଢ଼ିର ଦାୟାଦମାନେ ଏସବୁକୁ ଅବଲୋକନ କରି ପ୍ରାଚୀନ ଉତ୍କଳୀୟ ଶିଳ୍ପୀଙ୍କ ନିଖୁଣ କଳା ଚାତୁରୀ ଓ ଧର୍ମ ଧାରଣା ଜ୍ଞାନ ସମ୍ପର୍କରେ ଅବଗତ ହୋଇଥାଆନ୍ତି । ତତ୍ ସଙ୍ଗେ ସଙ୍ଗେ ପ୍ରାଚୀନ ଉତ୍କଳର ଗୌରବୋଜ୍ଜ୍ୱଳ ଇତିହାସ, ଉନ୍ନତ ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ ଓ ଆଧାତ୍ମିକ ଅବସ୍ଥାର ସବିଶେଷ ପରିଚୟ ପାଇପାରିଥାନ୍ତି । ଭବିଷ୍ୟତ ପିଢ଼ିର ଦାୟାଦମାନଙ୍କୁ ପୂର୍ବଜମାନଙ୍କ ସାମାଜିକ ଜୀବନ, ଧର୍ମଧାରଣା ସମ୍ପର୍କରେ ସଚେତନ କରାଇବା ପାଇଁ ମନ୍ଦିର, ପାହାଡ଼ ଗୁମ୍ଫାରେ ଅତୀତ ଐତିହ୍ୟକୁ ଭାସ୍କର୍ଯ୍ୟ, ଚିତ୍ରକଳାରେ ଉତ୍କଳର ଶିଳ୍ପୀମାନେ ଏପରି ନିଖୁଣ କରି ଆଙ୍କି ଦେଇଯାଇଛନ୍ତି ଯେ, ଯାହାକୁ ଦେଖି ଆମ ଗୌରବୋଜ୍ଜ୍ୱଳ ଐତିହ୍ୟକୁ ଆମେ ମନେପକାଇ ଥାଉ ।

ଉଦାହରଣ ସ୍ୱରୂପ ଦେଖିଲେ କୋଣାର୍କ ସୂର୍ଯ୍ୟମନ୍ଦିର ମୁଖଶାଳାର ଦକ୍ଷିଣପାର୍ଶ୍ୱ ସ୍ଥାପତ୍ୟରେ ଏକ ଶିଳାଖଣ୍ଡରେ ଖୋଦିତ ଦୁର୍ଗା, ଜଗନ୍ନାଥ ଓ ଶିବଲିଙ୍ଗଙ୍କ ସ୍ଥାପତ୍ୟ, ଜିରାଫ ଚିତ୍ର, ପୁରୀ ଶ୍ରୀମନ୍ଦିର ଭୋଗମଣ୍ଡପର ପୂର୍ବ–ଉତ୍ତର ପାର୍ଶ୍ୱ କାନ୍ଥରେ ଥିବା ଭାସମାନ ନୌକା ଚିତ୍ର ଭୋଗମଣ୍ଡପର ପୂର୍ବପଟର ଉତ୍ତର ଆଡ଼କୁ ଥିବା ଦୁଇଜଣ ଦଣ୍ଡକ ମଣ୍ଡଳୁଧାରୀ ସନ୍ନ୍ୟାସୀ ଓ ନାରୀର ଚିତ୍ର ସମ୍ପର୍କରେ ଅନେକ ଶିକ୍ଷା ମିଳିଥାଏ । ଏସବୁ ସ୍ଥାପତ୍ୟରୁ ଉତ୍କଳର ତତ୍‌କାଳୀନ ଧାର୍ମିକ ଅବସ୍ଥା, ବୈଷ୍ଣବ, ଶାକ୍ତ ଓ ଶୈବ ଧର୍ମ ସମନ୍ୱୟ ସମ୍ପର୍କରେ ଜାଣିହୁଏ । ଅନେକ ସ୍ଥାପତ୍ୟରେ ସାମାଜିକ ଶୃଙ୍ଖଳା, ସାମାଜିକ ବିକାଶରେ ନାରୀମାନଙ୍କ ସମ୍ପୃକ୍ତି, ନାରୀ ସ୍ୱାଧୀନତାକୁ ସୁନ୍ଦର ଭାବରେ ଦର୍ଶାଇ ଦିଆଯାଇଛି । ଏସବୁ ସ୍ଥାପତ୍ୟରେ ଶିଳ୍ପୀ ଉଭୟ ଭ୍ରଷ୍ଟାଚାର ଓ ଶିଷ୍ଟାଚାରକୁ ଧର୍ମମତର ପ୍ରଭାବକୁ କଳା ସ୍ଥାପତ୍ୟ ମାଧ୍ୟମରେ ଦର୍ଶାଇ ସମାଜରେ ସଚେତନତା ସୃଷ୍ଟି କରିବା ପାଇଁ ଚେଷ୍ଟା କରିଛନ୍ତି । ଭୋଗମଣ୍ଡପର ଉତ୍ତର–ପୂର୍ବ ଦିଗରେ କୋଣପଗର ତଳଜଂଘାରେ ଥିବା ସ୍ଥାପତ୍ୟରେ ମହିଳା ନାଉରିମାନଙ୍କ ଦ୍ୱାରା ଆହୁଲା ସାହାଯ୍ୟରେ ନୌକା ଚାଳିତ ହେଉଥିବା ଦୃଶ୍ୟ ପ୍ରଦର୍ଶିତ ହୋଇଅଛି । ଉକ୍ତ ଭାସ୍କର୍ଯ୍ୟରୁ ପ୍ରାଚୀନ କଳିଙ୍ଗର ମହିଳାମାନେ ନୌଚାଳନାରେ ଦକ୍ଷ ଥିଲେ, ଏହାର ପ୍ରମାଣ ମିଳେ ।

ଦକ୍ଷିଣଦ୍ୱାର ଦେଇ ଶ୍ରୀମନ୍ଦିରକୁ ପ୍ରବେଶ କଲେ ଦକ୍ଷିଣଦ୍ୱାର ଗୁମୁଟ ଭିତରର ଉତ୍ତରପାର୍ଶ୍ୱ କାନ୍ଥ ତୋରଣ ଉପରେ ଚୂନ ନିର୍ମିତ ନୀଳଚକ୍ରର ଏକ ସ୍ଥାପତ୍ୟ ଦେଖିବାକୁ ମିଳିଥାଏ । ଏହା ଶ୍ରୀମନ୍ଦିର ଚୂଡ଼ାଦେଶରେ ବିରାଜିତ ମୁଖ୍ୟ ଲାଞ୍ଛନ ନୀଳ ଚକ୍ରର ପ୍ରତୀକାତ୍ମକ ହୋଇଥିଲେ ମଧ୍ୟ ଶୈଳ୍ପିକ ବିଧାନ ଅନୁଯାୟୀ ଗଠନ ଦୃଷ୍ଟିରୁ ମୁଖ୍ୟ ନୀଳଚକ୍ରଠାରୁ ଏହା ଅନେକାଂଶରେ ଭିନ୍ନ । ଶ୍ରୀମନ୍ଦିର ଚୂଡ଼ାରେ ବିରାଜିତ ନୀଳଚକ୍ରର ପକ୍ଷ ସଂଖ୍ୟା ଆଠ



ଓ ଅର ସଂଖ୍ୟା ଆଠ। ଏହା ଅଷ୍ଟଧାତୁରେ ନିର୍ମିତ ହୋଇଥିବା ବେଳେ ଦକ୍ଷିଣ ଗୁମୁଟ ଭିତରେ ଥିବା ଚୂନ ନିର୍ମିତ ନୀଳଚକ୍ର ସ୍ଥାପତ୍ୟର ଅର ସଂଖ୍ୟା ଆଠ ଥିବାବେଳେ ପକ୍ଷ ସଂଖ୍ୟା ଦଶ। ମୁଖ୍ୟ ନୀଳଚକ୍ରର ମଧ୍ୟାଂଶରେ ନେମି ଥିବାବେଳେ ଗୁମଟ ଭିତର ନୀଳଚକ୍ରରେ ନେମି ସ୍ଥାନରେ ଉଗ୍ର ମହାବୀର ରହିଛନ୍ତି। ଅର, ପକ୍ଷ, ଆକର, ଓଜନ ଓ ଗଠନ ଶୈଳୀ ଦୃଷ୍ଟିରୁ ଉଭୟ ନୀଳଚକ୍ର ଉଭୟଙ୍କଠାରୁ ଭିନ୍ନ। ଏହି ଚୂନ ନିର୍ମିତ ନୀଳଚକ୍ର ସ୍ଥାପନ ସମ୍ବନ୍ଧରେ କୌଣସି ପ୍ରମାଣିକ ତଥ୍ୟ ଲେଖକଙ୍କ ନଜରକୁ ଆସି ନଥିଲେ ମଧ୍ଯ 'ସୂତସଂହିତା'ରେ ବର୍ଣ୍ଣିତ କିମ୍ବଦନ୍ତୀକୁ ଆଧାର କରି ଏଠାରେ ଆଲୋଚନା କରାଯାଇଅଛି।

ଏହାର କାରଣ ଖୋଜିଲେ ଏତିକି କୁହାଯାଇପାରେ ଭଗବାନ ଶ୍ରୀଜଗନ୍ନାଥ ଭକ୍ତବତ୍ସଳ। ତାଙ୍କ ଦୃଷ୍ଟିରେ ଭକ୍ତ ସବୁଠାରୁ ବଡ଼। ଯେଉଁମାନେ ମିଥ୍ୟା ଜ୍ଞାନର ଅହଂକାର, ଅଭିମାନରେ ପ୍ରମତ୍ତହୋଇ ଭବଭୟ ହରଣକାରୀ ଭଗବାନଙ୍କୁ ଶ୍ରଦ୍ଧା, ଭକ୍ତି କରି ନଥାନ୍ତି, ସେମାନେ ଦେବ ଦୁର୍ଲ୍ଲଭ ପଦପ୍ରାପ୍ତି ହୋଇ ମଧ୍ୟ ସେଥିରୁ ପତିତ ହୋଇଥାନ୍ତି। ଯେଉଁମାନେ ନିଷ୍କାମ ଭାବ ବିଶ୍ୱାସ ନେଇ ସମସ୍ତ ଆଶା ପରିହାର କରି ନିଜକୁ ଭଗବାନଙ୍କର ଦାସ ଜ୍ଞାନ କରନ୍ତି, କେବଳ ଭଗବାନଙ୍କ ନାମ ଜପକରି ମଧ୍ୟ ବିନାଶ୍ରମରେ ଭବସାଗର ତରିଥାଆନ୍ତି।

**ଚାରିଚକ୍ର ହନୁମାନ ଉପାଖ୍ୟାନ**

ମହାବିଷ୍ଣୁଙ୍କର ସୁଦର୍ଶନ ଶ୍ରୀକର ଶୋଭିତ ଦିବ୍ୟାୟୁଧ। କଳିଯୁଗରେ ପରମ ବିଷ୍ଣୁ ଶ୍ରୀଜଗନ୍ନାଥ ଲୀଳା ସଂରଚନା କରିବା ପାଇଁ ମର୍ତ୍ତ୍ୟବୈକୁଣ୍ଠ ଶ୍ରୀକ୍ଷେତ୍ରରେ ହସ୍ତପଦ ବିହୀନ ହୋଇ ଆୟୁଧ ଧାରଣ ନ କରିବାରୁ ଶ୍ରୀସୁଦର୍ଶନଙ୍କ ମନରେ ଅହଙ୍କାର ଜାତ ହୋଇଥିଲା। ସେ ଭାବିଥିଲା - ମୋ ବଳରେ ପ୍ରଭୁ ବଳୀୟାନ, ମୋ ବିନା ପ୍ରଭୁ ଶକ୍ତିହୀନ। ଅନ୍ତର୍ଯ୍ୟାମୀ ଶ୍ରୀଜଗନ୍ନାଥ ନିଜ ଆୟୁଧ ସୁଦର୍ଶନର ଆତ୍ମବଡ଼ିମା ଜାଣି ଚିନ୍ତିତ ହୋଇପଡ଼ିଥିଲେ। ଗର୍ବ ଗଞ୍ଜନ ସେ। କାହାରି ଗର୍ବ ସହି ନଥାନ୍ତି। ସେବକ ସୁଦର୍ଶନର ଗର୍ବ ଅହଂକାରରୁ ସେ ସହ୍ୟ କରିପାରିଥାନ୍ତେ କିପରି ? ଆୟୁଧ ସୁଦର୍ଶନଙ୍କ ଅହଂ ଧ୍ୱଂସ କରିବା ପାଇଁ ସୁଦର୍ଶନଙ୍କୁ ତପସ୍ୱୀ ହନୁମାନଙ୍କୁ ଡ଼ାକି ଆଣିବା ପାଇଁ ପଠାଇଥିଲେ। ଅହଂକାର ପ୍ରମତ୍ତ ସୁଦର୍ଶନ ନିଜ ଅନିଚ୍ଛା ସତ୍ତ୍ୱେ ହନୁମାନଙ୍କୁ ପ୍ରଭୁଙ୍କ ଆଦେଶ ଜଣାଇ ଫେରିଆସି ଭକ୍ତ ହନୁମାନଙ୍କୁ ଶ୍ରୀମନ୍ଦିରରେ ପ୍ରବେଶ କରାଇ ନ ଦେବା ପାଇଁ ନିଜକୁ ଚାରି ଭାଗରେ ବିଭକ୍ତ କରି ଚାରିଚକ୍ର ହୋଇ କ୍ଷୀପ୍ର ଗତିରେ ଘୂର୍ଣ୍ଣାୟମାନ ହୋଇ ଶ୍ରୀମନ୍ଦିରର ଚାରିଦ୍ୱାରକୁ ଅବରୋଧ କରିଦେଲେ। ସୁଦର୍ଶନଙ୍କ ଔଦ୍ଧତ୍ୟ ଯୋଗୁଁ ଭକ୍ତ ହନୁମାନ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରି ନ ପାରି ପ୍ରଭୁ ତ୍ରୈଲୋକ୍ୟ ଚିନ୍ତାମଣି ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କଲେ। ସହସା ତପସ୍ୱୀ ହନୁମାନଙ୍କ ସ୍କନ୍ଧରୁ ଆଉ ଛଅଗୋଟି ଭୁଜ ଉଦ୍‌ଧିତ ହୋଇଥିଲା। ସେ ହେଲେ ଅଷ୍ଟଭୁଜ ହନୁମାନ। ଚାରିଭୁଜରେ ଚାରିଦ୍ୱାର ଅବରୋଧ କରି ଚାରି ଚକ୍ର ଓ ଦୁଇଭୁଜରେ ଜପାମାଳା ଧରି ପ୍ରଭୁଙ୍କ ନାମ ଜପି, ଅନ୍ୟ ଦୁଇଭୁଜକୁ ସମର୍ପଣାତ୍ମକ ଭାବରେ ଯୋଡ଼ି ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସୁଦର୍ଶନର ଔଦ୍ଧତ୍ୟ ସମ୍ବନ୍ଧରେ ଜଣାଇଲେ। ସୁଦର୍ଶନ ଭକ୍ତ ହନୁମାନଙ୍କୁ ହେୟଜ୍ଞାନ କରି ଶ୍ରୀମନ୍ଦିର ଦ୍ୱାର ଅବରୋଧ କରି ଭିତରକୁ ପ୍ରବେଶ କରାଇ ନ ଦେଇ ଅପମାନିତ କରିଥିବାରୁ ଶ୍ରୀଜଗନ୍ନାଥ ଚକ୍ରାକାର ସୁଦର୍ଶନଙ୍କୁ ସ୍ତମ୍ଭାକାର ଦାରବ ଦଣ୍ଡହୋଇ ତାଙ୍କ ବାମ ବାର୍ଶ୍ୱରେ ରହିବା ପାଇଁ ଅଭିଶାପ ଦେଇଥିଲେ। ଭକ୍ତ ହନୁମାନର ଭକ୍ତି, ସମର୍ପଣରେ ସନ୍ତୁଷ୍ଟ ହୋଇ ତାକୁ ଉତ୍ତର ଦ୍ୱାରରେ କୋଇଲି ବୈକୁଣ୍ଠ ବାହାରେ ଚାରିଚକ୍ରଧାରୀ ତପସ୍ୱୀ ହନୁମାନ ବା ଅଷ୍ଟଭୁଜ ହନୁମାନ ହୋଇ ପୂଜିତ ହେବାପାଇଁ ଆଶୀର୍ବାଦ କଲେ।

ସୁଦର୍ଶନ ନିଜର ଅକ୍ଷମଣୀୟ ଭୁଲ ବୁଝି ମହାପ୍ରଭୁଙ୍କ ଶରଣାପନ୍ନ ହୋଇ ଦଣ୍ଡର ଲାଘବ ପାଇଁ କ୍ଷମା ଭିକ୍ଷା କରିବାରୁ ଭକ୍ତ ବତ୍ସଳ ଶ୍ରୀଜଗନ୍ନାଥ ସେବକର ଅହଙ୍କାରଶୂନ୍ୟ ଆତ୍ମସମର୍ପଣରେ ପ୍ରୀତହୋଇ ତାଙ୍କୁ କଳିଯୁଗରେ ଶ୍ରୀମନ୍ଦିର ଚୂଡ଼ାରେ ବିରାଜିତ ହେବା ପାଇଁ ଅଭୟ ଦେଲେ। ଦୂରରୁ ନୀଳଚକ୍ରକୁ ଦେଖି ଭକ୍ତମାନେ ଶ୍ରୀଜଗନ୍ନାଥ ଦର୍ଶନର ସମଫଳ



ପାଇପାରିବେ ବୋଲି ବରଦାନ କଲେ । ସେହି କାଳରୁ ସୁଦର୍ଶନ ଦ୍ୱିଧା ବିଭକ୍ତହୋଇ ସ୍ତମ୍ଭାକାରହୋଇ ରତ୍ନସିଂହାସନରେ ଓ ଚକ୍ରାକାର ହୋଇ ନୀଳଚକ୍ର ନାମରେ ଶ୍ରୀମନ୍ଦିର ଚୂଡ଼ାରେ ଭକ୍ତମାନଙ୍କୁ ଅଭୀଷ୍ଟ ଫଳ ପ୍ରଦାନ କରିଆସୁଛନ୍ତି ।

ମହାପ୍ରଭୁ ଶ୍ରୀଜଗନ୍ନାଥ ନିଜେ ଗର୍ଭଗୃହ ଭିତରେ ରହି ଆୟୁଧ ସୁଦର୍ଶନଙ୍କୁ ଶ୍ରୀମନ୍ଦିର ଶୀର୍ଷଦେଶରେ ସ୍ଥାନଦେଇ ଶ୍ରୀଜଗନ୍ନାଥ ସଂସ୍କୃତିର ମହାନତା ଓ ସ୍ୱାତନ୍ତ୍ର୍ୟକୁ ପ୍ରତିପାଦନ କରିଛନ୍ତି ।

**ମହାଲକ୍ଷ୍ମୀ ମନ୍ଦିରର ବୌଦ୍ଧବିଜୟ ଚିତ୍ର**

ଶ୍ରୀମନ୍ଦିର ଐତିହ୍ୟର ଅନ୍ୟଏକ ପ୍ରାମାଣିକ ତଥ୍ୟ ହେଉଛି ମହାଲକ୍ଷ୍ମୀ ମନ୍ଦିରର ବୌଦ୍ଧବିଜୟ ଚିତ୍ର । ଏ ଚିତ୍ରଟି ମହାଲକ୍ଷ୍ମୀ ମନ୍ଦିର ଜଗମୋହନର ଉତ୍ତରପାର୍ଶ୍ୱ କାନ୍ଥ (ନବଗ୍ରହ ମନ୍ଦିର ପଟ)ରେ କାନ୍ଥରେ ରାମାନୁଜ ସ୍ୱାମୀଙ୍କ ଚିତ୍ରର ଉପର ଭାଗରେ ଅଙ୍କିତ ହୋଇଅଛି । ଲୋକକଥାରେ ଶୁଣିବାକୁ ମିଳେ- ଶ୍ରୀଜଗନ୍ନାଥ ମନ୍ଦିରର ଚାବିକାଠି ମହାଲକ୍ଷ୍ମୀଙ୍କ ମନ୍ଦିରରେ । ଅର୍ଥାତ୍-ଶ୍ରୀଜଗନ୍ନାଥଙ୍କ ଐତିହ୍ୟ ସମ୍ପର୍କରେ ଅନେକ ତଥ୍ୟ ଶ୍ରୀମହାଲକ୍ଷ୍ମୀ ମନ୍ଦିରର ଜଗମୋହନରେ ଚିତ୍ରିତ ହୋଇ ରହିଛି ।

ଐତିହାସିକମାନଙ୍କ ମତରେ ୭୩୬ଖ୍ରୀଷ୍ଟାବ୍ଦରୁ ଓଡ଼ିଶାରେ ଭୌମକର ବଂଶ ରାଜୁତିଠାରୁ ବୌଦ୍ଧଧର୍ମର ପ୍ରଭାବ ଶ୍ରୀମନ୍ଦିରରେ ସମାଧିକ ପଡ଼ିଥିଲା । ଭୌମକର ବଂଶୀୟ ରାଣୀ ଦ୍ୱିତୀୟ ତ୍ରିଭୁବନ ମହାଦେବୀଙ୍କ ପର୍ଯ୍ୟନ୍ତ ଅର୍ଥାତ୍ ୮୯୦ ଖ୍ରୀଷ୍ଟାବ୍ଦରୁ ୮୯୬ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବୌଦ୍ଧ ବଜ୍ରଯାନର ପ୍ରଭାବ ଶ୍ରୀକ୍ଷେତ୍ରରେ ବ୍ୟାପକ ଥିଲା । ସୂର୍ଯ୍ୟବଂଶୀ ମହାରାଜା ପ୍ରତାପରୁଦ୍ରଦେବଙ୍କ ପର୍ଯ୍ୟନ୍ତ ବୌଦ୍ଧ ଧର୍ମର ପ୍ରଭାବ କିଛି ପରିମାଣରେ ରହିଥିଲା । ଈଶ୍ୱର ଦାସଙ୍କ ୧୭ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଲିଖିତ 'ଚୈତନ୍ୟ ଭାଗବତ'ରେ ବର୍ଣ୍ଣିତ ଅଛି ଯେ, ରାଣୀ ପଦ୍ମାବତୀ ମନ୍ଦିରରେ ଦେବଦର୍ଶନ ବେଳେ ବୀରସିଂହ ବୋଲି ଜଣେ ବୌଦ୍ଧସନ୍ନ୍ୟାସୀଙ୍କ ଉପଦେଶରେ ମୁଗ୍ଧାହୋଇ ତାଙ୍କଠୁଁ ଦୀକ୍ଷା ଗ୍ରହଣ କରିଥିଲେ । ବ୍ରାହ୍ମଣମାନେ ଏଥିରେ ଉଦ୍ବ୍ୟକ୍ତ ହୋଇ ରାଜାଙ୍କୁ ଖବର ଦେଇଥିଲେ । ରାଜା ଓ ରାଣୀଙ୍କ ମଧ୍ୟରେ ଖୁବ୍ ତର୍କ ବିତର୍କ ହେଲା । ରାଣୀ ବୌଦ୍ଧଧର୍ମ ମହିମା ବର୍ଣ୍ଣନା କଲେ । ରାଜା ବ୍ରାହ୍ମଣ୍ୟ ଧର୍ମର ମହିମା ବର୍ଣ୍ଣନା କଲେ । ବୌଦ୍ଧ-ବ୍ରାହ୍ମଣଙ୍କ ଶ୍ରେଷ୍ଠତା ପରୀକ୍ଷା କରିବା ପାଇଁ ବ୍ୟବସ୍ଥା କରାହେଲା । ଗୋଟିଏ ମାଟି କଳସରେ ଗୁପ୍ତରେ ସର୍ପ ରଖା ଯାଇ ଉଭୟଙ୍କୁ ପଚାର ଗଲା । ବ୍ରାହ୍ମଣମାନେ କାଳନ୍ତକ ମନ୍ତ୍ର ପ୍ରୟୋଗ କରି କଳସ ମଧ୍ୟସ୍ଥ ସର୍ପକୁ ପାଉଁଶ କରିଦେବାରୁ ବୌଦ୍ଧମାନେ କଳସରେ ସାପ ଥିବାର ସତ୍ୟ କହିଥିଲେ ମଧ୍ୟ ଷଡ଼ଯନ୍ତ୍ରକାରୀଙ୍କ ଷଡ଼ଯନ୍ତ୍ରରେ ପରୀକ୍ଷାରେ ବିଫଳ ହୋଇଥିଲେ । ଶେଷରେ ବୌଦ୍ଧମାନେ ଅତ୍ୟାଚାରୀତ ହୋଇ ଶ୍ରୀକ୍ଷେତ୍ର ଛାଡ଼ି ଅରଣ୍ୟ ପାର୍ବତ୍ୟାଞ୍ଚଳକୁ ଚାଲିଯାଇଥିଲେ । ଏହାର ପ୍ରାମାଣିକ ଚିତ୍ର ମହାଲକ୍ଷ୍ମୀଙ୍କ ମନ୍ଦିର ଜଗମୋହନର ଉତ୍ତରପାର୍ଶ୍ୱ କାନ୍ଥରେ ଚିତ୍ରିତ ହୋଇ ରହିଥିବା ଦେଖିବାକୁ ମିଳେ ।

କଳା, ସଂସ୍କୃତିର ସହର ପୁରୀ । ଏଠାରେ ଅବସ୍ଥିତ ବୈଷ୍ଣବ ଧର୍ମର ମୁଖ୍ୟ ପୀଠ ଶ୍ରୀଜଗନ୍ନାଥ ମନ୍ଦିର ବିଶ୍ୱର ବୃହତ୍ତମ ଶ୍ରୀଜଗନ୍ନାଥ ମନ୍ଦିର । ଏ ମନ୍ଦିରରେ ବିରାଜିତ ମହାବିଷ୍ଣୁ ଶ୍ରୀଜଗନ୍ନାଥଙ୍କ ଅଲୌକିକ ମହିମା ଯେପରି ବିଶ୍ୱ ବିଖ୍ୟାତ ତାଙ୍କ ମନ୍ଦିରର କଳା ଭାସ୍କର୍ଯ୍ୟ ମଧ୍ୟ ସେପରି ଉତ୍କୃଷ୍ଟ । ଏହାର ଗର୍ଭଗୃହ, ଜଗମୋହନ ଅଭ୍ୟନ୍ତର, ଭୋଗମଣ୍ଡପ ଏପରିକି ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ମହାଲକ୍ଷ୍ମୀଙ୍କ ଜଗମୋହନ, ବିମଳା ମନ୍ଦିର, ଦକ୍ଷିଣଦ୍ୱାର ଗୁମୁଟର କଳା ସ୍ଥାପତ୍ୟରେ ଶ୍ରୀମନ୍ଦିର ଐତିହ୍ୟର ବହୁ ଘଟଣାବଳୀ ଦର୍ଶାଯାଇଅଛି । ସାଧାରଣ ଦର୍ଶନାର୍ଥୀ ଭକ୍ତମାନେ ଏସବୁ ସ୍ଥାପତ୍ୟ ସମ୍ପର୍କରେ ଅଜ୍ଞ ଥିବାରୁ ଏସବୁ ସ୍ଥାପତ୍ୟ ଶ୍ରୀମନ୍ଦିର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ରଖା ଯାଇଅଛି ବୋଲି ବୁଝିଥାନ୍ତି । ସେସବୁ ସ୍ଥାପତ୍ୟ ଓ ଚିତ୍ର କଳାରେ ରହିଥିବା ଶ୍ରୀମନ୍ଦିର ଐତିହ୍ୟକୁ ସମସ୍ତେ ଜାଣିବା ପାଇଁ ବ୍ୟବସ୍ଥା କରାଯାଇପାରିଲେ ସହଜରେ ଶ୍ରୀଜଗନ୍ନାଥଙ୍କ ଐତିହ୍ୟର ବ୍ୟାପକ ପ୍ରଚାର ଓ ପ୍ରସାର ହୋଇପାରନ୍ତା ।

ଦରଜୀପୋଖରୀ ଛକ
ଭି.ଆଇ.ପି. ରୋଡ଼,ପୋଲିସ ଲାଇନ୍, ପୁରୀ-୧



# ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ : ଅତିବଡୀ ଜଗନ୍ନାଥ ଦାସ

**ଶ୍ରୀନିବାସ ଆଚାର୍ଯ୍ୟ**

ପୁଣ୍ୟ ଧାମ ଶ୍ରୀକ୍ଷେତ୍ରସ୍ଥିତ ବଡଦେଉଳର ରତ୍ନସିଂହାସନରେ ବିରାଜିତ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ କେବଳ ଓଡିଶାର ଆରାଧ୍ୟ ଦେବତା ନୁହଁନ୍ତି, ସେ ଅଟନ୍ତି ଅନନ୍ତକୋଟି ବିଶ୍ୱ ବ୍ରହ୍ମାଣ୍ଡର ପ୍ରାଣକର୍ତ୍ତା, ତ୍ରାଣକର୍ତ୍ତା ଓ ଭାଗ୍ୟବିଧାତା । ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ ରୂପ, ଆକାର ଓ ନାମରେ ନାମିତ ହୋଇ ଧରାପୃଷ୍ଠରେ ସ୍ୱୟଂ ଭଗବାନ ମାନବ ରୂପରେ ଅବତରଣ କରି ସନ୍ଥ ପାଳନ ଓ ଦୁଷ୍ଟ ଦଳନ କରିବାର କିମ୍ବଦନ୍ତୀମାନ ଧର୍ମଶାସ୍ତ୍ର ଓ ପୁରାଣଗୁଡିକରେ ଲିପିବଦ୍ଧ । ଇଚ୍ଛାମୟ, ଲୀଳାମୟ ତଥା ଭାବମୟ ହଟିଆ ଠାକୁର ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ ଓ ଏହାର ସଂସ୍କୃତି, ପରମ୍ପରା, ପୂଜାପଦ୍ଧତି ଇତ୍ୟାଦି ଅତୀବ ମହାନ୍ । ଏ ବାବଦରେ ବିଭିନ୍ନ ସଂପ୍ରଦାୟର ସାଧୁ, ସନ୍ଥ, ମୁନି, ଋଷି, କବି, ଲେଖକ ଓ ଗବେଷକମାନେ ଲେଖିବାକୁ ଚେଷ୍ଟାକରି ସଂପୂର୍ଣ୍ଣ ରୂପେ ଲେଖିପାରିନାହାନ୍ତି, କହିପାରିନାହାନ୍ତି କି ଜାଣିପାରିନାହାନ୍ତି । ତେଣୁ ସେ ହେଉଛନ୍ତି ଅସୀମ, ଅସରନ୍ତି, ଅନନ୍ତ, ଅଦୃଶ୍ୟ ତଥା ନିରାକାର । ଏହି ମାନବ ସମାଜ ତାଙ୍କର ଆଦିଅନ୍ତ ଜାଣିବା ଅତ୍ୟନ୍ତ କଷ୍ଟସାଧ୍ୟ । ପ୍ରକାଶ ଥାଉକି ବିଭିନ୍ନ ଯୁଗ ଓ ସମୟରେ ଜନ୍ମଲାଭ କରିଥିବା ପରମ ଭକ୍ତମାନେ ଯଥା ଭକ୍ତପ୍ରବର ଦୀନବନ୍ଧୁ ଦାସ, ଭୀମ ଭୋଇ, ସାଲବେଗ, ଶ୍ରେଷ୍ଠ ଭକ୍ତ ରଘୁ ଅରକ୍ଷିତ, ଭକ୍ତ ଶିରୋମଣୀ ରାମ ଦାସ, ରାମାନୁଜ, ଶ୍ରୀଚୈତନ୍ୟ, ଭକ୍ତ ବିଶ୍ୱମ୍ଭର ଦାସ, କବିରାଜ ଜୟଦେବ, ଦାସିଆ ବାଉରି, ଅତିବଡୀ ଜଗନ୍ନାଥ ଦାସ ଇତ୍ୟାଦି ତାଙ୍କ ସଂପର୍କରେ ଜାଣି ଶୁଣି ବୁଝି ଲେଖି ମଧ୍ୟ ଲେଖିବାର ଶେଷ ସୋପାନରେ ଉପନୀତ ହୋଇପାରି ନାହାନ୍ତି । କାରଣ ଏହିସବୁ ବିଭୁକୃପାଧାରୀ ମହାପୁରୁଷମାନଙ୍କର ଲେଖିବା, ଜାଣିବା, ଆହରଣ କରିବାର ଗୁଣ ସମୁଦ୍ରକୁ ଶଙ୍ଖେ ସଦୃଶ ମାତ୍ର ।



ପଞ୍ଚଦଶ ଶତକର ଶେଷଭାଗ ଓ ଷୋଡଶ ଶତକର ପ୍ରଥମାର୍ଦ୍ଧରେ ସମଗ୍ର ଭାରତରେ ଯେଉଁ ଭକ୍ତି ଆନ୍ଦୋଳନ ମୁଣ୍ଡ ଟେକିଥିଲା, ସେଥିରେ ଓଡିଶା ମାଟିର ପୃଷ୍ଠପୋଷକତା କରିଥିଲେ ପଞ୍ଚସିଦ୍ଧି ସାଧକଗଣ – ବଳରାମ ଦାସ, ଯଶୋବନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ, ଜଗନ୍ନାଥ ଦାସ ଓ ଶିଶୁ ଅନନ୍ତ ଦାସ । ଯାହାଙ୍କୁ ସାହିତ୍ୟ ଓ ଆଧ୍ୟାତ୍ମିକ ଜଗତର ପଞ୍ଚସଖା ଯୁଗ ବୋଲି କୁହାଯାଏ । ସେହି ପଞ୍ଚସଖାଙ୍କର ଜଗତରନାଥ ଶ୍ରୀଜଗନ୍ନାଥ ଥିଲେ ଇଷ୍ଟ ଦେବତା, ନୀଳାଚଳ ଧାମ ଥିଲା ନିତ୍ୟ ଗୋଲକ ଧାମ ଓ କୈବଲ୍ୟ କଣିକା ଥିଲା ମୁକ୍ତିର ପସରା । ଅଶେଷ ଆଶୀର୍ବାଦର ଭଣ୍ଡାର ତଥା ଦୟାସାଗର ଶ୍ରୀଜଗନ୍ନାଥଙ୍କୁ ଆଧାର କରି ପଞ୍ଚସଖାମାନେ ରଚନା କରିଛନ୍ତି ଭକ୍ତି ରସାତ୍ମକ ଅଶେଷ ପୁରାଣ, ସଂହିତା,



କାବ୍ୟକବିତା ଚଉତିଶା ଓ ମାଳିକା ଇତ୍ୟାଦି । ଏହି ସମୟରେ ବହୁଳ ଭାବରେ ବୈଷ୍ଣବ ଧର୍ମର ପ୍ରସାର ଓ ପ୍ରଚାର ହୋଇ ସୃଷ୍ଟି କରିଥିଲା ଉତ୍କଳୀୟ ସମାଜରେ ଜ୍ଞାନମିଶ୍ରିତ ପ୍ରେମ ନଦୀର ବନ୍ୟା । ଆଉ ମଧ୍ୟ ବିଭିନ୍ନ ଧର୍ମ ସଂପ୍ରଦାୟର ପରମ ଭକ୍ତମାନଙ୍କ ଦ୍ୱାରା ଲିଖିତ ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତିର ସମସ୍ତ ଭାବମୟ ଓ ଭକ୍ତିମୟ ରସ ସଂପୂର୍ଣ୍ଣ ଭାବେ ମିଶି ସୃଷ୍ଟି କରିଅଛି ଏକ ମହାନ୍ ଧର୍ମ ନଦୀ । ତନ୍ମଧ୍ୟରୁ ଅତିବଡୀ ଜଗନ୍ନାଥଙ୍କ ଦ୍ୱାରା ଲିଖିତ ଏହି ଧର୍ମ ନଦୀକୁ ଜୀବନ୍ତ ରୂପଦେବାର ଅବଦାନ ସ୍ୱତନ୍ତ୍ର ଅଟେ । ଏହି ଭକ୍ତମାନଙ୍କ ମଧରେ ଜଗନ୍ନାଥ ଦାସ ଥିଲେ ଅନନ୍ୟ ପ୍ରତିଭାର ଅଧିକାରୀ ।

ଭଗବାନ ଓ ଭକ୍ତଙ୍କ ମଧରେ ଥିବା ସଂପର୍କ ଅଭିନ୍ନ । ପରସ୍ପର ଅବିଚ୍ଛେଦ୍ୟ ଅଙ୍ଗ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ଅନ୍ତର୍ନିହିତ ଗୁଣକୁ ଦେଖିବା, ଜାଣିବା, ସ୍ପର୍ଶ କରିବା ଓ ଉପଭୋଗ କରିବା ଦୂରୁହ ବ୍ୟାପାର । କାରଣ ଏହି ଅନ୍ତର୍ନିହିତ ଭାବ ଅସୀମ, ଅମା, ଅନନ୍ତ, ନିରାକାର ଓ ଅବର୍ଣ୍ଣନୀୟ । ତେଣୁ ମାନବ ଭଗବାନଙ୍କର ପରମ ଭକ୍ତ ହେବା ତଥା ସାନିଧ୍ୟ ଲାଭ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । କଥାରେ ଅଛି 'ଭକ୍ତି ମୂଳେ ଭଗବାନ' । ଯାହାକି ଅତିବଡୀ ଜଗନ୍ନାଥ ଓଡିଆ ଭାଗବତରେ ଲେଖିଛନ୍ତି –

'ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟେତ୍ ଗିରିଂ,
ଯତ୍ କୃପା ତମ ହିଁ ବନ୍ଦେ, ପରମାନନ୍ଦ ମାଧବଂ ।'

ଯିଏ ଏକାଗ୍ରତାର ସହିତ ଅନ୍ତଃକରଣରେ ନିଜକୁ ଭଗବାନଙ୍କ ପାଖରେ ସମର୍ପିତ କରିଦିଏ, ସେହି ହିଁ ପ୍ରକୃତରେ ଭକ୍ତ ପଦବାଚ୍ୟ । ନିଷ୍ଠା, ତ୍ୟାଗ ଓ ସାଧନା ହିଁ ଭକ୍ତ ହେବାର ମୂଳ ଉତ୍ସ । ଯିଏ ଏହି ସବୁ ଗୁଣକୁ ଆୟତ୍ତ କରିଥାଏ, ସେ ଭଗବାନଙ୍କର ପ୍ରକୃତ ଭକ୍ତ ରୂପେ ବିବେଚିତ ହୋଇଥାଏ । ଏତଦ୍‌ବ୍ୟତୀତ ପ୍ରକୃତ ଭକ୍ତ ହେବାକୁ ହେଲେ, ଉତ୍ସର୍ଗୀକୃତ ଭାବେ ଲୋଭ, ମାୟା, କାମ, କ୍ରୋଧ, ଅଶାନ୍ତି ଆଦିଗୁଣକୁ ଜୀବନର ସକଳ କ୍ଷେତ୍ରରେ ଦୂରେଇ ରହିଥାଏ । ବାସ୍ତବିକ୍ ଅତିବଡୀ ଜଗନ୍ନାଥ ଦାସ ତାଙ୍କର ବଳିଷ୍ଠ ତ୍ୟାଗ, ସାଧନା ଓ ନିଷ୍ଠା ବଳରେ ସାଂସାରିକ ସମସ୍ତ ଦୁର୍ଗୁଣରୁ ଦୂରେଇ ରହିବା ସଂଗେ ସଂଗେ ନିଜର ଅନ୍ତଃକରଣକୁ ସଂପୂର୍ଣ୍ଣ ରୂପେ ଶ୍ରୀଜଗନ୍ନାଥଙ୍କ ପାଖରେ ସମର୍ପି ଥିବାରୁ ଜଣେ ପରମଭକ୍ତ ରୂପେ ପ୍ରସିଦ୍ଧି ଲାଭ କରିପାରିଥିଲେ ।

ଏହି ମହିମାଧାରୀ ଭକ୍ତ କବି ଜଗନ୍ନାଥ ଦାସଙ୍କର ଜନ୍ମିତ ଗ୍ରାମ ଶ୍ରୀକ୍ଷେତ୍ରଠାରୁ ପ୍ରାୟ୧୫ କି.ମି ଦୂରରେ ଥିବା ବ୍ରହ୍ମଗିରି ବ୍ଲକ ଅନ୍ତର୍ଗତ କପିଳେଶ୍ୱରପୁର ଶାସନ । ୧୪୮୭ଖ୍ରୀଷ୍ଟାବ୍ଦ ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ) ତିଥି ବୁଧବାର ଅନୁରାଧା ନକ୍ଷତ୍ର ବୃଶ୍ଚିକ ଚନ୍ଦ୍ର ମଧ୍ୟାହ୍ନ ଶୁଭ ମାହେନ୍ଦ୍ର ମୁହୂର୍ତ୍ତରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ପୁରାଣ ପଣ୍ଡା ଭଗବାନ ଦାଶ ଓ ମାତାଙ୍କ ନାମ ଥିଲା ପଦ୍ମାବତୀ ଦେବୀ । ସେ ଥିଲେ ନୈଷ୍ଠିକ ବ୍ରାହ୍ମଣ । ଜଗନ୍ନାଥ ଦାସଙ୍କର ପୁରାଣ ପାଠ ପଢିବା ଓ ପୂଜାପାଠ ଆଦି କରିବା ଥିଲା ପୈତୃକ ଓ କୌଳିକ ବୃତ୍ତି । ସେ ଥିଲେ ସରଳ, ଅମାୟିକ, ଚତୁର, ଧର୍ମପରାୟଣ ଓ ସାଧୁ ପ୍ରକୃତିର ଲୋକ । ସେ ଅଞ୍ଚଳରେ ଜଣେ ସୁଜ୍ଞାନୀ ପଣ୍ଡିତ ରୂପେ ସେ ସୁପରିଚିତ ଥିଲେ । ଯେକୌଣସି ଧାର୍ମିକ କାର୍ଯ୍ୟରେ ଲୋକମାନେ ତାଙ୍କର ପରାମର୍ଶ ନେବା ସଂଗେ ସଂଗେ ସମ୍ମାନ ପ୍ରଦର୍ଶନ କରୁଥିଲେ । ଭଗବାନଙ୍କ ପ୍ରତି ତାଙ୍କର ଥିଲା ଗଭୀର ବିଶ୍ୱାସ ଓ ଭକ୍ତି । ସଦା ସର୍ବଦା ସେ ନିଷ୍ଠାର ସହ ଭଗବାନଙ୍କ ଜଣାଣ, ସ୍ତୁତି ଓ ଆରାଧନା କରୁଥିଲେ । ପ୍ରତିଦିନ ସେ ଧର୍ମ ସମ୍ବନ୍ଧୀୟ ପୁରାଣ ଶାସ୍ତ୍ର ପଢି ଶତ ଶତ ଭକ୍ତଙ୍କୁ ଜଣାଉଥିଲେ । ଏହା ସହିତ ସେ ପ୍ରତିଦିନ ସାରଳା ଦାସଙ୍କ ଦ୍ୱାରା ଲିଖିତ ସଂସ୍କୃତ ଭାଗବତ ତାଙ୍କ ଗ୍ରାମର ଏକ ଭାଗବତ ଟୁଙ୍ଗୀରେ ବୋଲି ଓ ଏହାର ଭାବାର୍ଥକୁ ସରଳ ଓଡିଆ ଭାଷାରେ ଶ୍ରୋତାମାନଙ୍କୁ ବୁଝାଉଥିଲେ । ଫଳରେ ସେ ଭକ୍ତି ଓ ସାହିତ୍ୟ ଗୁଣର ଅଧିକାରୀ ହୋଇପାରିଥିଲେ । ତେଣୁ ସେ ହୃଦୟଙ୍ଗମ କରିପାରିଥିଲେ ଯେ, ସଂସାରରେ ଅନୀତି, ଅନ୍ୟାୟ, ମିଛ, ଲୋଭ, ମାୟା, କାମ, କ୍ରୋଧ ଓ ଆସକ୍ତି ଆଦି ପରିପୂର୍ଣ୍ଣ ହୋଇଅଛି । ଏହିସବୁ ଦୁର୍ଗୁଣରୁ ମୁକ୍ତି ପାଇବା ପାଇଁ ଧର୍ମ ତଥା



ସତ୍‌ପଥ ହେଉଛି ଅମୋଘ ଅସ୍ତ୍ର । ତେଣୁ ସେ ସଦାସର୍ବଦା ଭକ୍ତି ଭାବନାରେ ନିମଗ୍ନ ରହୁଥିଲେ । ସେ ଧ୍ୟାନ, ତପ, ଜପ, ଆଦି, ମାଧ୍ୟମରେ ଭଗବାନଙ୍କୁ ଜଣାନ୍ତି, ହେ ପ୍ରଭୁ! ମତେ ଏହି ମିଥ୍ୟା ସଂସାରରୁ ଉଦ୍ଧାର କରି ତୁମରି ପାଦତଳେ ଆଶ୍ରୟ ଦିଅ । ନ ହେଲେ ମତେ ଜୀବନରୁ ମାରିଦିଅ । ଧାରାବାହିକ ଭାବେ ସେ ବୋଲୁଥିବା ଭାଗବତ କେତେଜଣ ଶ୍ରୋତା, ସଂସ୍କୃତ ଭାଷାର ଏହି ଭାଗବତକୁ ବୁଝି ପାରନ୍ତି ନାହିଁ । ଏହାଦେଖି ତାଙ୍କର ଜନ୍ମିତ ମାତା ପଦ୍ମାବତୀ ଦେବୀ ପୁତ୍ର ଜଗନ୍ନାଥଙ୍କୁ କହିଲେ, ହେ ପୁତ୍ର! ତୁମେ ସଂସ୍କୃତ ଭାଷାର ଭାଗବତକୁ ଓଡିଆ ଭାଷାରେ ଲେଖ । ଫଳରେ ମୋ ସମେତ ଶତ ଶତ ନରନାରୀ ସହଜରେ ବୁଝିପାରିବେ । ଫଳସ୍ୱରୂପ ତୁମର ନାମ ଚତୁର୍ଦିଗରେ ପ୍ରଚାର ହେବା ସଂଗେ ସଂଗେ ଧର୍ମ ଅର୍ଜନ କରି ମୁକ୍ତିଲାଭ କରିବ । ମାତାଙ୍କ ଆଜ୍ଞା ପାଳନ କରିବା ହେଉଛି ପୁତ୍ରର ପ୍ରଧାନ କର୍ତ୍ତବ୍ୟ । କାରଣ ପିତାମାତା ହେଉଛନ୍ତି ପୁତ୍ରର ପ୍ରଥମ ଭଗବାନ । ତେଣୁ ସେ ମାତାଙ୍କ ଆଜ୍ଞା ପାଳନ କରିବା ପାଇଁ ଦୃଢ ପରିକର ହୋଇଥିଲେ । ସେ ଓଡିଆ ଭାଷାରେ କିପରି ଭାଗବତ ଲେଖିବେ, ସେଥିପାଇଁ ଘରଦ୍ୱାର ତ୍ୟାଗକରି ଭାବ ବିହୋଳ ହୋଇ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ନିକଟରେ ଆଶ୍ରୟ ନେଇଥିଲେ । ସଦାସର୍ବଦା ସେ ତାଙ୍କ ଶରୀର ସହିତ ମନପ୍ରାଣ ଶ୍ରୀଜଗନ୍ନାଥଙ୍କ ନିକଟରେ ସମର୍ପଣ କରି ଦେଇଥିଲେ । ଏହିପରି ଦାସେ ସାଆନ୍ତଙ୍କ କରୁଣ ନିବେଦନକୁ ସ୍ୱୟଂ ସଂସାର କର୍ତ୍ତା ତଥା ପରମେଶ୍ୱର ଶ୍ରୀଜଗନ୍ନାଥ ସହ୍ୟ କରିପାରିଲେ ନାହିଁ ।

ଏକଦା ଜଗନ୍ନାଥ ଦାସ ରାତିରେ ଘୋର ନିଦ୍ରାରେ ଶୋଇଥିବା ବେଳେ ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ କହିଲେ, ହେ ବତ୍ସ! ଏ ସଂସାର ବାରିଧିରୁ ମୁକ୍ତି ପାଇବାକୁ ହେଲେ, ଏକମାତ୍ର ପଥ ହେଉଛି ଭଗବତ୍ ପ୍ରାପ୍ତି । ଏହାକୁ ଏକାଗ୍ରତାର ସହିତ ପାଳନ କର । ଯାହାଫଳରେ ତୁମେ ଓଡିଆରେ ଭାଗବତ ଲେଖିପାରିବ । ତୁମେ ମୁକ୍ତି ପାଇବା ସଂଗେ ସଂଗେ ଅନ୍ୟମାନଙ୍କୁ ମଧ୍ୟ ଏହି ପବିତ୍ରଧାରାରେ ଅନୁପ୍ରାଣିତ କରିପାରିବ । କବି ଲେଖିଛନ୍ତି –

‘ତୁ ନିଶ୍ଚେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀଙ୍କୁ ତରିବୁ ।।
ଶ୍ରୀ ଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀଜନେ’ ।।

ପ୍ରଭୁଙ୍କଠାରୁ ଆଜ୍ଞା ପାଇ ଭକ୍ତ ଜଗନ୍ନାଥ ଦାସ ଗଭୀର ଦୁଃଖ ଓ ଚିନ୍ତାରେ ପଡିଲେ । ଏତେବଡ ମହତ ଓ ଧାର୍ମିକ ଶାସ୍ତ୍ର ମୁଁ କିପରି ଲେଖିବି ? ଯାହାକୁ ମୁନି ଋଷିମାନେ ଲେଖିବାକୁ ସମର୍ଥ ହୋଇ ପାରିନାହାନ୍ତି । ଏହି କଥା ଭାବି ଭାବି ଜଗନ୍ନାଥ ଦାସ ଭାଙ୍ଗି ପଡିଲେ ସିନା, କିନ୍ତୁ ଲେଖିବାକୁ ସମର୍ଥ ହୋଇ ପାରିଲେ ନାହିଁ । ପୁନର୍ବାର ଭଗବାନ ସ୍ୱପ୍ନାଦେଶ ମାଧ୍ୟମରେ ଜଗନ୍ନାଥ ଦାସଙ୍କୁ କହିଲେ, ହେ ବତ୍ସ! ଭୟ ନ କରି ସାହସର ସହିତ ଭାଗବତ ଲେଖା ଆରମ୍ଭ କର । ମୁଁ ତୁମ ହୃଦୟରେ ରହି ଯାହା କହିବି ତୁମେ ତାହା ଲେଖିବ । ହଠାତ୍ କବିଙ୍କର ନିଦ ଭାଙ୍ଗିଗଲା । ଭାବ ବିହ୍ୱଳରେ କିଂକର୍ତ୍ତବ୍ୟ ବିମୂଢ ପରି କିପରି ଲେଖିବେ, କିଛି ଭାବି ପାରିଲେ ନାହିଁ । ଏପରି ଭାବିବା ସମୟରେ ତାଙ୍କ ଶରୀରରେ ଶତସିଂହର ବଳ ଜାଗ୍ରତ ହୋଇଗଲା । ତାଙ୍କ ମନଟି ଲେଖିବା ପାଇଁ ଉତଫୁଲ୍ଲ ହେବା ସଂଗେ ସଂଗେ ଶତଗୁଣର ଆଗ୍ରହ ଓ ଉତ୍ସାହ ହୃଦୟ ମନ୍ଦିରରେ ଜାଗ୍ରତ ହୋଇଥିଲା । ଅପାର କରୁଣାର ସାଗର ଶ୍ରୀଜଗନ୍ନାଥଙ୍କୁ ନିଜର ଶରୀରଟି ଅର୍ପଣ କରି ଓଡିଆ ଭାଗବତ ଲେଖା ଆରମ୍ଭ କରିଥିଲେ । ଯାହାଫଳରେ କି ସେ ଅନୁଭବ କଲେ ସତେଯେପରି ସ୍ୱୟଂ ଭଗବାନ ତାଙ୍କ କଣ୍ଠରେ ବିଜେ ହୋଇ ଡାକୁଛନ୍ତି । ଏହିପରି ଦିନ ପରେ ଦିନ ଅଧ୍ୟାୟକୁ ଅଧ୍ୟାୟ ଲେଖି ଚାଲିଥାନ୍ତି । କିନ୍ତୁ ଯେଉଁଦିନ ସେ ଯାହା ଲେଖନ୍ତି, ତାହାକୁ ସୁମଧୁର ସ୍ୱରରେ ପାଠକରି ଶ୍ରୋତାମାନଙ୍କୁ ଶୁଣାଇଥାନ୍ତି । ତାହାଥିଲା ଭକ୍ତି ରସ ଓ ଭାବରେ ପରିପୂର୍ଣ୍ଣ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା, ଅପୂର୍ବ ମହିମା ଓ ରାଧାଙ୍କ ସହ ପ୍ରେମଲୀଳାଠାରୁ ଆରମ୍ଭ କରି ସମଗ୍ର ଜୀବନ ସଂଗ୍ରାମ । ଏହି ପବିତ୍ର ଧର୍ମ ସମ୍ବନ୍ଧୀୟ ରସାମୃତ କବିତାକୁ ଶୁଣିବା ପାଇଁ ତାଙ୍କ ପାଖରେ



ଶହ ଶହ ସ୍ତ୍ରୀ, ପୁରୁଷ ଭକ୍ତମାନେ ଭିଡ ଜମାଇଥାନ୍ତି । ବିଶେଷତଃ ନାରୀମାନେ ଏହା ଶୁଣି ଆତ୍ମହରା ହୋଇଯିବା ସଂଗେ ସଂଗେ ନିଜର ଘରଦ୍ୱାର ଭୁଲିଯାଆନ୍ତି । ଫଳରେ କବି ଜଗନ୍ନାଥଙ୍କର ପ୍ରାଧାନ୍ୟ ବୃଦ୍ଧି ହୋଇଥିଲା । ସେସମୟରେ ଏପରି ହୋଇଥିଲା, ଦୂରଦୂରାନ୍ତରୁ ଆସୁଥିବା ଅଗଣିତ ଭକ୍ତ ସମାଜ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଅବସରରେ ଭକ୍ତ ଜଗନ୍ନାଥଙ୍କର ଶ୍ରୀମୁଖରୁ ଏହି ଭକ୍ତିରସ ଭାଗବତ ଶୁଣି ନିଜକୁ ଧନ୍ୟ ମଣୁଥିଲେ ।

ଅଳ୍ପଦିନ ମଧ୍ୟରେ କବି ଜଗନ୍ନାଥଙ୍କର ଖ୍ୟାତି ଓ ସମ୍ମାନ ଚାରିଆଡେ ପ୍ରସାରିତ ହୋଇଗଲା। ଲୋକମାନେ ତାଙ୍କର ଭୁରିଭୁରି ପ୍ରଶଂସା ନକରି ରହିପାରିଲେ ନାହିଁ। ତେଣୁ ଏହାକୁ ସହ୍ୟ ନ କରି କେତେଜଣ ଖଳ ପ୍ରକୃତିର ପଣ୍ଡିତ ମିଛ ସତ ଲଗାଇ ତତ୍‌କାଳୀନ ମହାରାଜାଙ୍କ ନିକଟରେ କବି ଜଗନ୍ନାଥଙ୍କ ବିରୁଦ୍ଧରେ ଅଭିଯୋଗ କରିଥିଲେ । ଖଳ ପଣ୍ଡିତମାନଙ୍କର ମହାରାଜାଙ୍କୁ ଆପତ୍ତି ଥିଲା, 'ହେ ମହାରାଜ ! ବ୍ରାହ୍ମଣ ଜଗନ୍ନାଥ ଦାସ ମିଥ୍ୟାବାଦୀ, କପଟାଚାରୀ ଓ କାମାନ୍ଧ ପ୍ରକୃତିର ଲୋକ । ମୁଣ୍ଡରେ ଚିତା, କାଖରେ ପୋଥି ଓ ତୁଣ୍ଡରେ କୃଷ୍ଣଙ୍କ ନାମ ଧରି ଘର ଘର ବୁଲି ସ୍ତ୍ରୀ ଲୋକମାନଙ୍କ ଗହଣରେ ଗୀତ ବୋଲୁଛନ୍ତି । ଫଳରେ ଗୃହିଣୀମାନଙ୍କର ଘର ସଂସାର ଉଜୁଡିବା ସଂଗେ ସଂଗେ କେତେଜଣ ଯୁବତୀ ତାଙ୍କ ଗୀତ ଶୁଣି ମୃତ୍ୟୁବରଣ କଲେଣି । ଏହାଶୁଣି ମହାରାଜା ଅନୁସନ୍ଧାନ ନକରି ରାଗରେ ଜର୍ଜରିତ ହୋଇ କବି ଜଗନ୍ନାଥଙ୍କୁ ବାନ୍ଧି ଆଣିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । କ୍ଷଣଙ୍କ ମଧ୍ୟରେ ସୈନ୍ୟମାନେ କବି ଜଗନ୍ନାଥଙ୍କୁ ବାନ୍ଧି ମହାରାଜାଙ୍କ ପାଖକୁ ନେଇଆସିଲେ। ରାଜା ତାଙ୍କୁ ପଚାରିଲେ, ତୁମ ନାମରେ ଗୁରୁତର ଅଭିଯୋଗ ଅଛି । ତୁମେ ନାରୀମାନଙ୍କ ମଧରେ ରହି, ସଦାସର୍ବଦା ତାଙ୍କୁ ପଥଭ୍ରଷ୍ଟ କରାଉଛ । ରାଜାଙ୍କ ପ୍ରଶ୍ନର ଉତ୍ତରରେ ଜଗନ୍ନାଥ ଦାସ ନମ୍ର ଭାବରେ କହିଲେ, ହେ ରାଜନ୍ ! ଖଳ ଲୋକଙ୍କ କର୍ଣ୍ଣକୁହା ଓ ଚୁଗୁଲି କଥାକୁ ଶୁଣି ମୋ ପରି ଜଣେ ସାଧୁ ଲୋକକୁ ଅବିଶ୍ୱାସ କରନ୍ତୁ ନାହିଁ । ସେମାନେ ମୋ ବିରୁଦ୍ଧରେ ଆପଣଙ୍କୁ ଯାହାସବୁ କହିଛନ୍ତି, ତାହା ସଂପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ । ମୋ ପାଖରେ ସମସ୍ତ ନାରୀ ଓ ପୁରୁଷ ସମାନ । ମୁଁ ପୁରୁଷମାନଙ୍କ ପାଖରେ ପୁରୁଷ ଓ ନାରୀମାନଙ୍କ ପାଖରେ ନାରୀ । ମୋ ପାଇଁ ପ୍ରଭୁ ବଳିଆର ଭୁଜ ଶ୍ରୀଜଗନ୍ନାଥ ଶ୍ରେଷ୍ଠ । ମୁଁ କେବଳ ମୋର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ ଡରେ । କିନ୍ତୁ ଆଉ କାହାକୁ ମୁଁ ଡରେ ନାହିଁ ।'

ବ୍ରହ୍ମଚାରୀ ଜଗନ୍ନାଥଙ୍କ ଏପରି ନିର୍ଭୀକ ଓ କଠୋର କଥା ଶୁଣି ରାଜା କ୍ରୋଧ ଜର୍ଜରିତ ହୋଇ ସୈନ୍ୟମାନଙ୍କୁ ଆଦେଶ ଦେଲେ, ତାଙ୍କୁ ଜେଲ ଭିତରେ ପୂରାଇ ଦିଅ । ରାଜଦ୍ରୋହୀ ଦଣ୍ଡରେ ଦଣ୍ଡିତ ହୋଇ ଜଗନ୍ନାଥ ଦାସ ବନ୍ଦୀ ଘରେ ରହି, ଆକୁଳ କଣ୍ଠରେ ତାଙ୍କର ଆରାଧ ଦେବତାକୁ ଡାକିଲେ । ହେ ପ୍ରଭୁ ଭାବଗ୍ରାହୀ, ଆରତ ଭଂଜନ ଚକ୍ରପାଣି, ତୁମର ଭକ୍ତ ବିପଦରେ ପଡିଅଛି । ହେ ଇଚ୍ଛାମୟ, ତୁମେ ଇଚ୍ଛାକଲେ ମୁଁ ମୁକ୍ତି ହେବି । ନତୁବା ଏଠାରେ ନଖାଇ ପଡି ପଡି ମୃତ୍ୟୁବରଣ କରିବି । ମୋର ପୁରୁଷ ରୂପକୁ ପରିବର୍ତ୍ତନ କରି, ନାରୀ ରୂପରେ ପରିବର୍ତ୍ତନ କର । ଯଦି ମତେ ନାରୀ ରୂପରେ ପରିବର୍ତ୍ତନ ନ କରିବ, ତେବେ ତୁମକୁ ଭକ୍ତ ହତ୍ୟା ଦୋଷ ଲାଗିବ । ପରମ ଭକ୍ତର ଦୁଃଖରେ ପ୍ରଭୁଙ୍କ ଆସନ ଟଳମଳ ହେଲା । ଏହିପରି ଭକ୍ତ ତା'ର ଦୁଃଖ ପ୍ରଭୁଙ୍କୁ ଜଣାଇବା ଅବସରରେ ନିଦ୍ରାମଗ୍ନ ହୋଇପଡିଥିଲେ । ଅର୍ଦ୍ଧରାତ୍ରିରେ ପ୍ରଭୁ ବନ୍ଦୀଶାଳାରେ ପ୍ରବେଶ କରି ଭକ୍ତ ଜଗନ୍ନାଥଙ୍କର ତନୁକୁ ନାରୀ ରୂପରେ ପରିଣତ କରାଇଦେଲେ । ନାରୀ ହିଁ ସଂସାରର ଆଧାର ଓ ସୃଷ୍ଟିର ପ୍ରାଣକେନ୍ଦ୍ର ଓ ମୁକ୍ତିର ଦାତ୍ରୀ । ସୃଷ୍ଟି ଓ ପ୍ରଳୟର ମୂଳ ଉତ୍ସ । ଅହଲ୍ୟା ପାଷାଣ ହୋଇଥିଲେ । ଭଗବାନ ରାମଚନ୍ଦ୍ରଙ୍କ ଚରଣ ସ୍ପର୍ଶରେ ମୁକ୍ତି ପାଇଥିଲେ । ସେହିପରି କୁବ୍‌ଜା ଶ୍ରୀକୃଷ୍ଣଙ୍କ ହାତର ସ୍ପର୍ଶରେ ମୁକ୍ତି ପାଇଥିଲେ । ଏହି ନାରୀ ଗଙ୍ଗା ରୂପରେ ଧରାପୃଷ୍ଠରେ ବହି ଅଶେଷ ପ୍ରାଣୀଙ୍କ ପାପଭାର ବିନାଶ କରୁଅଛି ।

ପ୍ରଭାତ ହେବାରୁ ଜେଲର ଦ୍ୱାରପାଳ କବାଟ ଖୋଲି ଦେଖନ୍ତେ, ଭକ୍ତ ଜଗନ୍ନାଥଙ୍କୁ ନ ଦେଖି ତାଙ୍କ ବଦଳରେ ଜଣେ





ନାରୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । କ୍ଷଣକ ମଧ୍ୟରେ ଦ୍ୱାରପାଳ ଏହି ଖବରଟି ମହାରାଜାଙ୍କୁ ଜଣାଇଥିଲେ । ଦ୍ୱାରପାଳଠାରୁ ଶୁଣି ରାଜା ବିସ୍ମିତ ହେବା ସଂଗେ ସଂଗେ ବନ୍ଦୀଶାଳକୁ ଆସି ସ୍ୱଚକ୍ଷୁରେ ପ୍ରକୃତ ଘଟଣା ଦେଖି ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଏହି ସୁନ୍ଦରୀ ନାରୀକୁ ଦେଖି ରାଜାଙ୍କର ଆତ୍ମବିଶ୍ୱାସ ଜାଗ୍ରତ ହୋଇଥିଲା ଯେ, ଏହା ପ୍ରକୃତ ପ୍ରଭୁଙ୍କର ମାୟା । ନାରୀ ରୂପୀ ଭକ୍ତ ଜଗନ୍ନାଥ ଦାସ କଟାକ୍ଷ ସ୍ୱରରେ ରାଜାଙ୍କୁ କହିଲେ, ହେ ରାଜନ ! ନିଜର ଭୁଲ ବୁଝିପାରିଲେ ତ ! ସେଠାରେ ଥିବା ମନ୍ତ୍ରୀ, ପରିଷଦ ଏହା ଦେଖି, ପାଟିରୁ ବାକ୍ୟ ସ୍ଫୁରିଲା ନାହିଁ । ଆଉ ମଧ ରାଜାଙ୍କୁ ଏହି ଘଟଣାର ସତ୍ୟାସତ୍ୟ ବୁଝିବା ଅଛପା ରହିଲା ନାହିଁ । ଜଗନ୍ନାଥ ଦାସ ନିଶ୍ଚୟ ହରିଙ୍କ ପରମ ଭକ୍ତ ବୋଲି ବିଶ୍ୱାସ କଲେ । ତାଙ୍କୁ ଆଉ ଅଧିକ ଦଣ୍ଡ ଦେଲେ ନିଜର କ୍ଷତି ହେବ ବୋଲି ଭାବି ରାଜା ତାଙ୍କର ପାଦପୂଜା କରିବା ସଂଗେ ସଂଗେ ନିଜର ଭୁଲ ପାଇଁ କ୍ଷମା ପ୍ରାର୍ଥନା ମାଗିଲେ । ଅନେକ ଧନ, ରତ୍ନ, ସୁନା ଇତ୍ୟାଦି ଅର୍ପଣ କରି ବନ୍ଦୀରୁ ମୁକ୍ତି କରିଦେଲେ । ଭାଗବତ ବାଣୀ ପବିତ୍ର ଓ ସତ୍ୟ ଉପରେ ଆଧାରିତ । ଏହି ବାଣୀକୁ ଶ୍ରବଣ କଲେ ଶତ ଜନ୍ମର ପାପ ନାଶ ହୋଇ ଧର୍ମ ଅର୍ଜନ ହୁଏ ବୋଲି ରାଜାଙ୍କର ବିଶ୍ୱାସ ଜାଗ୍ରତ ହୋଇଥିଲା । ତେଣୁ ସେ ଭାଗବତ ଶୁଣିବା ପାଇଁ କବି ଜଗନ୍ନାଥ ଦାସଙ୍କୁ କହିଥିଲେ । ମହାରାଜାଙ୍କ ଅନୁରୋଧକ୍ରମେ ଜଗନ୍ନାଥ ଦାସ ସହର୍ଷ ଚିତ୍ତରେ ଭଗବାନଙ୍କୁ ପ୍ରାର୍ଥନା କରି ଜଳ ଭିତରେ ପ୍ରବେଶ କରି ପୁରୁଷ ରୂପ ଧାରଣ କରିଥିଲେ । ସହସା ସେ ରାଜଦରବାରରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମୁଖରୁ ନିଃସୃତ ଭାଗବତ ବାଣୀ ପାଠ କରିଥିଲେ । ଏହାଶୁଣି ରାଜାଙ୍କ ସମେତ ମନ୍ତ୍ରୀ ପରିଷଦ ଭଗବତ ପ୍ରେମୀ ହେବା ସଂଗେ ସଂଗେ କବି ଜଗନ୍ନାଥ ଦାସଙ୍କର ଜୟଗାନ କରିଥିଲେ ।

ଅନ୍ୟ ଗୋଟିଏ ଘଟଣାରୁ କବି ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ବୋଲି ଜଣାଯାଏ । ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତ ରୂପେ କବି ଜଗନ୍ନାଥ ଦାସ ବହୁ ଅଲୌକିକ ମହିମାର ଅଧିକାରୀ ଥିଲେ । ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ଦାସେ ଆପଣେ ପୁରାଣ ପଣ୍ଡା ରୂପେ ପ୍ରଭୁ ଜଗନ୍ନାଥଙ୍କ ସେବା କରୁଥିଲେ । ଏକଦା ଦାକ୍ଷିଣାତ୍ୟର ଜଣେ ରାଜା ଶ୍ରୀଜଗନ୍ନାଥଙ୍କ ପାଖରେ ଏକ ଦୁର୍ଲ୍ଲଭ ଚନ୍ଦନ ଲାଗି କରିବା ପାଇଁ ଗଜପତିଙ୍କୁ ଦେଇଥିଲେ । କୌଣସି ସେବାୟତଙ୍କୁ ବିଶ୍ୱାସ ନକରି ରାଜା କବି ଜଗନ୍ନାଥ ଦାସଙ୍କୁ ଚନ୍ଦନଟି ଦେଇଥିଲେ । ଏହି କାର୍ଯ୍ୟ ପାଇଁ ପଣ୍ଡିତେ ରାଜ ନଅରରୁ ରାଜାଙ୍କଠାରୁ ଆଣି ନିଜ ଅଣ୍ଟାରେ ମାରି ମନ୍ଦିରକୁ ଯାଇଥିଲେ । ତାହାକୁ ଶ୍ରୀଜଗନ୍ନାଥଙ୍କ ଶରୀରରେ ଲାଗି କରିବା ପାଇଁ ମନେ ପଡିନଥିଲା । ରାତିରେ ପହଡ ପଡିବା ପରେ ସେ ରହୁଥିବା ସାତଲହଡୀ ମଠକୁ ଯାଇଥିଲେ । ଲୁଗା ଫିଟାଉ ଫିଟାଉ ସେହି ଚନ୍ଦନଟି ଦାସେ ଆପଣଙ୍କ ଅଣ୍ଟାରୁ ତଳେ ପଡିଯାଇଥିଲା । ସେଠାରେ ସେ ଆସନ୍ତାକାଲି ଶ୍ରୀଜଗନ୍ନାଥଙ୍କ ଦେହରେ ଲଗାଇବେ ବୋଲି ଭାବି ଖାଇ ଶୋଇ ପଡିଲେ । ଚନ୍ଦନଟି ଜଗନ୍ନାଥ ଦାସ ଠାକୁରଙ୍କ ମୁଣ୍ଡରେ ଲଗାଇଲେ କି ନାହିଁ, ତାହା ଜାଣିବା ପାଇଁ ଏକ ପ୍ରହରୀକୁ (ଛଦ୍ମବେଶ) ଦିନସାରା ଜଗାଇଥିଲେ । ସେହି ପ୍ରହରୀ ପହଡ ପଡିବା ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଦାସେ ଆପଣଙ୍କୁ ଜଗି ରହିଥିଲେ । ପହଡ ପଡିବା ପରେ ପ୍ରହରୀଟି ଗଜପତିଙ୍କୁ କହିଥିଲେ ଯେ, ଭକ୍ତ ଜଗନ୍ନାଥ ଚନ୍ଦନ ଲେପନ କରିନାହାନ୍ତି ।

ପ୍ରହରୀଠାରୁ ଶୁଣି ରାଜା ଭକ୍ତ ଜଗନ୍ନାଥଙ୍କ ଉପରେ ରାଗାନ୍ୱିତ ହୋଇ ତାଙ୍କୁ ଡକାଇ ପଠାଇଲେ । ଜଗନ୍ନାଥ ଦାସ ଗଭୀର ନିଦରେ ଶୋଇଥିବା ସମୟରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ସ୍ୱପ୍ନାଦେଶ ମାଧମରେ କହିଥିଲେ, ହେ ବତ୍ସ ! ଗଜପତି ଦେଇଥିବା ଚନ୍ଦନ ମୋ ଦେହରେ ଲେପନ କଲନାହିଁ କାହିଁକି ? ବର୍ତ୍ତମାନ ମୁଁ ଆସିଅଛି ଲେପନ କରିଦିଅ । ତତ୍କ୍ଷଣାତ୍ ଜଗନ୍ନାଥ ଦାସ ଶେଯ ତ୍ୟାଗ କରି, ମସଲାବଟା ଶିଳରେ ଚନ୍ଦନଟିକୁ ମଖନ କରି ବସିଲେ । ଏହି ସମୟରେ ପ୍ରହରୀ ଭକ୍ତ ଜଗନ୍ନାଥ ଦାସଙ୍କୁ ମହାରାଜା ଡାକୁଛନ୍ତି ବୋଲି କହିଥିଲେ । ତତ୍‌ସଂଗେ ସଂଗେ ଜଗନ୍ନାଥ ଦାସ ଚନ୍ଦନକୁ ମଠଘରର କାନ୍ଥରେ ଲେପନ



କରିଦେଲେ । ପ୍ରକାଶ ଥାଉକି ପ୍ରହରୀ ଜାଣିଲା ଚନ୍ଦନ କାନ୍ଥରେ ଲେପନ ହେଲା । କିନ୍ତୁ ପ୍ରକୃତରେ ସେହି ଚନ୍ଦନ ଶ୍ରୀଜଗନ୍ନାଥଙ୍କ ଦେହରେ ଲେପନ ହେଲା । ପ୍ରହରୀଟି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦେଖିବାର ଅବକାଶ ନ ଥିଲା । ପ୍ରଭୁ ଶ୍ରୀଜଗନ୍ନାଥ ଚନ୍ଦନ ଲେପନ ପରେ ଶ୍ରୀମନ୍ଦିରକୁ ବିଜେ କରିଥିଲେ । ତତ୍ପରେ ସେ ଦୁଇଜଣ ରାଜାଙ୍କ ନଅରକୁ ଆସିଥିଲେ । ରାଜାଙ୍କ ସମ୍ମୁଖରେ ପ୍ରହରୀ କହିଲେ 'ପଣ୍ଡିତେ ପ୍ରଭୁଙ୍କ ମୁଖ ପରିବର୍ତ୍ତେ ମଠ କାନ୍ଥରେ ଚନ୍ଦନ ଲେପନ କଲେ' । କିନ୍ତୁ ପଣ୍ଡିତେ କହିଲେ ମୁଁ ସ୍ୱୟଂ ପରମେଶ୍ୱର ଶ୍ରୀଜଗନ୍ନାଥଙ୍କ ଶରୀରରେ ସେହି ଦୁର୍ଲ୍ଲଭ ଚନ୍ଦନ ଲେପନ କରିଅଛି । ଦୁଇଜଣଙ୍କର କଥା ଶୁଣି ଗଜପତି ମହାରାଜା ଦ୍ୱନ୍ଦ୍ୱରେ ପଡିଲେ । କାରଣ କାହା କଥାକୁ ବିଶ୍ୱାସ କରିବେ । କଥାଟି ଅମୀମାଂସିତ ହୋଇ ରହିଲା । ବହୁ ବିଚାର ବିମର୍ଶ କରି ରାଜା ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ସକାଳ ହେଲେ ସେ ନିଜେ ଶ୍ରୀମନ୍ଦିର ଯାଇ ଦେଖିବେ ଶ୍ରୀପ୍ରଭୁଙ୍କ ଶରୀରରେ ଚନ୍ଦନ ଲାଗିଛି କି ନାହିଁ ।

ଏହି କଥା ତା'ପର ଦିନ ସକାଳୁ କାହାକୁ ଅଛପା ରହିଲା ନାହିଁ । ଯାହାକି ସମସ୍ତ ସେବାୟତ ଓ ମଠର ମହନ୍ତମାନେ ପହଡ ଫିଟିବା ପୂର୍ବରୁ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଗଲେ । ମହାରାଜାଙ୍କ ସହିତ ପ୍ରହରୀ ଓ ଭକ୍ତ ଜଗନ୍ନାଥ ଦାସ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଗଲେ । ପହଡ ଫିଟୁ ଫିଟୁ ଆଗ ରତ୍ନସିଂହାସନ ଦୁର୍ଲ୍ଲଭ ଚନ୍ଦନର ବାସନାରେ ମହକି ଉଠୁଥାଏ । ଶ୍ରୀପ୍ରଭୁ ଜଗନ୍ନାଥଙ୍କ ସଂପୂର୍ଣ୍ଣ ଶରୀରଟି ଚନ୍ଦନରେ ଲେପା ହେବାର ଦୃଶ୍ୟ ଦେଖି ମହାରାଜା ଭକ୍ତ ଜଗନ୍ନାଥଙ୍କ କଥାକୁ ବିଶ୍ୱାସ କରିଥିଲେ । ସେ ଭକ୍ତ ଜଗନ୍ନାଥଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇ ଶ୍ରୀଜଗନ୍ନାଥଙ୍କର ଜଣେ ପରମ ଭକ୍ତର ଆଖ୍ୟା ଦେଇ ତାଙ୍କ ମୁଣ୍ଡରେ ଏକ ଶିରପା ବାନ୍ଧି ଦେଇଥିଲେ । ଆଉ ମଧ୍ୟ ସାତଲହଡୀ ମଠର 'ସାଆନ୍ତ' ଆଖ୍ୟା ପ୍ରଦାନ କରିଥିଲେ । ଏଥିରୁ ଭକ୍ତ ଓ ଭଗବାନ ମଧ୍ୟରେ ଥିବା ଗୂଢ ରହସ୍ୟ ଅନୁମେୟ ।

ଅନ୍ୟ ଗୋଟିଏ ଜନଶ୍ରୁତିରୁ ଭକ୍ତ ଜଗନ୍ନାଥଙ୍କର ଭକ୍ତିର ମହତ୍ୱ ଜଣାଯାଏ । ପ୍ରକାଶ ଥାଉକି ତତ୍‌କାଳୀନ ବ୍ରହ୍ମଗିରି ବ୍ଲକ ଅନ୍ତର୍ଗତ କାଣ୍ଡଗୋଦା ନାମକ ଏକ ଗ୍ରାମରେ ମନେଇ ସାହୁ ନାମକ ଏକ ଧନୀ ସାହୁକାର ବାସ କରୁଥିଲେ । ସେ ଥିଲେ ଜଗନ୍ନାଥ ପ୍ରେମୀ ଓ ଜ୍ଞାନୀ, ଗୁଣୀ ପ୍ରକୃତିର ଲୋକ । ଜଗନ୍ନାଥ ଦାସଙ୍କ ସହିତ ତାଙ୍କର ବହୁଦିନ ତଳୁ ବନ୍ଧୁତ୍ୱ ଥିଲା । ପରସ୍ପର ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଆଲୋଚନା ଆରମ୍ଭ କଲେ, ନିଜ ନିଜର ଖାଦ୍ୟପେୟ ଭୁଲି ଯାଆନ୍ତି ଓ ରାତି ପାହିଗଲେ ମଧ୍ୟ ଜାଣି ପାରନ୍ତି ନାହିଁ । ଏକଦା ଦାସେ ଆପଣେ ମନେଇ ସାହୁଙ୍କ ଘରକୁ ଯାଇଥିଲେ । ମନେଇ ସାହୁ ଘରେ ନ ଥିଲେ । ସେ କୃଷିକ୍ଷେତ୍ରକୁ ଯାଇଥିଲେ । ତେଣୁ ମନେଇ ସାହୁ କୃଷିକ୍ଷେତ୍ରରୁ ଫେରିବା ପର୍ଯ୍ୟନ୍ତ ପଣ୍ଡିତେ ଆପଣେ ତାଙ୍କ ଘରେ ତାଙ୍କୁ ଅପେକ୍ଷା କରିଥିଲେ । ମନେଇ ସାହୁ ମଧ୍ୟାହ୍ନ ସମୟ ଗଡି ଯିବା ପରେ କୃଷିକ୍ଷେତ୍ରରୁ ଆସିଥିଲେ । ସେତେବେଳେ ବର୍ଷା ଋତୁ । ମନେଇ ସାହୁ ବିଲରୁ କିଛି କଙ୍କଡା ତାଙ୍କ ଗାମୁଛାରେ ବାନ୍ଧି ଘରକୁ ଆଣିଥିଲେ । ପଣ୍ଡିତଙ୍କୁ ମଧ୍ୟାହ୍ନ ଭୋଜନ କରିବାକୁ କହିଥିଲେ । ଅନ୍ନ ଓ ତରକାରୀ ସହ କଙ୍କଡା ପୋଡା ଚଟଣି ଖାଇବା ଅବସରରେ ଦାସେ ଆପଣଙ୍କୁ କଙ୍କଡାପୋଡା ଚଟଣି ନ ଦେବାକୁ ବାରଣ କରିଥିଲେ । କାରଣ ସେ ବ୍ରାହ୍ମଣ ଥିଲେ । କଙ୍କଡା ପୋଡା ଚଟଣି ଖାଇଲେ ପଇତା ମାରା ହୋଇଯିବ । କିନ୍ତୁ ଦାସେ ଆପଣେ ଅନାବିଳ ମନରେ କଙ୍କଡା ପୋଡା ଚଟଣି ଖାଇବାକୁ କହି, ତାଙ୍କ ଦ୍ୱାରା ଲିଖିତ ଭାଗବତରୁ ଏକ ପଦ ବୋଲିଥିଲେ । ତାହାଥିଲା –

'ଆହାରେ ଭଲ ମନ୍ଦ ନାହିଁ, ଯେ ସ୍ଥାନେ ଯେପରି ମିଳଇ' ।

ଦୁଇଜଣ ଏକାଠି ବସି ଖାଇବା ସମୟରେ ଏକ ଅଲୌକିକ ଘଟଣା ଘଟିଥିଲା । ତାହାଥିଲା ଦୁଇଜଣଙ୍କର ଖାଦ୍ୟ ମହାପ୍ରସାଦରେ ପରିଣତ ହୋଇଯାଇଥିଲା । ଏଥିରୁ ଜଗନ୍ନାଥ ଦାସ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତର ପରିଚୟ ମିଳିଥିଲା । ଯାହାକୁ ଆଜି ପର୍ଯ୍ୟନ୍ତ ସେହି ଅଞ୍ଚଳରେ ଲୋକମାନେ କହିବୁଲିଛନ୍ତି ।



ପଞ୍ଚସଖା ଯୁଗ ତଥା ଜଗନ୍ନାଥ ଦାସଙ୍କ ସମୟଟି ଥିଲା ଏକ ସୁବର୍ଣ୍ଣ ଯୁଗ । କାରଣ ଏହି ସମୟରେ ଅର୍ଥାତ ୧୫୧୦ ଖ୍ରୀଷ୍ଟାବ୍ଦରେ ବୈଷ୍ଣବ ଧର୍ମର ପ୍ରଚାରକ ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ର ଆସିଥିଲେ । ଏହି ସମୟରେ ଜଗନ୍ନାଥ ଦାସ ଶ୍ରୀମନ୍ଦିରରେ ଥିବା ଏକ ବଟବୃକ୍ଷ ମୂଳେ ବସି ଭାଗବତ ରଚନା କରୁଥିବାର ଦେଖି ତାଙ୍କୁ ଶ୍ରୀଚୈତନ୍ୟ କିଛି ଭକ୍ତିତତ୍ତ୍ୱ ସଂପର୍କରେ କଠିନ ପ୍ରଶ୍ନ ପଚାରି ଥିଲେ । ଦାସଙ୍କଠାରୁ ଏପରି ଭାବେ ସନ୍ତୋଷଜନକ ଉତ୍ତର ପାଇଥିଲେ ଯେ, ସେ ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇଯାଇଥିଲେ । ଏପରିକି ଭାବବିହ୍ୱଳିତ ଶ୍ରୀଚୈତନ୍ୟ ତାଙ୍କ ମୁଣ୍ଡରେ ପିନ୍ଧିଥିବା ମୁକୁଟଟିକୁ ଜଗନ୍ନାଥ ଦାସଙ୍କ ମୁଣ୍ଡରେ ପିନ୍ଧାଇ ଦେଇଥିଲେ । ତାଙ୍କୁ 'ଅତିବଡୀ' ଉପାଧିରେ ଭୂଷିତ କରାଇଥିଲେ ।

କବି ଜଗନ୍ନାଥ ଦାସ ଭକ୍ତି ରସାତ୍ମକ ଗ୍ରନ୍ଥ ଭାଗବତ ସମେତ ଶ୍ରୀନାମ ଚନ୍ଦ୍ରିକା, ଅନାମୟ କୁଣ୍ଡଳୀ, ଦୂତୀବୋଧ, ତୂଳାଭିଣା, ପ୍ରମୋଦ ଚିନ୍ତାମଣି, ପଦ୍ମପାଦ ସୁଧାନିଧି, ଶୂନ୍ୟ ଭାଗବତ, କଳି ମାଳିକା, ଭକ୍ତି ଚନ୍ଦ୍ରିକା, ପଞ୍ଚଭୂତ, ନିତ୍ୟ ନୀଳାଦ୍ରି ବିଳାସ, ରତ୍ନ ପାଦୁକା, ବ୍ରହ୍ମଗୀତା, ପଦ୍ମକଳ୍ପ ଟୀକା ଇତ୍ୟାଦି ପ୍ରାୟ ୫୦ରୁ ଊର୍ଦ୍ଧ୍ୱ ଗ୍ରନ୍ଥ ରଚନା କରିଛନ୍ତି । ଏହି ପୁସ୍ତକରେ ବିଭିନ୍ନ ଯୁଗରେ ଦେବଦେବୀଙ୍କର ଆବିର୍ଭାବ ଓ ସେମାନଙ୍କର ଲୀଳା କ୍ରୀଡାଠାରୁ ଅନ୍ତର୍ଦ୍ଧାନ ପର୍ଯ୍ୟନ୍ତ ସମସ୍ତ ଘଟଣା ଭକ୍ତି ଓ ଭାବରସର ମିଶ୍ରଣରେ ଲେଖିଛନ୍ତି, ଯାହାକି ସମାଜର ବିଭିନ୍ନ କ୍ଷେତ୍ରରେ ସେହି ପୁସ୍ତକଗୁଡିକର ଉପଯୋଗିତା ଅତ୍ୟନ୍ତ ମହାନ ଓ ଗରିୟସୀ ଅଟେ । ଏହିସବୁର ମୂଳରେ ଶ୍ରୀଜଗନ୍ନାଥ ଆଧାର ବୋଲି ବର୍ଣ୍ଣନା କରିଛନ୍ତି । ଏହା ଫଳରେ ଓଡିଶା ମାଟିର ଗର୍ବ ଓ ଗୌରବ ତଥା ସ୍ୱାଭିମାନକୁ ବିଶ୍ୱ ଦରବାରେ ପ୍ରସାର ଓ ପ୍ରଚାର କରାଇବା ସଂଗେ ସଂଗେ ନିଜର ଅସାଧାରଣ ବ୍ୟକ୍ତିତ୍ୱ ବଳରେ ଭକ୍ତି, ପ୍ରେମ, ଭାବ ମିଶ୍ରିତ କବି ରୂପେ ନିଜର ପରିଚୟ ସୃଷ୍ଟି କରିପାରିଛନ୍ତି । ତାଙ୍କଦ୍ୱାରା ଲିଖିତ ଓଡିଆ ଭାଗବତ ଓ ତାଙ୍କଦ୍ୱାରା ଗଠିତ ଭାଗବତ ଟୁଙ୍ଗୀ ଓଡିଶାର କୋଣଅନୁକୋଣରେ ପ୍ରସାର ଓ ପ୍ରଚାର ହୋଇପାରିଛି । ଆଉ ମଧ୍ୟ ଭାଗବତ ଗ୍ରନ୍ଥ ଠାକୁରଙ୍କ ପରି ଘରେ ଘରେ ପୂଜା ପାଉଅଛି । ସେ ତାଙ୍କ ସାଧନା କୁଟୀର ସାତଲହଡୀ ମଠରେ ୬୦ ବର୍ଷର ଜୀବନକାଳ ଅତିବାହିତ କରି ମାଘମାସ ଶୁକ୍ଳ ପକ୍ଷ ୭ମୀ ତିଥିରେ ହରିନାମ କୀର୍ତ୍ତନ ଶ୍ରବଣ କରୁକରୁ ପାର୍ଥିବ ଶରୀର ତ୍ୟାଗ କରି ନିତ୍ୟ ଗୋଲକ ଧାମ ପ୍ରାପ୍ତ ହୋଇଥିଲେ । ଆଜି ସେହି ମହାନ ପବିତ୍ର ଗ୍ରନ୍ଥ ସମଗ୍ର ମାନବ ଜାତିର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଉପାଦେୟ ଶାସ୍ତ୍ର ରୂପେ ବ୍ୟବହାର ହେଉଅଛି । ଏହା ସତ୍ୟ ଯେ ଯେଉଁ ବ୍ୟକ୍ତି ତା'ର ଜୀବନ ସଂଗ୍ରାମରେ ଏହି ମହାନ ଧାର୍ମିକ ଶାସ୍ତ୍ରକୁ ଆଦରି ନେଇଥାଏ, ସେହି ବ୍ୟକ୍ତିର ଭଗବତ୍ ପ୍ରାପ୍ତି ହୋଇଥାଏ । ଏହି ପରିପ୍ରେକ୍ଷୀରେ ଭକ୍ତ ଜଗନ୍ନାଥ ଦାସ ତାଙ୍କର ଜନ୍ମଗତ ବୃତ୍ତି ପରି ଭକ୍ତି ରସାତ୍ମକ କାବ୍ୟମାନ ଲେଖି ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ହୋଇପାରିଛନ୍ତି, ଏଥିରେ ଦ୍ୱିମତ ନାହିଁ ।

ପ୍ଲଟ୍ ନଂ: ୭୮୫/୧୨୪୦/୩୩୨୧
ଦୁର୍ଗାମାଧବ ନଗର, ଲେନ.ନଂ – ୮
ଭରତପୁର, ଭୁବନେଶ୍ୱର





# ଶ୍ରୀମନ୍ଦିର ଓ ଶ୍ରୀପତିତପାବନ

**ମଧୁସୂଦନ ପଟ୍ଟନାୟକ**

ଅବତାରୀ ପୁରୁଷ ପ୍ରଭୁ ଜଗନ୍ନାଥଙ୍କୁ ପୁରାଣମାନଙ୍କରେ ରାମ ଓ କୃଷ୍ଣ ରୂପରେ ରୂପାନ୍ତରିତ କରାଯାଇଛି। ମତ୍ସ୍ୟ ଅବତାର ଗ୍ରହଣ କରି ବେଦର ପାବନ, କୂର୍ମ ଅବତାରରେ କୂର୍ମନିଧିପାବନ, ବରାହ ଅବତାରରେ ଧରଣୀର ପାବନ, ନୃସିଂହ ଅବତାରରେ ଭକ୍ତର ପାବନ, ବାମନ ଅବତାରରେ ଦୈତ୍ୟର ପାବନ, ପର୍ଶୁରାମ ଅବତାରରେ ତାପର ପାବନ ଓ ବୌଦ୍ଧ ଅବତାରରେ ମ୍ଳେଚ୍ଛମାନଙ୍କ ପାବନ ପାଇଁ ଜଗନ୍ନାଥ ଆଜି ରତ୍ନସିଂହାସନରେ କଳ୍କୀ ବିଗ୍ରହ ଧାରଣ କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ ସୃଷ୍ଟିର ପ୍ରାରମ୍ଭରୁ ପତିତମାନଙ୍କ ସେ ସକଳ ପାବନର ଅଧିକାରୀ । ଶବରରାଜ ପତିତ ବିଶ୍ୱାବସୁଙ୍କଠାରୁ ଆରମ୍ଭ କରି ଭଗବତ୍ ଦର୍ଶନରୁ ବଞ୍ଚିତ ହୋଇ ନିଜକୁ ପତିତ ମନେ କରୁଥିବା ବିଦ୍ୟାପତିଙ୍କୁ ପାବକତ୍ୱ ପ୍ରଦାନ କରିଛନ୍ତି ।



ଭକ୍ତ ନିଜକୁ ପାପୀ, ଅସହାୟ, ଅପବିତ୍ର, ଅଜ୍ଞାନୀ ମନେକରି ସେହି ଦାରୁବିଗ୍ରହଙ୍କ ନିକଟରେ ନିଜକୁ ସମର୍ପଣ କରି ଦେଇଥାଏ। ପ୍ରଭୁଙ୍କ ନିକଟରେ କେହି ଅପବିତ୍ର ପତିତ ନୁହନ୍ତି । ପ୍ରଭୁ ପାବନ ଅବତାରରେ ପ୍ରତୀକ ଭାବରେ ସ୍ୱର୍ଗଲୋକରୁ ମର୍ତ୍ତ୍ୟଲୋକକୁ ନିପତିତ ହୋଇଛନ୍ତି– 'ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ' ଭୂମିକା ଗ୍ରହଣ କରିଛନ୍ତି।

ଯଜୁର୍ବେଦ ସଂହିତାରେ ଆର୍ଯ୍ୟ ବିରୋଧୀ କିରାତ, ଶବର, ଭିଲ ପ୍ରଭୃତି ଆର୍ଯ୍ୟବିରୋଧୀ ଗୋଷ୍ଠୀ ଥିବାର ପ୍ରମାଣ ମିଳେ। ଜଗନ୍ନାଥ ବହୁ କାଳରୁ ଏହି ପତିତ ଉପାସ୍ୟ ଦେବତା ରୂପେ ପୂଜିତ ହେଉଥିଲେ। ଉଡ୍ରଖଣ୍ଡରେ ଆଦିବାସୀମାନଙ୍କ ଦ୍ୱାରା ପୂଜିତ ଶବରୀନାରାୟଣ ପରବର୍ତ୍ତୀ ପର୍ଯ୍ୟାୟରେ ଦାରୁଦେବତା ଜଗନ୍ନାଥ ବିଗ୍ରହରେ ରୂପାନ୍ତରିତ ହୋଇଛନ୍ତି ।

ପୁରୁଷୋତ୍ତମ କ୍ଷେତ୍ରର ପାବନ ପୀଠରେ ଦାରୁବ୍ରହ୍ମଙ୍କୁ ଦର୍ଶନ କରି ଭକ୍ତ ଯେତିକି ପୁଣ୍ୟ ଅର୍ଜନ କରିଥାଏ, ଶ୍ରୀମନ୍ଦିରର ପ୍ରବେଶ ଦ୍ୱାର ଗୁମୁଟରେ ପ୍ରତିଷ୍ଠିତ ପତିତପାବନଙ୍କୁ ଦର୍ଶନ କରି ଭକ୍ତ ସେହି ଅକ୍ଷୟ ପୁଣ୍ୟର ଅଧିକାରୀ ହୁଏ । ସିଂହଦ୍ୱାରର ଉତ୍ତର ବାରଣ୍ଡାରେ ପୂର୍ବାଭିମୁଖୀ ଏହି ପତିତପାବନ ଜଗନ୍ନାଥଙ୍କର ପ୍ରତୀକାତ୍ମକ ବିଗ୍ରହ। ପ୍ରଶ୍ନ ଉଠେ– ଯଦି ଏହି ପ୍ରତୀକାତ୍ମକ ବିଗ୍ରହ ବା ଜଗନ୍ନାଥଙ୍କର ସ୍ୱୟଂଭୂ ପ୍ରତିନିଧି, ଯଦି ସେ ବାସ୍ତବ ପ୍ରତିନିଧି, ତେବେ ସିଂହଦ୍ୱାରର ପ୍ରବେଶ ପଥରେ ଅଧିଷ୍ଠିତ କାହିଁକି? ସିଂହଦ୍ୱାର ସମ୍ମୁଖରେ ଅରୁଣସ୍ତମ୍ଭ। ସ୍ତମ୍ଭ ଉପରେ ଗରୁଡ଼ କରପତ୍ର ଯୋଡ଼ି ପତିତପାବନଙ୍କୁ ପ୍ରଣତି ଜଣାଉଛନ୍ତି ଯେପରିକି ମନ୍ଦିର ମଧ୍ୟରେ ଗରୁଡ଼ସ୍ତମ୍ଭ ଉପରେ ଅଧିଷ୍ଠିତ ଗରୁଡ଼ ରତ୍ନସିଂହାସନ ଉପରିସ୍ଥ – କାରଣ ବର୍ଷକୁ ଥରେ ଶ୍ରୀଜଗନ୍ନାଥ ରଥଯାତ୍ରା ସମୟରେ ଶ୍ରୀମନ୍ଦିରର ରତ୍ନସିଂହାସନ ଉପରୁ ବଡ଼ଦାଣ୍ଡକୁ ଓହ୍ଲାଇ ଆସନ୍ତି,





ସେତେବେଳେ ଛୁଆଁ ଅଛୁଆଁ ଜାତିଧର୍ମ ନିର୍ବିଶେଷରେ ତାଙ୍କୁ କୋଳକରି ଦର୍ଶନ କରିବାର ସୌଭାଗ୍ୟ ଲାଭ କରନ୍ତି । ସିଂହଦ୍ୱାରରେ ଉତ୍ତର ବାରଣ୍ଡାରେ ପୂର୍ବାଭିମୁଖୀ ଏହି ପତିତପାବନ ବିଗ୍ରହ ସବୁ ସମୟରେ ଶ୍ରୀଜଗନ୍ନାଥଙ୍କର ପ୍ରତିନିଧିତ୍ୱ କରନ୍ତି । ଏପରିକି ଶ୍ରୀମନ୍ଦିରରେ ରତ୍ନସିଂହାସନାଧିଷ୍ଠିତ ଶ୍ରୀଜଗନ୍ନାଥଙ୍କ ନିକଟରେ ଅନୁସୃତ ସମସ୍ତ ରୀତି, ନୀତି ପୂଜାପାର୍ବଣ ପତିତପାବନଙ୍କ ନିକଟରେ ଆଚରିତ ହୋଇଥାଏ । ଏପରିକି ସ୍ନାନ ଯାତ୍ରାରେ ଶ୍ରୀଜୀଉଙ୍କର ଅନବସର ବିଧି ପତିତପାବନଙ୍କ ନିକଟରେ ମଧ୍ୟ ପାଳିତ ହୁଏ । ତେବେ ବର୍ତ୍ତମାନ ବିଚାର୍ଯ୍ୟ ଏ ପତିତପାବନ ବିଗ୍ରହଙ୍କର ସ୍ଥାପନା କିଏ ଏବଂ କେବେ କରିଥିଲେ ?

ମାଦଳାପାଞ୍ଜିର ବିବରଣୀ ଅନୁସାରେ ଶ୍ରୀପୁରୁଷୋତ୍ତମ ଦେବ ଖ୍ରୀ ୧୪୪୮ରେ ମନ୍ଦିରର ବାହାର ବେଢ଼ା ନିର୍ମାଣ କରିଥିଲେ କିନ୍ତୁ ଭୋଇବଂଶ ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ଏହାକୁ ସ୍ଥାପନ କରିଥିବା ପ୍ରସଙ୍ଗ ମାଦଳାପାଞ୍ଜିରେ ଉଲ୍ଲେଖ ଥିବାରୁ ଏହା ଅଷ୍ଟାଦଶ ଶତାବ୍ଦୀର ଅନୁମାନ କରାଯାଏ । କେହି କେହି ମତବ୍ୟକ୍ତ କରନ୍ତି ଯେ ଶ୍ରୀମନ୍ଦିର ଭୋଗମଣ୍ଡପ ଦ୍ୱାର ସମ୍ମୁଖରେ ଏକ ବୌଦ୍ଧ ମୂର୍ତ୍ତିର ସାଦୃଶ୍ୟ ପତିତପାବନ ମୂର୍ତ୍ତିରେ ରହିଥିବାରୁ ଏହି ବୌଦ୍ଧମୂର୍ତ୍ତିକୁ ପ୍ରଥମ ପତିତପାବନ ମୂର୍ତ୍ତି ବୋଲି ମତ ଦିଅନ୍ତି ।

ସିଂହଦ୍ୱାର ଗୁମୁଟସ୍ଥିତ ପତିତପାବନ ମୂର୍ତ୍ତି ଯେ ସର୍ବ ପ୍ରଥମ । ପ୍ରାଚୀନ ମୌଳିକ ବିଗ୍ରହ– ଏଥିରେ ଦ୍ୱିମତ ନାହିଁ, କାରଣ ଏହା ମାଦଳାପାଞ୍ଜି ବିବରଣ । ଇତିହାସ ମତାନୁସାରେ ଖୋର୍ଦ୍ଧା ଭୋଇବଂଶର ୨ୟ ରାମଚନ୍ଦ୍ରଦେବ ନବାବ ସୁଜାଖାଁଙ୍କ କନ୍ୟା ବିବି ରେଜିୟାଙ୍କୁ ବିବାହ କରି ଇସଲାମ ଧର୍ମରେ ଧର୍ମାନ୍ତରିତ ହୋଇଥିଲେ । ସେ ନିଜକୁ ହାଫିଜକାଦର ବେଗ୍ ନାମରେ ପରିଚିତ କରିଥିଲେ । ତାଙ୍କୁ ମନ୍ଦିର ପ୍ରବେଶ ନିଷିଦ୍ଧ ଥିଲା । ସେ ଜଗନ୍ନାଥଙ୍କର ସେବା ଓ ଦର୍ଶନ ପାଇଁ ସିଂହଦ୍ୱାର ଗୁମୁଟ ପତିତପାବନ ମୂର୍ତ୍ତି ସ୍ଥାପନ କରି ଦର୍ଶନ କରିଥିଲେ ।

ପୁରୀ ରାଜବଂଶର ରାଣୀ ସୂର୍ଯ୍ୟମଣି ପାଟ୍ଟମହାଦେଈ ରାଜା ମୁକୁନ୍ଦ ଦେବଙ୍କୁ ସ୍ୱୀକୃତି ଦେବା ସଂପର୍କରେ ଯେଉଁ ଆବେଦନ କରିଥିଲେ ସେଥିରେ ମଧ୍ୟ ହାଫିଜକାଦର ବେଗ୍‌ଙ୍କ ସଂପର୍କରେ ଉଲ୍ଲେଖ ଥିଲା ।

ଅନ୍ୟ ଐତିହାସିକମାନଙ୍କ ମତରେ ଖ୍ରୀ୧୭୩୮ରେ ୨ୟ ରାମଚନ୍ଦ୍ର ଦେବ ମୁର୍ଶିଦକୁଲିଖାଁଙ୍କ କନ୍ୟା ବିବି ରେଜିୟାଙ୍କ ସହିତ ଅବୈଧ ପ୍ରଣୟ ସୂତ୍ରରେ ଆବଦ୍ଧ ହୋଇ ପାଣିଗ୍ରହଣ କରିଥିଲେ ଓ କଟକର ବାରବାଟୀ ଦୁର୍ଗରେ କିଛିକାଳ ଅତିବାହିତ କରିଥିଲେ । ଏହି ସମୟରେ ସେ ନିଜର ଦୁଷ୍କର୍ମ ପାଇଁ ଅନୁତାପ ଅନଳରେ ଦଗ୍‌ଧିଭୂତ ହୋଇ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ କ୍ଷମାପ୍ରାର୍ଥୀ ହେଲେ ସେ ଯେତେବେଳେ ତାଙ୍କର ପତ୍ନୀଙ୍କ ସହ ଶ୍ରୀମନ୍ଦିର ପ୍ରବେଶ କରିବା ପାଇଁ ଯାଇଥିଲେ, ସେତେବେଳେ ଏହି ପତିତରାଜାଙ୍କୁ ମନ୍ଦିର ପ୍ରବେଶ ଅଧିକାର ମିଳିନଥିଲା । ଫଳତଃ ଶ୍ରୀଜଗନ୍ନାଥ ଦର୍ଶନାଭିଳାଷୀ ରାଜା ରାମଚନ୍ଦ୍ର ଦେବ ଦୁଃଖ ଓ ନୈରାଶ୍ୟରେ ଭାଙ୍ଗି ପଡ଼ିଥିଲେ । ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ସ୍ୱରୂପ ଶ୍ରୀପତିତପାବନଙ୍କୁ ସିଂହଦ୍ୱାର ଗୁମୁଟରେ ପ୍ରତିଷ୍ଠିତ କରାଇ ତାଙ୍କର ଦର୍ଶନ ସେବା କରିଥିଲେ ।

ଦାର୍ଢ୍ୟତା ଭକ୍ତି ପୁରାଣ ବର୍ଣ୍ଣନାନୁସାରେ ଭକ୍ତ ସାଲବେଗ ଜାତିରେ ଯବନ ଥିବାରୁ ତାଙ୍କୁ ମନ୍ଦିର ପ୍ରବେଶ ଅଧିକାର ମିଳିନଥିଲା । ସେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଭରୁ ବଞ୍ଚିତ ହୋଇ ସିଂହଦ୍ୱାର ସମ୍ମୁଖରେ ତାଙ୍କର ଭକ୍ତିପୂର୍ଣ୍ଣ ଆକୁଳ ନିବେଦନ ମହାପ୍ରଭୁଙ୍କୁ ଜଣାଇଥିଲେ । ଏଥିରେ ସ୍ୱୟଂ ଜଗନ୍ନାଥ ରତ୍ନସିଂହାସନରୁ ଓହ୍ଲାଇ ଆସି ସିଂହଦ୍ୱାର ସମ୍ମୁଖରେ ତାଙ୍କୁ ଦର୍ଶନ ଦେଇଥିଲେ । ଏଥିରୁ ଅନୁମିତ ହୁଏ ଯେ ସାଲବେଗଙ୍କ ପରି ଅଗଣିତ ପତିତ ଭକ୍ତମାନଙ୍କର ଦର୍ଶନ ଅଭିଳାଷ ଚରିତାର୍ଥ କରିବା ପାଇଁ ଏଠାରେ ପତିତପାବନ ବିଗ୍ରହ ଧାରଣ କରିଛନ୍ତି । ଭକ୍ତ ସାଲବେଗ ପତିତମାନଙ୍କ ଉଦ୍ଦେଶ୍ୟରେ 'ପତିତପାବନ ଅଷ୍ଟକମ୍' ଜଣାଣ ରଚନା କରି ଶ୍ରୀଜଗନ୍ନାଥଙ୍କୁ ପତିତପାବନର ମହାନ୍ ଦ୍ୟୋତକ ଭାବରେ ପ୍ରତିପାଦନ କରିଛନ୍ତି ।

◆◆◆



ଗୌଡ଼ିୟ ବୈଷ୍ଣବ ଶ୍ରୀଚୈତନ୍ୟ ମନ୍ଦିର ପ୍ରବେଶ କାଳରେ ଶ୍ରୀପତିତପାବନ ବିଗ୍ରହଙ୍କ ଦର୍ଶନ ଲାଭକରି ପ୍ରଥମରୁ ହିଁ ଭାବବିହ୍ୱଳିତ ହୋଇଥିଲେ। ଶ୍ରୀଚୈତନ୍ୟ ଚରିତାମୃତରେ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ବର୍ଣ୍ଣନା ଖୁବ୍ ହୃଦୟସ୍ପର୍ଶୀ। ପରବର୍ତ୍ତୀ କାଳରେ ପୁରାଣ ଓ ଭକ୍ତି ସଂଗୀତରେ ପତିତପାବନଙ୍କ ମାହାତ୍ମ୍ୟ ବହୁଳ ଭାବରେ ପ୍ରଚାରିତ ହୋଇଛି। ସେସବୁ କବିଙ୍କର ପତିତପାବନଙ୍କ ନିକଟରେ ଜଗନ୍ନାଥତ୍ତ୍ୱ ଆରୋପ କରି ତାଙ୍କର ମହିମା ଗାନ କରିଛନ୍ତି । ଏଣୁ ଯେ ଜଗନ୍ନାଥ, ସେ ପତିତପାବନ– ଏହି ଭାବରେ ଭକ୍ତର ହୃଦୟ ସିଂହାସନରେ ଅଧିରୂଢ଼।

ସ୍ୱୟଂ ଗଜପତି ମହାରାଜ ପୁରୁଷୋତ୍ତମ ଦେବ ତାଙ୍କର 'ମୁକ୍ତି ଚିନ୍ତାମଣି' ଗ୍ରନ୍ଥରେ ପତିତପାବନଙ୍କ ଉଦ୍ଦେଶ୍ୟରେ ବିନମ୍ର ଭକ୍ତି ଜଣାଇଛନ୍ତି।

ପତିତାନାଂ ପତିତୋହଂ ତ୍ୱମେବ ପାପହାରକଃ
ପାବନପୁରୁଷ ! ଦେହି ନିଶ୍ଚଳାଂ ଭକ୍ତିଂ ମେ ବିଭୋ।

ଅର୍ଥାତ୍ ହେ ପତିତପାବନ ! ମୁଁ ପତିତମାନଙ୍କ ମଧ୍ୟରେ ପତିତ। ତୁମେ ପତିତ ଲୋକମାନଙ୍କର ପାତକହାରୀ। ହେ ପ୍ରଭୁ ! ମୋ ହୃଦୟରେ ନିଶ୍ଚଳ ଭକ୍ତି ଦେଇ ତୁମଠାରେ ଶରଣ ଯିବାପାଇଁ ବାଟବତାଅ ।

ସନ୍ଥ କବି ତୁଳସୀ ଦାସ ଗୋସ୍ୱାମୀ ତାଙ୍କର ଶ୍ରୀରାମ ଚରିତ ମାନସରେ ଲେଖିଛନ୍ତି–

ଦାସୁ ପତିତପାବନ ବଡ଼ ବାନା
ଗାବ ହିଂ କବି ଶ୍ରୁତି ସନ୍ଥ ପୁରାନା।

ଏ ପୁରୁଷୋତ୍ତମ କ୍ଷେତ୍ରରେ ଦାସିଆ ବାଉରୀଠାରୁ ରାଜା ଇନ୍ଦ୍ରଦ୍ୟୁମ୍ନ ପର୍ଯ୍ୟନ୍ତ, ଶ୍ରୀୟା ଚଣ୍ଡାଳୁଣୀଠାରୁ ରାଜାରାଣୀ ଗୁଣ୍ଡିଚାଙ୍କ ପର୍ଯ୍ୟନ୍ତ, ଭକ୍ତ ସାଲବେଗଙ୍କଠାରୁ ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ସମସ୍ତେ ସମାନ। ରଥଯାତ୍ରା ସାମ୍ୟବାଦ ନୀତିରେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ। ଏହାକୁ ପତିତପାବନ ବାନା ମଧ୍ୟ କୁହାଯାଏ। ସମୁଦ୍ରର ଯେପରି କ୍ଷୟବୃଦ୍ଧି ନଥାଏ, ଆକାଶର ଯେପରି ଆଦି ଅନ୍ତ ନଥାଏ। ବାୟୁର ଯେପରି ଦିଗବିଦିଗ ନଥାଏ, ଠିକ୍ ସେହିପରି ପୁରୁଷୋତ୍ତମ ଜଗନ୍ନାଥଙ୍କ ଆରମ୍ଭ କିମ୍ବା ଉପକ୍ରମ ନାହିଁ ଏବଂ ଶେଷ କିମ୍ବା ଉପସଂହାର ନାହିଁ ।

ମହାପ୍ରସାଦ ସେବାରେ ଛୁଆଁଅଛୁଆଁ ବାରଣ ନାହିଁ। ଏକାଠି ମହାପ୍ରସାଦ ସେବନ ଦ୍ୱାରା ଲୋକମାନଙ୍କ ମଧ୍ୟରେ ବନ୍ଧୁତା ସୃଷ୍ଟି ହେବା ଫଳରେ ସମାଜରୁ ଘୃଣା, ବିଦ୍ୱେଷ, ବିଭେଦ ଦୂର କରି ସାମ୍ୟମୈତ୍ରୀର ବାଣୀ ପ୍ରଚାର କରେ। ଜାତିପ୍ରଥା ନଥିବାରୁ ପୂଜାକର୍ମ ବ୍ରାହ୍ମଣ କରେ। ଠାକୁରଙ୍କ ସେବାପୂଜା ଆର୍ଯ୍ୟ ବ୍ରାହ୍ମଣ କରିବା ସଂଗେ ସଂଗେ ଦୟିତା ମଧ୍ୟ କରେ। ଭାବସମୁଦ୍ରରେ ବଳରାମ ଦାସ କହିଛନ୍ତି–

କାହୁଁ ଭିଆଇଲୁ କ୍ଷେତ୍ର ତୋହର
ଚଉଦ ଭୁବନ ମଧ୍ୟୁ ବାହାର।
ବ୍ରାହ୍ମଣ ଚଣ୍ଡାଳ ସେ ସରି ଦୁଇ
ନାଥ ତୋ କ୍ଷେତ୍ର ସାନ ବଡ଼ ନାହିଁ।

ଏଠାରେ ସମନ୍ୱୟର ମହାନ୍ ପ୍ରତୀକ ଜଗନ୍ନାଥଧର୍ମୀ ସମସ୍ତେ ତାଙ୍କର କୈବଲ୍ୟର ଅଧିକାରୀ। ସମସ୍ତଙ୍କୁ ପାବକତ୍ୱର ସ୍ପର୍ଶରେ ପବିତ୍ର କରି ସେ ଯୁଗେ ଯୁଗେ ପତିତପାବନ ବାନା ଉଡ଼ାଉଛନ୍ତି। ସେ ହେଉଛନ୍ତି ପତିତପାବନ ବିଶ୍ୱର ପାଳନକର୍ତ୍ତା। ସେହି ପତିତପାବନଙ୍କୁ ଦର୍ଶନ କରି ବିଶ୍ୱର ପତିତ ମାନବ ଭକ୍ତ ଭାବ ବିହ୍ୱଳିତ ପ୍ରାଣରେ ଶ୍ରୀଜଗନ୍ନାଥ ଦର୍ଶନ ପୂର୍ବରୁ ସିଂହଦ୍ୱାର ମୁହଁରେ ପୂର୍ବାଭିମୁଖୀ ଶ୍ରୀ ଶ୍ରୀ ପତିତପାବନ ଦେବଙ୍କୁ ଦର୍ଶନ କରି ଧନ୍ୟ ହୁଏ ଭକ୍ତ।

---

କୈବଲ୍ୟ, ଦଣ୍ଡତୋଟା, ପୁରୀ



# ଭୁବନେଶ୍ୱରରେ 'ଆକାଙ୍‌କ୍ଷା'

## ପୂରଣ ହେଲା ଉଚ୍ଚଶିକ୍ଷା ଲାଭ କରିବାର ଆଶା




ଇତିମଧ୍ୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ରାଜଧାନୀ ଭୁବନେଶ୍ୱରରେ ୨ଟି ଛାତ୍ରାବାସ ରାଜ୍ୟର ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀଙ୍କୁ ଉଚ୍ଚ ଶିକ୍ଷା ସୁଯୋଗ ଯୋଗାଇ ଦେବା ଲକ୍ଷ୍ୟରେ ଉଦ୍‌ଘାଟିତ ହୋଇସାରିଛି । ପ୍ରଥମଟି ପୋଖରୀପୁଟଠାରେ ପାଞ୍ଚଶହ ଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ ନିର୍ମିତ ଛାତ୍ରୀନିବାସ ଏବଂ ଦ୍ୱିତୀୟଟି କଳିଙ୍ଗବିହାରରେ ୪ ଶହ ଛାତ୍ରମାନଙ୍କପାଇଁ ଉଦ୍ଦିଷ୍ଟ ଛାତ୍ରାବାସ । ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଏହି ଛାତ୍ରାବାସର ନାମକରଣ କରାଯାଇଛି 'ଆକାଙ୍‌କ୍ଷା' । ଦିଆଯାଇଥିବା ନାଁଟିରେ ହିଁ ଏହି ଛାତ୍ରାବାସ ସ୍ଥାପନ ପଛରେ ରହିଥିବା ଉଦ୍ଦେଶ୍ୟ ସୁସ୍ପଷ୍ଟ । ନିଜସ୍ୱ ସୀମିତ ସମ୍ବଳ ମଧ୍ୟରେ ରାଜଧାନୀରେ ରହି ନିଜସ୍ୱ ଉଚ୍ଚଶିକ୍ଷା ଆକାଙ୍‌କ୍ଷା ଚରିତାର୍ଥ କରିପାରୁନଥିବା ଅଭାବୀ ତଥା ମେଧାବୀ ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ଏହା ଆଶୀର୍ବାଦ ସ୍ୱରୂପ ହୋଇଛି । ପିଲାଙ୍କ ରହିବା ଖାଇବା ସବୁ ଦାୟିତ୍ୱ ସରକାରଙ୍କର । ପିଲାମାନେ ଏସବୁ ସୁବିଧା ସହ ରାଜଧାନୀରେ ବଛା ବଛା ଶିକ୍ଷାନୁଷ୍ଠାନରେ ପାଠ ପଢ଼ିବାର ସୁଯୋଗ ପାଇ ନିଜ ଭବିଷ୍ୟତ ନିଜେ ତିଆରି କରିବେ ଏହି ଭଳି ଏକ ଅଭୀପ୍ସା ନେଇ ଏହି ନୂତନ ଉପକ୍ରମ 'ଆକାଙ୍‌କ୍ଷା' ଆରମ୍ଭ କରାଯାଇଛି ରାଜଧାନୀ ଭୁବନେଶ୍ୱରରେ । ଆଗକୁ ଏହା ସଂପ୍ରସାରିତ ହେବ ରାଜ୍ୟର ଅନ୍ୟାନ୍ୟ ପ୍ରମୁଖ ସହରାଞ୍ଚଳକୁ, ସେଠି ଯେମିତି ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀ ଏ ସୁଯୋଗ ଲାଭ କରିବେ ନିଜ ଭବିଷ୍ୟତ ନିର୍ମାଣ ପାଇଁ, ଏ ଯୋଜନା ଅଛି ମୁଖ୍ୟମନ୍ତ୍ରୀଙ୍କର ।

# ଜନଜାତିଙ୍କ ସଶକ୍ତିକରଣ: ଓଟିଇଏଲ୍‌ପି କାର୍ଯ୍ୟକ୍ରମ



ରାଜ୍ୟରେ ଥିବା ଜନଜାତିଙ୍କ ବିକାଶ ପାଇଁ ଓଡିଶା ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ କାର୍ଯ୍ୟକ୍ରମ (ଓଟିଇଏଲ୍‌ପି ) ମାଧ୍ୟମରେ ରାଜ୍ୟର ୭ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ବିକାଶମୂଳକ କାର୍ଯ୍ୟପନ୍ଥାମାନ ଗ୍ରହଣ କରାଯାଇଅଛି । ଏହି କାର୍ଯ୍ୟକ୍ରମରେ ୭ଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ୩୫୮ଟି ଜଳ ବିଭାଜିକା କାର୍ଯ୍ୟକ୍ରମରେ ୫୬୧୮୦ ପରିବାରଙ୍କୁ ସାମିଲ କରାଯାଇଅଛି ଏବଂ ୩୫୮ଟି ଗ୍ରାମ୍ୟ ଉନ୍ନୟନ କମିଟି ଏବଂ ୪୨୨୭ ସ୍ୱୟଂସହାୟକ ଦଳ ମଧ୍ୟ ଗଠନ କରାଯାଇଅଛି । ୧୬୪୮୪ଟି ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମ ମାଧ୍ୟମରେ



ଜନଜାତିମାନଙ୍କୁ ସଶକ୍ତ କରାଯାଇଅଛି । ଏହି କାର୍ଯ୍ୟକ୍ରମ ଅଧୀନସ୍ଥ ଗ୍ରାମମାନଙ୍କରେ ୨୦୩୮୬ ହେକ୍ଟର ଜମିରେ ଜଳସେଚନର ସୁବିଧା ସୃଷ୍ଟି କରାଯିବା ସହିତ କୃଷି ଉତ୍ପାଦନ ବୃଦ୍ଧି କରାଯାଇଅଛି ।

ଓଟିଇଏଲ୍‌ପି କାର୍ଯ୍ୟକ୍ରମର ସଫଳତାକୁ ସମ୍ପ୍ରସାରିତ କରାଯାଇ ଓଡିଶା ଆଦିମ ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ ଉନ୍ନତିକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହି ଯୋଜନା ୧୭ଟି ଅଣୁ ପ୍ରକଳ୍ପ ସଂସ୍ଥା ମାଧ୍ୟମରେ ୧୨ ଟି ଜିଲ୍ଲାର ୮୪ ଟି ଗ୍ରାମପଚାଂୟତର ୨୦୧୯ଟି ଗ୍ରାମରେ କାର୍ଯ୍ୟକାରୀ ହେବ । ୮ ବର୍ଷ ଅବଧିର ଏହି ପ୍ରକଳ୍ପର ମୋଟ ଆର୍ଥିକ ବ୍ୟୟ ଅଟକଳ ୭୯୫.୪୧ କୋଟି ଟଙ୍କା ରଖାଯାଇଅଛି । ସମୁଦାୟ ୬୨,୩୫୯ ପରିବାର ଏହି କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହେବେ । ଆଦିମ ଜନଜାତିମାନଙ୍କର ଜୀବନଧାରଣ ମାନରେ ଉନ୍ନତି ତଥା ଦାରିଦ୍ର୍ୟ ଦୂରୀକରଣ ଏହି କାର୍ଯ୍ୟକ୍ରମର ମୁଖ୍ୟ ଉଦ୍ଦେଶ୍ୟ ।

# ସଂଖ୍ୟାଲଘୁଙ୍କ କଲ୍ୟାଣରେ ଓଡ଼ିଶା ସରକାର

- ସଂଖ୍ୟା ଲଘୁ ବସବାସ କରୁଥିବା ଅଞ୍ଚଳରେ ୧୭ କୋଟି ଟଙ୍କା ବ୍ୟୟରେ ୧୦୦ଗୋଟି ବହୁମୁଖୀ ଗୋଷ୍ଠୀ ତଥା ସାଂସ୍କୃତିକ କେନ୍ଦ୍ର ନିର୍ମାଣ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି ।
- ପିଲାଙ୍କ ଶିକ୍ଷାର ବିକାଶ ପାଇଁ ୧୦୦ଟି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ନିମନ୍ତେ ୬ କୋଟି ଟଙ୍କାର ଆର୍ଥିକ ସହାୟତା ପ୍ରଦାନ । ଏହାଦ୍ୱାରା ଶିକ୍ଷାନୁଷ୍ଠାନଗୁଡ଼ିକର ଅତିରିକ୍ତ ଶ୍ରେଣୀଗୃହ ନିର୍ମାଣ, କମ୍ପ୍ୟୁଟର ଗୃହ, ବିଜ୍ଞାନାଗାର ଓ ପାଠାଗାର ନିର୍ମାଣ ସହ ଆବଶ୍ୟକୀୟ ଉପକରଣ ଯଥା କମ୍ପ୍ୟୁଟର, ପୁସ୍ତକ ଓ କ୍ରୀଡ଼ା ଉପକରଣ କ୍ରୟ କରାଯାଇପାରିବ ।
- ସରକାରୀ ଶିକ୍ଷାନୁଷ୍ଠାନ / ରାଜ୍ୟ ସରକାରଙ୍କ ସାହାଯ୍ୟପ୍ରାପ୍ତ ଶିକ୍ଷାନୁଷ୍ଠାନ ଓ ସ୍ୱୀକୃତିପ୍ରାପ୍ତ ଶିକ୍ଷାନୁଷ୍ଠାନଗୁଡ଼ିକରେ ପ୍ରାକ୍–ମାଟ୍ରିକ ସ୍ତରରେ ୧୦୦୦ ଏବଂ ଉଚ୍ଚ ଶିକ୍ଷାର ବିକାଶ ନିମନ୍ତେ ମାଟ୍ରିକ ପରବର୍ତ୍ତୀ ସ୍ତରରେ ୩୦୦୦ ସଂଖ୍ୟାଲଘୁ ଛାତ୍ରଛାତ୍ରୀମାନଙ୍କ ପାଇଁ ଆବାସିକ ସୁଯୋଗ ସୃଷ୍ଟି ନିମନ୍ତେ ପଦକ୍ଷେପ ।
- ହଜ୍ ଯାତ୍ରୀମାନଙ୍କର ସାମୟିକ ରହଣି ସୁବିଧା ପାଇଁ ରାଜ୍ୟ ସରକାରଙ୍କ ଭୁବନେଶ୍ୱରରେ ଏକ ହଜ୍ ଭବନ ନିର୍ମାଣ କରିବା ପାଇଁ ୬.୭୩ କୋଟି ଟଙ୍କାର ପ୍ରାଥମିକ ବ୍ୟୟ ଅଟକଳ ।
- ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକମାନଙ୍କର ସର୍ବବିଧ ଉନ୍ନତି ନିମନ୍ତେ ବିଭିନ୍ନ ବିଭାଗକୁ ସେମାନଙ୍କର ମୋଟ ବଜେଟ୍‌ର ୫ ପ୍ରତିଶତ ଅର୍ଥ ସଂଖ୍ୟାଲଘୁଙ୍କ ପାଇଁ ଖର୍ଚ୍ଚ କରିବା ନିମନ୍ତେ ପରାମର୍ଶ ।

# ଅନୁସୂଚିତ ଜନଜାତିଙ୍କ ଜୀବନ ଓ ଜୀବିକାରେ ପରିଦୃଶ୍ୟ ପରିବର୍ତ୍ତନ ଆଣିବା ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସଦାସର୍ବଦା ଚେଷ୍ଟିତ

- ପୁରୁଷାନୁକ୍ରମେ ଜଙ୍ଗଲରେ ବସବାସ କରି ଆସୁଥିବା ଅନୁସୂଚିତ ଜନଜାତି ଏବଂ ଅନ୍ୟାନ୍ୟ ପାରମ୍ପରିକ ବନବାସୀମାନଙ୍କର ଅଧିକାରକୁ ନଥିଭୁକ୍ତ କରାଯାଇ ସେମାନଙ୍କୁ ଅଧିକୃତ ଜମି ଏବଂ ଜଙ୍ଗଲ ଅଧିକାର ସ୍ୱୀକୃତି ପ୍ରଦାନ କରିବାରେ ଓଡ଼ିଶା ସମଗ୍ର ଦେଶରେ ଏକ ଅଗ୍ରଣୀ ରାଜ୍ୟ ଭାବେ ପରିଗଣିତ ହୋଇଛି ।



## ଜଙ୍ଗଲ ଅଧିକାର ଆଇନ କାର୍ଯ୍ୟକାରୀ କରିବାରେ ଓଡ଼ିଶା ଆଗୁଆ

- ରାଜ୍ୟରେ ମୋଟ ୩,୭୧,୪୭୧ ଜଣ ହିତାଧିକାରୀଙ୍କୁ ୫,୬୮,୩୬୪ ଏକର ଜଙ୍ଗଲ ଜମିର ବ୍ୟକ୍ତିଗତ ଅଧିକାର ଏବଂ ୫,୧୫୧ଟି ଗୋଷ୍ଠୀଙ୍କୁ ୧,୯୧,୧୩୧ ଏକର ଜଙ୍ଗଲଜମିର ଗୋଷ୍ଠୀ ଅଧିକାର ପ୍ରଦାନ କରାଯାଇଅଛି ।

- ବ୍ୟକ୍ତିଗତ ଜଙ୍ଗଲ ଜମି ପଟ୍ଟା ପାଇଥିବା ୩,୭୧,୪୭୧ ଜଣ ହିତାଧିକାରୀମାନଙ୍କ ମଧ୍ୟରୁ ୨,୩୦,୧୫୦ ଜଣଙ୍କୁ ବିଭିନ୍ନ ସାମାଜିକ ସୁରକ୍ଷା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଅଛି ।

# ଜନଜାତିଙ୍କ ଜୀବନଧାରଣ ପାଇଁ ନୂଆ ଉତ୍ସାହ

## ଜୀବିକା ନିର୍ବାହ ପାଇଁ ନୂତନ ଉପକ୍ରମ





ଅନୁସୂଚିତ ଜନଜାତିମାନଙ୍କର ଜୀବିକା ନିର୍ବାହ ପନ୍ଥାର ଉନ୍ନତିକରଣ ଏବଂ ପରିଚାଳନା କରିବା ନିମନ୍ତେ ୨୦୧୨–୧୩ ଆର୍ଥିକ ବର୍ଷ ଠାରୁ ଫୋକସ୍ ଅଞ୍ଚଳ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଏହି ଯୋଜନାରେ ବିଭିନ୍ନ ପ୍ରକାର କୃଷି ଏବଂ ଅଣକୃଷିଭିତ୍ତିକ କାର୍ଯ୍ୟକ୍ରମ ଯଥା ରବର ଚାଷ, ଉଦ୍ୟାନ କୃଷି, ଚାରା ରୋପଣ, ବ୍ୟବସାୟଭିତ୍ତିକ ମତ୍ସ୍ୟ ଚାଷ, କୁକୁଡାଚାଷ, ଛେଳି ଚାଷ ଇତ୍ୟାଦି କାର୍ଯ୍ୟକ୍ରମ ଜରିଆରେ ଅନୁସୂଚିତ ଜନଜାତିମାନଙ୍କର ଜୀବିକା ନିର୍ବାହରେ ଉନ୍ନତି ପରିଲକ୍ଷିତ ହୋଇଛି । ଏତଦ୍‌ବ୍ୟତୀତ, ବିଭିନ୍ନ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ କ୍ଷୁଦ୍ର ବ୍ୟବସାୟ କରିବା ନିମନ୍ତେ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଅନୁସୂଚିତ ଜନଜାତିମାନଙ୍କର ଆର୍ଥିକ ଉନ୍ନତି ପାଇଁ ୫ଟି ଆଇ.ଟି.ଡି.ଏର ୮୫୪୧ ଏକର ଜମିରେ ରବର ଚାଷ କରାଯାଇଅଛି । ଏହାଦ୍ୱାରା ୭୧୯୬ଟି ଜନଜାତି ପରିବାର ଉପକୃତ ହୋଇଛନ୍ତି । ଏଥିରୁ, ହିତାଧିକାରୀମାନେ ବାର୍ଷିକ ହାରାହାରି ଏକର ପିଛା ୭୦,୦୦୦ ରୁ ୯୦,୦୦୦ ଟଙ୍କା ରୋଜଗାର କରିପାରୁଛନ୍ତି । ଭୂମିହୀନ ଜନଜାତିମାନଙ୍କର ଆର୍ଥିକ ଉନ୍ନତି ନିମନ୍ତେ ୪ଟି ଆଇ.ଟି.ଡି.ଏରେ ରେଶମ ଚାଷକୁ ପ୍ରୋତ୍ସାହନ ଦିଆଯାଉଅଛି । ୧୨୫୪ଟି ଜନଜାତି ପରିବାରକୁ ରେଶମ ଚାଷ ନିମନ୍ତେ ଟସର ସୋସାଇଟି ମାଧ୍ୟମରେ ଋଣ ପ୍ରଦାନ କରାଯାଇଅଛି । ଏହାଦ୍ୱାରା ପ୍ରତ୍ୟେକ ହିତାଧିକାରୀ ହାରାହାରି ବାର୍ଷିକ ୯୦,୦୦୦ ଟଙ୍କା



ରୋଜଗାର କରିପାରୁଛନ୍ତି। ସେହିପରି କଫି ଚାଷ ନିମନ୍ତେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ୮୮୫ ଜଣ ଚାଷୀଙ୍କୁ ସହାୟତା ପ୍ରଦାନ କରାଯାଇଅଛି, ଯଦ୍ଦ୍ୱାରା ପ୍ରତ୍ୟେକ ଚାଷୀ ଏବେ ଏକର ପିଛା ବାର୍ଷିକ ୩୦,୦୦୦ ରୁ ୪୫,୦୦୦ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରୁଛନ୍ତି।

## ସାମାଜିକ ସୁରକ୍ଷା ଓ ସମାନତା

- ସାଧାରଣ ନାଗରିକ ସୁରକ୍ଷା ଅଧିନିୟମ ୧୯୫୫ ଏବଂ ଅନୁସୂଚିତ ଜନଜାତି ଓ ଜାତି ଅତ୍ୟାଚାର/ନୃଶଂସତା ଅଧିନିୟମ ୧୯୯୮ର କଡ଼ାକଡ଼ି ପାଳନ ।
- ଅତ୍ୟାଚାର ଶିକାର ହେଉଥିବା ପରିବାରମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ। ୨୦୧୫–୧୬ ଆର୍ଥିକ ବର୍ଷରେ ଏପରି ୧୧୮୮ ପରିବାରଙ୍କୁ ମୋଟ ୪ କୋଟି ୧୯ ଲକ୍ଷ ଟଙ୍କାର ସହାୟତା ପ୍ରଦାନ ।
- ଅସ୍ପୃଶ୍ୟତା ନିବାରଣ ନିମନ୍ତେ ଆନ୍ତଃଜାତି ବିବାହ କରିଥିବା ଦମ୍ପତ୍ତିମାନଙ୍କୁ ଏକ ଲକ୍ଷ ଟଙ୍କାର ଆର୍ଥିକ ପ୍ରୋତ୍ସାହନ ।
- ଆଇନ୍ ସହାୟତା ତଥା ତ୍ୱରିତ ମାମଲା ଫଇସଲା ନିମନ୍ତେ ଆଇନ୍ ସହାୟତା କେନ୍ଦ୍ର ଏବଂ ସ୍ୱତନ୍ତ୍ର ବିଚାରାଳୟମାନ ପ୍ରତିଷ୍ଠା।

# ୧୬୭୦ ଆବାସିକ ଶିକ୍ଷାନୁଷ୍ଠାନ : ୪ ଲକ୍ଷ ୬୦ ହଜାର ଛାତ୍ରଛାତ୍ରୀ

**ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପାଇଁ ସଂଖ୍ୟାଧିକ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରିବାରେ ଓଡ଼ିଶା ଅଗ୍ରଣୀ**

- ଶିକ୍ଷା ହେଉଛି ସର୍ବାଙ୍ଗୀନ ବିକାଶର ଏକ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ। ଏହାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କ ଶିକ୍ଷାମାନରେ ଅଭିବୃଦ୍ଧି ଆଣିବା ନିମନ୍ତେ ବିଭିନ୍ନ ସୁବିଧା ସୁଯୋଗ ଯୋଗାଇଦେବା ସହ ଏ ଦିଗରେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେଇଆସୁଛନ୍ତି।
- ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ପିଲାମାନଙ୍କର ଶିକ୍ଷାର ଉନ୍ନତି ନିମନ୍ତେ ରାଜ୍ୟ ସରକାର ସମଗ୍ର ରାଜ୍ୟରେ ୧୬୭୦ଟି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଅଛନ୍ତି। ଏହି ସମସ୍ତ ଶିକ୍ଷାନୁଷ୍ଠାନଗୁଡିକରେ ଆବାସିକ ବ୍ୟବସ୍ଥା ଥିବାରୁ ଦୁର୍ଗମ ଅଂଚଳର ଆଦିବାସୀ ଛାତ୍ରଛାତ୍ରୀମାନେ ପାଠ ପଢିବାର ସୁଯୋଗ ପାଉଛନ୍ତି। ଓଡିଶା ହେଉଛି ଏକମାତ୍ର ରାଜ୍ୟ ଯେଉଁଠାରେ ନିଜ ସମ୍ବଳରେ ରାଜ୍ୟ ସରକାର ଅଧିକ ସଂଖ୍ୟାରେ ଆବାସିକ ବିଦ୍ୟାଳୟ ବ୍ୟବସ୍ଥା କରିଛନ୍ତି ।
- ପ୍ରାଥମିକଠାରୁ ମାଧ୍ୟମିକ ଶ୍ରେଣୀ ପର୍ଯ୍ୟନ୍ତ ୪ ଲକ୍ଷ ୬୦ ହଜାରରୁ ଅଧିକ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ଛାତ୍ରଛାତ୍ରୀମାନେ ଏହି ଆବାସିକ ବିଦ୍ୟାଳୟମାନଙ୍କରେ ଶିକ୍ଷାଲାଭ କରୁଛନ୍ତି। ରାଜ୍ୟ ସରକାର ଛାତ୍ରଛାତ୍ରୀମାନଙ୍କର ମାଗଣାରେ ଖାଇବା, ରହିବା, ପାଠ୍ୟପୁସ୍ତକ, ପୋଷାକ ଇତ୍ୟାଦି ସହିତ ସମସ୍ତ ଆନୁଷଙ୍ଗିକ ପାଠପଢା ଖର୍ଚ୍ଚ ବହନ କରୁଛନ୍ତି।



- ରାଜ୍ୟ ସରକାର ଛାତ୍ରଛାତ୍ରୀମାନଙ୍କୁ ଉଚ୍ଚଶିକ୍ଷା ସୁଯୋଗ ଦେବା ନିମନ୍ତେ ନିୟମିତ ଭାବେ ବିଦ୍ୟାଳୟଗୁଡ଼ିକୁ ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ସ୍ତରକୁ ଉନ୍ନୀତ କରୁଛନ୍ତି ।

- ଗତ ତିନି ବର୍ଷରେ ରାଜ୍ୟ ସରକାର ୨୦୦୦ରୁ ଅଧିକ ଛାତ୍ର/ଛାତ୍ରୀ ନିବାସ ନିର୍ମାଣ କରିଛନ୍ତି । ଏବେ ମଧ୍ୟ ୮୫୦ଟି ହଷ୍ଟେଲର ନିର୍ମାଣ କାମ ଦ୍ରୁତ ଗତିରେ ଆଗେଇ ଚାଲିଛି ।

- ଖୁବ୍ ଶୀଘ୍ର ୨୦କୋଟି ଟଙ୍କା ବ୍ୟୟରେ ରାଜ୍ୟ ସରକାର ନିଜସ୍ୱ ସମ୍ବଳରୁ ଆଦିବାସୀ ଉପଯୋଜନା ଅଂଚଳରେ ଜବାହର ନବୋଦୟ ବିଦ୍ୟାଳୟ ଢ଼ାଞ୍ଚାରେ ୧୦ ଗୋଟି କଳିଙ୍ଗ ଆଦର୍ଶ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଯାଉଛନ୍ତି ।

- ପିଲାମାନଙ୍କର ନିରବଚ୍ଛିନ୍ନ ପାଠପଢ଼ାକୁ ପ୍ରୋତ୍ସାହିତ କରିବା ନିମନ୍ତେ ଛାତ୍ରବୃତ୍ତି ବ୍ୟବସ୍ଥା କରିଅଛନ୍ତି । ପ୍ରଥମ ଶ୍ରେଣୀରୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନରତ ୧୧ ଲକ୍ଷ ୩୦ ହଜାର ଛାତ୍ରଛାତ୍ରୀମାନଙ୍କ ପାଇଁ ୨୦୧୫–୧୬ ଆର୍ଥିକ ବର୍ଷରେ ରାଜ୍ୟ ସରକାର ୪୦୧ କୋଟି ୯୬ ଲକ୍ଷ ଟଙ୍କା ପ୍ରାକ୍ ମାଟ୍ରିକ୍ ଛାତ୍ର ବୃତ୍ତି ପ୍ରଦାନ କରିଛନ୍ତି ।

- ରାଜ୍ୟ ତଥା ରାଜ୍ୟ ବାହାରେ ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷାଲାଭ କରୁଥିବା ୩ ଲକ୍ଷ ୨୪ ହଜାରରୁ ଊର୍ଦ୍ଧ୍ୱ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀମାନଙ୍କୁ ୨୦୧୫–୧୬ରେ ୨୯୮ କୋଟି ୫୮ ଲକ୍ଷ ଟଙ୍କା ମାଟ୍ରିକ ପରବର୍ତ୍ତୀ ଛାତ୍ରବୃତ୍ତି ବାବଦରେ ପ୍ରଦାନ କରାଯାଇଛି ।

- ଏହି ବର୍ଗର ଛାତ୍ରଛାତ୍ରୀଙ୍କୁ ମାଧ୍ୟମିକ ଶିକ୍ଷା ସଂପୂର୍ଣ୍ଣ କରିବା ନିମନ୍ତେ ପ୍ରୋତ୍ସାହିତ କରିବା ପାଇଁ ରାଜ୍ୟ ସରକାର ସରକାରୀ ଓ ସରକାରୀ ଅନୁଦାନ ପ୍ରାପ୍ତ ବିଦ୍ୟାଳୟଗୁଡ଼ିକର ନବମ ଓ ଦଶମ ଶ୍ରେଣୀର ଛାତ୍ରଛାତ୍ରୀଙ୍କୁ ଟିଉସନ ଫି ଓ ବୋର୍ଡ ପରୀକ୍ଷା ଫି ଛାଡ କରିଛନ୍ତି ।

## ଅନ୍ୱେଷା : ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ପିଲାଙ୍କ ପାଇଁ ଗୁଣାତ୍ମକ ଶିକ୍ଷାର ନୂତନ ଦିଶା

'ଅନ୍ୱେଷା' ରାଜ୍ୟର ଅନୁସୂଚିତ ଜନଜାତି ଓ ଜାତି ବର୍ଗର ପିଲାମାନଙ୍କୁ ଅଗ୍ରଣୀ ଘରୋଇ ବିଦ୍ୟାଳୟମାନଙ୍କରେ ସମ୍ପୂର୍ଣ୍ଣ ସରକାରୀ ଅନୁଦାନରେ ଗୁଣାତ୍ମକ ଶିକ୍ଷା ପ୍ରଦାନ କରିବା ପାଇଁ ଓଡ଼ିଶା ସରକାରଙ୍କର ଏକ ଯୁଗାନ୍ତକାରୀ କାର୍ଯ୍ୟକ୍ରମ । ପିତାମାତାଙ୍କର ମନରେ ସେମାନଙ୍କ ସନ୍ତାନସନ୍ତତିମାନଙ୍କୁ ଅଗ୍ରଣୀ ଘରୋଇ ବିଦ୍ୟାଳୟରେ ଗୁଣାତ୍ମକ ଶିକ୍ଷା ଲାଭ କରିବାର ସ୍ୱପ୍ନକୁ ସାକାର କରିବା ପାଇଁ ଏକ ମହନୀୟ ଉଦ୍ୟମ ।

ପ୍ରତି ବର୍ଷ ୫୦୦୦ ଅନୁସୂଚିତ ଜାତି ଓ ଜନଜାତି ବର୍ଗର ପିଲାମାନଙ୍କୁ ଜିଲ୍ଲାର ସହରାଞ୍ଚଳରେ ସ୍ଥାପିତ ଅଗ୍ରଣୀ ଘରୋଇ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଥମ ଶ୍ରେଣୀରେ ନାମ ଲେଖାଇ ସେମାନଙ୍କୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ପ୍ରଦାନ କରିବା ଏହି କାର୍ଯ୍ୟକ୍ରମର ମୂଳ ଉଦ୍ଦେଶ୍ୟ । ଗତବର୍ଷ ପ୍ରାୟ ୨୭୦୦ ପିଲା ଏହି କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହୋଇଛନ୍ତି ଏବଂ ପ୍ରତି ବର୍ଷ ୫ ହଜାର ଛାତ୍ରଛାତ୍ରୀ ଏହି କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହେବାର ଲକ୍ଷ୍ୟ ରଖାଯାଇଛି । ପିଲାମାନଙ୍କର ସମସ୍ତ ପାଠପଢ଼ା ଖର୍ଚ୍ଚ ଯଥା ଟିଉସନ୍ ଫି, ବହିପତ୍ର, ପୋଷାକ, ଯାତାୟାତ ଖର୍ଚ୍ଚ ଆଦି ରାଜ୍ୟ ସରକାର ତାଙ୍କର ନିଜସ୍ୱ ସମ୍ବଳରୁ ବହନ କରୁଛନ୍ତି। ଏହା ବ୍ୟତୀତ ପିଲାମାନଙ୍କ ପାଇଁ










ଛାତ୍ରାବାସର ବ୍ୟବସ୍ଥା କରି ସେମାନଙ୍କର ରହିବା ଓ ଖାଇବା ଖର୍ଚ୍ଚ ମଧ୍ୟ ରାଜ୍ୟ ସରକାର ବହନ କରୁଛନ୍ତି । ରାଜ୍ୟର ୧୭ଟି ଜିଲ୍ଲାରେ ଆରମ୍ଭ କରାଯାଇଥିବା ଏହି ନୂତନ ଉପକ୍ରମ ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀମାନଙ୍କ ଶିକ୍ଷାରେ ବୈପ୍ଳବିକ ପରିବର୍ତ୍ତନ ଆଣିବାର ସାମର୍ଥ୍ୟ ରଖିଛି ।

## ଯୋଜନାର ମୁଖ୍ୟାଂଶ

- ସମ୍ପୂର୍ଣ୍ଣ ସରକାରୀ ଅନୁଦାନରେ ବି.ପି.ଏଲ୍. ପରିବାରର ଅନୁସୂଚିତ ଜନଜାତି ଓ ଜାତି ପିଲାଙ୍କୁ (୭୦:୩୦ ଅନୁପାତରେ) ସହରାଞ୍ଚଳରେ ସ୍ଥାପିତ ଅଗ୍ରଣୀ ଘରୋଇ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଥମ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନର ବ୍ୟବସ୍ଥା ।
- ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ୨୫,୦୦୦ ରୁ ଅଧିକ ପିଲାଙ୍କୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯିବାର ଲକ୍ଷ୍ୟ ରହିଛି ।
- ପ୍ରତି ଛାତ୍ର/ଛାତ୍ରୀଙ୍କ ପିଛା ସର୍ବାଧିକ ୨୫,୦୦୦ ଟଙ୍କା ବାର୍ଷିକ ସ୍କୁଲ ଫି ଆକାରରେ ସରକାରଙ୍କ ଦ୍ୱାରା ସମ୍ପୃକ୍ତ ବିଦ୍ୟାଳୟକୁ ପ୍ରଦାନ କରାଯିବ ।
- ଜିଲ୍ଲାସ୍ତରୀୟ ଗଠିତ କମିଟି ଦ୍ୱାରା ବିଭିନ୍ନ ମାନଦଣ୍ଡ ଯଥା ଭିତ୍ତିଭୂମି, ଉପଯୁକ୍ତ ଶିକ୍ଷାଦାନ ସୁବିଧା, ଛାତ୍ର ଶିକ୍ଷକ ଅନୁପାତ, ଶିକ୍ଷାଗତ ପ୍ରଦର୍ଶନ ଆଦିକୁ ଦୃଷ୍ଟିରେ ରଖି ଅଗ୍ରଣୀ ଘରୋଇ ମାଧ୍ୟମ ବିଦ୍ୟାଳୟଗୁଡ଼ିକ ଏହି ଛାତ୍ରଛାତ୍ରୀମାନଙ୍କ ପାଇଁ ଚୟନ କରାଯାଉଛି ।
- ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଗଠିତ ଜିଲ୍ଲାସ୍ତରୀୟ କମିଟି ଦ୍ୱାରା ଲଟେରୀ ମାଧ୍ୟମରେ ଆବେଦନକାରୀ ଛାତ୍ର/ଛାତ୍ରୀଙ୍କୁ ଚୟନ କରାଯିବାର ବ୍ୟବସ୍ଥା କରାଯାଇଛି । ଏହି ଉପକ୍ରମ ଏବେ ସାରା ରାଜ୍ୟରେ ଏହି ବର୍ଗର ପିଲାମାନଙ୍କର ଅଭିଭାବକମାନଙ୍କ ମନରେ ନୂତନ ଆଶା ସଂଚାର କରିଛି ।







# ନୃସିଂହ ପୁରାଣରେ ଶ୍ରୀଜଗନ୍ନାଥ

ଡକ୍ଟର ତୁଳସୀ ଓଝା

କୌଟିଲ୍ୟ ଅର୍ଥଶାସ୍ତ୍ରର ଜୟମଙ୍ଗଳ ଟୀକାରେ ଉଲ୍ଲେଖ ରହିଛି -

ସୃଷ୍ଟି-ପ୍ରବୃତ୍ତି-ସଂହାର ଧର୍ମ ମୋକ୍ଷ ପ୍ରୟୋଜନମ୍
ବ୍ରହ୍ମାଭି-ବିବିଧୌ ପ୍ରୋକ୍ତଂ ପୁରାଣଂ ପଂଚଲକ୍ଷଣମ୍ ।

ଅର୍ଥାତ୍ ସୃଷ୍ଟି ପ୍ରବୃତ୍ତି ସଂହାର ଧର୍ମ ଓ ମୋକ୍ଷର ସୂଚନା ଯେଉଁଥିରେ ସନ୍ନିବେଶିତ ହୋଇଥାଏ, ତାହାକୁ ପୁରାଣ କୁହାଯାଏ । ବ୍ୟାସ ଯେଉଁ ଅଷ୍ଟାଦଶ ପୁରାଣ ରଚନା କରିଥିଲେ, ତାହାକୁ ଗୁଣର ଆଧାରରେ ସାତ୍ତ୍ୱିକ, ରାଜସ ଏବଂ ତାମସ ଭେଦରେ ବର୍ଗୀକରଣ କରାଯାଇଥିଲେ ମଧ୍ୟ ଏହାର ମୂଳ ଉଦ୍ଦେଶ୍ୟ ହେଉଛି ସୃଷ୍ଟିରେ ଧାର୍ମିକ ଚେତନାର ଉଦ୍‌ବର୍ଦ୍ଧନ କରିବା ତଥା ଆବଶ୍ୟକତାନୁସାରେ ମନୁଷ୍ୟ କିପରି ଭାବରେ ଧର୍ମ ଅର୍ଥ କାମ ଓ ମୋକ୍ଷ ମଧ୍ୟରେ ସାମଞ୍ଜସ୍ୟ ରକ୍ଷା କରି ପାରିବ ତା'ର ସୂଚନା ତଥା ଅବବୋଧ ପ୍ରଦାନ କରିବା । ଆପାତତଃ ସମସ୍ତ ପୁରାଣ ଭାରତର ଆଦି ଭାଷା ସଂସ୍କୃତରେ ରଚିତ ହୋଇଥିଲା । କିନ୍ତୁ ପଂଚଦଶ ଶତାବ୍ଦୀର ପ୍ରାରମ୍ଭ କାଳରେ ମାଟିର ମହାକବି ସାରଳାଦାସ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆଣି ଓଡ଼ିଆ ଭାଷାରେ ବିଶାଳ ମହାଭାରତ ଓ ଚଣ୍ଡୀପୁରାଣ ରଚନା କଲେ, ତାହା ଭାରତର ବିଭିନ୍ନ ଆଂଚଳିକ ଭାଷାକୁ ପ୍ରଭାବିତ ଓ ପ୍ରଣୋଦିତ କଲା । ବ୍ୟାସ ରଚିତ ପୁରାଣମାନ ବହୁ ଆଂଚଳିକ ଭାଷାରେ ରଚିତ ହେବାକୁ ଆରମ୍ଭ କଲା । ଓଡ଼ିଶାରେ ମଧ୍ୟ ଏହି ଧାରା ପ୍ରବାହିତ ହେଲା । ଷୋଡ଼ଶ ଶତାବ୍ଦୀର ବିଦ୍ୱାନ ପଣ୍ଡିତ ପ୍ରସିଦ୍ଧ ପଂଚସଖା ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ବେଦ ବେଦାନ୍ତ ଉପନିଷଦ ତଥା ଅଷ୍ଟାଦଶ ପୁରାଣରେ ପାଣ୍ଡିତ୍ୟ ଅର୍ଜନ କଲା ପରେ ଓଡ଼ିଆ ଭାଷାରେ ଅସଂଖ୍ୟ ଗ୍ରନ୍ଥ ରଚନା କଲେ- ସେଥିମଧ୍ୟରେ ପୁରାଣ-ଯାହା ସାଧାରଣ ଜନତାଙ୍କର ଅପହଂଚ ଦୂରତାରେ ଥିଲା ତାକୁ ସ୍ୱଭାଷାରେ ରଚନା କରିବାର ପ୍ରୟାସ ଆରମ୍ଭ କଲେ । ଜଗନ୍ନାଥ ଦାସ ରଚନା କଲେ ଓଡ଼ିଆ ଭାଷାରେ ଶ୍ରୀମଦ୍ ଭାଗବତ, ବଳରାମ ଦାସ ରଚନା କଲେ ଜଗମୋହନ ରାମାୟଣ, ଅଚ୍ୟୁତାନନ୍ଦ ରଚନା କଲେ ହରିବଂଶ । କ୍ରମଶଃ ଏହା ସେହିମାନଙ୍କର ସ୍ୱକୀୟ ରଚନା ଭାବରେ ପରିଗଣିତ ହେବାକୁ ଆରମ୍ଭ କଲା । କାରଣ ଏଥିରେ ଓଡ଼ିଶାର ମାଟିପାଣି ପବନର ସୁବାସ ମହକିତ ହେଲା । କ୍ରମଶଃ ପଂଚସଖାଙ୍କର ପରବର୍ତ୍ତୀ କାଳରେ କାର୍ତ୍ତିକ ଦାସ, ରଘୁନାଥ





ହରିଚନ୍ଦନ, ଧନଞ୍ଜୟ ଭଂଜ, ଭୂପତି ପଣ୍ଡିତ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଉପେନ୍ଦ୍ରଭଂଜ, ବନମାଳୀ ପଟ୍ଟନାୟକ, କେଶବ ଖୁଣ୍ଟିଆ, ବିଶ୍ୱନାଥ ଖୁଣ୍ଟିଆ ଆଦି କବିମାନେ ପୁରାଣର ଅନୁବାଦ ତଥା ପୁରାଣକୁ ଆଧାର କରି କାବ୍ୟମାନ ରଚନା କଲେ । ଏହି ପର୍ଯ୍ୟାୟର ଜଣେ ପ୍ରଭାବଶାଳୀ କବିଥିଲେ ପୀତାମ୍ବର ଦାଶ । ୧୭୩୭ ମସିହାରେ ସେ ଗଂଜାମ ଜିଲ୍ଲାରେ ଜନ୍ମ ଗ୍ରହଣ କରିଥିଲେ । ୧୭୬୯ରେ ସେ ପ୍ରସିଦ୍ଧ ନୃସିଂହପୁରାଣ ରଚନା କରିଥିଲେ । ପଂଚସଖୀୟ ପରଂପରା ଅନୁଯାୟୀ ଏହା ମଧ୍ୟ ସଂସ୍କୃତ ନୃସିଂହପୁରାଣର ପୂର୍ଣ୍ଣ ଅନୁବାଦ ନୁହେଁ । କାରଣ ସେତେବେଳକୁ ମହାପ୍ରଭୁ ଶ୍ରୀଜଗନ୍ନାଥ ଓଡିଆ କାବ୍ୟ ସାହିତ୍ୟର ପ୍ରାଣକେନ୍ଦ୍ର ଭାବରେ ପ୍ରତିଷ୍ଠିତ ହୋଇ ସାରିଥିଲେ । ତେଣୁ ପ୍ରତ୍ୟେକ ବୈଷ୍ଣବ କବି ଯେଉଁମାନେ ବିଷ୍ଣୁଙ୍କୁ ଆଧାରପୁରୁଷ କରି ଯେଉଁ ପୁରାଣମାନ ରଚନା କଲେ, ସେଥିରେ ଶ୍ରୀଜଗନ୍ନାଥ ମହାପ୍ରଭୁ ହିଁ ଲୀଳା ପୁରୁଷ ଭାବରେ ଆବିର୍ଭୂତ ହେଲେ । 'ନୃସିଂହ ପୁରାଣ' ଏହାର ଏକ ଚରମ ଅଭିବ୍ୟକ୍ତି, ଦେବୀଗୋସାମଣିଙ୍କ ଆଦେଶରେ ସେ ନୃସିଂହ ପୁରାଣ ରଚନା ନିମିତ୍ତ ଆଜ୍ଞା ପ୍ରାପ୍ତ ହେଲେ । ପ୍ରଥମ ସାଗରରେ ସେ ନୃସିଂହ ଭଗବାନଙ୍କର ବନ୍ଦନା କରି ଗ୍ରନ୍ଥ ଆରମ୍ଭ କରିଥିଲେ ମଧ୍ୟ ଅବଲୀଳାକ୍ରମେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଲୀଳା ବର୍ଣ୍ଣନାରେ ଶତମୁଖ ହୋଇ ପଡିଛନ୍ତି । ଏହା ହିଁ ଏହି ନିବନ୍ଧରେ ଆଲୋଚିତ ହୋଇଛି । ରସ କଳ୍ପଦ୍ରୁମରେ ବର୍ଣ୍ଣିତ ହୋଇଛି –

'ଅବତାରତ୍ରୟଂ ବିଷ୍ଣୋର୍ଭକ୍ଷଦୌକ୍ରଳ ରାକ୍ଷସାଃ
ଶେଷାବତାର ରକ୍ଷାର୍ଥଂ ନରସିଂହ ବନଂଗତଃ ।'

କଚ୍ଛପ ଓ ବରାହ ଆଦି ବିଷ୍ଣୁଙ୍କର ଆଦ୍ୟ ଅବତାରମାନଙ୍କୁ ରାକ୍ଷସମାନେ ନିଜ ଭୋଜ୍ୟ ବସ୍ତୁ ଭାବରେ ଗ୍ରହଣ କରିବା ଫଳରେ ଭଗବାନ ବିଷ୍ଣୁ ନିଜକୁ ନର ଏବଂ ପଶୁର ସମାହାରରେ ଏକ ବିଚିତ୍ର ତଥା ବଳଶାଳୀ ନରସିଂହ ରୂପରେ ଆବିର୍ଭୂତ କରାଇଲେ ଯେ କି ରାକ୍ଷସ ନିଧନ ନିମିତ୍ତ ସମର୍ଥ ହୋଇପାରିବ ଅତଏବ ଅବତାର ପରଂପରାରେ ନୃସିଂହ ହିଁ ସର୍ବପ୍ରଥମ ଅର୍ଚ୍ଚାବତାର ।

ସ୍ୱାତୀ ନକ୍ଷତ୍ର ସଂଯୁକ୍ତ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଶନିବାର ପ୍ରଦୋଷ କାଳରେ ଏକ କାଷ୍ଠ ସ୍ତମ୍ଭ ମଧ୍ୟରୁ ନରସିଂହଙ୍କର ଆବିର୍ଭାବ ହୋଇଥିଲା । ମହାପ୍ରଭୁଙ୍କର ଏହି ଆବିର୍ଭାବ ଅତ୍ୟନ୍ତ ତତ୍ତ୍ୱ ନିଷ୍ଠ । ବ୍ରହ୍ମନିର୍ଗୁଣ କିନ୍ତୁ ସେ ସମସ୍ତ ଜାଗତିକ ବସ୍ତୁ କାଷ୍ଠ, ପାଷାଣ, ତରୁ ତୃଣ ମଧ୍ୟରେ ନିବାସ କରନ୍ତି ଏବଂ ହିରଣ୍ୟକଶିପୁ ରୂପକ ଅଜ୍ଞାନର ଚିତ୍ତ ବିଦାରଣ କରି ପ୍ରହ୍ଲାଦ ରୂପକ ଚେତନାର ଉଦ୍‌ବର୍ତ୍ତନ । ଏହା ହିଁ ନୃସିଂହ ଅବତାରର ମୂଳତତ୍ତ୍ୱ । ଏଣୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପର୍ବପର୍ବାଣିରେ ନୃସିଂହ ଉପାସନାର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ । ଏହାର ପ୍ରାରମ୍ଭ ଇନ୍ଦ୍ରଦ୍ୟୁମ୍ନଙ୍କଠାରୁ ହୋଇଥିଲା । ଅବନ୍ତୀରାଜ ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ନୀଳମାଧବଙ୍କ ସନ୍ଧାନ କରି ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ, ସେତେବେଳେ ସେ ନିଜର ଗୃହଦେବତା ନୃସିଂହଦେବ ଓ ଦୁର୍ଗାଦେବୀଙ୍କୁ ଏକ ଶିବିକାରେ ଆରୋହଣ କରାଇ ତତ୍‌ପଶ୍ଚାତରେ ନିଜେ ଗମନ କରିଥିଲେ ଏବଂ ଶ୍ରୀକ୍ଷେତ୍ରରେ ପ୍ରବେଶ କରି ପ୍ରଥମେ ଆଦି ନୃସିଂହଙ୍କୁ ପ୍ରତିଷ୍ଠା କରାଇଥିଲେ । ନୃସିଂହଙ୍କର କୃପାରୁ ଦାରୁବ୍ରହ୍ମଙ୍କର ଆବିର୍ଭାବ ସଂଭବ ହୋଇଥିଲା । ଏହି ସୂତ୍ରକୁ ଅବଲମ୍ବନ କରି ଓଡିଆ ଭାଷାରେ ରଚିତ ପୀତାମ୍ବର ଦାସଙ୍କ ନୃସିଂହ ପୁରାଣରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର କ୍ଷେତ୍ର ମାହାତ୍ମ୍ୟ, ଆବିର୍ଭାବ, ଶ୍ରୀମନ୍ଦିର, ରାସମଣ୍ଡଳ, ପୂଜାବିଧି ଯାନିଯାତ୍ରା ଆଦିର ବିସ୍ତୃତ ଚିତ୍ର ବର୍ଣ୍ଣିତ ହୋଇଛି ।

ନୀଳଗିରି ମାହାତ୍ମ୍ୟ–(ନୀଳଗିରି)–ନୃସିଂହପୁରାଣ ଅନୁଯାୟୀ ଏକ ସାଧାରଣ ଭୂଖଣ୍ଡ ମାତ୍ର ନୁହଁ । ଏକଦା କୃଷ୍ଣବଲ୍ଲଭ ରାଜାଙ୍କ ଗୃହରେ ଶ୍ରୀ ନାରାୟଣ ଏବଂ ଅନନ୍ତ ଜନ୍ମଲାଭ କରିଥିଲେ ଏବଂ ଆନନ୍ଦ ବନ ନାମକ ସ୍ଥାନରେ ବାସ କରୁଥିଲେ । ହିରଣ୍ୟ ଓ ହିରଣାକ୍ଷର ମୃତ୍ୟୁରେ କ୍ରୋଧାନ୍ୱିତ ହୋଇ ମୁର ଦାନବ ଅନନ୍ତ ନାରାୟଣଙ୍କୁ ମୃତାହତ କରିବା ଉଦ୍ଦେଶ୍ୟରେ ଆନନ୍ଦ ବନକୁ ଉତ୍ପାଟନ କରି ସମୁଦ୍ର ଗର୍ଭକୁ ଫିଙ୍ଗି ଦେବାର କଳ୍ପନା କଲା ।



'ମନ୍ତ୍ରୀକି ବୋଇଲେ ଦେଖ ମୋ ବଳବୀର୍ଯ୍ୟମାନ
ଆନନ୍ଦ ବନଖଣ୍ଡକ ଦେବଇଁ ଉପାଡି
ମରନ୍ତୁଯେ ଦୁଇଭାଇ ସିନ୍ଧୁ ମଧ୍ୟେ ପଡି । '

ଏହା ଦେଖି ମହାପ୍ରଭୁ ଦାମୋଦର ଚିନ୍ତାକଲେ ଏହି ଆନନ୍ଦବନ ଅତ୍ୟନ୍ତ ପବିତ୍ର ତଥା ଅନେକ ଔଷଧୀୟ ବୃକ୍ଷଲତାରେ ପରିପୂର୍ଣ୍ଣ । ଏହା ମର୍ତ୍ତ୍ୟପୁର ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ତେଣୁ ଅଚିରେ ଏହାକୁ ସ୍ୱର୍ଗକୁ ନେଇଯିବା ଉଚିତ୍ । ସ୍ୱର୍ଗଲୋକରେ ଏହା ଇନ୍ଦ୍ରପୁରୀରେ ନନ୍ଦନ କାନନ ରୂପରେ ଅବସ୍ଥାନ କରିବ ।

'ଅସୁର ମଲାକୁ ତେଜିଯିବା ନିଜପୁରୀ
ଫିଙ୍ଗୁ ଏ ବନକୁ ଦୈତ୍ୟ ସ୍ୱର୍ଗେ ହେବ ଶିରୀ ।'

କିନ୍ତୁ ମହାପ୍ରଭୁ ସ୍ଥିର କଲେ-

'ଏ ଆନନ୍ଦ ବନ ହେବ ଯେ ନନ୍ଦନବନ
ଯଜ୍ଞବେଦୀ ପଡୁ ଯାଇ ନୀଳ ଗିରିସ୍ଥାନ
ଗୁଣ୍ଡିଚା ନଗ୍ରେ ପୁରୁଷୋତ୍ତମେ ଯାଇ ପଡି
ରହିବେ ତହିଁରେ ପ୍ରଭୁ ନୀଳଗିରି ଛାଡି
ବସିବେ ବାହୁଡା ବିଜେ ସାରି ନୀଳାଚଳ
ଏକଥା କଳିଯୁଗରେ ଦେଖିବେ ସକଳ ।'

X X X

ଆଡପ ମଣ୍ଡପ ଯାଇ ହେଉ ଯଜ୍ଞବେଦୀ
ଏତକ ପାଞ୍ଚି ଆନନ୍ଦ ହେଲେ ଦୟାନିଧି ।

X X X

ଶ୍ରୀ ଯଜ୍ଞବେଦୀ ପୁରୁଷୋତ୍ତମେ ଦେଲେ ସଞ୍ଚି
ନୃସିଂହ ବିହାର କରନ୍ତି ଯେ କାଳ ବଞ୍ଚି ।

(ନୃ.ପୁ. ୫/ ପୃ/୩୨.୩୩)

ଏହି ଯଜ୍ଞବେଦୀ ଉପରେ ଦାରୁବ୍ରହ୍ମ ଆବିର୍ଭୂତ ହୋଇଥିଲେ । ସେହି ସ୍ମୃତିରେ ପ୍ରତ୍ୟେକ ବର୍ଷ ସେ ଏହି ଯଜ୍ଞବେଦୀ ପରିଦର୍ଶନ କରିବାକୁ ଆସିଥାନ୍ତି । ଯଜ୍ଞବେଦୀ ବ୍ୟତୀତ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନିତ୍ୟ ରାସସ୍ଥଳୀ ଭାବରେ ନୀଳାଚଳକୁ କବି ମାନ୍ୟତା ପ୍ରଦାନ କରିବା ସହିତ ଏହାକୁ ମର୍ତ୍ତ୍ୟ ବୈକୁଣ୍ଠ ଭାବରେ ମଧ ଚିତ୍ରିତ କରିଛନ୍ତି ଏବଂ ଏହି ସ୍ଥାନ ମଧ ହେଉଛି ମହାପ୍ରଭୁଙ୍କର ନିତ୍ୟ ରାସସ୍ଥଳ । ବଦରିକା ଆଶ୍ରମରେ ଶେଷ ନୃସିଂହ ଜନ୍ମନେଲା ପରେ ସେଠାରେ ଥିବା ନାରୀମାନେ ମହାପ୍ରଭୁ ଶେଷ ନୃସିଂହଙ୍କ ସହିତ ରାସ କ୍ରୀଡା କରିବା ନିମିତ୍ତ ଇଚ୍ଛା ପ୍ରକଟ କରିବାରୁ ନୃସିଂହ ଭଗବାନ ତାଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଯେ ତୁମ୍ଭେମାନେ ମୋର ନିତ୍ୟ ସହଚରୀ ତେଣୁ ସବୁ ଅବତାରରେ ତୁମ୍ଭେମାନେ ମୋ ସହିତ ରହିବ । ରାମ ଅବତାରରେ ମୋ ସହିତ ରହିଥିଲେ ମଧ୍ୟ କେବଳ ଦ୍ୱାପର ଓ କଳି ଯୁଗରେ ମୋ ସହିତ ରାସ କରିବା ନିମିତ୍ତ ତୁମ୍ଭେ ସମର୍ଥ ହେବ ।

'ଶ୍ରୀକୃଷ୍ଣ ଅବତାର ଯେ ହେବି ଏକା ମୁହିଁ
ବତିଶ ସହସ୍ର ତୁମେ ଷୋଳ ସହସ୍ର ଜୀବ ।
ଗୋପରେ ଜନ୍ମି ଗୋପିକା ନାମ ବୋଲାଇବ
ତୁମ୍ଭଙ୍କୁ ଘେନିଣ ରାସ କରିବି ଯମୁନା
ତୁମ୍ଭେ ଯେ ମୋହର ରାସପ୍ରାଣ ବଂଧୁ ସିନା
ସେହି ଅବତାର ଶେଷେ କଳି ଯୁଗେ ଯାଇ
ନୀଳଗିରି ଜଗନ୍ନାଥ ବୋଲାଇବି ମୁହିଁ ।
ତୁମ୍ଭେ ଷୋଳ ସହସ୍ରରୁ ଅଧେ କନ୍ୟା ଜୀବ ।
ପଣ୍ଡା ପଡିହାରୀ ପଶୁପାଳକ ହୋଇବ ।
ଚଙ୍ଗଡା ମେକାପ ଯେ ଦଇତା ପତି ହୋଇ
ସେବା ପୂଜା କରୁଥିବ ମୋ ପାଖରେ ରହି ।'

(ସାଗର ୩/୩୭)

ଏହା ବ୍ୟତୀତ ବୈକୁଣ୍ଠ ହିଁ ମହାପ୍ରଭୁ ଶ୍ରୀବିଷ୍ଣୁଙ୍କର ନିତ୍ୟରାସ ସ୍ଥଳ ଏବଂ ମହାଲକ୍ଷ୍ମୀ ନିତ୍ୟ ବୈକୁଣ୍ଠର ସଂଗିନୀ ଭାବରେ ମହାପ୍ରଭୁଙ୍କର ସମସ୍ତ ଆନନ୍ଦ ରସଘନ ଲୀଳାରେ ସହଚରୀ ହୋଇଥାନ୍ତି । କାରଣ ନିତ୍ୟରାସର ମୂଳ ହେଉଛନ୍ତି ସ୍ୱୟଂ ମହାଲକ୍ଷ୍ମୀ । ପ୍ରତ୍ୟେକ ଲୀଳାରେ ସେ ହିଁ ଅଂଶୀଦାର ।



ତେଣୁ ମହାପ୍ରଭୁ ଯେତେବେଳେ କଳିଯୁଗରେ ନୀଳଗିରିରେ ଅବସ୍ଥାନ କରିବାକୁ ଚିନ୍ତା କରିଛନ୍ତି ମହାପ୍ରଭୁ ମହାଲକ୍ଷ୍ମୀଙ୍କୁ ପ୍ରବୋଧନା ଦେଇ କହିଛନ୍ତି ଚାରିଯୁଗରେ ମହାପ୍ରଭୁ ନୃସିଂହ, ବାମନ, ରାମକୃଷ୍ଣ ବଳରାମ ଆଦି ଯେଉଁ ଅବତାର ନେଇ ମର୍ତ୍ତ୍ୟଲୋକରେ ଜନ୍ମ ଗ୍ରହଣ କରିଛନ୍ତି, ନିତ୍ୟ ସଖୀ ଭାବରେ ମହାଲକ୍ଷ୍ମୀ ତାଙ୍କ ସହିତ ରହିଛନ୍ତି ।

ଏହି ଚତୁର୍ଦ୍ଦଶ ବୈକୁଣ୍ଠକୁ କେହି କେବେ ଯାଇ ପାରନ୍ତି ନାହିଁ କିମ୍ବା କେହି ଏହାର ଦର୍ଶନ କରିପାରନ୍ତି ନାହିଁ । କିନ୍ତୁ ଚର୍ମ ଚକ୍ଷୁରେ କେବଳ ନୀଳଗିରିରେ ଅବସ୍ଥିତ ବୈକୁଣ୍ଠକୁ ଲୋକ ପ୍ରତ୍ୟକ୍ଷରେ ଦର୍ଶନ କରିବାକୁ ସମର୍ଥ ଅଟନ୍ତି ଏବଂ ଏହି ବୈକୁଣ୍ଠ ଦର୍ଶନ ମାତ୍ରେ ହିଁ ମନୁଷ୍ୟ ମୁକ୍ତି ପାଇଥାଏ ।

‘ଅଧମ ଚଣ୍ଡାଳ ଆଦି ସର୍ବେ ହୋନ୍ତି ମୋକ୍ଷ
ଜଗନ୍ନାଥଙ୍କ ମହିମା ଅଟଇ ପ୍ରତ୍ୟକ୍ଷ
ଆଉ ଯେତେକ ବୈକୁଣ୍ଠ ଶୁଣିଲେ କି କରି
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଦେଖିଲେ ନିସ୍ତରି
ଜଗନ୍ନାଥଙ୍କୁ ଦର୍ଶନ କରିବା ମାତ୍ରକେ
ତତ୍ କାଳରେ ମୋକ୍ଷ ଯେ ପାନ୍ତି ସର୍ବଲୋକେ । ‘୭/୩

ଏହା ବ୍ୟତୀତ ଏଠାରେ ମହାଲକ୍ଷ୍ମୀଙ୍କ ହସ୍ତରେ ରନ୍ଧନ ହେଉଥିବା ମହାପ୍ରସାଦ ମଧ୍ୟ ମୁକ୍ତି କଣିକା ଅଟେ । ଏହାକୁ କଣିକାଏ ମାତ୍ର ଭୁଞ୍ଜିଲେ ବୈକୁଣ୍ଠ ପ୍ରାପ୍ତି ହୁଏ । ପ୍ରଭୁ ସ୍ୱମୁଖରେ ସ୍ୱୀକାର କରିଛନ୍ତି ‘ଏ ବିଷ୍ଣୁ ମହାପ୍ରସାଦ ଯେ ବିଷ୍ଣୁଠାରୁ ବଡ’ । ଗର୍ଭରେ ପଡିବା ମାତ୍ରେ ବଇକୁଣ୍ଠ ସ୍ଥାନ । ଏ କ୍ଷେତ୍ରଠାରୁ ଆଉ ମହତ୍ତର କ୍ଷେତ୍ର ନାହିଁ ।

ଏହା ହେଉଛି ସାକ୍ଷାତ ବ୍ରହ୍ମଙ୍କର ନିବାସ ସ୍ଥଳ । ପ୍ରଳୟ କାଳ ଉପସ୍ଥିତ ହେଲେ ସମସ୍ତ ଜୀବଜଗତ, ଜଳବାୟୁ, ତେଜ, ପୃଥ୍ୱୀ ସମସ୍ତେ ବିନାଶ ହୋଇଗଲେ ମଧ୍ୟ ତ୍ରିଜୀବୀ ହୋଇ ସ୍ୱୟଂ ଜଗନ୍ନାଥ ଏଠି ଏକାଥାନ୍ତି ଏବଂ ନୀଳଗିରି ମଧ୍ୟ ପ୍ରଳୟରେ ଧ୍ୱଂସ ନ ହୋଇ ରହିଥାଏ । ନୀଳଗିରିରେ ମହାପ୍ରଭୁ ସର୍ବଦା ଅଧିବାସ କରୁଥିବାରୁ ତାଙ୍କର ଭକ୍ତ ଶ୍ରେଷ୍ଠ ଗରୁଡ ମଧ୍ୟ ତାଙ୍କ ସହିତ ସର୍ବଦା ରହିଥାନ୍ତି । ସର୍ବ ଅବତାରରେ ଗରୁଡ ତାଙ୍କର ବାହନ ହୋଇଥିବା ସ୍ଥଳେ ଜଗନ୍ନାଥ ଅବତାରରେ ମହାପ୍ରଭୁ ବିରାଜମାନ ହୋଇଥିବା ବେଳେ ଗରୁଡ ଅଚଳ ମହାମେରୁଙ୍କ ସମ୍ମୁଖରେ ସ୍ତମ୍ଭ ଆକାରରେ ଦଣ୍ଡାୟମାନ ହୋଇଥାନ୍ତି ।

‘ନୃସିଂହ ବାମନ ପର୍ଶୁ କୃଷ୍ଣ ଜଗନ୍ନାଥ
ଗରୁଡ ସ୍ତମ୍ଭ ମୋ ଆଗେ ହୋଇଥାଅ ନିତ୍ୟ ।
ନୀଳଗିରିରେ ରହିବୁ ଦାରୁବ୍ରହ୍ମ ରୂପେ
ତୁହି ଆସ୍ଥ ରଥେ ଥିବୁ ସଦା ଭକ୍ତରୂପେ
ନୀଳଗିରିରେ ବସିବୁ ଯୋଡି ବେନିକର
ଏ ରୂପେ ଆଜ୍ଞା ଦେଲୁରେ ବିନତା କୁମର
ସମସ୍ତ ଜନେ ଦର୍ଶନ ଆଗେ ତୋତେ କରି
ଆସ୍ଥକୁ ଯାଇ ସେବିବେ ପଛେ ନର ନାରୀ ।’ ୪/୨୩

ମହାପ୍ରଭୁଙ୍କର ନିବାସ ସ୍ଥଳ ଯେଉଁ ବୈକୁଣ୍ଠ ତାହା ଶ୍ରୀମନ୍ଦିର । ଏହାର ବିସ୍ତୃତ ବର୍ଣ୍ଣନା ନୃସିଂହ ପୁରାଣରେ ଦେଖାଯାଏ । ଏକଦା ମହାବୈଷ୍ଣବୀ ମହାଲକ୍ଷ୍ମୀ ମହାପ୍ରଭୁ ନୃସିଂହଙ୍କଠାରୁ ପୁତ୍ର କାମନା କରିଥିଲେ । ଏହା ଶୁଣି ମହାପ୍ରଭୁ ଉତ୍ତର ଦେଇଥିଲେ ତୁମ୍ଭେ ପରମ ବୈଷ୍ଣବୀ । ପୁଣି ଅଯୋନି ସଂଭୂତା ବ୍ରହ୍ମ ସ୍ୱରୂପିଣୀ । ତେଣୁ ତୁମେ କେବେ ଋତୁ ସ୍ନାନ କରି ନାହିଁ । ଋତୁମତୀ ନାରୀ କେବଳ ସନ୍ତାନ ଉତ୍ପାଦନ କରିବା ନିମିତ୍ତ ସମର୍ଥ । ଆଉ ତୁମେ ଋତୁ ସ୍ନାନ କଲେ ତ ପୃଥିବୀ ଜଳାର୍ଣ୍ଣବ ହୋଇଯିବ । ତେଣୁ କେବଳ ବସୁନ୍ଧରା ଭାବରେ ତୁମେ ଋତୁସ୍ନାନ କରିପାରିବ ତଥାପି ମୁଁ ତୁମକୁ ଚାରୋଟି ପୁତ୍ର ଦାନ କରୁଛି । ଏମାନେ ହେଲେ –

‘ଉର୍ମ, ଧୂର୍ମ, ଜ୍ୟୋତି, ଜ୍ୱଳା ଯେଉଁ ଚାରିଦ୍ୱାର
ସେ ଚାରିଦ୍ୱାରେ ପ୍ରସବ ହୁଅନ୍ତୁ କୁମର ।’

ମହାଲକ୍ଷ୍ମୀଙ୍କର ନାଶାକର୍ଣ୍ଣ, ନୟନ, ମୁଖ ଆଦି ଦ୍ୱାର ମଧ୍ୟରୁ ଜନ୍ମ ନେଇଥିବା ଏହି ଚାରିପୁତ୍ର ହେଲେ ସତ୍ୟ, ଧର୍ମ, ଦୟା ଓ ଜ୍ଞାନ । ଯେଉଁଠାରେ ଏହି ଚାରିଜଣ ରହିବେ ଲକ୍ଷ୍ମୀ ସେହିଠାରେ ନିବାସ କରିବେ ଏବଂ ଲକ୍ଷ୍ମୀ ଯେଉଁଠାରେ ନିବାସ





କରିବେ ତାହା ହେବ ବୈକୁଣ୍ଠ । ମହାପ୍ରଭୁଙ୍କର ଚତୁର୍ଭୁଜରୁ ଏମାନଙ୍କର ସୃଷ୍ଟି ।

'ସତ୍ୟ ଧର୍ମ ଦୟା ଜ୍ଞାନ ବୋଲି ଯେଉଁ ଚାରି
ଚାରି ଭୁଜ ଯାକେ ଆସି ଲାଗିଲେ ମୋହରି
ଲାଗି ସେ ହୋଇଲେ ଶଙ୍ଖ, ଚକ୍ର, ଗଦା, ପଦ୍ମ
ସେହି ଚାରି କର ସ୍ଥଳେ ସବୁଙ୍କର ହୃଦ । '

ଏହି ଭାବରେ ଚାରି ସଂପ୍ରଦାୟ ଏବଂ ଚାରି ଦ୍ୱାରର(ଶ୍ରୀମନ୍ଦିରର) ସୃଷ୍ଟି ଏବଂ ଏହି ଚାରି ସଂପ୍ରଦାୟର ମହାନ ଗୁରୁଙ୍କର ପରିଚିତି ମଧ୍ୟ ସ୍ୱୟଂ ନୃସିଂହ ପ୍ରକାଶ କରିଛନ୍ତି । ଶ୍ରୀ ସଂପ୍ରଦାୟର ଗୁରୁ ରାମାନନ୍ଦ ବ୍ରହ୍ମା ସଂପ୍ରଦା ଗୁରୁ ମାଧବାନନ୍ଦ, ସନକ ସଂପ୍ରଦାୟ ଗୁରୁ ନିତ୍ୟାନନ୍ଦ ଏବଂ ରୁଦ୍ର ସଂପ୍ରଦାୟର ଗୁରୁ ଶ୍ୟାମାନନ୍ଦ ହେବେ । ଏମାନେ ନାମ ବ୍ରହ୍ମ ଶିକ୍ଷାଦାନ କରି ବୈକୁଣ୍ଠର ଚାରିଦ୍ୱାରରେ ଅବସ୍ଥାନ କରିବେ । ଶ୍ରୀ ସଂପ୍ରଦାୟ, ପୂର୍ବଦ୍ୱାର, ମାଧବାନନ୍ଦ ପଶ୍ଚିମଦ୍ୱାର, ନିତ୍ୟାନନ୍ଦ ଉତ୍ତର ଦ୍ୱାର ଏବଂ ଶ୍ୟାମାନନ୍ଦ ଦକ୍ଷିଣଦ୍ୱାରରେ ଅବସ୍ଥାନ କରି ଭକ୍ତ ହୃଦୟରେ ଭକ୍ତି ସଂଚାର କରିବେ । ଏମାନଙ୍କର ନୀତି ଆଦର୍ଶ ବିଧାନ ଆଦି ଭିନ୍ନ ହେଲେ ମଧ୍ୟ ଏହି ଚାରିଦ୍ୱାରରୁ ଯେକୌଣସି ଦ୍ୱାର ଦେଇ ଜଗମୋହନରେ ପ୍ରବେଶ କଲେ କେବଳ ଜଗନ୍ନାଥ ହିଁ ଅବଲୋକିତ ହେବେ ଏବଂ ତାହା ହିଁ ବୈକୁଣ୍ଠ ପ୍ରାପ୍ତି । ଧର୍ମ, ଅର୍ଥ, କାମ, ମୋକ୍ଷର ପ୍ରତୀକ ଭାବରେ ଚାରିଦ୍ୱାର ଅବସ୍ଥିତ । ଦ୍ୱାର ବ୍ୟତୀତ ଶ୍ରୀମନ୍ଦିର ମଧ୍ୟରେ ଅବସ୍ଥାନ କରୁଥିବା ଦେବଦେବୀ, ଚନ୍ଦ୍ର, ସୂର୍ଯ୍ୟ, ଅବତାର ଦିକ୍‌ପାଳ ତଥା ଜୀବ ଜନ୍ତୁଙ୍କର ଚିତ୍ର ଯେପରି ଚିତ୍ରିତ ହୋଇଛି–ସେଥିରେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ପ୍ରତିବିମ୍ବିତ ହୋଇଛି ଏବଂ ସମଗ୍ର ବ୍ରହ୍ମାଣ୍ଡର ପତି ବ୍ରହ୍ମସ୍ୱରୂପ ହୋଇ ରତ୍ନସିଂହାସନରେ ଆରୂଢ଼ ।

'ଅଷ୍ଟଦିଗେ ଅଷ୍ଟଖମ୍ବ କିଏ ଅଷ୍ଟଗିରି
ମାଡି ବସିଛି କି ଅଷ୍ଟ ଦିଗେ ବସୁନ୍ଧରୀ ।'

ଶ୍ରୀମନ୍ଦିରର ଯେଉଁ ଦିଗକୁ ଚାହିଁଲେ ସେ ଦିଗରେ ବସୁନ୍ଧରାଙ୍କୁ ପାଇହେବ ଏବଂ ତାରି ମଧ୍ୟରେ ଅଷ୍ଟଦଳ ପଦ୍ମ ଉପରେ ଶୋଭିତ ମହାପ୍ରଭୁ ଶ୍ରୀଜଗନ୍ନାଥ । ଯାହାଙ୍କର ଅନନ୍ୟ ଶୋଭା ବର୍ଣ୍ଣନ କରି କବି ଲେଖିଛନ୍ତି –

'ଏମନ୍ତ ସେ ବୈକୁଣ୍ଠରେ ଗୋବିନ୍ଦ ମହିମା
ବସିଛନ୍ତି ସେ ପ୍ରଭୁ କୋଳେ ଧରି ରମା
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜଇ କରେ
ଶ୍ରୀବତ୍ସ ଲାଞ୍ଛନା ଫୁଟି ଦିଶେ ହୃଦୟରେ
କଟିତଟେ ପୀତବାସ ଜଗଜ୍ଜନ ମୋହେ
କଉସ୍ତୁଭ ମଣି ଗୋଟି ବକ୍ଷ ସ୍ଥଳ ଶୋହେ. . ଇତ୍ୟାଦି ।'

ସେଇ ବୈକୁଣ୍ଠ ପତି ପୁନଶ୍ଚ ଶ୍ରୀଜଗନ୍ନାଥ ଭାବରେ ପ୍ରତିପାଦିତ ହେଲାବେଳେ ପୁନଶ୍ଚ କବି ତାଙ୍କର ପରିଦୃଶ୍ୟମାନ ରୂପକୁ ବର୍ଣ୍ଣନା କରିବାର ଲୋଭ ସମ୍ବରଣ କରିପାରି ନାହାଁନ୍ତି । ମହାପ୍ରଭୁ ଦାମୋଦର ରୂପରେ କୌଶିକ ରାଜନଙ୍କୁ ଯେଉଁ ଦର୍ଶନ ଦେଇଛନ୍ତି, ତାହା ତ ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ।

ବର୍ଣ୍ଣନା ମଧ୍ୟରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୂପ ମାଧୁରୀରେ ଅମିୟ ଛଟା ଫୁଟିଉଠେ । ଏହା ସହିତ ମହାପ୍ରଭୁ ବିଭିନ୍ନ ସମୟରେ ଅବତାରୀ ଭାବରେ ବିଭିନ୍ନ ଅବତାର ଧାରଣ କରିଥିବା ପ୍ରସଂଗ ମଧ୍ୟ କବି ଉପସ୍ଥାପନ କରିଛନ୍ତି– କୂର୍ମ, ବରାହ, ନୃସିଂହ, ପର୍ଶୁରାମ, ରାମାବତାର ସହିତ କୃଷ୍ଣ, ବୁଦ୍ଧ ଏବଂ କଲ୍କୀ ଭାବରେ ସେ ହିଁ ଉଭା ହେବେ ଏହା କବି ପ୍ରମାଣ କରିଛନ୍ତି–

'ବଉଦ୍ଧ ସ୍ୱରୂପ ହରି ପୂଜେ ନୀଳଗିରି
ବସିଅଛି ଭୁଜଟେକି ସବୁ ଜନ ତାରି
ପୁଣି କଳକୀ ସ୍ୱରୂପ ଧରି ଭଗବାନ
ମ୍ଳେଚ୍ଛ ମାରିଣ ରଖିବ ପ୍ରଭୁ ସାଧୁଜନ ।' ୭/୮୮

କବି ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ଭାବରେ ମଧ୍ୟ କୁରୁ ସଭା ତଳେ ଉପସ୍ଥିତ କରାଇଛନ୍ତି ।

'ଏମନ୍ତେ କଥା ହେଉ ଶ୍ରୀ ହରି କଲେ ବିଜେ
ମିଳିଲେ ଦଶ ପାବଚ୍ଛ ତଳେ ଦେବରାଜେ



ଦ୍ରୋଣ ବୋଇଲେ ଶୁଣ ହେ ରାଜା କୁରୁବୀର
ଶ୍ରୀଜଗନ୍ନାଥଙ୍କୁ ତୁମ୍ଭେ କଟାଳ ନକର । ' ୭/୧୨୫
ଯାହା ଲୋମ ମୂଳୁ କୋଟି ବ୍ରହ୍ମାଣ୍ଡଟି ଜାତ
ଅଶେଷ କୋଟିଏ ଜୀବ ଯାଏ ଗର୍ଭ ଗତ
ସେହି ପ୍ରଭୁ ଉଭା ହୋଇଛନ୍ତି ସଭାତଳେ
ପୃଥ୍ୱୀ ନାଶ ଯିବ କୋପକଲେ ଆଦିମୂଳେ ।' ୭–୧୧୬

ଏହା ବ୍ୟତୀତ ଅର୍ଜୁନଙ୍କୁ ବିଶ୍ୱରୂପ ପ୍ରଦର୍ଶନ କାଳରେ ମଧ କବି ଶ୍ରୀକୃଷ୍ଣଙ୍କୁ ଶ୍ରୀଜଗନ୍ନାଥ ଭାବରେ ପରିକଳ୍ପନା କରିଛନ୍ତି ।

'ବୋଲନ୍ତି କି ବିଶ୍ୱରୂପ ଦେଖିଲୁ ହୋ ପାର୍ଥ
ସାଧୁ ଲୋକଙ୍କୁ ଦେଖାନ୍ତି ଏହା ଜଗନ୍ନାଥ ।' ୭/୧୯୨

କେବଳ ଶ୍ରୀଜଗନ୍ନାଥ ନୁହଁନ୍ତି । ଶ୍ରୀମନ୍ଦିରର ଅଧିଷ୍ଠାତ୍ରୀ ମହାଲକ୍ଷ୍ମୀଙ୍କର ମହତ୍ତ୍ୱ ପ୍ରତିପାଦନ କରିବା ନିମିତ୍ତ ମଧ ଲେଖକ ଶତମୁଖ ହୋଇ ପଡିଛନ୍ତି । ମହାଲକ୍ଷ୍ମୀ ହିଁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପ୍ରବାହିତ ଓ ପ୍ରତିଷ୍ଠିତ ହୋଇଥିବା ମହା ସଂସ୍କୃତିର କେନ୍ଦ୍ରବିନ୍ଦୁ । ତେଣୁ ବଳରାମ ଦାସ କୃତ ଲକ୍ଷ୍ମୀପୁରାଣର ପ୍ରଭାବ ହେଉ ବା ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରଭାବ ହେଉ ମହାଲକ୍ଷ୍ମୀଙ୍କର ବ୍ୟତୀତ ମହାପ୍ରଭୁ କେତେ ନିର୍ବଳ ତାହା ମଧ ଉଲ୍ଲେଖ କରିବାକୁ ବି ଦ୍ୱିଧା ବୋଧ କରିନାହାଁନ୍ତି । ଯେତେବେଳେ କୁରୁସଭା ତଳେ ଦୁର୍ଯୋଧନ ଲକ୍ଷ୍ମୀଙ୍କର ବରରେ ବଳୀୟାନ ହୋଇ ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ଅସମ୍ମାନ କରିଛି, ସେତେବେଳେ ନିଜ ଅପମାନର ପ୍ରତିକାର କରିବା ନିମିତ୍ତ ମହାପ୍ରଭୁ ମହାଲକ୍ଷ୍ମୀଙ୍କୁ ପ୍ରାର୍ଥନା କରିଛନ୍ତି ।

ଏତିକିରେ କବି ସନ୍ତୁଷ୍ଟ ହୋଇନାହାଁନ୍ତି ଯେଉଁଠାରେ ମହାଲକ୍ଷ୍ମୀ ନଥାନ୍ତି ସେ ସ୍ଥାନର ଦୃଶ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି–

'ନଡିଆ ଫଳେ ସଲିଳ ଯେହ୍ନେ ପଶେ ଯାଇ
ସେ ରୂପେ ଲକ୍ଷ୍ମୀ ସେ ନଜାଣେ ଏହା କହି
ଗଲାବେଳକୁ ଶ୍ରୀଲକ୍ଷ୍ମୀ ଯେହ୍ନେ ଯାନ୍ତି ଜାଣ
ଗଜ ଭକ୍ଷତ କପିତ୍ଥ ରସର ପ୍ରମାଣ ।' ୭/୧୩୩

ଶ୍ରୀମନ୍ଦିର ଅଧିଷ୍ଠାତ୍ରୀ ଭାବରେ ଲକ୍ଷ୍ମୀ ବିରାଜମାନ । ତେଣୁ କେହି କେବେ ଏ ନୀଳାଚଳରେ ଉପବାସରେ ରହନ୍ତି ନାହିଁ । ଏ ପ୍ରସିଦ୍ଧିକୁ କବି ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି ।

ଏସବୁ ବର୍ଣ୍ଣନା ସହିତ କବି ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ପର୍ବପର୍ବାଣିର ମଧ ଏକ ମନୋହର ବିବରଣୀ ପ୍ରଦାନ କରିଛନ୍ତି । ସେଥି ମଧରେ ଚନ୍ଦନଯାତ୍ରା ଯାହା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧରୁ ଏକ ପ୍ରସିଦ୍ଧ ଯାତ୍ରା ତାହାର ଚିତ୍ର ପ୍ରଦତ୍ତ । ମହାପ୍ରଭୁ ନୃସିଂହ ଭଗବାନ କୃଷ୍ଣବଲ୍ଲଭ ରାଜାଙ୍କ ନିମିତ୍ତ ଯେଉଁ ଚନ୍ଦନ ଯାତ୍ରାର ଆୟୋଜନ କରିଛନ୍ତି, ତାହା ମହାପ୍ରଭୁ ଜଗନ୍ନାଥଙ୍କର ଚନ୍ଦନ ଯାତ୍ରାର ବିସ୍ତୃତ ବିବରଣୀ ଏହା ସହଜରେ ଅନୁମେୟ । ଏହା ସହିତ ଶେଷ ଦେବଙ୍କର ଲୀଳା ମନ୍ଦିରକୁ ପହଣ୍ଡି ବିଜେ ଓ ନୃସିଂହଙ୍କର ଲକ୍ଷ୍ମୀ ମନ୍ଦିରକୁ ପହଣ୍ଡି ବିଜେ ଆଦି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପହଣ୍ଡି ବିଜେର ସୂଚନା ଦେଇଥାଏ । ଖୁଣ୍ଟିଆ, ମେକାପ, ପ୍ରତିହାରୀ, ଚାଙ୍ଗଡାମେକାପ, ମୁଦୁସୁରୀ ଆଦି ସେବକମାନଙ୍କର ବର୍ଣ୍ଣନା ତଥା ଜଳକେଳି ନିମିତ୍ତ ମହାପ୍ରଭୁଙ୍କର ଚନ୍ଦନ ବିଜେ ନିମିତ୍ତ ଆମ୍ବ, ନାରିକେଳ, କମଳା, ପଣସ, ଜାମୁଡାଳ, ଯୁଇଜାଇ, ଅଶୋକ, ତରାଟ, କାଂଚନ, ନାଗେଶ୍ୱର ଆଦି ପୁଷ୍ପ ଦ୍ୱାର ସଜ୍ଜିତ ନାବ, ଜଳକେଳି ନିମିତ୍ତ ପ୍ରସ୍ତୁତ ସୁଗନ୍ଧିକୁଣ୍ଡ, ଅକ୍ଷୟ ତୃତୀୟା ତିଥିରେ ଚନ୍ଦନ ଯାତ୍ରାର ପ୍ରାରମ୍ଭ ଏବଂ କେତକୀ ଟାହିଆ ଓ ଓଡିଆଣୀରେ ସଜ୍ଜିତ ହୋଇ ମହାପ୍ରଭୁଙ୍କର ଚନ୍ଦନ ପୁଷ୍କରିଣୀକୁ ଯାତ୍ରା ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ମଦନ ମୋହନଙ୍କର ବେଶ ବର୍ଣ୍ଣନାରେ ସାମ୍ୟ ରଖିଥାଏ ।

ପରିଶେଷରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଏକାଧାରରେ ସମସ୍ତ ଅବତାରର ମୂଳ ଏହା ପ୍ରମାଣ କରିବା ନିମିତ୍ତ କବି ପୀତାମ୍ବର ଦାଶ ନୃସିଂହ ପୁରାଣରେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି ତାହା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ ।

ଅତଏବ ପାର୍ଥକୁ ଗୀତା ଜ୍ଞାନ ପ୍ରଦାନ କରିଥିବା ପରଂବ୍ରହ୍ମ ହିଁ ସ୍ୱୟଂ ଜଗନ୍ନାଥ ଏବଂ ତାଙ୍କରି କୃପାରୁ ବ୍ରହ୍ମବିଦ୍ୟାର ବ୍ୟାଖ୍ୟା



ନୃସିଂହ ପୁରାଣ ମଧ୍ୟରେ ସମ୍ଭବ ହୋଇଛି ବୋଲି ବିପ୍ର ପୀତାମ୍ବର ଦାଶ ସର୍ବଦା ସ୍ୱୀକାର କରିଛନ୍ତି–

'ଜଗନ୍ନାଥ ସ୍ୱାମୀ ସିନା ଦୟା ମୋତେ କଲେ
ପ୍ରାଣୀ ଏ ତରିବାକୁ ଶ୍ରୀ ସୁଖେ ଆଜ୍ଞା ଦେଲେ ।'

ନୃସିଂହ ପୁରାଣ ଆଦି ନୃସିଂହ, ଶେଷ ନୃସିଂହ ଅବତାରର କଥା କହିବା ପାଇଁ ରଚିତ ହୋଇଥିଲେ ମଧ୍ୟ ନୃସିଂହ ସ୍ୱରୂପ ଶ୍ରୀଜଗନ୍ନାଥଙ୍କର ସ୍ତୁତିରେ ତାହା ପରିପୂର୍ଣ୍ଣ ଓ ପରିସମାପ୍ତ ହୋଇଅଛି । କୃଷ୍ଣଲୀଳାର ଅନ୍ତିମ ପର୍ଯ୍ୟାୟରେ ଆଷାଢ଼ ଶୁକ୍ଳ ଏକାଦଶୀ ତିଥିରେ ମହାପ୍ରଭୁ ଶ୍ରୀକୃଷ୍ଣଙ୍କର ଅନ୍ତିମ ଶୟନ ଲୀଳାର ସ୍ମୃତି ସ୍ୱରୂପ ଆଜି ମଧ୍ୟ ଶ୍ରୀମନ୍ଦିରରେ ହରିଶୟନ ଏକାଦଶୀ ପାଳିତ ହୋଇଥାଏ ।

'ଶ୍ରୀକୃଷ୍ଣ ଭଗିନୀ ପୁଣ ଧାତା ସଙ୍ଗେ ଯାଇ
ବସିଲେକ ନୀଳାଚଳେ ନିଜ ରୂପ ବହି
ଶ୍ରୀଜଗନ୍ନାଥଙ୍କ ପତ୍ନୀ ଅଟେ ପାଟବଂଶୀ
ରହିବେ ନିତ୍ୟ ସ୍ଥଳରେ ସ୍ୱରୂପ ପ୍ରକାଶି ।'

ଏହି ନିତ୍ୟ ବୈକୁଣ୍ଠ, ନିତ୍ୟସ୍ଥଳ, ନିତ୍ୟକ୍ଷେତ୍ର ଏବଂ ନିତ୍ୟ ବ୍ରହ୍ମଙ୍କର ନିତ୍ୟଲୀଳା ସମଗ୍ର ନୃସିଂହ ପୁରାଣରେ ଆପାତତଃ ବ୍ୟାଖ୍ୟା କରାଯାଇଛି, ଏହା ହିଁ ଏହି ପୁରାଣର ବିଶେଷତ୍ୱ ।

ନରେନ୍ଦ୍ରକୋଣ, ପୁରୀ

# ତୁମେ ଅନନ୍ତ ଅସୀମ

**ଶକୁନ୍ତଳା ଆଚାର୍ଯ୍ୟ**

ଅନନ୍ତେ ଅନନ୍ତ ତୁମେ ବାରିଧାର
ତୁମେ ଭକ୍ତ ପ୍ରାଣ ଜ୍ଞାନର ଆଗାର
ତୁମେ ଦୟା, କ୍ଷମା, ଶାନ୍ତି, ପ୍ରୀତି ମୈତ୍ରୀ
ତୁମେ ସର୍ବ ସୁଖ ସର୍ବ ଏ ସଂସାର ।

ତୁମ ନାମ ଧରି ଡାକେ ଯହିଁ ତହିଁ
ଧୀରେ, ଧୀରେ କାନେ ଯାଅ କିବା କହି
ତୁମେ ମୋ ଭୂଷଣ, ମୋ ହରା କଷଣ
ମୋ ମୁଖ ସୁଧା ତୁମେ କ୍ଷୁଧାନିବାର ।

ତୁମ ଆଦେଶରେ କରୁଛି କରମ
ତୁମ ପରୀକ୍ଷାରେ ଦୁଃଖ ମଣେ ସମ
ତୁମେ ପରା ଜାଣ ସର୍ବପ୍ରାଣୀ ପ୍ରାଣ
କୁହକି, ମାଗିଛି ରତନ ଭଣ୍ଡାର ।



ସତ୍ୟ ସମାଧାନ ତୁମେ କର ଯେବେ
ମୋ ଆଖି ଲୁହର ସମାଧାନ କେବେ
କେତେ ମୁଁ କାନ୍ଦିବି, କାହାକୁ ଖୋଜିବି
ଅପସରି ଯିବ ଅମା ଅନ୍ଧକାର ।

ବୁଝିଅଛି ତୁମେ– ଇହପର ସଖା
ତୁମେ ସର୍ବଦୁଃଖ କରୁଅଛ ରକ୍ଷା
ରକ୍ଷକ, ଭକ୍ଷକ–ତମସା ଆଲୋକ
ତୁମ ପାଦେ ସଦା କରେ ନମସ୍କାର
ଅନନ୍ତେ ଅନନ୍ତ ତୁମେ ବାରିଧାର... ।

ମାର୍ଫତ– ବ୍ରଜବନ୍ଧୁ ଆଚାର୍ଯ୍ୟ
ଖାକିମଠ ସାହି, ପୁରୀ–୨



# ଭକ୍ତକବି ବଳରାମ ଦାସଙ୍କ ମୁକ୍ତି ଗାଥା

ଡକ୍ଟର ତ୍ରିନାଥ ପଟ୍ଟନାୟକ

ସେଦିନ କବି ବଳରାମ ଦାସ, ମା' ଲକ୍ଷ୍ମୀଙ୍କ ପାଇଁ ବହୁତ ଦୁଃଖ ପ୍ରକାଶ କରିଥିଲେ। ଭକ୍ତି ଭାବରେ ଟାଣି ହୋଇ ଅଛବ ଶ୍ରୀୟା ଚଣ୍ଡାଳୁଣୀ ଘରେ ଲକ୍ଷ୍ମୀ ବସି ଯାଇଥିଲେ ବୋଲି ବଡ଼ ଭାଇ ପ୍ରଭୁ ବଳରାମ କେତେକଥା କହି ନାହାନ୍ତି ?



ହାଡ଼ିଘରେ ଥିବ ଲକ୍ଷ୍ମୀ ପାଣ ଘରେ ଥିବ
ସ୍ନାନ ନ କରିଣ ବଡ଼ ଦେଉଳେ ପଶିବ।
ଏଭଳି ସ୍ତ୍ରୀକୁ ପାଖରେ ରଖି ନ ଯୋଗାଇ
ଆମ୍ଭ ବାକ୍ୟମାନି ତାକୁ ଦିଅ ଘଉଡ଼ାଇ।

ଶ୍ରୀଜଗନ୍ନାଥ ବଡ଼ ଭାଇଙ୍କଠାରୁ ଏମିତି ନିର୍ଦ୍ଦେଶ ପାଇଲେ ସୁଦ୍ଧା ମନରେ କେମିତି ଅମଙ୍ଗ ଅମଙ୍ଗ ଭାବ। କାରଣ ତାଙ୍କ ମନ କହୁଥାଏ – ଲକ୍ଷ୍ମୀପରା ଭାରିଯାକୁ ଥରେ ଛାଡ଼ିଲେ ଆଉ ନ ପାଇବା। ମାତ୍ର ବଡ଼ ଭାଇ ବଳରାମଙ୍କର ଏକା ଜିଦ୍–

ଭାର୍ଯ୍ୟାଠାରେ ଲୋଭ ଯେବେ ଅଛିରେ କହ୍ନାଇ
ତେବେ ମାଇପକୁ ନେଇ ଗ୍ରାମ ବାହାର ରହ ତୁହି।

ମୋର ବଡ଼ ଦେଉଳକୁ କିନ୍ତୁ ଆଉ ଆସିବୁନି। ଲକ୍ଷ୍ମୀ ସେଦିନ ବହୁତ କାକୁତି ମିନତି ହେଲେ। ସବୁ ଘଟଣା ବୁଝାଇ କହିଲେ। ବଳରାମ ଶୁଣିଲେନି କି ଶ୍ରୀଜଗନ୍ନାଥ ଆହା ବୋଲି ପଦଟିଏ ନ କହି ବଡ଼ ଦେଉଳରୁ ମା' ଲକ୍ଷ୍ମୀଙ୍କୁ ବାହାର କରି ଦେଇଥିଲେ।

ଏକଥା ଜାଣିଲା ପରେ ଭକ୍ତ ବଳରାମ ଦାସ ଦୁଃଖରେ କାନ୍ଦି ପକାଇ ଥିଲେ। ପରବର୍ତ୍ତୀ ସମୟରେ ଯାହାସବୁ ଘଟିଗଲା ସେସବୁ ଘଟଣାକୁ ନେଇ ଲକ୍ଷ୍ମୀପୁରାଣ ଲେଖିଲେ। ଲକ୍ଷ୍ମୀଙ୍କ ପାଇଁ ତାଙ୍କ ମନ ବିଚଳିତ ହୋଇ ଯାଇଥିଲା। ଲକ୍ଷ୍ମୀଙ୍କ ମାହାତ୍ମ୍ୟକୁ ପ୍ରକାଶ କରିବାକୁ ଯାଇ ଲେଖନୀ ଚାଳନ କରିଥିଲେ।



କିନ୍ତୁ ଆଜି ସେଦିନ ନାହିଁ। ପ୍ରଭୁ ଜଗନ୍ନାଥ ବଡ଼ ଭାଇ ବଳରାମ ଓ ଭଉଣୀ ସୁଭଦ୍ରାକୁ ସାଥୀରେ ଧରି ଗୁଣ୍ଡିଚା ମନ୍ଦିର ଯାଇଛନ୍ତି ରଥଯାତ୍ରା କରି। ଲକ୍ଷ୍ମୀ ଏବେ ସରଳା ଲକ୍ଷ୍ମୀ ନୁହନ୍ତି। ନିପଟ କଳିହୁଡ଼ି। ବାରକଥା କହି ଶ୍ରୀଜଗନ୍ନାଥଙ୍କୁ ଝିଙ୍ଗାଶୁଛନ୍ତି। ଯେତେ ଯାହା ହେଲେ ସୁଦ୍ଧା କବି ବଳରାମ ହେଉଛନ୍ତି ଶ୍ରୀଜଗନ୍ନାଥ ପ୍ରାଣ। ପ୍ରଭୁ ତାଙ୍କୁ କେତେ ଭଲ ପାଆନ୍ତି। ଥରେ ରଥରେ ବସାଇ ପ୍ରଭୁ ବଳରାମ ଦାସଙ୍କୁ ଶ୍ରୀଲଙ୍କାକୁ ନେଇ ଯାଇଥିଲେ। ପ୍ରଭୁ ଶ୍ରୀଜଗନ୍ନାଥଙ୍କ କରୁଣାରୁ ମୂର୍ଖ ମୁହଁରେ ସେ ବେଦାନ୍ତ ଚର୍ଚ୍ଚା କରାଇ ପାରିଛନ୍ତି। ପ୍ରଭୁଙ୍କଠାରୁ ବଳ ପାଇ ମହାମତ୍ତ ହସ୍ତୀକୁ ସାବାଡ଼ କରି ଦେଇଛନ୍ତି। ସେଇଦିନଠାରୁ ଲୋକେ ତାଙ୍କୁ ମତ୍ତ ବଳରାମ ବୋଲି ଡାକନ୍ତି। ପ୍ରଭୁଙ୍କର ଆଜ୍ଞା ହେଲା । ତେଣୁ ରାମାୟଣ ଭଳି ବିରାଟ ଗ୍ରନ୍ଥକୁ ସେ ଅକ୍ଳେଶରେ ରଚନା କରିପାରିଥିଲେ। ଆଉ ନିଜର ସାମାନ୍ୟ ଅପମାନର ପ୍ରତିଶୋଧ ନିମନ୍ତେ ବାଲି ରଥରେ ତିନି ଠାକୁରଙ୍କୁ ଦିନଦିନ



ବାନ୍ଧିରଖି ପାରିଛନ୍ତି । ମାନଉଦ୍ଧାର ପ୍ରଭୁ ବଳିଆ ଦାସର ମାନ ରକ୍ଷା କରିଛନ୍ତି ।

ମାତ୍ର ଆଜି ସେବକ ବଳିଆ ଦାସ ପ୍ରଭୁ ନିନ୍ଦା କେମିତି ସହିବ । ପ୍ରଭୁ ଶ୍ରୀଜଗନ୍ନାଥ ସୁଭଦ୍ରାଙ୍କୁ ସାଥୀରେ ନେଇ ଗୁଣ୍ଡିଚା ମନ୍ଦିରକୁ ଚାଲିଯାଇଛନ୍ତି ବୋଲି ତାଙ୍କର ଏଡ଼େ ଅପରାଧ ହୋଇ ଯାଇଛି । ଲକ୍ଷ୍ମୀ ଘର କଥା ଘରେ ନରଖି, ବିମଳେଇ ଆଉ ସ୍ୱରସ୍ୱତୀଙ୍କୁ ଡକାଇ ସଭା କରି ବସିଛନ୍ତି । ଛିଃ ଛିଃ ସ୍ୱାମୀ ନିନ୍ଦା କିଏ କ'ଣ ପର ଆଗରେ କରେ ?

ମହାଲକ୍ଷ୍ମୀ କହୁଥାନ୍ତି ବୁଝିଲ ବିମଳେଇ ! ଇଏ ଆସି ମୋତେ କହିଲେ କାଲି ଗୁଣ୍ଡିଚା ଯାତ । ପାପୀମାନଙ୍କୁ ନିସ୍ତାର କରିବା ନିମନ୍ତେ ଆମ୍ଭେ ଦୁଇ ଭାଇ ରଥ ଚଢ଼ି ଗୁଣ୍ଡିଚା ମନ୍ଦିରକୁ ଯାଉଛୁ । ବାଟରେ ମାଉସୀ ମା'କୁ ମଧ୍ୟ ଭେଟିବୁ । ସାଥୀରେ ଜ୍ୟେଷ୍ଠଭାଇ ଯିବେ । ତୁମେ କେମିତି ବୋହୂଟା ହୋଇ ଯିବ । ତୁମେ ବିମଳା ଓ ସ୍ୱରସ୍ୱତୀଙ୍କୁ ପାଖକୁ ଡାକି ସାଥୀ ହୋଇ ପଶା ଖେଳୁଥାଅ । ଆମେ ରଥ ଯାତ୍ରା ଶେଷ କରି ଫେରି ଆସୁଛୁ ।

ଏଇ ସମୟରେ ଦାସୀ ଧଇଁ ସଇଁ ହୋଇ ଧାଇଁ ଆସି କହି ପକାଇଲା ମା' ସାଆନ୍ତାଣି ! ପ୍ରଭୁ କ'ଣ ଏକା ଗୁଣ୍ଡିଚା ଯାତକୁ ଯାଉଛନ୍ତି କି ? ସାଥୀରେ ପରା ସେ ଗେହ୍ଲା ଭଉଣୀ ବସନ୍ତ ମୁହିଁକୁ ନେଇଛନ୍ତି । ଆଗରେ ବଳଭଦ୍ର ମଝିରେ ସେ ଫୁଲେଇ ଭଉଣୀ ସୁଭଦ୍ରା ଆଉ ପଛରେ ପ୍ରଭୁ ଶ୍ରୀଜଗନ୍ନାଥ ଯାଉଛନ୍ତି । ସେମାନଙ୍କ ଆଗେ ଆଗେ ଗଜପତି ରାଜା ବିଜେ କରୁଛନ୍ତି । ସେମାନଙ୍କ ରଥ ଏବେ ବଳଗଣ୍ଡି ପାର ହୋଇ ଗଲାଣି ।

ମୁଁ କଣ କରି ପାରିବି । ମୋତେ ସିନା ନ ଯିବା ପାଇଁ କହିଲେ । ଏବେ କିନ୍ତୁ ବଢ଼ିଲା ଭଉଣୀକୁ ସାଥୀରେ ଧରି ଦାଣ୍ଡରେ ବୁଲୁଛନ୍ତି । ନିଜ ସ୍ତ୍ରୀକୁ ଉପେକ୍ଷା କଲେ । ମୋ ଦେଢଶୁର ତ ମଉନ ମୁହାଁ କଣ୍ଠିଆ ମାତ୍ର ଭଉଣୀକୁ ସଙ୍ଗରେ ଘେନିଣ ରଥ ବାହି ଯା'ନ୍ତି । ଆଉ ସେ ଭଉଣୀ ଖଣ୍ଡିକ କମ୍ କି ? ସେ ଗୋଟାଏ ଝାମ୍ପିଲା ବାଘୁଣୀ – ଲକ୍ଷ୍ମୀ ଦୁଃଖ ଓ ଅଭିମାନରେ ଏ କଥା କହିଲେ । ଏକଥା ଶୁଣି ପୁଣି ସରସ୍ୱତୀ ଓ ବିମଳା ମୁହଁମୋଡ଼ି ହସି ପକାଇଲେ ।

କବି ବଳରାମ ଦାସ ଆଢୁଆଳରେ ସବୁ ଶୁଣୁଥାନ୍ତି । ପ୍ରଭୁଙ୍କୁ ରଥଯାତ୍ରାର ଅଧା ବାଟରେ ଛାଡ଼ି ସେ ଆସିଛନ୍ତି ମା' ଲକ୍ଷ୍ମୀ ହାଲଚାଲ ବୁଝିବାକୁ । କାରଣ ମା' ଲକ୍ଷ୍ମୀ ଦୁଃଖୀ ହେଲେ ବଳିଆ ଦାସଙ୍କୁ ଅନ୍ନ ପାଣି ପିତା ଲାଗେ । ନିଜ ମା'ଙ୍କ ଠାରୁ ଅଧିକ ଭକ୍ତି କରନ୍ତି ସେ ମହାଲକ୍ଷ୍ମୀଙ୍କୁ । ବେଳେ ବେଳେ ମା' ପାଖରେ ଛୋଟ ପିଲା ଅଳି କରି ବସିଲା ଭଳି ସେ ଅଳିକରି ବସନ୍ତି ମା' ମହାଲକ୍ଷ୍ମୀଙ୍କ ଆଗରେ । ସେ ଭାବିଥିଲେ ମା'ଙ୍କର ଭଲ ମନ୍ଦ ଖବର ନେଇ ପ୍ରଭୁଙ୍କ ଆଗରେ ଜଣାଇ ପ୍ରଭୁଙ୍କୁ ଖୁସୀ କରାଇ ଦେବେ । ଆଉ ମହାଲକ୍ଷ୍ମୀ ସାନ୍ତ୍ୱନା ଦେଇ ଦିନ କେଇଟା ପ୍ରଭୁଙ୍କ ଅପେକ୍ଷାରେ କଟାଇ ଦେବା ପାଇଁ କହିବେ । ଏଠିକୁ ଆସି ସେ ଏସବୁ କ'ଣ ଶୁଣୁଛନ୍ତି ! ମହାଲକ୍ଷ୍ମୀଙ୍କ ମନରେ ଏ କି ପ୍ରକାର ଆବିଳତା । ଭଉଣୀକୁ ଭାଇମାନଙ୍କ ସହିତ ଯୋଡ଼ି କୁତ୍ସିତ ଅପନିନ୍ଦା । ଭାରି ସନ୍ଦେହୀ ।

ଲକ୍ଷ୍ମୀ ସ୍ୱାମୀଙ୍କର ଏ ଅପନିନ୍ଦାକୁ ଛାର ଦାସୀଟା ମୁହଁରୁ ଶୁଣୁଛନ୍ତି । ତା'ର ମୁହଁକୁ ବନ୍ଦ କରୁନାହାନ୍ତି ।

କବି ବଳରାମ ଦାସ ମନେ ମନେ କହୁଥାନ୍ତି –

ସ୍ତିରୀ ଜାତି ତୁମେ ଅତି ମୁରୁଖ
ବୁଝାଇଲେ ହେଲେ କଥା ନରଖ
ସୁଭଦ୍ରା ଅଟେ ତୁମ୍ଭ ନଣନ୍ଦ
ପ୍ରିୟ କଥା କହି କର ଆନନ୍ଦ
ସେ ସନ୍ତୋଷ ହେବ
ପ୍ରିୟ ସଖୀ ସଙ୍ଗେ ପ୍ରଶଂସା ଦେବ ।

ମାତ୍ର ମହାଲକ୍ଷ୍ମୀ କିଛି ବୁଝୁଛନ୍ତି ? ଅଭିମାନରେ ଫୁଲି ଫୁଲି କାନ୍ଦିଲେଣି । କିଛି ବୁଝାଇ ଲାଭ ନାହିଁ । ସେ ସିନା ଜଗନ୍ନାଥଙ୍କ ଉପରେ ରାଗୁଥିଲେ କିନ୍ତୁ ପ୍ରଭୁ ଠିକ୍ କଥା କହିଛନ୍ତି । ସେଦିନ କୋପଭର ହୋଇ କହିଥିଲେ–



ବାପ ତ ଲୁଣିଆ ଯେ ଗରଜି ମରୁଥାଇ
ଝିଅ ଟେରୀ ତୋ ଦୁର୍ଗୁଣ କହିଲେ ନସରେ
ବାପର ଗର୍ଜନ ଶବ୍ଦେ କିଏ ରହିପାରେ।

'ଏ ଟେରୀର ଗୁଣ କମ୍ ନୁହେଁ।' ବଳରାମ ଦାସ ଆଉ ସହି ପାରିଲେ ନାହିଁ। ବଡ଼ ପାଟିରେ କହି ପକାଇଲେ, ନିଜ ପ୍ରଭୁଙ୍କୁ ପୁଣି ଏତେ ଅପବାଦ ? ସେ ଅବଶ୍ୟ 'ଭାବ ସମୁଦ୍ରରେ' ପ୍ରଭୁଙ୍କୁ ବହୁ ଅପବାଦ ଦେଇଛନ୍ତି ? ମାତ୍ର ତାହା ଥିଲା ପ୍ରଭୁଙ୍କ ପ୍ରତି ଅଭିମାନ। ଏତ ଲକ୍ଷ୍ମୀଙ୍କର ଅଭିମାନ ନୁହେଁ – କ୍ରୋଧ। କ୍ରୋଧ ପୁଣି ସନ୍ଦେହର ରୂପ ନେଲାଣି। ସେ ଆଉ ଲୁଚି ରହି ପାରିଲେ ନାହିଁ। ଠାକୁରାଣୀଙ୍କ ସମ୍ମୁଖକୁ ଆସି କହି ପକାଇଲେ– ସତେ ଯେମିତି ସେ ମା'ଙ୍କ ସହିତ କଳି କରୁଛନ୍ତି – କାଣୀ ହୋଇ ନଥିଲେ ଆଉ କେତେ ପହିଜ କହିଥାନ୍ତ। ଯିଏ କାଣୀ ଦୁନିଆଟା ତାକୁ ଅଧା ଦେଖାଯାଏ ପୂରା ନୁହେଁ। ଆଉ ଅଧକ ତା ପାଇଁ ଅନ୍ଧାର। ସେ ଭଲ କଥା କାହୁଁ ଦେଖିବ ?

ବଳରାମ ଦାସଙ୍କୁ ସେଠାରେ ଦେଖି ବିମଳା ଆଉ ସରସ୍ୱତୀ ସେଠାରୁ ଜିଭ କାମୁଡ଼ି ଅପସରି ଗଲେ। ବଳିଆ ବାଲି ରଥରେ ପ୍ରଭୁଙ୍କୁ ବସାଇ କି ପ୍ରକାର ଉଲୁଗୁଣା ଦେଇଛି ସେ ଜାଣନ୍ତି। ସବୁ ଗୋହି ଖୋଲି ଦେଇଛି। ଏବେ ସେ ଦୁହିଁଙ୍କୁ ଏଠି ଦେଖିଲେ କଣ ନା କ'ଣ କରି ବସିବ। କ'ଣ ବୁଝିବ ଲଗେଇ ଜୁଟେଇ ଗୀତ ଲେଖିଦେବ। ହାତରେ ଲେଖନୀ। ଜନ ଜଗତ ତାହା ପଢ଼ି ସେମାନଙ୍କ ଅସଲ ଗୁମର ଜାଣିଯିବେ। ସେ ତ ଆମକୁ ମାନ୍ୟ କରୁଛି। ଏମିତି ମାନ୍ୟ କରୁଥାଉ। ତା ସାଥୀରେ ଉଚ୍ଚବାଚ ହେଲେ କିଛି ଫଳ ଫଳିବନି।

ନିଜ ଅନ୍ତରଙ୍ଗ ଆଳାପ ବେଳେ ଏଇଟା କିଏ ? ଆମର କ'ଣ ବ୍ୟକ୍ତିଗତ ମତ କିଛି ନାହିଁ। ସ୍ୱାଧୀନତା ବୋଲି କିଛି ନାହିଁ। ପ୍ରଭୁ, ବଳିଆଟାକୁ ମୁହଁ ଦେଇଛନ୍ତି ବୋଲି ମାଇପିମାନଙ୍କର କଥାବାର୍ତ୍ତା ବେଳେ ସେ ବିନା ଅନୁମତିରେ ଆସି ନାକ ବୁଡ଼ାଇ ଶୁଣିବ। ଲକ୍ଷ୍ମୀ ରାଗିଗଲେ। ଲକ୍ଷ୍ମୀ ରାଗିଗଲେ ତ କାହାରି ନୁହଁନ୍ତି, ସେ ବାଇ ଠାକୁରାଣୀ ପୁଣି ହଟ କମଳିନୀ । ଲକ୍ଷ୍ମୀଦେବୀ ବଳିଆ ଦାସଙ୍କୁ ଆଙ୍ଗୁଠି ଦେଖାଇ କହିଲେ – ଦାସେ ! ତୁମେ କ୍ଷେତ୍ରରେ ଥିଲେ ସିନା ଆମ ସ୍ୱାମୀ ସ୍ତ୍ରୀ କଥାରେ ମୁଣ୍ଡ ପୂରାଉଛ। ମୁଁ ତୁମକୁ ଅଭିଶାପ ଦେଲି ତୁମେ କ୍ଷେତ୍ର ଲାଭ କରିପାରିବ ନାହିଁ। ବାଟରେ ପଡ଼ି ମରିବ।

ବଳରାମ ଦାସେ ମହାଲକ୍ଷ୍ମୀଙ୍କ ଅଭିଶାପକୁ ସହିଗଲେ ବିନା ପ୍ରତିବାଦରେ। ସେ ଭାବିଥିଲେ ଗୁଣ୍ଡିଚା ଯାତ ପରେ ପ୍ରଭୁ ଶ୍ରୀମନ୍ଦିରରେ ପ୍ରବେଶ କରିବେ। ଆଉ ମୋତେ ଡକାଇ କିଛି ସମାଧାନ କରିବେ। ସେ ଅଭିମାନ କରି ଆଉ ଶ୍ରୀମନ୍ଦିରକୁ ଗଲେ ନାହିଁ। ପ୍ରଭୁ ବି ଡକାଇଲେ ନାହିଁ। ସତେ ଯେମିତି ବଳିଆ ଦାସ ବୋଲି ଜଣେ ଭକ୍ତକୁ ପ୍ରଭୁ ଜାଣନ୍ତି ନାହିଁ।

ବଳରାମ ଦାସ ଭାବିନେଲେ ପ୍ରଭୁ ବୋଧେ ଚାହୁଁଛନ୍ତି ବଳିଆ ଶ୍ରୀକ୍ଷେତ୍ରରେ ବାସ ନ କରୁ। ତେବେ ସେ କାହିଁକି ଶ୍ରୀକ୍ଷେତ୍ର ଷୋଳକୋଶ ମଧ୍ୟରେ ବାସ କରିବେ। ଲକ୍ଷ୍ମୀ ଯଦି ତାଙ୍କ ଜିଦ୍‌ରେ ଅଟଳ ତେବେ ସେ ଏତେବଡ଼ ପ୍ରଭୁଙ୍କର ଭକ୍ତ ହୋଇ କାହିଁକି ହଟିଯିବେ। ସେ କ'ଣ ନିଜପାଇଁ କି ନିଜ କଥାକୁ ନେଇ ଲକ୍ଷ୍ମୀଙ୍କୁ ଦିପଦ ଶୁଣାଇ ଥିଲେ କି ? ଶେଷ ଜୀବନରେ କ୍ଷେତ୍ରଲାଭ ହୋଇପାରିବନି। ସମସ୍ତଙ୍କ ଭାଗ୍ୟରେ କ'ଣ କ୍ଷେତ୍ର ଲାଭ ଅଛିକି ? ଅଚ୍ୟୁତ, ଯଶୋବନ୍ତ', ଅନନ୍ତ ପୁଣି କ୍ଷେତ୍ରବାସ କରୁ ନାହାନ୍ତି। ସେମାନେ କ'ଣ ମୁକ୍ତି ହେବେନି। କେବଳ ସେ କ୍ଷେତ୍ରବାସ କରିଥିଲେ ମୁକ୍ତି ହୋଇ ଯାଇଥାନ୍ତେ ?

ପୁରୀରୁ ନିମାପଡ଼ା ଆସିବା ବାଟରେ ପଡ଼େ ଗୋପ ବୋଲି ସ୍ଥାନଟିଏ। କୁଶଭଦ୍ରା ନଦୀକୂଳ। ସେଇଠି ଅଛି ଗାଁଟିଏ ନାଁ ତା'ର ଏରବଙ୍ଗ। ଦାସେ ସେଇ ଗାଁକୁ ଆସି କୁଡ଼ିଆଟିଏ ତିଆରି କଲେ। ସେତେବେଳକୁ ତାଙ୍କ ବୟସ ଅଧିକ ହୋଇ ଗଲାଣି। ବଳରାମ ଦାସ ବାବାଜୀଙ୍କ ନାଁ ଶୁଣି ଗାଁ ଲୋକମାନେ ବହୁତ ସମ୍ମାନ ଦେଲେ। ପାଳିକରି ଲୋକମାନେ ଖାଇବା ପିଇବା ବ୍ୟବସ୍ଥା କରାଇଦେଲେ। ଲୋକମାନଙ୍କ ଗହଣରେ ବସି ଦାସେ ଦିନରାତି ଜ୍ଞାନ ଚର୍ଚ୍ଚା କରିବାରେ ଲାଗିଲେ। ଭଜନ କୀର୍ତ୍ତନ ପୂଜାର୍ଚ୍ଚନାରେ ସମୟ କଟିଯାଉଥାଏ। ବେଳେ ବେଳେ ଲେଖନୀ ଧରି କ'ଣ ସବୁ ତାଳପତ୍ର ଖେଦାରେ ଲେଖୁଥାନ୍ତି।



ସମୟ ସ୍ରୋତ ବହି ଚାଲିଛି। ସେ ପଞ୍ଚସଖାମାନଙ୍କ ମଧ୍ୟରେ ବଡ଼। ଏବେ ବୁଢ଼ା ହୋଇ ଗଲେଣି ମଧ୍ୟ। ହାତ ଗୋଡ଼ ଚଳୁନି। ସେଇଟା ବୋଧେ ତାଙ୍କ ଜୀବନର ଶେଷ ଅବସ୍ଥା। ଦାସେ କାତର ଭାବରେ ପ୍ରଭୁଙ୍କୁ ସ୍ମରଣ କଲେ, ବିକଳ ଭାବରେ ଡାକ ପକାଇଲେ ପ୍ରଭୁ ! ବଳିଆରଭୁଜ ଶ୍ରୀଜଗନ୍ନାଥ, କାଳିଆ ଠାକୁର ! ଜୀବନରେ ବହୁତ କିଛି ସହିଛି। ବହୁ କଥା ଅଙ୍ଗେ ନିଭାଇଛି। ବହୁତ ଜ୍ଞାନ ଗରିମା ଓ ଇତିହାସ କଥା ତୁମ ଦୟାରୁ ଲେଖିଗଲି। ଯେଉଁ ଲକ୍ଷ୍ମୀପୁରାଣ ଘରେ ଘରେ ପରିଚିତ, ତହିଁରେ ଲକ୍ଷ୍ମୀଙ୍କ ମହିମା ସହିତ ଆପଣଙ୍କର କରୁଣା କଥା ମଧ୍ୟ ଉଲ୍ଲେଖ କରିଛି। ଆଜି ଓଡ଼ିଶାର ପ୍ରତ୍ୟେକ ଚାହାଳୀରେ ପଢ଼ା ଯାଉଥିବା କମଳ ଲୋଚନ ଚଉତିଶାରେ ଆପଣଙ୍କ କଥା ବର୍ଣ୍ଣନା କରି ଗାଇଛି –

କମଳ ଲୋଚନ ଶ୍ରୀହରି
କରେଣ ଶଙ୍ଖ ଚକ୍ରଧାରୀ।
ଖଗ ଆସନେ ଖଗପତି
ଖଟନ୍ତି ଲକ୍ଷ୍ମୀ ସରସ୍ୱତୀ।

ଯେଉଁ ଲକ୍ଷ୍ମୀଙ୍କୁ ଏତେ ପ୍ରଶଂସା କରିଥିଲି, ସେହି ଲକ୍ଷ୍ମୀଙ୍କ ଅଭିଶାପରୁ ଆଜି ଅପନ୍ତରାରେ ପଡ଼ିଛି, ବାଟରେ ପଡ଼ି ମରୁଛି । ଲକ୍ଷ୍ମୀ କହିଥିଲେ କ୍ଷେତ୍ରଲାଭ ହେବନି। ବାଟରେ ପଡ଼ି ମରିବୁ। ସତରେ ତାହା ଘଟିବାକୁ ଯାଉଛି। ମୁଁ ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ଥରେ ମାତ୍ର ଏଇ ଚର୍ମ ନେତ୍ରରେ ତୁମକୁ ଦର୍ଶନ କରିବାକୁ ଚାହୁଁଛି। ମୋତେ ସତେକି କୃପା କରନ୍ତୁ।

ଶ୍ରୀନୀଳକନ୍ଦରରେ ଥାଇ ବଳିଆ ଦାସର ବିକଳ କ୍ରନ୍ଦନ ପ୍ରଭୁ ଜଗନ୍ନାଥ ଶୁଣି ପାରିଲେ। ସେ ଭାବଗ୍ରାହୀ। ଭକ୍ତର ବିକଳ ପ୍ରାର୍ଥନା ନ ଶୁଣନ୍ତେ ବା କିପରି ? ଗରୁଡ଼କୁ ଡାକି ଆଜ୍ଞା ଦେଲେ ଏରବଙ୍ଗ ଯିବାପାଇଁ। ଏଇ ସମୟରେ ମହାଲକ୍ଷ୍ମୀ ଆସି ପହଞ୍ଚି ଗଲେ। କହିଲେ – ପ୍ରଭୁ ! କେଉଁଆଡ଼େ ଯିବାପାଇଁ ବାହାରିଛନ୍ତି କି ?

ବଳରାମ ଦାସର ମର୍ତ୍ତ୍ୟ ରହଣି ସରି ସରି ଆସୁଛି । ସେ ଅସୁସ୍ଥ ତାକୁ ମୁକ୍ତି ଦେବାକୁ ହେବ। ମୁଁ ତା ନିକଟକୁ ଯାଉଛି।

– ପ୍ରଭୁ ବ୍ୟସ୍ତ ମନରେ ଉତ୍ତର ଦେଲେ।

– ତେବେ ଅପେକ୍ଷା କରନ୍ତୁ ମୁଁ ଆପଣଙ୍କ ସହିତ ଯିବି।

– କାହିଁକି ? ଅଭିଶାପ କେମିତି କାମ ଦେଇଛି ତା ପରଖିବା ପାଇଁ ?

– ନା ନା ମା' ମନରେ ସେମିତି କିଛି ନଥାଏ। ମା' ଗାଳି ଦାଣ୍ଡର ଧୂଳି। ଅଝଟିଆ କ'ଣ ପଦେ କହି ଦେଇଥିଲା ବୋଲି ତା କଥା କ'ଣ ମୁଁ ଧରି ବସିଛି। ସେ କ୍ଷମା ମାଗିବାକୁ ମୋ ପାଖକୁ ଆସିଲାନି ବୋଲି ଏ ଶେଷ ବେଳାରେ ମୁଁ କେମିତି ତାକୁ ଦେଖା ନଦେଇ ରହିବି ! ଲୋକେ କ'ଣ କହିବେ। ମା'ର ମହତ୍ତ୍ୱ କ'ଣ ରହିବ ?

ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀ ବଳରାମ ଦାସଙ୍କ କୁଡ଼ିଆରେ ପ୍ରବେଶ କଲେ। କୁଟୀରଟି ଦିବ୍ୟଜ୍ୟୋତିରେ ଉଦ୍‌ଭାସିତ ହୋଇ ଉଠିଲା । ଦାସେ ଶେଯରେ ଶୋଇ ସାମାନ୍ୟ ଆଖି ଖୋଲି ଚାହିଁଲେ। ଦେଖିଲେ ଗରୁଡ଼ ପୃଷ୍ଠରେ ଶଙ୍ଖଚକ୍ରଧାରୀ ପ୍ରଭୁ ଶ୍ରୀଜଗନ୍ନାଥ ଆଉ କୋଳରେ ମା' ମହାଲକ୍ଷ୍ମୀ। କମଳନୟନୀ କମଳା କରୁଣା ଦୃଷ୍ଟିରେ ତାଙ୍କୁ ଚାହିଁଛନ୍ତି।

ଦାସେ କାରୁଣ୍ୟ ହସ ହସି କହିଲେ – କିଲୋ କାଣୀ ଏବେ କ'ଣ ହେଲା ?

ଲକ୍ଷ୍ମୀ ଉତ୍ତର ଦେଲେ – କ'ଣ ହେଲା, ଏ କ'ଣ କ୍ଷେତ୍ର କି ?

ଦାସେ କହିଲେ – କିଲୋ କ୍ଷେତ୍ର ଆଉ କାହାକୁ କୁହନ୍ତି ? ତୁମେ ଘଇତା ମାଇପ ତ ଯେଉଁଠି କ୍ଷେତ୍ର ତ ସେଇଠି , ଆଉ କ୍ଷେତ୍ର ଅଇଲା କେଉଁଠୁ ? (–ଘ–ଘଟ ଭିତରେ ଈଶ୍ୱର, ମା, ଅର୍ଥ ମଧ୍ୟ ଈଶ୍ୱରଙ୍କ ମାୟା। ଘଇତା ମାଇପ–ମାୟା ପ୍ରକୃତି, ଶରୀର ଭିତରେ ଈଶ୍ୱର। ଘଇତା ମାଇପ ଯେଉଁଠି–ବୈକୁଣ୍ଠ ସେଇଠି।)

ମହାଲକ୍ଷ୍ମୀ ଏବେ ନିରୁତ୍ତର। ସାମାନ୍ୟ ହସିଦେଲେ। ଆଉ ଭାବିଲେ ବଳିଆ ମୋ' ପାଇଁ କ'ଣ ନ କରିଛି। ଲକ୍ଷ୍ମୀପୁରାଣ ଲେଖି ମୋ' ମହିମା ପ୍ରଚାର କରିଛି। ନାରୀ ଜାତିକୁ



ତେବେ ମୋର ପ୍ରିୟ ପୁତ୍ର ବଳରାମ ମୁକ୍ତି ପଥରେ ଯାଉ। ବୈକୁଣ୍ଠ ପ୍ରାପ୍ତି ହେଉ। ମୁଁ ମାଆ ହୋଇ ତାକୁ କ୍ଷମା ଦେବି। ସତରେ ଆମେ ଲକ୍ଷ୍ମୀ ନାରାୟଣ ଯେଉଁଠି ସେଇତ ବୈକୁଣ୍ଠ ସେଇତ ଶ୍ରୀକ୍ଷେତ୍ର। ବଳିଆକୁ ଶ୍ରୀକ୍ଷେତ୍ର ପ୍ରାପ୍ତି ହେଉ।

ମହାଲକ୍ଷ୍ମୀ ବଳରାମ ଦାସଙ୍କ ମୁଣ୍ଡକୁ ଧୀରେ ଧୀରେ ଆଉଁସି ଦେଇ କହିଲେ – ବଳିଆ ତୋତେ ଶ୍ରୀକ୍ଷେତ୍ର ପ୍ରାପ୍ତ ହେଉ। ତୋ ପାଇଁ ଏଇ ଏରବଙ୍ଗ ଦ୍ୱିତୀୟ ଶ୍ରୀକ୍ଷେତ୍ର ହେଲା। ଦାସେ ଅଳ୍ପ ହସି ଲକ୍ଷ୍ମୀ ନାରାୟଣଙ୍କୁ ହାତ ଯୋଡ଼ି ପ୍ରଣାମ କରୁ କରୁ ଶେଷ ନିଃଶ୍ୱାସ ତ୍ୟାଗ କଲେ। ସେତେବେଳକୁ ପଶ୍ଚିମ ଆକାଶରେ ସନ୍ଧ୍ୟା ନଇଁ ଆସୁଥିଲା। ଧନ୍ୟ ଭକ୍ତ ଧନ୍ୟ ଭଗବାନ।

ଆଲୋକନଗର, ନିଆଳୀ – ୭୫୪୦୦୪
ଜିଲ୍ଲା – କଟକ

ନ୍ୟାଯ୍ୟ ଅଧିକାର ଦେବାପାଇଁ ବିପ୍ଳବ ସୃଷ୍ଟି କରିଛି। ନାରୀ ଜାତିର ପ୍ରତିନିଧି ରୂପେ ମୋତେ ଠିଆ କରାଇ ବଡ଼ିମା ଗାଇଛି। ମୋ' ପାଇଁ ଯୁକ୍ତି ବାଢ଼ିଛି। ନାରୀ ଜାତିର ଶୃଙ୍ଖଳା ପାଇଁ ବ୍ରତବିଧାନ ଓ ନିୟମ ସୃଷ୍ଟି କରିଛି। ସୁଦଶାବ୍ରତ ତା'ର ଭିଆଣ। ମହାକ୍ରୋଧୀ ମୋ' ଦେଡଶୁରଙ୍କ ମୁହଁରେ କୁହାଯାଇଛି –

ଆହୁରି କଥାଏ ଶୁଣ ଜଗନ୍ନାଥ ଭାଇ
ଲକ୍ଷ୍ମୀ ବଡ଼ ବୋଲି ଏବେ ଆମ୍ଭେ ଜାଣିଲଇଁ।

ପୁଣି ଦାସେ ଲେଖିଛନ୍ତି –

ଏ ପୁରାଣ ପଢ଼ିଲେ ସର୍ବସିଦ୍ଧି ହୁଏ
ସୁର୍ଯ୍ୟୋଦୟ ତମ–ସମ ପାପକ୍ଷୟ ଯାଏ।
ଏ ପୁରାଣ ଅଟଇ ମହା ମୁକତିର ପଥ,
ଭାବେ ଗାଏ, ଏହି ଗୀତ ବଳରାମ ଦାସ।

# ସବୁଠାରୁ ସାର

ମିଶ୍ର ସତ୍ୟନାରାୟଣ

ଯେତେ ଧାମ ଅଛି ସବୁଠାରୁ ସାର
ଶଙ୍ଖକ୍ଷେତ୍ର ନୀଳାଚଳ
ଯେତେ ନାମ ଅଛି ଜଗନ୍ନାଥ ନାମ
ଦିଏ ମୁକତିର ଫଳ ।।୦।।
ମଶାଣି ଯେଉଁଠି ସରଗ ଦୁଆର,
ଦାଣ୍ଡ ପୁଣି ବଡ଼ଦାଣ୍ଡ
ପତାକାର ନାଆଁ ପତିତପାବନ,
ଭୋଗ ମହାପରସାଦ
ଯେତେ ଛାଇ ଅଛି ସବୁଠୁ ଶୀତଳ
କଳପବଟର ତଳ ।।୧।।



କେଉଁ ବଜାରେ ମୋ ନାହିଁ ତ ଆନନ୍ଦ
ଆନନ୍ଦବଜାର ବିନା
ଶରଧା–ସେନେହ ମିଳଇ କେବଳ
ଶରଧା ବାଲିରେ ସିନା
ଯେତେ ଶୋଷ ମରେ ପାଇଗଲେ ଥରେ
ଟୋପାଏ ତୁଳସୀ ଜଳ ।।୨।।

ମାର୍ଫତ– ପ୍ରକାଶ ଚନ୍ଦ୍ର ମିଶ୍ର
ବିଜିପୁର, ରଥସାହି
ବ୍ରହ୍ମପୁର, ଗଂଜାମ



# ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦର ମାହାତ୍ମ୍ୟ ଓ ଆୟୁର୍ବେଦୀୟ ଭିତ୍ତିଭୂମି

ଡାକ୍ତର ଦୀନବନ୍ଧୁ ମହାରଣା

ମହାପ୍ରସାଦ କହିଲେ ଶ୍ରୀମନ୍ଦିରରେ ପ୍ରସ୍ତୁତ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରସାଦକୁ ବୁଝାଇଥାଏ । ମହାପ୍ରସାଦର ମହିମା ଅବର୍ଣ୍ଣନୀୟ । ଏହା ଅମୃତତୁଲ୍ୟ । ମନୁଷ୍ୟକୁ ମୁକ୍ତି ପ୍ରଦାନ କରିଥାଏ ବୋଲି ବିଶ୍ୱାସ ରହିଛି । ମହାପ୍ରସାଦ ସେବନରେ ମନୁଷ୍ୟ ପରମ ଆନନ୍ଦ ଲଭିଥାଏ । ଏହା ମାନବ ଶରୀରର କୌଣସି କ୍ଷତି କରିନଥାଏ । ସତ କହିବାକୁ ଗଲେ ମାନବ ଶରୀରର ସୁରକ୍ଷାରେ ମହାପ୍ରସାଦର ମହିମା ଅବର୍ଣ୍ଣନୀୟ ।

ମହାପ୍ରସାଦର ରନ୍ଧନଶୈଳୀକୁ ଦୃଷ୍ଟିଦେଲେ ଜାଣି ହୁଏ ଯେ, ଏହା ସମ୍ପୂର୍ଣ୍ଣ ବାମ୍ପ ଦ୍ୱାରା ପ୍ରସ୍ତୁତ ହୋଇଥାଏ । ରନ୍ଧନ କାର୍ଯ୍ୟରେ ବ୍ୟବହୃତ ପରିବାରୁ ଚୋପା ଛଡ଼ା ଯାଇନଥାଏ । ସୁପକାରମାନେ ବୈଜ୍ଞାନିକ ନୀତି ଅନୁସରଣ କରି ଏପରି ପ୍ରସାଦ ପ୍ରସ୍ତୁତ କରିଥାନ୍ତି । ତାହା କେବଳ ଅମୃତ ହିଁ ଅମୃତ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସେବାରେ ଆୟୁର୍ବେଦ କିପରି ଅନୁସୃତ ହୋଇଥାଏ, ତାହା ସମସ୍ତେ ଜ୍ଞାତ ହେବା ଆବଶ୍ୟକ । ଆୟୁର୍ବେଦ ପଦ୍ଧତି ଅନୁସାରେ ମହାପ୍ରସାଦ ରନ୍ଧନ ତଥା ପ୍ରସ୍ତୁତ ହେଉଥିବାରୁ ଏହାର ସେବନରେ କେହି କେହି ଅସୁସ୍ଥ ହୋଇପଡ଼ିଥିବା ଦୃଷ୍ଟିକୁ ଆସିନି । ମହାପ୍ରସାଦ ପ୍ରସ୍ତୁତରେ ଘିଅ ବ୍ୟତୀତ ଅନ୍ୟ କୌଣସି ତେଲ, ଗରମ ମସଲା, ପୋସ୍ତକ ଓ ଉତ୍ତେଜକ ଦ୍ରବ୍ୟ ବ୍ୟବହାର ନିଷିଦ୍ଧ । ମହାପ୍ରଭୁଙ୍କ ମହାପ୍ରସାଦରେ ଆୟୁର୍ବେଦର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ମହାପ୍ରସାଦର ଅଲୌକିକତା ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ଯେ, ଜଣେ ବ୍ୟକ୍ତି କିଭଳି ମହାପ୍ରସାଦ ସେବନ କରି ତାଙ୍କ ପେଟରେ ହୋଇଥିବା ଅନ୍ତନାଳୀ ଘା'କୁ ଭଲ କରିଥିଲେ । ଏଥିରେ ଆୟୁର୍ବେଦର ମହନୀୟତା ବିଶେଷ ଆଲୋଚିତ ଓ ପ୍ରତିଘାତ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ କେବଳ ମାଟିପାତ୍ରରେ ରନ୍ଧନ ହୋଇଥାଏ । ଏ ଦୃଷ୍ଟିରେ ପାକ ବା ପ୍ରସାଦ ସେବନ ନିମିତ୍ତ ମାଟିପାତ୍ର ହିଁ ସର୍ବୋତ୍ତମ । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ କୁମ୍ଭକାର ନିଯୋଗ ମାଟିପାତ୍ର ତିଆରି କରି ମହାପ୍ରସାଦ ପ୍ରସ୍ତୁତି ନିମିତ୍ତ ଶ୍ରୀମନ୍ଦିରକୁ ଯୋଗାଇଥାନ୍ତି । ଶ୍ରୀମନ୍ଦିରରେ ବ୍ୟବହୃତ ମାଟିପାତ୍ରକୁ ସାଧାରଣତଃ ୩ ଭାଗରେ ବିଭକ୍ତ କରାଯାଇଛି । ୧– ପାହାନ୍ତି ତାଡ଼ ୨– ମଝଲା ତାଡ଼, ୩–ଚାଟି ତାଡ଼ । ୪ ପ୍ରକାର ସରା– ବଡ଼, ପୁଳି, ପାଳି ଓ ପଟା ବ୍ୟବହୃତ ହୁଏ । ସମସ୍ତ ମହାପ୍ରସାଦ ପ୍ରସ୍ତୁତି ଯୋଗ୍ୟ ମାଟିପାତ୍ରର ରଙ୍ଗ ନାଲି ହିଁ ହେବା ବିଧିସମ୍ମତ । ପାକ ଯୋଗ୍ୟ ମାଟିପାତ୍ର ସମ୍ବନ୍ଧରେ 'ବାମଦେବ ସଂହିତା' ଦଶମ ଅଧ୍ୟାୟ ନବମ ଶ୍ଳୋକରୁ ତ୍ରୟୋଦଶ ଶ୍ଳୋକ ମଧ୍ୟରେ ବିଶେଷ ବର୍ଣ୍ଣିତ ହୋଇଅଛି ।

ମହାପ୍ରସାଦ ପ୍ରସ୍ତୁତିରେ କେବଳ ବୈଷ୍ଣବାଗ୍ନି ବ୍ୟବହୃତ ହୋଇଥାଏ ଓ ଦେବୀ ପଦ୍ମାଳୟା– ମହାଲକ୍ଷ୍ମୀ ରନ୍ଧନ କାର୍ଯ୍ୟ ସମାପନ କରିଥାନ୍ତି । ହାଣ୍ଡିଗୁଡ଼ିକ ଚକ୍ରମୁଦ୍ରା ଆକାରରେ ସଜ୍ଜିତ ହୋଇ ପ୍ରସାଦ ପ୍ରସ୍ତୁତ ହୋଇଥାଏ । ଏହାଛଡ଼ା ମାଟିପାତ୍ରରେ ନିମ୍ନରେ ଚକ୍ରମୁଦ୍ରା ମଧ୍ୟ ଅଙ୍କିତ ହୋଇଥାଏ ।

ମହାପ୍ରସାଦ ପ୍ରସ୍ତୁତିରେ ଶାସ୍ତ୍ରୀୟ ବ୍ୟବସ୍ଥା ସମ୍ପୂର୍ଣ୍ଣ ରୂପେ ଅନୁସୃତ ହୋଇଥାଏ । ମହାପ୍ରସାଦ ପ୍ରସ୍ତୁତିରେ କେବଳ ମାଟିପାତ୍ର ଉତ୍ତମ ଓ ଗ୍ରହଣୀୟ ବୋଲି କୁହାଯାଇଛି । ମାଟିପାତ୍ରରେ ଯେଉଁ ପ୍ରସାଦ ପ୍ରସ୍ତୁତ ହୋଇଥାଏ ସେଥିରେ ମାଟିପାତ୍ରର କ୍ଷୟଅଂଶ ପ୍ରସାଦରେ ମିଶିବାର ସୁଯୋଗ ନ ଥାଏ । ମାତ୍ର ଧାତୁ ନିର୍ମିତ



ପାତ୍ରରେ ପାକ ପ୍ରସ୍ତୁତ ହେଲେ ଯାହାକି ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ। ଏତଦ୍ ବ୍ୟତୀତ ମାଟିକୁଡ଼ୁଆରେ କୌଣସି ସମସ୍ୟା ନଥାଏ। ଆୟୁର୍ବେଦୀୟ ମତରେ ମାଟିପାତ୍ରରେ ରନ୍ଧନ ଅନ୍ନ, ବ୍ୟଞ୍ଜନ ସର୍ବଦା ରୁଚିକର ଓ ସ୍ୱାସ୍ଥ୍ୟ ପାଇଁ ହିତକର। ମାଟିପାତ୍ରର ମହନୀୟତା ସମ୍ପର୍କରେ ସ୍କନ୍ଦ ପୁରାଣରେ ବିଶେଷ ବର୍ଣ୍ଣିତ।

ମହାପ୍ରଭୁ ଶ୍ରୀଜଗନ୍ନାଥ ହିଁ ଦାରୁବ୍ରହ୍ମ। ଦାରୁ ବା ବୃକ୍ଷରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ବା ବିଗ୍ରହ ନିର୍ମିତ ହୋଇଥାଏ। ତେଣୁ ଆୟୁର୍ବେଦରେ ବୃକ୍ଷର ମାହାତ୍ମ୍ୟ ପର୍ଯ୍ୟାପ୍ତ ରୂପେ ବର୍ଣ୍ଣିତ। ଏ ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କ ସେବାରେ ଆୟୁର୍ବେଦର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ। ମହାପ୍ରସାଦ ପ୍ରସ୍ତୁତିରେ ବୃକ୍ଷ ବା କାଷ୍ଠକୁ ଗୁରୁତ୍ୱ ଦିଆଯାଇଛି। ଯେଉଁ କାଠକୁ ଜାଳେଣି ରୂପେ ବ୍ୟବହାର କରାଯାଇଥାଏ, ତାହା ସାଧାରଣତଃ କଣ୍ଟା, କ୍ଷୀରଯୁକ୍ତ ଓ ବଜ୍ର ସଦୃଶ ଓ କୀଟଦ୍ରଷ୍ଟ ହୋଇନଥିବା ଆବଶ୍ୟକ। ରୋଷଶାଳ ନିମିତ୍ତ କେଉଁ କେଉଁ କାଠ ଅଧିକ ଉପଯୁକ୍ତ ଓ ଗ୍ରହଣୀୟ। ତାହା 'ବାମଦେବ ସଂହିତା'-(୯/୧୦)ରେ ଉଲ୍ଲେଖ କରାଯାଇଅଛି।

ମହାପ୍ରସାଦ ପ୍ରସ୍ତୁତିରେ ପବିତ୍ର ତଥା ବିଶୁଦ୍ଧ ଜଳର ଆବଶ୍ୟକତା ଅତୀବ ଗୁରୁତ୍ୱପୂର୍ଣ୍ଣ। ତେଣୁ ଶ୍ରୀମନ୍ଦିର ରୋଷଶାଳା ନିମିତ୍ତ ଉତ୍ତର ଦିଗରେ ଗଙ୍ଗା ଓ ଯମୁନା ନାମକ ଦୁଇଟି କୂଅ ରହିଛି। ଏହି ଜଳ କେବଳ ମହାପ୍ରସାଦ ରନ୍ଧନ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ। ଏହି ଜଳରେ କୌଣସି ରାସାୟନିକ ତ୍ରୁଟି ରହିନଥାଏ। ଗଙ୍ଗା ଓ ଯମୁନା କୂଅର ଜଳ ନିରୋଗ, ସ୍ୱାଦଯୁକ୍ତ ଓ ରୁଚିକର। ରନ୍ଧନ କାର୍ଯ୍ୟରେ କାଠକୋଇଲା (ଅଂଗାର) ବିଞ୍ଚଣା, ରନ୍ଧା ଦଉଡ଼ି, ଡଙ୍କା, ଗାମୁଛା, ହାତୁଆଣି, ଶିକା, ପାଣିହାଣ୍ଡି, ବାଲ୍‌ତି, ଦଉଡ଼ି, କୂଅପାଣି, ଆସନ, କରେଇ, ପିଙ୍ଗଳ, ମଳା, ଭୋଗେଇ, ବାହୁଡ଼ା ଇତ୍ୟାଦି ବ୍ୟବହୃତ ହୋଇଥାଏ। ମହାପ୍ରଭୁଙ୍କ ମହାପ୍ରସାଦ ରନ୍ଧନରେ ତାଳପତ୍ରରେ ପ୍ରସ୍ତୁତ ଭୋଗେଇ ଓ ପବିତ୍ର ନଡ଼ିଆ ବୃକ୍ଷର କତାକୁ ଦଉଡ଼ିମାନ ତିଆରି କରାଯାଇ ରନ୍ଧନବେଳେ ବଡ଼ବଡ଼ ହାଣ୍ଡିକୁ ଟେକା ଯାଇଥାଏ। ଏହାଛଡ଼ା କୂଅରୁ ଜଳ ଉତ୍ତୋଳନ ବେଳେ ମଧ୍ୟ କତା ଦଉଡି ବ୍ୟବହାର ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦର ମହିମା ସମ୍ପର୍କରେ ୨୬ଗୋଟି ମହାପୁରାଣ, ଉପପୁରାଣ ଓ ତନ୍ତ୍ରଶାସ୍ତ୍ରମାନଙ୍କରେ ସୁବିସ୍ତୃତ ବର୍ଣ୍ଣିତ ହୋଇଅଛି।

ପୃଥିବୀର ସର୍ବପ୍ରାଚୀନ ଶାସ୍ତ୍ର ଆୟୁର୍ବେଦ ସହିତ ମହାପ୍ରସାଦ ସମ୍ପର୍କରେ ଅଭିନ୍ନ। ମହାପ୍ରସାଦ ପ୍ରସ୍ତୁତିରେ ତନ୍ତୁଜାତୀୟ ପରିବାକୁ ଗ୍ରହଣ କରାଯାଇଛି, ଯେଉଁଥିରେ ମାନବର ଶରୀର ସୁରକ୍ଷାକୁ ବିଶେଷ ଦୃଷ୍ଟି ଦିଆଯାଇଥାଏ। 'କପିଳ ସଂହିତା'ର ବର୍ଣ୍ଣନା ଅନୁସାରେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନ କଲେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଭଳି ମୁକ୍ତି ମିଳିଥାଏ। ମହାପ୍ରସାଦ ସେବନ କଲେ ମୁକ୍ତି ସୁନିଶ୍ଚିତ ବୋଲି 'ବ୍ରହ୍ମବୈବର୍ତ୍ତ ପୁରାଣ' ପ୍ରମାଣିତ କରିଛି।

ପଦ୍ମପୁରାଣରେ ମହାପ୍ରସାଦର ମହିମା ଦୃଷ୍ଟିଗୋଚର ହୁଏ। ଶ୍ରୀମନ୍ଦିରରେ ଚଣ୍ଡାଳ, ବ୍ରାହ୍ମଣ ଏକତ୍ର ମହାପ୍ରସାଦ ସେବନରେ ବିଚାର ନାହିଁ ।

ମନୁଷ୍ୟର ସକଳ ପାପ ବା ଦୋଷ ମହାପ୍ରସାଦ ସେବନ ମାତ୍ରକେ ଦୂର ହୋଇଥାଏ ବୋଲି ବିଷ୍ଣୁପୁରାଣରେ ବର୍ଣ୍ଣନା ରହିଛି। ସେହିପରି ମହାପ୍ରସାଦ ପ୍ରାପ୍ତ ମାତ୍ରକେ ସେବନ କରିବା ଉଚିତ୍ ବୋଲି ବିଷ୍ଣୁ ଯାମଳଗ୍ରନ୍ଥରେ ବର୍ଣ୍ଣନା ରହିଛି ।

ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଅନ୍ନ, ଡାଲି, ବେସର ଯାହା ଯାହା ଭୋଗ ରହିଛି, ତାକୁ ଯଦି ଲୋକ ଭକ୍ଷ ଅଭକ୍ଷ ବିଚାର କରେ ସେ ନିଶ୍ଚିତ ଭାବରେ ମନ୍ଦରୋଗୀ ହୁଏ ବୋଲି ବହୁ ଗବେଷକ ମତପୋଷଣ କରିଛନ୍ତି। ବାଛ ବିଚାର ନ କରି ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନ କଲେ ମହାପ୍ରସାଦ ଦାନ କରୁଥିବା ବ୍ୟକ୍ତି ମୁକ୍ତି ଲାଭ କରିବା ସହିତ ତାଙ୍କ ପୂର୍ବପୁରୁଷଙ୍କ ଆତ୍ମାକୁ ମଧ୍ୟ ଶାନ୍ତି ଓ ମୋକ୍ଷ ପ୍ରଦାନ କରିଥାଏ।

---

୧୧୧, ମ୍ୟୁନିସପାଲିଟି ମାର୍କେଟ କମ୍ପ୍ଲେକ୍ସ
ଓ.ଏମ୍.ପି. ଛକ, କଟକ-୩



# ଉତ୍କଳର ନେତା ନିଜେ ନାରାୟଣ

**ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ**

'ଅହର୍ନିଶଂ ମେ ତବପାଦପଦ୍ମାନାପୈତୁ
ମତପ୍ରାର୍ଥିତମେଦେବ।
ତ୍ୱାଂ ସଚ୍ଚିଦାନନ୍ଦସୁପୂର୍ଣ୍ଣସିନ୍ଧୁଂ ପ୍ରାପ୍ତାସ୍ତୁ
ଯେ ଜନ୍ମ ସହସ୍ରାଭାଗୈଃ ।
କିଂ ତେ ହି ପଶ୍ୟନ୍ତି ଲବୈକସୌଖ୍ୟମନେକଦୁଃଖଂ
ବିଷୟେନ୍ଦ୍ରକାଲମ୍।'
(ପୁରୁଷୋତ୍ତମ ମାହାତ୍ମ୍ୟ–୨୧.୧୪.୧୫)

ହେ ମହାପ୍ରଭୁ! ଆପଣଙ୍କର ଅଭୟ ପାଦପଦ୍ମରେ ମୋର ଏହି ପାପୀୟସୀ ବୁଦ୍ଧି ସର୍ବଦା ଯେପରି ଲୀନ ରହୁ ଏବଂ କେବେହେଲେ ତହିଁରୁ ବିଚ୍ୟୁତ ନ ହେଉ, ଏତିକିମାତ୍ର ମୋର ଅନ୍ତିମ ପ୍ରାର୍ଥନା। ଯେଉଁମାନେ ସହସ୍ର ଜନ୍ମ ସଂଚିତ ସୌଭାଗ୍ୟ ବଳରେ ସଚ୍ଚିଦାନନ୍ଦ ସାଗରରୂପୀ ଆପଣଙ୍କୁ ପ୍ରାପ୍ତ ହୋଇଅଛନ୍ତି, ସେମାନେ ସାମାନ୍ୟ ସୁଖଯୁକ୍ତ କେବଳ ଦୁଃଖମୟ ବିଷରୂପ ଇନ୍ଦ୍ରଜାଲ ଦିଗରେ ଦୃଷ୍ଟିପାତ କରନ୍ତି ନାହିଁ।

ଋତୁଚକ୍ରର ଆବର୍ତ୍ତନରେ ବର୍ଷାର ରିମ୍‌ଝିମ୍ ତାଳରେ ନିଦାଘକ୍ଳିଷ୍ଟ ଜନଜୀବନକୁ ଚଳଚଞ୍ଚଳ କରି ଆଷାଢ଼ ମାସ ଉପନୀତ। ଶୁକ୍ଳପକ୍ଷ ଦ୍ୱିତୀୟା ତିଥି। ବଡ଼ଦାଣ୍ଡରେ ବାମନ ବିଷ୍ଣୁଙ୍କୁ ରଥାରୂଢ଼ କରାଇ ଜନମାନସ ଉଦ୍‌ବେଳିତ। ଆଜି ଶୁକ୍ଳପକ୍ଷ ଦ୍ୱିତୀୟା ତିଥି। ଏହି ମନୋରମ ପରିବେଶ ମଧ୍ୟରେ ଜଗତର ନାଥ ଶ୍ରୀଜଗନ୍ନାଥ, ଯାହାଙ୍କର ଦାଣ୍ଡ ବଡ଼ଦାଣ୍ଡ, ଯାହାଙ୍କର ନେତ ପତିତପାବନ ନେତ, ସେହି ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥଙ୍କ ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା।

ଓଡ଼ିଶାର ଜନଜୀବନ, ସଭ୍ୟତା, ସଂସ୍କୃତି ଓ ଇତିହାସ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଶ୍ରୀଜଗନ୍ନାଥ ଓଡ଼ିଆ ମାନସିକତାର ସବୁଠାରୁ ଆବେଗିକ ଓ ସ୍ପର୍ଶକାତର ଦେବତା। ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ଘୋଷଯାତ୍ରା ବା ରଥଯାତ୍ରାକୁ ନେଇ ଯେଉଁ ଆନନ୍ଦ, ଉଦ୍ଦୀପନା ବା ଭାବାବେଗ ସୃଷ୍ଟି ହୁଏ, ତା'ର ଦୃଷ୍ଟାନ୍ତ ଅନ୍ୟ କେଉଁଠି ଦେଖିବାକୁ ମିଳେ ନାହିଁ। ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାକୁ ତର୍ଜମା କଲେ ଏହାର ଅନ୍ତରାଳରେ ଥିବା ବିଶ୍ୱମାନବିକ ମୂଲ୍ୟବୋଧ ବିଦ୍ୱାନମାନଙ୍କୁ ମଧ୍ୟ ସ୍ତମ୍ଭୀଭୂତ କରିଦିଏ।

ବାଇଶି ପାହାଚ ଅତିକ୍ରମ କରି ଶ୍ରୀଜଗନ୍ନାଥ ଆଜି ରଥାରୂଢ଼, କିନ୍ତୁ ପଣ୍ଡିତମାନଙ୍କ ମତରେ ଏହା ବାଇଶି ପାହାଚ ନୁହେଁ। 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରୀ ହେ ନାଥ ନାରାୟଣ





ବାସୁଦେବ–' ଏହି ବାଇଶି ଅକ୍ଷର, ଏହା ପ୍ରହ୍ଲାଦକୃତ ମନ୍ତ୍ର। ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ସମଗ୍ର ମାନବ ଜାତିର ପ୍ରତୀକ। ଶ୍ରୀଜଗନ୍ନାଥ କୃଷ୍ଣକାୟ, ସେ ହେଉଛନ୍ତି କୃଷ୍ଣବର୍ଣ୍ଣ ଭାରତୀୟ ଏବଂ ଆଫ୍ରିକାବାସୀଙ୍କ ପ୍ରତୀକ, ଶ୍ରୀବଳଭଦ୍ର ହେଉଛନ୍ତି ଶ୍ୱେତକାୟ ଓ ସେ ଶ୍ୱେତାଙ୍ଗମାନଙ୍କର ପ୍ରତୀକ ଏବଂ ପରିଶେଷରେ ଦେବୀ ସୁଭଦ୍ରା ହେଉଛନ୍ତି ହରିଦ୍ରା ବର୍ଣ୍ଣ ଚୀନ୍, ମଙ୍ଗୋଲୀୟ ଓ ଲୋହିତ ଭାରତୀୟ ପ୍ରତୀକ।

କଠୋପନିଷଦରେ ଆମ୍ଭମାନଙ୍କ ଶରୀରକୁ ରଥ ସହିତ ତୁଳନା କରାଯାଇଛି। ଶରୀର ମଧ୍ୟରେ ବିରାଜିତ ଆତ୍ମ ପୁରୁଷଙ୍କୁ ରଥି ଓ ବୁଦ୍ଧିକୁ ସାରଥୀ ଆଖ୍ୟା ଦିଆଯାଇଛି। ଏମାନେ ମନଅଶ୍ୱମାନଙ୍କୁ ଅକ୍ତିଆର କରିପାରିବେ ବୋଲି କୁହାଯାଇଛି।

ସୂକ୍ଷ୍ମ ଦୃଷ୍ଟିରୁ ବିବେଚନା କଲେ ଯିଏ ରଥ, ସିଏ ପଥ ଓ ସେହି ହେଉଛନ୍ତି ଶ୍ରୀଜଗନ୍ନାଥ। ବର୍ଷକରେ ଥରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଭାଗବତ ଐକ୍ୟ ପ୍ରତିଷ୍ଠା ପାଇଁ ବୋଧହୁଏ ଏ ରଥଯାତ୍ରା ସୃଷ୍ଟି। ସେଥିପାଇଁ ଏହି କଥାକୁ ମର୍ମେ ମର୍ମେ ଅନୁଭବ କରି ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ କଣ୍ଠରୁ ଏହା ହିଁ ଝରି ପଡ଼ିଥିଲା–

ରଥ ବୋଲେ ଆମିଦେବ ପଥ ବୋଲେ ଆମି
ମୂର୍ତ୍ତିବୋଲେ ଆମିଦେବ ହାଁସେ ଅନ୍ତର୍ଯ୍ୟାମୀ।

ଯୁଗାବତାର ଶ୍ରୀକୃଷ୍ଣ ଚୈତନ୍ୟ ମଧ୍ୟ ରଥଯାତ୍ରା ସମୟରେ ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆତ୍ମହରା ହୋଇପଡିଛନ୍ତି। ତାଙ୍କ ପାଟିରୁ ଏହି କଥା ବାହାରି ଆସିଛି–

ବିଶ୍ୱମ୍ଭର ଜଗନ୍ନାଥକେ ଚଲାଇତେ ପାରେ
ଆପନ ଇଚ୍ଛାଏ ଚଲେ କରିତେ ବିହାର।

ପାଟ ପୀତାମ୍ବର ପରିହିତ, ଅଳଙ୍କାର ବିମଣ୍ଡିତ, ଚନ୍ଦନ ଚର୍ଚ୍ଚିତ, ଚନ୍ଦ୍ରପୁଷ୍ପ ବିଭୂଷିତ ଶ୍ରୀଜଗନ୍ନାଥ ଆଜି ରତ୍ନସିଂହାସନ ଛାଡ଼ି ସିଂହଦ୍ୱାର ସମ୍ମୁଖରେ ଥିବା ରଥରେ ଅଳ୍ପ ସମୟ ମଧ୍ୟରେ ବିଜେ କରିବେ। ଦୟଣା, ତୁଳସୀ ମାଳରେ ରଥ ମହମହ ହୋଇ ବାସୁଛି, ଝାଞ୍ଜ କରତାଳି, ମହୁରୀ, ମର୍ଦ୍ଦଳ, ଗିନି, ମୃଦଙ୍ଗ, ଘଣ୍ଟ, ଶଙ୍ଖ, ଖୋଳ, ଖଞ୍ଜଣି, କାଠି, ଲାଠି, ନୃତ୍ୟ, ବାଦ୍ୟ, ସଂଗୀତରେ ବଡ଼ଦାଣ୍ଡ ପଡୁଛି ଓ ଉଠୁଛି। ବେଳକୁ ବେଳ ଜନସଂଖ୍ୟା ବଢ଼ିବାରେ ଲାଗିଛି। ସମସ୍ତଙ୍କ ମନ ଆଜି ଉଦ୍‌ବେଳିତ ଏକମାତ୍ର କାମନା ରଥରୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଦର୍ଶନ କରି ନିଜର ପିପାସା ମେଣ୍ଟାଇବେ।

'ରଥସ୍ଥଂ ଚ ଜଗନ୍ନାଥଂ ପ୍ରୟାନ୍ତଂ ଗୁଣ୍ଡିଚା–ଗୃହମ୍
ଯେ ପଶ୍ୟନ୍ତି ନରଶ୍ରେଷ୍ଠା– ସ୍ତେ ଧନ୍ୟା ଭୁବନତ୍ରୟୋ।'

ଟାହିଆ ହଲାଇ ମନୋରମ ଭଙ୍ଗୀରେ ଢଳି ଢଳି ଆସୁଛନ୍ତି ଅଖିଳ ବ୍ରହ୍ମାଣ୍ଡ ପତି ଶ୍ରୀଜଗନ୍ନାଥ। ମହାପ୍ରଭୁ ସ୍ନାନଯାତ୍ରା ଦିନ ୧୦୮ ଗରାପାଣିରେ ସ୍ନାନ କରିଥିଲେ। ମଣିଷ ପରି ଠାକୁରଙ୍କୁ କୁଆଡ଼େ ଜ୍ୱର ହୋଇଥିଲା। ପ୍ରାୟ ୧୫ ଦିନ ଅଣସର ଘରେ ରହି ପଥିପାବନ ସେବନ କଲାପରେ ଠାକୁରେ ଆଜି ସୁସ୍ଥ ହୋଇ ଭକ୍ତଜନଙ୍କ ଭାବ ଡୋରିରେ ବନ୍ଧାହୋଇ ବାହାରିଛନ୍ତି ଅଗଣିତ ଜନତାଙ୍କୁ ଦର୍ଶନ ଦେବା ପାଇଁ।

ଏହି ଯାତ୍ରାର ଅନ୍ୟ ନାମ ହେଉଛି ଘୋଷଯାତ୍ରା। ମାଉସୀ ମା' ମନ୍ଦିର ବାଟଦେଇ ରଥ ଶରଧାବାଲି ନିକଟସ୍ଥ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିବ। ଏହି ପ୍ରସଙ୍ଗରେ ଗୋଟିଏ କଥା ମନେ ପଡୁଛି। ଆଜିଭଳି ସେଦିନ ମଧ୍ୟ ଥିଲା ରଥଯାତ୍ରା। ତରୁଣ ବୟସରେ ଓ ଭକ୍ତି ଜନିତ ଉତ୍ସାହରେ ମାତି ଉଠି କବି ବଳରାମ ଦାସ ଶ୍ରୀଜଗନ୍ନାଥଙ୍କ ରଥ ଚଢ଼ିବାକୁ ପ୍ରୟାସ କରିଥିଲେ। କିନ୍ତୁ ସମବେତ ଜନତାଙ୍କ ସମ୍ମୁଖରେ ସେ ପ୍ରହରୀମାନଙ୍କ ଦ୍ୱାରା ସେଠାରୁ ପ୍ରହାରିତ ବିତାଡିତ ହୋଇ ବଡ଼ଦାଣ୍ଡରୁ ପଳାଇଗଲେ ସମୁଦ୍ର ସିକତାର ନିରବତାକୁ। ସେଠାରେ ବାଲିରଥ ଗଢ଼ି ମହାପ୍ରଭୁଙ୍କୁ ଆହ୍ୱାନ କଲେ। ଭକ୍ତ ଡାକରେ ମହାପ୍ରଭୁ ବଡ଼ଦାଣ୍ଡରେ ଥିବା ରଥରୁ ଯାଇ ବଳରାମଙ୍କ ବାଲିରଥରେ ବିରାଜମାନ। ବଡ଼ଦାଣ୍ଡରେ ଆଉ ରଥ ଚାଲିଲା ନାହିଁ। ରାଜାଙ୍କୁ ନିର୍ଦ୍ଦେଶ ହେଲା 'ମୋ ଭକ୍ତ ଆଜି ଅପମାନିତ, ଏହାକୁ ମୁଁ ସହିବି କିପରି ? ରାଜା ତତ୍‌କ୍ଷଣାତ୍ ବଳରାମଙ୍କ ମାନଭଞ୍ଜନ



କରିବା ପାଇଁ ବାଲିରଥ ନିକଟକୁ ଧାଇଁଲେ ଏବଂ ରାଜାଙ୍କ ଅନୁରୋଧ ରକ୍ଷାକରି ବଳରାମ ଆସି ବଡ଼ଦାଣ୍ଡରେ ଥିବା ରଥ ଦଉଡ଼ିକୁ ଛୁଇଁବା ମାତ୍ରେ ରଥ ଘୋର ଘର୍ଘର ନାଦରେ ଚାଲିଲା । କବିଙ୍କ ଆଖିରୁ ବୋହିଗଲା ଧାରଧାର ଲୁହ । କବିଙ୍କ ଏହି ଚିନ୍ତା ଓ ଚେତନାର ପରିପ୍ରକାଶ ଘଟିଛି ୭୫୦ଶ୍ଳୋକ ସମନ୍ୱିତ 'ଭାବସମୁଦ୍ର' ଗ୍ରନ୍ଥରେ । ଭକ୍ତ ପ୍ରାଣର ଉତ୍ତାଳ ଅନୁଚିନ୍ତାକୁ ଆଜି ମଧ୍ୟ ଆମେ ସ୍ପଷ୍ଟ ଅନୁଭବ କରିପାରୁ । କବିଙ୍କ ଭାଷାରେ–

'ହରିହୋ ତୁ ମୋତେ ବାନ୍ଧିଲୁ ରାଜାର ହାତେ
ମୁଁ ତୋତେ ବାନ୍ଧିଲି ମୋ ମନ ଗୁପ୍ତେ ।'

ସେହିପରି ଭକ୍ତ ସାଲବେଗଙ୍କ ଆକୁଳ ନିବେଦନକ୍ରମେ ବଡ଼ଦାଣ୍ଡରେ ରଥ ଅଟକି ଯାଇଥିଲା । ଭାବବିନୋଦିଆ କାଳିଆ ଠାକୁର ଭକ୍ତର ଡାକକୁ ନଶୁଣି କିପରି ବା ପଳାଇ ଯାଇଥାଆନ୍ତା । ଏହା ଏକ କିମ୍ବଦନ୍ତୀ ବା ଆଖ୍ୟାୟିକା ହୋଇପାରେ, କିନ୍ତୁ ଏହାର ମୂଳରେ ଏକ ମହାନ ସତ୍ୟ ନିହିତ ଅଛି ଯେ, ଶ୍ରୀଜଗନ୍ନାଥ କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ସଂପ୍ରଦାୟର ଠାକୁର ନୁହନ୍ତି, ସେ ହେଉଛନ୍ତି ଜଗତର ନାଥ ପତିତପାବନ । ସେଥିପାଇଁ ସେ ଆସନ୍ତି ବଡ଼ଦାଣ୍ଡକୁ ଅଗଣିତ ଭକ୍ତଗଣଙ୍କ ମଧ୍ୟରେ ଧୂଳିଧୂସରିତ ହେବା ପାଇଁ । ସେ ଗଡନ୍ତି, ପଡନ୍ତି ଓ ଉଠନ୍ତି । ଯେତେ ଅସୀମ ହେଲେ ବି ସସୀମ ମଧ୍ୟରେ ତାଙ୍କ ଲୀଳାଖେଳା । ସେ ସ୍ୱୟଂ ଲୀଳାମୟ !

ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ବହୁ ତାତ୍ତ୍ୱିକ ଆଲୋଚନା ହୋଇ ସାରିଲାଣି ଏବଂ ଭବିଷ୍ୟତରେ ମଧ୍ୟ ହେବ, ତଥାପି ଶ୍ରୀଜଗନ୍ନାଥ ରହସ୍ୟାବୃତ୍ତ । ଯିଏ ଅକଳନ ତଥା ଅନୁପମ ତାଙ୍କ ବର୍ଣ୍ଣନା କରିବ କିଏ, ତାଙ୍କୁ ବର୍ଣ୍ଣନା କରିବା ଆମର ଧୃଷ୍ଟତା ମାତ୍ର । ଏହା ଅନ୍ଧମାନଙ୍କର ହସ୍ତୀ ଉପରେ ହସ୍ତ ସଞ୍ଚାଳନ କରି ତା'ର ରୂପ ସଂପର୍କରେ ବର୍ଣ୍ଣନା କରିବା ସହ ତୁଳନୀୟ ନୁହେଁ କି ?

'ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବୋ ନ ଜାନାତି କୁତୋ ମନୁଷ୍ୟଃ ।'

ପରଂବ୍ରହ୍ମଙ୍କ ସତ୍ତା ଓ ସୃଷ୍ଟିର ରହସ୍ୟଭେଦ କରିବା ପାଇଁ ଇନ୍ଦ୍ରିୟଧାରା ସାଧାରଣ ମନୁଷ୍ୟ ପକ୍ଷେ ଅସମ୍ଭବ । ପରଂବ୍ରହ୍ମ ରୂପୀ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ସେହିପରି ରହସ୍ୟମୟ । ରହସ୍ୟର ତ ଅନ୍ୟନାମ ଜଗନ୍ନାଥ ।

ମହାଭାରତ ମହାସମରରେ ବେଲାଳସେନ କେବଳ ଏକ ସର୍ବଶକ୍ତିମାନ ସୁଦର୍ଶନରେ କରାମତି ଦେଖୁଥିଲେ । ସେହିପରି ଚକାକୃତି, ଚକାଡ଼ୋଳା, ସର୍ବଦ୍ରଷ୍ଟା ଓ ସର୍ବନିୟନ୍ତା ।

ଶ୍ରୀଜଗନ୍ନାଥ ହେଉଛନ୍ତି ଅବତାରମାନଙ୍କର ଅବତାରୀ । ସେ ନିର୍ଗୁଣ, ନିରାକାର ପୁଣି ସଗୁଣ ସାକାର । ସେ ଶୂନ୍ୟ, ପୁଣି ପରଂବ୍ରହ୍ମ ।

ବିବିଧତା ମଧ୍ୟରେ ଏକତ୍ୱ ହେଉଛି ତାଙ୍କ ଅନନ୍ତ ଲୀଳାର ବୈଶିଷ୍ଟ୍ୟ । ତାଙ୍କୁ କିଏ କେଉଁ ରୂପରେ ଦେଖୁଛି । ଆଦ୍ୟରେ ଶବର ଉପଜାତିର ଠାକୁର ଭାବେ ନୀଳମାଧବ ରୂପେ ପୂଜା ପାଉଥିବା ଶ୍ରୀଜଗନ୍ନାଥଙ୍କୁ ପରେ ପରେ ଶୈବ, ଶାକ୍ତ, ବୌଦ୍ଧ, ଜୈନ ଓ ବୈଷ୍ଣବ ଆଦି ବିଭିନ୍ନ ସଂପ୍ରଦାୟ ସ୍ୱସ୍ୱ ମତବାଦ ଦ୍ୱାରା ଆଦରି ନେଉଛନ୍ତି । ତାଙ୍କରି ଅମୃତମୟ ଚେତନାରେ ବିଶ୍ୱର ସବୁ ଧର୍ମ, ଦର୍ଶନ, ତତ୍ତ୍ୱ ଓ ମତବାଦର ଅଦ୍ଭୁତ ସମନ୍ୱୟ । ଶ୍ରୀଜଗନ୍ନାଥଙ୍କୁ ବୈଷ୍ଣବମାନେ ଶ୍ରୀପତି, ଶୈବମାନେ ଭୈରବ, ଶାକ୍ତମାନେ ଶକ୍ତି, ବୌଦ୍ଧମାନେ ବୁଦ୍ଧ ଓ ଜୈନମାନେ ଋଷଭଦେବ ରୂପେ ପରିକଳ୍ପନା କରିଛନ୍ତି । ତାଙ୍କର ସ୍ତୁତିଗାନରେ ଶଙ୍କର, ରାମାନୁଜ, ନାନକ, କବୀର ତଥା ଶ୍ରୀଜଗନ୍ନାଥ ଆଦି ଯୁଗପୁରୁଷମାନେ ଶତମୁଖ ।

ତାଙ୍କ ମହିମାରେ ସମସ୍ତେ ମହିମାନ୍ୱିତ । ଦାସିଆ ବାଉରୀ ଓ ବନ୍ଧୁ ମହାନ୍ତିଙ୍କଠାରୁ ଆରମ୍ଭ କରି ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପର୍ଯ୍ୟନ୍ତ ଶ୍ରୀୟା ଚଣ୍ଡାଳୁଣୀଙ୍କଠାରୁ ଆରମ୍ଭ କରି ମହାରାଣୀ ଗୁଣ୍ଡିଚା ଦେବୀଙ୍କ ପର୍ଯ୍ୟନ୍ତ ଏବଂ ଭକ୍ତ ସାଲବେଗ ତଥା ଯବନ କବି ହରି ଦାସଙ୍କଠାରୁ ଆରମ୍ଭ କରି ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ସମସ୍ତେ ମହାପ୍ରଭୁଙ୍କ ପାଇଁ ପାଗଳ । ଏଠି ଉପାସ୍ୟ, ଉପାସକ ବା ଭକ୍ତ



ଓ ଭଗବାନ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସମସ୍ତେ କେମିତି ଏକାକାର ହୋଇଯାଇଛନ୍ତି । ସେଥିପାଇଁ ଭାଗବତରେ କୁହାଯାଇଛି–

'ମୋର ହୃଦୟ ଭକ୍ତଜନ, ମୁହିଁ ଯେ ତାହାଙ୍କ ଜୀବନ ।'

ଶ୍ରୀଜଗନ୍ନାଥ ସଂସ୍କୃତି ଓ ଚେତନା ଯୁଗ ଯୁଗ ଧରି ମାନବ ସମାଜକୁ ପ୍ରେମ, ମୈତ୍ରୀ, ସଂହତି ଓ ସହନଶୀଳତାର ରଜ୍ଜୁରେ ବାନ୍ଧି ଆସିଛି । ଆଜି ବଡ଼ଦାଣ୍ଡ ବିଶାଳ ଜନ ସମୁଦ୍ରରେ ଭରପୂର । ଧନୀ, ଦରିଦ୍ର, ହିନ୍ଦୁ–ମୁସଲମାନ, ବ୍ରାହ୍ମଣ–ଚଣ୍ଡାଳ ସମସ୍ତଙ୍କ ସମାବେଶ । ଏଠାରେ ଅହମିକା, ଅହଂକାର, ଆଭିଜାତ୍ୟ ତଥା ବଡ଼ଦାଣ୍ଡରେ ଠାକୁରଙ୍କ ରଥ ଅଟକି ଯାଇଛି । ଗଜପତିଙ୍କ ମାନରକ୍ଷା ପାଇଁ ଜଗନ୍ନାଥ ଓ ବଳଭଦ୍ର କଳା ଓ ଧଳାଘୋଡ଼ା ଚଢ଼ି କାଞ୍ଚି ଅଭିଯାନରେ ବାହାରିଛନ୍ତି । ସେଥିପାଇଁ ସେଦିନ ଉତ୍କଳମଣି ଗୋପବନ୍ଧୁ ଦାସ କହିଥିଲେ–

'ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।'

ତୁମେ ମଙ୍ଗଳମୟ, କରୁଣାର କଳ୍ପବଟ । କେଉଁ କଥା ଅବା ମହାପ୍ରଭୁଙ୍କୁ ଅଜଣା । ଶବରୀ ନାରାୟଣୀରୁ ଦାରୁବ୍ରହ୍ମ ରୂପେ ସେ ଆମର ଉପାସିତ । ସାଲବେଗ, ବନ୍ଧୁ ମହାନ୍ତି ବା ହରି ଦାସଙ୍କ ଭଳି ଆମର ନିଷ୍ଠା ଓ ଭକ୍ତି ଅଥବା ସାଧନା ନାହିଁ । ଆମ ମନ ସଦାସର୍ବଦା କଳୁଷିତ, ପ୍ରତି ପଦକ୍ଷେପରେ ଆମେ ଭୁଲ୍ କରି ଚାଲୁଛେ । ମାତ୍ର କରୁଣାର ସାଗର ଦୀନବନ୍ଧୁ ଜଗବନ୍ଧୁ ଆମକୁ ପ୍ରତି କ୍ଷଣରେ ରକ୍ଷା କରୁଛନ୍ତି । ଅନ୍ୟାୟ, ହିଂସା, ଅଧମ, ବିଦ୍ୱେଷ, ଅହମିକା ତଥା ଅହଂକାରରେ ଆମେ ଉନ୍ମତ୍ତ । ଏହି ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା, ଆମର ଆଚାର ବ୍ୟବହାର, ଚିନ୍ତା ଚେତନା ଓ ଚରିତ୍ରରେ ସଂସ୍କାର ଆଣୁ, ପ୍ରଭୁଙ୍କ ଚରଣାରବିନ୍ଦରେ ଆମର ମନ ସ୍ଥିର ରହୁ, ଏହା ହିଁ ଆଜିର ଏ ଶୁଭ ଅବସରରେ କାମନା ।

ଯୁଗ୍ମ ନିର୍ଦ୍ଦେଶକ
ସ୍ଥାନୀୟ ପାଣ୍ଠି ସମୀକ୍ଷା ନିର୍ଦ୍ଦେଶାଳୟ
ଓଡ଼ିଶା, ଭୁବନେଶ୍ୱର

# ଜୀବନ ସଉଦା

ଡକ୍ଟର ବୀଣାପାଣି ସିଂହ

ତୁମକୁ ପାଇବାକୁ ହେଲେ
ଦରକାର ନାହିଁ କୌଣସି ଅର୍ଥ
ଦରକାର ନାହିଁ ଟଙ୍କା ସୁନା
ଓଉଷଧି ମଉଷଧି, ଟୁଣୁକା ଟୁଣୁକି... ।
କେବଳ ଦରକାର ଟିକିଏ ଭାବ
ଟିକିଏ ଅନୁରାଗ, ଟିକିଏ ଆତୁରତା
ଛାତି ଭିତରକୁ ଚାହିଁଲେ ତମକୁ ଯଦି ମୁଁ ସେଠି,
ଟିକେ ଦେଖି ପାରୁଛି, ସେତିକି ତ ଢେର... ।



କେବଳ ଯଦି ଟିକେ ଅନୁଭବ କରିପାରିବି ତମକୁ ସେଠି
ସେଇ ମୋ' ପାଇଁ ସବୁକିଛି ଠାକୁରେ
ତମକୁ ପାଇବାରେ ମୋ'ର ଲୋଭ ନାହିଁ
ଲୋଭ ନିରନ୍ତର ତମକୁ ଅନୁଭବ କରିବାରେ ।
ଯଦି ଦବ ସେଇ ହବ
ମୋ'ର ସରନ୍ତି ଜୀବନର ଜୀବନ ସଉଦା ।

ବିଭୁକରୁଣା, ମହାନଦୀ ବିହାର
କଟକ–୪



# ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଦୃଷ୍ଟିରେ ରଥଯାତ୍ରା

ନିଗମାନନ୍ଦ ଗୋସ୍ୱାମୀ

ଶ୍ରୀଜଗନ୍ନାଥ ଓଡ଼ିଶାର ଇଷ୍ଟ ଦେବତା । ଓଡ଼ିଶାର ଧର୍ମ କହିଲେ ଜଗନ୍ନାଥ ଧର୍ମ । ସଂସ୍କୃତି କହିଲେ ଜଗନ୍ନାଥ ସଂସ୍କୃତି ଓ ଇତିହାସ କହିଲେ ତାଙ୍କ ଇତିହାସକୁ ବୁଝାଏ । ସମୁଦ୍ରର ଯେପରି କ୍ଷୟ ବୃଦ୍ଧି ନଥାଏ, ଆକାଶର ଯେପରି ଆଦିଅନ୍ତ ନଥାଏ, ଠିକ୍ ସେହିପରି ଶ୍ରୀଜଗନ୍ନାଥ କଥାମୃତରେ ଆରମ୍ଭ କି ଶେଷ ନାହିଁ । ତାଙ୍କୁ ସମୁଦ୍ରର ଗଭୀରତା, ଆକାଶର ସୀମା କି ପବନର ଦିଗ ଭଳି କଳନା କରାଯାଏନି । ସମୟ ମନ୍ତ୍ର, ତନ୍ତ୍ରରୁ ସେ ସ୍ୱତନ୍ତ୍ର, ସମସ୍ତ ନୀତି ନିୟମ ଓ କ୍ରମକୁ ଅତିକ୍ରମ କରି ସେ ବ୍ୟତିକ୍ରମ, ବିସ୍ମୟ ଓ ରହସ୍ୟମୟ । ଷୋଡଶ ଶତାବ୍ଦୀରେ ପଞ୍ଚସଖା ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ ଓ ଅନନ୍ତଙ୍କ ଶହ ଶହ ରଚନାବଳୀରେ ସେ ସମୃଦ୍ଧ । ଅଚ୍ୟୁତାନନ୍ଦ ପୁରୀ ରଥଯାତ୍ରା ଓ ନବକଳେବରରେ ଜଡ଼ିତ । ତାଙ୍କ ମତରେ ନୀଳାଚଳ, ନିତ୍ୟ ଗୋଲକ, ଜଗନ୍ନାଥ ନିତ୍ୟରାଧା ଓ ନୀତ୍ୟକୃଷ୍ଣଙ୍କ ମିଳିତ ତନୁ । ପୁରୀର ଗନ୍ଧର୍ବ ମଠ ଥିଲା ଅଚ୍ୟୁତଙ୍କ ସାଧନା ପୀଠ । ସେଠାରେ ଶୂନ୍ୟ ରାସ ହୁଏ । ୧୪୮୪ରେ ଜନ୍ମିତ ମହାପୁରୁଷ ଅଚ୍ୟୁତ ଜାଣି ପାରିଥିଲେ ୫୦୦ବର୍ଷ ପରେ ଲୋକସଂଖ୍ୟା ବଢ଼ିବ । ଭକ୍ତ ବଢ଼ିବେ ଓ ନବଯୌବନ ଦର୍ଶନ ସମ୍ଭବ ହେବନାହିଁ । କେଉଁ ସମୟରେ ପ୍ରଭୁ ନବକଳେବର ହେବ ଏବଂ କ'ଣ ଘଟିବ, ୫୦୦ ବର୍ଷ ତଳୁ ଅଚ୍ୟୁତାନନ୍ଦ ତାଙ୍କ କୈବଲ୍ୟ କଣିକା ପୋଥିରେ ବିସ୍ତୃତ ବର୍ଣ୍ଣନା କରିଛନ୍ତି–



ନବକଳେବର ଅକ୍ଷର ସଂଖ୍ୟା ନିଶ୍ଚେ ପନ୍ଦର
ପନ୍ଦରରେ, ଅଙ୍କେ ରାମ ଦେଖିବୁ ତୁ ହୁନ୍ଦର
ହୁନ୍ଦରା, ହୁନ୍ଦରୀ, ସିନ୍ଦୁରା ଯେବେ ଏକାଠି ହେବେ
ନବକଳେବର ଯାତକୁ ସେ ଯେ ବୁହାଇ ନେବେ ।

ଏଠାରେ ମହାପୁରୁଷ ଅଚ୍ୟୁତାନନ୍ଦ 'ନବକଳେବର' ଅକ୍ଷର ସଂଖ୍ୟା ୧୫ର ବୋଲି କହିଛନ୍ତି । ନବକଳେବର ୬ ଅକ୍ଷର । ତେବେ ନବକଳେବର ଅକ୍ଷର ସଂଖ୍ୟା ଯେଉଁ ପନ୍ଦର ବୋଲି ସେ କହିଛନ୍ତି, ତା'ର ତାତ୍ତ୍ୱିକ ଅର୍ଥ ନବ ଅର୍ଥ ନଅ (୯) ନବକଳେବର ଅକ୍ଷର ସଂଖ୍ୟା ହେଲା ଛଅ । ୯ ଓ ୬ ଏହା ମିଶି ୧୫ । ୫୦୦ବର୍ଷ ତଳେ ଏପରି ୧୫ ସଂଖ୍ୟା ଥିବା ମସିହାରେ ନବକଳେବର ହେବ ବୋଲି ସେ କହିଥିଲେ । ସେ ତାଙ୍କ ନବକଳେବର ଯାତକୁ ସୁରୁଖୁରୁରେ ସଂପାଦନ କରିବେ । ତାଙ୍କ ଜ୍ଞାନ ପ୍ରଦୀପ ଗ୍ରନ୍ଥରେ ସେ ବର୍ଣ୍ଣନା କରିଛନ୍ତି,



ଶୂନ୍ୟ ଶୂନ୍ୟ ମହାଶୂନ୍ୟରେ ମୁହିଁ ଦର୍ଶନ ଦେବି
ଅଣାକ୍ଷର ଯନ୍ତ୍ର ତନ୍ତ୍ରକୁ ନିଶ୍ଚେ ପରୀକ୍ଷା ନେବି
ନବରୂପ ମୋର ଦର୍ଶନ ଏହା ମହାଦର୍ଶନ
ଦର୍ଶନେ ହୋଇବ କୃତାର୍ଥ ଏହା ଧ୍ରୁବ ବଚନ।

ନବକଳେବର ଏବଂ ଦାରୁବ୍ରହ୍ମଙ୍କ ନବକଳେବର ବା ନବଯୌବନ ଦର୍ଶନ ମହାଶୂନ୍ୟରେ ହେବ ବୋଲି ମହାପୁରୁଷ ତାଙ୍କ ଗ୍ରନ୍ଥରେ ଆଗରୁ ଲେଖିଛନ୍ତି।

ବ୍ରହ୍ମ ଅଣାକ୍ଷର ଯେ ଆପେ ମହାଶୂନ୍ୟ
ସେହି ରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ ।

ସେହି ଦାରୁବ୍ରହ୍ମ ଜଗନ୍ନାଥ, ଅଚ୍ୟୁତଙ୍କ ମତରେ ଶୂନ୍ୟପୁରୁଷ। ସେ ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିବା ନିମନ୍ତେ ଲୀଳା କରନ୍ତି। ସେ ଲୀଳାମୟ। ଏଠାରେ କାହାରି ଗର୍ବ, ଦମ୍ଭ, ମାନ, ମର୍ଯ୍ୟାଦା ପ୍ରଶ୍ନ ଉଠେ ନାହିଁ। ମନ୍ତ୍ର ହେଉଛି ଶବ୍ଦର ପ୍ରତିରୂପ। 'ଅ' ଅକ୍ଷର ହିଁ ଭଗବାନଙ୍କର ଶବ୍ଦ ରୂପ। ଦାରୁବ୍ରହ୍ମ ହେଉଛି କ୍ଷର ଓ ଅକ୍ଷରର ଉର୍ଦ୍ଧ୍ୱରେ। ତେଣୁ ବ୍ରହ୍ମ ଜଗନ୍ନାଥଙ୍କ ନବରୂପ ମହାଦର୍ଶନ ମହାଶୂନ୍ୟରେ ହେବ।

ମହାପୁରୁଷ ଶ୍ରୀ ଅଚ୍ୟୁତାନନ୍ଦ କଳିଯୁଗର ଶ୍ରୀଜଗନ୍ନାଥଙ୍କୁ ଓଁକାର, ବ୍ରହ୍ମଗାୟତ୍ରୀ ଓ ମହାମନ୍ତ୍ର ସ୍ୱରୂପ ବୋଲି ଦର୍ଶାଇଛନ୍ତି। ତେଣୁ ଓଁକାର ଏବଂ 'ଅ'କାର ଜପ କଲେ ମହାମନ୍ତ୍ର ଜପ ହେବ ବୋଲି ଦର୍ଶାଇ ଜଗନ୍ନାଥ ସର୍ବମନ୍ତ୍ରମୟ ଭାବେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଛନ୍ତି। ମହାପୁରୁଷଙ୍କ ଲକ୍ଷ୍ୟ ଉଦ୍ଦେଶ୍ୟ ଥିଲା ମାନବର ସର୍ବାଙ୍ଗୀନ ଉନ୍ନତି। ଭକ୍ତର ଭଗବାନ। ଭକ୍ତ କି ଉପାୟରେ ସହଜରେ ଭଗବଦ୍ ଦର୍ଶନଲାଭ କରିପାରିବ । ସେଥିପାଇଁ ସେ ତାଙ୍କ ପରମ ଶିଷ୍ୟ ରାମଦାସଙ୍କୁ ବହୁ କଥା କହିଛନ୍ତି।

ଅଚ୍ୟୁତାନନ୍ଦଙ୍କ ମତରେ ନୀଳାଚଳ ହିଁ ନିତ୍ୟଧାମ, ମର୍ତ୍ତ୍ୟ ବୈକୁଣ୍ଠ। ଜଗନ୍ନାଥ ହିଁ ନିରାକାର ବିଷ୍ଣୁ। ତାଙ୍କର କୌଣସି ଆକାର ନାହିଁ। ସେ ଆକାର ଧାରଣ କରନ୍ତି ଭକ୍ତଗଣଙ୍କ ପାଇଁ। ସେ ଶୂନ୍ୟରୂପୀ। ସେ ଭକ୍ତଙ୍କୁ ମହାଶୂନ୍ୟରେ ଦର୍ଶନ ଦିଅନ୍ତି। ତାଙ୍କ ଭାଷାରେ –

ନିରାକାର ପ୍ରଭୁ ଆକାର ନାହିଁ
ମହାଶୂନ୍ୟ ଦର୍ଶନ ଭକତ ପାଇଁ
'ଅ' ତନ୍ତ୍ରରେ ମୁଁ ଦର୍ଶନ ଦେବି
ଏକାକ୍ଷର ମନ୍ତ୍ର ପରୀକ୍ଷା ନେବି
ଅଚ୍ୟୁତର ଏକାକ୍ଷର ଯନ୍ତ୍ରଟି
ଦେଖିଲେ ହରିବ ଦୁଃଖ ତାରଟି ।

ଏହି ୨୦୧୫ରେ ପୁରୁଷୋତ୍ତମ, ଶ୍ୟାମସୁନ୍ଦର ଏବଂ ନିରାକାର ପୁରୁଷଙ୍କ ଦର୍ଶନ ମହାଶୂନ୍ୟରେ ହେବ। ଯେଉଁ ଭକ୍ତ ଆଧ୍ୟାତ୍ମିକ ମାର୍ଗର ପଥିକ, ଗୁରୁ ପ୍ରଦର୍ଶିତ ସାଧନା ଓ ଗୁରୁଦତ୍ତ ଶକ୍ତି ପ୍ରଭାବରେ ସମର୍ପଣ ଭାବଯୁକ୍ତ, ସେ ହିଁ ଜଗତଜନ ମନୋହାରୀ ନୀଳକନ୍ଦର ନିବାସୀ– ସ୍ୱୟଂ ଜଗନ୍ନାଥଙ୍କୁ ମହାଶୂନ୍ୟରେ 'ଅ' ଅକ୍ଷର ମହାମନ୍ତ୍ର ସ୍ମରଣ କରି ନବରୂପ ବା ନବଯୌବନ ଦର୍ଶନ କରିବ। ସେ ପୁଣି ଆକାର ଧାରଣ କରିବେ ଭକ୍ତଗଣଙ୍କ ପାଇଁ–

ଅଚ୍ୟୁତର ଗଣ୍ଠି 'ଅ' ଅକ୍ଷର
ସ୍ମରିଲେ ହଜିବ ଦୁଃଖ ଅପାର–(ଶବ୍ଦ ବ୍ରହ୍ମ ସଂହିତା)
ଶୂନ୍ୟ ସଂହିତାରେ ଅଚ୍ୟୁତାନନ୍ଦ ଲେଖିଛନ୍ତି –
ଅବତାର ଦଶ ଏହି ଦାରୁରୂପ ଦାରୁରେ ଲୀନ
ଈଶ୍ୱର ସାକ୍ଷାତ ଲୀଳା ନିମନ୍ତେ ବିଜେ ରତ୍ନସିଂହାସନ

ଅଚ୍ୟୁତଙ୍କ ମତରେ ଓଁକାର ହିଁ ପରଂବ୍ରହ୍ମ। ଜଗନ୍ନାଥ ଅବତରୀ, ତାଙ୍କଠାରୁ ଅବତାର ସୃଷ୍ଟି। ତାଙ୍କ ଦୃଷ୍ଟିରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଲୀଳାମୟ ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ।

ଅଚ୍ୟୁତାନନ୍ଦ ଜଣେ ସନ୍ଥ ଓ ଯୋଗୀ ଥିଲେ। ତାଙ୍କ ଯୋଗ ବଳରେ ସେ ଅତୀତ, ଭବିଷ୍ୟତ ଏବଂ ବର୍ତ୍ତମାନ ପୃଥିବୀରେ କ'ଣ କ'ଣ ଘଟିବ ତାହା ଜାଣି ପାରୁଥିଲେ। ମହାପୁରୁଷଙ୍କ ଦର୍ଶନତତ୍ତ୍ୱ ଅନୁସାରେ ସ୍ୱୟଂ ଜଗନ୍ନାଥ ହିଁ ଶୂନ୍ୟପୁରୁଷ। ସେ ହିଁ ନିରାକାର ପ୍ରଭୁ। ସେ ମଧ୍ୟ ଅଣାକାର



ପୁରୁଷ । ସେ ଅରୂପ, ଅଦେହ, ସେ ଆଦି–ଅନାଦି । ତାଙ୍କର କୌଣସି ରୂପରେଖ ନାହିଁ । ତାଙ୍କର ଅନ୍ତ ନାହିଁ । ମହାପ୍ରଳୟ କାଳରେ ସପ୍ତପାତାଳ, ସପ୍ତସ୍ୱର୍ଗ, ସପ୍ତଲୋକ ଆଦି ବିନିଷ୍ଟ ହେଉଥିଲେ ହେଁ, ଶୂନ୍ୟପୁରୁଷ – ଜଗନ୍ନାଥଙ୍କର ବିଲୟ ହୁଏ ନାହିଁ । ତେଣୁ ସେ ଅଚ୍ୟୁତ । 'ଅ' ହେଉଛି ଆରମ୍ଭ । 'ଚ୍ୟୁତ' ହେଉଛି ଶେଷ ।

ଜଗନ୍ନାଥ କ୍ଲୀଂ ବୀଜ ଅଟନ୍ତି । ସେ ଅବତାରୀ ପୁରୁଷ । ସେ ଅବିନାଶ ବ୍ରହ୍ମ ଓ ନିରଞ୍ଜନ । ସେ ଶୂନ୍ୟବ୍ରହ୍ମ । ସେ ପରମବିଷ୍ଣୁ ପରମ ଜ୍ୟୋତି ମଧ୍ୟ ଅଟନ୍ତି । ନିରାକାର ପୁରୁଷଙ୍କର ତିନି ରୂପ ଯଥା ମନ୍ତ୍ର, ତନ୍ତ୍ର ଓ ଯନ୍ତ୍ର । ଏହିଭାବେ ସେ ରତ୍ନ ସିଂହାସନରେ ବିରାଜିତ ଅଛନ୍ତି । ଅନ୍ଧକୁ ଚକ୍ଷୁଦାନ କରନ୍ତି । ପଙ୍ଗୁକୁ ନବଯୌବନରେ ପରିଣତ କରନ୍ତି । ମୂର୍ଖକୁ ପଣ୍ଡିତ କରନ୍ତି । ସେ ସର୍ବ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ଉତ୍ସ ଓ ଉତ୍ପତ୍ତିର କେନ୍ଦ୍ର ବିନ୍ଦୁ ଅଟନ୍ତି । ନବଯୌବନ ଦର୍ଶନରେ ଭକ୍ତ ଐଶ୍ୱର୍ଯ୍ୟବାନ, ବୁଦ୍ଧିବାନ, ବଳବାନ୍ ଏବଂ ସର୍ବପ୍ରତିଭା ସଂପନ୍ନ ହୁଏ । ତା'ର ଜୀବନ ପରିବର୍ତ୍ତନ ହୁଏ । ଭକ୍ତ ପୁରାତନ ଅଭ୍ୟାସ ପରିତ୍ୟାଗ କରି ନୂତନରୁ ନୂତନତ୍ୱ ଭାବଧାରାରେ ଅନୁପ୍ରାଣିତ ହୁଏ ।

ଅଚ୍ୟୁତାନନ୍ଦଙ୍କ ମତରେ ନୀଳାଚଳ ହିଁ ନିତ୍ୟଧାମ, ମର୍ତ୍ତ୍ୟବୈକୁଣ୍ଠ, ଶୂନ୍ୟ–ମହାଶୂନ୍ୟ ଆଦିକୁ ନିଜ ଗର୍ଭରେ ଧାରଣ କରି ରତ୍ନ ସିଂହାସନ ଉପରେ ମହାପ୍ରଭୁ ସ୍ୱୟଂ ବିରାଜମାନ ହୋଇଛନ୍ତି । ପରମପୁରୁଷ ଶ୍ରୀଜଗନ୍ନାଥ ହିଁ ପୂର୍ଣ୍ଣବ୍ରହ୍ମ, ନିର୍ଗୁଣ ଓ ନିରାକାର । ତାଙ୍କର ନବଯୌବନ ଜଗତର କଲ୍ୟାଣ କାମନାର୍ଥେ ଆବିର୍ଭୂତ ହୋଇ ସତକର୍ମ, ସତ୍‌ଚିନ୍ତା, ସତ୍‌ବିଶ୍ୱାସ, ସତ୍ ଜୀବନଯାପନ, ସତ୍ ଉଦ୍ୟମ ଓ ଦିବ୍ୟପଥର ମାର୍ଗଦର୍ଶନ କରାଏ । ଯାହାଙ୍କ ଦର୍ଶନମାତ୍ରେ କରୁଣା ଲାଭ କରି ଜୀବ ଧନ୍ୟ ହୋଇଥାଏ । ତାଙ୍କ ମତରେ ସ୍ୱରୂପ ଦର୍ଶନରେ ସିଦ୍ଧି ମିଳେ ନାହିଁ । ଆତ୍ମ ଦର୍ଶନରେ ସିଦ୍ଧି ମିଳେ । ଶୂନ୍ୟରେ ସମାଧିସ୍ଥ ହୋଇ ବା ଯୋଗରେ ଧ୍ୟାନସ୍ଥ ହେବାର ବା ସମର୍ପଣ ଭାବରେ ସମର୍ପିତ ହୋଇ ତାଙ୍କ ରୂପ ସ୍ମରଣ କଲେ ସେ ଦର୍ଶନ ଦିଅନ୍ତି ଓ ସେ ଦର୍ଶନ ହିଁ ପ୍ରକୃତ ଦର୍ଶନ । ସେ କହିଛନ୍ତି ଅହଂକାର ଶୂନ୍ୟ ସେବା ହିଁ ସେବା, ଅହଂକାର ଶୂନ୍ୟ ଜ୍ଞାନ ହିଁ ଜ୍ଞାନ ଏବଂ ଅହଂକାର ଶୂନ୍ୟ ଆଶା ହିଁ ପ୍ରାପ୍ତି । ମହାପୁରୁଷ ଅଚ୍ୟୁତଙ୍କର ଏହି ବାଣୀ ଆମର ଧ୍ୟେୟ ହେବା ଦରକାର । ଠାକୁରଙ୍କ ଦର୍ଶନ ଓ ପ୍ରାପ୍ତି ପାଇଁ ଏ ସମାଜର ଚିନ୍ତା ଓ ଚେତନାରେ ପରିବର୍ତ୍ତନ ହେବା ଦରକାର । ଅଚ୍ୟୁତଙ୍କ ସଂଗୀତ – 'ରୂପରେଖ ନାହିଁ ହେ ଶୂନ୍ୟ ଦେହୀ ଅଛ ଉଦେ ହୋଇ' ଆମର ଜୀବନ ସଂଗୀତ ହେଉ ।

ଏବେ ବି ସେହି ସାଧନା ପୀଠର ବଟପତ୍ର ଗରିବର ଦୁଃଖ, ଦୁଃଖିର ଶୋକ, ଅଭାବୀର ଅଭାବ ଦୂର କରୁଛି । ଏହି ଅଚ୍ୟୁତ ମଠରେ ଧ୍ୟାନ ହୋଇ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କଲେ ବିପଦ ଦୂର ହୁଏ । ନବକଳେବର ବର୍ଷରେ ପୁରୀର ଗନ୍ଧର୍ବ ମଠରେ ଥିବା ଅଚ୍ୟୁତାନନ୍ଦଙ୍କ ଶୂନ୍ୟବାର୍ମ୍ମି ୫୦୦ ବର୍ଷ ତଳେ ଅଚ୍ୟୁତ କହିଥିବା କଥା ଓ ଦର୍ଶନର ବାର୍ତ୍ତା ଏବେ ରଥଯାତ୍ରାରେ ପ୍ରମାଣିତ ହେଉଛି ।

ଶୂନ୍ୟବାର୍ମ୍ମି, ଗନ୍ଧର୍ବ ମଠ, ପୁରୀ–୧





# ବୁଦ୍ଧରୂପେ ନୀଳଗିରି ଶିଖେ ଅଛ ବସି

ପ୍ରଭାତ କୁମାର ନନ୍ଦ

ଶ୍ରୀଜଗନ୍ନାଥ ମହାପ୍ରଭୁ ଓଡ଼ିଆ ଜାତିର ଜାତୀୟ ଦେବତା। ଓଡ଼ିଆ ଜାତିର ଧର୍ମ, ବିଶ୍ୱାସ, ସାମାଜିକ ରୀତିନୀତି, ବାଣିଜ୍ୟ, ସାହିତ୍ୟ, ଚିତ୍ରକଳା ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରତିଷ୍ଠା ଲକ୍ଷ୍ୟ କରାଯାଏ। ଶ୍ରୀଜଗନ୍ନାଥ ହିଁ ଓଡ଼ିଆଙ୍କର କୁଳ ଦେବତା। ହିନ୍ଦୁମାନେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ପ୍ରଦାନ କଲାବେଳେ ଯଦି ପିତୃପୁରୁଷଙ୍କର ନାମ ମନେ ନ ପଡ଼େ, ତେବେ ନିଜ ଗୋତ୍ରର ପିତୃପୁରୁଷମାନେ ଶ୍ରୀଜଗନ୍ନାଥଙ୍କର ନାମକୁ ସ୍ମରଣ କରିଥାଆନ୍ତି। ଶ୍ରୀଜଗନ୍ନାଥ ଯେ ଓଡ଼ିଆମାନଙ୍କର କେତେ ଆପଣାର ସେ ବିଷୟରେ ପ୍ରମାଣ ଦେବାକୁ ଗଲେ ଲେଖା ସରିବ ନାହିଁ।



ଓଡ଼ିଶାର ସ୍ୱାଭିମାନ ଭାବରେ ତିନୋଟି ବିଭବକୁ ଐତିହାସିକ,ଦାର୍ଶନିକ ଓ ସମାଜବିତ୍‌ମାନେ ବର୍ଣ୍ଣନା କରିଛନ୍ତି। ସେସବୁ ବିଭବଗୁଡ଼ିକ ହେଲା– ଶ୍ରୀକ୍ଷେତ୍ରର ଜଗନ୍ନାଥ, ଶ୍ରୀକଳାମଣ୍ଡିତ କୋଣାର୍କ ମନ୍ଦିର ଓ ରୀତିଯୁଗୀୟ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ। ଏହି ବିଭବଗୁଡ଼ିକୁ ଛାଡି କେହି ଓଡ଼ିଶା ବା ତାହାର ପୁରାତନ ନାମ ଉତ୍କଳ ବା କଳିଙ୍ଗର ପରାକାଷ୍ଠା ବର୍ଣ୍ଣନା କରିପାରିବ ନାହିଁ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜର କାବ୍ୟକୃତିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବିଶେଷତ୍ୱ ସମସ୍ତ ଯାତ୍ରା ମଧ୍ୟରୁ ସ୍ନାନଯାତ୍ରା ଓ ଶ୍ରୀଗୁଣ୍ଡିଚା ଶ୍ରେଷ୍ଠଯାତ୍ରା ବୋଲି ଉଲ୍ଲେଖ କରି ଜଗନ୍ନାଥ ସଂସ୍କୃତିରେ ଏହି ଦୁଇଟି ଯାତ୍ରାର ମହିମା ପ୍ରତିପାଦନ କରିଛନ୍ତି। ତାତ୍ତ୍ୱିକ ଦୃଷ୍ଟିରେ ବିଚାର କଲେ ଏହି ଦୁଇଟି ଯାତ୍ରାରେ ହିଁ ଜଗନ୍ନାଥ ମହାପ୍ରଭୁ ସ୍ୱବିଗ୍ରହରେ ରତ୍ନ ସିଂହାସନ ତ୍ୟାଗ କରି ଭକ୍ତମାନଙ୍କ ଗହଣକୁ ଆସନ୍ତି। କବିସମ୍ରାଟ ଉପେନ୍ଦ୍ରଭଂଜଙ୍କ ଭାଷାରେ–

ସ୍ନାନ ଗୁଣ୍ଡିଚା ଏ ବେନି,
ସ୍ୱୟଂ ଲୀଳା ଯାର
ପତିତ ପାବନ ଅର୍ଥେ
ପ୍ରାସାଦୁ ବାହାର।

ଜଗନ୍ନାଥ ସଂସ୍କୃତିର ବାସ୍ତବବାଦୀ ତଥ୍ୟକୁ କବିସମ୍ରାଟ ଉପେନ୍ଦ୍ର ଭଂଜ ତାଙ୍କର ରଚନାରେ ଲାଳିତ୍ୟପୂର୍ଣ୍ଣ ତଥା ତଥ୍ୟ ସମ୍ବଳିତ କରିଛନ୍ତି। କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କର ଶ୍ରୀଜଗନ୍ନାଥଙ୍କ ସଂପର୍କରେ ରଚିତ ଦୁଇଟି ରଚନା ବିଶେଷ ଆଲୋଚିତ ହୋଇଥାଏ। ତାହା ହେଲା – ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଏବଂ ନୀଳାଦ୍ରୀଶ – ଚଉତିଶା। ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ଲୋକଲୋଚନକୁ ଆସିନାହିଁ। ଗଞ୍ଜାମର କେତେକ ପାଲା, ଦାସକାଠିଆ ଓ ଗୋଟିପୁଅ ନୃତ୍ୟସଂଗୀତ କାର୍ଯ୍ୟକ୍ରମରେ ପୁରୁଷୋତ୍ତମ ମାହାତ୍ମ୍ୟର ପଦଗୁଡ଼ିକ ଶୁଣିବାକୁ ମିଳିଥାଏ ।

ନୀଳାଦ୍ରୀଶ ଚଉତିଶା ମୁଦ୍ରିତ ହୋଇ ପ୍ରକାଶିତ ହୋଇଛି। ଓଡ଼ିଆ ଚଉତିଶା ରଚନା ଶୈଳୀ ଅନୁସାରେ ପ୍ରତ୍ୟେକ ପଦର ଆରମ୍ଭରେ କ୍ରମାନୁସାରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଅକ୍ଷର





ବ୍ୟବହାର କରାଯାଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି । ଏହି ଚଉତିଶାରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଶ୍ରୀଜଗନ୍ନାଥ ସଂସ୍କୃତିର ସମସ୍ତ ତତ୍ତ୍ୱକୁ ଉପସ୍ଥାପନ କରିଛନ୍ତି । ଏହି ଚଉତିଶାର 'ବ' ପଦରେ କବିସମ୍ରାଟ ଉପେନ୍ଦ୍ର ଭଂଜ ବିଭିନ୍ନ ଦାର୍ଶନିକମାନେ ଶ୍ରୀଜଗନ୍ନାଥଙ୍କୁ କିଭଳି ବିଚାର କରିଛନ୍ତି, ତାହାର ବର୍ଣ୍ଣନା ସୁନ୍ଦର ଭାବରେ କରିଛନ୍ତି ।

ବ୍ରହ୍ମ ବୋଲି ବ୍ରହ୍ମଙ୍କେ ବୋଲନ୍ତି ଭାବେ ବିଜ୍ଞେ
ବୁଧେ ବୋଲନ୍ତି ବୁଦ୍ଧ ବୋଲି
ବୁଦ୍ଧିରେ ବିଚାରଇ ବଳକ୍ଷାବଳି ଚାହିଁ
ବାହୁକ ବନ୍ଧୁ ବଡ଼ ସାଇଁ
ହେ ନୀଳାଦ୍ରୀଶ
ବଇରାଗିଏ ଛନ୍ତି ବେଢ଼ି
ବିଦେହ ପୁରେ ଲୀଳା ବାଢ଼ି
ବିଭୀଷଣ ବନ୍ଦିତ ବିଦେହ ବାଳୀ କାନ୍ତ
ବାନର ପତି ଦଳେ ବେଢ଼ି ।

ଏହି ପଦରେ କବି ସମ୍ରାଟ ଉପେନ୍ଦ୍ର ଭଂଜ ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ, ବୁଦ୍ଧ, କୃଷ୍ଣ ଓ ଶ୍ରୀରାମଚନ୍ଦ୍ର ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କର ଏହି ରଚନାରେ 'ବୁଦ୍ଧ' ବିଷୟରେ ଅବତାରଣା କଲାବେଳେ ତାହା, 'ବୁଧେ', ବୋଲନ୍ତି ବୋଲି ଉଲ୍ଲେଖ କରି ପ୍ରମାଣିତ କରିଛନ୍ତି ଯେ, ସମାଜର ବୁଧ ଅର୍ଥାତ୍ ଜ୍ଞାନୀ ଲୋକମାନେ ଶ୍ରୀ ମହାପ୍ରଭୁଙ୍କୁ ବୁଦ୍ଧ ରୂପରେ ଗ୍ରହଣ କରିଛନ୍ତି । ତେଣୁ ଭାବାତ୍ମକ ଦୃଷ୍ଟିରୁ ବିଚାର କଲେ, ଶ୍ରୀଜଗନ୍ନାଥଙ୍କର ସମସ୍ତ ପରିଚୟ ମଧ୍ୟରୁ ବୁଦ୍ଧ ପରିଚୟର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସେହି କାରଣରୁ ହୁଏତ ଉତ୍କଳୀୟ ପଣ୍ଡିତମାନେ ଶ୍ରୀମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାର ଉପରେ ଦଶ ଅବତାର ଚିତ୍ର ମଧ୍ୟରୁ ନବମ ମୂର୍ତ୍ତି ବୁଦ୍ଧଙ୍କ ପରିବର୍ତ୍ତେ ଜଗନ୍ନାଥଙ୍କ ମୂର୍ତ୍ତି ସ୍ଥାପନ କରିଛନ୍ତି । ତେଣୁ ଶ୍ରୀମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାର ତଥା ସିଂହଦ୍ୱାରରୁ ସେହି ମନ୍ଦିରରେ ବୁଦ୍ଧଙ୍କ ପ୍ରତିଷ୍ଠା ପ୍ରତିପାଦିତ ହୋଇଛି । ଶ୍ରୀଜଗନ୍ନାଥ ଓ ବୌଦ୍ଧ ଧର୍ମର ଘନିଷ୍ଠ ସଂପର୍କ ବିଷୟରେ ରାଜା ଇନ୍ଦ୍ରଭୂତି ନିଜର ଜ୍ଞାନ ସିଦ୍ଧି ପୁସ୍ତକରେ ବହୁ ବର୍ଣ୍ଣନା କରିଛନ୍ତି । ରାଜା ଇନ୍ଦ୍ରଭୂତିଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ହିଁ ସର୍ବବୁଦ୍ଧମୟ ।

ଶ୍ରୀଜଗନ୍ନାଥଙ୍କୁ ପ୍ରଣାମ ଜଣାଇ ତାଙ୍କୁ ସର୍ବଧର୍ମ ଗୁରୁମାନଙ୍କ ଦ୍ୱାରା ଅର୍ଚ୍ଚିତ ହୋଇଥିବା ଏବଂ ସମସ୍ତ ବୁଦ୍ଧମାନଙ୍କର ସିଦ୍ଧିକୁ ଗଗନର ବ୍ୟାପ୍ତି ପରି ଗ୍ରହଣ କରିଥିବା ମହାପ୍ରଭୁ ବୋଲି ବର୍ଣ୍ଣନା କରିଛନ୍ତି । ରାଜା ଇନ୍ଦ୍ରଭୂତିଙ୍କର ସର୍ବ ବୁଦ୍ଧମୟଂ ସିଦ୍ଧି ଉକ୍ତିକୁ ପଣ୍ଡିତମାନେ ବ୍ୟାପକ ଅର୍ଥରେ ଗ୍ରହଣ କରନ୍ତି । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଗୌତମ ବୁଦ୍ଧ, ବୌଦ୍ଧ ପରମ୍ପରାରେ ୨୫ତମ ବୁଦ୍ଧ ଭାବରେ ଗ୍ରହଣ କରାଯାଆନ୍ତି । ତାହାଙ୍କ ପୂର୍ବରୁ ଆଉ ୨୪ଜଣ ବୁଦ୍ଧ ଜନ୍ମଗ୍ରହଣ କରି ବୌଦ୍ଧଧର୍ମର ପ୍ରଚାର କରିଥିଲେ । ତେଣୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରିତରେ ସମସ୍ତ ବୁଦ୍ଧ ଚରିତ ନିହିତ ହୋଇଛି ବୋଲି ରାଜା ଇନ୍ଦ୍ରଭୂତି ଘୋଷଣା କରିଛନ୍ତି ।

ଆଦିକବି ସାରଳା ଦାସ ତାଙ୍କଦ୍ୱାରା ରଚିତ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ରୂପେ ବର୍ଣ୍ଣନା କରି ତାଙ୍କର ମତକୁ ଦୃଢ଼ଭାବରେ ପ୍ରତିଷ୍ଠା କରିଛନ୍ତି । ମଧ୍ୟଯୁଗୀୟ କବି ସାରଳା ଦାସ ବର୍ଣ୍ଣନା କରିଛନ୍ତି ଯେ–

ବନ୍ଦଇ ଶ୍ରୀଜଗନ୍ନାଥ ବଇକୁଣ୍ଠ ବାସୀ
ବୁଦ୍ଧ ରୂପେ ନୀଳଗିରି ଶିଖେ ଅଛ ବସି ।

ତେଣୁ ସାରଳା ଦାସଙ୍କ ଦୃଷ୍ଟିରେ ନୀଳଗିରି ଶିଖରେ ଅବସ୍ଥାପିତ ପ୍ରଭୁ ଶ୍ରୀଜଗନ୍ନାଥ ବୁଦ୍ଧ ରୂପରେ ଅଧିଷ୍ଠାନ କରିଛନ୍ତି ।

ବୌଦ୍ଧ ଧର୍ମର ମୂଳମନ୍ତ୍ର ହେଉଛି ଜୀବେ ଦୟା । ସଂସାରର ସମସ୍ତ ଜୀବନକୁ ରୋଗ ଓ ଶୋକରୁ ରକ୍ଷା କରିବା ନିମିତ୍ତ ବୌଦ୍ଧଧର୍ମର ଧର୍ମଗ୍ରନ୍ଥ 'ତ୍ରିପିଟକ' ଘୋଷଣା କରୁଛି । 'କାମନାର ବିନାଶରେ ହିଁ ଦୁଃଖର ବିନାଶ' ଓ 'ଜୀବେ ଦୟା' ହିଁ ବୌଦ୍ଧମାନଙ୍କର ମୂଳମନ୍ତ୍ର । ଏହି ଭାବକୁ କଳି ଯୁଗରେ ଜଗନ୍ନାଥ ମହାପ୍ରଭୁ କ୍ରିୟାଶୀଳ କରିଛନ୍ତି । ସେ ବୌଦ୍ଧ ରୂପରେ



ବହୁ ଦାର୍ଶନିକଙ୍କ ଦୃଷ୍ଟିରେ ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧଧର୍ମର ତ୍ରିରତ୍ନ ମାତ୍ର। ବୌଦ୍ଧ ଧର୍ମରେ ବୁଦ୍ଧ, ଧର୍ମ ଓ ସଂଘକୁ ତ୍ରିରତ୍ନ ଭାବରେ ଗ୍ରହଣ କରାଯାଏ । ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦୃଷ୍ଟିରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଚଣ୍ଡାଶୋକଙ୍କ କଳିଙ୍ଗ ଆକ୍ରମଣ ପରେ କଳିଙ୍ଗର ଶବରମାନେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ସେହିମାନଙ୍କ ଦ୍ୱାରା ଏକ ବିରାଟ ସ୍ତୂପ ମହୋଦଧି ତୀର ପୁରୀଠାରେ ନିର୍ମିତ ହୋଇଥିଲା। ସେହି ସ୍ତୂପର ଶୀର୍ଷ ଦେଶରେ ବୁଦ୍ଧଙ୍କର ଉପାସନା ହେଉଥିଲା। ପରେ ବୈଷ୍ଣବମାନଙ୍କ ଦ୍ୱାରା ସେହି ସ୍ତୂପ ଉପରେ ବିଷ୍ଣୁଙ୍କର ଉପାସନା ପ୍ରତିଷ୍ଠା ଲାଭ କରିଥିଲା ।

ସରଳ ଭାବରେ ଚିନ୍ତା କଲେ ଜଣାଯାଏ ଯେ, ଭାରତୀୟ ସନାତନ ଧର୍ମର ମୂଳଲକ୍ଷ୍ୟ ଯାହା, ବୌଦ୍ଧ ଧର୍ମର ମୂଳନୀତି ମଧ୍ୟ ତାହା । ବୌଦ୍ଧ ଓ ଜୈନଧର୍ମର ବିଭିନ୍ନ ରୀତିନୀତି, ପର୍ବପର୍ବାଣି ଓ ଉପାସନା ବିଧିକୁ ଲକ୍ଷ୍ୟ କଲେ, ସେସବୁ ସହିତ ହିନ୍ଦୁଧର୍ମ ରୀତିନୀତିରେ ବହୁ ସାମଞ୍ଜସ୍ୟ ରହିଛି। ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତର ଦେବତା । ତେଣୁ କେବଳ ବୌଦ୍ଧ କାହିଁକି, ସମସ୍ତ ଧର୍ମର ସାରତତ୍ତ୍ୱ ଜଗନ୍ନାଥଙ୍କ ସଂସ୍କୃତିରେ ପରିଲକ୍ଷିତ ହୁଏ।

ଏମ୍.ଆଇ.ଜି–୧
୨୨୭, ସତ୍ୟସାଇ ଏନ୍‌କ୍ଲେଭ, ଲେନ୍–୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦

ଅବତାର ଗ୍ରହଣ କରି ପାପୀଜନଙ୍କୁ ଉଦ୍ଧାର କରୁଛନ୍ତି। ଆଦିକବି ସାରଳା ଦାସଙ୍କ ଭାଷାରେ–

ବଉଦ୍ଧ ରୂପରେ କଳିଯୁଗେ ଅବତାର
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର।

ଶ୍ରୀମଦ୍ ଭଗବତ ଗୀତାର ତଥ୍ୟ ଅନୁସାରେ ବୈକୁଣ୍ଠବାସୀ ବିଷ୍ଣୁ ଧରାଧାମରେ ଦୁଷ୍ଟମାନଙ୍କ ଦ୍ୱାରା ସାଧୁଜନମାନେ ଉତ୍‌ପୀଡ଼ିତ ହେଲେ ଶିଷ୍ଟ ଜନମାନଙ୍କୁ ଉଦ୍ଧାର କରି ଧର୍ମ ସଂସ୍ଥାପନ ନିମିତ୍ତ ଅବତାର ଗ୍ରହଣ କରିଛନ୍ତି। ଆଦିକବି ସାରଳା ଦାସ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ଅବତାର ରୂପେ ଗ୍ରହଣ କରି ଦୁଷ୍ଟମାନଙ୍କୁ ବିନାଶ କରି ସନ୍ଥମାନଙ୍କୁ ପାଳିବା ବିଷୟରେ ବର୍ଣ୍ଣନା କରିଛନ୍ତି।

ବଉଦ୍ଧ ଅବତାରେ ନିଶ୍ଚେ ବିହରିବୁ
ଦୁଷ୍ଟମାରି ସନ୍ଥମାନଙ୍କୁ ପାଳିବୁ।

ବୁଦ୍ଧ ଅବତାର ସରଳ ଜୀବନ ଓ ଉଚ୍ଚ ଚିନ୍ତନରେ ବିଶ୍ୱାସ କରେ। ବୁଦ୍ଧଦେବ କେବେ ଅସ୍ତ୍ର ଗ୍ରହଣ କରି ନଥିଲେ। ପୃଥିବୀର ସମସ୍ତ ବୁଦ୍ଧ ମୂର୍ତ୍ତିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ, ସେ ସାଧାରଣ ପୋଷାକ ପରିଧାନ କରୁଥିଲେ। ସାରଳା ଦାସଙ୍କର ବୁଦ୍ଧ ରୂପ ବର୍ଣ୍ଣନା ବୌଦ୍ଧ ଧର୍ମଗ୍ରନ୍ଥର ବୁଦ୍ଧ ରୂପଠାରୁ ସଂପୂର୍ଣ୍ଣ ଭିନ୍ନ। ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ପ୍ରତିଷ୍ଠିତ କରିବା ପାଇଁ ସେ ବୁଦ୍ଧଙ୍କ ରୂପରେ ଶଙ୍ଖ ଓ ଚକ୍ର ସ୍ଥାପନ କରିଛନ୍ତି। ଆଦିକବି ସାରଳା ଦାସଙ୍କ ଭାଷାରେ–

ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖ ଚକ୍ର ବହି।





# ଶ୍ରୀଗୁଣ୍ଡିଚା ଯାତ୍ରାର ଐତିହ୍ୟ

ଡକ୍ଟର ଶ୍ରୀଚରଣ ଦାସ

ଶ୍ରୀକ୍ଷେତ୍ରରେ ପାଳନ କରାଯାଉଥିବା ଦ୍ୱାଦଶ ଯାତ୍ରା ମଧ୍ୟରେ ଗୁଣ୍ଡିଚା ଯାତ୍ରା ସର୍ବଶ୍ରେଷ୍ଠ । ସାର୍ବଜନୀନ ଏହି ଯାତ୍ରା ଘୋଷଯାତ୍ରା, ମହାବେଦୀ ଯାତ୍ରା, ପତିତପାବନ ଯାତ୍ରା, ମହାବେଦୀ ଯାତ୍ରା, ଆଡପଯାତ୍ରା, ନବଦିନାତ୍ମକ ଯାତ୍ରା, ଜନକପୁରୀ ଯାତ୍ରା ଓ ରଥଯାତ୍ରା ଆଦି ନାମରେ ନାମିତ । ବିଶ୍ୱପ୍ରସିଦ୍ଧ ଶ୍ରୀଜଗନ୍ନାଥ ରହସ୍ୟମୟ ଦେବତା । ତାଙ୍କର ପ୍ରତିଟି ରୀତି, ନୀତି, ପୂଜା, ପାର୍ବଣ, ଯାନି ଯାତ୍ରା ଆଦିର ରହସ୍ୟଭେଦ କରିବା ସାମାନ୍ୟ ମଣିଷ କାହିଁକି ଦେବତାଙ୍କ ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । ତେଣୁ ଯଥାର୍ଥରେ କୁହାଯାଇଛି –

‘ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବାଃ ନ ଜାନାନ୍ତି କୁତଃ ମନୁଷ୍ୟାଃ’

ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ଦେଉଳତୋଳାଠାରୁ ଆରମ୍ଭ କରି ମନ୍ଦିର ପ୍ରତିଷ୍ଠା ମୂର୍ତ୍ତିସ୍ଥାପନ ଏବଂ ବିଭିନ୍ନ ଯାତ୍ରା ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଅନେକତ୍ର ପୁରାଣ ଇତିହାସ ସହିତ କିମ୍ବଦନ୍ତୀକୁ ମଧ୍ୟ ତଥ୍ୟ ଭାବରେ ଗ୍ରହଣ କରିବାକୁ ପଡିଥାଏ । ଗୁଣ୍ଡିଚା ମନ୍ଦିର ନିର୍ମାଣ ପୂର୍ବରୁ ଚତୁର୍ଥ ଶତାବ୍ଦୀରୁ ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିରୁ ନବଦିବସାବଧି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ପାଳିତ ହୋଇ ଆସୁଅଛି । ଐତିହାସିକ କେଦାରନାଥ ମହାପାତ୍ର ତାଙ୍କର ଖୁରୁଧା ଇତିହାସରେ ଲେଖିଛନ୍ତି ଯେ, ଗୁଣ୍ଡିଚା ମନ୍ଦିର ନିର୍ମିତ ହେବାପରେ ଜଗନ୍ନାଥଙ୍କ ‘ରଥଯାତ୍ରା’ର ଅନ୍ୟନାମ ଗୁଣ୍ଡିଚାଯାତ୍ରା ନାମରେ ପ୍ରସିଦ୍ଧ ଲାଭକଲା । କିମ୍ବଦନ୍ତୀରୁ ଜଣାଯାଏ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ଦେବୀଙ୍କ ଅନୁରୋଧକ୍ରମେ ଜଗନ୍ନାଥଙ୍କ ରଥଯାତ୍ରା ପ୍ରବର୍ତ୍ତିତ ହୋଇଥିବାରୁ ଏହାର ଅନ୍ୟନାମ ହୋଇଛି ଗୁଣ୍ଡିଚା ଯାତ୍ରା । ଜଗନ୍ନାଥ ପୁରାଣ ପ୍ରସିଦ୍ଧ ଦେବତା । ବେଦୋତ୍ତର କାଳରୁ ତାଙ୍କର ଅବସ୍ଥିତି ସ୍ୱୀକୃତ । ଶ୍ରୀଜଗନ୍ନାଥ ପ୍ରଥମେ ଶବରମାନଙ୍କ ଦ୍ୱାରା ପୂଜା ପାଇ ଆସୁଥିଲେ । ପରେ ମାଳବର ରାଜା ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପାଇଁ ମନ୍ଦିର ନିର୍ମାଣ କରି ଜଗନ୍ନାଥଙ୍କ ପୂଜାର୍ଚ୍ଚନାର ବ୍ୟବସ୍ଥା କଲେ । କିମ୍ବଦନ୍ତୀ କୁହେ ଶବର ଓ ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଜଗନ୍ନାଥଙ୍କ ସଂପର୍କ ବହୁ ପ୍ରାଚୀନ ଏବଂ ପୁରାଣ ଅନୁସାରେ ଇନ୍ଦ୍ରଦ୍ୟୁମ୍ନ ହେଉଛନ୍ତି ମାଳବ ଦେଶର ଜଣେ ପ୍ରସିଦ୍ଧ ରାଜା । ଚୋଡଗଙ୍ଗ ଦେବ ୧୦୭୭ ଖ୍ରୀଷ୍ଟାବ୍ଦରୁ ୧୧୪୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳର ରାଜା ଥିଲେ ।ସେହି





ରାଜାଙ୍କ ସମୟରେ ଗୁଣ୍ଡିଚା ମନ୍ଦିର ନିର୍ମିତ ହୋଇଥିଲା । ଗୁଣ୍ଡିଚା ମନ୍ଦିର ନିର୍ମିତ ହେବାପରେ ଜଗନ୍ନାଥଙ୍କ ରଥଯାତ୍ରାର ଅନ୍ୟନାମ ଗୁଣ୍ଡିଚାଯାତ୍ରା ନାମରେ ପ୍ରସିଦ୍ଧ ଅର୍ଜନ କଲା । ଏହାକୁ ଯଦି ସତ୍ୟ ମନେ କରାଯାଏ ତେବେ ଦୀର୍ଘ ସାତଶହ ବର୍ଷପରେ (୪ର୍ଥ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ) ରଥଯାତ୍ରା ଗୁଣ୍ଡିଚାଯାତ୍ରା ନାମରେ ନାମିତ କରାଯାଇଛି । ଓଡ଼ିଆ ଭାଷାର ପ୍ରମୁଖ ଅଭିଧାନ କେତୋଟିରେ 'ଗୁଣ୍ଡିଚା' ଶବ୍ଦକୁ କିମ୍ବଦନ୍ତୀ ସମର୍ଥିତ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ପତ୍ନୀ ଗୁଣ୍ଡିଚା ଦେବୀଙ୍କ କର୍ତ୍ତୃକ ପ୍ରତିଷ୍ଠିତ ଥିବାରୁ ଏହାର ନାମ ଗୁଣ୍ଡିଚା ଏବଂ ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ମଣ୍ଡପ ବା ପ୍ରାସାଦ ବିଶେଷ ରୂପେ ଏହା ବ୍ୟାଖ୍ୟାୟିତ ।ଏଠାରେ ମହାପ୍ରଭୁ ଶ୍ରୀଜଗନ୍ନାଥ ରଥୋତ୍ସବ ସମୟରେ ସପ୍ତାହକାଳ ଅବସ୍ଥାନ କରନ୍ତି । କିନ୍ତୁ ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ 'ଗୁଣ୍ଡିଚା' ସଂପର୍କରେ ଲେଖିଛି –'ପୁରୀ ଜଗନ୍ନାଥ ମନ୍ଦିରଠାରୁ ପ୍ରାୟ ଦେଢ଼ ମାଇଲ ଦୂରରେ ଗୁଣ୍ଡିଚା ଘର ଅବସ୍ଥିତ । ରଥଯାତ୍ରା ବେଳେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା– ତିନିମୂର୍ତ୍ତି ବଡ ଦେଉଳରୁ ଅଣାଯାଇ ଏଠାରେ ଅବସ୍ଥାପିତ ହୁଅନ୍ତି । ସେସମୟରେ ଏହିଠାରେ ଦେଉଳର ସମସ୍ତ ନୀତି ସାତଦିନ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଲୋକଶୃତି ଅନୁସାରେ ଏହି ମନ୍ଦିରକୁ ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ଦେବୀଙ୍କ ନାମ ସହ ସଂଶ୍ଳିଷ୍ଟ କଲେ ମଧ୍ୟ ଏହାର ଗଠନ ପ୍ରଣାଳୀରୁ ମନେହୁଏ ଏହା କୌଣସି ଭୋଇ ବଂଶ ରାଜାଙ୍କ ଦ୍ୱାରା ନିର୍ମିତ ।' ଓଡିଶାର ବଶିଷ୍ଟ ଆଲୋଚକ ଓ ଗବେଷକ ଜଗବନ୍ଧୁ ସିଂହ ତଦୀୟ, 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ 'ଗୁଣ୍ଡିଚା' ଯାତ୍ରା ସଂପର୍କରେ ମତାମତ ଦେଇ ଲେଖିଛନ୍ତି –'ନୀଳାଚଳ ଅତିପ୍ରାଚୀନ କାଳରୁ ଥିଲା । ନୀଳମାଧବ ମୂର୍ତ୍ତି ଏଠାରେ ପୂଜା ପାଉଥିଲା । ଇନ୍ଦ୍ରଦ୍ୟୁମ୍ନ ମହାରାଜା ଦେଉଳ ତୋଳାଇ ଦାରୁବ୍ରହ୍ମ ମୂର୍ତ୍ତି କରାଇ ଦେଉଳରେ ବିଜେ କରାଇଥିଲେ । ଗୁଣ୍ଡିଚା ମନ୍ଦିରରେ ମୂର୍ତ୍ତି ନିର୍ମିତ ହୋଇଥିଲା ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀଙ୍କ ନାମରେ ଗୁଣ୍ଡିଚା ଥିଲା । ଗୁଣ୍ଡିଚା ମନ୍ଦିରରେ ମୂର୍ତ୍ତି ନିର୍ମିତ ହୋଇଥିଲା ବୋଲି ଏହାକୁ ଜନକପୁର ବୋଲି କୁହାଗଲା ବର୍ଷକେଥରେ ତିନିମୂର୍ତ୍ତି ରଥରେ ବସି ସେହି ଜନକପୁରକୁ ଯାଇ ସେଠାରେ ସାତଦିନ ରହି ଫେରିଆସନ୍ତି । ରାଣୀ ଗୁଣ୍ଡିଚା ଏହି ଯାତ୍ରା କରାଇ ଥିବାରୁ ଏ ଯାତ୍ରାର ନାମ ଗୁଣ୍ଡିଚାଯାତ୍ରା ।' ସ୍କନ୍ଦ ପୁରାଣ ଅନ୍ତର୍ଗତ ମାଘ ଖଣ୍ଡରେ ମଧ୍ୟ ଗୁଣ୍ଡିଚା ମନ୍ଦିରକୁ ଜନକପୁର ଅର୍ଥାତ୍ ଜନ୍ମସ୍ଥାନ ବୋଲି ବର୍ଣ୍ଣନା କରାଯାଇଛି ।

ଗୁଣ୍ଡିଚା ରାଣୀଙ୍କୁ ଦର୍ଶନ ଦେବାପାଇଁ ପ୍ରତିବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ମହାପ୍ରଭୁ ଜଗନ୍ନାଥ, ଭାଇ ଭଉଣୀଙ୍କ ସହିତ ରଥରେ ନବଦିନ ପାଇଁ ଯେଉଁ ଯାତ୍ରା କରିଥାନ୍ତି, ତାହାର ନାମ ଗୁଣ୍ଡିଚାଯାତ୍ରା । ପୁରାଣ ଓ କିମ୍ବଦନ୍ତୀକୁ ଆଧାର କରି ଯଦିଓ ରଥଯାତ୍ରାକୁ ଗୁଣ୍ଡିଚାଯାତ୍ରା କୁହାଗଲା କିନ୍ତୁ ଗବେଷକ, ଐତିହାସିକ ଓ ଭାଷାବିତ୍‌ମାନେ ଏହାକୁ ସହଜରେ ଗ୍ରହଣ କରି ପାରିଲେ ନାହିଁ। ସମାଲୋଚକ ପଣ୍ଡିତ ନୀଳକଣ୍ଠ ଦାସ 'ଗୁଣ୍ଡିଚା' ଶବ୍ଦର ରହସ୍ୟ ଉଦ୍‌ଘାଟନ ପାଇଁ ଯଥା ସମ୍ଭବ ଉଦ୍ୟମ କରିଛନ୍ତି । ସେ ତାଙ୍କର ଓଡ଼ିଆ ସାହିତ୍ୟର କ୍ରମପରିଣାମ ପୁସ୍ତକର ଦ୍ୱିତୀୟ ଭାଗରେ, 'କୋଇଲି' ଓ 'ଗୁଣ୍ଡିଚା' ଏହି ଦୁଇଟି ଶବ୍ଦକୁ ପ୍ରାଚୀନ ଦ୍ରାବିଡ ଶବ୍ଦ ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ମତରେ – କୋଇଲି ବୋଇଲେ ଦେବଗୃହ ଓ ଗୁଣ୍ଡିଚା ବୋଇଲେ ଉଦ୍ୟାନଗୃହ । ଏହି ମତକୁ କେତେକ ଗ୍ରହଣ କରିପାରୁ ନଥିଲେ ହେଁ ଏହାର ଯଥାର୍ଥତାକୁ ଏଡି ଦିଆଯାଇ ନପାରେ । ଡକ୍ଟର ହରେକୃଷ୍ଣ ମହତାବ 'ଗୁଣ୍ଡିଚା' ଶବ୍ଦର ଦ୍ରାବିଡ ମୂଳକ 'ଗୁଡିସା' ଶବ୍ଦରୁ ଆସିଥିବା ଅନୁମାନ କରିଛନ୍ତି । ତେଲୁଗୁ ଭାଷାରେ 'ଗୁଡିସା' ଶବ୍ଦର ଅର୍ଥ କୁଟୀର । ତେଣୁ 'ଗୁଣ୍ଡିଚା' ଯଥା ସମ୍ଭବ 'ଗୁଡିସା' ଶବ୍ଦର ପରିଣତି । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଯେତେବେଳେ ଜଗନ୍ନାଥଙ୍କ ରଥଯାତ୍ରା ଅରମ୍ଭ ହେଲା, ସେତେବେଳେ ଓଡିଶାର ଆଦିବାସୀଙ୍କ ମଧ୍ୟରେ 'ଦ୍ରାବିଡ ଭାଷା' ପ୍ରଚଳିତ ଥିଲା । ଏଣୁ ମନେ ହୁଏ ସେସମୟରେ ଜଗନ୍ନାଥଙ୍କୁ ମନ୍ଦିରରୁ ବାହାର କରାହୋଇ ରଥରେ ନିଆହୋଇ ଅନ୍ୟ ଏକ କୁଟୀରରେ ଅସ୍ଥାୟୀଭାବେ ରଖାଯାଉଥିଲା ଏବଂ ତାହା ତତ୍‌କାଳୀନ ଭାଷାରେ 'ଗୁଡିସା' ବୋଲି କଥିତ ହେଉଥିଲା । କାଳକ୍ରମେ ମନ୍ଦିରରୁ ଗୁଡିସାକୁ



ରଥଯିବା ଓ ସେଠାରେ ରହିବା ବିଧିବଦ୍ଧ ହୋଇଗଲା । 'ଗୁଡିସା' ମଧ୍ୟ ପ୍ରଥମେ 'ଗୁଡିଚା' ଓ ପରେ 'ଗୁଣ୍ଡିଚା' ବୋଲି ଲୋକମୁଖରେ ଆଦୃତ ହୋଇଗଲା ।

ଏକଥା ଦୃଢ ସତ୍ୟ ଯେ ଜଗନ୍ନାଥ ପ୍ରଥମେ ଶବରମାନଙ୍କ ଦ୍ୱାରା ଉପାସିତ ହେଉଥିଲେ ଏବଂ ତାହା ପୁଣି ଦାରୁ ରୂପରେ । ଦାରୁ ଶବ୍ଦର ପ୍ରୟୋଗ ଗୋଟିଏ ଶ୍ଳୋକରେ ହୋଇଛି । ଯଥା–

'ଅଦୋଯଦ୍ ଦାରୁପ୍ଲବତେ ସିନ୍ଧୋପାରେ ଅପୌରୁଷମ୍
ତଦାରଭସ୍ୱ ଦୁର୍ହଣୋ ତେନଗଛ୍ ପରସ୍ତରମ୍ ।'

(ଋକ୍ ବେଦ,୧୦,୧୫୫–୩)

ଚତୁର୍ଦ୍ଦଶ ଶତାବ୍ଦୀର ବୈଦିକ ଟୀକାକାର ସାୟଣାଚାର୍ଯ୍ୟଙ୍କ ମତରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ହିଁ ଋକ୍‌ବେଦରେ ଦାରୁ ରୂପେ ଅଭିହିତ କରାଯାଇଛି । ଏହି ମତଟି କପିଳେନ୍ଦ୍ର ଦେବଙ୍କ (୧୪୩୫–୧୪୬୫ ଖ୍ରୀ.ଅ.) ରାଜତ୍ୱ ସମୟରେ ଗଣଦେବଙ୍କର କୋଣ୍ଡବିଡୁ ତାମ୍ର ଫଳକଦ୍ୱାରା ସମର୍ଥିତ ହୋଇଛି । ଜଗନ୍ନାଥ ପ୍ରଥମେ ଶବରମାନଙ୍କ ଦ୍ୱାରା ଜଦନ୍ତ ବା ଦାରୁ ଦେବତା ରୂପରେ ପୂଜା ପାଉଥିଲେ । ସେ ଆଦିମ ଶବର ପୂଜିତ ଦାରୁଦେବତାଙ୍କ ରୂପାନ୍ତର ହୋଇଥିବାରୁ ଏହି ଜଗନ୍ନାଥ ସଂସ୍କୃତି ସହିତ ଜଡିତ ବହୁ ଶବର ପ୍ରଚଳିତ ସୌରାଶବ୍ଦ ବ୍ୟବହୃତ ହୋଇଥିବା ପରିଲକ୍ଷିତ ହୁଏ । ତେଣୁ ଡକ୍ଟର ବେଣୀମାଧବ ପାଢୀ ସ୍ୱଗ୍ରନ୍ଥ 'ଦାରୁଦେବତା'ରେ ସୌରାଭାଷାର ଶବ୍ଦ ଭଣ୍ଡାରକୁ ଅନୁଧ୍ୟାନ କରି ସୌରଭାଷାର 'କୁନ–ଡିଜା' ଶବ୍ଦରୁ ଗୁଣ୍ଡିଚା ଶବ୍ଦର ବ୍ୟୁତ୍ପତ୍ତି ଘଟିଥିବା କଥା ପ୍ରକାଶ କରିଛନ୍ତି । ଦ୍ରାବିଡ ଭାଷାରୁ ଗୁଣ୍ଡିଚା ଶବ୍ଦର ସୃଷ୍ଟି ହୋଇନାହିଁ ବୋଲି ତାଙ୍କର ଦୃଢମତ । କାରଣ ଚତୁର୍ଥ ଶତାବ୍ଦୀରେ ଓଡିଶାର ଆଦିବାସୀମାନଙ୍କ ମଧ୍ୟରେ ଦ୍ରାବିଡ ଭାଷା ପ୍ରଚଳନ ଥିବାର କୌଣସି ପ୍ରମାଣ ନାହିଁ । ତେଣୁ ସେ ଗୁଣ୍ଡିଚା ଶବ୍ଦ ଦ୍ରାବିଡ ଗୁଡିସା ଶବ୍ଦରୁ ନ ଆସି 'କୁନ–ଡିଜା' ଶବ୍ଦର ଅପଭ୍ରଂଶ ବୋଲି ଯୁକ୍ତି ଦର୍ଶାଇଛନ୍ତି । ସୌରଭାଷାରେ କୁନ–ଡିଜାର ଅର୍ଥ ହେଉଛି ସେହୁ ଗଣ୍ଡି ଦାରୁ ବା ଦାରୁଦେବତା । (କୁନ୍ –ସେହି । ଡିଜା–ଗଣ୍ଡି ) । ମୂଳ ସୌର 'କୁନ–ଡିଜା' ଶବ୍ଦରୁ ଗୁଣ୍ଡିଚା ଶବ୍ଦର ବ୍ୟୁତ୍ପତ୍ତି ହୋଇଥିବା ଡଃ ପାଢୀ ଯୁକ୍ତି ଦର୍ଶାଇଛନ୍ତି । ସୌରଭାଷାରେ କୁନ–ଡିଜାର ଗୁଣ–ଡିଚା ଗୁଣ୍ଡିଚାରେ ରୂପାନ୍ତର ଘଟିଥିବା ଅଧିକ ଯକ୍ତିଯୁକ୍ତ ।

ତେଣୁ ଡକ୍ଟର ବେଣୀମାଧବ ପାଢୀଙ୍କ ମତକୁ ଅନେକ ଐତିହାସିକ ଗୁରୁତ୍ୱ ଦେଇଛନ୍ତି । ଆଦିମ ଶବରମାନଙ୍କ ଦ୍ୱାରା ପୂଜିତ ସେହି ଗଣ୍ଡି ବା ଦାରୁ ଦେବତାଙ୍କ ଜନ୍ମ ସ୍ଥାନରେ ଏକ ମନ୍ଦିର ନିର୍ମିତ ହୋଇ ତାହା ଗୁଣ୍ଡିଚା ମନ୍ଦିର ନାମରେ ପ୍ରସିଦ୍ଧ ଲାଭ କରିଛି । ପ୍ରତିବର୍ଷ ଆଷାଢ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ତିନି ଠାକୁର ରଥାରୂଢ ହୋଇ ଏହି ଆଦିମ ସ୍ଥାନ ବା ଜନ୍ମ ସ୍ଥାନ ଗୁଣ୍ଡିଚା ଘରକୁ ଯାତ୍ରା କରିଥାନ୍ତି । ଫଳରେ ଜଗନ୍ନାଥଙ୍କର ଏହି ରଥଯାତ୍ରାକୁ ଗୁଣ୍ଡିଚାଯାତ୍ରା କୁହାଯାଉଛି । ପ୍ରଥମେ ସେ ଦାରୁଗଣ୍ଡି ବା ଖମ୍ବର ରୂପରେ ଉପାସିତ ହେଲା ପରେ ଦାରୁରେ ମୂର୍ତ୍ତି ନିର୍ମାଣ ହେଲେ ଏବଂ ବିଧିବଦ୍ଧ ଭାବରେ ରଥଯାତ୍ରା କରାଯାଇ ନଅଦିନ ପାଇଁ ଶ୍ରୀମନ୍ଦିର ଛାଡି ଜନକପୁରୀ ବା ଗୁଣ୍ଡିଚା ଗୃହ ଅଭିମୁଖେ ଯାତ୍ରା କଲେ । ନଅଦିନ ମଧ୍ୟରୁ ଗୁଣ୍ଡିଚା ମନ୍ଦିରରେ ଚତୁର୍ଦ୍ଧା ମୂର୍ତ୍ତି ମାତ୍ର ସାତ ଦିନ ଅବସ୍ଥାନ କରିଥାନ୍ତି । ଗୁଣ୍ଡିଚା ଶବ୍ଦକୁ କେନ୍ଦ୍ର କରି ଯେତେ ମତ ପ୍ରକାଶ ପାଇଲେ ହେଁ ଏହି ସ୍ଥାନଟି ଯେ ତିନିମୂର୍ତ୍ତିଙ୍କ ଜନ୍ମସ୍ଥାନ ଏହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଗୁଣ୍ଡିଚା ମଣ୍ଡପ ହିଁ ମହାବେଦୀ, ଜନକପୁରୀ ଓ ଆଡପମଣ୍ଡପ । ଏହା ଯଜ୍ଞମଣ୍ଡପ ବା ନୃସିଂହକ୍ଷେତ୍ର ହୋଇଥିବାରୁ ଏବଂ ଶ୍ରୀଜଗନ୍ନାଥ ଯଜ୍ଞନୃସିଂହ ବିଗ୍ରହରୁ ଯଜ୍ଞନାଥ ଜଗନ୍ନାଥରେ ରୂପାନ୍ତରିତ ହୋଇଥିବାରୁ ଶ୍ରୀକ୍ଷେତ୍ରରୁ ତାଙ୍କର ପ୍ରତି ବର୍ଷ ଜନକପୁରୀ ବା ଗୁଣ୍ଡିଚା ମନ୍ଦିରକୁ ଯାତ୍ରା ହୁଏ । ଗୁଣ୍ଡିଚା ମନ୍ଦିର ନିର୍ମାଣର ନିର୍ଦ୍ଦିଷ୍ଟ ଶତାବ୍ଦୀ ଓ ସମୟସୀମାକୁ କେହି ସ୍ପଷ୍ଟ କରିପାରି ନାହାନ୍ତି । ସମସ୍ତେ ନିଜର ଜନ୍ମସ୍ଥାନକୁ ଭଲପାଆନ୍ତି । ଜନ୍ମସ୍ଥାନକୁ ଦେଖିବାରେ ଦେବତା ମଣିଷ ନିର୍ବିଶେଷରେ ସମସ୍ତଙ୍କ ମନରେ ଅହେତୁକ ଆକର୍ଷଣ ରହିଥାଏ । ଯେତେଦୂରରେ ରହିଥିଲେ ବି କେହି ଜନ୍ମଭୂମିର





ମୋହ ଏଡି ପାରନ୍ତି ନାହିଁ । ଶ୍ରୀଜଗନ୍ନାଥ ଯେପରି ଜଗତର ନାଥ ତାଙ୍କ ପାଇଁ ଦ୍ରାବିଡ ଶବ୍ଦର ଯେ ଏକ ନୂତନ ଶବ୍ଦ ଏହା ଚିନ୍ତା କରିବା ଅନୁଚିତ୍ । ଦକ୍ଷିଣ ଭାରତର ଲୋକମାନେ ଖୁବ୍ ନିଷ୍ଠାପର ଏବଂ ଦେବାରାଧନାକୁ ସେମାନେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରନ୍ତି । ସେ ଯେପରି ସବୁ ଧର୍ମର ମୂଳ ତଦନୁରୂପ ସବୁଭାଷା ତାଙ୍କଠାରେ ପ୍ରୟୋଗ କରାଯାଇଥାଏ । ତେଣୁ ଦ୍ରାବିଡ ଭାଷାର ଶବ୍ଦ ଗୁଡିସା ଅଥବା ସୌରଶବ୍ଦ 'କୁନ-ଡିଜା'ଯାହା ହେଉଛି ଗୁଣ୍ଡିଚା ମନ୍ଦିରର ନିର୍ମାଣ କାଳ ଏକାଦଶ ଶତାବ୍ଦୀ । ସ୍କନ୍ଦ ପୁରାଣ ଉତ୍କଳଖଣ୍ଡ ପୁରୁଷୋତ୍ତମ ମାହାତ୍ମ୍ୟ ଅନୁସାରେ ଶ୍ରୀଜଗନ୍ନାଥଙ୍କର ଦାରୁବିଗ୍ରହ ଚକ୍ରତୀର୍ଥଠାରୁ ଆସିବା ପରେ ଯେଉଁ ସ୍ଥାନରେ ରଖାଯାଇ ବିଗ୍ରହ ନିର୍ମାଣ କରାଯାଇଥିଲା, ତାହା ଗୁଣ୍ଡିଚା ଘର ବା ମଣ୍ଡପ ।

ଜନକପୁରକୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଗୁଣ୍ଡିଚା ଯାତ୍ରାର ଅବତାରଣା ହୋଇଥିବା ଯୁକ୍ତିଯୁକ୍ତ ମନେ ହୁଏ । ତଥାପି ଏ ଯାବତ୍ ଜଗନ୍ନାଥଙ୍କର ଏହି ଗୁଣ୍ଡିଚାଯାତ୍ରାକୁ ଓଡିଶାର ଜନସାଧାରଣ କିମ୍ବଦନ୍ତୀ ଉପରେ ଅଧିକ ପ୍ରାଧାନ୍ୟ ଦିଅନ୍ତି ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚାଙ୍କ ନାମ ସ୍ମରଣ କରିଥାନ୍ତି ।

## ସହାୟକ ଗ୍ରନ୍ଥସୂଚୀ


୧- ଖୁରୁଧା ଇତିହାସ -ମହାପାତ୍ର କେଦାରନାଥ -ଚତୁର୍ଥ ସଂସ୍କରଣ-୨୦୦୯, ଗ୍ରନ୍ଥମନ୍ଦିର ବିନୋଦ ବିହାରୀ କଟକ-୨

୨- ଓଡିଆ ସାହିତ୍ୟର କ୍ରମ-ପରିଣାମ-ଦାସ ପଣ୍ଡିତ ନୀଳକଣ୍ଠ-ଦ୍ୱିତୀୟ ସଂସ୍କରଣ-୧୯୭୭, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, ବିନୋଦ ବିହାରୀ କଟକ-୨

୩- ଦାରୁଦେବତା - ପାଢୀ ଡକ୍ଟର ବେଣୀମାଧବ- ଚତୁର୍ଥ ସଂସ୍କରଣ-୨୦୦୦ କଟକ, ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର

୪- ଶ୍ରୀଜଗନ୍ନାଥ ଓ ରଥଯାତ୍ରା-କାନୁନଗୋ ଡଃ ହରିହର, ବିଶ୍ୱଜିତ୍ ପ୍ରକାଶନ, ଭୁବନେଶ୍ୱର ପ୍ରଥମ ସଂସ୍କରଣ-୨୦୦୨

୫- ସଂକ୍ଷିପ୍ତ ଓଡିଆ ଜ୍ଞାନକୋଷ -(ଦ୍ୱିତୀୟ ଭାଗ) ପ୍ରଥମ ସଂସ୍କରଣ-୧୯୬୩, ଉତ୍କଳ ବିଶ୍ୱବିଦ୍ୟାଳୟ , ଭୁବନେଶ୍ୱର

୬- ପ୍ରାଚୀନ ଉତ୍କଳ -(ଦ୍ୱିତୀୟ ଭାଗ) ସିଂହ ଜଗବନ୍ଧୁ, ଚତୁର୍ଥ ସଂସ୍କରଣ-୨୦୧୩, ଓଡିଶା ସାହିତ୍ୟ ଏକାଡେମୀ , ଭୁବନେଶ୍ୱର

୭- ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚାଯାତ୍ରା ରହସ୍ୟ-(ପ୍ରବନ୍ଧ)ଝଙ୍କାର /୩୭ ବର୍ଷ, ଏକାଦଶ ସଂଖ୍ୟା ମିଶ୍ର ହରପ୍ରସାଦ

୮- ଜନଶ୍ରୁତି ଓ ସାମାଜିକ ଇତିହାସ -(ପ୍ରବନ୍ଧ)ଝଙ୍କାର / ୩୪ ବର୍ଷ ୪ର୍ଥ ସଂଖ୍ୟା, ଦାସ ଗଗନେନ୍ଦ୍ର ନାଥ

୯- ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ -ପ୍ରହରାଜ ଗୋପାଳଚନ୍ଦ୍ର - ଦ୍ୱିତୀୟ ଖଣ୍ଡ-୧୯୩, ତୃତୀୟ ଖଣ୍ଡ-୧୯୩୩

୧୦- ଓଡିଶା ଇତିହାସ -ଦ୍ୱିତୀୟ ଖଣ୍ଡ- ମହତାବ୍ ଡକ୍ଟର ହରେକୃଷ୍ଣ, ପଂଚମ ସଂସ୍କରଣ-୨୦୧୪, ଡକ୍ଟର ହରେକୃଷ୍ଣ ମହତାବ୍ ଫାଉଣ୍ଡେସନ, ବିହାରୀବାଗ୍, କଟକ-୨



ବମ୍ପିଲୋ, ପୋ-ବାସନ୍ଦରା
ଜି-ଜଗତ୍‌ସିଂହପୁର, ପିନ୍-୭୫୪୧୧୧



# ମାଉସୀ ମା'

**ଅନନ୍ତ ଗୋପାଳ ପଣ୍ଡା**

ରଥ ଦ୍ରୁତ ଗତିରେ ଆଗେଇ ଚାଲିଛି ଅଯୋଧ୍ୟା ଅଭିମୁଖେ । ରଥରେ ରଥି ଭାବରେ ଉପବେଶନ କରିଛନ୍ତି ଭକ୍ତିରସତ୍ୱର ପ୍ରତୀକ ଭରତ ଏବଂ ଅନୁଜ ଶତ୍ରୁଘ୍ନ । ଗୁରୁ ବଶିଷ୍ଠଙ୍କର ଡାକରା ପାଇ ମାତୁଳାଳୟରୁ ଅବିଳମ୍ବେ ପ୍ରତ୍ୟାବର୍ତ୍ତନ କରୁଛନ୍ତି ଅଯୋଧ୍ୟାକୁ । ବାଟରେ ଆସିଲା ବେଳେ ନାନା ପ୍ରକାର ଅଶୁଭ ସଂକେତମାନ ଭରତଙ୍କ ନେତ୍ର ପଥକୁ ଆସି ଯାଉଛି । ଆଶା ଓ ଆଶଙ୍କାରେ ମନ ଯମୁନାରେ ସୃଷ୍ଟି ହେଉଛି ଉତ୍ତାଳ ତରଙ୍ଗ । ଦୁଃଶ୍ଚିନ୍ତା କବଳରେ ସେ ଆଜି କବଳିତ । ତାଙ୍କୁ କିଛି ଭଲ ଲାଗୁ ନଥାଏ । କିପରି ଅଯୋଧ୍ୟାରେ ପହଞ୍ଚିବେ ଏବଂ ପିତା–ମାତା ତଥା ଅଗ୍ରଜ ରାମଙ୍କୁ ଦର୍ଶନ କରିବେ ଏହି ଭାବନାରେ ନିମଜ୍ଜିତ ଥିଲେ କୈକେୟୀ ଆତ୍ମଜ ।

ଚାହୁଁ ଚାହୁଁ ରଥ ଅଯୋଧ୍ୟା ନଗରୀରେ ପ୍ରବେଶ କଲା । କାକମାନଙ୍କର ଅଶୁଭ ରାବ, ଶୃଗାଳମାନଙ୍କର ବିକୃତ ସ୍ୱର ଶ୍ରବଣ ତଥା ନଗରବାସୀମାନଙ୍କ ବିଷଣ୍ଣ ବଦନ ଅବଲୋକନରେ ଚିନ୍ତାଗ୍ରସ୍ତ ଭରତ ପ୍ରବେଶ କଲେ ରାଜନବରରେ । ସେ ଆଜି କଣ ଦେଖୁଛନ୍ତି ? ସମସ୍ତେ ବ୍ୟଥା ଓ ବେଦନାରେ ଜର୍ଜରିତ । କାହା ମନରେ ହର୍ଷ ଓ ଉଲ୍ଲାସର ଚିହ୍ନବର୍ଣ୍ଣ ନାହିଁ । ସତେ ଯେପରି କରକା ପାତରେ ପଦ୍ମପାଖୁଡାମାନ ମଉଳି ଯାଇଛି । ଅଯୋଧ୍ୟାର ବନ ଉପବନରେ ଅଗ୍ନି ସଂଯୋଗକାରୀ କୈକେୟୀ ପୁତ୍ର ଆଗମନରେ ଉଲ୍ଲସିତା ହୋଇ ଧାଇଁ ଧାଇଁ ଭରତଙ୍କ ନିକଟକୁ ଆସି ନିଜ ପିତାଘରର ସମସ୍ତ କୁଶଳ ବାର୍ତ୍ତା ପଚାରି ବସିଲେ । ଉତ୍ତରରେ ଭରତ ସମସ୍ତ କୁଶଳ ବୋଲି କହି ନିଜ କୁଳର ମଙ୍ଗଳ କଥା ଗୋଟି ଗୋଟି କରି ପଚାରିବାକୁ ଲାଗିଲେ । ପିତା କାହାନ୍ତି ? ମାତାମାନେ କିପରି ଅଛନ୍ତି ? ପ୍ରାଣପ୍ରିୟ ଭାଇ ରାମ, ଲକ୍ଷ୍ମଣ କେଉଁଠି ଅଛନ୍ତି ? ସେମାନଙ୍କୁ ଦେଖିବା ପାଇଁ ମୋର ପ୍ରାଣ ବ୍ୟାକୁଳ ହୋଇ ଉଠୁଛି । ହେ ମାତା ! କାଳବିଳମ୍ବ ନକରି ମୋର ସଂଶୟ ମୋଚନ କର ।

ପୁତ୍ର ପ୍ରଶ୍ନର ଉତ୍ତରରେ ନୟନଯୁଗଳରେ କପଟାଶ୍ରୁ ଭରି ମହାରାଜାଙ୍କ ସ୍ୱର୍ଗବାସଠାରୁ ରାମ, ଲକ୍ଷ୍ମଣ, ସୀତାଙ୍କ ବନଗମନ ପର୍ଯ୍ୟନ୍ତ ରାଜପ୍ରାସାଦରେ ଘଟିଥିବା ସମସ୍ତ ଘଟଣାମାନ କୈକେୟୀ ବର୍ଣ୍ଣନା କରିଚାଲିଲେ । ଏସବୁ ଶ୍ରବଣ କରି ସ୍ତମ୍ଭୀଭୂତ ହୋଇଗଲେ ଭରତ । କ୍ରୋଧାଗ୍ନିରେ ଜର୍ଜରିତ ହୋଇ ଉଠିଲା ସମସ୍ତ ଅଙ୍ଗପ୍ରତ୍ୟଙ୍ଗ । ଏସବୁର ମହାନାୟିକା ଯେ ତାଙ୍କର ଜନ୍ମଦାତ୍ରୀ ଏକଥା ସେ ମର୍ମେ ମର୍ମେ ଅନୁଭବ କରିପାରିଲେ । ଗୋଟିଏ ପକ୍ଷରେ ପିତୃବିୟୋଗ ଓ ଭ୍ରାତୃବିଚ୍ଛେଦ ଜନିତ ଦୁଃଖ ଓ ଅନ୍ୟ ପକ୍ଷରେ ତାଙ୍କୁ ଅଯୋଧ୍ୟା ରାଜସିଂହାସନରେ ଅଭିଷିକ୍ତ କରାଇବା ପାଇଁ ମାଆର ଏ ପ୍ରକାର ଷଡଯନ୍ତ୍ରଜନିତ କ୍ରୋଧ ତାଙ୍କୁ ବିଚଳିତ କରି ପକାଇଲା । ସର୍ବାଙ୍ଗ ଥରି ଉଠିଲା । ସିଂହ ଗର୍ଜନ ପ୍ରାୟ କ୍ରୋଧରେ କହି ଉଠିଲେ, ତୁ ଅଯୋଧ୍ୟାର ସର୍ବନାଶ କରିଦେଲୁ । ଅଗ୍ରଜ ଶ୍ରୀରାମ ତୋତେ କେତେ ଭଲ ପାଉନଥିଲେ ! ପ୍ରତିଦାନରେ ତୁ ତାଙ୍କୁ ଚଉଦ ବର୍ଷ ବନବାସ ଦେଇଦେଲୁ । ବିଧାତା କାହିଁକି ମୋତେ ତୋ ଗର୍ଭରେ ସ୍ଥାନ ଦେଲେ ? ଜନ୍ମ କାଳୁ ମୋର ମୃତ୍ୟୁ କାହିଁକି ନହେଲା ? ପିତାଙ୍କୁ ବର ମାଗିଲା ବେଳେ ତୋର ଛାତି ଫାଟିଗଲାନି କାହିଁକି ? ଜିଭ ଖଣ୍ଡ ଖଣ୍ଡ ହୋଇ ଛିଡି ନପଡି ରହିଲା କାହିଁକି ? ତୁ ଭାବିଛୁ ମୋର ପ୍ରାଣପ୍ରିୟ ଭାଇ ଶ୍ରୀରାମଙ୍କୁ ବଣକୁ ପଠାଇ ମୋତେ ରାଜା କରି ତୁ ରାଜମାତା ବୋଲାଇବୁ । ମାତ୍ର ମୁଁ ତାହା କଦାପି କରାଇ ଦେବି ନାହିଁ । ଆଜି ଦଶଦିଗପାଳ, ସୂର୍ଯ୍ୟ ଓ ଅଗ୍ନିଙ୍କୁ



ସାକ୍ଷୀ ରଖି ଶପଥ କରି କହୁଛି କଦାପି ଏ ମୁଖରେ ତୋତେ ମାଆ ବୋଲି ସମ୍ବୋଧନ କରିବି ନାହିଁ । ମୋ ଦୃଷ୍ଟିରେ ତୁ କୁଳକଳଙ୍କିନୀ । ମୁଁ ତୋର ମୁହଁ ମଧ୍ୟ ଚାହିଁବି ନାହିଁ । ଦୂର ହୋଇଯା ମୋ ସମ୍ମୁଖରୁ । ଏହା କହି କାନ୍ଦି କାନ୍ଦି ଭରତ ଚାଲିଲେ ମାତା କୌଶଲ୍ୟାଙ୍କ ନିକଟକୁ ।

ପୁତ୍ର ଭରତର ଏତାଦୃଶ ଆଚରଣରେ ମର୍ମାହତ ହୋଇ ପଡିଲେ କୈକେୟୀ । ଯାହାକୁ ରାଜସିଂହାସନରେ ଅଭିଷିକ୍ତ କରିବା ପାଇଁ ଏତେ ଚକ୍ରାନ୍ତ କରିଥିଲେ ସେସବୁ ଆଜି ପଣ୍ଡ ହୋଇଯାଉଛି । ସେ ହରାଇ ବସିଛନ୍ତି ପତି ପରମେଶ୍ୱରଙ୍କୁ । ବରି ନେଇଛନ୍ତି ବୈଧବ ଯନ୍ତ୍ରଣା । ବର ମାଗିବା ଛଳରେ ତାଙ୍କୁ ଅଧିକ ଭଲ ପାଉଥିବା ଜ୍ୟେଷ୍ଠ କୁଳନନ୍ଦନ ରାମଙ୍କୁ ଏବଂ ତାଙ୍କ ସହିତ କୁଳବଧୂ ସୀତା ଓ ଲକ୍ଷ୍ମଣଙ୍କୁ ବନଗାମୀ କରାଇଲେ। ଏସବୁର କଳଙ୍କ ଯେପରି ତାଙ୍କର ଶରୀରରେ ବୋଳି ହୋଇଯାଉଛି । ଅନୁତାପାନଳରେ ଦଗ୍ଧିଭୂତା ଅବସ୍ଥାରେ ଚକ୍ଷୁ ଯୁଗଳରୁ ଧାରା ଶ୍ରାବଣର ବର୍ଷା ଧାରା ପ୍ରାୟ ବହିଚାଲିଲା ଲୁହ ଧାରମାନ । ଆଉ ଜୀବନରେ ଭରତଠାରୁ ମା' ଡାକ ଶୁଣିପାରିବି ନାହିଁ ବୋଲି ଭାବିଲା ବେଳକୁ ପିଣ୍ଡରୁ ପ୍ରାଣ ଅଲଗା ହେଲା ଭଳି ବୋଧ ହେଉଛି । ହାଏରେ ଦଇବ! ଏ କଣ କଲୁ? ଧିକ ଏ ଜୀବନ । ଲୋଡା ନାହିଁ ଏ ପ୍ରାଣ । ଏହା ଭାବି ଲଜ୍ଜା ଓ ଅନୁଶୋଚନାରେ କାନ୍ଦି କାନ୍ଦି ଭୂମିରେ ଲୋଟି ପଡିଲେ କୈକେୟୀ ।

ସମୟର ସ୍ରୋତରେ ଅନଳରେ ତିଳ ତିଳ ହୋଇ ଜଳୁଥିବା କୈକେୟୀଙ୍କର ତନୁ କ୍ଷୀଣରୁ କ୍ଷୀଣତର ହେବାରେ ଲାଗିଛି । କାନ୍ଦି କାନ୍ଦି ଆଖିରୁ ଲୁହ ସତେ ଯେପରି ସରି ଯାଇଛି । ପେଟରୁ କ୍ଷୁଧା ଚାଲି ଯାଇଛି । ଆଖିରୁ ନିଦ ହଜି ଯାଇଛି । ଅପଲକ ନୟନରେ ଚାହିଁ ରହିଛନ୍ତି କେବେ ପ୍ରାଣପ୍ରିୟ ରାମ ଫେରିବେ ଅଯୋଧ୍ୟାକୁ । କର ଯୋଡି କୃତକର୍ମର ପ୍ରାୟଶ୍ଚିତ ସ୍ୱରୂପ କ୍ଷମା ମାଗିନେବେ ତାଙ୍କଠାରୁ । ମାନିନେବେ ନିଜର ଦୋଷକୁ । ବରଣ କରିନେବେ ଯେକୌଣସି ଦଣ୍ଡବିଧାନକୁ । କପାଳରେ କରପିଟି, ଭାଗ୍ୟକୁ ନିନ୍ଦି ଈଶ୍ୱରଙ୍କୁ ପ୍ରାର୍ଥନା କରି ଚାଲିଛନ୍ତି ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଅଯୋଧ୍ୟା ଫେରେଇ ଆଣିବା ପାଇଁ ।

ଚଉଦ ବର୍ଷ ବନବାସ ସହିତ ରାବଣ, କୁମ୍ଭକର୍ଣ୍ଣ ଆଦି ଅସୁରମାନଙ୍କୁ ବିନାଶ କରି ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ରଘୁକୁଳ ତିଳକ ରାବଣାରୀ ରାଘବେନ୍ଦ୍ର । ଅଯୋଧ୍ୟାରେ ଆନନ୍ଦର ଉତ୍ତାଳ ଲହରୀ । ବାଦ୍ୟ, ନୃତ୍ୟ ଓ ସଂଗୀତର ତାଳେ ତାଳେ ଅଯୋଧ୍ୟାବାସୀ ନୃତ୍ୟରତ । ଆକାଶରେ ପୂର୍ଣ୍ଣିମା ଚନ୍ଦ୍ରର ଆଗମନରେ ସମୁଦ୍ର ଉଲ୍ଲସିତ ହୋଇ ଫୁଲି ଉଠିଲା ପରି ପ୍ରଭୁ ରାମଚନ୍ଦ୍ରଙ୍କୁ ଦର୍ଶନ କରିବା ପାଇଁ ଅଯୋଧ୍ୟାର ନରନାରୀମାନେ ଏଣେ ତେଣେ ଧାଉଁଥିବାର ଦୃଶ୍ୟ ସମୁଦ୍ରର ତରଙ୍ଗମାଳା ପରି ପ୍ରତୀୟମାନ ହେଉଛି । ଗୁରୁ ବଶିଷ୍ଠଙ୍କୁ ପ୍ରଣିପାତ ପୂର୍ବକ ଅପେକ୍ଷାରତ ଅଯୋଧ୍ୟା ଅଧିବାସୀମାନଙ୍କୁ ଦର୍ଶନ ଦେଇ ରାଜପ୍ରାସାଦରେ ପ୍ରବେଶ କଲେ ରଘୁନନ୍ଦନ । ସେ ତ ଅନ୍ତର୍ଯାମୀ । ମାତା କୈକେୟୀଙ୍କ ଦୁଃଖ ଅନୁଭବ କରି ପ୍ରଥମେ ତାଙ୍କର ଅନ୍ତଃପୁରରେ ପଦାର୍ପଣ କଲେ ଜାନକୀନାଥ । ମାତା କୈକେୟୀଙ୍କର ଅବସ୍ଥା ଅବଲୋକନରେ ବିସ୍ମୟାଭିଭୂତ ହୋଇ ପଡିଲେ କୌଶଲ୍ୟାନନ୍ଦନ । ସେ ଆଜି କଣ ଦେଖୁଛନ୍ତି? ଜୀର୍ଣ୍ଣଶୀର୍ଣ୍ଣ ଶରୀର । ଅସଜଡା କେଶ । ଅବିରତ ଅଶ୍ରୁପାତ କରି ଚକ୍ଷୁଯୁଗଳ ହୋଇଛି ବିସ୍ଫାରିତ । ଏସବୁ ଦୃଶ୍ୟ ଦେଖି ଲୋତକ ସମ୍ବରଣ କରି ନପାରି କରଯୋଡି ସାଷ୍ଟାଙ୍ଗ ପ୍ରଣିପାତ କଲେ ରାଜୀବଲୋଚନ । କୈକେୟୀ କାନ୍ଦି କାନ୍ଦି ଦୁଇ କର ପ୍ରସାରିତ ପୂର୍ବକ କୋଳକୁ ଟାଣିନେଲେ ଶ୍ରୀରାମଙ୍କୁ । ନୟନରୁ ଝରି ଆସିଲା ଆନନ୍ଦାଶ୍ରୁ ।

ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିବା ସଂଗେ ସଂଗେ ଗୁରୁ ବଶିଷ୍ଠଙ୍କ ଆଦେଶରେ ସୁମନ୍ତ ଶ୍ରୀରାମଙ୍କ ରାଜାଭିଷେକ ପାଇଁ ଆୟୋଜନରେ ଲାଗି ପଡିଲେ । ସମସ୍ତଙ୍କ ଦ୍ୱାରଦେଶରେ ସୁବର୍ଣ୍ଣ କଳସ ଶୋଭା ପାଇଲା । ଶଙ୍ଖ, ଘଣ୍ଟ, ମର୍ଦ୍ଦଳ ତଥା ନାଗରା ବାଦ୍ୟରେ ଅଯୋଧ୍ୟାର ଗଗନ ପବନ ପ୍ରକମ୍ପିତ ହେବାକୁ ଲାଗିଲା ।



ମଙ୍ଗଳ ମୁହୂର୍ତ୍ତରେ ରାଜସିଂହାସନରେ ପ୍ରଭୁ ଶ୍ରୀରାମଙ୍କୁ ଉପବେଶନ କରାଇ ରାଜତିଳକ କରାଇ ଦିଆଗଲା । ମର୍ଯ୍ୟାଦା ପୁରୁଷୋତ୍ତମ ମହାଆନନ୍ଦରେ ସୁଗ୍ରୀବ, ଅଙ୍ଗଦ ସହିତ ଅନ୍ୟ ବାନରମାନଙ୍କୁ ନାନା ଉପହାରମାନ ପ୍ରଦାନ ପୂର୍ବକ ସେମାନଙ୍କର ମନୋଭିଳାଷ ପୂର୍ଣ୍ଣ କଲେ । ଅନତି ଦୂରରେ କୈକେୟୀ ଏସବୁ ଅବଲୋକନ କରୁଥାନ୍ତି । ମନରେ ପ୍ରବଳ ଉତ୍କଣ୍ଠା । ଅସୁମାରୀ ଆଶା । ଅନେକ ସ୍ୱପ୍ନ । ଅନ୍ତର୍ନିହିତ ବ୍ୟଥା ଓ ବେଦନାକୁ ବ୍ୟକ୍ତ କରିବାକୁ ମନପକ୍ଷୀ ଚଳଚଞ୍ଚଳ । ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ । ମନ ମଧ୍ୟରେ ସାହସ ସଞ୍ଚୟ କରି ଦୁଇ ହାତ ପାତି କହିଉଠିଲେ ରାମ ମୋର ଏକ ଅପୂର୍ଣ୍ଣ ଅଭିଳାଷ ରହିଛି, ପୂର୍ଣ୍ଣ କରି ପାରିବ ? କୁହ ମାତା କିବା ତୁମର ଅଭିଳାଷ । ଅଚିରେ ପୂର୍ଣ୍ଣ କରିବି । ବଡ ସନ୍ତର୍ପଣରେ କୈକେୟୀ ମହାରାଣୀ କହୁଛନ୍ତି ହେ ରାମ ! ମୁଁ ଥରେ ଭରତ ମୁଖରୁ ମା' ଡାକ ଶୁଣିବାକୁ ଚାହେଁ । ଏତିକି ମାତ୍ର ମାଗୁଣି ତୁମ ନିକଟରେ । ସଂଗେ ସଂଗେ ଶ୍ରୀରାମ ଅନୁଜ ଭରତଙ୍କ ଆଡକୁ ଦୃଷ୍ଟି ଫେରାଇ ଆଣିଲେ । ତତ୍‌କ୍ଷଣାତ୍ କୃତାଞ୍ଜଳି ପୁଟରେ ଭରତ କହିଲେ - ହେ ପ୍ରଭୁ ! ଏକମାତ୍ର କୈକେୟୀଙ୍କୁ ମାତା ସମ୍ବୋଧନ ବ୍ୟତୀତ ଆପଣ ଏ ଦାସକୁ ଯେଉଁ ଆଦେଶ ଦେବେ ତାହା ମୁଁ ନିଶ୍ଚୟ ପାଳନ କରିବି । କାରଣ ମୁଁ ସୂର୍ଯ୍ୟ, ଅଗ୍ନିଙ୍କୁ ସାକ୍ଷୀ ରଖି ଶପଥ କରିଛି ପିଣ୍ଡରେ ପ୍ରାଣ ଥିଲା ପର୍ଯ୍ୟନ୍ତ କୈକେୟୀଙ୍କୁ ମାତା ବୋଲି ସମ୍ବୋଧନ କରିବି ନାହିଁ । କୁହନ୍ତୁ ପ୍ରଭୁ ଶପଥ କିପରି ଲଂଘନ କରିବି ? ଏଥିଲାଗି ଆପଣ ମୋତେ ଯେଉଁ ଦଣ୍ଡ ଦେବେ ଦିଅନ୍ତୁ । ଏପରିକି ମୃତ୍ୟୁଦଣ୍ଡ ମଧ୍ୟ ଭୋଗ କରିବାକୁ ପ୍ରସ୍ତୁତ । ଏହା ଶୁଣି ଶ୍ରୀରାମ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଉପନୀତ ହେଲେ । ଜଣେ ଚାହୁଁଛି ମା' ଡାକ, ଅନ୍ୟ ଜଣେ ସମ୍ବୋଧନ ନକରିବା ଲାଗି ଶପଥ କରିଛି । କିପରି ହେବ ଏହାର ସମାଧାନ ? ଭରତଙ୍କ ଉତ୍ତର ଶୁଣି କୈକେୟୀଙ୍କର ଚକ୍ଷୁ ଯୁଗଳ ଲୋତକାପ୍ଲୁତ ହୋଇଗଲା । କୈକେୟୀଙ୍କ ଆଖିର ଲୁହ ଓ ମନର କୋହ ସଂଦର୍ଶନରେ ପ୍ରଭୁ ଶ୍ରୀରାମଙ୍କ ହୃଦୟ ଦୟାରେ ବିଗଳିତ ହେଲା । ସେ ହେଉଛନ୍ତି ଅନ୍ତର୍ଯାମୀ । ଦୁଃଖହାରୀ, କରୁଣାର ସାଗର ତଥା ଦୟାର ଅବତାର । ସିଂହାସନରୁ ତତକ୍ଷଣାତ ଓହ୍ଲାଇ ଆସି ମାତା କୈକେୟୀଙ୍କର ଦୁଇ ହାତ ଧରି କହିଲେ ମା ! ଭରତ ତୁମର ପୁତ୍ର । ମୁଁ କଣ ତୁମର ପୁତ୍ର ନୁହେଁ ? ମୋତେ କଣ ତୁମେ ପୁତ୍ର ଭାବେ ସ୍ନେହ ଆଦର କରିବନି ? ତୁମର କୋଳରେ ବସିବାର ଅଧିକାର କଣ ମୋର ନାହିଁ ? ତେଣୁ ହେ ମାତା ! ଭରତ ପ୍ରତିବଦଳରେ ସର୍ବସମ୍ମୁଖରେ ମୁଁ ତୁମକୁ ମାଆ ବୋଲି ସମ୍ବୋଧନ କରୁଛି । ତୁମେ ଆଜିଠାରୁ ହେଲ ମୋର ମାଆ । କେବଳ ଏ ଜନ୍ମ ପାଇଁ ନୁହେଁ ଆଗାମୀ ଦ୍ୱାପର ଯୁଗରେ କୃଷ୍ଣ ଅବତାରରେ ଦେବକୀଙ୍କ କୋଳରେ ଜନ୍ମଗ୍ରହଣ କଲେ ମଧ୍ୟ ତୁମେ ଯଶୋଦା ରୂପରେ ମୋତେ ଲାଳନପାଳନ କରିବ । ତୁମ ସ୍ତନରୁ କ୍ଷୀରପାନ କରିବି । ତୁମ ହାତରୁ କ୍ଷୀର ଲବଣି ସେବନ କରିବା ସହିତ ତୁମ ଦ୍ୱାରା ବନ୍ଧନଯୁକ୍ତ ହେବି । ଯୁଗ ଯୁଗ ପାଇଁ ଏହା ରହିବ ଆଦର୍ଶ ହୋଇ । କେବଳ ସେତିକି ନୁହେଁ, ଦ୍ୱାପର ଯୁଗ ଅନ୍ତେ କଳି ଯୁଗରେ ମଧ୍ୟ ତୁମେ ହେବ ମୋର ମାଉସୀମା' । ନୀଳାଚଳ କ୍ଷେତ୍ରରେ ଦାରୁବ୍ରହ୍ମ ରୂପରେ ଅବସ୍ଥାନ କାଳରେ, ରଥଯାତ୍ରା ଅବସରରେ ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହିତ ମୁଁ ତୁମର ହାତତିଆରି ପୋଡପିଠାର ପ୍ରସାଦ ସେବନ କରି ତୃପ୍ତ ହେବି । ସେ ପୋଡପିଠାର ପ୍ରସାଦ ଭକ୍ତମାନେ ସେବନ କରି ଧନ୍ୟ ହେବେ । କୁହ ମା' ଏଥର ଖୁସି ତ ! ଏହା ଶୁଣି ଆନନ୍ଦରେ ଅଧୀରା ହୋଇପଡିଲେ କୈକେୟୀ ।

ପ୍ରବନ୍ଧକ, ସିଣ୍ଡିକେଟ ବ୍ୟାଙ୍କ
ସାଲେପୁର ଶାଖା, ସାଲେପୁର





# ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀ

ଉର୍ମିଳା ମିଶ୍ର

ଉତ୍କଳୀୟ ସଂସ୍କୃତିର ପ୍ରାଣପିଣ୍ଡ ଶ୍ରୀଜଗନ୍ନାଥ କେବଳ ଓଡିଆ ଜାତିର ନୁହେଁ, ସେ ହେଉଛନ୍ତି ସମଗ୍ର ପୃଥିବୀର ଆରାଧ୍ୟ ଦେବତା । ସେ ସ୍ୱୟଂ କୃଷ୍ଣ ଏବଂ ବିଷ୍ଣୁ ଓ ସମସ୍ତ ଦେବାଦେବୀଙ୍କର ଗୁଣ ତାଙ୍କରିଠାରେ ହିଁ କେନ୍ଦ୍ରିଭୂତ । ମହାପ୍ରଭୁ ଯଥାର୍ଥରେ ସମସ୍ତଙ୍କ ଉର୍ଦ୍ଧ୍ୱରେ ।



ଓଡିଶା ଭୂଖଣ୍ଡର ପରିଚୟ ଶ୍ରୀଜଗନ୍ନାଥ । ଓଡିଆ ଜାତିର ଓଡିଆ ସାହିତ୍ୟ ଓ ସଂସ୍କୃତିର ମୂଳପିଣ୍ଡ ଶ୍ରୀଜଗନ୍ନାଥ । ସ୍ମରଣାତୀତ କାଳରୁ ଦୃଶ୍ୟମାନ ଜଗତକୁ ଅଗଣିତ ନକ୍ଷତ୍ରକୁ ସ୍ୱ ଗର୍ଭରେ ଧାରଣ କରିଥିବା ସର୍ବବ୍ୟାପି ଦିବ୍ୟ ପୁରୁଷ ହେଲେ ସଚ୍ଚିଦାନନ୍ଦ ପରଂବ୍ରହ୍ମ । ସେ ଅଦ୍ୱିତୀୟ ଓ ମନ ବୁଦ୍ଧିର ଅଗୋଚର । ସେ ସକଳ ଘଟରେ ବ୍ରହ୍ମ ବା ଆତ୍ମା ରୂପେ ବିରାଜିତ । ଏ ସୃଷ୍ଟିରେ ଜୀବ ଓ ବ୍ରହ୍ମ ଏକ ଓ ଅଭିନ୍ନ । ସନ୍ଥ ଗୋସ୍ୱାମୀ ତୁଳସୀ ଦାସ – ବ୍ରହ୍ମଙ୍କ ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି–

‘ବିନୁପଦ ଚଲଇ ସୁନଇ ବିନୁ କାନା
କର ବିନୁ କରମ କରଇ ବିଧି ନାନା’

ଏଥିରୁ ହୃଦବୋଧ ହୁଏ ଯେ, ବିନା ପାଦରେ ଯେ ଚାଲି ପାରନ୍ତି, କାନ ବିନା ଶ୍ରବଣ କରିପାରନ୍ତି ଓ ବିନା ହସ୍ତରେ କର୍ମ କରିପାରନ୍ତି, ସେହି ପରଂବ୍ରହ୍ମ ନୀଳାଚଳ ଧାମରେ ହିଁ ଅଧିଷ୍ଠିତ । ବିଶ୍ୱ ବ୍ରହ୍ମାଣ୍ଡରେ ହିନ୍ଦୁ ଶାସ୍ତ୍ରାନୁମୋଦିତ ପବିତ୍ର ତଥା ଅମୂଲ୍ୟ ପ୍ରସାଦ ହେଉଛି ମହାପ୍ରସାଦ । ଏହି ମହାପ୍ରସାଦର ମହାତ୍ମ୍ୟ ଅସାଧାରଣ । ଏହାକୁ ଯେଉଁ ଭକ୍ତ, ଭକ୍ତି ବିଶ୍ୱାସରେ ପାଇଥାଏ, ତାହାର ଜନ୍ମ ଜନ୍ମାନ୍ତର ପାପ ତାପ ଧ୍ୱଂସ ହୋଇଯାଇଥାଏ । ବିଶ୍ୱବନ୍ଦିତ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ରଥଯାତ୍ରା ଅନ୍ୟତମ । ଓଡିଆ ଘରେ ବାରମାସରେ ତେର ପର୍ବ ନ୍ୟାୟରେ ନୀଳାଚଳର ଏହି ରଥଯାତ୍ରା ସର୍ବପ୍ରଧାନ ଉତ୍ସବ । ରଥତତ୍ତ୍ୱ ମଧ୍ୟ ବୈଦିକ ଯୁଗର ଭାବନା ଉପରେ ପର୍ଯ୍ୟବସିତ । ଶ୍ରୀଜଗନ୍ନାଥ ହିଁ ଦାରୁବ୍ରହ୍ମ ଓ ତାଙ୍କ ରଥ ମଧ୍ୟ ଦାରୁରେ ତିଆରି ହୋଇଥାଏ । ଏହି ଶରୀରକୁ ମଧ୍ୟ ରଥ ସହ ତୁଳନା କରାଯାଇଛି । ଏହି ଶରୀର ରୂପକ ରଥରେ ଆତ୍ମା ହେଉଛି ସାରଥୀ । ମନ ହେଉଛି ରଜ୍ଜୁ ଏବଂ ଇନ୍ଦ୍ରିୟଗୁଡିକ ଘୋଡା ସ୍ୱରୂପ । ଶ୍ରୀଜଗନ୍ନାଥଙ୍କ ରଥ ଉପରେ ପରମାତ୍ମା ସ୍ୱରୁପ ଶ୍ରୀଜଗନ୍ନାଥ ଯେପରି ସବାର ଅଟନ୍ତି ଠିକ୍ ସେହିପରି ଶରୀର ରୂପକ ରଥରେ ଆତ୍ମା ମଧ୍ୟ ସବାର ଅଟନ୍ତି ।

ଏହି ରଥଯାତ୍ରାର ମୂଳତତ୍ତ୍ୱ ପରମ ମଙ୍ଗଳମୟ ପରମେଶ୍ୱର ଶ୍ରୀଜଗନ୍ନାଥଙ୍କୁ ଯେଉଁମାନେ ରଥ ଉପରେ ଦର୍ଶନ କରିଥାନ୍ତି, ସେମାନେ ବିଷ୍ଣୁଙ୍କ ଚରଣକମଳରେ ଲୀନ ହୋଇଥାନ୍ତି । ସେମାନଙ୍କର ପୁନର୍ଜନ୍ମ ନଥାଏ । ସେଥିପାଇଁ ଶାସ୍ତ୍ରରେ କୁହାଯାଇଛି – ‘ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।’ ଏହି ମତଟିରେ ଦୃଢ ବିଶ୍ୱାସ ରଖି ଲକ୍ଷ ଲକ୍ଷ ଭକ୍ତ



ଶ୍ରୀକ୍ଷେତ୍ରକୁ ରଥଯାତ୍ରା ଦେଖିବାକୁ ଆସିଥାନ୍ତି । ଭକ୍ତମାନେ ଆତ୍ମହରା ହୋଇ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକାଠି ହୋଇ ପରମାତ୍ମାଙ୍କୁ ଦର୍ଶନ କରନ୍ତି ବା ଏକ ରଥରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ବୈଚିତ୍ର୍ୟକୁ ଦର୍ଶନ କଲେ ତା'ର ମାନବ ଜୀବନ ଧନ୍ୟ ହୋଇଯାଏ ।

ଓଡ଼ିଆ ଚେତନାରେ ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତର ପିତା ଏବଂ ମା' ମହାଲକ୍ଷ୍ମୀ ଜଗତର ଜନନୀ ଭାବେ ବିଶ୍ୱ ବନ୍ଦିତ ହୋଇଛନ୍ତି । ଜଗଦ୍‌ଜନନୀ ମା' ମହାଲକ୍ଷ୍ମୀ ଓଡ଼ିଆ ପରମ୍ପରାରେ ଶ୍ରୀମନ୍ଦିରରେ ଓଡିଆ ଘରର କୁଳବଧୂ ରୂପେ ଅଧିଷ୍ଠାନ ପୂର୍ବକ ଓଡିଆ ସଂସ୍କୃତିର ରକ୍ଷାକାରିଣୀ ଭୂମିକା ମଧ୍ୟ ନିର୍ବାହ କରନ୍ତି । ଓଡିଆ ଚେତନାର ବିଶ୍ୱାସରେ ମା' ମହାଲକ୍ଷ୍ମୀ ହେଉଛନ୍ତି ଅନ୍ନଦାତ୍ରୀ । ମା' ପ୍ରତି ଗୁରୁବାରରେ ପଡିଦାନ କରିବା ପାଇଁ ନଗର ଭ୍ରମଣ କରିଥାନ୍ତି । ଏହି ବିଶ୍ୱାସରେ ପ୍ରତ୍ୟେକ ଗୁରୁବାରରେ ଓଡିଆ ପରିବାରରେ ଘରଦ୍ୱାର ଲିପି ପୋଛି ଶୁକ୍ଳ ବସ୍ତ୍ର ପରିଧାନ କରି ମା' ଲକ୍ଷ୍ମୀଙ୍କର ପୂଜାର୍ଚ୍ଚନା କରିଥାନ୍ତି । ମାର୍ଗଶିର ମାସ ଗୁରୁବାରରେ ମାଣବସା ଓଷା ପାଳନ କରିଥାନ୍ତି । ମାଣବସା ଓଷାରେ ଓଡିଆ ଘରର ଘରଣୀ ଘରଦ୍ୱାର ଲିପିପୋଛି ଝୋଟି ଚିତା ପକାଇ ଆସ୍ଥାନରେ ନୂଆମାଣରେ ଧାନ ଗୁଆ ଓ ଶ୍ରୀମହାଲକ୍ଷ୍ମୀଙ୍କୁ ବସାଇ ଆବାହନ କରି ମା' ଲକ୍ଷ୍ମୀଙ୍କୁ ଷୋଡଶ ଉପଚାରରେ ପୂଜାର୍ଚ୍ଚନା କରିଥାନ୍ତି । ପୁରାଣ ବର୍ଣ୍ଣନା ଅନୁସାରେ ଶ୍ରୀ ମହାଲକ୍ଷ୍ମୀ ଜାତି ଭେଦ ଉଠାଇ ଦେଇ ଶ୍ରୀମନ୍ଦିରରୁ ଦୀନହୀନ ଅକଞ୍ଚିନ ଶ୍ରୀୟା ଚଣ୍ଡାଳୁଣୀର ପୂଜା ଆସ୍ଥାନକୁ ଓହ୍ଲାଇ ଆସି ଭକ୍ତିଭାବରେ ପୂଜା ଗ୍ରହଣ କରିଥାନ୍ତି । ଏପରି କାର୍ଯ୍ୟ କଳାପ



ଦେଖି ଶ୍ରୀ ମହାଲକ୍ଷ୍ମୀଙ୍କର ଦେଢଶୁର ବଳଭଦ୍ର ମହାଲକ୍ଷ୍ମୀଙ୍କୁ ଧିକ୍କାର କରି ଚାଣ୍ଡାଳୁଣୀ କହି ଶ୍ରୀମନ୍ଦିରରୁ ବାହାର କରିଦେଲେ, ଯାହା ଫଳରେ କି ଶ୍ରୀମହାଲକ୍ଷ୍ମୀ ମଧ୍ୟ ରାଗିଯାଇ ଦୁଇଭାଇଙ୍କୁ ଅଭିଶାପ ଦେଇ କହିଲେ –

'ମୁହିଁ ଚାଣ୍ଡାଳୁଣି ଯେବେ ଟେକିଦେବି ଅନ୍ନ
ମଣୋହି କରିବେ ପ୍ରଭୁ କାଳିଆ ଗଞ୍ଜନ'

ଶ୍ରୀମହାଲକ୍ଷ୍ମୀଙ୍କର ଅଭିଶାପରେ ଜଗନ୍ନାଥ, ବଳଭଦ୍ର ଲକ୍ଷ୍ମୀଛଡା ହୋଇ ଅନ୍ନ ଜଳ ନପାଇ ବାରବର୍ଷ ବୁଲିଲେ । ପରିଶେଷରେ ଜଗନ୍ନାଥ ଓ ବଳଭଦ୍ର ସବୁଠାରୁ ହତାଶ ହୋଇ ଭିକ୍ଷା ମାଗି ଅଜ୍ଞାତରେ ମହାଲକ୍ଷ୍ମୀଙ୍କ ଦ୍ୱାରା ପ୍ରସ୍ତୁତ ଅନ୍ନ ବ୍ୟଞ୍ଜନ ମଣୋହୀ ସେବନ କରି ପରମାନନ୍ଦ ଲାଭ କରିଥିଲେ । ଭୋଜନ ଶେଷରେ ପୋଡପିଠା ଖାଇ ଦୁଇଭାଇ ମହାମାୟୀ ମହାଲକ୍ଷ୍ମୀଙ୍କର ହାତଧରି କ୍ଷମା ମାଗିଥିଲେ । ଏହି ସୁଯୋଗରେ ଶ୍ରୀମହାଲକ୍ଷ୍ମୀ ଜାତି ବର୍ଣ୍ଣର ଭେଦାଭେଦ ଦୂର କରିବା ନିମିତ୍ତ ମହାପ୍ରଭୁଙ୍କୁ ସତ୍ୟ କରାଇଥିଲେ –

'ହାଡି ହାତରୁ ବ୍ରାହ୍ମଣ ଛଡାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ
ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡଦେଉଳକୁ ଯିବି ଜଗନ୍ନାଥ' ।

ପ୍ରଭୁ ଶ୍ରୀଜଗନ୍ନାଥ ଓ ଦେଢଶୁର ପ୍ରଭୁ ଶ୍ରୀବଳଭଦ୍ର ମଧ୍ୟ ମା' ମହାଲକ୍ଷ୍ମୀଙ୍କ ସର୍ତ୍ତରେ ରାଜି ହୋଇଥିବାରୁ ଶ୍ରୀମହାଲକ୍ଷ୍ମୀ ବଡଦେଉଳକୁ ବିଜେ କଲେ । ସେହିଦିନଠାରୁ ମଧ୍ୟ ବଡ



ଦେଉଳରେ ଜାତି ଧର୍ମ ସବୁର ଉର୍ଦ୍ଧ୍ୱରେ ରହି ଶ୍ରୀଜଗନ୍ନାଥ ଚେତନା ଭକ୍ତମାନଙ୍କୁ ଉଦ୍ଧାର କରିବାରେ ଲାଗିଛି । ଶ୍ରୀକ୍ଷେତ୍ରରେ ଜାତି ବର୍ଣ୍ଣର ଭେଦଭାବ ଲୋପ ପାଇଯାଇଛି । ଓଡିଆ ପରମ୍ପରାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ବାରମାସରେ ତେରପର୍ବ ପାଳନ କରାଯାଉଛି । ଓଡିଆ ଜାତୀୟ ଜୀବନର ଚିନ୍ତା ଓ ଚେତନାରେ ଶୟନେ ସପନେ କିମ୍ବା ଜାଗରଣେ ଶ୍ରୀଜଗନ୍ନାଥଙ୍କ ସ୍ମୃତି ଅନୁଭୂତ ହୋଇଥାଏ । ବ୍ରହ୍ମ ବିଚାରରେ ପରଂବ୍ରହ୍ମ ଅବ୍ୟକ୍ତ, ନିରାକାର, ଅଚିନ୍ତ୍ୟ, ଅଜ୍ଞେୟ ଓ ଅବର୍ଣ୍ଣନୀୟ ହେଲେ ମଧ୍ୟ ଓଡିଆ ଚେତନାରେ ଶଙ୍ଖ ଚକ୍ରଧାରୀ ଦେହଧାରୀ ମନୁଷ୍ୟ ସଦୃଶ୍ୟ ଓଡିଆ ଜାତି ଶ୍ରୀଜଗନ୍ନାଥଙ୍କୁ ଅତି ନିଜର ଓ ଆପଣାର ବୋଲି ମନେକରି ତାଙ୍କୁ ନିଜ ଭିତରେ ଦେଖେ ଓ ଅନୁଭବ କରେ । ଏଣୁ ମହାପ୍ରଭୁ ହେଉଛନ୍ତି ଓଡିଆ ଜାତିର ପ୍ରାଣ । ସେହି ଜଗତର ନାଥ ମହାପ୍ରଭୁଙ୍କୁ ନିରନ୍ତର ଚିନ୍ତନ ମନନ କଲେ ଦେହ, ମନ ପବିତ୍ର ହୋଇଯାଏ ଓ ସମସ୍ତ ବିକାର କ୍ଷୟ ହୋଇଯାଏ ।

ଯେପରିକି ଗଙ୍ଗାରେ ସ୍ନାନ, ଗୟାରେ ପିଣ୍ଡଦାନ ଓ ନୀଳାଚଳରେ ନୀଳାଦ୍ରିନାଥଙ୍କୁ ଦର୍ଶନ କଲେ ମନୁଷ୍ୟ ମୁକ୍ତିଲାଭ କରେ ଠିକ୍ ସେହିପରି ରଥଯାତ୍ରା ସମୟରେ ରଥ ଉପରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ସ୍ୱର୍ଗପ୍ରାପ୍ତି ହୁଏ । କାରଣ ଜଗତର ନାଥ ଶ୍ରୀଜଗନ୍ନାଥ ଆମ ସମସ୍ତଙ୍କର ପ୍ରାଣର ପ୍ରାଣ ଓ ପ୍ରାଣର ଅଧୀଶ୍ୱର ଅଟନ୍ତି ।

ଶ୍ରୀଜଗନ୍ନାଥଙ୍କର ଏହି ବିଶ୍ୱପ୍ରସିଦ୍ଧ ରଥଯାତ୍ରା ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୋଇଥାଏ । ଭାରତୀୟ ଆଧ୍ୟାତ୍ମିକ ଭାବଧାରାକୁ ଭିତ୍ତିକରି ତିନି ରଥରେ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ଯାତ୍ରାକୁ ସମ୍ପନ୍ନ କରିଥାନ୍ତି । ଏସବୁ ସତ୍ତ୍ୱେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଗୋଟିଏ ପ୍ରମୁଖ ବିଶେଷତ୍ୱ ହେଉଛି– ଏହି ଯାତ୍ରାରେ ମହାପ୍ରଭୁ ଭକ୍ତମାନଙ୍କ ନିକଟକୁ ହିଁ ଆସିଥାନ୍ତି । ସେତେବେଳେ ଜାତି, ଧର୍ମ ଓ ବର୍ଣ୍ଣର କିଛି ବି ବାଛ ବିଚାର ରହେ ନାହିଁ । ଜଗତର ନାଥ ଶ୍ରୀଜଗନ୍ନାଥ ସକଳ ପ୍ରାଣୀମାନଙ୍କ ଘଟରେ ବିରାଜମାନ । ଆତ୍ମା ରୂପୀ ଜଗନ୍ନାଥ ଏହି ଶରୀର ରୂପକ ରଥର ରଥି । ଶରୀର ରୂପକ ରଥ ହିଁ ଚଳନ୍ତି ନନ୍ଦିଘୋଷ । ଏହି ରଥର ସାରଥି ଆତ୍ମା, ମନ ହେଉଛି ଏହି ରଥର ଲଗାମ । ଇନ୍ଦ୍ରିୟମାନେ ଏହି ରଥରେ ଯୋଚା ହୋଇଥିବା ଚାରୋଟି ଅଶ୍ୱ ଯଥା – କର୍ମ, ଜ୍ଞାନ, ଭକ୍ତି ଓ ଧ୍ୟାନ ଯୋଗରେ ରଥ ଟାଣି ନେବାରେ ସହଯୋଗ କରୁଛନ୍ତି ।

ସଂସାର ରୂପକ ଦରିଆରେ ଜୀବନ ନାଆଟି ସର୍ବଦା ଟଳମଳ । ଏହି ଜୀବନ ନାଆର ନାଉରୀ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ । ସେ ହେଉଛନ୍ତି ବଡ ଦୟାଳୁ, ତାଙ୍କ ନିକଟରେ ସମସ୍ତେ ସମାନ । ତାଙ୍କର କରୁଣା ବିନା କିଛି ବି ସମ୍ଭବ ନୁହେଁ । ଏହି ଭବସାଗରରୁ ପାରି ହେବାକୁ ହେଲେ ତାଙ୍କର ଅପାର କରୁଣାର ଆବଶ୍ୟକତା ରହିଛି । ସେ ଚାହିଁଲେ ନିମିଷକରେ ଆମେ ମୁକ୍ତ ହୋଇପାରିବା । ଏଣୁ ପ୍ରଭୁଙ୍କୁ ନିରନ୍ତର ଆରାଧନା, ସତ୍ୟାଚାର, କର୍ମନିଷ୍ଠ, ଧ୍ୟାନଧାରଣା ଓ ତପସ୍ୟାର ନିତାନ୍ତ ପ୍ରୟୋଜନ ରହିଛି, କାରଣ, ଶ୍ରୀଜଗନ୍ନାଥ ହେଉଛନ୍ତି ଆମମାନଙ୍କ ପ୍ରାଣର ପ୍ରାଣ ଓ ପ୍ରାଣାଧୀଶ୍ୱର, ତାଙ୍କ ବିନା ସବୁ ନିରର୍ଥକ ।

ମାର୍ଫତ୍ – ଶ୍ରୀଚରଣ ମିଶ୍ର
ଗ୍ରାମ/ପୋ– ମହୁଲିଆ
ଭାୟା – ବଡମ୍ବା, ଜିଲ୍ଲା – କଟକ





# ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତା

**ଡକ୍ଟର ଗୋପାଳ ଚନ୍ଦ୍ର ବାରିକ**

ହିନ୍ଦୁ ପରମ୍ପରାରେ ଜଗନ୍ନାଥ ସଂସ୍କୃତି ଓତପ୍ରୋତ ଭାବେ ଜଡିତ । ଓଡ଼ିଶାର ସଂସ୍କୃତି, ସାହିତ୍ୟ, ଧର୍ମବିଶ୍ୱାସ, ଆଚାର ବିଚାରରେ ଜଗନ୍ନାଥ ସଂସ୍କୃତି ନିହିତ । ଗୋଟିଏ ଜାତିର ଚିନ୍ତା, ଚେତନା, ଭାବ, ଅନୁଭବ, ଆବେଗ, ମୂଲ୍ୟବୋଧ ମହତ ଲକ୍ଷ୍ୟ କାର୍ଯ୍ୟଧାରା, ବୃତ୍ତି, ପ୍ରବୃତ୍ତି ସାଫଲ୍ୟ ଓ ବିକାଶର ଧାରା ହିଁ ସଂସ୍କୃତି । ସଂସ୍କୃତି ହେଉଛି ମାନବ ସଭ୍ୟତାର ପ୍ରାଣ ଓ କେନ୍ଦ୍ରବିନ୍ଦୁ । ଜାତିର ଜୀବନଯାପନ ଧାରା ରୁଚି ସମ୍ପନ୍ନ ଓ ମାର୍ଜିତ ହେଲେ ସଂସ୍କୃତିର ଅଭ୍ୟୁଦୟ ଘଟେ ତଥା ଭାଷା, ସାହିତ୍ୟ, କଳା, ଶିଳ୍ପ, ସ୍ଥାପତ୍ୟ, ନୃତ୍ୟ ସଂଗୀତ ଓ ଦର୍ଶନ ପ୍ରଭୃତିରେ ଏହାର ପରିପ୍ରକାଶ ଘଟିଥାଏ । ସଂସ୍କୃତି ସହିତ ଧର୍ମ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲେ ସଭ୍ୟତା ଉନ୍ନତ ହୋଇ ସମାଜ ସମୃଦ୍ଧ ହୁଏ ।

ବିଶ୍ୱର ସକଳ ଧର୍ମଶାସ୍ତ୍ରର ସାରତତ୍ତ୍ୱ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ । ଏହି ସଂସ୍କୃତି କୌଣସି ଧର୍ମଧାରାରେ ସୀମାବଦ୍ଧ ନୁହେଁ । ପ୍ରାଗ୍ ବୈଦିକ କାଳରୁ ଦିବ୍ୟ ନୀଳାଚଳରେ ଦାରୁ ଉପାସନାର ପ୍ରବହମାନ ଧାରା ସମ୍ପର୍କରେ ରଗ୍‌ବେଦରେ ଉଲ୍ଲେଖ ଅଛି ବୋଲି ବହୁ ସାଧୁ ସନ୍ଥମାନେ ପ୍ରମାଣିତ କରିଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ପ୍ରାଗ୍‌ବୈଦିକ ସଂସ୍କୃତି । ନିର୍ଗୁଣ ନିରାକାର ପରଂବ୍ରହ୍ମ ସଗୁଣ ସାକାର ଦାରୁ ରୂପରେ ପୂଜା ପାଇ ବିଶ୍ୱର ପ୍ରଥମ ସାକାର ଦେବତାର ଆସନ ଲାଭ କରିଅଛି । ସେହି ଦାରୁ ଉପାସନାରୁ ଜନ୍ମ ନେଲା ଜଗନ୍ନାଥ ସଂସ୍କୃତି । ଆଧ୍ୟାତ୍ମିକତାର ସୌରଭରେ ପ୍ରଫୁଲ୍ଲିତ ତଥା ଆଧ୍ୟାତ୍ମିକ ସ୍ପନ୍ଦନରେ ଉତ୍‌ଫୁଲିତ ସେହି ସଂସ୍କୃତିର ଆଚାର ବିଚାର, ପରମ୍ପରା ଜନଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲା । ସାମାଜିକ ଓ ଅର୍ଥନୈତିକ ଜୀବନ ସହିତ ଧାର୍ମିକ ଓ ସାଂସ୍କୃତିକ ଜୀବନର ସମନ୍ୱୟରେ ଏହି ସଂସ୍କୃତି ମାନବୀୟ ପ୍ରଜ୍ଞାର ଉତ୍ତରୋତ୍ତର ଅଭିବୃଦ୍ଧି ଘଟାଇଲା । ମାନବ ସମାଜର ଜୀବନ ଚର୍ଯ୍ୟାକୁ ସରସ ସୁନ୍ଦର, ସମୃଦ୍ଧ, ସୃଜନଶୀଳ ଓ ପରିପୂର୍ଣ୍ଣ କରି ବିଶ୍ୱରେ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରି ପାରିଥିଲା ।

ଜାତି, ବର୍ଣ୍ଣ ସମ୍ପ୍ରଦାୟ ଭେଦରେ ତାହା ବିଭାଜିତ ନହୋଇ ଚିନ୍ତନଠାରୁ ବ୍ୟବହାରିକ ଜୀବନ ତଥା ମାନବୀୟ ସମ୍ବେଦନାଠାରୁ ସମଷ୍ଟିଗତ ଏକତାକୁ ଆଧାର କରି ଏହି ସଂସ୍କୃତି ସଂପ୍ରସାରିତ ହୋଇଥିଲା । ମହନୀୟତା ହେଉଛି ଏହି ସଂସ୍କୃତିର ଉନ୍ମେଷ ସ୍ଥଳୀ । ଦିବ୍ୟ ନୀଳାଚଳର ପବିତ୍ର ବାଲୁକାରେଣୁ ସ୍ପର୍ଶ କଲାମାତ୍ରେ ସଭିଏଁ ଜଗନ୍ନାଥ ସଂସ୍କୃତିର ମହା ସାଗରରେ ଆପଣାକୁ ହଜାଇ ଦେଇଥାଆନ୍ତି । ଶ୍ରୀଜଗନ୍ନାଥଙ୍କ ନାମ ଓ ଧାମକୁ ଆଧାର କରି ପୃଥିବୀର ଏହି ପ୍ରାଚୀନତମ ସଂସ୍କୃତି ବିକଶିତ ହୋଇଥିଲା । ପୁରୁଷୋତ୍ତମ ଚେତନା ସହିତ ବିକଶିତ ବୈଶିଷ୍ଟ୍ୟ ଦ୍ୱାରା ଅଭିପୂରିତ ଜୀବନଶୈଳୀ ଜଗନ୍ନାଥ ସଂସ୍କୃତି ନାମରେ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କଲା । ପ୍ରାଥମିକ ପର୍ଯ୍ୟାୟରେ ଏହା ପୁରୁଷୋତ୍ତମ କ୍ଷେତ୍ରରେ ଜନ୍ମ ନେଇଥିଲେ ହେଁ ପରବର୍ତ୍ତୀ କାଳରେ ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । ତେଣୁ କୁହାଯାଏ ଜଗନ୍ନାଥ ସଂସ୍କୃତି ହେଉଛି ବିଶ୍ୱର ପ୍ରାଚୀନତମ ସଂସ୍କୃତି । ତପୋନିଷ୍ଠ ମହାତ୍ମାଙ୍କ ମୁଖରୁ ବେଦ ନିସୃତ ହେବାର ବହୁ ପୂର୍ବରୁ ଶ୍ରୀଜଗନ୍ନାଥ ସଂସ୍କୃତି ଲୋକ ଲୋଚନରେ ପ୍ରସାରିତ ହୋଇ ସାରିଥିଲା ।

ଧର୍ମଶାସ୍ତ୍ରକୁ ଚିକିନିଖି ନିରୀକ୍ଷଣ କଲେ ଜଣାଯାଏ ଏହାର ସାରତତ୍ତ୍ୱ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ ଅଥଚ



ଏହି ସଂସ୍କୃତି କୌଣସି ଧର୍ମଧାରାରେ ସୀମାବଦ୍ଧ ନୁହେଁ । ଜଗନ୍ନାଥ ସଂସ୍କୃତିରେ କୌଣସି ପ୍ରକାର ସଂକୀର୍ଣ୍ଣତା ନାହିଁ । ଏହା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗକାରୀ ସେତୁ । ଏହାର ମୂଳତତ୍ତ୍ୱ ଅପରିବର୍ତ୍ତିତ ରହିଛି । ପରିଣାମ ସ୍ୱରୂପ ବିଶ୍ୱର ସକଳ ସଂସ୍କୃତି ମଧ୍ୟରେ ଏହା ସମନ୍ୱୟ ପ୍ରତିଷ୍ଠା କରିପାରିଛି । ଜଗନ୍ନାଥ ସଂସ୍କୃତିରେ ଏକତା, ସମାନତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଭ୍ରାତୃତ୍ୱର ବାଣୀ ଅତି ସୁସ୍ପଷ୍ଟ । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ସମଗ୍ର ମାନବ ଜାତିର ବିଭିନ୍ନ ରଙ୍ଗର ନିଦର୍ଶନ । ସେଥିପାଇଁ ଜଗନ୍ନାଥ ସଂସ୍କୃତି ହେଉଛି ସାର୍ବଜନୀନ ସଂସ୍କୃତି ।

ଏକତା ସମାନତା ଓ ବିଶ୍ୱଭ୍ରାତୃତ୍ୱ ଏହାର ପରମ ଲକ୍ଷ୍ୟ । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ହେଉଛି ପ୍ରତୀକାତ୍ମକ, ଯାହା ସମଗ୍ର ବିଶ୍ୱବାସୀଙ୍କ ନିକଟରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱ ପ୍ରତିଷ୍ଠା କରି ଆସୁଅଛି । ଏହି ପୁରୋଦୃଷ୍ଟିରେ ଜଗନ୍ନାଥ ସଂସ୍କୃତି କେବଳ ଜନହିତୈଷୀ ସଂସ୍କୃତି ନୁହେଁ, ଏହା ବିଶ୍ୱହିତୈଷୀ ସଂସ୍କୃତି । ଏହି ସଂସ୍କୃତି ବିଶ୍ୱର ମଙ୍ଗଳ ଉପରେ ପ୍ରାଧାନ୍ୟ ଦିଏ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଗଣମହୋତ୍ସବର ସଂସ୍କୃତି କହିଲେ ଭୁଲ ହେବନି ? ଏହି ଗଣମହୋତ୍ସବ ମାନବବାଦର ସାକାର ରୂପ ବିଶ୍ୱ ସଂସ୍କୃତିର ପରିଚାଳକ । ସାମ୍ୟ, ମୈତ୍ରୀ, ପ୍ରୀତି, ଶାନ୍ତି, ସଂହତି ଓ ସଂପ୍ରୀତି ଏହି ଗଣ ମହୋତ୍ସବରେ ଏକ ପରିଭାଷା ।

ଏମିତି ଦେଖି ବସିଲେ ଜଗନ୍ନାଥ ସଂସ୍କୃତିର ସମିଶ୍ରଣ ମାନବ ଜୀବନର ପ୍ରତ୍ୟେକ ସଂସ୍କୃତି ସହିତ ଜଡିତ । ଯେମିତି ନୃତ୍ୟ, ସଂଗୀତ, ସାହିତ୍ୟ, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ହେଉଛି ସଂସ୍କୃତିର ଅନ୍ତରଙ୍ଗ ବିଭବ । ବିଶେଷତ୍ୱ ହେଉଛି ଯୁଗଯୁଗ ଧରି ଏହି ଅନ୍ତରଙ୍ଗ ବିଭବ ସମୂହ ବିଶ୍ୱ ଜନମାନସଙ୍କୁ ଆକର୍ଷିତ କରି ଜଗନ୍ନାଥ ସଂସ୍କୃତି ସହିତ ଜନଜୀବନକୁ ଅଙ୍ଗାଙ୍ଗୀ ଭାବରେ ଜଡିତ କରିପାରିଛି । ଶ୍ରୀଜଗନ୍ନାଥଙ୍କଠାରେ ନିତ୍ୟ ସମାହିତ ତିନିଧୂପ, ପାଂଚ ଅବକାଶ ରୀତିରେ ପୂଜା, ନୈମିତିକ ପର୍ବପର୍ବାଣି ଓ ବାର ମାସରେ ତେରଯାତ୍ରା ଜଗନ୍ନାଥ ସଂସ୍କୃତିକୁ ସୁସଂଗଠିତ କରିପାରିଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ସଂଗଠିତ ପ୍ରତ୍ୟେକ ପର୍ବପର୍ବାଣି ଓ ଯାନିଯାତ୍ରା ସଭିଙ୍କ ଭିତରେ ସଂପ୍ରୀତି, ମାନବିକତା, ଗୋଷ୍ଠୀଗତ ଐକ୍ୟ ଓ ଆଧାତ୍ମିକ ଚେତନାକୁ ସୁଦୃଢ କରିପାରିଛି । ସେଥିପାଇଁ ଆଜି ଶ୍ରୀଜଗନ୍ନାଥ ସଂସ୍କୃତିକୁ ବିଶ୍ୱ ସଂସ୍କୃତିରେ ରୂପାନ୍ତରିତ କରିପାରିଛି । ବିଭିନ୍ନତା ଭିତରେ ଏକତା ଆଣି ମାନବ ସମାଜରେ ମଙ୍ଗଳ ସାଧନା କରିବାରେ ଏବଂ ସଂହତି ସ୍ଥାପନ କରିବାରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ସକଳ ଦାର୍ଶନିକ ଚିନ୍ତା ଓ ଚେତନାର ସମିଶ୍ରଣ ଘଟି ସମନ୍ୱୟର ମହାଭାବ ସୃଷ୍ଟି ହୋଇଛି । ଏହି ସଂସ୍କୃତିର ବଡଦାଣ୍ଡରେ ସମସ୍ତେ ସମାନ । ଚଣ୍ଡାଳରୁ ବ୍ରାହ୍ମଣ ଯାଏଁ ସମସ୍ତେ ଗୋଟିଏ ପତ୍ରରେ ମହାପ୍ରସାଦ ସେବନ କରନ୍ତି । ମୁଣ୍ଡରେ ବୋଲି ଜୟ ଜଗନ୍ନାଥ କହି ଆନନ୍ଦରେ ନାଚି ଉଠନ୍ତି । ଏ ହେଉଛି ଆମର ରୀତି ନୀତି, ସଂସ୍କୃତି ଆଉ ମହନୀୟତା ।

---

ଶ୍ରୀରାମ ନଗର, ମଧୁପାଟଣା, କଟକ





# ଭକ୍ତ କଳ୍ପଦ୍ରୁମ, ପୂର୍ଣ୍ଣବ୍ରହ୍ମ, ଶ୍ରୀଜଗନ୍ନାଥ ସଚ୍ଚିଦାନନ୍ଦ ବିଗ୍ରହ

**ପଣ୍ଡିତ ଅକ୍ଷୟ କୁମାର ପତି**

ନୀଳାଦ୍ରିରେ, ଶଙ୍ଖକ୍ଷେତ୍ର ମଧ୍ୟରେ, ଶତଦଳ କମଳ ଉପରେ, ନୂତନ ମେଘସଦୃଶ କମନୀୟ କାନ୍ତିଯୁକ୍ତ ଶ୍ରୀଜଗନ୍ନାଥ, କାଳିଆ ଠାକୁର, ସମସ୍ତ ପ୍ରକାର ଅଳଙ୍କାରରେ ବିଭୂଷିତ ହୋଇ ରତ୍ନସିଂହାସନରେ ଅଧିଷ୍ଠିତ ହୋଇଅଛନ୍ତି। ସେ ଅଗ୍ରଜ ଶ୍ରୀବଳଭଦ୍ରଙ୍କ ସହ ଦେବୀ ସୁଭଦ୍ରାଙ୍କର ବାମ ପାର୍ଶ୍ୱରେ ବିଦ୍ୟମାନ ଅଛନ୍ତି । ଚକ୍ରରାଜ ଶ୍ରୀସୁଦର୍ଶନ, ବ୍ରହ୍ମା-ରୁଦ୍ର ଓ ଇନ୍ଦ୍ରଙ୍କ ଦ୍ୱାରା ବନ୍ଦିତ ହେଉଅଛନ୍ତି । ସୁତରାଂ ମୁଁ ବେଦମାନଙ୍କ ସାରସତ୍ତ୍ୱ ସମ୍ବଳିତ ସମସ୍ତ ଗୁଣଯୁକ୍ତ ସେହି ବ୍ରହ୍ମଦାରୁଙ୍କୁ ସ୍ମରଣ କରୁଅଛି ।



ଶ୍ଲୋକରେ ଅଛି ଧର୍ମ ଅର୍ଥ-କାମ-ମୋକ୍ଷ (ଚାରିପୁରୁଷାର୍ଥ) ଚତୁର୍ବର୍ଗ ଫଳରେ ଅନ୍ତର୍ନିହିତ ଚିତ୍ରର ସ୍ମରଣ ଘଟିଛି । ବ୍ୟାକରଣ ଶାସ୍ତ୍ରରେ ଧର୍ମ ଅର୍ଥ-କାମ-ମୋକ୍ଷର ସମାବେଶକୁ ଧର୍ମଅର୍ଥକାମମୋକ୍ଷ ଶବ୍ଦର ଉଦ୍‌ଭବ ଘଟିଅଛି । ଏହାକୁ ସମାହାର ଦ୍ୱନ୍ଦ୍ୱ ସମାସ କୁହାଯାଏ ।

ଭକ୍ତ ଭଗବାନଙ୍କ ସଂପର୍କ ସମ୍ବଳିତ ଶ୍ଳୋକଟି ମଧ୍ୟରେ ଅନ୍ତର୍ନିହିତ ଅଛି ବିଶାଳ ଦର୍ଶନତତ୍ତ୍ୱ । ଅବଗୁଣ୍ଠିତ ହୋଇଛି, ଭକ୍ତର ରସାଳିତ ଭାବବିନୋଦିଆ ଚିନ୍ତା ଓ ଚୈତନ୍ୟ । ଆଧ୍ୟାତ୍ମ୍ୟବାଦର ଚିନ୍ମୟ ଚେତନା ତାକୁ ଉଦ୍‌ଭ୍ରାନ୍ତ କରି ତୋଳିଛି ।

ଦେବତା କାଠ, ପାଷାଣ, କିମ୍ବା ମାଟି ମୂର୍ତ୍ତିରେ ନିବାସ କରନ୍ତି ନାହିଁ । ପରନ୍ତୁ ଭାବନାହିଁ ଦେବତାଙ୍କ ଅସ୍ତିତ୍ୱର କାରଣ ଅଟେ । ଏଥିପାଇଁ ଭାଗବତରେ ଭଗବାନ ଭକ୍ତମାନଙ୍କର ମହିମାଗାନ କରିଅଛନ୍ତି -

ମୁଁ ଅଟେ ଭକତର ଦାସ  
ଭକତ ମୋହର ସର୍ବସ୍ୱ ।

ଉପରୋକ୍ତ ଉକ୍ତିରେ ଘଟିଛି ଭକ୍ତ ଭଗବାନଙ୍କ ଚିନ୍ତନ ଓ ସଂପର୍କର ମହାମିଳନ । ଏକ ପକ୍ଷରେ ପୁରୁଷାର୍ଥ ଚତୁର୍ବର୍ଗଫଳ (ଧର୍ମ-ଅର୍ଥ-କାମ-ମୋକ୍ଷ) ଅପର ପକ୍ଷରେ ଭକ୍ତର ମୁକ୍ତିକାମନା ।

ସର୍ବଜ୍ଞସ୍ତ୍ୱ ମବିଜ୍ଞାତଃ ସର୍ବଯୋନି ସ୍ତ୍ୱମାତ୍ମଭୂଃ  
ସର୍ବ ପ୍ରଭୁରନୀଶସ୍ତ୍ୱ ମେକସ୍ତ୍ୱଂ ସର୍ବରୂପଭାକ୍ ।

(ରଘୁବଂଶ ୨୦,୧୦ମ ସର୍ଗ)

ଅର୍ଥାତ୍ ଆପଣ ଏକ ଏବଂ ଅଦ୍ୱିତୀୟ ରୂପରେ ସମସ୍ତ ପଦାର୍ଥରେ ବିରାଜମାନ କରିଅଛନ୍ତି। ଆପଣଙ୍କ ଅଣୁଆତ୍ମା ସମସ୍ତ ଯୋନିରେ ଆଶ୍ରୟ କରିଅଛି । କିନ୍ତୁ ଆପଣ ହିଁ ପ୍ରଭୁଙ୍କର ପ୍ରଭୁ ମହାପ୍ରଭୁ ଅଟନ୍ତି । ଅତଏବ ବିଶ୍ୱ ଆପଣଙ୍କ ଦ୍ୱାରା ଉଦ୍ଭବ ଅଥଚ ଆପଣ ସ୍ୱୟମ୍ଭୁ ଅଟନ୍ତି । ବିଶ୍ୱର ମୂଳାଧାର ଭୂମିକାରେ



ଆପଣ ହିଁ ବିଦ୍ୟମାନ । ଏଠାରେ ଭକ୍ତର ମନୋବିଜ୍ଞାନ ମନ୍ଥନ ସଞ୍ଜାତ ଅମୃତମୟ ଚିନ୍ତନ, ସତେ ଯେମିତି ସ୍ୱପ୍ନାଞ୍ଜନା ଦିବ୍ୟ ଚେତନାକୁ ବିଭାଗୀକୃତ କରିତୋଳିଛି । ସୁତରାଂ ଏମିତି ଏକ ଶାସ୍ତ୍ରୀୟ ଅନୁଶୋଚନା ମଧ୍ୟରେ ଭଗବାନଙ୍କ ସାନ୍ନିଧତା ସାକ୍ଷତକାର ଭାବେ ଉପରୋକ୍ତ ଶ୍ଳୋକକୁ ବିଶ୍ଳେଷଣ କରି ଦେଖୁଛି । ଉପରୋକ୍ତ ଶ୍ଳୋକରେ ଧର୍ମ-ଅର୍ଥ-କାମ-ମୋକ୍ଷ କିପରି ଭାବେ ଅନ୍ତର୍ନିହିତ ଅଛି ।

ପ୍ରଥମ ପଂକ୍ତିରେ ରହସ୍ୟମୟ ଠାକୁର ଶ୍ରୀନୀଳାଦ୍ରି ମହୋଦୟଙ୍କ ସ୍ଥିତି, ନୀଳକନ୍ଦରରେ, ଶଙ୍ଖକ୍ଷେତ୍ରରେ, ଶତଦଳ କମଳ ଉପରେ, ରତ୍ନସିଂହାସନରେ ଉପବେଶନ କରିଥିବାରୁ, ଶ୍ରୀକ୍ଷେତ୍ର, ଶ୍ରୀପୁରୁଷୋତ୍ତମ ପୀଠ ଶ୍ରୀଶଙ୍ଖକ୍ଷେତ୍ର ମର୍ଯ୍ୟାଦା ପ୍ରାପ୍ତ ହୋଇଅଛି । ସେ ପରିଣତ ହୋଇଛି ଅବ୍ୟୟ, ଅବ୍ୟକ୍ତ ଅପୂର୍ବ ରହସ୍ୟମୟ ତୀର୍ଥକ୍ଷେତ୍ର ରୂପରେ । ପ୍ରସଙ୍ଗକ୍ରମେ କୁହାଯାଇ ପାରେ ସତ୍ୟଯୁଗରେ ବଦ୍ରିନାଥ, ଦ୍ୱାପର ଯୁଗରେ ଦ୍ୱାରିକାନାଥ, ତ୍ରେତୟାରେ ରାମେଶ୍ୱରମ୍ ଏବଂ କଳିଯୁଗରେ ଶ୍ରୀଜଗନ୍ନାଥ ବୌଦ୍ଧ ଅବତାର ହୋଇ ଶ୍ରୀପୁରୁଷୋତ୍ତମ ପୀଠକୁ ଶ୍ରେଷ୍ଠତ୍ୱ ପ୍ରାପ୍ତ କରାଇ ଅଛନ୍ତି । ସୁତରାଂ ନୀଳାଦ୍ରି ମହୋଦୟଃ ୧ମ ଭାଗ ତୀର୍ଥାନାଂ କ୍ଷେତ୍ରନାଶୀନାଂ ମଧ୍ୟେ ଶ୍ରୀପୁରୁଷୋତ୍ତମଃ ଉକ୍ତିରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠତୀର୍ଥ ପାଲଟିଯାଇଛି । ସେହିପରି ବ୍ରହ୍ମପୁରାଣରେ ମଧ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ପ୍ରାବଲ୍ୟତା ବର୍ଣ୍ଣନା କରାଯାଇଅଛି ।

ସେହିପରି ଶ୍ରୀସ୍କନ୍ଦ ପୁରାଣରେ ପୁରୁଷୋତ୍ତମ ପ୍ରୀତି ସାଧକ (ବ୍ରହ୍ମପୁରାଣ) ବ୍ରତ ବିଶେଷ ବିଧିକଥନ ଉପାଖ୍ୟାନରେ ବର୍ଣ୍ଣନା ଅଛି ।

ଶ୍ରୀକ୍ଷେତ୍ର ପ୍ରଭୁଙ୍କ ଦର୍ଶନ, ଯେ କରେ ସେହି ମହାଜନ
ସେ ଜନ ପାପ ମୁକ୍ତ ହୋଇ, ବୈକୁଣ୍ଠ ଗତିକୁ ଲଭଇ ।

ସୁତରାଂ କଳିଯୁଗରେ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠତୀର୍ଥ ସ୍ୱରୂପ ଶ୍ରୀ ପୁରୁଷୋତ୍ତମ ଶଙ୍ଖକ୍ଷେତ୍ର ଯେ ଅଦ୍ୱିତୀୟ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବାମଦେବ ସଂହିତା ଅନୁଯାୟୀ ଶ୍ରୀଦାରୁବ୍ରହ୍ମଙ୍କ ମାନବୀୟ ଲୀଳା ପ୍ରକଟ ହେବା ବହୁପୂର୍ବରୁ ଯୁଗସ୍ରଷ୍ଟା ବ୍ରହ୍ମା କ୍ଷେତ୍ରମହିମା ପ୍ରଚାର କରିସାରିଥିଲେ । ସେ ନିଜର ଚାରୋଟି ଆୟୁଧକୁ ଭୂପୃଷ୍ଠକୁ ନିକ୍ଷେପକରି ଗଢ଼ି ତୋଳିଥିଲେ ଅପୂର୍ବ ତୀର୍ଥରାଜି ।

ବାମଦେବ ସଂହିତା ଅଧ୍ୟୟନରୁ ଜଣାଯାଏ ଶଙ୍ଖକ୍ଷେତ୍ର ନୀଳାଚଳ ଧାମକୁ ପ୍ରଭୁ କାହିଁକି ନିଜ ନାମରେ ନାମିତ କରିଅଛନ୍ତି । ବ୍ୟାକରଣ ଶାସ୍ତ୍ର କହେ- ପୁରୁଷମାନଙ୍କ ମଧ୍ୟରେ ଉତ୍ତମ ପୁରୁଷୋତ୍ତମ ଅଟେ । ଏଠାରେ ସପ୍ତମୀ ତତପୁରୁଷ ସମାସ ହୋଇଅଛି । ଅର୍ଥାତ ଏଇଠି ପ୍ରଶ୍ନ ଉଠେ ସର୍ବତ୍ର ସମସ୍ତଙ୍କ ହୃଦୟରେ ପରୁଷୋତ୍ତମ ବିଦ୍ୟମାନ ଥିବାସ୍ଥଳେ ପ୍ରଭୁ ସ୍ୱୟଂ କାହିଁକି ଉକ୍ତ କ୍ଷେତ୍ରକୁ ନିଜ ନାମରେ ନାମିତ କଲେ ? ଏହା ହିଁ ନିମ୍ନୋକ୍ତ ଶ୍ଳୋକର ଅର୍ଥ ଅଟେ ଯଥା -

ସର୍ବସ୍ଥଳେ ସର୍ବହୃଦି ପୂର୍ଣ୍ଣଃ ସ୍ୟାତ୍ ପୁରୁଷୋତ୍ତମଃ
ଏତଦ୍‌କ୍ଷେତ୍ରବରେପ୍ୟାତ୍ମନାମ ଯଦ୍ଦତ୍ତବାନ୍ ବିଭୁଃ

(ବାମଦେବ ସଂହିତା)

ଶ୍ରୀକ୍ଷେତ୍ର ମହିମା ସଂପର୍କରେ ବହୁ ଶାସ୍ତ୍ରରେ ବହୁବିଧ କିମ୍ବଦନ୍ତୀ ଥିଲେ ମଧ ପ୍ରବନ୍ଧର କଳେବର ବୃଦ୍ଧିକୁ ଦୃଷ୍ଟିରେ ରଖାଯାଇ ଗୋଟିଏ ମାତ୍ର ଦିଆଗଲା ।

ଚନ୍ଦ୍ର - ସୂର୍ଯ୍ୟଙ୍କ ଉତ୍ପତ୍ତି ପରେ ନିରାକାର ପୁରୁଷଙ୍କ ସାକାରତ୍ୱ ପ୍ରାପ୍ତହେଲା । ନିରାକାରରୁ ନିର୍ଗୁଣବ୍ରହ୍ମ ସଗୁଣରୂପ ଧାରଣ କରନ୍ତି । ସୁତରାଂ ସେ ନାରାୟଣ ଶରୀରବାନ ହୋଇ ଉତ୍ପନ୍ନ ହେଲେ । ତତ୍‌ପରେ ନାରାୟଣଙ୍କଠାରୁ ଜନ୍ମ ନେଲେ ପଂଚମୁଖ ବ୍ରହ୍ମା । ବ୍ରହ୍ମାହେଲେ ବିକାଶମୁଖୀ । ବ୍ରହ୍ମାଙ୍କଠାରୁ ବ୍ରହ୍ମାଣ୍ଡ ସର୍ଜନା ଫଳବତୀ ହେଲା। ବ୍ରହ୍ମାଙ୍କର ପରିକଳ୍ପନା ମର୍ତ୍ତ୍ୟବୈକୁଣ୍ଠ ଉତ୍ପତ୍ତିକାଳରୁ ଜନ୍ମ ନେଲେ ଶ୍ରୀମାଧବ । ମାଧବରୁ ନୀଳମାଧବ ନାମରେ ନୀଳକନ୍ଦର ଶ୍ରୀବର୍ଦ୍ଧନ କଲେ । ସେହିଠାରୁ ଶାବରୀଲୀଳା ପ୍ରକଟ ହେଲା ମହାପ୍ରଭୁଙ୍କର । ମୁନିଶ୍ରେଷ୍ଠ ନାରଦଙ୍କ ନିର୍ଦ୍ଦେଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କ ଦର୍ଶନାଭିଳାଷୀ



ହୋଇ ବିଦ୍ୟାପତିଙ୍କୁ ଅନୁସରଣ କରନ୍ତି । ଅନୁଶୀଳନ ଏବଂ ଅନୁଶାସନରୁ ପୁଷ୍ପିଳ ହୋଇଉଠେ, ଅନୁସନ୍ଧିତ୍ସା, ଅନ୍ୱେଷଣ । ବିଦ୍ୟାପତିଙ୍କ ସଫଳତାର ପ୍ରାସଙ୍ଗିକ ପ୍ରାମାଣିକ ସତ୍ୟତା ଉପଲବ୍ଧି ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ବିଲ୍ୱେଶ୍ୱର ଦର୍ଶନ ଲାଭ କରନ୍ତି । ସେହିଠି ରାଜାହେଲେ ପଥଭ୍ରଷ୍ଟ । ତଦନ୍ତେ ପଥଭ୍ରଷ୍ଟ ରାଜାଙ୍କର ବାମବାହୁ ଏବଂ ବାମଚକ୍ଷୁର ବାରମ୍ବାର ସ୍ଫୁରଣ (କଂପନ) ଘଟିବାରୁ ଅନୁସନ୍ଧିତ୍ସୁ ରାଜା ନାରଦଙ୍କ ପରାମର୍ଶାଭିଳାଷୀ ହୋଇଉଠନ୍ତି ।

ଅନନ୍ତରେ ଅନନ୍ତଯୁଗର ସଂଧାନ ଦେଇ ଦେବର୍ଷି ନାରଦ ରାଜାଙ୍କର ଅଙ୍ଗସ୍ଫୁରଣ ଅଶୁଭ ଲକ୍ଷଣର ସମୀକ୍ଷା କରନ୍ତି ଏବଂ ନୀଳମାଧବଙ୍କ ଦର୍ଶନାଭିଳାଷ ହତାଶାବାଣୀ ବ୍ୟକ୍ତ କରନ୍ତି । ତାଙ୍କ ଭାଷାରେ ବିଦ୍ୟାପତିଙ୍କ ପ୍ରଭୁଦର୍ଶନ ପରେ ସନ୍ଧ୍ୟାକାଳରେ ପ୍ରବଳ ପବନ ବହି ସ୍ୱର୍ଣ୍ଣବାଲୁକା ଝଡ଼ ଦ୍ୱାରା ପ୍ରଭୁ ଅନ୍ତର୍ଦ୍ଧାନ ହୋଇଯାଇଥିବାର ସ୍ଥିର ନିଷ୍ପତ୍ତି ପ୍ରତିପାଦନ କରନ୍ତି ।

ରାଜା ଇନ୍ଦ୍ରଦ୍ୟୁମ୍ନ ଭୋଜନ ତ୍ୟାଗ ପୂର୍ବକ ଦେହତ୍ୟାଗ କରିବାର ଦୃଢ଼ ନିଷ୍ପତ୍ତି ଶୁଣାଇବାରୁ ତତ୍ତ୍ୱଜ୍ଞ ନାରଦ ନୀଳାଦ୍ରିନାଥଙ୍କ ଅପୂର୍ବ ଚରିତ ବୟାନ କରିଥିଲେ । ତଦନ୍ତେ ମୁନିଙ୍କ ଉପଦେଶ ଅନୁସାରେ ଏକସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ସାରି ଅବଭୃଥ ସ୍ନାନ କରି ଶରଣାଗତି ହେବା ପରେ ସେହିଦିନ ରାତ୍ରିରେ ରାଜା ସ୍ୱପ୍ନାଦେଶ ପ୍ରାପ୍ତ ହେଲେ ଯେ– ଶ୍ୱେତଦୀପରୁ ଏକ ରମଣୀୟ ଚନ୍ଦନ ବୃକ୍ଷ ଆସି ବିଲ୍ୱେଶ୍ୱରଙ୍କ ନିକଟରେ ଲାଗିଛି ଏବଂ ବୃକ୍ଷ ଚତୁପାର୍ଶ୍ୱରେ ବ୍ରହ୍ମାଦି ଦେବତାମାନେ ବେଦଧ୍ୱନି କରୁ ଅଛନ୍ତି । ସୁତରାଂ ପରବର୍ତ୍ତୀ କାଳରେ ତହିଁରୁ ଚତୁର୍ଦ୍ଧାମୂର୍ତ୍ତିଙ୍କ ନିର୍ମାଣ କରାଯାଇଥିଲା । ଏହି ମୂର୍ତ୍ତି ପ୍ରତିଷ୍ଠା କାଳରେ ସ୍ୱୟଂ ବ୍ରହ୍ମା, ଜଗନ୍ନାଥ–ବଳଭଦ୍ର–ସୁଦର୍ଶନ–ସୁଭଦ୍ରା ନାମରେ ନାମିତ କରି ରତ୍ନସିଂହାସନରେ ସ୍ଥାପନ (ଉପବେଶନ) କରିଥିଲେ । ଏହା ହିଁ ବ୍ରହ୍ମାଙ୍କର ପୂର୍ବାଦ୍ଧର ନୀଳମାଧବ ଏବଂ ଅପରାର୍ଦ୍ଧର ଶ୍ରୀଜଗନ୍ନାଥଙ୍କ ଐତିହ୍ୟର ଇତିହାସ ବା ଇତିକଥା ଅଟେ ।

୨ୟ ପଂକ୍ତିରେ ଜଗନ୍ନାଥଙ୍କର ଜଗତମୋହନ ରୂପକାନ୍ତିର ପରିଚର୍ଯ୍ୟା ବିଶ୍ଲେଷଣ କରାଯାଇଅଛି । ନୂତନ କଳାମେଘ ସଦୃଶ ସୁନ୍ଦର କାନ୍ତିଯୁକ୍ତ ମନମୋହନ ଠାଣିରେ ସର୍ବାଳଙ୍କାର ବିଭୂଷିତ ଅବସ୍ଥାନ ଏକ ପ୍ରାଚୁର୍ଯ୍ୟ ଗାମ୍ଭୀର୍ଯ୍ୟତା ପୂର୍ଣ୍ଣସ୍ଥିତିର ସୂଚନା ଦିଏ ।

ସୁନ୍ଦର ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ॥

ଭକ୍ତ ଢ଼ାଳିଛି ଭକ୍ତିର ତୃଷା । ତୃଷାର କବରୀ ତଳୁ ଡ଼େଣାମେଲିଛି ତୃଷ୍ଣାର ପରିପାଟୀ । ଭକ୍ତ ବିଭୋର ହୋଇଉଠିଛି ପ୍ରଭୁକାନ୍ତିରେ ଶରଣାଗତି ଅର୍ଘ୍ୟାଞ୍ଜଳି ସମର୍ପଣ କରି । ଭକ୍ତ ହୃଦୟ କନ୍ଦରରେ ମହାପ୍ରଭୁ ବିରାଜମାନ କରିଅଛନ୍ତି । କଳା କଳେବର ମେଘକାନ୍ତି ମଧ୍ୟରେ ଚକାଆଖି ଚନ୍ଦ୍ର, ସୂର୍ଯ୍ୟଙ୍କ ଜ୍ୟୋତ୍ସ୍ନା ଏବଂ କିରଣ ପରି ଦାଉଦାଉ ଜଳୁଛି । ଭକ୍ତିର ତୃଷ୍ଣା ତୃପ୍ତିର ପୀୟୂଷ ପସରା ମେଲାଇ ଦେଇଛି ।

ଶିରସ୍ଥ ହୀରା, ନୀଳା, ମୋତି, ମାଣିକ୍ୟ ଖଚିତ କିରୀଟ, ନାସାରେ ବସଣୀ, ଗଳାରେ ସୁଶୋଭିତ କୌସ୍ତୁଭମଣି, ବାହୁରେ କେୟୂର, ପ୍ରଜ୍ୱଳିତ ଅଗ୍ନିଶିଖା ପ୍ରାୟ ଝଟକୁଛି । ରଙ୍ଗ ଅଧରରେ ସ୍ମିତହାସ୍ୟର ଛଟାମେଲାଇ ଦୁଇବାହୁ ପ୍ରସାରି ଆବ୍ରାହ୍ମଣ, ଚଣ୍ଡାଳ ଯାଏଁ ଭକ୍ତିର ପରଖନେଇ କୃତାର୍ଥ କାରଣେ ଉଭାରି ବସିଛି ସେ । ମନଜିଣା ଠାଣିଦେଖି ବିହ୍ୱଳ ହୋଇ ଉଠିଛି ଭକ୍ତ । ମୁକ୍ତ କଣ୍ଠରେ ସ୍ୱୟଂ ଜ୍ଞାନ ମଞ୍ଜୁଷ ମହୁରୀ ବଜାଇ ମନ୍ଦିର ପ୍ରକଂପିତ କରୁଛି ସେ' ।

ଲଲାଟରେ କସ୍ତୁରୀତିଳକ, ବକ୍ଷସ୍ଥଳରେ କୌସ୍ତୁଭମଣି, ନାସାଗ୍ରରେ ମୁକ୍ତାରତ୍ନ ଖଚିତ ବରଗୁଡ଼ି, ଶ୍ରୀହସ୍ତ ଶୋଭିତ ବେଣୁକରେ କଙ୍କଣମଣ୍ଡିତ ଲାବଣ୍ୟ ତନୁକାନ୍ତି ବିରାଜମାନ କରୁଅଛି । ସର୍ବାଙ୍ଗରେ ସୁଶୋଭିତ ହରିଚନ୍ଦନର ପରିପାଟୀ ସହିତ ସୁସୁନ୍ଦର ମୁକ୍ତାବଳୀଗୁଡ଼ିକ କଣ୍ଠଭୂଷଣ ରୂପେ ଶୋଭାବର୍ଦ୍ଧନ କରୁଅଛି । ପ୍ରଭୁଶ୍ରୀ, ଗୋପାଳଚୂଡ଼ାମଣି, ନଟରାଜ ବେଶରେ



ଗୋପାଙ୍ଗନାମାନଙ୍କ ପରିବେଷ୍ଟନୀରେ ବିଜୟଶ୍ରୀ ମୂର୍ତ୍ତିମନ୍ତ ଅଛନ୍ତି ।

ସୁତରାଂ ଏଠାରେ ଭକ୍ତ ଅନୁଭବ କରୁଛି ଶ୍ରୀଜଗନ୍ନାଥଙ୍କ ରୂପକାନ୍ତି ମଧ୍ୟରେ କୃଷ୍ଣଙ୍କ ଷୋଳକଳାକୁ । ସତେ ଯେମିତି ଜଗନ୍ନାଥ ମହାପ୍ରଭୁ ତା'ଚିନ୍ତନ ମଧ୍ୟରେ ନିଜର ଆରାଧ୍ୟ ଦେବତା ପାଲଟି ଯାଇଅଛନ୍ତି କୃଷ୍ଣଙ୍କ ମନମୋହନ ବେଶରେ । ଅନ୍ୟପକ୍ଷରେ କହିଲେ – ଶ୍ରୀଜଗନ୍ନାଥ ବିରାଜମାନ କରିଛନ୍ତି ଭକ୍ତ ହୃଦୟରେ ବାଙ୍କଚୂଳିଆ, ମୋହନ ବଂଶୀଧାରୀ, ନାରୀମନଚୋରା ଦିବ୍ୟାଙ୍ଗମଣ୍ଡିତ ବେଶଭୂଷା ପରିପାଟୀରେ । କୁତ୍ରାପି ଅଷ୍ଟାଙ୍ଗ ପ୍ରଣତି ଢ଼ାଳି ବିଦଗ୍ଧ କଣ୍ଠରେ ଭକ୍ତ କାମୋଦୀ ରାଗରେ ଗାଉଛି ।

କୃପାସିନ୍ଧୁ ବଦନ କରି ଅବଲୋକନ<br>
କେଉଁକରମହୀନ ଜନ<br>
କାକୁସ୍ଥତରହୋଇ କର ଯୋଡ଼ି ଜଣାଇ<br>
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ ମହାପ୍ରଭୁ<br>
କୃପାସରିତ ପତିହୋଇ କରମହୀନଜନ ତହିଁ<br>
କରୁଣା କଲନାହିଁ କିମ୍ପା ହେ ଭାବଗ୍ରାହୀ<br>
କହ ମୁଁ ବିଚିତ୍ର ମଣଇଁ ହେ ମହାପ୍ରଭୁ ।

(ଆରତ ତ୍ରାଣ) (ଦୀନକୃଷ୍ଣ ଦାସ)

ଭକ୍ତ ଭଗବାନଙ୍କ ମହାମିଳନ ନିତ୍ୟଲୀଳାଖେଳାରୁ ଶ୍ରୀକ୍ଷେତ୍ର ମର୍ତ୍ତ୍ୟବୈକୁଣ୍ଠ ପାଲଟି ଯାଇଛି । ଆରତ କଣ୍ଠରେ ତ୍ରାହି ତ୍ରାହି ସ୍ୱରରେ ଭକ୍ତ ଡ଼ାକୁଛି ଦାରୁବ୍ରହ୍ମଙ୍କୁ ।

ଦେବ ଦେବ ଜଗନ୍ନାଥ ସଂସାରାର୍ଣ୍ଣବ ତାରକ<br>
ଭକ୍ତାନୁ ଗ୍ରାହକ ସଦା ରକ୍ଷମାଂ ପାଦୟୋର୍ନତମ

ଭକ୍ତ ଚିନ୍ତାମଣିଙ୍କ ଅନୁଗ୍ରହ ଭିକ୍ଷାର୍ଥୀ ରୁପେ ସଂସାରାର୍ଣ୍ଣବରୁ ମୁକ୍ତିକାମନା କରି ଭକ୍ତ ଡ଼ାକୁଛି ଦେବ ଦେବ ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣତି ଢ଼ାଳି । ପ୍ରଭୁ ସତ୍ୟ, ବ୍ରହ୍ମସତ୍ୟ, ସତ୍ୟରୁ ଚନ୍ଦ୍ର, ସୂର୍ଯ୍ୟ ଆତଜାତ ହୋଇ ସଂସାର ରକ୍ଷା କରୁଅଛନ୍ତି । ଏହି ଏକମାତ୍ର ଚିନ୍ତନ ମୂର୍ତ୍ତିମନ୍ତ ହୋଇଉଠିଛି ଭକ୍ତର ଭାବନା ରାଜ୍ୟରେ ।

ବ୍ରହ୍ମଦର୍ଶନର ମୌଳିକତା କଣ ? ଏହାଦ୍ୱାରା ଭକ୍ତ କି ପ୍ରକାର ଫଳ ପ୍ରାପ୍ତ ହୋଇଥାଏ । ସୁତରାଂ ମହାପ୍ରଭୁଙ୍କ ଦର୍ଶନ ମାତ୍ରେ ଭକ୍ତ ଧର୍ମ–ଅର୍ଥ–କାମ–ମୋକ୍ଷ ଚତୁର୍ବର୍ଗ ଫଳ ସହଜରେ ପ୍ରାପ୍ତ ହୋଇଥାଏ । ଯେହେତୁ ମହାପ୍ରଭୁ ନିତ୍ୟନୂତନ ସ୍ୱରୂପ ସନାତନ ପୁରୁଷ (ଶ୍ରୀଜଗନ୍ନାଥ ମହାପ୍ରଭୁ) ଅଟନ୍ତି । ଏଣୁ ମହାପ୍ରଭୁଙ୍କ ସ୍ୱରୂପକୁ ବାରମ୍ବାର ନମସ୍କାର । ଏ ଗଲା ରୂପଚର୍ଯ୍ୟାର ବିଶ୍ଳେଷଣ । ତତ୍ ପରେ (ସଂସ୍ଥିତ ଚାଗ୍ରଜେନ) – ସମସ୍ତ ପ୍ରକାର ଅଳଙ୍କାର ବିଭୂଷିତ ହୋଇ ଅଗ୍ରଜଙ୍କ ସହିତ ରତ୍ନସିଂହାସନରେ ଉପବେଶନ କରିଥିବାରୁ ବ୍ରହ୍ମଦାରୁଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ଏହି ଯେ– (୧) ମାନବ ସମାଜରେ ଭ୍ରାତୃତ୍ୱ ବନ୍ଧନର ପୀୟୁଷ ପ୍ଳାବନ ଘଟୁ । ଜାତି ଭେଦ, ବର୍ଣ୍ଣ ବୈଷମ୍ୟ ଅପସରି ଯାଉ, ବିଶ୍ୱ ଭ୍ରାତୃତ୍ୱ ବନ୍ଧନରୁ ଗଢ଼ିଉଠୁ ମୈତ୍ରୀ, ଶାନ୍ତିର ସୁରମ୍ୟ ଅଟ୍ଟାଳିକା । (୨) ମାନବ ସମାଜ ଆବାଳବୃଦ୍ଧବନିତା ସଂପଦଶାଳୀ ହୋଇଉଠନ୍ତୁ । ପୃଥିବୀ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇଉଠୁ । ଏହାହିଁ ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ଅଟେ ।

ଦେବୀ ସୁଭଦ୍ରାଙ୍କ ବାମପାର୍ଶ୍ୱରେ ବିଦ୍ୟମାନ ଚକ୍ରରାଜ (ଶ୍ରୀସୁଦର୍ଶନ)ଙ୍କ ସହଯୁକ୍ତ, ବ୍ରହ୍ମା, ରୁଦ୍ର ଏବଂ ଇନ୍ଦ୍ରଙ୍କ ଦ୍ୱାରା ଶ୍ରୀଦାରୁବ୍ରହ୍ମ ଅବସ୍ଥିତ । ସୁତରାଂ ଚତୁର୍ଦ୍ଧା ଦିବ୍ୟମୂର୍ତ୍ତିଙ୍କ ଶ୍ରୀକ୍ଷେତ୍ର ଅବସ୍ଥାନ (ଭକ୍ତମାନଙ୍କ ପାଇଁ) ଧର୍ମ–ଅର୍ଥ–କାମ–ମୋକ୍ଷ ଚତୁର୍ବର୍ଗ ଫଳ ଦାୟକ ଅଟନ୍ତି ।

କାରଣ ବ୍ରହ୍ମାଙ୍କ ଦ୍ୱାରା ମୂର୍ତ୍ତିମାନଙ୍କ ଅବସ୍ଥାନ ଏକ ଗୋଷ୍ଠୀ (କୈନ୍ଦ୍ରିକ) ବା ସାମାଜିକ ଚିତ୍ର ଅଟେ । ଏତଦ୍ୱାରା ସମଗ୍ର ଜନସମାଜ ଭ୍ରାତୃ–ଭଗ୍ନୀ–ରଜା, ପ୍ରଜା, ସମସ୍ତେ ଏକ ଧର୍ମ ରୂପକ ପ୍ରେମ ରଜୁରେ ଆବଦ୍ଧ ଥିବାର ସୂଚନା ମିଳେ ।

ଯେଉଁ ଭାବନା ଦ୍ୱାରା ବ୍ୟକ୍ତି, ଗୋଷ୍ଠୀ, ପ୍ରଜାମାନଙ୍କୁ ଆବଦ୍ଧ କରି ରଖାଯାଇ ପାରେ, ତାହା ହିଁ ଧର୍ମ ଅଟେ । ସୁତରାଂ ଜନସମାଜ ଏକ ଭ୍ରାତୃ–ଭଗ୍ନୀ–ସାମାଜିକ ଭାବଧାରାରେ ଆବଦ୍ଧ



ହୋଇ ବିଶ୍ୱକୁ ଏକ ପରିବାର ଚିନ୍ତନରେ ବାନ୍ଧି ରଖନ୍ତୁ ଏହାହିଁ ଜଗଦ୍ଦୀଶ୍ୱରଙ୍କ ଇଚ୍ଛା ଅଟେ । ମହାପୁରୁଷ ବଳରାମ ଦାସଙ୍କ ଚିନ୍ତନରେ ଗୁପ୍ତଗୀତା ବା ବ୍ରହ୍ମଗୀତାରେ ଶ୍ରୀକ୍ଷେତ୍ର ବିରାଜମାନ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚାରିବେଦର ପ୍ରତୀକ ସ୍ୱରୂପ ତୁଳନା କରାଯାଇ ଅଛି, ଯଥା–

ବଳରାମ ଯେ ସାମହୋଇ
ରକ ଯେ ସୁଭଦ୍ରା ଅଟଇ
ଯର୍ଜୁବେଦ ଶ୍ରୀଜଗନ୍ନାଥ
ଅଥର୍ବ ସୁଦର୍ଶନ ପାର୍ଥ

ଗୁଣଜ୍ଞ ଭକ୍ତ ବଳରାମ ଦାସ ଚତୁର୍ଦ୍ଧା ଦାରୁବ୍ରହ୍ମ ମୂର୍ତ୍ତିଙ୍କ ମାନବୀୟ ଲୀଳାବତାର ପୁରୁଷୋତ୍ତମଙ୍କୁ ଚାରିବେଦର ଅବତାରଣା କରି ଯେଉଁ ଯୁଗାନ୍ତ ବେଦାନ୍ତୀ ସିଦ୍ଧାନ୍ତ ପ୍ରକଟ କରାଇ ଅଛନ୍ତି ତାହା ସମଗ୍ର ଜନ ସମାଜ ପାଇଁ ଧ୍ରୁବ ସତ୍ୟତାର ଅକାଟ୍ୟ ପ୍ରମାଣ ଅଟେ । ବାମଦେବ ସଂହିତାନୁଯାୟୀ ବେଦ ବିଶ୍ୱର ସର୍ବପ୍ରାଚୀନ ଗ୍ରନ୍ଥ, ମୂଲ୍ୟାଙ୍କନରେ ରକବେଦ ହୋଇଥିବା ସ୍ଥଳେ ଶ୍ରୀକ୍ଷେତ୍ରକୁ ରକ୍‌ବେଦର ଧାମ ମର୍ଯ୍ୟାଦା ଦିଆଯାଇଅଛି । ବେଦ ବେଦାନ୍ତ ଭିନ୍ନ ଶ୍ରୀକ୍ଷେତ୍ର ମହିମା ଦର୍ଶନ ସ୍କନ୍ଦ ପୁରାଣରେ ବିଶଦ୍ ଭାବେ ଦେଖିବାକୁ ମିଳେ ।

ଅର୍ଥାତ ସଂସାରର ସମସ୍ତ ଦୁଃଖ ଏହି ପ୍ରତିମା ବିନାଶ କରି ଅବ୍ୟୟ ସୁଖ ପ୍ରଦାନ କରୁଥିବାରୁ ବେଦାନ୍ତରେ ଦାରୁମୟ ବ୍ରହ୍ମ ବୋଲି ବର୍ଣ୍ଣନା କରାଯାଇଅଛି ।

ସର୍ବାଳଙ୍କାର ବିଭୂଷିତ ଜଗତର ନାଥ ଜଗନ୍ନାଥ, ଚତୁର୍ଦ୍ଧାମୂର୍ତ୍ତି ସହିତ ବିରାଜମାନ କରିଅଛନ୍ତି ଏବଂ ଭକ୍ତକୁ ଦର୍ଶନ ଦେଇ ଉନ୍ମତ୍ତ କରିଦେଇଛନ୍ତି ସେ । ଭକ୍ତ ଉଠୁଛି ପଡ଼ୁଛି ସାଷ୍ଟାଙ୍ଗ ପ୍ରଣତି ଜଣାଇ । କ୍ଷମା ପ୍ରାର୍ଥନା କରୁଛି ବିଭୂପାଦ ତଳେ । ପ୍ରଭୁ ପ୍ରଭୁ କହି ନିଜକୁ ହଜାଇ ଦେଇଛି ଈଶ୍ୱରୀୟ ଚେତନା ରାଜ୍ୟରେ ।

ଅନ୍ୟ ପକ୍ଷରେ କହିଲେ ବେଦମାନଙ୍କର ସାରସ୍ୱତ ସମ୍ବଳିତ ସମସ୍ତ ଗୁଣଯୁକ୍ତ ବ୍ରହ୍ମଦାରୁଙ୍କ ନିକଟରେ ଆତ୍ମସମର୍ପଣ ଭାବ ହିଁ ପ୍ରକଟିତ ହୋଇଅଛି । ବ୍ରହ୍ମଶବ୍ଦର ବ୍ୟୁତ୍ପତ୍ତି ଅନୁସନ୍ଧାନ କଲେ ବୃହ୍‌ମନ୍‌ବ୍ରହ୍ମ (ବୃହ ଧାତୁରୁ ମନ୍ ପ୍ରତ୍ୟୟ ଯୋଗରେ ଉଦ୍‌ଭବ ହୋଇଅଛି) ।

ବ୍ରହ୍ମ ଶବ୍ଦ ଏକ ବ୍ୟାପକ ଶବ୍ଦ ଅଟେ । ଯାହାର ରୂପ – ବର୍ଣ୍ଣ– ଦୀର୍ଘତା ମାପିବା ଏକ ଧୃଷ୍ଟତା ମାତ୍ର । ବ୍ରହ୍ମଶବ୍ଦ ଯୋଗରୁ ସ୍ୱୟଂବ୍ରହ୍ମ ପରଂବ୍ରହ୍ମ, ଦାରୁବ୍ରହ୍ମ, ଶବ୍ଦ ବ୍ରହ୍ମ, ଶୂନ୍ୟବ୍ରହ୍ମ, ଅକ୍ଷରବ୍ରହ୍ମ ଏବଂ ଅଲେଖ ବ୍ରହ୍ମ ଇତ୍ୟାଦି ପରିବ୍ୟାପକ ଶବ୍ଦ ସୃଷ୍ଟି କରାଯାଇଅଛି । ସ୍ୱୟଂବ୍ରହ୍ମ ନିଜର ଆତ୍ମା ସଂପର୍କରେ ବର୍ଣ୍ଣନା କରାଯାଇଅଛି । ଉକ୍ତ ବ୍ରହ୍ମାଲୋଚନା ପଞ୍ଚସଖା ଯୁଗର ସାହିତ୍ୟରୁ ପରିଲକ୍ଷିତ ହୋଇଥାଏ । ସେହିପରି ପରଂବ୍ରହ୍ମ ଶବ୍ଦ ପରମେଶ୍ୱରଙ୍କ ଚିନ୍ତା ଚୈତନ୍ୟତା ଭାବଧାରାରୁ ସମ୍ବଳିତ ଅଟେ ।

ଦାରୁବ୍ରହ୍ମ ଶବ୍ଦ ଶ୍ରୀଜଗନ୍ନାଥଙ୍କ ଆଲୋଚନା ପରିସରଭୁକ୍ତ ଶବ୍ଦ ରୂପେ ସର୍ବଜନବିଦିତ ଅଟେ । ଉକ୍ତ ଶବ୍ଦ ମଧ୍ୟରେ ଭରିରହିଛି ମାଧୁର୍ଯ୍ୟ ଭକ୍ତିମିଶ୍ର । ଶରଣାଗତି ଭାବଧାରା । ପ୍ରଭୁ ଭକ୍ତର ଭାବ ଡ଼ୋରିରେ ବନ୍ଧା । ରୋଗୀ, ଭୋଗୀ, ବୈରାଗୀ ଯେଉଁ ସ୍ଥରୀୟ ଭକ୍ତ ହେଉନା କାହିଁକି ଯେ ଯେପରି ଭାବରେ ସାନ୍ନିଧ କାମନା କରୁଛି ପ୍ରଭୁ ଦୟାରସାଗର ଦାରୁବ୍ରହ୍ମ ମୂରତି ଅଚିରେ ପ୍ରଦାନ କରନ୍ତି । ଭକ୍ତର କାମନା ବାସନାକୁ କୋଟି କୋଟି ଯୁଗଧରି ପୂର୍ଣ୍ଣ କରି ମଧ ସେ ସ୍ୱୟଂ ଅକ୍ଷୟ ଅଜେୟ ଅଟନ୍ତି ।

ଭକ୍ତ କଳ୍ପତରୁ କାଳିଆଠାକୁର କୁହୁକ ବିଭୁତିପସରା ମେଲାଇଛି ଭକ୍ତର ଭାବନା ରାଜ୍ୟରେ । ତାହାର କମନୀୟକାନ୍ତି ଭକ୍ତକୁ ଭାବବିହ୍ୱଳ କରିଦୋଳିଛି । ଶୟନେ–ସ୍ୱପନେ– ଜାଗରଣେ ଭକ୍ତ ଦେଖୁଛି ଭଗବାନଙ୍କ ରୂପଗୁଣ ଅଲୌକିକ ନିର୍ଗୁଣ ଭାବର ମହନୀୟତାକୁ ।

ଏହି ଭାବରେ ବିହ୍ୱଳ, ବିଦଗ୍ଧ ଭକ୍ତମାନେ – ଭକ୍ତ ସାଲବେଗ, ଦାସିଆବାଉରୀ, କବି ଜୟଦେବ, ଭକ୍ତ ବଂଧୁ ମହାନ୍ତି ଯୁଗ ଯୁଗାନ୍ତର ଦୃଷ୍ଟାନ୍ତ ସୃଷ୍ଟି କରିଅଛନ୍ତି ।



କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ କାବ୍ୟ ବ୍ୟଞ୍ଜନାରେ ରଚନା କରିଗଲେ –

ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ।

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୧୨ ମଙ୍ଗଳାଚରଣ)

ସୁତରାଂ କମ୍ବୁ କଟକ ଅର୍ଥାତ ଶଙ୍ଖକ୍ଷେତ୍ରର ରାଜା ଜଗନ୍ନାଥ ଚଉବର୍ଣ୍ଣେ ଅର୍ଥାତ ଜଗନ୍ନାଥ ଚାରିଅକ୍ଷର ମଧ୍ୟରେ ଚଉବର୍ଗ ଅର୍ଥାତ୍ ଧର୍ମ – ଅର୍ଥ – କାମ– ମୋକ୍ଷ ଫଳ ଦେବାକୁ ସମର୍ଥ ଅଟନ୍ତି । ସନ୍ଥ ହାଡ଼ିଦାସଙ୍କ ଦିବ୍ୟଚକ୍ଷୁ ନୀଳାଚଳ ଧାମ ଶ୍ରୀକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ରର ଧୂଳିକଣାକୁ କୋଟି ଜନ୍ମର କଳୁଷ ହାରକ ପବିତ୍ର ବସ୍ତୁ ବୋଲି ଚିତ୍ରଣ କରିଯାଇଛନ୍ତି ତାଙ୍କ ଶଙ୍ଖନାଭି ୧୭ ଅଧ୍ୟାୟରେ ।

କୋଟି ବ୍ରହ୍ମାଣ୍ଡ ଯହିଁତହିଁ
ପଡ଼ି ଅଛନ୍ତି ରେଣୁ ହୋଇ ।
ସେ ରେଣୁ ଲାଗେ ଯାର ମୁଣ୍ଡେ
କୋଟି ଜନ୍ମର ପାପଖଣ୍ଡେ ।

ଏ ଦାଣ୍ଡେ ଯେ ହରାଇ ତନ
ସେ'ଲୋକ ବିଷ୍ଣୁରେ ଯେ ଲୀନ ।

ଦାରୁବ୍ରହ୍ମ ସ୍ୱୟଂ ଅକ୍ଷୟ ବା ସଂପୂର୍ଣ୍ଣ ଅଟନ୍ତି । ସେ' ସ୍ୱୟଂ ସଂପୂର୍ଣ୍ଣ ହୋଇଥିବାରୁ ପ୍ରାକୃତିକ ଜଗତ ପରିପୂର୍ଣ୍ଣତାରେ ଭୂଷିତ ଅଟନ୍ତି । ସୁତରାଂ ପୂର୍ଣ୍ଣ ଭଗବାନଙ୍କଠାରୁ ଯାହାକିଛି ଉତ୍ପନ୍ନ ହୁଏ ସେ ସମସ୍ତ ମଧ୍ୟ ପୂର୍ଣ୍ଣ ଅଟନ୍ତି । ସେ ପୂର୍ଣ୍ଣ ହୋଇଥିବାରୁ ତାଙ୍କଠାରୁ ଯେତେ ପୂର୍ଣ୍ଣ ଏକକ ବାହାରି ଆସିଲେ ମଧ୍ୟ ସେ ସ୍ୱୟଂ ପୂର୍ଣ୍ଣରୂପେ ପରିପୂର୍ଣ୍ଣବ୍ରହ୍ମ ଅଟନ୍ତି । ଅନ୍ୟ ପକ୍ଷରେ କହିଲେ ସେ ସଚ୍ଚିଦାନନ୍ଦ ବିଗ୍ରହ ଅକ୍ଷୟ, ଅବ୍ୟୟ, ନିର୍ବିଶେଷ ଦାରୁବ୍ରହ୍ମ, ବ୍ରହ୍ମାନୁଭୂତି ସ୍ୱୟଂ ପରିପୂର୍ଣ୍ଣତାର ଗନ୍ତାଗାର ଅଟନ୍ତି ।

ଭଗବତ ଭଜନ ଚିନ୍ତନ ମାନବ ଜୀବନର ଶ୍ରେଷ୍ଠ ଧର୍ମ ଅଟେ । ସୁତରାଂ ନିଜକୁ ସେହି ମଧୁର ଚିନ୍ତନ ଧାରାରେ ହଜାଇ ଦିଅନ୍ତୁ । ଅନ୍ୟାନ୍ୟ ସମସ୍ତ ଲୌକିକଧର୍ମ ବର୍ଜନ କରନ୍ତୁ । ସାଧୁ ସେବା ହିଁ କାମନାର ତୃଷ୍ଣା ହେଉ । ଭୋଗ ଲାଳସାକୁ ପରିତ୍ୟାଗ କରନ୍ତୁ । ଅନ୍ୟର ଦୋଷ ଗୁଣ ସମାଲୋଚନାରୁ ମୁକ୍ତରୁହନ୍ତୁ । ଶ୍ରେୟ ହେଉ ଭଗବତ କଥାରସ । ଭଗବତ ସେବା, ଭଗବତ ଭଜନ ଚିନ୍ତନ, ଅମ୍ଳାନ ରହୁ ଏହା ହିଁ ଶେଷ କଥା ।

ବୈଜ୍ଞାନିକ ଦୃଷ୍ଟିକୋଣ – କଳାରଙ୍ଗ ସମସ୍ତ ଶୋଷଣ କରିପାରେ । ସର୍ବଶେଷରେ ସଚ୍ଚିଦାନନ୍ଦ ବିଗ୍ରହ କଳ୍ପତରୁ ଶ୍ରୀଜଗନ୍ନାଥଙ୍କ ଚରଣ କମଳେ ଆଜିର ଭଦ୍‌ଭ୍ରାନ୍ତ ମାନବସମାଜ ସଂସ୍କାର ପାଇଁ ପୀୟୁଷ ଧାରା ପଦଟିଏ ଲେଖି ନିବୃତ୍ତି ନେଉଛି ।

ଝରିଆସୁ ସୋମାମୃତ ସହସ୍ରାଧାରାରୁ
ପ୍ରେମେ ପୁଲକିତ ହେଉ ତନୁ-ମନ-ତରୁ
ପୀୟୁଷ ଶାଶ୍ୱତସ୍ୱାସ୍ଥ୍ୟ ଲଭୁ କଳେବର
ଜ୍ଞାନ-ପ୍ରଜ୍ଞାମୃତଧାରା ପ୍ଳାବୁ ଏ ସଂସାର ।

**ସହାୟକ ଗ୍ରନ୍ଥସୂଚୀ**

(୧) ବାମଦେବ ସଂହିତା) (୨) ନୀଳାଦ୍ରି ମହୋଦୟ (୩) ଶୂନ୍ୟସଂହିତା (୪) ଚାଣକ୍ୟ ନୀତି (୫) ରଘୁବଂଶମ୍ (୬) ଭାଗବତ (୭) ବ୍ରହ୍ମପୁରାଣ (୮) ଶ୍ରୀକ୍ଷେତ୍ର ମହିମା (୯) ଚିଲିକା କାବ୍ୟ, ରାଧାନାଥ ରାୟ (୧୦) ଆରତ ତ୍ରାଣ ଚଉତିଶା (୧୧) ଜଗନ୍ନାଥ ତୀଳକମ୍ (୧୨) ବ୍ରହ୍ମଗୀତା ବା ଗୁପ୍ତଗୀତା (୧୩) ସ୍କନ୍ଦପୁରାଣ ଉତ୍କଳଖଣ୍ଡ ନୀଳକନ୍ଦର (୧୪) ଶଙ୍କରାଚାର୍ଯ୍ୟଭାଷ୍ୟ (୧୫) ସର୍ବ ବେଦାନ୍ତ ସାରତତ୍ତ୍ୱ ଶିରୋମଣି (୧୬) ବିରାଟଗୀତା ଜଗନ୍ନାଥ ଚରିତାମୃତ (୧୭) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ (୧୮) ଭକ୍ତି ଚନ୍ଦ୍ରିକା (୧୯) ପୀୟୁଷ ଧାରା (୨୦) ବେଦ (୨୧) ସଂସ୍କୃତ ଭାଗବତ ବ୍ୟାସକୃତ ।

ମାତୃମନ୍ଦିର, ସରପୁର
ଭଦ୍ରକ – ୭୫୬୧୧୬



# ଭାରତୀୟ ଯୋଗ ସଂସ୍କୃତିରେ ଶ୍ରୀଜଗନ୍ନାଥ

ଡକ୍ଟର ରମାକାନ୍ତ କର

ଭାରତୀୟ ସଂସ୍କୃତିକୁ ଅନୁଧ୍ୟାନ କଲେ ଯୋଗ, ତନ୍ତ୍ର ଓ ବେଦ ଏହି ତିନୋଟି ବିଷୟ ଉପରେ ଗୁରୁତ୍ୱାରୋପ କରାଯାଏ। ଏ ତିନି ହେଁ ସମସାମୟିକ ଓ ପରସ୍ପର ସହିତ ସମ୍ପର୍କିତ। ଏହି ତିନୋଟି ବିଷୟରେ ଶ୍ରୀଜଗନ୍ନାଥଙ୍କ ସତ୍ତା ବିଦ୍ୟମାନ। ଇନ୍ଦ୍ରିୟାଦିମାନଙ୍କୁ ନିରୋଧ ଅର୍ଥାତ୍ ନିୟନ୍ତ୍ରଣ କରିବାରେ ଶିବ ହିଁ ଦକ୍ଷ ଅଟନ୍ତି । ଶିବ ପାର୍ବତୀଙ୍କୁ ଶାସ୍ତ୍ରତତ୍ତ୍ୱ ଶୁଣାଉଥିବା ସମୟରେ ଯୋଗୀ ଓ ମୁନିମାନେ ଶୁଣିକରି ବିଦ୍ୟା ସଂଗ୍ରହ କରୁଥିଲେ। ସେତେବେଳେ କଲମ ଓ କାଗଜର ବ୍ୟବହାର ନଥିଲା। ଏଣୁ ଶାସ୍ତ୍ରକୁ ଶ୍ରୁତି କରାଯାଉଥିଲା। ସେତେବେଳେ ଯୋଗୀଙ୍କ ମଧ୍ୟରେ ଯୋଗୀମହର୍ଷି ପତଳି ହଠଯୋଗ ତତ୍ତ୍ୱ ଓ ମୁନି କପିଳ ସାଂଖ୍ୟଯୋଗ ତତ୍ତ୍ୱ ସଂଗ୍ରହ କରି ମାନବପିଢି ମଧ୍ୟରେ ପ୍ରଚାର କରିଥିଲେ। ଏଣୁ ହଠଯୋଗର ପ୍ରଣେତା ମହର୍ଷି ପତଳି ଓ ସାଂଖ୍ୟଯୋଗର ପ୍ରଣେତା କପିଳମୁନି ଅଟନ୍ତି। ଯୋଗଶାସ୍ତ୍ରର ସ୍ରଷ୍ଟା ହିଁ ସ୍ୱୟଂ ଶିବ ବା ବଳଭଦ୍ର। ଯେ ସୃଷ୍ଟି କରି ସଂସାରରେ ବିସ୍ତାର କରେ ସେ ହେଉଛନ୍ତି ତାନ୍ତ୍ରିକ ବ୍ରହ୍ମା ବା ମା' ସୁଭଦ୍ରା ଶକ୍ତି ସ୍ୱରୂପିଣୀ। ବେଦ ହିଁ ସ୍ୱୟଂ ବିଷ୍ଣୁ ବା ଶ୍ରୀଜଗନ୍ନାଥ। ଏ ତ୍ରିମୂର୍ତ୍ତି ହିଁ ତିନି ଶାସ୍ତ୍ରର ଊର୍ଦ୍ଧ୍ୱରେ ଓ ଶ୍ରୀସୁଦର୍ଶନ ଆୟୁଧଯୁକ୍ତ ଅଟନ୍ତି । ଏହି ଚତୁର୍ଦ୍ଧାମୂର୍ତ୍ତି ଶ୍ରୀବଳଭଦ୍ର, ମା' ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନ ହିଁ ଶ୍ରୀଜଗନ୍ନାଥ ବା ପତିତପାବନଙ୍କ ଉପରେ ନ୍ୟସ୍ତ ଅଟନ୍ତି ।

'ଜ' ଅର୍ଥାତ୍ ଶ୍ରୀଜଗନ୍ନାଥ, 'ଗ' ଅର୍ଥାତ୍ ଶ୍ରୀବଳଭଦ୍ର, 'ନା' ଅର୍ଥାତ୍ ଶକ୍ତିସ୍ୱରୁପିଣୀ ମା' ସୁଭଦ୍ରା ଓ 'ଥ' ଅର୍ଥାତ୍ ଶ୍ରୀସୁଦର୍ଶନ। ଏହି 'ଜଗନ୍ନାଥ' ଚାରି ଅକ୍ଷରରେ ଚତୁର୍ଦ୍ଧାମୂର୍ତ୍ତି ପରିକଳ୍ପିତ ହୋଇଥିବାରୁ ପୁରୀ ଶ୍ରୀମନ୍ଦିର ଗୁମୁଟ ମଧ୍ୟରେ ସ୍ୱୟଂ ପତିତପାବନ ଶ୍ରୀଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଅବସ୍ଥାନ କରି ଭକ୍ତଙ୍କୁ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନରେ ଫଳ ପ୍ରଦାନ କରିଥାନ୍ତି । ତ୍ରିମୂର୍ତ୍ତି ବ୍ରହ୍ମା, ବିଷ୍ଣୁ, ଶିବ ଯଥାକ୍ରମେ ତନ୍ତ୍ର, ବେଦ ଓ ଯୋଗର ଆରାଧ୍ୟ ହୋଇଥିବାରୁ ଏ ତିନିହେଁ ଭିନ୍ନ ହୋଇ ମଧ୍ୟ ଅଭିନ୍ନ ଭାବରେ ଉପନିଷଦରେ ପ୍ରମାଣିତ ହୋଇଛନ୍ତି । ଏ ତିନିହେଁ ଏକ ଅଟନ୍ତି । ଏହି ତିନିମୂର୍ତ୍ତି ମଧ୍ୟରେ ଯୋଗ, ତନ୍ତ୍ର ଓ ବେଦ ସମସ୍ତ ଶାସ୍ତ୍ରର ସତ୍ତ୍ୱା ରହିଛି ଓ ସମସ୍ତ ଶାସ୍ତ୍ର ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ସତ୍ତ୍ୱା ବିଦ୍ୟମାନ। ଶ୍ରୀଜଗନ୍ନାଥ ସଂସ୍କୃତିରେ ଗବେଷଣାର ସ୍ଥାନ ନାହିଁ । କେବଳ କିଛି ଘୋଷି, ଜାଣି, କହି ନିଜକୁ ଗବେଷକର ପରିଚୟ ଦେବା ଆସ୍ଫାଳନ ମାତ୍ର। ଅତୀତରେ ଅସଂଖ୍ୟ ଗବେଷକ ଗବେଷଣା କରି ବହୁ ଗ୍ରନ୍ଥ ରଚନା କରି ଯାଇଛନ୍ତି । ହେଲେ ଶ୍ରୀଜଗନ୍ନାଥ ଏହି ଗବେଷଣାରୁ ଊର୍ଦ୍ଧ୍ୱରେ। ଅତୀତରେ ଗବେଷଣା କେବଳ ଲେଖକର ସ୍ୱୀୟ ମତ ଅଟେ। ଶ୍ରୀଜଗନ୍ନାଥଙ୍କ ନୀତି, ବିଧି-ବିଧାନ, ତତ୍ତ୍ୱାଦି ଗବେଷଣା କରି ସ୍ଥିରୀକୃତ କରିବା ଅସଂଭବ। ଏ ପର୍ଯ୍ୟନ୍ତ ଯାହା ଲେଖା ଅଛି ତାହା ହେଉ ନାହିଁ କିମ୍ବା ସତ୍ୟ ନୁହେଁ। ସମସ୍ତେ କଳ୍ପନା ସାଗରରେ ଭାସି ଯାଇଛନ୍ତି। ଅସୀମ ଗବେଷଣା ସାଗରରେ ଭାସି ନିଜର ସତ୍ତ୍ୱା ଲୋପ କରିବା ଅପେକ୍ଷା ଭକ୍ତ ମାଧ୍ୟମରେ ପ୍ରଭୁଙ୍କ ସତ୍ତ୍ୱା ଉପଲବ୍ଧ କରିବା ହିଁ ଶ୍ରେୟସ୍କର। ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଚାରି ଦିଗରେ ଚାରିବେଦ ଓ ଚାରିଧାମର ବ୍ୟବସ୍ଥା ରହିଛି। ଶ୍ରୀଜଗନ୍ନାଥଙ୍କୁ ଚାରିବେଦ ଓ ଅଧୀନସ୍ଥ ଉପନିଷଦମାନଙ୍କରେ ତାତ୍ତ୍ୱିକ ପରିକଳ୍ପନା କରାଯାଇଛି। ପୂର୍ବଦିଗସ୍ଥ ଋଗବେଦ ଅଧୀନସ୍ଥ ଐତରୀୟ ଉପନିଷଦ (୩/୧/୩)ରେ 'ପ୍ରଜ୍ଞାନଂ ବ୍ରହ୍ମଂ', ଦକ୍ଷିଣ ଦିଗସ୍ଥ ସାମବେଦ



ଅନୁସାରେ 'ଅହଂ ବ୍ରହ୍ମାସ୍ମି', ପଶ୍ଚିମ ଦିଗସ୍ଥ ଯଜୁର୍ବେଦ ଅନୁଯାୟୀ 'ତତ୍ତ୍ୱମସି' ଓ ଉତ୍ତର ଦିଗସ୍ଥ ଅଥର୍ବଦେବ ମତରେ 'ଅୟମାତ୍ମା ବ୍ରହ୍ମ' ବୋଲି ବର୍ଣ୍ଣନା କରାଯାଇଛି। ଏହି ସବୁ ମନ୍ତ୍ର ହିଁ ଯୋଗତତ୍ତ୍ୱଭିତ୍ତିକ। ଷଡ଼ଦର୍ଶନ ମଧ୍ୟରେ ମହର୍ଷି ପତଞ୍ଜଳୀଙ୍କ ଯୋଗଦର୍ଶନ ଅନ୍ୟତମ। ହଠଯୋଗକୁ ପ୍ରଧାନ ଶାସ୍ତ୍ରରୂପେ ସ୍ୱୀକାର କରାଯାଇଛି। ଏହି ଯୋଗଦର୍ଶନ ଅନୁସାରେ ବେଦବର୍ଣ୍ଣିତ 'ପ୍ରଜ୍ଞାନଂବ୍ରହ୍ମଂ' ବା ପ୍ରଜ୍ଞାକୁ କିପରି ସମାଧିସ୍ଥ କରାଯାଇ ବିଜ୍ଞାନରେ ରୂପାନ୍ତରିତ କରାଯାଏ, ତାହାର ତତ୍ତ୍ୱ ରହିଛି। ଜଣେ ଯୋଗୀ ଅସଂପ୍ରଜ୍ଞାତ ସମାଧି ସାଧନା କରିବା ପୂର୍ବରୁ ସଂପ୍ରଜ୍ଞାତ ସମାଧି ସାଧନା କରି ପ୍ରତ୍ୟୟମାନଙ୍କୁ ଆୟତ୍ତାଧୀନ କରିବାଲାଗି ଏବଂ ସେମାନଙ୍କର ତତ୍ତ୍ୱ ଜ୍ଞାତ ହେବା ଉଦ୍ଦେଶ୍ୟରେ ଯୋଗୀ ଧ୍ୟାନଯୋଗର ଆଶ୍ରୟ ଗ୍ରହଣ କରେ। ପତଞ୍ଜଳୀଙ୍କର ଅଷ୍ଟାଙ୍ଗଯୋଗ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଆଠଅଙ୍ଗ ମଧ୍ୟରେ ଧ୍ୟାନ ହିଁ ସପ୍ତମଅଙ୍ଗ ଭାବରେ ପରିଚିତ। ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କ ମତରେ ପ୍ରତ୍ୟୟଗୁଡ଼ିକ ହେଲେ କାରଣ, ମନବୃତ୍ତି, କଳ୍ପନା , ବୋଧଗମ୍ୟ ହେବାର ଉପାୟ। ଏହି ପ୍ରତ୍ୟୟମାନଙ୍କ ଏକତା ରକ୍ଷା ନକରି ପାରିବାରୁ ମାନବର ନିୟନ୍ତ୍ରଣ ଅଧୀନରେ ନଥିବାହେତୁ ନିଦ୍ରା ଅବସ୍ଥା ପ୍ରକୃତିର ଅଧୀନରେ ରହିଛି। ଏମାନଙ୍କୁ ନିଜ ଆୟତ୍ତରେ ରଖିବାର ସାଧନାକୁ ଧ୍ୟାନ କୁହାଯାଏ। ଯୋଗ ଦର୍ଶନରେ ଧ୍ୟାନର କାରିକା ବର୍ଣ୍ଣିତ ଅଛି। ଯୋଗ ଦର୍ଶନର ଆଲୋଚ୍ୟ ପ୍ରତ୍ୟୟ ସମ୍ବନ୍ଧୀୟ ଜ୍ଞାନ ଦ୍ୱାରା ଶ୍ରୀମନ୍ଦିର, ଦାରୁବିଗ୍ରହାଦି ନିର୍ମିତ ହୁଅନ୍ତି। ଧ୍ୟାନ ଯୋଗ ତତ୍ତ୍ୱରେ ଶ୍ରୀମନ୍ଦିରର ସମସ୍ତ ଦେବତାଙ୍କ ସ୍ୱରୂପ ନିରୂପଣ କରାଯାଏ। ପ୍ରତ୍ୟେକ ଅବତାରରେ ମଧ୍ୟ ମହାପ୍ରଭୁ ଯୋଗ ଶିକ୍ଷା କରିବାର ପ୍ରମାଣ ରହିଛି। ସତ୍ୟଯୁଗରେ ଭଗବାନ ବିଷ୍ଣୁ ଶହେଯୁଗ ପର୍ଯ୍ୟନ୍ତ ଧ୍ୟାନ ମାଧ୍ୟମରେ ତପସ୍ୟା କରିଥିଲେ। ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କୁ ବ୍ରହ୍ମର୍ଷି ବଶିଷ୍ଠ ଯୋଗଶିକ୍ଷା ଦେଇଥିଲେ। ଦ୍ୱାପରରେ ଭଗବାନ ଶ୍ରୀକୃଷ୍ଣ ଯୋଗଜ୍ଞାନ ହାସଲ କରି ଯୋଗେଶ୍ୱର ଭାବରେ ଖ୍ୟାତି ଅର୍ଜନ କରିବା ପରେ ଅର୍ଜୁନଙ୍କୁ ଯୋଗତତ୍ତ୍ୱ ଉପଦେଶମାନ ପ୍ରଦାନ କରିଥିଲେ। କଳିଯୁଗରେ କର୍ମପ୍ରାଧାନ୍ୟ ହେତୁ କାର୍ଯ୍ୟର କୁଶଳତାକୁ ହିଁ ଯୋଗ କୁହାଯାଏ। ଶ୍ରୀମଦ୍ ଭଗବତ ଗୀତାରେ କଳିଯୁଗ ମାନବକୁ ସଦ୍‌ଜ୍ଞାନ ଦେବା ଉଦ୍ଦେଶ୍ୟରେ ଯୋଗର ସଂଜ୍ଞା ନିରୂପଣ କରାଯାଇଛି, 'ଯୋଗଃ କର୍ମସୁ କୌଶଳମ୍' ।

ଏହି ସମସ୍ତ ପ୍ରମାଣରୁ ଶ୍ରୀଜଗନ୍ନାଥ ହିଁ ଚତୁର୍ଦ୍ଧାମୂର୍ତ୍ତି ରୂପରେ ଓ ଯୋଗାରୂଢ଼ ଅବସ୍ଥାରେ ଦର୍ଶନ ଦିଅନ୍ତି। ଯୋଗ ମାଧ୍ୟମରେ ହିଁ ଜୀବାତ୍ମା (ଭକ୍ତ) ଓ ପରମାତ୍ମା (ଭଗବାନ)ଙ୍କର ସମ୍ପର୍କ ଦୃଢ଼ୀଭୂତ ହୁଏ। ଯେପରି ନଳାନର୍ଦ୍ଦମାଦି ଦୁଷିତବସ୍ତୁ ବିଶାଳ ସାଗରରେ ମିଶିବା ପରେ ନିଜର ଅସ୍ତିତ୍ୱକୁ ହରାଇ ସମୁଦ୍ରରେ ଲୀନ ହୋଇ ପବିତ୍ର ହୋଇଯାଏ, ସେହିପରି ମାନବ ପାପରେ ଘାଂଟିହୋଇ ମଧ୍ୟ ଭକ୍ତିମାଧ୍ୟମରେ ଭଗବାନଙ୍କର ସାନ୍ନିଧ୍ୟଲାଭ କଲେ ନିଜର ପାପସତ୍ତ୍ୱାକୁ ହରାଇ ମୁକ୍ତିଲାଭ କରେ। ଭକ୍ତିର ପରାକାଷ୍ଠା ନେଇ ଏକାଗ୍ର ଚିତ୍ତରେ ପ୍ରଭୁଙ୍କୁ ଧ୍ୟାନପୂର୍ବକ ଅନୁଭୂତିରେ ଆଣିବା ହିଁ ପ୍ରକୃତ ଭକ୍ତି। ଗବେଷଣା ମାଧ୍ୟମରେ ପ୍ରଭୁଙ୍କୁ ପାଇ ହୁଏନା। ଭକ୍ତିମାଧ୍ୟମରେ ଭକ୍ତ ଭଗବାନଙ୍କର ଦର୍ଶନଲାଭ କରି ମୁକ୍ତିଲାଭ କରିବା ବିଧେୟ।

ଯୋଗପଲ୍ଲବ, ଯୋଗନିକେତନ
ଗୁଡ଼ିଆସାହି, ପୁରୀ–୧





# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

ପରୀକ୍ଷିତ ମିଶ୍ର

ଅନନ୍ତ କୋଟି ବ୍ରହ୍ମାଣ୍ଡ ଅଧିପତି ଶ୍ରୀଜଗନ୍ନାଥ ପୁରୁଷୋତ୍ତମ କ୍ଷେତ୍ରରେ ମାନବୀୟ ତଥା ଅଲୌକିକ ଲୀଳା ପ୍ରଦର୍ଶନ କରୁଛନ୍ତି ଶ୍ରୀମନ୍ଦିରର ରତ୍ନବେଦୀରେ ବିରାଜମାନ ହୋଇ । ବାର ମାସରେ ତେର ପର୍ବ ପାଳନ ମଧ୍ୟରେ ଘୋଷଯାତ୍ରା ଏକ ବିଶ୍ୱ ପ୍ରସିଦ୍ଧ ବିଶାଳ ପର୍ବ । ଏହି ଯାତ୍ରାରେ ମହାପ୍ରଭୁ ମହାଆଡ଼ମ୍ବରେ ରତ୍ନ ସିଂହାସନର ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ବଡ଼ଦାଣ୍ଡକୁ ଆସନ୍ତି । ଭବ୍ୟ ରଥ ଉପରୁ ଜଗତ ଜନଙ୍କୁ ସଦୟ ଦର୍ଶନ ଦିଅନ୍ତି । ସେ ଦର୍ଶନ ଚକ୍ଷୁକୁ ପବିତ୍ର କରେ । ସମସ୍ତ ପାପତାପ ଧୌତ କରେ । ଏହି ନବଦିନ ଯାତ୍ରାରେ ମହାପ୍ରଭୁ ବର୍ଣ୍ଣାଢ଼୍ୟ ଯାତ୍ରାରେ ଜନ୍ମବେଦୀଙ୍କୁ ଉଲ୍ଲସିତ ଚିତ୍ତରେ ଗମନ କରନ୍ତି ଏବଂ ପତିତପାବନ ନାମକୁ ସାର୍ଥକ କରନ୍ତି । ସେ ଭାବର ଦେବତା, ନାମ ଭାବଗ୍ରାହୀ, ଉତ୍ତମ ଭାବରେ ବନ୍ଧା । ସେ ଅନ୍ତରର ସ୍ୱାମୀ, ତେଣୁ ଅନ୍ତର୍ଯ୍ୟାମୀ । ସାଧୁ ସନ୍ଥ ଯୋଗୀ ମୁନି ଋଷି ଏବଂ ଶ୍ରଦ୍ଧାଳୁ ଭକ୍ତଙ୍କ ପ୍ରତି ତାଙ୍କ ହୃଦୟ ଅତ୍ୟନ୍ତ କୋମଳ । ଯିଏ ଯେପରି ଆଚରଣ ପ୍ରଦର୍ଶନ କରନ୍ତି, ସେହିପରି ଫଳ ପାଆନ୍ତି । ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜୁନଙ୍କୁ କହିଛନ୍ତି – ହେ ଅର୍ଜୁନ ! ଯେଉଁ ଭକ୍ତମାନେ ମୋତେ ଯେଉଁପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ସ୍ମରଣ କରେ, କାରଣ ମନୁଷ୍ୟମାନେ ସବୁ ପ୍ରକାରେ ମୋର ହିଁ ମାର୍ଗ ଅନୁସରଣ କରନ୍ତି ।



ତାଙ୍କର କ୍ଷେତ୍ର ଏବଂ ନାମ ଉଭୟ ପୁରୁଷୋତ୍ତମ । ସେ ଆଦ୍ୟ ନୃସିଂହ, ନୀଳମାଧବ, ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତି । ସେ ଅନାଦି, ଅନନ୍ତ, ଅବ୍ୟୟ, ଅବ୍ୟକ୍ତ, ଅସୀମ । ଶ୍ରୀଜଗନ୍ନାଥ ସ୍ୱୟଂ ଅବତାରୀ ପୂର୍ଣ୍ଣବ୍ରହ୍ମ ଆଗମ ନିଗମର ଈଶ୍ୱର, ସୃଷ୍ଟି ସ୍ଥିତି ପ୍ରଳୟର କାରଣ । ଖଳ, ହିଂସ୍ର, ଦ୍ରୋହୀ, ବିଧର୍ମୀ ଏବଂ ଅସୁରମାନଙ୍କୁ ବିକଟରୂପ ଧାରଣ କରି ସଂହାର କରନ୍ତି ।

ସ୍କନ୍ଦ ପୁରାଣ ଉପାଖ୍ୟାନ ଅନୁଯାୟୀ ପୁରୁଷୋତ୍ତମ କ୍ଷେତ୍ରର ନୀଳକନ୍ଦରରେ ବିରାଜିତ ନୀଳମାଧବଙ୍କୁ ଦର୍ଶନ କଲେ ମୋକ୍ଷ ପ୍ରାପ୍ତି ହୁଏ । ଏଠାରେ ଯମ ଦଣ୍ଡ ଲାଗେ ନାହିଁ । ଏହି ଦୀପ୍ତିମନ୍ତ ଇନ୍ଦ୍ରନୀଳମଣି ପ୍ରତିମା ଅତ୍ୟନ୍ତ ମନୋହର, କିନ୍ତୁ ଦର୍ଶନ ଦୁର୍ଲଭ । ନୀଳମାଧବଙ୍କୁ ନିଶାକାଳରେ ଦେବତାମାନେ ପୂଜା କରୁଥିଲେ । ପ୍ରଭୁଙ୍କ ସ୍ଥାନକୁ କେବଳ ଶବର ରାଜା ବିଶ୍ୱାବସୁଙ୍କ ପ୍ରବେଶ ଥିଲା । ପରମ ବିଷ୍ଣୁଭକ୍ତ ଏବଂ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମନରେ ଉତ୍ସୁକତା ଜାତହେଲା । ସେ ପୁରୁଷୋତ୍ତମ କ୍ଷେତ୍ର ଏବଂ ମହାବିଷ୍ଣୁଙ୍କ ଠାବ





କରିବାକୁ ଚତୁଃପାର୍ଶ୍ୱକୁ ଦୂତ ପ୍ରେରଣ କଲେ । ଏହି କାମରେ ପଠାଇଲେ ତାଙ୍କ ରାଜପୁରୋହିତଙ୍କ ଅନୁଜ ବିଦ୍ୟାପତିଙ୍କୁ । ସୌଭାଗ୍ୟକୁ ବିଦ୍ୟାପତି ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ପଦାର୍ପଣ କରି ବିଶ୍ୱାବସୁଙ୍କ ସହିତ ବନ୍ଧୁତା ସ୍ଥାପନ କଲେ । ଶେଷରେ ସେ ମହାପ୍ରଭୁ ନୀଳମାଧବଙ୍କୁ ଦର୍ଶନ କରିବାକୁ ସଫଳ ହେଲେ । ସେ ଏହି ବାର୍ତ୍ତା ନେଇ ଅବନ୍ତୀ ନଗରକୁ ଫେରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ରାଜା ପାଟମନ୍ତ୍ରୀ, ସୈନ୍ୟ ସାମନ୍ତ ଏବଂ ଦେବର୍ଷି ନାରଦଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିବା ବେଳକୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ଏକ ଭୀଷଣ ବାଲୁକା ଝଡ଼ରେ । ବିଷାଦଗ୍ରସ୍ତ ରାଜାଙ୍କୁ ଦେବର୍ଷି ଆଶ୍ୱାସନା ଦେଲେ । ତାଙ୍କରି ଉପଦେଶରେ ରାଜା ଏକ ସହସ୍ର ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରାଇଲେ । ସେ ମଧ୍ୟ ନୀଳ କନ୍ଦରରେ ଭୟଙ୍କର ରୂପୀ ନୃସିଂହଙ୍କୁ ଦର୍ଶନ କଲେ । ରାଜା ଏକ ମନୋରମ ମନ୍ଦିର ନିର୍ମାଣ କରି ଏଥିରେ ନୃସିଂହ ମୂର୍ତ୍ତି ସ୍ଥାପନା କଲେ । ଦେବର୍ଷିଙ୍କ ଆଗ୍ରହରେ ନୃସିଂହଙ୍କ ସମ୍ମୁଖରେ ଏକ ହଜାର ବର୍ଷ ପର୍ଯ୍ୟନ୍ତ ଅଶ୍ୱମେଧ ଯଜ୍ଞ କର୍ମ ଅନୁଷ୍ଠିତ ହେଲା । ନୀଳକଣ୍ଠଙ୍କ ସମୀପରେ ମଧ୍ୟ ଏକ ସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହେଲା । ବିଭିନ୍ନ ଦେବତାଙ୍କ ନିକଟରେ ଯଜ୍ଞାନୁଷ୍ଠାନ ଅନ୍ତେ ପବିତ୍ର ମହୋଦଧି ତଟରେ ଦିବ୍ୟଦାରୁର ସନ୍ଧାନ ହେଲା, ଯାହାଙ୍କୁ ମହା ଆଡ଼ମ୍ବର ପୂର୍ଣ୍ଣ ପଟୁଆରରେ ଅଣାଗଲା । ରୁଦ୍ଧଦ୍ୱାର ଏବଂ ନିଷିଦ୍ଧଗୃହରେ ଏକ ବୃଦ୍ଧବର୍ଦ୍ଧକୀ (ଯିଏ ବିଷ୍ଣୁଙ୍କ ଅବତାର ବା ସ୍ୱୟଂ ବିଷ୍ଣୁ)ଙ୍କ ଦ୍ୱାରା ପ୍ରତିମା ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା, କିନ୍ତୁ ମାତ୍ର ପନ୍ଦର ଦିନରେ ଦ୍ୱାର ଉନ୍ମୁକ୍ତ କରିବାରୁ ଚତୁର୍ଦ୍ଧାମୂର୍ତ୍ତି ଅସଂପୂର୍ଣ୍ଣ ରୂପରେ ବିରାଜମାନ ହୋଇଥିବା ଦେଖାଗଲା । ସେ ଥିଲେ ସାକ୍ଷାତ ବ୍ରହ୍ମ ପ୍ରତିମା ଏବଂ ପୂର୍ଣ୍ଣତାର ପ୍ରତୀକ । ପୁରୁଷୋତ୍ତମ ଜଗନ୍ନାଥ ଶ୍ରୀକୃଷ୍ଣ ଏକ ଏବଂ ଅଭିନ୍ନ, ପରଂବ୍ରହ୍ମ । ଏହି ପରମାନନ୍ଦଙ୍କୁ ପାଇବା ପାଇଁ ଜୀବ ବ୍ୟାକୁଳ, କିନ୍ତୁ ସ୍ଥୂଳ ଶରୀର ଏହାକୁ ଜାଣିପାରେନି ।

ଚରାଚର ବିଶ୍ୱବ୍ରହ୍ମାଣ୍ଡ ପରିବ୍ୟାପ୍ତ ମହାବିଷ୍ଣୁ ଭଗବାନ ଜଗନ୍ନାଥଙ୍କ ସେବାଭକ୍ତି ପ୍ରେମରେ ଅବଗାହିତ ରାଜା ଇନ୍ଦ୍ରଦ୍ୟୁମ୍ନ, ଶବର ମୁଖ୍ୟ ବିଶ୍ୱାବସୁ, ଆଚାର୍ଯ୍ୟ ବିଦ୍ୟାପତି ଏବଂ ପରବର୍ତ୍ତୀ ସମୟରେ ଶଙ୍କର, ରାମାନୁଜ, ନାନକ, କବୀର, ଗଣପତି ଭଟ୍ଟଙ୍କ ପରି ଧର୍ମାତ୍ମାମାନେ ଅମର ହୋଇଗଲେ । ପ୍ରଭୁ ଶ୍ରୀଚୈତନ୍ୟ ବୈଷ୍ଣବ ତତ୍ତ୍ୱର ମହାନାୟକ ଯିଏ ଦୀର୍ଘ ବର୍ଷ କାଳ ଶ୍ରୀକ୍ଷେତ୍ରରେ ମହାନାମ ଗାଇ ଆତ୍ମ ବିଭୋର ହୋଇ ପଡ଼ୁଥିଲେ ।

**ସହାୟକ ଗ୍ରନ୍ଥ**


୧. ଶ୍ରୀମଦ୍ଭଗବଦ୍ ଗୀତା
୨. ବାମଦେବ ସଂହିତା
୩. ନୀଳାଦ୍ରି ମହୋଦୟଃ
୪. ଉତ୍କଳ ପ୍ରସଙ୍ଗ ଜୁଲାଇ ୨୦୦୩
୫. ଭାରତୀୟ ଦେବଦେବୀ ଓ ଶ୍ରୀଜଗନ୍ନାଥ– ଲେଖକ: ପୂର୍ଣ୍ଣେନ୍ଦୁ କୁମାର ନନ୍ଦ ।


ରାଜେନ୍ଦ୍ର ନଗର, କଟକ





# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ

ସୁରେଶ କୁମାର ପ୍ରଧାନ

ସର୍ବଧର୍ମ-ଦର୍ଶନ-ସମନ୍ୱୟର ପ୍ରତିଭୂ ଶ୍ରୀଜଗନ୍ନାଥ ହିଁ ଅନନ୍ତକୋଟି ବ୍ରହ୍ମାଣ୍ଡର ସ୍ରଷ୍ଟା ଓ ତ୍ରେତିଶକୋଟି ଦେବତାଙ୍କ ମଉଡ଼ମଣି । ସେ ସର୍ବାନ୍ତର୍ଯ୍ୟାମୀ, ସର୍ବବ୍ୟାପୀ ଓ ସର୍ବଶକ୍ତିମାନ ହୋଇଥିଲେ ହେଁ, ତତ୍ତ୍ୱ ତଃ ସେ ନିର୍ଗୁଣ-ନିରାକାର ହୋଇ ମଧ୍ୟ ସଗୁଣ, ସାକାର ଦାରୁ ମଧ୍ୟରେ ଅବିନଶ୍ୱର 'ଦାରୁବ୍ରହ୍ମ' ରୂପେ ବଡ଼ଦେଉଳରେ ବିରାଜିତ । ଦାରବୀ ଲୀଳାର ଦ୍ରଷ୍ଟା ହୋଇ ସେ ମଧ୍ୟ ଶୂନ୍ୟ ଓ ମହାଶୂନ୍ୟର ଅତୀତ ଶୂନ୍ୟବ୍ରହ୍ମ- ନିରାକାର ସେ ତ ଶୂନ୍ୟରେ, ରୂପ ଧରିଛି ମାନବ ଭିତରେ । ଦାରୁ ତ୍ରିମୂର୍ତ୍ତି ପୂର୍ଣ୍ଣ ଅବତାର, ତ୍ରିକାଳ ତ୍ରିଗୁଣ ସାକାର । ସେ ପରମ ପୁରୁଷ ପରଂବ୍ରହ୍ମ, ସେ ଦାରୁରୂପୀ ଦାରୁବ୍ରହ୍ମ । ସେ ଅଚିନ୍ତ୍ୟ, ଅପ୍ରକାଶ୍ୟ ଓ ସର୍ବବ୍ୟାପୀ ହୋଇଥିବାରୁ ସେ ହିଁ 'ବିଷ୍ଣୁ' । ସେ ମଙ୍ଗଳମୟ ହେତୁ 'ଶିବ' । ସେ ସର୍ବୋତ୍କୃଷ୍ଟ ଲକ୍ଷଣଯୁକ୍ତ ହେତୁ 'ଲକ୍ଷ୍ମୀ' । ସେ ଅଖିଳ ପ୍ରଜାଙ୍କ ପାଳକ ହେତୁ 'ପ୍ରଜାପତି' । ସେ ଐଶ୍ୱର୍ଯ୍ୟଶାଳୀ ହେତୁ 'ଇନ୍ଦ୍ର' । ଅସୀମ ବଳଶାଳୀ ହେତୁ ବରୁଣ । ସେ ସଂସାରକୁ କଳନ କରୁଥିବାରୁ 'କାଳୀ' । ଠିକ୍ ସେହିପରି ସେ ସଚରାଚର ବ୍ରହ୍ମାଣ୍ଡକୁ ଜ୍ୟୋତି ପ୍ରଦାନକାରୀ ହେତୁ 'ଜ୍ୟୋତିବ୍ରହ୍ମ' ବା ସୂର୍ଯ୍ୟଦେବ । ଦାରୁବ୍ରହ୍ମ ସକଳ ଘଟରେ ଜ୍ୟୋତିବ୍ରହ୍ମ ରୂପରେ ବିରାଜିତ । ଅତଏବ



ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଓ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ ଏକ ଓ ଅଭିନ୍ନ । ଶୂନ୍ୟବ୍ରହ୍ମଙ୍କ ସତ୍ତା ସାକାର ରୂପରେ ଦାରୁବ୍ରହ୍ମ ଓ ତଦ୍ ଜ୍ୟୋତି ରୂପରେ ପ୍ରକାଶମାନ ଦେବତା ରୂପରେ ଆବିର୍ଭୂତ । ମହାପୁରୁଷ ଅଚ୍ୟୁତାନନ୍ଦ 'ଦାରୁବ୍ରହ୍ମ' ଓ 'ଜ୍ୟୋତିବ୍ରହ୍ମ'ଙ୍କ ଅଭେଦତ୍ୱ ଅବଲୋକନ କରି ଗାଇଛନ୍ତି-

ବ୍ରହ୍ମ ଏକାକ୍ଷର ସେ ଯେ ଆପେ ନିରଞ୍ଜନ
ଦେହରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ
ଭଗତ ଭାବରେ ବିଜେ ଦାରୁବ୍ରହ୍ମ ରାଶି
ଅଲେଖ ଭବନୁଂ ଖସି ଜ୍ୟୋତିରୂପ ଦୃଶି ।

ନାଶଶୀଳ ସଂସାରର ଅବିନଶ୍ୱର ଶାଶ୍ୱତ ସତ୍ତା ହିଁ ବ୍ରହ୍ମଦାରୁ ଶ୍ରୀଜଗନ୍ନାଥ । ଭବମାନବ ସର୍ବପ୍ରଥମେ ପ୍ରକୃତି ମଧ୍ୟରେ ଦାରୁ ବା ବୃକ୍ଷକୁ ଉପାସନା କରିବା ସହିତ ସକଳ ଶକ୍ତିର ଆଧାର ସୂର୍ଯ୍ୟଦେବଙ୍କୁ 'ଜ୍ୟୋତିବ୍ରହ୍ମ' ରୂପେ ପୂଜାର୍ଚ୍ଚନା କଲା । ଏ ଦୃଷ୍ଟିରୁ ବିଚାର କଲେ ଆଦିଦେବତା ଶ୍ରୀ ଦାରୁବ୍ରହ୍ମଙ୍କ ଅଭିନ୍ନ ରୂପ ହିଁ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ ଶ୍ରୀଜଗନ୍ନାଥଙ୍କ କୋଟି ଆକର୍ଷଣରେ ସଂସାର ଚାଳିତ ହେଉଥିବା ବେଳେ ସୂର୍ଯ୍ୟଦେବଙ୍କ ମହାକର୍ଷଣ ବଳରେ ସକଳ ଗ୍ରହ-ନକ୍ଷତ୍ର ନିୟନ୍ତ୍ରିତ ଓ ବିଶ୍ୱବ୍ରହ୍ମାଣ୍ଡ ଆଲୋକିତ । ଦାରୁବ୍ରହ୍ମଙ୍କ ତେଜୋମୟ ପ୍ରକାଶ ରୂପେ



ସୂର୍ଯ୍ୟଦେବତା ଭାରତୀୟ ଆଧ୍ୟାତ୍ମିକ ପରମ୍ପରା ଓ ଜଗନ୍ନାଥ ସଂସ୍କୃତିର ଅବିଚ୍ଛିନ୍ନ ଧାରା ରୂପେ ଗ୍ରହଣୀୟ । ଏ ଦୃଷ୍ଟିରେ ଶ୍ରୀମନ୍ଦିରରେ ଅନୁଷ୍ଠିତ ପର୍ବପର୍ବାଣି ଓ ଉପାସନାରେ ସୂର୍ଯ୍ୟୋପାସନା ସ୍ୱତନ୍ତ୍ର ସ୍ଥାନ ଅଳଙ୍କୃତ କରିପାରିଛି । ସୌର ଉପାସକମାନେ 'ଜ୍ୟୋତିବ୍ରହ୍ମ'ଙ୍କୁ ଦାରୁବ୍ରହ୍ମଙ୍କ ଭିତରେ ଦର୍ଶନ କରି କୃତାର୍ଥ ହୋଇଥାନ୍ତି । ମହନୀୟତା ହେଉଛି ବୌଦ୍ଧ, ଜୈନ, ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ, ସୌର, ଶିଖ ଆଦି ସକଳ ସମ୍ପ୍ରଦାୟର ଧର୍ମାବଲମ୍ବୀ ଆପଣା ଆପଣା ଦେବତା ବା ଇଷ୍ଟଙ୍କୁ ଜଗନ୍ନାଥଙ୍କ ଭିତରେ ଦର୍ଶନ କରି ଧନ୍ୟ ହୋଇଛନ୍ତି ।

ପରଂବ୍ରହ୍ମଙ୍କ ତେଜୋମୟ ବା 'ଜ୍ୟୋତି ରୂପ' ହିଁ ସୂର୍ଯ୍ୟଦେବ । ବ୍ରହ୍ମ ଯେଭଳି ସର୍ବବ୍ୟାପୀ, ଠିକ୍ ସେହିପରି ବ୍ରହ୍ମ ଜ୍ୟୋତି ମଧ୍ୟ ସର୍ବବ୍ୟାପୀ । ଏ ସମ୍ପର୍କରେ ପୁରାଣରେ ବର୍ଣ୍ଣନା ରହିଛି–

'ଜୟ ହେ ଛାୟା ରମଣ ଜଗତ ଗୋସାଇଁ
ଧର୍ମରୂପେ ପୃଥିବୀରେ ଅଛ ଉଦ ହୋଇ ॥
ତବ ତେଜ ପାଇ ଦେବ ତ୍ରିଲୋକ ଜୀବିତ
ତବ ବିହୀନେ ସଂସାର ହୁଏ ରସାଗତ ॥
ତ୍ରିଭୁବନ କର୍ତ୍ତାନାଥ ଅତୁଳ ବିଭୂତି
ସର୍ବଦେବଙ୍କ ଅଗ୍ରଣୀ ସର୍ବଗ୍ରହ ପତି ॥

ଦାରୁବ୍ରହ୍ମଙ୍କ ଦାରବୀ ଲୀଳାର ଶ୍ରେଷ୍ଠ ଗଣପର୍ବ ହେଲା ରଥଯାତ୍ରା । ପ୍ରଭୁ ରଥାରୂଢ଼ ହୋଇ ଜଗତବାସୀଙ୍କୁ ଦର୍ଶନ ଦିଅନ୍ତି । ସେ ଚତୁର୍ଦ୍ଧାମୂର୍ତ୍ତିରେ ଅବସ୍ଥାନ କଲାବେଳେ ଶ୍ରୀସୁଦର୍ଶନ ଓ ରଥଯାତ୍ରାରେ ରଥ ଉଭୟ ସୂର୍ଯ୍ୟଦେବଙ୍କ ଚକ୍ର ଓ ରଥ ସହ ବିଶେଷ ରୂପେ ସମ୍ପର୍କିତ । ସତ୍ୟଯୁଗରେ 'ଚକ୍ର' ବିଷ୍ଣୁଙ୍କ ହସ୍ତରେ, ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ହସ୍ତରେ ଶୋଭାବର୍ଦ୍ଧନ କରୁଥିବାବେଳେ କଳିଯୁଗରେ ଶ୍ରୀଜଗନ୍ନାଥଙ୍କ ହସ୍ତରେ 'ସୁଦର୍ଶନ ଚକ୍ର' ନାମରେ ମହିମାନ୍ୱିତ । ସୂର୍ଯ୍ୟଦେବ 'ଚକ୍ର'ର ପ୍ରତୀକ ହୋଇଥିବାବେଳେ ଦାରୁବ୍ରହ୍ମ ହିଁ 'ଚକ୍ରଧାରୀ' । ଶାସ୍ତ୍ର ପୁରାଣରେ ଶ୍ରୀଜଗନ୍ନାଥଙ୍କ ବିଷ୍ଣୁ ରୂପସହ ସୂର୍ଯ୍ୟଦେବଙ୍କ ଅଭିନ୍ନତ୍ୱ ବିଶେଷ ଆଲୋଚିତ । ଏ ଦୃଷ୍ଟିରୁ ଜଗନ୍ନାଥ ଧର୍ମ, ସଂସ୍କୃତି ଓ ପରମ୍ପରାରେ ସୂର୍ଯ୍ୟ ଉପାସନା ଏକ ଅବିଚ୍ଛିନ୍ନ ଅଙ୍ଗ ହୋଇ ଏକ ସମନ୍ୱୟାତ୍ମକ ଧାରା ସୃଷ୍ଟି କରିପାରିଛି ।

ଶ୍ରୀମନ୍ଦିରରେ ସୂର୍ଯ୍ୟଙ୍କ ଉପାସନା ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଥିବାରୁ ଶ୍ରୀମନ୍ଦିରରେ ଲକ୍ଷ୍ମୀ ମନ୍ଦିର ପୂର୍ବକୁ କୂର୍ମ ପ୍ରାଚୀର ନିକଟରେ ସୂର୍ଯ୍ୟ ନାରାୟଣ ମନ୍ଦିର ବିଦ୍ୟମାନ । ପ୍ରତ୍ୟହ ସକାଳ ୮.୩୦ରେ ଶ୍ରୀମନ୍ଦିର ଭୋଗ ସୂର୍ଯ୍ୟଦେବଙ୍କଠାରେ ଲାଗି ହୁଏ । ଏଥିରେ ଦୁଇଗୋଟି କୋରା ଓ ଅନ୍ନ ଭୋଗ ଦିଆଯାଇଥାଏ । ସୂର୍ଯ୍ୟଦେବଙ୍କ ସ୍ୱତନ୍ତ୍ର ରୋଷଘର ମଧ୍ୟ ରହିଛି । ପ୍ରତ୍ୟହ ରବିବାର ଦିନ ସୂର୍ଯ୍ୟନାରାୟଣଙ୍କ ଦୁଇଥର ସ୍ନାନ ହୋଇଥାଏ । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣରେ ମହାସ୍ନାନ ଅନୁଷ୍ଠିତ ହୁଏ । ମାଘ ଶୁକ୍ଳ ସପ୍ତମୀ ତିଥିରେ ସୂର୍ଯ୍ୟଦେବ ପ୍ରଥମ ରଥାରୋହଣ କରନ୍ତି । ଚୈତ୍ର ଗୁଣ୍ଡିଚାରେ ସୂର୍ଯ୍ୟଙ୍କ ପ୍ରତିମା ଜଗମୋହନକୁ ବିଜେ କରନ୍ତି । ସପ୍ତପୁରୀ ଅମାବାସ୍ୟାରେ ସାତଗୋଟି ପୁରୀ ଲାଗି ହୋଇଥାଏ । କୁମାର ପୂର୍ଣ୍ଣିମା, ଓଢ଼ଣ ଷଷ୍ଠୀ ଓ ବସନ୍ତ ପଞ୍ଚମୀରେ ନୂତନ ବସ୍ତ୍ର ଲାଗି ହୁଏ । ଶ୍ରୀମନ୍ଦିର ଦୈନିକ ପୂଜାବିଧିରେ ସୂର୍ଯ୍ୟୋପାସନା ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସ୍ନାନଯାତ୍ରା ଓ ଘୋଷଯାତ୍ରା ସୂର୍ଯ୍ୟଙ୍କ ଗତି ଅନୁସାରେ ଅନୁଷ୍ଠିତ ହେବା ବିଧି ରହିଛି । ଦକ୍ଷିଣାୟନ କର୍କଟ ସଂକ୍ରାନ୍ତିରେ ଶ୍ରୀଜୀଉମାନଙ୍କ ଦକ୍ଷିଣାୟନ ବନ୍ଦାପନା ହୁଏ ।

ସୂର୍ଯ୍ୟଦେବ ଉତ୍ତର ଦିଗରୁ ପ୍ରତ୍ୟାବର୍ତ୍ତନ କଲେ ଅନୁଷ୍ଠିତ ହୁଏ ବାହୁଡ଼ା ଯାତ୍ରା । ଶ୍ରୀମନ୍ଦିର ସେବା ନୀତିରେ ସୂର୍ଯ୍ୟ ଉପାସନାର ପ୍ରଚଳନ ଥିବାରୁ ପ୍ରଥମେ ସୂର୍ଯ୍ୟପୂଜା ଅନୁଷ୍ଠିତ ହୁଏ । ଶ୍ରୀମନ୍ଦିରର ମଧ୍ୟାହ୍ନକାଳୀନ ପୂଜା ସମୟରେ ଜଗନ୍ନାଥଙ୍କୁ 'ବ୍ରହ୍ମଜ୍ୟୋତି' ରୂପେ ଧ୍ୟାନ କରାଯାଇ ଭକ୍ତି ନୈବେଦ୍ୟ ଅର୍ପିତ ହୋଇଥାଏ ।

ସୌରମଣ୍ଡଳରେ ଅବସ୍ଥିତ ନବଗ୍ରହଙ୍କ ଅନୁସାରେ ଦାରୁବ୍ରହ୍ମଙ୍କ ନବଦିନାତ୍ମକ ଯାତ୍ରା ଅନୁଷ୍ଠିତ ହୁଏ । ମହନୀୟତା ଏହିକି ଘୋଷଯାତ୍ରା ସମୟରେ 'ଦାରୁବ୍ରହ୍ମ' ଜ୍ୟୋତିବ୍ରହ୍ମ ରୂପରେ



ବିରାଜମାନ କରି ଅଗଣିତ ଭକ୍ତ ଓ ଦର୍ଶନାର୍ଥୀଙ୍କୁ କୃତାର୍ଥ କରନ୍ତି । ଘୋଷଯାତ୍ରା ଓ ବାହୁଡ଼ାଯାତ୍ରା ସମୟରେ ଶ୍ରୀଜୀଉ ରଥାରୂଢ଼ ହେବା ପୂର୍ବରୁ ତାଙ୍କ ମସ୍ତକରେ ଟାହିଆ ଶୋଭାପାଏ । ଉକ୍ତ ଟାହିଆ ହିଁ ସୂର୍ଯ୍ୟଙ୍କ ଜ୍ୟୋତିମଣ୍ଡଳର ପ୍ରତୀକ । ସୂର୍ଯ୍ୟଦେବଙ୍କୁ ମଧ୍ୟ ଦାରୁବ୍ରହ୍ମଙ୍କ ଚକ୍ଷୁ ବୋଲି ଅଭିହିତ କରାଯାଇଛି । ସେହିପରି ସ୍କନ୍ଦପୁରାଣରେ ସୂର୍ଯ୍ୟଙ୍କୁ ନୃସିଂହ ବୋଲି କୁହାଯାଇଛି । ସୂର୍ଯ୍ୟଙ୍କ ଅସ୍ତକାଳୀନ ଅବସ୍ଥାକୁ ବିଷ୍ଣୁଙ୍କ ସହ ତୁଳନା କରାଯାଇଥିବାବେଳେ ମଧ୍ୟାହ୍ନ ସମୟକୁ ମହେଶ୍ୱର ଓ ଉଦୟ କାଳକୁ ବ୍ରହ୍ମଦେବଙ୍କ ତତ୍ତ୍ୱ ସହ ତୁଳନା କରାଯାଇଛି ।

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ମଧ୍ୟ ମହାକାଳର ପ୍ରତୀକ । ଏ ଦୃଷ୍ଟିରେ ସେ କାଳାତୀତ ଓ କାଳ ସର୍ବଦା ତାଙ୍କ ଇଙ୍ଗିତରେ ନିୟନ୍ତ୍ରିତ ।

'କାଳରୂପିଣମ୍'ଙ୍କ ହସ୍ତରେ ଶୋଭିତ ସ୍ତମ୍ଭକାର ସୁଦର୍ଶନ ମଧ୍ୟ କାଳର ପ୍ରତୀକ । ଶ୍ରୀମନ୍ଦିର ଚୂଡ଼ାରେ ଶୋଭିତ ନୀଳଚକ୍ର ଚକ୍ରାକାର ଧାରଣ କରି ମହାକାଳର ସଙ୍କେତ ମଧ୍ୟ ପ୍ରଦାନ କରିଅଛି । ଏ ଦୃଷ୍ଟିରୁ 'ଶ୍ରୀସୁଦର୍ଶନ' ଓ 'ନୀଳଚକ୍ର' ସୂର୍ଯ୍ୟଦେବତାଙ୍କ କାଳରୂପର ମହାନ୍ ପ୍ରତୀକ । 'ଅଗ୍ନିପୁରାଣ' ଅନୁସାରେ ରାଶିଚକ୍ରରେ ସୂର୍ଯ୍ୟଦେବ ଯେତେବେଳେ ମୀନରାଶିରେ ଅବସ୍ଥାନ କରନ୍ତି ତତ୍କାଳେ ସେ ବିଷ୍ଣୁ ନାମରେ ମହିମାନ୍ୱିତ ହୋଇଥାନ୍ତି ଏବଂ ତତ୍‌ବର୍ଣ୍ଣ 'ନୀଳ' ବର୍ଣ୍ଣ ବୋଲି କୁହାଯାଇଥାଏ ।

ସୂର୍ଯ୍ୟଦେବଙ୍କ ସହିତ 'ରଥ'ର ସମ୍ପର୍କ ଅତୀବ ନିବିଡ଼ । ସୂର୍ଯ୍ୟଦେବ ସପ୍ତଅଶ୍ୱ ସଜ୍ଜିତ ରଥରେ ବ୍ୟୋମପଥରେ ଯାତାୟାତ କରି ସଂସାର ପାଳନ କରିଥିବାଭଳି, ଦାରୁବ୍ରହ୍ମ 'ଏକ ଚକ୍ର ରଥାରୂଢ଼' ହୋଇ ଜଗତର କଲ୍ୟାଣ କାମନା କରନ୍ତି ।

'ଜ୍ୟୋତିବ୍ରହ୍ମ' ସୂର୍ଯ୍ୟଙ୍କ ସପ୍ତଅଶ୍ୱ ରଥ ସହ ଦାରୁବ୍ରହ୍ମଙ୍କ ରଥ ବେଶ୍ ତୁଳନୀୟ । ତତ୍ତ୍ୱ ତଃ ସୂର୍ଯ୍ୟଙ୍କ ସପ୍ତରଥ ରାଶିଚକ୍ରର ସାତବାରକୁ ପ୍ରତିନିଧିତ୍ୱ କରିଥାଏ । 'ଋଗ୍‌ବେଦ' ୬।୪୭।୨୮ରେ ରଥକୁ ସୂର୍ଯ୍ୟଙ୍କ ଗର୍ଭ ବୋଲି କୁହାଯାଇଥାଏ । 'ବରାହପୁରାଣ'ରେ ସୂର୍ଯ୍ୟଦେବଙ୍କ ସପ୍ତନାମ ମଧ୍ୟରୁ 'ଜଗନ୍ନାଥ' ଅନ୍ୟତମ । ରଥତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ 'ରଥଯାତ୍ରା' ହେଉଛି 'ଜୀବ' ଓ 'ପରମ'ର ମହାମିଳନ । କଠୋପନିଷଦରେ ମଧ୍ୟ ଆତ୍ମାକୁ ରଥୀ ଓ ଶରୀରକୁ ଏକ ରଥ ବୋଲି କୁହାଯାଇଅଛି । ରଥରେ ସାରଥୀ ହେଉଛି ବୁଦ୍ଧି, ରଜ୍ଜୁ ବା ଦଉଡ଼ି ହେଉଛି ମନ । ଇନ୍ଦ୍ରିୟଗୁଡ଼ିକ ହେଉଛନ୍ତି ଅଶ୍ୱ । ଶରୀର ମଧ୍ୟରେ ଆତ୍ମା ସବାର ହେବାଭଳି, ରଥ ଉପରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ସବାର ହୋଇ ଲୀଳା ସରଂଚନା କରିଥାଆନ୍ତି ।

ସ୍ମରଣାତୀତ କାଳରୁ ସୌରସଂସ୍କୃତି ସନାତନ ସଂସ୍କୃତି (ହିନ୍ଦୁଧର୍ମ)ର ଅବିଚ୍ଛିନ୍ନ ଧାରା ରୂପେ ସୂର୍ଯ୍ୟୋପାସନାର ପ୍ରସାର ପ୍ରଚାର ଘଟାଇ ସୂର୍ଯ୍ୟଦେବଙ୍କ ମହିମାକୁ ଜନମାନସରେ ପ୍ରଭାବିତ କରିପାରିଛି । ଅତଏବ 'ଦାରୁବ୍ରହ୍ମ'ଙ୍କ ପ୍ରକାଶ୍ୟ ରୂପ ହିଁ 'ଜ୍ୟୋତିବ୍ରହ୍ମ' ଯାହା ସକଳ ପ୍ରାଣୀଙ୍କୁ ଲାଳନ-ପାଳନ କରି ଜଗତକୁ ଜ୍ୟୋତି ଦାନ କରୁଅଛି ।

ଖୁଣ୍ଟୁଣୀ, ଆଠଗଡ଼, କଟକ





# ଭକ୍ତ ବଳରାମଙ୍କ ଭକ୍ତି ଅପାର

**ବୈକୁଣ୍ଠନାଥ ମହାପାତ୍ର**

ବଡଦାଣ୍ଡର ବୁକୁ ଉପରେ ନଭଶ୍ଚୁମ୍ବୀ ତିନିରଥ । ଜନସମୁଦ୍ରରେ ତିନିଟି ପୋତର ଭ୍ରମ ସୃଷ୍ଟି କରୁଛି । ଘଣ୍ଟ ଘଣ୍ଟା, ଖୋଳ, ମର୍ଦ୍ଦଳ, ହରିବୋଲ, ହୁଳହୁଳି ଧ୍ୱନିରେ ପ୍ରକମ୍ପିତ ତ୍ରିଭୁବନ । ମଣିମା ଶୁଣିବା ହେଉ, ରକ୍ଷାକର ମହାବାହୁ ଆଦି ଶବ୍ଦରେ ମୁଖରିତ ପରିବେଶ । ଭକ୍ତ–ଭଗବାନ, ସେବ୍ୟ–ସେବକ ମିଳନର ମହାପର୍ବ । ଆଜି ସାଗର ନଦୀ ଆଡକୁ ପ୍ରଧାବିତ । ଭକ୍ତ ସତ୍ତା ହରାଇ ନିଜକୁ ଆବିଷ୍କାର କରୁଛି ଅନନ୍ତ ସତ୍ତାରେ, ଅପର ପକ୍ଷରେ ଭକ୍ତଭାବରେ ପରିଗଣିତ ବଳରାମ ଦାସ ଐଶ୍ୱରୀୟ ସତ୍ତାର ମହତ୍ତ୍ୱକୁ ପ୍ରେମରେ ଉପଲବ୍ଧି କରିବାକୁ ସେ ଉପସ୍ଥିତ । ପ୍ରଭୁଙ୍କ ପ୍ରତିଟି ସୃଷ୍ଟିକୁ ସମ୍ମାନ ଦେବାକୁ ବଳରାମ ଆଜି ଦେବଦାସୀ ମାଧବୀ ନିକଟରେ । ଜୀବନର ସବୁ ସୁଖକୁ ଜଳାଞ୍ଜଳି ଦେଇ ଯିଏ ସମସ୍ତ ପାପକୁ ଅଙ୍ଗୀକାର କରେ ପୁଣ୍ୟବତୀ ସେହି ମାଟିରେ ବଳରାମ ପାଦ ଥାପିଛନ୍ତି । ଏପଟେ ମୃଦୁମନ୍ଦ ପବନରେ ଭାସିଯାଉଛି ବଡ଼ଦାଣ୍ଡର ଧ୍ୱନି । ଆନମନା ହୋଇ ଉଠିଲେ ବଳରାମ ଦାସ । ଭକ୍ତ ବଳରାମ ମହାପ୍ରଭୁଙ୍କ ଅତୀବ ପ୍ରିୟ । ଦେହ ଜ୍ଞାନ ହଜିଗଲା ତାଙ୍କର । ମାନସପଟରେ ଦେଖିବାକୁ ଲାଗିଲେ ବଡ଼ଦାଣ୍ଡର ଦୃଶ୍ୟରାଜି । ବୀରବର ମହାରାଜା ଗଜପତି ଦିବ୍ୟସିଂହ ଦେବ ଛେରାପହଁରା ସାରିଲେଣି । ଶ୍ରୀନଅରକୁ ବିଜେ କରୁଛନ୍ତି । ଡ଼ାହୁକର ବେତ ହଲାଇବା ଠାଣି ଯେମିତି ଭକ୍ତମାନଙ୍କୁ ଆବାହନ କରୁଛି ରଥ ନିକଟକୁ । ବଳରାମଙ୍କର ଚିନ୍ତା, ଟିକେ ମାତ୍ର ବିଳମ୍ବ କଲେ କାଳିଆ ବାହୁଡ଼ି ଯିବ । ଶୁଭିବ ରଥର ଘର୍ଘର ନାଦ । ନା ଆଉ ନୁହେଁ । ଏଭଳି ଦୁର୍ଲ୍ଲଭ ଦର୍ଶନରୁ ବଞ୍ଚିତ ହେବି ? ଧିକାରିଲେ ନିଜକୁ ବଳରାମ ଦାସ ।

ବୋଇଲେ ଧିକ୍ ମୋ ଜୀବନ । ଅଜ୍ଞାନେ ବଞ୍ଚିଲି ମୁଁ ଦୀନ । ପ୍ରଭୁ ମୋ ରଥେ ବୀଜେ କଲେ । ଶୋଇ ମୁଁ ଅଛି ବେଶ୍ୟାତୁଳେ । ଏମନ୍ତ ବୋଲି ଗଲା ଧାଇଁ । ମିଳିଲା ପ୍ରଭୁ ପାଶେ ଯାଇ । ଅସଂଯତ କେଶ ରାଶି । ଅସଜଡ଼ା ବେଶଭୂଷା । ଗାଲରେ ପାନ ଛେପ । କଦର୍ଯ୍ୟ ଶରୀର । ସ୍ନାନ ଶୌଚ ନାହିଁ । ଛି ! କି କୁତ୍ସିତ ରୂପ ରାଶି । ଜନସମୁଦ୍ର ଠେଲି ଚାରମାଳ ଦେଇ ଉପରକୁ ଉଠିଲେ ବଳରାମ ଦାସ । ସେବକଙ୍କ ନଜର ପଡ଼ିଲା ତାଙ୍କ ଉପରେ । ଜଣେ ସେବକ ଭିଡ଼ି ଧରିଲେ ହାତକୁ । ଅପବିତ୍ର, ଅଶୌଚ ହୋଇ କୁଆଡ଼େ ପଶିଯାଉଛୁ ? ବଡ଼ ଭକ୍ତ ଦେଖେଇ ହେଉଛୁ ! ତା' ପରେ ଅନ୍ୟ ସେବକବୃନ୍ଦ ଲାଗିଗଲେ ମାଡ଼ ଦେବାରେ । ଆଉ କିଏ ବେତରେ ପ୍ରହାର କଲା । କେହି ଜଣେ ସେବକ ଗଳାରେ ଖୁବ୍ ଜୋର୍‌ରେ ଧକ୍କା ଦେଲେ । ବଳରାମ ଭାରସାମ୍ୟ ହରାଇଲେ । ଚାରମାଳ ଦେଇ ତଳେ ପଡ଼ିଗଲେ, ଉଠିବାର ସାମର୍ଥ୍ୟ ନାହିଁ । ପଣ୍ଡାମାନଙ୍କ ନାନାଦି କୁତ୍ସିତ କଟୁ କଥା, ଅଶ୍ରାବ୍ୟ ଭାଷାରେ ଗାଳି ଗୁଲଜ ବଳରାମଙ୍କ ହୃଦୟକୁ ବାରମ୍ବାର ଆଘାତ କରୁଥିଲା । ଜଣେ ସାଧାରଣ ବ୍ୟକ୍ତି ଭାବରେ ନୁହେଁ ଶ୍ରୀଜଗନ୍ନାଥଙ୍କ ଭକ୍ତ ଭାବରେ । କେହି ସେବକ ବଳରାମଙ୍କୁ ଉଠାଇଲେ ତଳୁ । ମୁଣ୍ଡ ଫାଟିଯାଇଛି । ଧାରଧାର ରକ୍ତ ବହୁଛି, ଆଖିରୁ ଲୁହର ଧାର । ବାକ୍ୟ ସ୍ଫୁରୁ ନାହିଁ ଚାହିଁଛନ୍ତି କଳାମୁଖକୁ । ଲମ୍ଭକରି ତଳେ ପଡ଼ିଗଲେ । ଥରିଲା ଥରିଲା ଗଳାରେ କହି ଉଠିଲେ – କାଳିଆ, ଏହି ତୋର ଭକ୍ତ ବତ୍ସଳ ପଣିଆ ! ତୋର ପାଖକୁ ଦର୍ଶନ କରିବାକୁ ଆସିଲି ଯେ ଦର୍ଶନ ଦେବା ବଦଳରେ ମୋ ଲୁହ ଦର୍ଶନ କଲୁ ତୁ । ଏଥିରୁ କି ଯଶ ପାଇଲୁ ।



ମାରିବାର ଅଛି ତ ନିଜେ ମାରିଲୁନି କାହିଁକି !! ପର ହାତରେ ମାଡ଼ ମରାଇ କି ଯଶ ଅର୍ଜିଲୁ ! ! ହେ କାଳିଆ, ଯଦି ସତରେ ତୋର ମୋର ଭାବ ଥାଏ, ତେବେ ଏଇଠୁ ମୁଁ ବାହୁଡ଼ି ଯାଉଛି । ତୋ ନନ୍ଦିଘୋଷ ରହିଥିବ ସେମିତି ।

ବଳରାମଙ୍କ ବ୍ୟାକୁଳତାକୁ ଉପଲକ୍ଷ୍ୟ କରି ରଥରେ ଥିବା ସେବକମାନେ ଶରବ୍ୟ କରୁଥିଲେ, ଇଏ ଚାଲିଗଲେ ରଥ ଅଟକି ଯିବ ଯେମିତି .... ଚାଲ ଚାଲ ଏଠୁ । କାନ୍ଦି କାନ୍ଦି ଗହଳି ଠେଲି ବଳରାମ ବାହୁଡ଼ି ଆସିଲେ ।

ଆସିଲା ବେଳେ ଥରିଲା ଥରିଲା ଗଳାରେ କହୁଥିଲେ । ମହାପ୍ରଭୁଙ୍କୁ ପିତୃତ୍ୱର ଶପଥ ଦେଇ କହୁଥିଲେ ସେବକର ମାନ ରକ୍ଷାକଲେ ସିନା ପ୍ରଭୁ ପଣ ସାର୍ଥକ ହେବ । ଏବେ ମୋର ଭୁଲ କେଉଁଠି ଅଛି ବିଚାର କର । ଚାଲିଲି ସମୁଦ୍ର ଅଭିମୁଖେ। ତୋ କୋଳରେ ସ୍ଥାନ ଦେଲୁନି ତ ସମୁଦ୍ର ଅଛି । ତାରି କୋଳରେ ଚିର ନିଦ୍ରାରେ ଶୋଇଯିବି । ଭକ୍ତ ବଳିଆର ନା ଲିଭିଯିବ ମହୀମଣ୍ଡଳରୁ । କାଳିଆ ଜାଣିବୁ ତୋ ହସ ଖୁସିର କୁହୁକରେ ଜଣେ ଦୁଃଖୀ କେହି ଦୁଃଖ ସହି ନପାରି ଚାଲିଯାଇଛି । ତୋ ଭକ୍ତ ରକ୍ଷଣ, ଦୀନ ବାନ୍ଧବ ବାନାର ସାର୍ଥକ ହୋଇଛି । ପଣ୍ଡାମାନଙ୍କ ମାଡ଼ରେ ଚାଲିବାର ସାମର୍ଥ୍ୟ ହରାଇଥିଲେ ବଳରାମ ଦାସ । ବହୁ କଷ୍ଟରେ ସମୁଦ୍ର କୂଳକୁ ଆସିଲେ । ସମୁଦ୍ରର ଉତ୍ତାଳ ତରଙ୍ଗ । ଯେମିତି ବଳରାମଙ୍କୁ ହାତଠାରି ଡ଼ାକୁଥିଲା । ବଳିଆ, ଆ ମୋ କୋଳକୁ ଆ... । କାଳିଆ ସିନା ତୋତେ ରଥକୁ ଉଠାଇ ଦେଲାନି । ଆଉ ମୁଁ ତୋତେ ମୋ କୋଳକୁ ଡ଼ାକୁଛି । ଭାବନା ରାଜ୍ୟରେ ବଳରାମ ଦାସ । ରଥାରୂଢ ଜଗନ୍ନାଥଙ୍କୁ ହୃଦୟ ପଟ୍ଟରେ ବାରମ୍ବାର ଦେଖୁଛନ୍ତି । ଆଖିରୁ ଲୁହ ଧାର ବହିଚାଲିଥାଏ । କାଠରେ ତିଆରି ରଥରୁ ସିନା କାଳିଆ ମୋତେ ବିଦା କରିଦେଲୁ । ଗଳାରେ ଧକ୍କା ଦେଲୁ। ଦର୍ଶନ କରିବାର ସୁଯୋଗ ଦେଲୁନି । ହେଲେ ଏବେ ଜୀବନ ହାରିବା ପୂର୍ବରୁ କାଠ ରଥରେ ସିନା ଦେଖିପାରିଲିନି, ବାଲିର ରଥରେ ଶେଷରେ ଯାଇ ଦେଖିନିଏ। ମନଭରି କାନ୍ଦିପକାଏ । ଭକ୍ତ ଜୀବନରେ ସମ୍ବଳ ଭଗବାନ । ଭଗବାନ ଯାହାର ସମ୍ବଳ ନୁହଁନ୍ତି ଜୀବନ ସାଥୀ ହୁଏ ଲୁହ । ଆଜି ଲୁହ ହୋଇଛି ବଳରାମ ଦାସଙ୍କର ସର୍ବସ୍ୱ । ଏମିତି କେତେ କ'ଣ ଭାବି ଭାବି ବାଲିରେ ନିର୍ମାଣ କଲେ ତିନିରଥ। ବଳରାମ ଦାସ କଥା ହେଉଛନ୍ତି ମହାପ୍ରଭୁଙ୍କ ସହିତ ମାନସିକ ସ୍ତରରେ । ସର୍ବାନ୍ତର୍ଯ୍ୟାମୀ ପୁରୁଷ ଭଗବାନ ଦାସେଙ୍କର ଅନ୍ତର୍ବେଦନାକୁ ବୁଝିଲେ କାଳବିଳମ୍ବ କଲେ ନାହିଁ । ସପ୍ତସମୁଦ୍ରର ଜଳରେ ଯାହାର କଳେବର ତିନ୍ତେ ନାହିଁ, ଭକ୍ତ ଆଖିର ଦୁଇଟୋପା ଲୁହରେ ସମଗ୍ର ଶରୀର ଜୁଡୁବୁଡୁ ହୋଇଯାଏ । ସାଗର କୂଳରେ ସନ୍ତପ୍ତ ବଳରାମ । ଭକ୍ତ ଦେହରେ ଫୁଲଟିଏ ପଡ଼ିଲେ ଯେଉଁ ପ୍ରଭୁ କଣ୍ଟାର ଅନୁଭବ କରନ୍ତି, ମନସ୍ତାପରେ ବସିଥିବା ଭକ୍ତ ବଳିଆ ଆଜି ବାଲିରେ ରଥ ତିଆରି କରି ମହାପ୍ରଭୁଙ୍କୁ ଡ଼ାକୁଛି, ଆଉ ଭଗବାନ ନଶୁଣି ଯିବେ ବା କୁଆଡ଼େ ! ସେ ଅଚଳ ହେଲେ ବି ସଚଳ। ଚଳଚଞ୍ଚଳ । ଚଳତ୍ ଶକ୍ତିମାନ । ହାତ ନଥାଇ ସେ ମହାବାହୁ, ପାଦ ନଥାଇ ସହସ୍ର ପଦୀ, ଆଖି କାନ ନ ଥାଇ ସେ ସର୍ବଦ୍ରଷ୍ଟା ଓ ସର୍ବଶ୍ରୋତା । ସମସ୍ତ ଚିନ୍ତା ଚେତନାର ଊର୍ଦ୍ଧ୍ୱରେ ସେ । ତାଙ୍କୁ ବୁଝିବ କିଏ । ସେ ଯାହାକୁ ସାମର୍ଥ୍ୟ ଦେବେ ସେ ହିଁ ତାଙ୍କୁ ବୁଝେ । ଆଉ ଯିଏ ତାଙ୍କୁ ବୁଝେ ସେ ହିଁ ତାଙ୍କର ହୋଇଯାଏ । ବିନା ପାଦରେ ସେ ସଚରାଚର ବ୍ରହ୍ମାଣ୍ଡ ଭ୍ରମଣ କରନ୍ତି। ବିନା ହାତରେ ସର୍ବକର୍ମ ସମ୍ପାଦନ କରନ୍ତି। ଅର୍ଦ୍ଧ ଅବୟବରେ ସେ ସ୍ୱୟଂସମ୍ପୂର୍ଣ୍ଣ ।

ଭକ୍ତିରେ କାନ୍ଦୁଛନ୍ତି ବଳରାମ। ଚର୍ମ ଚକ୍ଷୁରେ ମହାପ୍ରଭୁଙ୍କ ଶେଷ ଦର୍ଶନ ପାଇଁ ବ୍ୟାକୁଳିତ। ଆକୁଳିତ ବିହ୍ୱଳିତ। ପ୍ରଭୁ ! ତୋ ରଥ ସିନା କାଠରେ ତିଆରି, ହେଲେ ମୋ ରଥ ବାଲି। ପୀତ ଲୋହିତ ଆବରଣରେ ଆବୃତ ତୋ ରଥ। ମୋର ସବୁକିଛି ବାଲି। ଆବରଣ ବାଲି, ଚକ୍ର ବାଲି, ନେତ ବାଲି ସବୁ କିଛି ବାଲୁକାମୟ। ମୋର ରଥ ବାଲି, ପଥ ବାଲି, ଜଗନ୍ନାଥ ବି ବାଲି। ତୁ ସତେ କ'ଣ ଆସିବୁ ଏ ଦୀନ ବଳିଆର ରଥକୁ!! ବିରାଟ ପ୍ରଶ୍ନବାଚୀ। ବଳରାମ ଦାସଙ୍କର। ଭକ୍ତ ପାଇଁ ଯିଏ



ପୂର୍ଣ୍ଣରୁ ଶୂନ୍ୟ ହୋଇଛନ୍ତି, ସେ ପ୍ରିୟ ବଳିଆର ଡାକରେ ରହନ୍ତେ କିପରି ! ଭଗବାନ ନନ୍ଦିଘୋଷ ରଥରେ ରହିଲେ ନିମିତ୍ତ ମାତ୍ର। ଦେହ ରହିଲା କାଠ ରଥରେ ଦେହୀ ରହିଲେ ବାଲିରଥରେ। ଦେହୀ ବିନା ଦେହ ଜଡ। ଆଉ ଜଡ କିପରି ଚଳତ୍‌ଶକ୍ତି ସମ୍ପନ୍ନ ହୁଅନ୍ତା !!! ବାଙ୍କି ମୁହାଣର ବାଲୁକା ବେଳାରେ ବଳରାମଙ୍କ ବାଲିରଥ। ମତ୍ତ ବଳରାମ ଏବେ ଭକ୍ତ ବଳରାମ। ହଠାତ୍ ଅନୁଭବ କଲେ ବାଙ୍କିମୁହାଣଠାରେ ତୁଳସୀ, ଚନ୍ଦନ , କସ୍ତୁରୀର ମହମହ ସୁଗନ୍ଧ । ବଳରାମଙ୍କ ମନରେ ଆସିଲା ଅଦମ୍ୟ ଶକ୍ତି। ଶୁଣୁଛନ୍ତି ବଳରାମ ପ୍ରଭୁଙ୍କ ଶୁନ୍ୟବାଣୀ। ଭକ୍ତ ବଳରାମ ଭାବବିହ୍ୱଳ ହୋଇ ଉଠିଲେ। କପାଳରେ ହାତ ଦେଇ ନିସ୍ତରିଲି ନିସ୍ତରିଲି ବୋଲି ଡାକଦେଲେ। ବାଲିରେ ବାରମ୍ବାର ଗଡିଗଡି କାନ୍ଦିବାକୁ ଲାଗିଲେ। ମହାପ୍ରଭୁ କୋଟି କୈବଲ୍ୟନାଥ ବିଜୟ କରିଛନ୍ତି ଅଧମ ବଳିଆର ବାଲିରଥରେ। କ'ଣ କରିବି, କି ଭୋଗ ଦେବି, ତୁଳସୀ ଜଳ ଏଠି କୋଉଠି ପାଇବି ! ଧୂପ ଦୀପ ନୈବେଦ୍ୟ କ'ଣ ଲଗେଇବି। ପାଗଳ ହୋଇଗଲେ ବଳରାମ। କେବଳ ବାଲିକୁ ତୋଳିଧରି ନାଚିବାକୁ ଲାଗିଲେ। ପୁଣି ପ୍ରଭୁଙ୍କୁ ପ୍ରାର୍ଥନା କଲେ । ପରବର୍ତ୍ତୀ ମୁହୂର୍ତ୍ତରେ ବଳରାମ ଅନୁଭବ କରୁଛନ୍ତି ବାସ୍ତବରେ ପ୍ରଭୁଙ୍କୁ ବଡ କଷ୍ଟ ଦେଇଛି। ସେଥିନିମିତ୍ତ ଅନୁତପ୍ତ ହେଉଛନ୍ତି ।

'ମୁଁ ମୂଢ ମନ୍ଦ କୃତ୍ୟ କଲି। ପ୍ରଭୁଙ୍କୁ ଏଡେ କଷ୍ଟଦେଲି।' ଭଗବାନ ବଳରାମଙ୍କ ପାଖରେ ବସି ହସି ହସି କହିଲେ ବଳିଆ, ସେ ରଥ ମୋର ପ୍ରିୟ ନୁହେଁ, ଯେଉଁଠି ଭାବ ଭକ୍ତି ନଥାଏ ମୋତେ ତାହା କ'ଣ ଭଲ ଲାଗେ ? 'ଉତ୍ସବ ମୋର କିସ ହେବ। ମୂଳ ମୋ ଭକତର ଭାବ। ଅଶେଷ ସୁଖ ଭାବ ମୋର। ଭକତ କଥାମୃତ ସାର।' ଅପର ପକ୍ଷରେ ନନ୍ଦିଘୋଷ ରଥ ଦଣ୍ଡାୟମାନ ବଡଦାଣ୍ଡରେ। ଯେତେ ଟାଣିଲେ ମଧ୍ୟ ଟାଣି ହେଲାନି। ପଣ୍ଡାମାନେ ଭାବିଲେ କେଉଁଠି ଅତ୍ୟାଚାର ହେଲା। ବଳିଆଟା ଅଶୌଚ ହୋଇ ରଥରେ ଚଢିଗଲା । ରଥ ମାରା ହୋଇଗଲା। 'ରଥ ଚକ ହିଁ ନ ଚଳିଲେ। ସମସ୍ତେ ଦେଖିଣ ଭାଳିଲେ।। କି ବୁଦ୍ଧି କରିବା ଏଥର। କିମ୍ପା ନ ଚଳେ ରହୁବର।। ଏମନ୍ତେ ଦେଖିଣ ସମସ୍ତେ। କହିଲେ ନୃପତି ଅଗ୍ରତେ।' ହସ୍ତୀ ଯେତେ ବଳ ପ୍ରୟାଗ କଲେ ମଧ୍ୟ ରଥ ଅଚଳ। ଜଡ ପାଲଟିଯାଇଛି। ରଥି ନଥିଲେ ରଥ କି ଆଉ ଚଳିବ ! ରଥି ପରା ବାଲି ରଥରେ । କାଠ ରଥ ସମ୍ପୂର୍ଣ୍ଣ ଜଡ଼। ରାଜା ପ୍ରତାପରୁଦ୍ରଦେବ ପୁନର୍ବାର ଆଗମନ କରି ନିଜକୁ ସର୍ବସମକ୍ଷରେ ଦୋଷୀ ସାବ୍ୟସ୍ତ କରିବା ପୂର୍ବକ ମହାପ୍ରଭୁଙ୍କ ନିକଟରେ ଗୁହାରିଆ ପଡିଲେ। ଭଗବାନ ମହାରାଜାଙ୍କୁ ସେବକମାନଙ୍କ ବଳରାମ ଦାସଙ୍କ ପ୍ରତି ହୋଇଥିବା ସମସ୍ତ ଅତ୍ୟାଚାରର ବୃତ୍ତାନ୍ତ ଶୁଣାଇଲେ ଏବଂ ଆଦେଶ ଦେଲେ – ଯେଉଁ ସେବକମାନେ ବଳରାମଙ୍କୁ ଦଣ୍ଡ ଦେଇ ରଥରୁ ଘଉଡାଇ ଦେଇଛନ୍ତି, ଜଳାରେ ସେମାନଙ୍କୁ ଜାଲଫାଶ ଭରି। ଦନ୍ତେ ତିରଣ ଥିବେ ଧରି। ପଛରେ ଗଳାଧକ୍କା ଦେଇ। ଘେନାଇ ଯିବୁ ନରସାଇଁ। ମୋ ଭୃତ୍ୟ ଛାମୁରେ ଭେଟିବେ। ସମସ୍ତେ ଚରଣରେ ଲୋଟିବେ। ତୁ ଯେ ଆପଣେ ନୃପରାଣ। ଦାସଙ୍କୁ କୋଳେ ବସାଇଣ। ଅନେକ ଗଉରବ କରି। ଘେନି ଆସିବୁ ଦଣ୍ଡଧାରୀ । ରାଜା ମହାପ୍ରଭୁଙ୍କ ଆଦେଶାନୁଯାୟୀ ଭକ୍ତ ବଳରାମଙ୍କୁ ବାହୁଡାଇ ଆଣିଲେ। ସମସ୍ତଙ୍କ ଅପେକ୍ଷା ଥିଲା ବଳରାମ ଦାସଙ୍କୁ। ରାଜକୀୟ ବେଶରେ ରାଜାଧିରାଜ ଠାଣିରେ ହସ୍ତୀ ପୃଷ୍ଠରେ ବିଜେକରି ରଥାରୂଢ ହେଲେ। ଜନସମୁଦ୍ରରୁ ଭାସି ଆସୁଥାଏ ମହାପ୍ରଭୁଙ୍କ ଜୟ ଜୟକାର ଧ୍ୱନି। ବଳରାମ କାନ୍ଦି କାନ୍ଦି ମହାପ୍ରଭୁଙ୍କୁ ଚାହିଁ – 'ବୋଇଲେ ନମୋ ମହାବାହୁ । ଭକତ ବତ୍ସଳ ବୋଲାଉ। ନାମ କରୁଣା ମହାମେରୁ। କିଞ୍ଚିତେ ଦ୍ରୁବ କରୁ ଦାରୁ। ଏବେ ମୁଁ କହୁଅଛି ତୋତେ ମୋ ପ୍ରଭୁ ବିଜେ କର ପଥେ। ତ୍ୱରିତେ ରଥ ଚଳିଯାଉ। ପ୍ରଭୁ ମହିମା ରହିଥାଉ।'

ନୟାଗଡ଼ ଚିତ୍ରକାର ସାହି
ପୋ– ନୟାଗଡ଼, ଜିଲ୍ଲା– ନୟାଗଡ–୭୫୨୦୭୦



# ବିଚିତ୍ର ଲୀଳାଖେଳା ଯା'ର ଦେବମାନବେ ଅଗୋଚର

**ଦେବଦତ୍ତ ରଥ**

ବିଚିତ୍ର ଶବ୍ଦଟି ସମଗ୍ର ବିଶ୍ୱର ଏକମାତ୍ର ଦେବତା ପ୍ରତି ସମ୍ପୂର୍ଣ୍ଣ ଭାବରେ ପ୍ରଯୁକ୍ତ, ସେ କିଏ ? ସେ ହିଁ ବିଶ୍ୱ ମାନବାତ୍ମାର ମହିମାବନ୍ତ ପରି ପ୍ରକାଶ ପ୍ରଭୁ ଜଗନ୍ନାଥ । ନିରାକାର, ନିରାଧାର, ନିର୍ନିମେଷ ନିଶ୍ଚେଷ୍ଟ ତଥା ନିରୋପଲବ୍ଧି ମଧ୍ୟ । ତାଙ୍କ ଶୂନ୍ୟରେ ପରିପୂର୍ଣ୍ଣତାର ପରିକଳ୍ପନା ଯେପରି ଅକଳ୍ପନୀୟ ସେପରି ରହସ୍ୟାଚ୍ଛନ୍ନ ମଧ୍ୟ । ବ୍ରହ୍ମ ଶୂନ୍ୟ ହେଲେ ମଧ୍ୟ ସର୍ବବ୍ୟାପୀ, ଅଚଳ, ଧ୍ରୁବ ଓ କୂଟସ୍ଥ । ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କୁ ଉପାସନା ନିମନ୍ତେ ଅଷ୍ଟଗୁଣର ଆବଶ୍ୟକତା ଅନୁଭୂତ ହୁଏ । ଶ୍ରୀମଦ୍ ଭାଗବତଗୀତାର ସେ ହିଁ ଅକ୍ଷର ପୁରୁଷୋତ୍ତମ । ତେଣୁ ଅକ୍ଷର ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ ଅଚିନ୍ତ୍ୟ, କୂଟସ୍ଥ, ଅଚଳ ଓ ଧ୍ରୁବ ଏହି ଶବ୍ଦ ଶ୍ରୀଜଗନ୍ନାଥଙ୍କୁ ଗୀତାରେ ପୁରୁଷୋତ୍ତମ ଭାବରେ ପ୍ରମାଣ କରିଅଛି ।

ପୁରୁଷୋତ୍ତମ ଉପାସନାରେ ଇନ୍ଦ୍ରିୟରୋଧର ଆବଶ୍ୟକତା ମଧ୍ୟ ପରମ ଉପଲବ୍ଧ ।

'ଯଦା ପାବତିଷ୍ଠନ୍ତେ ଜ୍ଞାନାନି ମନା ସହ
ବୁଦ୍ଧିଶ୍ଚନ ବିଚେଷ୍ଟାନ୍ତେ ତମାହୁଃ ପରମାଂଗତିଃ ।

(କଠୋପନିଷଦ୍)

କୌଣସି ଏକ ସ୍ୱତନ୍ତ୍ର ଧର୍ମର ସେ ଆରୋପିତ ଦେବତା ନୁହଁନ୍ତି, କୌଣସି ନିର୍ଦ୍ଦିଷ୍ଟ ଧର୍ମଧାରାରେ ଆବଦ୍ଧ ନୁହଁନ୍ତି ବା କୌଣସି ଚିନ୍ତାଧାରା ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ସେଥିପାଇଁ କୁହାଯାଇଛି 'ସର୍ବ ରହସ୍ୟ ପୁରୁଷୋତ୍ତସ୍ୟ, ଦେବୋ ନଜାନାତି କୁତୋ ମନୁଷ୍ୟଃ' । ଯେ ଚିର ସତ୍ୟ ପ୍ରକାଶ୍ୟ ପୁଣି ଅପ୍ରକାଶ୍ୟ, ପ୍ରକଟ ପୁଣି ଅପ୍ରକଟ, ଏ ପ୍ରସଙ୍ଗରେ ବିଦଗ୍ଧ କବି ଅଭିମନ୍ୟୁ ଲେଖିଛନ୍ତି – 'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟରାଧା ହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି' ।

'ବ୍ରହ୍ମବୈବର୍ତ୍ତ ପୁରାଣ'ରେ ଭଗବାନ୍ ଶ୍ରୀକୃଷ୍ଣ ସଗୁଣ, ନିର୍ଗୁଣ, ସତ୍ୟରୂପ, ସନାତନ, ନିରାକାର ତେଜୋରୂପୀ ଭାବରେ ବର୍ଣ୍ଣିତ । ଏହି ଶୂନ୍ୟ ପୁରୁଷ ହିଁ ବ୍ରହ୍ମ ।

ଆଦିକବି ସାରଳା ଦାସ ଲେଖିଛନ୍ତି ତାଙ୍କର ରଚନାରେ – 'ବଡ଼ ଦେଉଳେ ବିଜେ ତିନି ପ୍ରତିମା, ହରି, ହଳୀ, ବ୍ରହ୍ମା । ଅଉମ ଅକ୍ଷରର ସମ୍ମିଶ୍ରଣରେ 'ଓଁ'କାର ଉତ୍ପତ୍ତି । ଏହି ବ୍ରହ୍ମ ଏକାକ୍ଷର ସ୍ୱୟଂ ନିରଞ୍ଜନ । ସେ 'ହ' ରୂପୀ ଜଗନ୍ନାଥ ଦାରୁ ରୂପରେ ଆବିର୍ଭୂତ । 'ହରେ' ପଦରେ ଜଗନ୍ନାଥ ବା କୃଷ୍ଣଙ୍କୁ ବୁଝାଯାଏ । 'ର' ରାଧାଙ୍କୁ ବୁଝାଏ । 'ହ' କାର ଜଗନ୍ନାଥ ଓ 'ର'କାର ରାଧାଙ୍କୁ ବୁଝାଏ ବୋଲି କବିଙ୍କର ମତ । ସନ୍ଥ ଅଚ୍ୟୁତାନନ୍ଦ ଦାସଙ୍କ 'ପରେଚଗୀତା'ରେ 'ଅ', 'ଉ', 'ମ' – ତ୍ରିଧ୍ୱନିରେ 'ଅ'ରୁ ବୀଜ ନିର୍ଗତ ହୁଅଇ, 'ଉ' ସ୍ୱରୂପ ଯୋନିରେ ବୀଜ ନିକ୍ଷିପ୍ତ ହୁଏ, 'ମ' ଚତୁର୍ଦ୍ଦିଗରେ ପରିପ୍ରକାଶ୍ୟ ରୂପରେ ବିଶ୍ୱ ସ୍ୱରୂପ ହୁଏ । ନୟନ ହିଁ ତିନି ମୂର୍ତ୍ତି । ଭକ୍ତି ଯୁଗର ବରେଣ୍ୟ ସାଧକ ବଳରାମ ଦାସ ତିନି ମୂର୍ତ୍ତିତ୍ୱ ଶରୀର ମଧ୍ୟରେ ଦର୍ଶାଇଛନ୍ତି ।

ଡ଼ୋଳା ଭିତରେ ଧଳା ଯେହୁ, ଶ୍ରୀବଳଭଦ୍ର ଅଟେ ସେହୁ
ତଥି ଉପରେ କଳା ଯେହୁ, ସୁଭଦ୍ରା ଠାକୁରାଣୀ ସେହୁ
ତହିଁରେ ପିତୁଳା ଯେ ଜାଣ, ଶ୍ରୀଜଗନ୍ନାଥ ତାକୁ ଚିହ୍ନ ।



### ଚତୁର୍ଦ୍ଧାମୂର୍ତ୍ତି ଚାରିବେଦ

ଶ୍ରୀଜଗନ୍ନାଥ, ବଳଭଦ୍ର , ସୁଭଦ୍ରା ଓ ସୁଦର୍ଶନ ଏହି ଚତୁର୍ଦ୍ଧା ବିଗ୍ରହଙ୍କୁ ଚାରିବେଦର ମାନ୍ୟତା ପ୍ରଦାନ କରିଛନ୍ତି ସନ୍ଥ ବଳରାମ । ସାମବେଦ – ବଳଭଦ୍ର, ଋଗ୍ – ସୁଭଦ୍ରା, ଯଜୁର୍ବେଦ – ଜଗନ୍ନାଥ, ଅଥର୍ବ – ସୁଦର୍ଶନ ।

**ଚତୁର୍ଦ୍ଧାମୂର୍ତ୍ତି ସିଦ୍ଧିରସ୍ତୁ :** ଏହି ଚତୁର୍ଦ୍ଧାମୂର୍ତ୍ତିତ୍ୱରୁ ହିଁ ଜୀବନର ନିର୍ଯ୍ୟାସ ଆସିଅଛି ।

ସି– ଶିଶୁବେଦ–ବଳଭଦ୍ରାଦ୍ଧି– ଯଜୁର୍ବେଦ–ଜଗନ୍ନାଥ ।
ର– ଋକ୍‌ବେଦ – ସୁଭଦ୍ରାସ୍ତୁ – ଅଥର୍ବବେଦ – ସୁଦର୍ଶନ ।
(ଗୁ.ଗୀ)

**ଚତୁର୍ଦ୍ଧାମୂର୍ତ୍ତି :** ଶ୍ରବଣ, ନୟନ, ଅଧର, ନାସିକା ଭେଦକ୍ରମରେ ଶ୍ରବଣ – ବଳଭଦ୍ର । ନୟନ – ଜଗନ୍ନାଥ । ଅଧର – ସୁଭଦ୍ରା । ନାସିକା – ସୁଦର୍ଶନ । (ଗୁ.ଗୀ)

**ଚତୁର୍ଦ୍ଧାମୂର୍ତ୍ତି ଚାରିବର୍ଣ୍ଣ :** ଚତୁର୍ଦ୍ଧାମୂର୍ତ୍ତି ଶୁକ୍ଳ, ପୀତ, ହରିତ, ଲୋହିତ ଏହି ଚାରି ବର୍ଣ୍ଣଠାରୁ ଅଭିନ୍ନ ।

ଶୁକ୍ଳ – ବଳଭଦ୍ର । ପୀତ – ଜଗନ୍ନାଥ, ହରିତ – ସୁଭଦ୍ରା । ଲୋହିତ – ସୁଦର୍ଶନ (ଗୁପ୍ତଗୀତା )

**ତ୍ରିମୂର୍ତ୍ତି ତ୍ରିବୀଜ :** ଶ୍ରୀଁ ବୀଜ ବଳଭଦ୍ର. ହ୍ରୀଁ ବୀଜ ସୁଭଦ୍ରା ଓ କ୍ଳୀଁ ବୀଜ ଜଗନ୍ନାଥ ।

**ଶ୍ରୀଜଗନ୍ନାଥ ଓ ରାଧା ଏକ ଅଙ୍ଗ :** 'ରାଧା' ସ୍ୱୟଂ ଜଗନ୍ନାଥ । ଶ୍ରୀଜଗନ୍ନାଥ ଯେ ରାଧା ସେ ରାଧିକା ସ୍ଥୂଳରୂପିଣୀ' । ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟ ପ୍ରଦଃ' । ଏ ଦାରୁରୂପୀ ଚତୁର୍ଦ୍ଧା ବିଗ୍ରହଙ୍କ ପରିକଳ୍ପନା ପୂର୍ବରୁ ନୃସିଂହ ରୂପରେ ଖ୍ୟାତ । ବୈଦିକ ରୀତିରେ ଲକ୍ଷ୍ମୀନୃସିଂହ ଉପାସନା ଶ୍ରୀକ୍ଷେତ୍ରରେ ପ୍ରଚଳିତ । ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପୁରୁଷୋତ୍ତମ ବିଗ୍ରହ ଶୈବ, ଶାକ୍ତ ଓ ବୈଷ୍ଣବ ମତବାଦର ମିଳନରେ ଗଠିତ ଓ ପରବର୍ତ୍ତୀ ସମୟରେ ବଳଭଦ୍ର (ଶିବ), ସୁଭଦ୍ରା (ଶକ୍ତି), ଜଗନ୍ନାଥ (ବିଷ୍ଣୁ) ଭାବରେ ଦାରୁ ବିଗ୍ରହରେ ରୂପାନ୍ତରିତ ଓ କୋଣାର୍କ ଏବଂ ଭୋଗମଣ୍ଡପ ମନ୍ଦିର ଗାତ୍ରରେ ଜଗନ୍ନାଥ, ଦୁର୍ଗା ଓ ଶିବଲିଙ୍ଗ ରୂପରେ ଦୃଶ୍ୟମାନ ।

ଜଗଦ୍‌ଗୁରୁଙ୍କ ଆଗମନର ପ୍ରାୟ ୭୦୦ ବର୍ଷ ପୂର୍ବରୁ ଏ କ୍ଷେତ୍ରରେ ବୌଦ୍ଧଧର୍ମ ରୂପୀ ବଟବୃକ୍ଷର ଘଞ୍ଚ ସୁବିସ୍ତୃତ କାୟା ସମଗ୍ର ଶ୍ରୀକ୍ଷେତ୍ରର ଧାର୍ମିକ ଭାବନାକୁ ଆଚ୍ଛାଦିତ କରିଥିଲା । ଶଙ୍କରାଚାର୍ଯ୍ୟଙ୍କ ପ୍ରଭାବରେ ପାଶୁପତ ଧର୍ମରୂପୀ ବିଶାଳ ଖଡ୍‌ଗ ବୌଦ୍ଧଧର୍ମ ରୂପୀ ଦ୍ରୁମର ମୂଳୋତ୍‌ପାଟନ କଲା । ଯାହା ଫଳରେ ବ୍ରାହ୍ମଣ୍ୟ ଧର୍ମ ସଂସ୍କୃତିର ପୁନରୁଦ୍ଧାର ହେଲା । ଶଙ୍କରାଚାର୍ଯ୍ୟଙ୍କ ପୂର୍ବରୁ ଏ କ୍ଷେତ୍ରରେ 'ଭୈରବ ଭୈରବୀ' ଆରାଧନା ପରିବ୍ୟାପ୍ତ ଥିଲା ।

ବୌଦ୍ଧ ସଂସ୍କୃତିର ବିଲୋପ ପରେ ବୌଦ୍ଧ ବିହାର ଓ ବୌଦ୍ଧ ସ୍ତୂପମାନ ମଣ୍ଡପ ଓ ଶିବାଳୟ ରୂପରେ ପରିବର୍ତ୍ତିତ ହୋଇ କ୍ଷେତ୍ରର ବ୍ରାହ୍ମଣ୍ୟ ସଂସ୍କୃତି ପ୍ରଚାର ଓ ପ୍ରସାର ସହାୟକ ହୋଇଅଛି, ଅଦ୍ୟାବଧି ଭୁବନେଶ୍ୱରଠାରୁ ଅନତି ଦୂରରେ ପ୍ରାୟ ୨୦ କି.ମି. ଦୂରରେ 'ବାଲିପାଟଣା'ଠାରେ ଗଢ଼ି ଉଠିଥିବା 'ବୁଦ୍ଧନାଥ' ମନ୍ଦିରର ଗଠନ ଭଙ୍ଗୀ ଓ ସ୍ଥାପତ୍ୟ କଳାରେ ବୌଦ୍ଧ ଯୁଗର ସ୍ଥାପତ୍ୟର ପ୍ରଭୁତ ଅଂଶ ବିଶେଷ ପରିଲକ୍ଷିତ ହୁଏ । ଶାବର ସଭ୍ୟତା ଓ ସଂସ୍କୃତି ସହିତ ଶ୍ରୀଜଗନ୍ନାଥଙ୍କର ଘନିଷ୍ଠ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । 'ସ୍କନ୍ଦ ପୁରାଣ' ବର୍ଣ୍ଣିତ ଉତ୍କଳ ଖଣ୍ଡରେ ବର୍ଣ୍ଣିତ ଶବରରାଜ ବିଶ୍ୱାବସୁଙ୍କଦ୍ୱାରା ଆରାଧିତ 'ନୀଳମାଧବ' ହିଁ ନୀଳମାଧବ ତ୍ରିଶକ୍ତିର ତ୍ରିଗୁଣାତ୍ମକ ପ୍ରତୀକ । ଜନଶ୍ରୁତିରେ ଅଦ୍ୟାବଧି ଜୀବିତ କଣ୍ଟିଲୋସ୍ଥିତ 'ଧାନୁଚାଙ୍ଗେଡ଼' ପାହାଡ଼ର ଅଶେଷ ଛୋଟ ଓ ବଡ଼ ପଥର ଖଣ୍ଡ ଶ୍ରୀକ୍ଷେତ୍ର ମୁହାଁଇଥିବା ପ୍ରତୀତ ହୋଇଅଛି । ଏହା କେତେଦୂର ସତ୍ୟାସାପେକ୍ଷ ନା ବିଭ୍ରାନ୍ତିକର ପରିସ୍ଥିତିକୁ ସାମ୍ନା କରିବାର ପ୍ରତୀକ୍ଷା କରେ, ଜାଣେ ନାହିଁ ।

ଖ୍ରୀଷ୍ଟିୟ ତୃତୀୟ ଓ ଚତୁର୍ଥ ଶତକରେ ଶ୍ରୀକ୍ଷେତ୍ରରେ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଅନୁଭୂତ ହୁଏ । ତେଣୁ ପରବର୍ତ୍ତୀ ସମୟରେ ପ୍ରଚାରିତ ଓ ପ୍ରସାରିତ ମଧ୍ୟ ହୋଇ ଉଠେ, ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ, ନୀଳାଦ୍ରୌ ତୁ ଜଗନ୍ନାଥଃ ।



ସାକ୍ଷାତ୍ ଦକ୍ଷିଣକାଳିକା ଶ୍ରୀଦେବୀଙ୍କ ପ୍ରବଳ ପ୍ରାଧାନ୍ୟ ପ୍ରସାରିତ ହେବା ପରେ ଶ୍ରୀବିଗ୍ରହ ଗଜଲକ୍ଷ୍ମୀ ବିଗ୍ରହ ଥିବା ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ଥିବା ଗଜଲକ୍ଷ୍ମୀ ଖିଲାଣରୁ ଜଣାଯାଏ । ଏ ଭୂମିକୁ ଆର୍ଯ୍ୟ ମୁନିଋଷିମାନଙ୍କର ଆଗମନ ପୂର୍ବରୁ ଏଠାରେ ବନବାସୀଙ୍କର ବାସସ୍ଥଳୀ ଥିବା ସ୍ୱାଭାବିକ । ବର୍ତ୍ତମାନ ଯୁଗରେ 'ଅଷ୍ଟ୍ରିକ୍ ବା ଡ୍ରୋଲିକ୍ ସେଫାଲିକ୍ ନାମରେ ଆଖ୍ୟାତ । ଏମାନଙ୍କ ମଧ୍ୟରୁ ଏକ ଗୋଷ୍ଠୀ 'ପୁମ୍' ଦେବତାଙ୍କୁ ଜଗତ ସୃଷ୍ଟି ଓ ଜୀବ ଜଗତର ମୂଳ ଆରାଧନା କରିବା ସମୟରେ 'କନ୍ଧ ଗୋଷ୍ଠୀ' 'ନିରନ୍ତଲୀ' ବା 'କାପାନ୍ତଲୀ'ଙ୍କୁ (ଧରଣୀପେନୁ) ମୂଳ ବା ଆଦି ଦେବୀ ବୋଲି ମାନିବା ସଙ୍ଗେ ସଙ୍ଗେ ସେ ହିଁ ସୃଷ୍ଟିର ମୂଳ ଉତ୍ସ ବୋଲି ସ୍ୱୀକାର କରିଥାନ୍ତି ।

ତାଳ, ତମାଳ, ହେନ୍ତାଳାଦିରେ ପରିପୂରିତ ହୋଇଥିବା ମହାନଦୀ ମୁହାଣ ନଦୀ ନାଳମାନଙ୍କଠାରୁ ବିଚ୍ଛିନ୍ନ ଥିଲା । ପରବର୍ତ୍ତୀ ସମୟରେ ଏହି 'କାଂପିଲ୍ୟାମା' ବା ସୁଭଦ୍ରା ମା' ନାମରେ ନାମିତ ଥାଇ ବର୍ତ୍ତମାନ ଶ୍ରୀକ୍ଷେତ୍ରରେ ଭୂଦେବୀ, ଶ୍ରୀଦେବୀ ବା 'କାମ୍ପିଲ୍ୟ ବାସିନୀ' ନାମରେ ପୂଜିତା । ଶ୍ରୀକ୍ଷେତ୍ରକୁ ଶଙ୍ଖକ୍ଷେତ୍ରର ମାନ୍ୟତା ମିଳିଛି, ଏ କ୍ଷେତ୍ରର ଆକୃତି ଶଙ୍ଖନାଭି ମଣ୍ଡଳରେ ମଧ୍ୟଭାଗରେ ଉଦ୍ଭାସିତ । ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡକୁ ଦ୍ୱିଭାଗ କରିଥିଲା ଏକଦା ମାଳିନୀ ନଦୀ ବା ମୂଷା ନଦୀ, ଯାହା ଏକ ଦିଗରେ ବାଙ୍କି ମୁହାଣରେ ମିଶି ଅନ୍ୟ ଦିଗରେ ଅଠରନଳା ନଦୀରେ ମିଶିଅଛି ।

ରଥ ଓ ପଥ ଦୁଇଟି ଗଭୀରତ୍ୱ ସମ୍ବଳିତ ରହସ୍ୟ ଗର୍ଭିତ ଶବ୍ଦ । ଏ ଦେହରୂପୀ ରଥରେ ଆତ୍ମାରୂପୀ ସାରଥୀ ବିବେକ, ବୈରାଗ୍ୟ ରୂପୀ ଅଶ୍ୱ ପୃଷ୍ଠରେ ସଂସାର ପଥରେ ସତତ ନିଃଶବ୍ଦତାର ସହିତ ଧାବମାନ । ତିନି ରଥର ମୋଟ୍ ଚକ ସଂଖ୍ୟା ୪୨ । ଏହା କର୍ମ ସ୍ଥଳୀରୁ ଜନ୍ମଭୂମି ଓ ଜନ୍ମଭୂମିରୁ କର୍ମଭୂମି ଏପରି ଦୁଇ ଥର ଯାତାୟାତରେ ୮୪ ହୋଇଥାଏ । ୮୪ ଶବ୍ଦ ଭିନ୍ନ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ମନୁଷ୍ୟ ଯେ ନିଜ ଦେହର ମାପ ଚୁପ କଲେ ମଧ୍ୟ ନିଜ ଅଙ୍ଗୁଳିରେ ଆପାଦ ମସ୍ତକ ୮୪ ଅଙ୍ଗୁଳି । ଜୀବ ୮୪ ଲକ୍ଷ ଯୋନିରେ ଜନ୍ମ ଗ୍ରହଣ କରିବା ପରେ ଦୁର୍ଲ୍ଲଭ ନର ଜନ୍ମ ଲାଭ କରିଥାଏ । ଦାରୁ ବ୍ରହ୍ମଙ୍କ ଦାରବୀୟ ସଂସ୍କୃତି ଓ ଲୀଳା ଏକାନ୍ତ ଦେବ ଓ ମାନବ ପାଇଁ ଶିକ୍ଷଣୀୟ ହେଲେ ହେଁ ସମୟାନୁକ୍ରମେ ଗବେଷଣା ସାପେକ୍ଷ ।

ନବେକଳେବର ସମୟରେ ବ୍ରହ୍ମ ପରିବର୍ତ୍ତନ ଏହା ବିଧାତାର ସମ୍ପୂର୍ଣ୍ଣ ଗୋପନୀୟ କାର୍ଯ୍ୟବିଧି । 'ଗୀତା'ରେ ଯେପରି ପରିବର୍ଣ୍ଣିତ ଯେ,

'ବାସଂସି ଜିର୍ଣ୍ଣାନି ଯଥା ବିହାୟ  
ନବାନି ଗୃହ୍ଣାତି ନରୋପରାଣି  
ତଥା ଶରିରାଣି ବିହାୟଜିର୍ଣ୍ଣା  
ନ୍ୟନାନି ସଂଯାତ ନବାନି ଦେହି ।  
( ଶ୍ରୀମଦ୍ ଭଗବଦ୍ ଗୀତା)

ହେଲେ ଦାରୁ ବ୍ରହ୍ମଙ୍କର ଦାରବୀୟ ଲୀଳାକ୍ରମରେ ଆସେ 'ସପ୍ତାବରଣ ପ୍ରକ୍ରିୟା' ପ୍ରସଙ୍ଗ, ଏକ ଗୋପନୀୟ ଅଙ୍ଗ ସେବା । ଶ୍ରୀବିଗ୍ରମାନଙ୍କର ଏହି ସପ୍ତାବରଣ ବିଧିରେ ସପ୍ତଧାତୁ ସମ୍ପନ୍ନ ମାନବ ଶରୀରର ପରିକଳ୍ପନାରେ ଗଠିତ ହୁଏ ।

ମାନବ ଶରୀର ସପ୍ତାବରଣ ଧାତୁରେ ଗଠିତ । ସେମାନେ ହେଲେ ଅସ୍ଥି, ମଜ୍ଜା, ମାଂସ, ରକ୍ତ, ଶିରା, ଶୁକ୍ର ଓ ଚର୍ମ । ମୂଳଦାରୁ, ଝୁଣା, ଫୁଲରି ତେଲ, ବାସୁଙ୍ଗାପାଟ, ଚନ୍ଦନାଦି ବିବିଧ ଦ୍ରବ୍ୟ ତଥା ଅଙ୍ଗକାଳିର ଗାଢ଼ ପ୍ରଲେପ ମାଧ୍ୟମରେ ଉପଚାରାଦି ଦ୍ୱାରା ସମ୍ପାଦିତ ହୋଇଥାଏ । 'ନୀଳାଦ୍ରି ମହୋଦୟ' ପୁସ୍ତକରେ ସ୍ୱତନ୍ତ୍ର ବସ୍ତ୍ର ଓ ପାଟଦ୍ୱାରା ମହାପ୍ରଭୁଙ୍କର ପାଦ ରଚନା କରାଯିବାର ବର୍ଣ୍ଣନା ଅଛି । ଦ୍ୱିତୀୟ ପର୍ଯ୍ୟାୟକ୍ରମରେ ଠାକୁରମାନଙ୍କୁ ଖଳିଲାଗି କରାଯାଏ । ଏହା ସହିତ ଅଛି ମଧ୍ୟ 'ବନକ ଲାଗି'ସେବା । ଏହି ଘଣା ଲାଗି ବା ପାଟଡ଼ୋର ମଧ୍ୟରୁ ବଡ଼ ପାଟଡ଼ୋର 'ନାଗ' ଓ ସାନ ପାଟଡ଼ୋର 'ନାଗୁଣୀ' ରୂପରେ କଥିତ । ଶ୍ରୀ ମହାନ୍ତିଙ୍କ ତଥ୍ୟାନୁସାରେ ଠାକୁରଙ୍କ ଯେଉଁ ଅଂଶରେ ଏହି ନାଗ ଓ ନାଗୁଣୀ କୁଣ୍ଡଳି ପ୍ରାୟ ରହନ୍ତି । ସର୍ପକୁ କାଳ ବା ସମୟ ଭାବରେ ମଧ୍ୟ ଗ୍ରହଣ କରାଯାଏ । ଯାହାର କେନ୍ଦ୍ର ବିନ୍ଦୁରେ ବ୍ରହ୍ମ ଅବସ୍ଥାନ କରିଛନ୍ତି । ଏହି



'ସପ୍ତାବରଣ'ବିଧିର ସର୍ବଶେଷ ପକ୍ରିୟା ହେଉଛି 'ଶ୍ରୀମୁଖ ଓଡା' । 'ଫୁଲୁରି ନୀତି' 'ଓଷୁଅ ଲାଗି', 'ଚେହେଲି' ଓ 'ଚନ୍ଦନ ଲାଗି' ଘଣା ଲାଗି ଓ ଖଳି ଲାଗି ହେବା ପରେ ଶ୍ରୀମୁଖ ଓଷ ନୀତି ସମ୍ପାଦିତ ହୋଇଥାଏ । କି ବିଚିତ୍ର ଠାକୁର କି ବିଚିତ୍ର ଲୀଳା ଖେଳା, ଏ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ମହାନ୍ ଯାଦୁକର ପ୍ରଭୁ ଜଗନ୍ନାଥ, ଯାହାଙ୍କର ଲୀଳା ଯେ ଏପରି ଦୁରଧିଗମ୍ୟ ତଥା ରହସ୍ୟବୋଧିତ, ତାହା କାହାକୁ ଅଜ୍ଞାତ ନୁହେଁ । ଇଏ ଏପରି ଏକ ମନ୍ଦିର ଯେଉଁଠାରେ ପ୍ରତ୍ୟେକଟି ପ୍ରସ୍ତର ଖଣ୍ଡତାତ୍ତ୍ୱିକତା ପ୍ରତିପାଦିତ କରେ । 'ଶ୍ରୀବସଖଣ୍ଡ ଶାଳ' ପ୍ରସ୍ତରରେ ସମଗ୍ର ମନ୍ଦିର ନିର୍ମିତ ।

ଶ୍ରୀମନ୍ଦିର କୂର୍ମ ପ୍ରାଚୀର ଅଭିମୁଖେ ଯିବାକୁ ହେଲେ 'ପତିତପାବନ' ପ୍ରଭୃତି ଦେବାଦେବୀଙ୍କୁ ଦର୍ଶନସାରି ୨୨ ପାହାଚ ଅତିକ୍ରମ କରିବାକୁ ପଡ଼େ । ସନ୍ଥ କବି ବଳରାମ ଦାସ 'ଗୁପ୍ତଗୀତା'ରେ ଲେଖିଛନ୍ତି ।

ବାଇଶି ପାହାଚ ଯେ ବୀର, ରହସ୍ୟ ସ୍ଥଳ ନାମ ତାର
ଏହା ଯେ ବାଇଶି ପାହାଚ, ଅଠର କୋଟି ଶିବଲୋକ
ରହି ଅଛନ୍ତି ପୃଷ୍ଠ ଭାଗେ, ତାକୁ କହିବ ତୋର ଆଗେ ।

'ଅଷ୍ଟ ବୈକୁଣ୍ଠ' ଓ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ସମାହାର ଏହି ପାବଚ୍ଛ ଶ୍ରେଣୀ । ଗାୟତ୍ରୀ ତତ୍ତ୍ୱାନୁସାରେ, ଭୂ, ଭୂର୍ବ, ସ୍ୱଃ, ମହ, ଜନ, ତପ ଓ ସତ୍ୟ ଏବଂ ପ୍ରତ୍ୟେକ ଲୋକରେ ଅଛି ତିନି ସୋପାନ । ତାମସ, ରାଜସ ଓ ସାତ୍ତ୍ୱିକ । ଏହିପରି ୭ X ୩ ୨୧ଟି ପାହାଚ ଅତିକ୍ରମ କଲାପରେ ଶେଷ ଏକମାତ୍ର ପାହାଚକୁ ବ୍ରହ୍ମଲୋକ ପ୍ରାପ୍ତିର ପାହାଚ ବୋଲ କୁହନ୍ତି । ପିତୃଶିଳା ନିକଟରେ ପିତୃପୁରୁଷଗଣ, ଯମଶୀଳା ନିକଟର ଚିତ୍ରଗୁପ୍ତ ଓ ଯମଦୂତ ଗଣ, ତେତ୍ରିଶ କୋଟି ଦେବତା ଯକ୍ଷ, ଗନ୍ଧର୍ବ କିନ୍ନର ଏବଂ ଦେବ ନର୍ତ୍ତକୀଗଣ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଉଭା ହୋଇଥାନ୍ତି ।

ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ହେଲେ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ସହିତ ମନ, ବୁଦ୍ଧି, ଅହଙ୍କାର, କାମ, କ୍ରୋଧ, ଲୋଭ, ମୋହ, ଆସକ୍ତି, କାମନା, ତମ ଓ ରଜ ଗୁଣ ରୂପକ ୨୧ ସୋପାନ ଅତିକ୍ରମ କଲେ ବ୍ରହ୍ମଜ୍ଞାନ ପ୍ରାପ୍ତି ଘଟେ । କେହି କେହି ମତବ୍ୟକ୍ତ କରନ୍ତି ଏହି ୨୨ ପାହାଚ ଜୈନ ଧର୍ମର ୨୪ ତୀର୍ଥଙ୍କର ପ୍ରତୀକ । କେହି ମଧ୍ୟ କହନ୍ତି ଏ ପାହାଚ ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ) । ଦଶ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ର ଏବଂ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସମାହାର ହେଉଛି ଏ ଦ୍ୱାବିଂଶ ପାବଚ୍ଛ । କେହି କେହି ଏହା ସହିତ ମଧ୍ୟ ତୁଳନା କରନ୍ତି 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ' ।

ଧନ୍ୟ ଏ କ୍ଷେତ୍ରମଣିଙ୍କର କ୍ଷେତ୍ର ମାହାତ୍ମ୍ୟ, ଲୀଳାର୍ଣ୍ଣବ ସେ ବିଚିତ୍ର ରହସ୍ୟର ବିଶାଳ ଗନ୍ତାଗୃହ ସେ । ଅନନ୍ତ, ଅଚିନ୍ତ୍ୟ, ଅଭେଦ୍ୟ, ଅବର୍ଣ୍ଣନୀୟ, ଅଲୌକିକ, ଅନିର୍ବଚନୀୟ, ଅପାର୍ଥିବ, ଅର୍ମ୍ଯ ଚେତନାର ସେ ମୁଗ୍ଧ ପରିପ୍ରକାଶ । ଜୀବନ ଜାହ୍ନବୀର ସେ କଲ୍ଲୋଳ, ଭକ୍ତିରସ ପାରାବାରରେ ହିଲ୍ଲୋଳ ତଥା ସତ୍ୟ ସନାତନ ଯୁଗେ ଯୁଗେ ଏ ଜଗତବାସୀଙ୍କୁ ସତ୍ ମାର୍ଗରେ ପ୍ରେରିତ କରାନ୍ତୁ । ଜଗତବାସୀ ତାଙ୍କରି ବିଶାଳ ବାହୁ ଛତ୍ରଛାୟା ତଳେ ଆତଯାତ ହୋଇ ଏ ଧରାଧାମରେ ଆତଯାତ ହେଉଥାନ୍ତୁ ।

**ସହାୟକ ଗ୍ରନ୍ଥସୂଚୀ :**


୧) ଶ୍ରୀମନ୍ଦିର ତତ୍ତ୍ୱ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

୨) ଉତ୍କଳ ପ୍ରସଙ୍ଗ – ୨୦୧୦, ୨୦୧୧, ୨୦୧୨, ୨୦୧୩ ଓ ୨୦୧୪ ରଥଯାତ୍ରା ସଂଖ୍ୟା ।

୩) ଶ୍ରୀକ୍ଷେତ୍ରର ଅଜ୍ଞାତ ଅଧ୍ୟାୟ – ପଣ୍ଡିତ ହରିହର ମହାପାତ୍ର ।



ସହକାରୀ ପର୍ଯ୍ୟଟନ ଅଧିକାରୀ
ପର୍ଯ୍ୟଟନ ବିଭାଗ, ଭୁବନେଶ୍ୱର – ୧୪


◆◆◆



# ନବକଳେବର ଓ ମା' ମଙ୍ଗଳାଙ୍କ ଝାମୁଯାତ୍ରା

ପୀତାମ୍ବର ପ୍ରଧାନୀ

ଓଡ଼ିଶାର ଅନେକ ଶକ୍ତିପୀଠ ମଧ୍ୟରୁ ମା' ମହାମଙ୍ଗଳାଙ୍କ ପୀଠ (କାକଟପୁର) ଅନ୍ୟତମ। ଦୁର୍ଗାତନ୍ତ୍ର ଅନୁସାରେ ମା' ମଙ୍ଗଳା ଅଷ୍ଟ ଯୋଗିନୀଙ୍କ ମଧ୍ୟରୁ ପ୍ରଧାନ। ଧର୍ମପୀଠରେ ପଶ୍ଚିମରେ ପୁରାଣ ଯୁଗର କୁଳୁକୁଳୁ ନାଦିନୀ ପ୍ରାଚୀ ନଦୀ, ପୂର୍ବରେ ବଙ୍ଗୋପସାଗର, ଉତ୍ତରରେ ସରସ୍ୱତୀ ନଦୀ, ଦକ୍ଷିଣରେ କୋଣାର୍କର ସୂର୍ଯ୍ୟମନ୍ଦିର, ଅର୍କତୀର୍ଥ ଓ ରାମଚଣ୍ଡୀ ମନ୍ଦିର। ନିକଟରେ ଅସଂଖ୍ୟ ଋଷିମଠ, ଅଷ୍ଟତୀର୍ଥ, ଅଷ୍ଟଶମ୍ଭୁ, ଅଷ୍ଟଚଣ୍ଡୀ, ଅଷ୍ଟମାଧବ, ଅଷ୍ଟସାକ୍ଷୀ ଓ ଦ୍ୱାଦଶ ଶମ୍ଭୁ ଥିବାର ପରିଦୃଷ୍ଟ ହୁଏ। ପୀଠରେ ପରମ ବୈଷ୍ଣବୀ ଓ ମହାନ ଖ୍ୟାତିସମ୍ପନ୍ନ ମା' ମଙ୍ଗଳାଙ୍କ ଆରାଧନା ମନ୍ଦିର। ମନ୍ଦିର ଓ ମୁଖଶାଳାର ଉଚ୍ଚତା ଯଥାକ୍ରମେ ୫୦ ଓ ୪୫ ଫୁଟ। ନିର୍ମାଣ ପରିପାଟୀରୁ ଅନୁମେୟ ଏହା ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀରୁ ପୂର୍ବବର୍ତ୍ତୀ। ମନ୍ଦିରର ନିର୍ମାଣ କୌଶଳ ଏପରି ଯେ ସୂର୍ଯ୍ୟଙ୍କର ପ୍ରଥମରଶ୍ମୀ ଦେବୀଙ୍କର ବିଗ୍ରହ ଉପରେ ପଡ଼ିଥାଏ।

ମନ୍ଦିର ମଧ୍ୟରେ ଚତୁଃଷ୍କୋଣ ବିଶିଷ୍ଟ କଳାମୁଗୁନି ପଥରରେ ଦେବୀଙ୍କ (ପ୍ରତିମା) ବିଗ୍ରହ ଖୋଦିତ। ପ୍ରାୟ ୬.୫ ଫୁଟ ଉଚ୍ଚତା ଓ ୪.୫ ଫୁଟ ପ୍ରସ୍ତ ବିଶିଷ୍ଟ ପଥର ନିମ୍ନଭାଗରେ ମୃଣାଳଯୁକ୍ତ ପ୍ରସ୍ଫୁଟିତ ପଦ୍ମପୁଷ୍ପ ଉପରେ ସ୍ମିତହାସ୍ୟ ଭରା, ସୌମ୍ୟ ଶାନ୍ତ ସ୍ଥିରବଦନା ମା' ମହାମଙ୍ଗଳା। ଚକ୍ଷୁଯୁଗଳ ଅର୍ଦ୍ଧନିମିଳିତ। ଚାରୋଟି ହସ୍ତ ମଧ୍ୟରୁ ଦକ୍ଷିଣ ଉର୍ଦ୍ଧ୍ୱ ହସ୍ତରେ ପୂର୍ଣ୍ଣଚନ୍ଦ୍ର, ନିମ୍ନହସ୍ତରେ ଜପାମାଳା। ବାମ ଉର୍ଦ୍ଧ୍ୱ ହସ୍ତରେ ପଦ୍ମକଳିକା, ନିମ୍ନ ହସ୍ତରେ ଏକ ମୃଣାଳଖଣ୍ଡ। ଜଣାଯାଏ ଏହା ସୃଷ୍ଟିକୁ ଆଶୀର୍ବାଦ ଓ ଅନ୍ୟପକ୍ଷରେ ଜପସଂଖ୍ୟା କରଣରେ ନିମଗ୍ନା ପଦବାଚ୍ୟା। ମଙ୍ଗଳାଙ୍କ ଉଭୟ ପାର୍ଶ୍ୱରେ ଦୁଇଜଣ ପରିଚାଳିକା । ଉର୍ଦ୍ଧ୍ୱରେ ଦେବକନ୍ୟାଗଣ ଏବଂ ଦେବୀଙ୍କ ପଦତଳେ ଏକ ସରଳରେଖାରେ ଉପବେଶନ କରିଛନ୍ତି ଆଠଟି ନାରୀ ମୂର୍ତ୍ତି ।

ଏହି ଚିତ୍ର ପଛରେ ଅନେକ କାହାଣୀ ଓ ଲୋକକଥା ଶୁଣିବାକୁ ମିଳେ। ମା' ମଙ୍ଗଳାଙ୍କ ପବିତ୍ର ଶକ୍ତିପୀଠ ରାଜଧାନୀ ଭୁବନେଶ୍ୱରଠାରୁ ଦକ୍ଷିଣ ପୂର୍ବକୁ ପ୍ରାୟ ୬୦ କି.ମି. ଦୂର ଓ ପୁରୀଠାରୁ ପ୍ରାୟ ୫୦ କି.ମି. ଉତ୍ତର ପୂର୍ବକୁ କାକଟପୁରଠାରେ ଅବସ୍ଥିତ। ଉକ୍ତ ପୀଠରେ ଚୈତ୍ର ମାସ ମଙ୍ଗଳବାରରେ ପୂଜାର ମାହାତ୍ମ୍ୟ ସର୍ବାଧିକ। ମଙ୍ଗଳା ଏକଦା ସିଂହଳ (ଲଙ୍କା) ରାଜା ରାବଣର ଆରାଧ୍ୟା ଦେବୀ ଥିଲେ। ରାବଣର ଦୁର୍ନୀତି ଦୁର୍ବିସହ ହେବାରୁ ମଙ୍ଗଳା ପ୍ରଭୁ ରାମଚନ୍ଦ୍ରଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କ ଦ୍ୱାରା ରାବଣକୁ ନିହତ କଲେ। ଯୁଗ ପରେ ଯୁଗ ଅତିବାହିତ ହେଲା। ପ୍ରାଚୀ ନଦୀ ମଧ୍ୟ ଦେଇ ବାଣିଜ୍ୟ ଉଦ୍ଦେଶ୍ୟରେ ବଣିକମାନେ ସିଂହଳ ଯାତ୍ରା କରୁଥିଲେ। ମମତାନାମ୍ନୀ ବଣିକ ଝିଅ ସିଂହଳ ଯାତ୍ରା ଶେଷରେ ମଙ୍ଗଳା ବିଗ୍ରହକୁ ବୋଇତରେ ଧରି ଫେରୁଥିଲା। କୌଣସି ଏକ ଘନ ଅନ୍ଧକାର ନିଶାର୍ଦ୍ଧରେ ବୋଇତ ଜଳମଗ୍ନ ହେଲା। ଜଳ ମଧ୍ୟରୁ ମଙ୍ଗଳାଙ୍କ ଉଦ୍ଧାର ନିମିତ୍ତ ମମତା ବାରବର୍ଷକାଳ ଚାନ୍ଦ୍ରାୟଣ ବ୍ରତ ପାଳନ କରିଥିଲା। ସାଗରର ଜଳ ଶାନ୍ତ ହେଲା । ଦେବୀଙ୍କ ସ୍ୱପ୍ନାଦେଶ ଫଳରେ ଜଳ ମଧ୍ୟରୁ ମା' ମଙ୍ଗଳା ଉଦ୍ଧାର ହେଲେ। ଯେଉଁ ସ୍ଥାନରୁ ଦେବୀ ବିଗ୍ରହ ଉଦ୍ଧାର ହୋଇଥିଲେ, ସେ ସ୍ଥାନର ନାମକରଣ କରାଗଲା 'ମଙ୍ଗଳପୁର'। ତା'ପରେ ଦେବୀଙ୍କୁ ନିକଟସ୍ଥ ଦେଉଳୀ ମଠରେ ରଖାଗଲା। ପରବର୍ତ୍ତୀ ସମୟରେ ଦେବୀ କିୟଦ ଉତ୍ତର ଦିଗକୁ ସ୍ଥାନାନ୍ତରିତ ହେଲେ। ସେହି ସ୍ଥାନର ଅଧିଷ୍ଠାତ୍ରୀ କାକଟେଇଙ୍କ ନାମାନୁଯାୟୀ ସ୍ଥାନର ନାମକରଣ



କରାଗଲା 'କାକଟପୁର'। ଲୋକମୁଖରୁ ଶୁଣାଯାଏ, କଳାପାହାଡ଼ର ଶକ୍ତିପୀଠକୁ ଆଗମନ ବେଳେ 'ମଙ୍ଗଳା' ପ୍ରାଚୀରେ ଜଳମଗ୍ନା ହୋଇଥିଲେ। କିଛିକାଳ ଅନ୍ତେ କୌଣସି ଏକ ଭକ୍ତ ପ୍ରାଚୀ ଜଳରୁ ଦେବୀଙ୍କର ବିଗ୍ରହ ଉଦ୍ଧାର କରି ପୁନଃବିଧି ପୂର୍ବକ ମନ୍ଦିରରେ ରଖାଇଥିଲେ।

ବହୁ ପୂର୍ବରୁ କାକଟପୁରଠାରେ ମଙ୍ଗଳାପୀଠ ପ୍ରତିଷ୍ଠିତ ଥିଲା। ମାଦଳାପାଞ୍ଜି ଅନୁଯାୟୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ମହାଦାରୁ ସଂଗ୍ରହ ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ମଙ୍ଗଳାଙ୍କ ଆଜ୍ଞା ପାଇଁ ହଟ ଓ ବଟଧାରୀ ଦୁଇଜଣ ତାନ୍ତ୍ରିକଙ୍କୁ ପ୍ରେରଣ କଲେ। ଦେବୀ ବିଗ୍ରହ ପୀଠ ସ୍ଥାନରେ ନଥିବା ଜାଣି ଅନେକ ଆରାଧନା ପରେ ପ୍ରାଚୀ ଜଳରୁ ବି ପାଇନଥିଲେ। ବ୍ୟର୍ଥ ମନୋରଥ ହୋଇ ସେମାନଙ୍କ ଜୀବନକୁ ଉତ୍ସର୍ଗ କରିବାକୁ ଉଦ୍ୟତ ହେବା ବେଳେ ଦେବୀ ପ୍ରସନ୍ନା ହୋଇ ଆବିର୍ଭୂତା ହୋଇଥିଲେ। ମଙ୍ଗଳାଙ୍କ ଆଜ୍ଞା ପାଇ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଦାରୁ ନିର୍ମାଣ ଶେଷ ହେଲା। ଅଦ୍ୟାବଧି ଏହି ଦାରୁ ସଂଗ୍ରହବେଳେ (ନବକଳେବର ବେଳେ) ମା' ମଙ୍ଗଳାଙ୍କ ଆଜ୍ଞା ନିଆଯାଇଥାଏ।

ମା' ମଙ୍ଗଳାଙ୍କ ଝାମୁଯାତ୍ରା ପାଞ୍ଚପାଳି କରିବାର କାରଣ– ଯେତେବେଳେ ହଟ, ବଟ (ତାନ୍ତ୍ରିକ) ଦେବୀପୀଠରେ ପହଞ୍ଚିଲେ, ସେଦିନ ଥିଲା ଚୈତ୍ର ମାସର ପ୍ରଥମ ମଙ୍ଗଳବାର ଏବଂ ଶେଷରେ ଦେବୀ ପଞ୍ଚମ ମଙ୍ଗଳବାର ଦିନ ପ୍ରସନ୍ନା ହୋଇଥିଲେ। ସେହି ତିଥିକୁ ଝାମୁଯାତ୍ରା ରୂପେ ପାଳନ କରାଯାଇଥାଏ। ସେହିବର୍ଷଠାରୁ ଅଦ୍ୟାବଧି ଝାମୁଯାତ୍ରା ପାଞ୍ଚପାଳି ହୋଇଥାଏ। ଚୈତ୍ର ମାସର ପ୍ରତ୍ୟେକ ପାଳି ଯାତ୍ରାରେ 'ପାଟୁକା ନାଚ' ମଙ୍ଗଳାଙ୍କର ଏକ ଆକର୍ଷଣୀୟ ନାଚ। ପାଟୁକା ନାଚ ଦୁଇ ଶ୍ରେଣୀର ପାଟୁକା ନାଚ କରନ୍ତି। ପ୍ରଥମ ଶ୍ରେଣୀର ପାଟୁକା ହେଉଛନ୍ତି ପାଞ୍ଚଜଣ ମାଳି ଓ ଦ୍ୱିତୀୟ ଶ୍ରେଣୀର ପାଟୁକା ପାଞ୍ଚଜଣ ଭୋଇ। ମାଳିପାଟୁକା ମଙ୍ଗଳାଙ୍କ ନିକଟରୁ ଧଣ୍ଡା (ଆଜ୍ଞା) ନେଇ ବାହାରକୁ ଯାଇ ନାଚ କରନ୍ତି। ପାଟୁକାମାନେ କାଷ୍ଠଦଣ୍ଡ ଗୋଡ଼ରେ ପୂରାଇ ପିତ୍ତଳ ନିର୍ମିତ ପଞ୍ଚମୁଖୀ ଘଟଧାରଣ କରିଥାନ୍ତି। ଢୋଲ ଓ ମହୁରୀ ବାଦ୍ୟ ଗହଣରେ ପାଟୁକାନାଚ ହୁଏ। ପଞ୍ଚମପାଳି ଯାତ୍ରା (ଝାମୁ) ପୂର୍ବଦିନ ରାତିରେ କାଳିକାମାନେ କେତେକ ନିର୍ଦ୍ଦିଷ୍ଟ ପରିବାର ଦାଣ୍ଡରେ ନାଚକରି ଅତୀତ, ବର୍ତ୍ତମାନ, ଭବିଷ୍ୟତ କଥା ଶୁଣାନ୍ତି। ଜଣାଯାଏ, ଏଥିରେ ଚିର ବାସ୍ତବତା ଥାଏ। ପଞ୍ଚମପାଳି ଯାତ୍ରା ଦିନ ମଙ୍ଗଳାଙ୍କ ସିଂହଦ୍ୱାର ସମ୍ମୁଖରେ ଏକ ଗଭୀର ଗର୍ତ୍ତ ଖୋଳାଯାଇ ନିଆଁରଡ ଭିତରେ ପାଟୁକାମାନଙ୍କର ନାଚ ଦର୍ଶକମାନଙ୍କୁ ବିମୋହିତ କରିଥାଏ। ଝାମୁଯାତ୍ରା ମଧ୍ୟରାତ୍ର ସମୟରେ ମଙ୍ଗଳାଙ୍କ ମନ୍ଦିର ବେଢ଼ା ମଧ୍ୟରେ 'କାଳିକାନାଚ' ଏକ ଆକର୍ଷଣୀୟ ଦୃଶ୍ୟ। ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ସେଥିନେଇ ନିୟୋଜିତ। ସେହି ବ୍ୟକ୍ତି ମଙ୍ଗଳାଙ୍କ ଗୋଶାଳାରେ ମହାକାଳୀ ବେଶରେ ନିଜକୁ ସଜାଇ ଏକ ଖଡ୍‌ଗ ଧାରଣ ପୂର୍ବକ ଢୋଲ, ମହୁରୀ, ମଶାଲ ମଧ୍ୟରେ ମା'ଙ୍କ ମନ୍ଦିର ଅଭିମୁଖେ ନାଚି ନାଚି ଯାତ୍ରା କରେ। କାଳିକା ଅତିଶୟ ନାଚି ନାଚି ଶେଷରେ ଗୋଶାଳା ନିକଟରେ ନିସ୍ତେଜ ହୋଇ ପତିତ ହୁଏ ଏବଂ କାଳିକା ନାଚର ସମାପ୍ତି ଘଟେ। ଶକ୍ତିପୀଠ କାକଟପୁରର ମଙ୍ଗଳାଙ୍କ ମନ୍ଦିର ମଧ୍ୟରେ ଭାଗବତ ଓ ଗୀତଗୋବିନ୍ଦ ପାଠ, ବିବିଧ ବୈଷ୍ଣବ ପୂଜାର ପ୍ରଚଳନ, ସୂର୍ଯ୍ୟପୂଜା ଆଦି ଦେବନୀତି, ସର୍ବଦେବ, ସର୍ବଧର୍ମ ସମନ୍ୱୟତାର ଚରମ ପରାକାଷ୍ଠା ନିଦର୍ଶନ ପ୍ରମାଣିତ କରେ। ଚଇତ ମାସର ଝାଞ୍ଜି ଖରାବେଳେ ଓଡ଼ିଶାର ପୁରପଲ୍ଲୀରେ ମଙ୍ଗଳାଙ୍କ ପନ୍ଥେଇ ପୂଜା ବା ଦାଣ୍ଡପୂଜା କରାଯାଏ। ଝିଅ ବୋହୂମାନେ ଶୁଦ୍ଧପୂତ ହୋଇ ଦାଣ୍ଡରେ ଚତୁଃଷ୍କୋଣ ବିଶିଷ୍ଟ ଦେବୀଙ୍କ ଆହ୍ୱାନ କରି ପୂଜା କରନ୍ତି ଏବଂ ଦେବୀଙ୍କୁ ଧୂପ, ଦୀପ, ନୈବେଦ୍ୟ, ହଳଦୀପାଣି, ଫୁଲ, ଲିଆ ଆଦି ସମର୍ପଣ କରି ହଳଦୀ ପାଣି ପିଅନ୍ତି। ସବୁ ଦୃଷ୍ଟିକୋଣରୁ ସମୀକ୍ଷା କଲେ ଜଣାଯାଏ, ମହାମଙ୍ଗଳାଙ୍କ ପୂଜା କେବଳ କାକଟପୁରର କାମେଶ୍ୱରୀ ପୀଠରେ ପୂଜିତ ଦେବୀ ପୂଜା ମାଧ୍ୟମରେ ସର୍ବଧର୍ମ ସମନ୍ୱୟ ଭାବ, ଶକ୍ତି ପୂଜାର ବୈଶିଷ୍ଟ୍ୟ, ଭକ୍ତି ଭାବନା ଓ ସାଂସ୍କୃତିକ ବିଭବ ପରିସ୍ଫୁଟ ହୁଏ।

ବିମାନବନ୍ଧୁ ସାହି, ପୁରୀ

◆◆◆



# ଶ୍ରୀକ୍ଷେତ୍ର ଦର୍ଶନ

ଅଧ୍ୟାପିକା ସୌଦାମିନୀ ବେହେରା

ସର୍ବଶକ୍ତିମାନ ଈଶ୍ୱର,ବିଶ୍ୱ ନିୟନ୍ତା, ପରଂବ୍ରହ୍ମ ସ୍ୱୟଂ ଶ୍ରୀଜଗନ୍ନାଥ । ଜୀବନରେ ତାଙ୍କ ବିନା ଗତି ନାହିଁ, ମୁକ୍ତି ନାହିଁ। ଇହକାଳ, ପରକାଳର ଦେବତା ସେଇ କାଳିଆ ଠାକୁର ଅନାଦି, ଅନନ୍ତ । ସେ ସ୍ୱୟଂଭୂ, ପରିଭୂ । ତେତିଶିକୋଟି ଦେବାଦେବୀ, ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ତ୍ରାଣକର୍ତ୍ତା ଶ୍ରୀଜଗନ୍ନାଥ । ହିନ୍ଦୁ ଧର୍ମର ଧର୍ମଧାରା, ପରମ୍ପରା ଓ ସଂସ୍କୃତିକୁ ଅନୁଧ୍ୟାନ ଓ ପଠନ କଲେ ଜଣାପଡେ ଯେ, ଶ୍ରୀଜଗନ୍ନାଥ ସଂସ୍କୃତି ଏକ ବିଶାଳ ସମୁଦ୍ରର ଅଗଣିତ ଜଳରାଶିର ଭଣ୍ଡାର । ଏହା ଭକ୍ତକୁ ବିମୋହିତ, ଉଲ୍ଲସିତ, ଆମୋଦିତ, ଚକିତ ଓ ଭାବ ବିହ୍ୱୋଳିତ କରିଦିଏ । ସେଇ ଚକାନୟନର କ୍ଷଣିକ ଦର୍ଶନରେ ଆନନ୍ଦର ଅଶ୍ରୁ ନିଗିଡି ପଡେ । ଆତ୍ମବିଭୋର ହୋଇପଡେ । କି ଅପୂର୍ବ ଆକର୍ଷଣ । ମନଲୋଭା ଚାହାଣି, ଓଠରେ ରଙ୍ଗର ହସପସରା । ଏ ସଂସାର ଅଳିକ, ଅସାର । ଦୁନିଆରେ ସବୁ ବସ୍ତୁବାଦୀ, କ୍ଷଣଭଙ୍ଗୁର, ପର । କିନ୍ତୁ ଭଗବାନ ଭକ୍ତର ଏକାନ୍ତ ନିଜର । ସେ ଆନନ୍ଦର ସାଗର । ଭକ୍ତ ବାରମ୍ବାର ଭକ୍ତିରେ ଲୀନ ହେବାପାଇଁ ବ୍ୟାକୁଳ, ଭକ୍ତିରସର ଭୋଗରେ ସେ ଶାନ୍ତି ପାଇଥାଏ ।

ଓଡିଶାର ମାଟି ଧନ୍ୟ ହୋଇଛି ଶ୍ରୀମନ୍ଦିର ପାଇଁ । ଶ୍ରୀକ୍ଷେତ୍ର ସାରା ପୃଥିବୀରେ ଜଗନ୍ନାଥ ଧାମ ନାମରେ ବିଖ୍ୟାତ । ଚାରି ତୀର୍ଥଧାମରୁ ଶ୍ରୀଜଗନ୍ନାଥ ଧାମ ଶ୍ରେଷ୍ଠ ଅଟେ । କଥିତ ଅଛି, ତିନିଧାମର ଯାତ୍ରାପରେ ଶ୍ରୀଜଗନ୍ନାଥ ଧାମର ଦର୍ଶନ କରିବା ଜରୁରୀ ହୋଇଥାଏ । ନହେଲେ ଚାରିଧାମର ଦର୍ଶନର ଫଳ ପ୍ରାପ୍ତି ହୋଇପାରେ ନାହିଁ । ତେଣୁ ସମଗ୍ର ଉତ୍କଳବାସୀ ଆଜି ଶ୍ରୀଜଗନ୍ନାଥଙ୍କ ପାଇଁ ଗର୍ବିତ । ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ରତ୍ନସିଂହାସନରେ ବିରାଜମାନ ହୋଇଛନ୍ତି । ମନ୍ଦିରର ଅଗ୍ରଭାଗରେ ନୀଳଚକ୍ର ରହିଛି ଓ ତା' ଉପରେ ଉଡୁଛି ପତିତପାବନ ବାନା । ପାତକ ଦୋଷ ଲାଗିଥିଲେ ପତିତପାବନ ବାନା ଦର୍ଶନରେ ଭକ୍ତର ଦୋଷ ହରଣ ହୁଏ ବୋଲି ବିଶ୍ୱାସ ରହିଛି ।

ଶ୍ରୀଜଗନ୍ନାଥ କଳିଯୁଗର ଆରାଧ୍ୟ ଦେବତା, ଜୀବର ଜୀବନ । ପ୍ରତ୍ୟେକ ଆତ୍ମାରେ ସେ ବିଦ୍ୟମାନ । ଦେହ ମଧ୍ୟରେ ମନ । ଏହି ଶରୀର ମଧ୍ୟରେ ମନ ସର୍ବ ଉପଲବ୍ଧି, ଦେହ ଉପଲବ୍ଧି, ଆତ୍ମ ଉପଲବ୍ଧି । ମହାବାହୁ ଦୁଃଖୀଜନଙ୍କ ଦୁଃଖର ବିନାଶ ପାଇଁ ଶ୍ରୀମନ୍ଦିରରେ ବିଦ୍ୟମାନ । ଯେ ନିଜକୁ ହେୟ ମଣିଥାଏ ତାକୁ ପତିତ କୁହାଯାଏ । ସେହି ପତିତମାନଙ୍କ ଦୁଃଖ ହରଣ ପାଇଁ ଚକାନୟନ ଶ୍ରୀ ପତିତପାବନ ରୂପେ ଶ୍ରୀମନ୍ଦିରର ପ୍ରବେଶ ଦ୍ୱାର ସିଂହଦ୍ୱାର ଗୁମୁଟରେ ବିରାଜମାନ ହୋଇଛନ୍ତି । ପ୍ରଭୁ ଶ୍ରୀପତିତପାବନ ରୂପରେ ଭକ୍ତମାନଙ୍କର ଦର୍ଶନ ଇଚ୍ଛାକୁ ଚରିତାର୍ଥ କରିବା ପାଇଁ ସେମାନଙ୍କୁ ଖୋଲା ଦର୍ଶନ ଦେଇଥାନ୍ତି। ଭକ୍ତ ପ୍ରଭୁଙ୍କୁ ଦେଖି ଆତ୍ମସନ୍ତୋଷ ଲାଭ କରେ । ସତରେ ପ୍ରଭୁଙ୍କ ଲୀଳା ଅପାର ଅଟେ ।

ବର୍ଷକ ବାରମାସ ପୁରୀ ଉତ୍ସବ ମୁଖରିତ ହୋଇଥାଏ । ପ୍ରଭୁମାନଙ୍କର ସ୍ୱତନ୍ତ୍ର ନୀତି, ନିୟମରେ ପ୍ରତିଦିନର ପୂଜାଅର୍ଚ୍ଚନାର ପରମ୍ପରା ସମ୍ପନ୍ନ ହେଉଅଛି । ସେ ଏ ଜଗତର ତ୍ରାଣକର୍ତ୍ତା । ଶହ ଶହ ସୁଆର, ପୂଜାପଣ୍ଡା, ସେବକ ଗୋଷ୍ଠୀ ଲାଗିପଡିଥାନ୍ତି ଠାକୁରମାନଙ୍କର ସେବାରେ । ଓଡିଶା ପ୍ରଶାସନଠୁ ଆରମ୍ଭ କରି ସରକାର, ସାଧାରଣ ଜନତାଙ୍କର ଠାକୁରଙ୍କ ସେବାରେ ଉତ୍ସାହ ଓ ଉଦ୍ଦୀପନା ସହିତ ଭକ୍ତିଭାବ ଦେଖିବାକୁ ମିଳେ । ଶ୍ରୀମନ୍ଦିରର ବେଢାରେ ଥରେ ବୁଲିଆସିଲେ ମନରେ ଅପୂର୍ବ ଆନନ୍ଦ,



ଶାନ୍ତି,ଏକାଗ୍ରତା, ସ୍ୱଚ୍ଛତା, ଭକ୍ତିଭାବ ଜାଗ୍ରତ ହୋଇଥାଏ । 'ଶ୍ରୀ'ର ଅର୍ଥ ହେଉଛି ସର୍ବଶ୍ରେଷ୍ଠ । ତେଣୁ ଶ୍ରୀଜଗନ୍ନାଥ ଧାମରେ ସବୁ ଶ୍ରେଷ୍ଠ ଅଟେ । ଉତ୍କଳୀୟ ପରମ୍ପରା ଆଜି ଖୁବ୍ ଉଚ୍ଚରେ । ଧନ୍ୟ ଓଡିଶାର ମାଟି, ପାଣି, ପବନ ।

ଶ୍ରୀମନ୍ଦିରକୁ ବେଢି ରହିଛି ମେଘନାଦ ପାଚେରୀ । ଶ୍ରୀମନ୍ଦିର ବେଢାରେ ସବୁ ଦେବାଦେବୀଙ୍କର ସମାଗମ ଦେଖିବାକୁ ମିଳେ । ତେଣୁ ଏଠାକୁ ଆସିଲେ ଭକ୍ତ ସମସ୍ତ ଦେବଦେବୀଙ୍କର ଦର୍ଶନର ସୁଯୋଗ ଲାଭ କରିଥାଏ ।

ମୁଖ୍ୟ ମନ୍ଦିରର ତିନି ଦିଗରେ ତିନି ଦେବତା ରହିଛନ୍ତି– ବରାହ, ନୃସିଂହ ଓ ବାମନ । ଭଗବାନଙ୍କର ଦଶାବତାରରେ ଏହି ତିନି ଅବତାରୀ ସ୍ଥାନ ପାଇଥିଲେ । ଶ୍ରୀମନ୍ଦିର ଭିତର ଓ ବାହାର ବେଢାରେ ଅନେକ ଛୋଟ ବଡ ମନ୍ଦିର ଓ ଦେବତା ଦେଖିବାକୁ ମିଳେ । ଯଥା– ଆଗ୍ନେଶ୍ୱର, ଅନନ୍ତ ବାସୁଦେବ, କୁତାମଚଣ୍ଡୀ, ଇନ୍ଦ୍ରାଣୀ, ଘଣ୍ଟମୁଣ୍ଡେଇ, କାଶୀବିଶ୍ୱନାଥ, ଚକ୍ରନାରାୟଣ, ନୀଳମାଧବ, ଦକ୍ଷିଣେଶ୍ୱର ମହାଦେବ, ନବଗ୍ରହ, ଦୁର୍ଗାମାଧବ, ଦଧିବାମନ, ମାର୍କଣ୍ଡେଶ୍ୱର, ନାଟୁଆ ଗଣେଶ, ପଞ୍ଚମୁଖୀ ହନୁମାନ, ପଶ୍ଚିମଦ୍ୱାର ହନୁମାନ, ମୁକ୍ତେଶ୍ୱର ମହାଦେବ, ପାଦପଦ୍ମ, ଫତେମହାବୀର, ବାଳମୁକୁନ୍ଦ, ବୈକୁଣ୍ଠନାଥ–ତପସ୍ୱୀ ମହାବୀର ଓ ସୁଷେଣ, ବଟ ଜଗନ୍ନାଥ, ପର୍ଣ୍ଣନାଥ–ଧବଳେଶ୍ୱର, ବଟକୃଷ୍ଣ, ବାଳମୁକୁନ୍ଦ, ବାରଭାୟା ହନୁମାନ, ବୁଢୀମା' ଠାକୁରାଣୀ, ବିମଳାଦେବୀ, ମହାଲକ୍ଷ୍ମୀ, ସର୍ବମଙ୍ଗଳା–ବାଟମଙ୍ଗଳା, ଲକ୍ଷ୍ମୀନାରାୟଣ, ଶୀତଳା–ଉତ୍ତରାୟଣୀ, ରାଧାକୃଷ୍ଣ, ବେଢାକାଳୀ, ସୋମନାଥ, କୋଇଲି ବୈକୁଣ୍ଠ, ବେଣୁମାଧବ, ଯଜ୍ଞନୃସିଂହ, ରାମନାଥ, ବଦ୍ରିନାଥ, ଦ୍ୱାରକାନାଥ, ଯୋଗେଶ୍ୱର ରାମଚନ୍ଦ୍ର, ରାଧାକାନ୍ତ, ସୂର୍ଯ୍ୟଦେବ, ସାକ୍ଷୀଗୋପାଳ, ସୀମାଞ୍ଚଳ ନୃସିଂହ, କ୍ଷେତ୍ରପାଳ ଭୈରବ, କ୍ଷୀରଚୋରା ଗୋପୀନାଥ, ତପସ୍ୱୀ ହନୁମାନ, ସତ୍ୟନାରାୟଣ, ବୃନ୍ଦାବନଚନ୍ଦ୍ର, ହରି ସହଦେବ, ପଞ୍ଚପାଣ୍ଡବ, ଲକ୍ଷ୍ମୀନୃସିଂହ, ମହାବୀର, ପାତାଳେଶ୍ୱର ଆଦି ମନ୍ଦିରମାନ ଦେଖିବାକୁ ମିଳେ । ସେଥିପାଇଁ କୁହାଯାଏ, ଶ୍ରୀମନ୍ଦିର ଦର୍ଶନରେ ସବୁ ରିଷ୍ଟ ଖଣ୍ଡନ ହୁଏ । ପାପରୁ ମୁକ୍ତି ମିଳେ ଓ ପୁଣ୍ୟର ଫଳ ମିଳିଥାଏ । ମନୁଷ୍ୟର ଜନ୍ମ ସାର୍ଥକ ଲାଭ କରେ । ଆଉ ପୁନର୍ଜନ୍ମ ମିଳେ ନାହିଁ ବୋଲି ବିଶ୍ୱାସ ରହିଛି । ଏହାଛଡା ମନ୍ଦିର ଭିତର ବେଢାରେ କଳ୍ପବଟ ରହିଅଛି । ଶହଶହ ବର୍ଷଧରି ଏହା ଦଣ୍ଡାୟମାନ । ଭକ୍ତ ଏଠାରେ ମାନସିକ ଯାଚିଲେ ତାକୁ ପୂର୍ଣ୍ଣଫଳ ମିଳେ ବୋଲି ବିଶ୍ୱାସ ରହିଛି । ଚତୁର୍ଦ୍ଧାମୂର୍ତ୍ତିଙ୍କର ଦର୍ଶନ ପରେ ଭକ୍ତ ଏ ବୃକ୍ଷ ଛାୟାରେ କିଛି ସମୟ ବିଶ୍ରାମ ନେଇଥାଏ ।

ମୁକ୍ତିମଣ୍ଡପ ନାମରେ ଏକ ମଣ୍ଡପ ରହିଛି । ଏହି ମଣ୍ଡପରେ ୧୬ ଶାସନର ବ୍ରାହ୍ମଣ ଓ ଶଙ୍କରାଚାର୍ଯ୍ୟ ବସିବାର ପରମ୍ପରା ରହିଛି । ମା' ବିମଳାଙ୍କ ମନ୍ଦିର ସମ୍ମୁଖରେ ରୋହିଣୀକୁଣ୍ଡ ରହିଛି । ଏହି କୁଣ୍ଡର ଜଳ ପବିତ୍ର । ମଥାରେ ସିଞ୍ଚିଲେ ପୁଣ୍ୟ ମିଳିଥାଏ ।

ଦେବଦେବୀଙ୍କୁ ସମର୍ପଣ ନୈବେଦ୍ୟକୁ ଭୋଗ କୁହାଯାଏ । କିନ୍ତୁ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅର୍ପିତ ନୈବେଦ୍ୟକୁ ମହାପ୍ରସାଦ କୁହାଯାଏ । ଶୁଦ୍ଧ ଅର୍ଥରେ କହିଲେ ଏହାକୁ ଶ୍ରୀ ମହାପ୍ରସାଦ ଅର୍ଥାତ ପ୍ରସାଦ ମଧ୍ୟରେ ଶ୍ରେଷ୍ଠ ଅଟେ । ମହାପ୍ରସାଦର ମହିମା ଅତୁଳନୀୟ, ଅବର୍ଣ୍ଣନୀୟ । ମହାପ୍ରସାଦ ସେବନ କଲେ କୋଟି ପୁଣ୍ୟପ୍ରାପ୍ତି ହୁଏ । ମହାପ୍ରସାଦର ସେବନରେ ଛୁଆଁ, ଅଛୁଆଁ, ଅଇଁଠାର ବାରଣ ନଥାଏ । ଲକ୍ଷଲକ୍ଷ ଭକ୍ତ ମହାପ୍ରଭୁଙ୍କ ଦର୍ଶନ ଓ ମହାପ୍ରସାଦ ସେବନ ଆଶାରେ କାହିଁ କେତେ ଦୂରୁ ଆସିଥାନ୍ତି । ମହାପ୍ରସାଦ ସେବନରେ ମହାପାତକ ବିନାଶ ହୋଇଥାଏ । ମାଟିକୁଡୁଆରେ ରନ୍ଧା ହୋଇ ମହାପ୍ରଭୁଙ୍କୁ ନୈବେଦ୍ୟ ପରେ ମାଟିକୁଡୁଆରୁ ନବାଢି ସମସ୍ତେ ସ୍ୱହସ୍ତରେ ନେଇ ସେବନ କରିଥାନ୍ତି । ତେଣୁ ମହାପ୍ରସାଦକୁ 'ଅବଢା' କୁହାଯାଏ । ମହାପ୍ରଭୁଙ୍କର ଶୁଷ୍କ ଅନ୍ନକୁ ନିର୍ମାଲ୍ୟ କୁହାଯାଏ । ଜୀବନ ନାଟିକା ସରିବା କିଛି କ୍ଷଣ ପୂର୍ବରୁ ମନୁଷ୍ୟ ତୁଣ୍ଡରେ ଟିକିଏ ନିର୍ମାଲ୍ୟ ଓ ତୁଳସୀପତ୍ର ପାଇଲେ ବିଷ୍ଣୁଙ୍କର ଶରୀରରେ ସେ ଜୀବର ଆତ୍ମା ଲୀନ ହୋଇଥାଏ ବୋଲି ପୁରାଣରେ ବର୍ଣ୍ଣିତ ହୋଇଅଛି । ପୃଥିବୀର ବଡ ଭୋଜନାଳୟ ହେଉଛି ଶ୍ରୀକ୍ଷେତ୍ରର ଆନନ୍ଦବଜାର । ଲକ୍ଷ ଲକ୍ଷ ଭକ୍ତ ଖାଇଲେ,



ବୋହିଲେ ସରେ ନାହିଁ । ମହାପ୍ରଭୁଙ୍କର ଭୋଜନ ନୀତିକୁ 'ମଣୋହି' କୁହାଯାଏ । ରତ୍ନବେଦୀରେ ବସିଥିବା ମହାପ୍ରଭୁଙ୍କର ଭୋଗକୁ 'ଅମୃତ ମଣୋହି ଭୋଗ' କୁହାଯାଏ । ଏହାର ଅନ୍ୟନାମ ରାଜଭୋଗ । ପ୍ରତ୍ୟେକ ଦିନ ୫ଥର ପ୍ରଭୁଙ୍କ ନିକଟରେ ରାଜଭୋଗ ଲାଗେ – ଗୋପାଳବଲ୍ଲଭ, ସକାଳଧୂପ, ମଧ୍ୟାହ୍ନ ଧୂପ, ସନ୍ଧ୍ୟା ଧୂପ ଓ ବଡ ସିଂହାର ଧୂପ ।

ଦୈନନ୍ଦିନ ଭୋଗ ବ୍ୟତୀତ ଶ୍ରୀମନ୍ଦିରରେ କେତେକ ସ୍ୱତନ୍ତ୍ର ପ୍ରକାରର ଭୋଗ ହୁଏ । ମହାପ୍ରସାଦ ଦୁଇଟି ଭାଗରେ ବିଭକ୍ତ ଯଥା–ଶଙ୍ଖୁଡି ମହାପ୍ରସାଦ ଓ ଶୁଖିଲା ମହାପ୍ରସାଦ । ଶ୍ରୀଜଗନ୍ନାଥଙ୍କୁ ଷାଠିଏ ପଉଟି ଭୋଗୀ ବୋଲି କୁହାଯାଏ । କାରଣ ଠାକୁରମାନଙ୍କ ନିକଟରେ ନିତିଦିନ ଛପନ ପଉଟି ଭୋଗ ଲାଗେ । ସେଗୁଡିକ ହେଲା–ଅଟାଳିକା, ଅମାଲୁ, ମାଲପୁଆ, ଆରିସା, ଏଣ୍ଡୁରୀ, କଡମ୍ବା, କାକରା, କାନ୍ତି, କେଳି, କୋରା , ଖଇରଚୂଳ, ଖଜା, କ୍ଷିରୀ, ଖିରିସା, ଖୁରୁମା, ଖେଚେଡ଼ି, ଗଇଣ୍ଠା, ଗଜା, ଗୋଟାଳି, କଦଳୀ, ଚକୁଳି, ଚିଡଉ, ଛୁଞ୍ଚିପତ୍ର, ଜଗନ୍ନାଥ ବଲ୍ଲଭ, ଜେନାମଣି, ଝିଲି, ଟାକୁଆ, ଡାଳିମ୍ବ, ତାଡିଆ, ତ୍ରିପୁରୀ, ଧଉଳା, ନାଡ଼ି, ପଣସୁଆ, ପଣା, ଅଦାପାଚେଡ଼ି, ସାରପାପୁଡ଼ି, ପାଳୁଅ, ପଖାଳ, ପୋଡପିଠା, ପୁରୀ, ପୁଳି, ଫେଣା, ବଡା, ବାଳୀବାମନ, ସରଉଜା, ମଣ୍ଡା, ମନୋହର, ମହାଦେଇ, ଛେନା ମାଣ୍ଡୁଆ, ମୋହନଭୋଗ, ରସାବଳୀ, ରାଧାବଲ୍ଲଭ, ଲଡ୍ଡୁ, ଲହୁଣିଆ, ଲକ୍ଷ୍ମୀବିଳାସ, ସରସ୍ୱତୀଆ ଓ ହସଂବଲ୍ଲବ ଆଦି ଛପନ ପ୍ରକାର ଭୋଗ । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କୁ ଯେତେ ପ୍ରକାରର ଓ ଯେତେ ପରିମାଣର ବ୍ୟଞ୍ଜନ ପ୍ରସ୍ତୁତି ହୋଇ ପ୍ରତିଦିନ ଭୋଗ ହୁଏ ସେଭଳି ସାରା ସଂସାରର ଅନ୍ୟ ଦେଉଳମାନଙ୍କରେ ଦୃଷ୍ଟିଗୋଚର ହୁଏ ନାହିଁ । ତେଣୁ ଶ୍ରୀଜଗନ୍ନାଥ ହେଉଛନ୍ତି ଛପନ ଭୋଗୀ ।

ନୀଳାଚଳ ଧାମରେ ଶ୍ରୀଜଗନ୍ନାଥ ସଂସ୍କୃତିର ବାରମାସରେ ତେର ପର୍ବର ବିଧି ରହିଛି । ସ୍ନାନଯାତ୍ରା, ରଥଯାତ୍ରା, ଶୟନ, ଦକ୍ଷିଣାୟନ, ପାର୍ଶ୍ୱପରିବର୍ତ୍ତନ, ପୁଷ୍ୟ ପୂଜା, ଦୋଳ ଦମନକ ଚତୁର୍ଦ୍ଦଶୀ, ଅକ୍ଷୟତୃତୀୟା ଆଦି ପର୍ବ ଶ୍ରୀମନ୍ଦିରରେ ପାଳନ ହୁଏ । କିନ୍ତୁ ସ୍ନାନଯାତ୍ରା ଓ ରଥଯାତ୍ରା ରତ୍ନବେଦୀର ବାହାରେ ପାଳିତ ହୁଏ । ରଥଯାତ୍ରା ସାରା ପୃଥିବୀର ବଡଯାତ୍ରା ଅଟେ । ଚତୁର୍ଦ୍ଧାମୂର୍ତ୍ତି ୩ଟି ରଥରେ ବିରାଜମାନ ହୁଅନ୍ତି । ରଥଯାତ୍ରା ଘୋଷଯାତ୍ରା ନାମରେ ପ୍ରସିଦ୍ଧି ଲାଭ କରିଛି । ଲକ୍ଷଲକ୍ଷ ଜନତା ଛୁଟି ଆସନ୍ତି ଓଡିଶା ଓ ଓଡ଼ିଶା ବାହାରୁ ଶ୍ରୀକ୍ଷେତ୍ରଧାମକୁ । ରଥର ଦଉଡି ସ୍ପର୍ଶକରି ତିନି ଠାକୁରଙ୍କ ଅପରୂପ ବେଶ ଦର୍ଶନ କରି ନିଜକୁ ଧନ୍ୟ ମଣନ୍ତି । ଭକ୍ତ ସାଲବେଗ, ଦାସିଆ ବାଉରୀ, ବନ୍ଧୁ ମହାନ୍ତି, ବଳରାମ ଦାସ, ତୁଳସୀ ଦାସ ଆଦି ଭକ୍ତଙ୍କ ଶ୍ରୀଜଗନ୍ନାଥଙ୍କ ପ୍ରତି ନିଚ୍ଛକ ଭକ୍ତିର ନିଦର୍ଶନ ଇତିହାସରେ କାଳ କାଳକୁ ରହିଯାଇଅଛି । ପ୍ରଭୁ କେବଳ ଭକ୍ତିରେ ବନ୍ଧା । ସେ ପରଂବ୍ରହ୍ମ । ମନୁଷ୍ୟ ଜନ୍ମ ପରେ ମୃତ୍ୟୁର ସମ୍ମୁଖୀନ ହୁଏ । ଠିକ୍ ସେହିପରି ଆମ ଠାକୁର ଦାରୁ ଦେବତା । ଯେଉଁ ବର୍ଷ ଦୁଇଗୋଟି ଆଷାଢ଼ (ଯୋଡା ଆଷାଢ଼) ମାସ ପଡିଥାଏ ସେତେବେଳେ ନବକଳେବର ଅନୁଷ୍ଠିତ ହୁଏ । ପୁରାତନ ବିଗ୍ରହରୁ ନୂତନ ବିଗ୍ରହକୁ ଓ ବ୍ରହ୍ମ ପରିବର୍ତ୍ତନକୁ ନବକଳେବର କୁହାଯାଏ । ଗତ ନବକଳେବର ମହା ଆଡମ୍ବର, ଉତ୍ସାହ, ଉଲ୍ଲାସରେ ପାଳନ ହୋଇଯାଇଛି । ରାଜ୍ୟର ବିଭିନ୍ନ ସ୍ଥାନରୁ ଚତୁର୍ଦ୍ଧାମୂର୍ତ୍ତିଙ୍କ ଦାରୁ ମିଳିଥିଲା । ଏହି ଦିବ୍ୟଦାରୁଙ୍କ ପାଇଁ ସେ ସ୍ଥାନସବୁ ପବିତ୍ର ହୋଇଗଲା । ଧନ୍ୟ ହୋଇଗଲା ସେ ମାଟି, ପାଣି, ପବନ । କଳିଯୁଗରେ ସ୍ୱୟଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ନାମରେ ଜଗତରେ ବିଖ୍ୟାତ । ସେଇ ପ୍ରଭୁଙ୍କର ଏସବୁ ଅପୂର୍ବଲୀଳା । ତାଙ୍କର ଇଚ୍ଛାରେ ଏ ସଂସାର ଆତଜାତ । ଏ ଜୀବଜଗତର ପ୍ରତ୍ୟେକ ଜୀବ ଗୋଟିଏ ଗୋଟିଏ ବିନ୍ଦୁ ସମ । ତାଙ୍କ ହସ୍ତରେ ସଂସାରର ରଜ୍ଜୁ, ସେ ଯେଉଁ ଆଡେ ଟାଣନ୍ତି ଆମେ ସେହି ଆଡକୁ ଆପେ ଆପେ ଟାଣି ହୋଇ ଯାଉ । ଶେଷରେ ଏତିକି କାମନା ଉତ୍ତମ କର୍ମ କରିବାର ପଥ ଦେଖାଅ ଓ ତୁମ୍ଭ ଚରଣରେ ଶରଣ ଦିଅ ପ୍ରଭୁ ।

ରାଜନୀତି ବିଜ୍ଞାନ ବିଭାଗ
ଶ୍ରୀ ସୋମନାଥ ବାଲୁଙ୍କେଶ୍ୱର ମହିଳା ମହାବିଦ୍ୟାଳୟ
କନ୍ତିଆ, ଜଟଣୀ, ଖୋର୍ଦ୍ଧା



# ପରମାତ୍ମା ଶ୍ରୀଜଗନ୍ନାଥ

**ଶିବସୁନ୍ଦର ପଟ୍ଟନାୟକ**

ସମଗ୍ର ଜଗତର ସ୍ରଷ୍ଟା ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପେ ନୀଳାଚଳ ଧାମରେ ବିଜେ କରିଅଛନ୍ତି । ଜଗତରେ ସେ ଲୀଳା କରୁଥିଲେ ହେଁ ସେ ସେଥିରେ ନିର୍ଲିପ୍ତ ରହିଥାନ୍ତି । ସେ ନିର୍ମଳ, ଶୁଦ୍ଧ-ଚୈତନ୍ୟ, ଶୁଦ୍ଧ କ୍ଷେତ୍ରଜ୍ଞ ଅଟନ୍ତି । ସେ ରୂପ ରହିତ ବା ନିରାକାର ହେଲେ ହେଁ ସାକାର ରୂପେ ଜଗତରେ ପ୍ରକଟ ହୋଇଥାନ୍ତି । ସଂସାରରେ ଯାହା କିଛି ତାଙ୍କର ଦାରୁ, ଧାତୁ ବା ମଣି ବିଗ୍ରହ ଦେଖୁଅଛେ, ତାହା ତାଙ୍କର ବାଚ୍ୟ ରୂପ ଏବଂ ଜଗତରେ ଯାହା ତାଙ୍କର ନାମ ଶୁଣିବାକୁ ମିଳୁଅଛି ସେସବୁ ତାଙ୍କର ବାଚକରୂପ ଅଟେ । ଗୋଲକ ଧାମର ପରମବ୍ରହ୍ମ ବା ନୀଳାଚଳ ଧାମର ଶ୍ରୀଜଗନ୍ନାଥ ଏବଂ ତାଙ୍କର ସମସ୍ତ ବାଚ୍ୟ ବା ବାଚକ ରୂପ ସ୍ୱୟଂ ପରମାତ୍ମା ଶ୍ରୀଜଗନ୍ନାଥ ଅଟନ୍ତି । ସେ ଏକ ଏବଂ ଅଦ୍ୱିତୀୟ ଅଟନ୍ତି । ତାଙ୍କ ପାଇଁ ଯାହା କିଛି ବିଶେଷଣ ବ୍ୟବହାର କରାଯାଏ ସେଥିମଧ୍ୟରୁ ଏକ ବିଶିଷ୍ଟ ବିଶେଷଣ ବ୍ୟବହାର କରାଯାଇପାରେ ଯେ ଶ୍ରୀଜଗନ୍ନାଥ ଅପ୍ରମେୟ ଅଟନ୍ତି ।



ଅପ୍ରମେୟ ଶବ୍ଦର ଅର୍ଥ କ'ଣ ? ଏହା ସଂସ୍କୃତ ଶବ୍ଦ ଅଟେ । ଅପ୍ରମେୟ ଶବ୍ଦର ଅର୍ଥ ଜାଣିବା ପୂର୍ବରୁ ଆମେ ପ୍ରମେୟ ଶବ୍ଦ କ'ଣ ଜାଣିବା । ପ୍ରମେୟ ଶବ୍ଦର ଅର୍ଥ ଯାହାକୁ ମାପି ବା କଳନା କରିପାରିବା, ସିଦ୍ଧି କରିବା ଯୋଗ୍ୟ ବସ୍ତୁ, ଯାହା ସମ୍ବନ୍ଧରେ ନିଶ୍ଚିତ ରୂପେ ଜ୍ଞାନ କରିପାରିବା । ଅପ୍ରମେୟ ଶବ୍ଦର ଅର୍ଥ ଅପରିମିତ । ଯିଏ ଆମ୍ଭମାନଙ୍କ ଜ୍ଞାନଗାରିମାର ଉର୍ଦ୍ଧ୍ୱରେ ଅଟନ୍ତି ବା ପରମାତ୍ମା ଅଟନ୍ତି ।

ଶ୍ରୀଜଗନ୍ନାଥଙ୍କୁ ଜାଣିବା ପାଇଁ ଆମ୍ଭେମାନେ ପ୍ରାଚୀନ ମୁନିଋଷିମାନଙ୍କ ରଚନାର ସାହାଯ୍ୟ ନେବାକୁ ହେବ । ସେମାନେ ଉପନିଷଦ, ପୁରାଣ ଇତ୍ୟାଦି ରଚନା କରି ସେଥିରେ ଭଗବାନ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ କିଛି ବର୍ଣ୍ଣନା କରିଅଛନ୍ତି । ବେଦରେ ମଧ୍ୟ ଭଗବାନଙ୍କ ସମ୍ବନ୍ଧରେ କୁହାଯାଇଅଛି । କୁରୁକ୍ଷେତ୍ର ଯୁଦ୍ଧରେ ଭଗବାନ ଶ୍ରୀକୃଷ୍ଣ ଗୀତା ମାଧ୍ୟମରେ ନିଜ ସମ୍ବନ୍ଧରେ କିଛି କହିଅଛନ୍ତି, ଯେଉଁଥିରୁ ଆମ୍ଭେମାନେ ତାଙ୍କ ସମ୍ବନ୍ଧରେ କିଛି ଜାଣିବାକୁ ପାଉଅଛୁ ।

ଆମ୍ଭର ସ୍ଥୂଳ ଚକ୍ଷୁରେ ଆମ୍ଭେମାନେ ଶ୍ରୀଜଗନ୍ନାଥଙ୍କ ଆକାର ଯେତେ ବୃହତ ଦେଖିବାକୁ ପାଇଲେ ମଧ୍ୟ ସେ ସେହି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସୀମିତ ନୁହନ୍ତି । ସ୍ଥୂଳ ଚକ୍ଷୁରେ ଆମ୍ଭେମାନେ ତାଙ୍କର ହାତଗୋଡ଼ ନଥିବା ଦେଖୁଅଛେ । ଭଗବାନ ଶ୍ରୀଜଗନ୍ନାଥଙ୍କ ଆକାର ସମ୍ବନ୍ଧରେ ଆମ୍ଭେମାନେ ଜାଣିବାକୁ ହେଲେ ଆମ୍ଭେମାନେ ବେଦର ସାହାଯ୍ୟ ନେବାକୁ ହେବ । ଋଗ୍ ବେଦରେ ବର୍ଣ୍ଣନା ଅଛି ଯେ–



ହେ ପ୍ରଭୁ ଶ୍ରୀଜଗନ୍ନାଥ !

ଆପଣ ସହସ୍ର ମସ୍ତକ ବିଶିଷ୍ଟ ପୁରୁଷ, ଆପଣ ସହସ୍ର ଚକ୍ଷୁ ଏବଂ ସହସ୍ର ପାଦ ବିଶିଷ୍ଟ ଅଟନ୍ତି । ଆପଣ ଏତେ ବିଶାଳ ଯେ ସମଗ୍ର ବିଶ୍ୱ ମଣ୍ଡଳ ଆପଣଙ୍କର ଦଶ ଆଙ୍ଗୁଳି ପରିସୀମା ସଙ୍ଗେ ସମାନ ଅଟେ ।

ଶ୍ରୀ ବିଷ୍ଣୁ ପୁରାଣରେ ମଧ୍ୟ ସେହି କଥା ଅଂଶ ୧/୧୨/୫୬ରେ ବର୍ଣ୍ଣନା ଅଛି ।

ଆମ୍ଭେମାନେ ଶ୍ରୀଜଗନ୍ନାଥଙ୍କ ହାତ ପାଦ ଦେଖିବାକୁ ପାଉନାହୁଁ । ଯଦି ତାଙ୍କର ପାଦ ନାହିଁ ସେ ବିଭିନ୍ନ ଜାଗା ଭ୍ରମଣରେ ଯାଉଛନ୍ତି କିପରି ଏବଂ ଜୀବର ଦୁଃଖ ଦୁର୍ଦ୍ଦଶା ଲାଘବ ହେଉଛି କିପରି ? ପ୍ରବାଦ ଅଛି ଯେ ସେ ହସ୍ତ ପ୍ରସାରି ଦାସିଆ ବାଉରୀ ପ୍ରଦତ୍ତ ନଡ଼ିଆ ନେଇଥିଲେ ।

ଆମ୍ଭେମାନେ ଅନେକ ସମୟରେ ଭଗବାନଙ୍କ ବିଷୟରେ ସନ୍ଦେହରେ ପଡୁ । ଗୋଟିଏ କଥା ସ୍ୱୀକାରଯୋଗ୍ୟ ଯେ ଗୋଲକ ଧାମରେ ଭଗବାନ ଏବଂ ଭଗବାନଙ୍କର ଅନ୍ୟଠାରେ ଥିବା ଅର୍ଚ୍ଚା ବିଗ୍ରହ, ଜଗତରେ ଲୀଳା କରୁଥିବା ସମସ୍ତ ଅବତାର ଏକ ଓ ଅଭିନ୍ନ । ଭଗବାନ ଅବତାର ନେଲେ ମଧ୍ୟ ଗୋଲକ ଧାମରେ ଭଗବାନ ବା ନୀଳାଚଳ ଧାମର ଶ୍ରୀଜଗନ୍ନାଥଙ୍କର କିଛି କ୍ଷୟ ହୁଏ ନାହିଁ । ସେ ନେଇଥିବା ଅବତାର ବା ଅଂଶ ମୂଳ ଭଗବାନଙ୍କ ପରି ପୂର୍ଣ୍ଣ ଅଟନ୍ତି ।

ଆମ୍ଭେମାନେ ଯାହା କିଛି ଦେଖୁଅଛେ ସମସ୍ତେ ଭଗବାନଙ୍କ ଅଂଶ ବା ଭଗବାନ ଅଟନ୍ତି । ବାସୁଦେବ ସର୍ବଂ (ଶ୍ରୀମଦ୍ ଭଗବଦ୍ ଗୀତା–୭/୧୯) (ସମସ୍ତେ ବାସୁଦେବ ଅଟନ୍ତି ।) ଈଶା ବାସ୍ୟ ମେଦଂ ସର୍ବଂ (ଈଶୋପନିଷଦ–୧) (ସବୁ କିଛି ଈଶ୍ୱର ଅଟନ୍ତି ।) ପରିପଶ୍ୟନ୍ତୁ ପରମେତ୍ (ଶ୍ରୀମଦ୍ ଭାଗବତମ୍ – ୧୧/୨୯/୧୮) (ଯାହା କିଛି ଆମ୍ଭେମାନେ ଦେଖୁଅଛେ ତାହା ବ୍ରହ୍ମସ୍ୱରୂପ ବା ପରମାତ୍ମା ବା ଉପରମେତ୍ ଅଟନ୍ତି ।) ଖାଣ୍ଡିକ୍ୟଜନକ (ସୀତାଦେବୀଙ୍କ ପିତାମହ)ଙ୍କ ପ୍ରଶ୍ନରେ ମହର୍ଷି କେଶିଧ୍ୱଜ ଅନନ୍ତଙ୍କ ବାସୁଦେବ ନାମକୁ ବ୍ୟାଖ୍ୟା କରି କହିଥିଲେ ଯେ–

ଭୂତେଷୁ ବସତେ ସୋନ୍ତ ର୍ବସନ୍ତ୍ୟତ୍ର ଚ ତାନିଯତ୍ ।
ଧାତା ବିଧାତା ଜଗତାଂ ବାସୁଦେବସ୍ତତଃ ପ୍ରଭୁ ॥

(ଶ୍ରୀବିଷ୍ଣୁ ପୁରାଣ– ଅଂଶ ୬/୫/୮୨)

(ପ୍ରଭୁ ସମସ୍ତ ଭୂତରେ ବ୍ୟାପ୍ତ ଓ ସମସ୍ତ ଭୂତ ମଧ୍ୟ ତାଙ୍କଠାରେ ଅବସ୍ଥାନ କରନ୍ତି ଏବଂ ସେ ମଧ୍ୟ ସଂସାରର ରଚୟିତା ଓ ରକ୍ଷକ ଅଟନ୍ତି । ଏଥିପାଇଁ ତାଙ୍କୁ ବାସୁଦେବ କହନ୍ତି ।)

ମନରେ ପ୍ରଶ୍ନ ଉଠୁଅଛି ଭଗବାନ ସାକାର ନା ନିରାକାର । ଗୋଲକ ଧାମରେ ବ୍ରହ୍ମ ନିରାକାର ନୁହନ୍ତି ବୋଲି ଅନେକ ଯୁକ୍ତି ବାଢ଼ିଥାନ୍ତି । ଅନେକ ବି କହିଥାନ୍ତି ଯେ ଭଗବାନ ସାକାର ବୋଲି ।

ଆଦିତ୍ୟ ମଣ୍ଡଳରେ ଥିବା ବ୍ରହ୍ମଙ୍କ ମୁଖ ଜ୍ୟୋତିର୍ମୟ ପାତ୍ରରେ ଆଚ୍ଛାଦିତ ହୋଇଅଛି । ହେ ଜଗତ ପୋଷକ ସୂର୍ଯ୍ୟ ! ଆପଣ ଆପଣଙ୍କ ଜ୍ୟୋତି ହଟାଇ ଦିଅନ୍ତୁ । ଫଳରେ ମୁଁ କଲ୍ୟାଣମୟ ସତ୍ୟଧର୍ମ ବିସ୍ତାରକାରୀ ଭଗବାନଙ୍କ ସ୍ୱରୂପ ଦେଖିପାରିବି ।

ଭଗବାନଙ୍କୁ ଉଜ୍ଜ୍ୱଳମୟ ଜ୍ୟୋତି ଆଚ୍ଛାଦିତ କରିଥିବାରୁ ଆମ୍ଭେମାନେ ତାଙ୍କୁ ଦର୍ଶନ କରିପାରୁ ନାହୁଁ । ଭଗବାନ ନିଜକୁ ସର୍ବଦା ପ୍ରକାଶ କରନ୍ତି ନାହିଁ । ଯଦି ଉଜ୍ଜ୍ୱଳମୟ ଜ୍ୟୋତିର ଅପସାରଣ ହେବ ବା ଭଗବାନ ଆମ୍ଭମାନଙ୍କୁ ଇଚ୍ଛା କରି ଦର୍ଶନ ଦେବେ ତେବେ ଆମ୍ଭେମାନେ ତାଙ୍କୁ ଦର୍ଶନ କରିପାରିବା । ଭଗବାନ ଯଦି ନିରାକାର ତେବେ ଆମ୍ଭେମାନେ ଉଜ୍ଜ୍ୱଳମୟ ଜ୍ୟୋତି ଅପସାରଣରେ କ'ଣ ଶୂନ୍ୟସ୍ଥାନ ଦେଖିବା ! ସୁତରାଂ ଭଗବାନ ସାକାର ଅଟନ୍ତି । ପ୍ରଶ୍ନ ଉଠେ ଭଗବାନ ଶ୍ରୀଜଗନ୍ନାଥ ସଗୁଣ ବା ନିର୍ଗୁଣ ଅଟନ୍ତି ? ସମସ୍ତ ଗୁଣର ସ୍ରଷ୍ଟା ଶ୍ରୀଜଗନ୍ନାଥ ଅଟନ୍ତି । କିନ୍ତୁ ସେ ନିଜେ ନିର୍ଗୁଣ ଅଟନ୍ତି । କୁହାଯାଇଛି –



ଶ୍ରୀଜଗନ୍ନାଥ ଗୁଣ ରହିତ ବା ନିର୍ଗୁଣ ଅଟନ୍ତି । ସୃଷ୍ଟି, ସ୍ଥିତି ଓ ପ୍ରଳୟ ନିମନ୍ତେ ସେ ମାୟାର ତିନିଗୁଣ – ସତ୍ୱ,ରଜ ଓ ତମ ଗୁଣଗୁଡ଼ିକୁ ଗ୍ରହଣ କରିଥାନ୍ତି ।

ଅନନ୍ତ ବୀର୍ଯ୍ୟ ବିଷ୍ଣୁଙ୍କର କିଏ ବୀର୍ଯ୍ୟ ଗଣନା କରିବ । ବରଂ ପୃଥିବୀର ରେଣୁରାଶି ଗଣନା କରାଯାଇପାରେ । ବାମନ ଅବତାରରେ ବଳିର ବାକ୍ ଦାନରୁ ପୃଥିବୀଠାରୁ ସତ୍ୟଲୋକ ପର୍ଯ୍ୟନ୍ତ କମ୍ପମାନ ହେଲା । ସେତେବେଳେ ଭଗବାନ ନିଜର ତ୍ରିସାମ୍ୟ ସଦନଠାରୁ ଶେଷ ପର୍ଯ୍ୟନ୍ତ ନିଜ ବଳ (ଶକ୍ତି) ଦ୍ୱାରା ଧାରଣ କରି ଦେଇଥିଲେ । ସେହି କଥା ମଧ୍ୟ ବେଦମାନଙ୍କରେ ବର୍ଣ୍ଣନା ଅଛି ।

ଅନନ୍ତ କୀର୍ତ୍ତିମାନ ଉରୁଗାୟ ବିଷ୍ଣୁଙ୍କର ପରାକ୍ରମ ବର୍ଣ୍ଣନା କରିବାକୁ କିଏ ସମର୍ଥ ହେବ । ସେ ଏକପାଦ ବିଭୂତିରେ ଅସଂଖ୍ୟ ବ୍ରହ୍ମାଣ୍ଡ ସୃଷ୍ଟି କରିଅଛନ୍ତି । ତ୍ରିପାଦ ବିଭୂତିରେ ସମଗ୍ର ବିଶ୍ୱମଣ୍ଡଳକୁ ଧାରଣ କରିଥିବା ପରମ ଅକ୍ଷର, ସଦାନିତ୍ୟ, ଅପ୍ରାକୃତ, ସର୍ବଶ୍ରେଷ୍ଠ ବିଷ୍ଣୁପଦ' ଗୋଲକ ଧାମ ସର୍ଜନା କରିଅଛନ୍ତି ।

ସୁତରାଂ ଶ୍ରୀଜଗନ୍ନାଥ ଅପ୍ରମେୟ ଅଟନ୍ତି । ତାଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନଶକ୍ତି ଅଳ୍ପ ଅଟେ । ଆମ୍ଭେମାନେ ଶାସ୍ତ୍ର ପ୍ରମାଣ ଅନୁସାରେ ଯାହା କିଛି ସାମାନ୍ୟ ଧାରଣା କରୁଅଛେ ।

କନକ ମୃଗ
କାରାଗାର ପଥ, ଖୋର୍ଦ୍ଧା

# ନିଶବଦ ଭୂଇଁ

ପୁନେଶ୍ କୁମାର ସେନାପତି

ନୀଳକନ୍ଦରରେ ନୀଳାଦ୍ରିମଣ୍ଡପେ ନୀଳଗିରି ନାଥ ଥାଇ
ନିତି ନିତ୍ୟରାସ ମଣ୍ଡଳୀ ରଚନ୍ତି ନୀଳଚକ୍ର ଆଢୁଆଇ ।

ସଖା ସଙ୍ଗେ ସଖା ସାକ୍ଷୀପ୍ରାୟ ଥାନ୍ତି ଆଖି ପିଛୁଳାକେ ନାହିଁ
ଗୁପତେ ଗୁପତ ରାସ ଚାଲିଥାଇ ସଖୀ ମେଳେ ମାଧୋଇ ।

ସଞ୍ଜରୁ ସିନ୍ଦୁରା ଚବିଶପ୍ରହର କଳନା କରିନୁହଁଇ
କୁଞ୍ଜରେ କୁଞ୍ଜରେ ଖଞ୍ଜରେ ଖଞ୍ଜରେ
ଭେଟାଭେଟି ଗୋପ ଗୋଇ ।
ରାଧାକୁଞ୍ଜ ଶ୍ୟାମ କୁଞ୍ଜର ସୁଷମା ଅକଳନ ଶୋଭାବନ
କୁସୁମ ସୁବାସ ବାସ ଚହଟଇ ମଧୁପ ମୃଦୁ ଗୁଞ୍ଜନ ।

ପକ୍ଷୀଙ୍କ କାକଳି ପଶୁଙ୍କ ବୋବାଳି ଏକୁଆରେକ ମଧୁର
ଶ୍ୟାମବଂଶୀ ତାନ ବାଜିଗଲେ କାନ ପ୍ରାଣ ହୁଅଇ ଅଧୀର ।

ନିଶବଦ ଘରୁ ଗୁମୁରି ଉଠୁଛି କଟି କିଙ୍କିଣି ଶବଦ
ଅଙ୍ଗର ବସନ ଭୂଷଣ ଲୋଟିଛି ଧରାଦିଶଇ ଆହ୍ଲାଦ ।

'ଅ'କାର 'ଉ'କାର 'ମ'କାର ନାଦରେ ନାଗରା ଡାକୁଛି ରହି
ନିଶବଦ ଭୂଇଁ ନାଦ ପ୍ରକଟଇ ଶୁଣୁଛି ବଧିର ରହି ।

ଗୀତଗୋବିନ୍ଦର ଗୁପତ ନିନାଦ ଗୁପ୍ତ ମଣ୍ଡଳେ ଗୁପତ
ଗୁରୁଘର ବିଦ୍ୟା ଗୁରୁପାଦ ସେବା କଲେ ହୁଅଇ ପ୍ରାପତ ।

ଗୋପ, ପୁରୀ–୭୫୨୧୧୦



# ଶ୍ରୀଜଗନ୍ନାଥ - ସ୍ୱାଭିମାନୀ ମହାପ୍ରଭୁ

**ଡକ୍ଟର ଦୁର୍ଗାପ୍ରସନ୍ନ ଚୌଧୁରୀ**

ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ବିଲୟର କାରଣ। ସେ ଲୀଳାମୟ ପୁରୁଷ ଅଟନ୍ତି। କେତେବେଳେ ସେ ଶ୍ରୀକୃଷ୍ଣ ରୂପ ଓ କେତେବେଳେ ଶ୍ରୀ ରାମଙ୍କ ରୂପ, ଆଉ କେତେବେଳେ ବାମନ ରୂପ ହୋଇ ଅବତାର ହୋଇଥାଆନ୍ତି। ତାଙ୍କର ରୂପ ଅବର୍ଣ୍ଣନୀୟ। ତାଙ୍କ ବିନା ଏ ସୃଷ୍ଟି ଅସମ୍ଭବ ।

ଏହି ଦେବଭୂମିର କର୍ତ୍ତା, ସ୍ରଷ୍ଟା ଅଦ୍ଭୁତ ମାୟା ହେଉଛନ୍ତି ଶ୍ରୀଜଗନ୍ନାଥ । ସେ ଅପାର, ଅମୃତ, ଅମ୍ଳାନ ଓ ମାନବିକତାର ଏକ ଜ୍ୱଳନ୍ତ ଉଦାହରଣ । ସେ ତ୍ରିକାଳଦର୍ଶୀ, ସମସ୍ତ ଜାତିର ପ୍ରତୀକ, କି ଦରିଦ୍ର, କି ଧନୀ ସମସ୍ତେ ତାଙ୍କ ପାଦତଳେ ନତମସ୍ତକ ଓ ଆଶ୍ରିତ। ସେ ମାୟାର ବର୍ଣ୍ଣନା ଏ ସାମାନ୍ୟ ଲେଖକ ନିମିତ୍ତ କଷ୍ଟସାଧ୍ୟ । ସେ ଯାହାହେଉ, ଯେତେବେଳେ ତାଙ୍କ ପରିକଳ୍ପନା କରାଯାଏ, ସେ ସ୍ମୃତିର ମାନସ ପଥରେ ଅବସ୍ଥାନ କରନ୍ତି ଓ ଅପସରି ଯାଆନ୍ତି। ସେ ସୁଖ ଦେଇଥାନ୍ତି ଓ ଦୁଃଖ ନେଇଯାଆନ୍ତି । ଏଣୁ ମାନବତାର ପରିଚୟ ଦେଇ ଶ୍ରୀମନ୍ଦିରରେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ଏ ମନ୍ଦିର ତାଙ୍କର କିପରି ହେଲା ଏହା କାହାକୁ ଅଗୋଚର ନାହିଁ ।

ଇନ୍ଦ୍ରଦ୍ୟୁମ୍ନ ବୃହତ୍ ଜଗନ୍ନାଥ ମନ୍ଦିରର ନିର୍ମାତା ବୋଲି ଜନମାନସରେ ଧାରଣା ସୃଷ୍ଟି କରିବାରେ ସ୍କନ୍ଦ ପୁରାଣରେ, ପୁରୁଷୋତ୍ତମ ଖଣ୍ଡ, ବ୍ରହ୍ମପୁରାଣର ପୁରୁଷୋତ୍ତମ ଖଣ୍ଡ, ସାରଳା ମହାଭାରତର ମୁଳୀ ପର୍ବ, କପିଳ, ସଂହିତା, ନୀଳାଦ୍ରି, ମହୋଦଧି ଓ ଦେଉଳ ବେଢ଼ାର ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ଆବୁଲ-ଫାଜଲଙ୍କର ଆଇନ-ଇ-ଆକବରୀ ଓ ମାଦଳା ପାଞ୍ଜିର ରାଜଭୋଗ ମଧ୍ୟ ଏସବୁ ଉପାଦାନରୁ ତଥ୍ୟ ସଂଗ୍ରହ କରିଥିଲେ । ଯଦିବା ସୋମବଂଶୀ ସମ୍ରାଟ ଯଯାତି ଓ ଗଙ୍ଗବଂଶୀ ରାଜାମାନେ ମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳା ପାଞ୍ଜିରେ ସୂଚନା ଦିଆଯାଇଛି, ତଥାପି ଇନ୍ଦ୍ରଦ୍ୟୁମ୍ନ ଇତିହାସ ପୂର୍ବଭଳି ମାନବାଧିପତି ସର୍ବପ୍ରଥମ ଏହି ଧାମରେ ଅଗ୍ରଗତି ପାଇଁ ଚେଷ୍ଟିତ ଥିଲେ ସ୍ୱୀକାର କରାଯାଇ ପାରେ ।

ସ୍କନ୍ଦପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡର ରଚନା ପରେ ପରେ ଆଞ୍ଚଳିତ ଚିନ୍ତାଧାରାରେ ଏହି ମନ୍ଦିରର ନିର୍ମାଣ ହିସାବରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରତିଷ୍ଠା କରାଇ ଦେବାରେ ସେତେବେଳେ ମନ୍ଦିର ସେବକ, ପୂଜକମାନଙ୍କ ମୁଖ୍ୟ ଭୂମିକା ଥିଲା। ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀ ମାଧ୍ୟମରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରସଙ୍ଗରେ ରାଜଶକ୍ତି ଭୂମିକାରେ ଆଭାସ ଦିଆଯାଇଛି । ଅବଶ୍ୟ ଆଦିମ ଶବର ସେବକ, ବ୍ରାହ୍ମଣ ସେବକ ତଥା ରାଜସେବକ ତିନୋଟି ମୌଳିକ ଭକ୍ତି ବିଭିନ୍ନ ସମୟରେ ଏହି ମନ୍ଦିରର ନିର୍ମାଣ ଓ ଉନ୍ନତିରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ବିଶ୍ୱାବସୁ, ଅଣଆର୍ଯ୍ୟ ଶକ୍ତିର ସଂକେତ, ବିଦ୍ୟାପତି (ବ୍ରାହ୍ମଣ) ଆର୍ଯ୍ୟଶକ୍ତିର ସଂକେତ ଓ ସର୍ବୋପରି ଇନ୍ଦ୍ରଦ୍ୟୁମ୍ନ ରାଜଶକ୍ତିର ସଂକେତ। ଗୋଟିଏ ଶକ୍ତି ଅନ୍ୟ ଶକ୍ତି ଉପରେ ପ୍ରାଧାନ୍ୟ ବିସ୍ତାର କରି ଶ୍ରୀମନ୍ଦିରର ଅଧିକ ଉନ୍ନତି କରିବା ପ୍ରସଙ୍ଗ ସେହି ଶକ୍ତିର ପ୍ରତିନିଧିମାନେ ହିଁ ଦାବି କରିଛନ୍ତି। ମାତ୍ର ତିନୋଟି ଶକ୍ତିର ଅପୂର୍ବ ଉଦ୍ୟମରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ଧାମ ବିଶ୍ୱରେ ପ୍ରସିଦ୍ଧ ହୋଇଛି ।

ଶ୍ରୀଜଗନ୍ନାଥ ମନ୍ଦିର ଇନ୍ଦ୍ରଦ୍ୟୁମ୍ନଙ୍କ ପରିକଳ୍ପନା ହୋଇପାରେ, କିନ୍ତୁ ଏହାସବୁ ସେହି ମହାପ୍ରଭୁଙ୍କ ନିର୍ଦ୍ଦେଶରେ ।



ମହାପ୍ରଭୁ ନିଜେ ଇନ୍ଦ୍ରଦ୍ୟୁମ୍ନ ମାନବ ରାଜାଙ୍କୁ ନିଜର ଭକ୍ତର ସ୍ଥାନ ଦେଇ ମାନବତାର ପରିଚୟ ଦେଇଛନ୍ତି । ଶବର ରାଜା ଜଣେ ମାନବ । ସେ ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାରା ସୃଷ୍ଟି । ଏହିସବୁ ବିଶିଷ୍ଟ ମାନବମାନଙ୍କର ସୃଷ୍ଟି କେବଳ ମହାପ୍ରଭୁଙ୍କ ଇଚ୍ଛା । ଯେପରି ମାନବ ମଧ୍ୟରେ ଆତ୍ମା, ଶରୀର, ମାଂସ ମେଦ ଆଦିଥାଏ, ଠିକ୍ ସେହିଭଳି ମହାପ୍ରଭୁ ମାନବ ଶରୀର ପରିତ୍ୟାଗ କରିଥାଆନ୍ତି ।

ମହା ବ୍ରହ୍ମସ୍ୱରୂପଂ ଚ ଅସ୍ଥିଃ ଦାରବୀତନୁ
ତୈଳାକ୍ତ ବସ୍ତ୍ରଂ ଡୋରଂ ଚ ଝିଲ୍ଲୀ ରୁସଂ ପ୍ରକ୍ଳିପିତେ
ମେଦଂ କର୍ପୂରଂ ଲେପଂ ଚ ଲେହତତ୍ ମାଂସମେବଚ
ରକ୍ତ ବାସ ତଦାରକ୍ତଂ ଶୁକ୍ଳଂ ବସ୍ତ୍ରାତ୍ୟ ଚନ୍ଦନଂ
ଚର୍ମରୂପେ ସମାକ୍ଷାତ, ସପ୍ତାବରଣ ରୁଚତେ ।

ବ୍ରହ୍ମ ହେଉଛି ମଜ୍ଜା, ଦାରୁ ଶରୀର ହେଉଛି ଅସ୍ଥି, କର୍ପୂର ଲେପନ ହେଉଛି ମେଦ, ଚନ୍ଦନ – କର୍ପୂର– କସ୍ତୁରୀ–କୁଙ୍କୁମ ଏକତ୍ର ଲେପନ ହେଉଛି ମାଂସ, ନାଲି ରଙ୍ଗର ଚେହେଲି ବସ୍ତ୍ର ହେଉଛି ରକ୍ତ, ପରସ୍ତ ପରସ୍ତ ଶୁକ୍ଳ ବସନ ଓ ଚନ୍ଦନ ଲେପନ ହେଉଛି ଚର୍ମ ଓ ଝୁଣାଯୁକ୍ତ ରାଶିତେଲ କର୍ପୂର ଲେପନକୁ ଝିଲ୍ଲୀ ମାନ୍ୟରେ ସପ୍ତାବରଣ ସେବା ହୁଏ ।

ଉପରୋକ୍ତ ଉକ୍ତିର ଅର୍ଥ ହେଉଛି, ମହାପ୍ରଭୁ ମାନବ ରୂପରେ ବ୍ରହ୍ମ ସ୍ୱରୂପ ଆତ୍ମା ବହନ କରନ୍ତି । ସେ ମାନବତାରେ ନିଜକୁ ହଜାଇ ଦେବା ପାଇଁ ଓ ମାନବତାର ସୃଷ୍ଟି ପରିପୃଷ୍ଟ କରିବାରେ ନିଜକୁ ୧୨ ବର୍ଷରେ ଥରେ କାୟା ଓ ବ୍ରହ୍ମ ପରିବର୍ତ୍ତନ କରାଇ ମାନବତାର ଉତ୍ସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୨୦୧୫ ମସିହାରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର, ମା' ସୁଭଦ୍ରା ଓ ସୁଦର୍ଶନ ବିଗ୍ରହ ଅବସ୍ଥାପିତ ହୋଇ ନବକଳେବର ହୋଇଥିଲେ । ଏହି ଲେଖକ ମହାପ୍ରଭୁଙ୍କ ନବକଳେବର ରଥଯାତ୍ରାରେ ଶ୍ରୀଜଗନ୍ନାଥ ଓ ଅନ୍ୟାନ୍ୟ ବିଗ୍ରହମାନଙ୍କୁ ଦର୍ଶନ କରିଥିଲେ । ୧୨ବର୍ଷ ପରେ ପ୍ରଭୁ ନବକଳେବର ହୋଇ ନବଯୌବନ ଦର୍ଶନ ଦେଲେ । ତାଙ୍କର ପାଦରେ ଯେ ସମସ୍ତ ଭକ୍ତି, ଶକ୍ତି, ମନ, ଧ୍ୟାନ ଓ ପ୍ରକୃତି ସମର୍ପି ଦେଇଛି ସେ ଅପାର କୃପାମୟ ମାନବ ରୂପେ । ସବୁବେଳେ ଏ ମଣିଷ ଜାତି ପାଇଁ ଆର୍ବିଭୂତ । ସେ ନିରାକାର, ଅନେକ ଅନୁଭୂତି ଏ ଲେଖକର ଅଛି ଯାହାକି ଭାଷାରେ ଅବର୍ଣ୍ଣନୀୟ । ଦାରୁ ବିଗ୍ରହ ରୂପେ ମହାପ୍ରଭୁ ଦର୍ଶନ ଦେଉଛନ୍ତି । ଏ ମାନବ ସମାଜକୁ ଚକାଚକା ଆଖିରେ ସମସ୍ତ ନିର୍ଦ୍ଦେଶ ଦେଇଛନ୍ତି । କେବଳ ଆମର ଏକନିଷ୍ଠ ପ୍ରାର୍ଥନା ଓ ସଂପୂର୍ଣ୍ଣ ସମର୍ପଣ ମହାପ୍ରଭୁଙ୍କ ପ୍ରତି ଦରକାର । ତାହାହେଲେ ମହାପ୍ରଭୁ ଶୁଭ ଦୃଷ୍ଟିରେ ଆଶୀର୍ବାଦ କରିବେ । ମନେ ପଡ଼ିଲେ ତାଙ୍କ କଥା ଆଖିରୁ ଲୁହ ଝରିଆସେ । ମହାପ୍ରଭୁ ହେଉଛନ୍ତି ସ୍ୱାଭିମାନ ଓ ନିୟମ କର୍ତ୍ତା । ତାଙ୍କୁ ଯଦି ଆମେ ହୃଦୟର ସହିତ ପ୍ରାର୍ଥନା କରୁ, ସେ ଶୁଭଦୃଷ୍ଟିରେ ଆଶୀର୍ବାଦ କରିବେ । ତାଙ୍କୁ ଆମେ ଯଦି ଆବେଗ ସହିତ ପ୍ରାର୍ଥନା ନ କରୁ ତାହାହେଲେ ତାଙ୍କର ଆଶୀର୍ବାଦ ପାଇବାରୁ ବଞ୍ଚିତ ହେବୁ । କିନ୍ତୁ ମଣିଷଭଳି ମହାପ୍ରଭୁ କ୍ରୋଧ ସମ୍ବରଣ କରିପାରିବେ ନାହିଁ । ଅନ୍ୟାୟ ଦେଖିଲେ ସେ ମାନବ ରୂପରେ ଆସି ଦୋଷଯୁକ୍ତ ଲୋକମାନଙ୍କୁ ଦଣ୍ଡ ମଧ୍ୟ ପ୍ରଦାନ କରନ୍ତି । ସେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆହ୍ୱାନ ଦିଅନ୍ତି । ତେଣୁ ସେ ସରଳ ଓ ଦୃଢ଼ତାର ସହିତ ଏ ମାନବ ସମାଜକୁ ପରିଚାଳିତ କରନ୍ତି ।

ମହାପ୍ରଭୁ ଯୁଗେ ଯୁଗେ ମାନବର ଅବତାରରେ ପଦାର୍ପଣ କରିଥାନ୍ତି । ଯଥା ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ଅବତାର ଓ ରାମାୟଣ ଯୁଗରେ ଶ୍ରୀରାମଙ୍କ ଅବତାର ଓ କଳିଯୁଗରେ ସେ ବିଭିନ୍ନ ମହାପୁରୁଷଙ୍କର ଶରୀରରେ ମଧ୍ୟ ଅବତୀର୍ଣ୍ଣ ହୋଇଥାନ୍ତି ।

ସି.ବି.–୧୮, କ୍ୟାଣ୍ଟନମେଣ୍ଟ ରୋଡ, କଟକ



# ମାଣତ୍ରୀ କଟକେ ପ୍ରଭୁ ଶ୍ରୀଜଗନ୍ନାଥ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଭଗବାନ ବିଷ୍ଣୁ ଦୁଷ୍ଟ ବିନାଶ ନିମିତ୍ତ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଅବତାର ଗ୍ରହଣ କରି ତାଙ୍କର ଲୀଳା ସଂପାଦନ କରିଥାନ୍ତି । ଭଗବାନ ବିଷ୍ଣୁ ଦଶ ଅବତାର ନେଇ ମର୍ତ୍ତ୍ୟରେ ଲୀଳା କରିଥିଲେ । ମାତ୍ର ଅବତାର ସୃଷ୍ଟିକାରୀ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଅବତାରୀ ହୋଇ ଲୀଳା କରିଛନ୍ତି । ଭଗବାନ ଅବତାରରେ ଦୁଷ୍ଟ ବିନାଶ କରିଥିବା ବେଳେ ଅବତାରୀରେ ଦୁଷ୍ଟର ଭୟରେ ଗୋପନରେ ସ୍ଥାନାନ୍ତର ହୋଇଥିଲେ । ଅବତାରୀ ଶ୍ରୀଜଗନ୍ନାଥ ଗୋପନରେ ସ୍ଥାନାନ୍ତର ହୋଇଥିବା ସ୍ଥାନକୁ ଲୀଳାକ୍ଷେତ୍ର କୁହାଯାଏ । ଏହିପରି ଥରେ ନୁହେଁ କି ଦୁଇଥର ନୁହେଁ, ଦିନ ନୁହେଁ କି ଦୁଇ ଦିନ ନୁହେଁ, ବର୍ଷ ବର୍ଷ ପାଇଁ ମହାପ୍ରଭୁ ସ୍ଥାନାନ୍ତର ହୋଇ ରହିଥିଲେ । କାରଣ ଅବତାରୀ ଶ୍ରୀଜଗନ୍ନାଥ ହେଉଛନ୍ତି ରହସ୍ୟମୟ ଓ ବିଚିତ୍ରମୟ ଠାକୁର । ତାଙ୍କର ଏହି ଲୀଳା ପଛରେ କ'ଣ ବିଚିତ୍ର ଓ କ'ଣ ରହସ୍ୟ ଥିଲା, ତାହା ତାଙ୍କୁ ହିଁ ଗୋଚର । ତାଙ୍କର ଏହି ଗୁପ୍ତ ଲୀଳା ମଧ୍ୟରୁ ଗଡ ମାଣତ୍ରୀରେ ମଧ୍ୟ ଲୀଳା ହୋଇଥିଲା । ମହାପ୍ରଭୁ ଏଠାରେ ଗୋପନରେ ଲୀଳା କରିଥିବାରୁ ଏହା ଏକ ମୁଖ୍ୟ ଲୀଳାକ୍ଷେତ୍ର ଅଟେ ।

ଖୋର୍ଦ୍ଧା ସହରଠାରୁ ପ୍ରାୟ ୧୬ ମାଇଲ ଦକ୍ଷିଣ ପଶ୍ଚିମ ଦିଗରେ ମାଣତୀର ମାଣିତ୍ରୀଗଡ ଅବସ୍ଥିତ । ଖୋର୍ଦ୍ଧା ଇତିହାସରେ ମାଣତ୍ରୀଗଡର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି, ଯେହେତୁ କେବଳ ଖୋର୍ଦ୍ଧା ରାଜବଂଶର ନୁହେଁ, ହିନ୍ଦୁ ଜଗତରେ ପରମ ଆରାଧ୍ୟ ଓଡିଶାର ଗଣ ଦେବତା ସ୍ୱୟଂ ପ୍ରଭୁ ଜଗନ୍ନାଥଙ୍କର ନିରାପତ୍ତା ଦୃଷ୍ଟିରୁ ମଧ୍ୟ ଏକ ଆପତ୍‌କାଳୀନ ନିରାପଦ ଆଶ୍ରୟସ୍ଥଳର ଭୂମିକା ଗ୍ରହଣ କରିବାରେ ଏହି ଗଡ ସହାୟକ ହୋଇଛି । ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ସ୍ଥାପିତ ଖୋର୍ଦ୍ଧା ରାଜ୍ୟର ମୂଳ ୭୧ଟି ଗଡ ମଧ୍ୟରେ ମାଣତ୍ରୀଗଡର ସ୍ଥାନ ନଥିଲେ ହେଁ, ବର୍ତ୍ତମାନ ଖୋର୍ଦ୍ଧା ଜିଲ୍ଲାର ବେଗୁନିଆ ତହସିଲ ଅନ୍ତର୍ଗତ ଗଡମାଣତ୍ରୀ ଗ୍ରାମ ଥିଲା ଗଜପତି ମହାରାଜାମାନଙ୍କ ଶାସନ କାଳରେ ଏକ ଐତିହ୍ୟପୂର୍ଣ୍ଣ ଗଡ । ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୁରୁଧା ସିଂହାସନ ଖ୍ରୀ୧୬୦୭ରେ ଆରୋହଣ କରିଥିଲେ । ଭୋଇ ରାଜବଂଶର ୨ୟ ରାଜା ଗଜପତି ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ୧୬୧୭ ଖ୍ରୀ.ରେ ମାଣତ୍ରୀଗଡ ତାଙ୍କ ପରିବାର ପାଇଁ ଏକ ଆପତ୍‌କାଳୀନ ରହଣି ସ୍ଥାନ ରୂପେ ନିର୍ମିତ ହେଉଥିଲା । ମକରମ ଖାଁ ପରାଭୂତ ହେବାଯାଏ ସେ ଏହିଠାରେ ଏକ ବର୍ଷ କାଳ ସପରିବାର ଅବସ୍ଥାନ କରିଥିଲେ । ଗଜପତି ପୁରୁଷୋତ୍ତମ ଦେବ ବହୁବାର ଏହି ଗଡରେ ରହି ଶାସନ ପରିଚାଳନା କରୁଥିବା ଏବଂ ମୋଗଲମାନଙ୍କ ଆକ୍ରମଣକୁ ପ୍ରତିହିତ କରିବା ପାଇଁ ମନ୍ତ୍ରଣା କରୁଥିବାର ଇତିହାସରୁ ଉପଲବ୍ଧ ହୁଏ । ଏପରିକି ଏହି ଗଡରେ ରହିଥିବାବେଳେ ଗଡଜାତ ରାଜାମାନଙ୍କ ସମେତ ରାଜମହେନ୍ଦ୍ରୀର ରାଜାଙ୍କୁ ନେଇ ମଧ୍ୟ ମେଳି ବାନ୍ଧିବାରେ ସଫଳ ହୋଇଥିଲେ । ପୁନଶ୍ଚ ୧୬୨୨ ଖ୍ରୀ.ରେ ମୀର୍ଜା ଅହମ୍ମଦ ବେଗ୍ କଟକର ସୁବାଦାର ହୋଇ ଆସିବା ପରେ ପରେ ଖୋର୍ଦ୍ଧା ଆକ୍ରମଣ କରିବାରୁ ପୁରୁଷୋତ୍ତମ ଦେବ ପୂର୍ବପରି ସପରିବାର ଯାଇ ମାଣତ୍ରୀ ଗଡରେ ଆଶ୍ରୟ ନେଇଥିଲେ ଏବଂ ସେ ସେହିଠାରେ ହିଁ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପୁରୁଷୋତ୍ତମ ଦେବଙ୍କ ରାଜଗୁରୁ ବଳଭଦ୍ର ମହାପାତ୍ର ରାଜାଙ୍କ ସାକ୍ଷାତ ପାଇଁ ଘୋଡାରେ ଚଢି ମାଣତ୍ରୀ ଗଡକୁ ଯାଇଥିବା ବାଟରେ ମୋଗଲ ଆତତାୟୀଙ୍କ ଦ୍ୱାରା ନିହତ ହୋଇଥିଲେ । ପୁରୁଷୋତ୍ତମ ଦେବଙ୍କ





ଅନ୍ତେ ତାଙ୍କ ପୁଅ ଗଜପତି ନରସିଂହ ଦେବ (୧୬୨୨-୧୬୪୭) ଖୋର୍ଦ୍ଧାର ରାଜା ହେଲେ । ଗଜପତି ନରସିଂହ ଦେବ ରାଜ୍ୟାଭିଷେକ ହୋଇ ବିଧର୍ମୀଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଏହି ଗଡକୁ ମୁଖ୍ୟ କେନ୍ଦ୍ର ଭାବରେ ଗ୍ରହଣ କରିଥିଲେ ଓ ସପରିବାର ଏହି ଗଡରେ ମଧ୍ୟ ରହୁଥିଲେ । ଏହି ସମୟରେ ଅହମ୍ମଦ ବେଗ୍ ନରସିଂହ ଦେବଙ୍କ ନିକଟକୁ ଏକ ଆଦେଶନାମା ଲେଖି ଜଣାଇଲେ ଯେ, ଯେହେତୁ ଖୋର୍ଦ୍ଧା ମୋଗଲ ସାମ୍ରାଜ୍ୟ ଅଧୀନସ୍ଥ ଏକ ବିରଳ ରାଜ୍ୟ, ତେଣୁ ସେ (ନରସିଂହ ଦେବ) ମୋଗଲ ସୁବାଦାରଙ୍କ ବଶ୍ୟତା ସ୍ୱୀକାର ପୂର୍ବକ ନିଜ ପରିବାର ବର୍ଗଙ୍କୁ ଖୋର୍ଦ୍ଧା ପରିବର୍ତ୍ତେ କଟକରେ ଆଣି ରଖନ୍ତୁ । ନରସିଂହ ଦେବ ଅତ୍ୟନ୍ତ ସାହସୀ ବୀର ଥିଲେ । ଅହମ୍ମଦ ବେଗଙ୍କର ଏପରି ହୀନ ପ୍ରସ୍ତାବକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସେ ନିଜ ପରିବାରବର୍ଗଙ୍କ ସହ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମତ୍ରୟଙ୍କୁ ଅଗମ୍ୟ ଅରଣ୍ୟବେଷ୍ଟିତ ମାଣତ୍ରୀ ଦୁର୍ଗକୁ ପଠାଇ ଦେଇ ବୀର ଦର୍ପରେ ଅହମ୍ମଦ ବେଗ ଆକ୍ରମଣର ସମ୍ମୁଖୀନ ହେଲେ । ଅହମ୍ମଦ ବେଗ ପରାଜିତ ହୋଇ ପଳାଇଥିଲେ ।

ଭୋଇ ରାଜବଂଶର ୯ମ ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୬୨୭-୩୬)ଙ୍କର କଳାବତୀ ଓ ଲଳିତା ନାମରେ ଦୁଇ ରାଣୀ ଥିଲେ । ପରେ ପୁଣି ରାମଚନ୍ଦ୍ର ଦେବ ଅବସ୍ଥାଚକ୍ରରେ ପଡି ମୁର୍ସିଦ୍ କୁଲିଖାଁଙ୍କ କନ୍ୟା ସୌରିୟାଙ୍କ ପାଣି ଗ୍ରହଣ କରିଥିଲେ ଏବଂ ସେହି କାରଣରୁ ସେ ମୌଳିକ ଧର୍ମବାଦୀମାନଙ୍କ ଦ୍ୱାରା ସମାଲୋଚିତ ଓ ପରିତ୍ୟକ୍ତ ହେବା ଫଳରେ ନିଜର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନ ପାରି ଶ୍ରୀମନ୍ଦିର ସିଂହଦ୍ୱାର ପ୍ରବେଶ ପଥର ଉତ୍ତର ପାର୍ଶ୍ୱରେ ପତିତପାବନ ମୂର୍ତ୍ତି ଅଙ୍କିତ କରାଇ ନିଜର ଜଗନ୍ନାଥ ଦର୍ଶନର ତୃଷା ମେଣ୍ଟାଇ ଥିଲେ । ତାଙ୍କର ପାଟରାଣୀ କଳାବତୀ (ଚିତ୍ରକଳା) ସେହି ସମୟରେ ନିଜର ସ୍ୱାମୀ ଏବଂ ଯବନୀ ସପତ୍ନୀଙ୍କଠାରୁ ବିଚ୍ଛିନ୍ନ ହୋଇ ତିନି ପୁତ୍ରଙ୍କ ସହ ଖୋର୍ଦ୍ଧାଗଡ ଛାଡି ଯାଇ ମାଣତ୍ରୀ ଗଡରେ ଶେଷ ଜୀବନ ବିତାଇଥିଲେ । ସୁତରାଂ ମାଣତ୍ରୀଗଡ ପ୍ରାୟ ଦେଢଶହ ବର୍ଷ ଧରି ରାଜବଂଶ ଦ୍ୱାରା ବିଭିନ୍ନ ସମୟରେ ଖୋର୍ଦ୍ଧାଗଡ ରାଜବାଟୀର ଏକ ବିକଳ୍ପ ରାଜବାଟୀ ଭାବେ ପ୍ରତିଷ୍ଠିତ ଥିଲା ।

ଜାହାଙ୍ଗୀରଙ୍କ ଆତ୍ମଜୀବନୀରୁ ଜଣାଯାଏ ଯେ, ୧୬୨୨ ଖ୍ରୀଷ୍ଟାବ୍ଦରେ ମୀର୍ଜା ଅହମ୍ମଦ ବେଗ୍ ଆକ୍ରମଣ କରିଥିଲେ । ଆକ୍ରମଣ ସମ୍ବାଦ ପାଇ ସେବକମାନେ ମହାପ୍ରଭୁଙ୍କୁ ବାଣପୁରର ମାଳ ଅଞ୍ଚଳର ଶେଷ ସୀମା ଘୋର ଜଙ୍ଗଲମୟ ପରିବେଶ ଅନ୍ଧାରୀ ମହିମ ନାମକ ଏକ ଗୁପ୍ତ ଗଡକୁ ନେଇଯାଇଥିଲେ । ସେତିକିବେଳେ ବୈଷ୍ଣବ ଦୀକ୍ଷାରେ ଦୀକ୍ଷିତ ହୋଇଥିବା କବି ଭକ୍ତ ସାଲବେଗଙ୍କ ହୃଦୟ କାନ୍ଦି ଉଠିଥିଲା । ଅହମ୍ମଦ ବେଗ ବାଣପୁର ସୀମା ପର୍ଯ୍ୟନ୍ତ ଆକ୍ରମଣ କରି ଅଧିକାର କରିଥିଲା । ବାଣପୁର ସୀମାରେ ଥିବା ଅନ୍ଧାରୀ ମହିମଠାରେ ସେତେବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସେବକମାନେ ଲୋକଲୋଚନର ଆଢୁଆଳରେ ସେବା ପୂଜା କରୁଥିଲେ । ବାଣପୁର ଅଧିକାର ସମ୍ବାଦ ପାଇବା ପରେ ଦଇତାପତିମାନେ ମହାପ୍ରଭୁଙ୍କ ବିଗ୍ରହ ସେଠାରୁ ଆଣିବାକୁ ଉଚିତ୍ ନ ଭାବି ସମୟର ସ୍ୱଳ୍ପତା ଦୃଷ୍ଟିରୁ ମହାପ୍ରଭୁମାନଙ୍କର ବ୍ରହ୍ମକୁ ଲୁଗାରେ ଗୁଡାଇ ମାଣତ୍ରୀଗଡକୁ ନେଇ ଆସିବା କଥା ମାଦଳାପାଞ୍ଜିରୁ ଜଣାଯାଏ । ଶାହାଜାହାନ ଓଡିଶା ବାଟ ଦେଇ ଅଯୋଧ୍ୟା ବିଜୟ କରିବାକୁ ଯିବାବେଳେ ମୀର୍ଜା ଅହମ୍ମଦ ବେଗ ଭୟଭୀତ ହୋଇ ବଙ୍ଗଳା ପ୍ରଦେଶକୁ ଚାଲି ଯାଇଥିଲେ । ତେଣୁ ଗଜପତି ଓ ସେବକମାନେ ରାତାରାତି ବ୍ରହ୍ମଙ୍କୁ ପୁରୁଷୋତ୍ତମ କ୍ଷେତ୍ରକୁ ଆଣି ସଙ୍ଖୁଡି ଭୋଗ କରିଥିବା କଥା ମାଦଳାପାଞ୍ଜିରୁ ଜଣାଯାଏ । ସେହି ସମୟରେ ମହାପ୍ରଭୁଙ୍କୁ ଶୀତଳମଣୋହି ହେଉଥିଲା ।

ଏହି ଗଡଟି ମାଣତ୍ରୀ, କପିଳେଶ୍ୱର ତଳଗଡ, ରାମଚନ୍ଦ୍ରପୁର ଓ ବାଲିବେରେଣୀକୁ ନେଇ ସମୃଦ୍ଧ । ସେତେବେଳେ ଏହି ଗଡରେ ୨୨ଟି ପୋଖରୀ ଓ ୨୩ଟି ଦଣ୍ଡା ରହିଥିବାର ଜଣାଯାଏ । ବର୍ତ୍ତମାନ ୧୧ଟି ପୋଖରୀ ଅଛି । ତନ୍ମଧ୍ୟରେ ଗଜପତିଙ୍କ ବ୍ୟବହୃତ 'ବଡ ପୋଖରୀ' ପୁଷ୍କରିଣୀଟି ଶ୍ରୀ କପିଳେଶ୍ୱର ଶିବ ମନ୍ଦିର ସାମ୍ନାକୁ ରହିଅଛି । ପରିବାରର ଅନ୍ୟମାନଙ୍କ ବ୍ୟବହୃତ 'ଲମ୍ୱୀ ପୋଖରୀ' ଅପାଂକ୍ତେୟ ହୋଇ ପଡିରହିଛି । ତଳଗଡରେ ଗଜପତିଙ୍କର ଥିଲା କଚେରି ଗୃହ, ଫାଣ୍ଡି ଓ ଫାଣ୍ଡି କୂଅ । ଫାଣ୍ଡି କୂଅଟିର ଅବସ୍ଥିତି ଥିବାବେଳେ କଚେରି ଓ ଫାଣ୍ଡିର ଭଗ୍ନାବଶେଷ ରହିଅଛି । ଫାଣ୍ଡି କୂଅର ପୂର୍ବ ଦିଗକୁ ରହିଛି ବଡଦାଣ୍ଡ ।



ମହାପ୍ରଭୁଙ୍କ ବ୍ରହ୍ମ ସେତେବେଳେ ଫାଣ୍ଡି କୂଅର ପଶ୍ଚିମକୁ ଏକ ଚାଳ ଘର ଥିଲେ । ଏହି ଘରର ମୁଖଶାଳା ଓ ଜଗମୋହନ ଚାଳ ଛପର ଆଟୁ ଘର । ସେହିଠାରେ ବର୍ତ୍ତମାନ ତ୍ରିବିଗ୍ରହ ସ୍ମାରକୀ ରୂପେ ତିନି ବିଗ୍ରହ ପୂଜା ପାଉଛନ୍ତି । ଶ୍ରୀସୁଦର୍ଶନ ନାହାନ୍ତି । ଛଅ ଫୁଟ ଲମ୍ବାର ପ୍ରସ୍ତର ସିଂହାସନ ଚାରିକାନ୍ଥକୁ ୨ଫୁଟ ଛାଡି ରହିଅଛି । ଏହି ଜଗନ୍ନାଥ ମନ୍ଦିର ତୃତୀୟା ଦେବ ମନ୍ଦିର ଭାବରେ ବର୍ତ୍ତମାନ ପରିଚିତ ।

ରଥ ଓ ମହାପାତ୍ର ସାଂଗିଆଧାରୀ ୬ ଜଣ ସେବକ ଏଠାରେ ସେବା କରୁଛନ୍ତି । ତିନିବାଟି ଦଶମାଣ ଜମି ସେବାପୂଜା ନିମିତ୍ତ ଗଜପତି ମହାରାଜା ଖଞ୍ଜିଥିଲେ । ପ୍ରାଚୀନ କାଗଜାତ୍ ଦେଖିବା ପରେ ଜଣାଗଲା ଯେ ଜମିଗୁଡିକ ତୃତୀୟା ଦେବ ଓ ଶ୍ରୀଜଗନ୍ନାଥ ଦେବ ଉଭୟଙ୍କ ନାମରେ ରହିଅଛି । ଫାଣ୍ଡି କୂଅର ପୂର୍ବଦିଗକୁ ଥିବା ବଡଦାଣ୍ଡର ଅପର ପାର୍ଶ୍ୱରେ ଗୁଣ୍ଡିଚା ଘରର ଭଗ୍ନାବଶେଷ ରହିଅଛି । ଗୁଣ୍ଡିଚା ଘରର ଭଗ୍ନ ପ୍ରାଚୀର ଓ କେତେକ ପଥର ଖୁଣ୍ଟି ମଧ୍ୟ ଏବେ ରହିଛି । ଗୁଣ୍ଡିଚା ଘରଟି ୬ବଖରା ବିଶିଷ୍ଟ ଥିବାର ଜଣାଯାଉଛି । ଏଠାରେ ଥିବା କପିଳେଶ୍ୱର ଶିବ ମନ୍ଦିରଟି ଅତ୍ୟନ୍ତ ପ୍ରାଚୀନ ସମୟର ବୋଲି ଜଣାଯାଏ । କଥିତ ଅଛି ପୂର୍ବେ ଏହି ସ୍ଥାନ ମାଉସୀ ମା' ମନ୍ଦିର ନାମରେ ପରିଚିତ ଥିଲା । ଏଠାରେ ହରିହର ଭେଟ ପରମ୍ପରା ମଧ୍ୟ ରହିଛି ।

ମାଣତ୍ରୀ, ଯାହାକି ଉପରଗଡ ଭାବରେ ପରିଚିତ । ଏଠାରେ ଦଳବେହେରାଙ୍କ ଘର ରହିଅଛି । ମାଣତ୍ରୀଗଡର ଦଳବେହେରା ବଂଶର ଇତିହାସ ଯେଉଁଳି କୌତୁହଳପ୍ରଦ ସେହିଭଳି ତାତ୍ପର୍ଯ୍ୟପୂର୍ଣ୍ଣ । ଅଦ୍ୟାବଧି ଗହୀରରେ ଥିବା ଏକ ବନ୍ଧକୁ ପଠାଣ ବନ୍ଧ ଏବଂ ଦଳବେହେରା ବ୍ୟବହାର କରୁଥିବା କୂଅକୁ ପଠାଣ କୂଅ କୁହାଯାଉଛି । ସୂର୍ଯ୍ୟବଂଶ ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ସମୟରେ ଗଡମାଣିତ୍ରୀର ପାଇକମାନେ ଯୋଗ ଦେଇଥିଲେ ଏବଂ କାଞ୍ଚି ଅଭିଯାନରୁ କେତେକ ମୂର୍ତ୍ତି ଏହି ପାଇକବାହିନୀ ଆଣିଥିଲେ । ସେହି ମୂର୍ତ୍ତିଗୁଡିକ ଏବେବି ଏଠାରେ ଉପାସିତ ହେଉଛନ୍ତି । ଏହି ପାଇକବାହିନୀର ମୁଖ୍ୟ ଥିଲେ ଦଳବେହେରା । ବର୍ତ୍ତମାନ ଦଳବେହେରା ଶ୍ରୀ ଭରତ ଚନ୍ଦ୍ର ମାନ୍ଧାତାଙ୍କ ଗୃହରେ ପାରମ୍ପରିକ ଖଣ୍ଡା ରହିଅଛି । ଏହି ଖଣ୍ଡା ବର୍ଷକୁ ଥରେ ମହାସପ୍ତମୀ ବେଳେ ତିନି ଦିନ ପାଇଁ ଗଡଚଣ୍ଡୀଙ୍କ ପାଖକୁ ଯାଏ । ଏହି ଗଡର ଆରାଧ୍ୟ ଗଡଚଣ୍ଡୀ ମାଣତ୍ରୀଠାରେ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜା ପାଉଥିବା ବେଳେ ଅନତି ଦୂରରେ ଏକ ମୁଣ୍ଡିଆ ଉପରେ ଜାନି ଶବରମାନଙ୍କ ଦ୍ୱାରା ପୂଜା ପାଉଛନ୍ତି ରାମଚଣ୍ଡୀ । ଶବର ଓ ବନବାସୀମାନଙ୍କୁ ସଂଘବଦ୍ଧ କରିବା ପାଇଁ ଗଜପତି ଏହି ପ୍ରକାର ବ୍ୟବସ୍ଥା ପ୍ରଚଳନ କରିଥିବାର ଜଣାଯାଏ । ଯଦିଓ କାଳ ପ୍ରବାହରେ ଜାନି ଶବରଙ୍କ ଦ୍ୱାରା ପୂଜିତ ଦେବୀ 'ରାମଚଣ୍ଡୀ' ନାମରେ ବିଦିତ ହୋଇଛନ୍ତି, ତଥାପି ଗଡ ସହିତ ଥିବା ପ୍ରାଚୀନ ଉପାସନା ପରମ୍ପରା ଏବେ ଅବ୍ୟାହତ ଅଛି । କାରଣ ଦଳବେହେରାଙ୍କ ଘରୁ ତିନି ଦିନ ପାଇଁ ଖଣ୍ଡା ଯାଇ ପୂଜାରେ ବସୁଛି ଏବଂ ଦଶହରା ଦିନ ପୁନଃ ଘରକୁ ଫେରିଆସି ଖଣ୍ଡା ଘରେ ରହୁଅଛି । ଖଣ୍ଡାଘରଟି ଭଗ୍ନ ହୋଇଥିବାରୁ ଏବେ ଏକ ନୂତନ ଖଣ୍ଡା ଘର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଛି । ଦଳବେହେରାଙ୍କ ଘରକୁ ଲାଗି ରହିଛି କୋଠ କରଣଙ୍କର ପ୍ରାଚୀନ ଘର । ଏହିଠାରେ ଗଜପତି ସପରିବାରେ ରହୁଥିଲେ । ଗଜପତିଙ୍କ ରହଣିସ୍ଥଳ 'ଖୁଆଡ' ଢଙ୍ଗରେ ରହିଛି । ଚାରିପଟରେ ଦଳବେହେରା, ଝପଡସିଂହ, ଛୁଆଳସିଂହ, ପଶ୍ଚିମ କବାଟ, ଦକ୍ଷିଣ କବାଟ, ଯୁଝାରସିଂହମାନଙ୍କ ଖୁଆଡ ସଦୃଶ ଘର ରହିଛି । ଗଜପତିଙ୍କ ରହଣିସ୍ଥଳର ପଶ୍ଚିମ ଦିଗକୁ ପୂର୍ବକୁ ମୁଖ କରି ରହିଛି ଶ୍ରୀଗୋବିନ୍ଦ ଜୀଉ ମନ୍ଦିର । ଏଠାରେ ଶ୍ରୀକୃଷ୍ଣ ଓ ରାଧାଙ୍କ ଦକ୍ଷିଣ ପାର୍ଶ୍ୱରେ ରହିଛନ୍ତି ପତିତପାବନ । ଏହି ମନ୍ଦିରର ନିର୍ମାଣ ଶୈଳୀ ଓ ମୁଖ୍ୟ କବାଟ ବନ୍ଧର କାରୁକାର୍ଯ୍ୟ ଦେଖିଲେ ଜଣାଯାଏ ଯେ, ଏହା ଗଜପତିଙ୍କ ରହଣି ସମୟ ଅର୍ଥାତ୍ ଚାରିଶହ ବର୍ଷ ତଳେ ନିର୍ମିତ ହୋଇଥାଇପାରେ । ଶ୍ରୀଗୋବିନ୍ଦ ଜୀଉ ମନ୍ଦିର ବର୍ତ୍ତମାନ ମଧ୍ୟ ଦଳବେହେରାଙ୍କ ମାର୍ଫତ୍‌ରେ ରହିଅଛି ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ, କାଇପଦର, ଖୋର୍ଦ୍ଧା



# ବିଦେଶରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଓ ନବକଳେବର

ଡକ୍ଟର ଅନନ୍ତ ରାମ କର କୌଣ୍ଡିନ୍ୟ

ଶ୍ରୀଜଗନ୍ନାଥ ଚେତନା ଏକ ନିର୍ଦ୍ଦିଷ୍ଟ ଧର୍ମ ନ ହୋଇ ମଧ୍ୟ ଓଡ଼ିଶା ବାହାରେ, ଭାରତ ବାହାରେ ତଥା ଦରିଆ ସେପାରିରେ ଜଗତରେ ପ୍ରସାର ଲାଭ କରିଛି । ଭାରତର ବିଭିନ୍ନ ସ୍ଥାନରେ ଥିବା ଆଞ୍ଚଳିକ ଦେବତା ଆଞ୍ଚଳିକ ସଂସ୍କୃତି ମଧ୍ୟରେ ଜଗନ୍ନାଥ ହିଁ ସର୍ବାଧିକ ପ୍ରସାରବନ୍ତ ହୋଇପାରିଛନ୍ତି । ଜଗନ୍ନାଥ ନାମ ସାର୍ଥକ ହୋଇଛି ଜଗତ ନାଥ ରୂପେ । ଜଗତକୁ ପ୍ରଭାବିତ କରିଛି ଜଗତ ନାଥଙ୍କ ମହିମା ।

ଶ୍ରୀକ୍ଷେତ୍ରରୁ ଏହି ମହାଚେତନା ପ୍ରଥମେ କଳିଙ୍ଗ ସୌଦାଗରମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ପହଞ୍ଚାଇ ଥିଲେ । ଦରିଆ ସେପାରିର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବ୍ରହ୍ମଦେଶ ପ୍ରଭୃତି ଅଞ୍ଚଳରେ ପହଞ୍ଚି ଥିଲା । ପରେ ପରେ ଭାରତ ସଂଲଗ୍ନ ମଣିପୁର, ନେପାଳ, ବଙ୍ଗଳାଦେଶ ପ୍ରଭୃତି ସ୍ଥାନରେ ଜଗନ୍ନାଥଙ୍କ ମନ୍ଦିରମାନ ପ୍ରତିଷ୍ଠା ଲାଭ ହୋଇଥିଲା ।

ଭାରତ ବାହାରେ ସର୍ବପ୍ରଥମେ ନେପାଳରେ ଶ୍ରୀଜଗନ୍ନାଥଙ୍କ ମହିମା ପ୍ରତିଷ୍ଠା ଲାଭ କରିଥିଲା । ଶ୍ରୀକ୍ଷେତ୍ର ସହିତ ନେପାଳର ରାଜା ଓ ପ୍ରଜାଙ୍କ ସମ୍ପର୍କ ବିଗତ ସପ୍ତମ ଅଷ୍ଟମ ଶତାବ୍ଦୀରୁ । ଶ୍ରୀମନ୍ଦିରରେ ସଂରକ୍ଷିତ 'ମୁଦଲସିନ୍ଧି' ନାମକ ଗ୍ରନ୍ଥରେ ଏ ସଂପର୍କରେ ସବିଶେଷ ତଥ୍ୟ ରହିଛି । ଓଡ଼ିଶାର ଗଜପତି ତଥା ବହୁ ରାଜବଂଶ ସହ ନେପାଳ ରାଜବଂଶର ବୈବାହିକ ସଂପର୍କ ରହିଛି । ନେପାଳରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା ପ୍ରଚଳିତ । ନେପାଳରୁ ବିଷ୍ଣୁଶୀଳା ଶ୍ରୀକ୍ଷେତ୍ରକୁ ଅଣାଯାଇଥିଲା । ଆଜି ସୁଦ୍ଧା ନେପାଳରୁ କସ୍ତୁରୀ ଆସୁଛି ଶ୍ରୀଜୀଉଙ୍କ ନିମନ୍ତେ ।

କଳିଙ୍ଗର ବଣିକମାନେ ଯେତେବେଳେ ନୌବାଣିଜ୍ୟ କରୁଥିଲେ, ସେକାଳରେ ବେପାର ବଣିଜ ସହ ଶ୍ରୀଜଗନ୍ନାଥ ମହିମାକୁ ମଧ୍ୟ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରଚାର କରିଥିଲେ ।

ଏହିସବୁ ଦ୍ୱୀପପୁଞ୍ଜରେ ଭାରତୀୟ ହିନ୍ଦୁ ସଂସ୍କୃତି ସମେତ ଉତ୍କଳୀୟ ଜଗନ୍ନାଥ ସଂସ୍କୃତି ମଧ୍ୟ ଆଜି ସୁଦ୍ଧା ବିଦ୍ୟମାନ । ବାଲି ଦ୍ୱୀପରେ ବୌଦ୍ଧ ଇନ୍ଦ୍ରଭୂତି ଜଗନ୍ନାଥ, ଆଦି ବୁଦ୍ଧଙ୍କୁ ପୂଜା କରିଥିଲେ । ଓଡ଼ିଶାରେ ଜଗନ୍ନାଥ ଓ ପୁରୁଷୋତ୍ତମଙ୍କ ମଧ୍ୟରେ ଯେପରି ସମନ୍ୱୟ ସ୍ଥାପିତ ହୋଇଥିଲା ବାଲିଦ୍ୱୀପରେ ସେହିପରି ଶିବ ଓ ଜଗନ୍ନାଥଙ୍କ ସମୀକରଣ ହୋଇଥିଲା । ସେଠାରେ ଶିବଙ୍କୁ ଜଗନ୍ନାଥ ବୋଲି ସ୍ତୁତି କରାଯାଏ ।

ଏ ତ ଥିଲା ଅତୀତର ପ୍ରସଙ୍ଗ । ସାଂପ୍ରତିକ କାଳରେ ଆନ୍ତର୍ଜାତିକ କୃଷ୍ଣ ଚେତନା ସଂଘ (ଇସ୍କନ) ଶ୍ରୀଜଗନ୍ନାଥଙ୍କ ଚେତନାକୁ ବିଶ୍ୱର କୋଣେ ଅନୁକୋଣେ ପହଞ୍ଚାଇ ସାରିଛନ୍ତି । ଅତୀତରେ ଗୋରା ଶାସକମାନେ ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥଙ୍କୁ କୁତ୍ସିତ କଦାକାର ଦେବତା ଜଗର୍ନ୍ନଟ ବୋଲି ଆକ୍ଷେପ କରିଥିଲେ । ଆଜି ସେମାନଙ୍କ ଶ୍ୱେତାଙ୍ଗ ବଂଶଧରମାନେ ଲଣ୍ଠିତ ମସ୍ତକ ହୋଇ ଶରଧାବାଲିରେ ଗଡ଼ିଥାନ୍ତି । ଇସ୍କନ ସଂସ୍ଥା ୧୯୬୭ମସିହାରେ ପ୍ରଥମେ ଆମେରିକାର ସାନ୍‌ଫ୍ରାନ୍ସିସ୍‌କୋଠାରେ ଶ୍ରୀବିଗ୍ରହ ପ୍ରତିଷ୍ଠା କରି ରଥଯାତ୍ରା ଅନୁଷ୍ଠିତ କରାଇଥିଲେ । ଏହାପରେ ୧୯୭୧ରେ ଲସ୍‌ଏଞ୍ଜୋଲସ୍‌ରେ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ୧୯୭୬ବେଳେ ନ୍ୟୁୟର୍କ, କାନଡ଼ାର ଟରେଣ୍ଟ ମଣ୍ଟ୍ରିଲ୍, ଫ୍ରାନ୍ସର ପ୍ୟାରିସ, ଅଷ୍ଟ୍ରେଲିଆର ମେଲ୍‌ବର୍ଣ୍ଣ, ବ୍ରିସବେନ୍ ସମେତ ପୃଥିବୀର ପ୍ରମୁଖ ୧୦ଗୋଟି



ମହାନଗରରେ ଅନୁଷ୍ଠିତ ହୋଇଥିଲା । ୧୯୮୯ବେଳେ ଦକ୍ଷିଣ ଆଫ୍ରିକାର ଡର୍ବାନ୍, ନାଇରୋବି ମମ୍ବାସାଠାରେ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ୨୦୦୩ ମସିହାରେ ନ୍ୟୁଜିଲ୍ୟାଣ୍ଡର ଅକ୍‌ଲାଣ୍ଡଠାରେ ଏବଂ ମେକ୍ସିକୋ, ବ୍ରାଜିଲ ଏବଂ ଋଷିଆର ମସ୍କୋଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା ।

ମାଲେସିଆର କ୍ୱାଲାଲାମ୍ପୁରଠାରେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି କୃଷ୍ଣଚେତନା ସଂଘ ରଥଯାତ୍ରା ଅନୁଷ୍ଠିତ କରାଉଛନ୍ତି । ଏପରିକି ବଙ୍ଗଳା ଦେଶରେ ମଧ୍ୟ କେଉଁ ପ୍ରାଚୀନ କାଳରୁ ରଥଯାତ୍ରା ଓ ଜଗନ୍ନାଥଙ୍କ ମହିମା ପ୍ରତିଷ୍ଠିତ। ଏତଦ୍‌ବ୍ୟତୀତ ବିଦେଶର ଜୁରିଚ, ସ୍ୱିଜରଲ୍ୟାଣ୍ଡ, ସ୍ପେନ୍, ମାଡ୍ରିଡ୍, ବାର୍ସିଲୋନା, ମାଲାଗା, ମିଲାନ୍‌ଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଛି । ଋଷର ମୁସଲମାନ ବହୁଳ ରାଷ୍ଟ୍ର କାଜକାସ୍ଥାନ, ବୁଦାପେଷ୍ଟ, ହଙ୍ଗେରି, ସୋଫିଆ, ବୁଲଗେରିଆ, ରିଗା, ଲାଟାଭିଆ, ଲୁଥାନିଆ, ମସ୍କୋ, ସେଣ୍ଟପିଟର୍ସବର୍ଗ, ରୋଷ୍ଟାଭ, ସୋଚି ଆଦି ଦେଶରେ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା ଅନୁଷ୍ଠିତ ହେଉଅଛି ।

ଆନ୍ତର୍ଜାତିକ କୃଷ୍ଣଚେତନା ସଂଘ ପକ୍ଷରୁ ଆନ୍ତର୍ଜାତିକ ରଥଯାତ୍ରା ସଂଘ ନାମରେ ଅନୁଷ୍ଠାନ ଗଢ଼ାଯାଇ ଲଣ୍ଡନ, ଜର୍ମାନ୍, ଜାପାନ୍, ୱାସିଂଟନ୍, ଆଟଲାଣ୍ଟା, ବାଲ୍ଟିମୋର, ବୋଷ୍ଟନ୍ ବାର୍ମିଂହାମ୍, ମାଞ୍ଚେଷ୍ଟର, ସ୍କାଣ୍ଡିନେଭିଆ ଆଦି ନଗରରେ ରଥଯାତ୍ରା ଅନୁଷ୍ଠିତ ହେଉଛି ।

ସାଂପ୍ରତିକ ମିୟାମାର ଦେଶ ଅତୀତରେ ବ୍ରହ୍ମଦେଶ ନାମରେ ପରିଚିତ ଥିଲା । ବହୁ ପ୍ରାଚୀନ କାଳରୁ କଳିଙ୍ଗ, ଉତ୍କଳ ସହ ବ୍ରହ୍ମଦେଶର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ସୁଦୃଢ଼ ଥିଲା । ବ୍ରହ୍ମଦେଶର ପ୍ରୋମ୍ ଅଞ୍ଚଳକୁ ଅତୀତରେ ଶ୍ରୀକ୍ଷେତ୍ର କୁହାଯାଉଥିଲା ।

ବ୍ରହ୍ମଦେଶର ଅଧିବାସୀମାନେ ବୌଦ୍ଧଧର୍ମାବଲମ୍ବୀ । ଅପର ପକ୍ଷରେ ପ୍ରାୟ ପଞ୍ଚଦଶ ଶତାବ୍ଦୀ ବେଳକୁ ବ୍ରହ୍ମଦେଶରେ ଶ୍ରୀଜଗନ୍ନାଥ ମନ୍ଦିରମାନ ପ୍ରତିଷ୍ଠା ହୋଇଥିଲା । ବିଶେଷ କରି ୧୮୫୦ମସିହା ବେଳେ ଗଞ୍ଜାମର କେତେକ ଲୋକ ବ୍ରହ୍ମ ଦେଶରେ ଏକ ଓଡ଼ିଆ ଉପନିବେଶ ସ୍ଥାପନ କରି ଏଠାକାର ମଙ୍ଗଳାଡୁନ୍, ପୁରୁଣା ରେଙ୍ଗୁନ୍, ଇନ୍‌ସିନ୍, ଏଲୋନ୍ ଆଦି ସ୍ଥାନରେ ଥିବା ଜଗନ୍ନାଥ ମନ୍ଦିରଗୁଡ଼ିକର ଜୀର୍ଣ୍ଣ ସଂସ୍କାର କରିଥିଲେ। ୧୯୩୧ ମସିହାର ନବକଳେବର ବେଳେ ବ୍ରହ୍ମଦେଶର ଜଗନ୍ନାଥ ମନ୍ଦିରଗୁଡ଼ିକରେ ନବକଳେବର ହୋଇଥିଲା । ଏଥି ନିମନ୍ତେ ଗଞ୍ଜାମର ଚିକିଟି ଅଞ୍ଚଳରୁ ଦାରୁ ସଂଗ୍ରହ ହୋଇ ଗୋପାଳପୁର ବନ୍ଦର ଦେଇ ବ୍ରହ୍ମଦେଶକୁ ଯାଇଥିଲା ।

ଗତ ୧୯୯୬ ମସିହାରେ ପୁଣି ବ୍ରହ୍ମଦେଶ ବା ମିୟାମାର ଦେଶର ରେଙ୍ଗୁନ୍ ସହର ନିକଟ ସିରିୟାମସ୍ଥିତ ଜଗନ୍ନାଥ ମନ୍ଦିରରେ ନବକଳେବର ହୋଇଥିଲା । ଏହି ମନ୍ଦିରକୁ ୧୯୧୭ ମସିହାରେ ବର୍ମାସ୍ଥିତ ଭାରତ ତୈଳ କମ୍ପାନୀରେ କାର୍ଯ୍ୟରତ ଗଞ୍ଜାମର ଶ୍ରମିକମାନେ ନିର୍ମାଣ କରିଥିଲେ। ଏହି ଅବସରରେ ପୁରୀର ପଣ୍ଡିତ ଅଧ୍ୟାପକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଏବଂ ପଣ୍ଡିତ ଶ୍ରୀ ଶରତଚନ୍ଦ୍ର ଷଡ଼ଙ୍ଗୀ ମିୟାମାର ଯାଇ ସିରିୟାମ୍ ଜଗନ୍ନାଥ ମନ୍ଦିରର ନବକଳେବର ସମ୍ପନ୍ନ କରାଇଥିଲେ ।

ଏହିସବୁ ପ୍ରସଙ୍ଗକୁ ଅନୁଧ୍ୟାନ କଲେ ମନକୁ ସ୍ୱତଃ ଆସିଯାଏ– ଦରିଆ କୂଳର ଜଗନ୍ନାଥ। ଦରିଆ ସେପାରିରେ ଥିବା ଜଗତକୁ ମଧ୍ୟ ମଗ୍ନ କରିଛନ୍ତି । ସତେ ଯେମିତି ଚକାଆଖି ଗୋଲାକାର ପୃଥିବୀ ହୋଇପାରେ ।

ନିମଖଣ୍ଡିପେଣ୍ଠ, ଗଞ୍ଜାମ





# ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ପ୍ରଚଳନ ପ୍ରସଙ୍ଗ

**ବିଶ୍ୱନାଥ ରାଉତ**

ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କ ବଡ଼ସିଂହାର ବେଶବେଳେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ବ୍ୟବହାର କରାଯାଏ । ମହାପ୍ରଭୁଙ୍କୁ ଏହି ଖଣ୍ଡୁଆପାଟରେ ଆବରଣ କରାଯାଏ । ଏହି ପାଟରେ ଗୀତଗୋବିନ୍ଦର ଶ୍ଳୋକ ଉଲ୍ଲେଖ ରହିଛି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ମହାପ୍ରଭୁ ଜଗନ୍ନାଥ ଗୀତଗୋବିନ୍ଦ ପ୍ରିୟ। ଗୀତଗୋବିନ୍ଦ ସ୍ରଷ୍ଟା କବି ଜୟଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପରମ ଭକ୍ତ ଭାବେ ପରିଚିତ । ଏକଥା ଲୋକମୁଖରେ ପରମ୍ପରାକ୍ରମେ ପ୍ରଚଳିତ। ଦୀର୍ଘ ବର୍ଷ ପୂର୍ବେ ଭକ୍ତକବି ଜୟଦେବ ଶ୍ରୀମନ୍ଦିରର ଯେଉଁ ପରମ୍ପରା ସୃଷ୍ଟି କରିଥିଲେ, ତାହା ଏବେବି ପ୍ରଚଳିତ । ଏହାହିଁ ପରମ ଭକ୍ତ ଜୟଦେବଙ୍କର ଭକ୍ତିମତ୍ତାର ବୈଶିଷ୍ଟ୍ୟ ।



ଗୀତଗୋବିନ୍ଦ ଖଣ୍ଡୁଆପାଟ ସମ୍ପର୍କରେ ଏକ କାହାଣୀ ରହିଛି। ଭକ୍ତପ୍ରବର ଜୟଦେବ ସେତେବେଳେ କେନ୍ଦୁବିଲ୍ୱରେ ଅବସ୍ଥାନ କରୁଥିଲେ । ହଠାତ୍ ଏକ ଅଭିନବ ଚିନ୍ତା ଦିନେ ତାଙ୍କ ମୁଣ୍ଡରେ ଜୁଟିଲା। ଗୀତଗୋବିନ୍ଦର କେତୋଟି ନିର୍ବାଚିତ ଶ୍ଳୋକରେ ବୁଣାଯାଇଥିବା ଏକ ସ୍ୱତନ୍ତ୍ର ଧରଣର ଖଣ୍ଡୁଆପାଟ ଯଦି ମହାପ୍ରଭୁଙ୍କୁ ସମର୍ପଣ କରାଯିବ, ତା'ହେଲେ ଶ୍ରୀଜଗନ୍ନାଥ ଆହୁରି କମନୀୟ କାନ୍ତିରେ ହସି ଉଠିବେ। ଏହି ଚିନ୍ତା ଆନ୍ଦୋଳିତ କଲା ଜୟଦେବଙ୍କୁ ବରାବର। ଏ ଧରଣର ଖଣ୍ଡୁଆପାଟ ପ୍ରସ୍ତୁତି ନିମନ୍ତେ ସେ ଉଦ୍ୟମ ଜାରି ରଖିଲେ । ଗ୍ରାମର ବହୁ ବଦାନ୍ୟ ବ୍ୟକ୍ତି ତାଙ୍କୁ ସହଯୋଗର ହାତ ବଢ଼ାଇଲେ । ବୁଣାଳୀ ଭାଇମାନେ ମଧ୍ୟ ଜୟଦେବଙ୍କ ଇଚ୍ଛାକୁ ପୂରଣ କରିବା ନିମନ୍ତେ ଅଣ୍ଟା ଭିଡ଼ିଲେ ।

ଜୟଦେବ ବୁଣାଳୀ ଭାଇମାନଙ୍କ ସହ ଖଣ୍ଡୁଆପାଟର ପ୍ରସ୍ତୁତି ଶୈଳୀ ସମ୍ପର୍କରେ ଆଲୋଚନା କଲେ। ନିଜେ ନିଜ ରଚିତ ଗୀତଗୋବିନ୍ଦରୁ ଶ୍ଳୋକ ଚୟନ କଲେ । ସେହି ଶ୍ଳୋକଗୁଡ଼ିକୁ ଯେଉଁ ଶୈଳୀରେ ଖଣ୍ଡୁଆ ପାଟରେ ସ୍ଥାନ ଦିଆଯିବ, ସେ ସମ୍ପର୍କରେ ସେ ବିସ୍ତୃତ ଭାବରେ ବୁଣାଳୀମାନଙ୍କୁ ଅବଗତ କରାଇଲେ। ନିଜର ପରମ ଆରାଧ୍ୟ ଦେବତା ରାଧାକୃଷ୍ଣଙ୍କୁ ସ୍ମରଣ କରି ନିଜ ଉଦ୍ୟମକୁ ଚରିତାର୍ଥ କରିବା ନିମନ୍ତେ ପ୍ରୟାସ ଆରମ୍ଭ କଲେ । ଜୟଦେବ ଶ୍ରୀଜଗନ୍ନାଥଙ୍କଠାରେ କୃଷ୍ଣତ୍ୱ ଅଥବା ମାଧବତ୍ୱ ଆରୋପ କରି ଜଗନ୍ନାଥଙ୍କଠାରେ ନିଜକୁ ସମର୍ପଣ କରିଦେଇଥିଲେ। ଗ୍ରାମର ଏକ ପାର୍ଶ୍ୱରେ ଥିବା ମନ୍ଦିର ନିକଟବର୍ତ୍ତୀ ପୁଷ୍କରିଣୀକୁ ଲାଗି ରହିଥିଲା ବୁଣାଳୀ ବସ୍ତି । ପାଟ ପ୍ରସ୍ତୁତି କାର୍ଯ୍ୟରେ ବୁଣାଳୀମାନେ ନିୟୋଜିତ ହେଲେ। ଜୟଦେବଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ ଚାଲିଲା ।



ଜୟଦେବ ସୁଲଳିତ କଣ୍ଠରେ ଗୀତଗୋବିନ୍ଦର ପଂକ୍ତିମାନ ଗାନ କରୁଥିଲେ ଏବଂ ସେହି ଅନୁସାରେ ବୁଣାଳୀମାନେ ପାଟ ବୁଣୁଥିଲେ । ଏହି କାର୍ଯ୍ୟ କିଛିଦିନ ଚାଲିଲା । ହଠାତ୍ ଦିନେ ଗୀତଗୋବିନ୍ଦ ଗାନ କରୁଥିବାବେଳେ ଜୟଦେବ ଅତ୍ୟନ୍ତ ଭାବ ବିହ୍ୱଳିତ ହୋଇ ମୂର୍ଚ୍ଛା ହୋଇଗଲେ । ପାଟବୁଣା କାର୍ଯ୍ୟ ଅଧାରୁ ବନ୍ଦ ହୋଇଗଲା । ସମ୍ଭବତଃ ମହାପ୍ରଭୁ ଜଗନ୍ନାଥଙ୍କର ଏହାହିଁ ଥିଲା ଇଚ୍ଛା । ତାଙ୍କ ପାଇଁ ପ୍ରସ୍ତୁତ ହେଉଥିବା ସ୍ୱତନ୍ତ୍ର ପାଟ ତିଆରି ପ୍ରକ୍ରିୟା ଅନୁଧ୍ୟାନ କରିବା ନିମନ୍ତେ ବୋଧହୁଏ ମହାପ୍ରଭୁଙ୍କର ଇଚ୍ଛା ହେଲା । ସେଥିପାଇଁ ସେ ଏଭଳି କାଣ୍ଡ ରଚନା କଲେ । ଅଚେତ ଅବସ୍ଥାରେ ଜୟଦେବ ଥିବାବେଳେ ବୁଣାଳୀମାନେ ବିବ୍ରତ ହୋଇପଡ଼ିଲେ । ଠିକ୍ ସେତିକିବେଳେ ଜଣେ ବ୍ରାହ୍ମଣ ପାଟବୁଣା ସ୍ଥାନରେ ପହଞ୍ଚିଲେ । ତାଙ୍କ କଣ୍ଠରୁ ଝରିପଡୁଥିଲା ଗୀତଗୋବିନ୍ଦର ଅମୃତ ପଦାବଳୀ । ଠିକ୍ ଜୟଦେବଙ୍କ ଶୈଳୀରେ ବ୍ରାହ୍ମଣ ଗାନ କରୁଥିଲେ ଗୀତଗୋବିନ୍ଦର କମନୀୟ ଶ୍ଳୋକ । ଭଜନରତ ବ୍ରାହ୍ମଣଙ୍କୁ ଦର୍ଶନ କରି ବୁଣାଳୀମାନେ ଆନନ୍ଦ ଚିତ୍ତରେ ତାଙ୍କ ପାଦତଳେ ଲୋଟିପଡ଼ିଲେ । ସେମାନଙ୍କ ବିବ୍ରତ ଅବସ୍ଥାକୁ ଲକ୍ଷ୍ୟ କରି ବ୍ରାହ୍ମଣ କହିଲେ, ଭାଇମାନେ ଚିନ୍ତାକର ନାହିଁ । ପାଟବୁଣା ବନ୍ଦ ହେବନାହିଁ । ମୁଁ ଗୀତଗୋବିନ୍ଦ ଶ୍ଳୋକ ମନେ ରଖିଛି । ମୁଁ ବୋଲିବି, ତୁମ୍ଭେମାନେ ପାଟ ବୁଣିବ ।

ଜୟଦେବ ଶୈଳୀକୁ ଭଲଭାବରେ ନକଲ କରି ଗୀତଗୋବିନ୍ଦ ଗାନ କରୁଥିବାରୁ ବ୍ରାହ୍ମଣଙ୍କ କଥାରେ ବୁଣାଳୀମାନେ ଆଶ୍ୱସ୍ତ ହେଲେ ଏବଂ ପାଟ ବୁଣିବାକୁ ପ୍ରସ୍ତୁତ ହେଲେ । ବ୍ରାହ୍ମଣ ଗାନ କରି ଚାଲିଲେ ଗୀତଗୋବିନ୍ଦର ପୂର୍ବ ନିର୍ବାଚିତ ଶ୍ଳୋକ ସୁମଧୁର କଣ୍ଠରେ ଏବଂ ସାଙ୍ଗୀତିକ ମୂର୍ଚ୍ଛନାର ତାଳେ ତାଳେ ଭାବ ବିହ୍ୱଳିତ ବୁଣାଳୀମାନେ ମଧ୍ୟ ଖଣ୍ଡୁଆ ପାଟ ବୁଣି ଚାଲିଲେ । କିଛି ସମୟରେ ଗାନ ଶେଷ ହେଲା ଓ ପାଟ ବୁଣା ମଧ୍ୟ । ଗୀତଗୋବିନ୍ଦର ବାରଟିଯାକ ସର୍ଗ ବ୍ରାହ୍ମଣ ଗାନ କରିସାରିଥିଲେ । ବୁଣାଳୀମାନେ ମଧ୍ୟ ତତ୍ପରତାର ସହ ପାଟ ବୁଣାକାର୍ଯ୍ୟ ଶେଷ କରି ଦେଇଥିଲେ । ବ୍ରାହ୍ମଣ ବୁଣାଳୀଙ୍କଠାରୁ ବିଦାୟ ନେବାକୁ ଇଚ୍ଛା କରି କହିଲେ, ଏଥର ମୁଁ ଯାଉଛି । ମୋର ବହୁତ ବିଳମ୍ବ ହୋଇଗଲାଣି । ମଧ୍ୟାହ୍ନ ଭୋଜନ ସମୟ ଗଡ଼ି ଗଲାଣି । ମାତ୍ର ବୁଣାଳୀମାନେ ବ୍ରାହ୍ମଣଙ୍କୁ ବିଦାୟ ଦେବାକୁ ଅନିଚ୍ଛୁକ ହୋଇ କହିଲେ, ଜୟଦେବ ଚେତା ପାଇ ଉଠିଲେ, ଆମ ଉପରେ ବିରକ୍ତ ହେବେ । ଦୟାକରି ସେ ଉଠିବା ପର୍ଯ୍ୟନ୍ତ ଆପଣ ଅପେକ୍ଷା କରନ୍ତୁ । ବ୍ରାହ୍ମଣ କହିଲେ, ସେ ତ ଏତେ ଶୀଘ୍ର ଉଠିବେନି । ରାଧାମାଧବ ପ୍ରେମରେ ମଜ୍ଜି ସେ ଭାବରେ ଅଚେତ ହୋଇପଡ଼ିଛନ୍ତି । ସେ ଉଠିଲେ ମୁଁ ଆସିଥିଲି ବୋଲି ତାଙ୍କୁ କହିବେ । ଏକଥା କହି ବ୍ରାହ୍ମଣ ବୁଣାଳୀମାନଙ୍କଠାରୁ ବିଦାୟ ନେଇ କିଛିବାଟ ଗଲାପରେ ଅର୍ନ୍ତଦ୍ଧାନ ହୋଇଗଲେ ।

ବ୍ରାହ୍ମଣ ଚାଲିଯିବାର କିଛି ସମୟ ପରେ ଜୟଦେବଙ୍କ ଚେତା ଫେରିଲା । ସେ ଉଠି ବସିବା ମାତ୍ରକେ ବୁଣାଳୀମାନେ ତାଙ୍କୁ ବ୍ରାହ୍ମଣଙ୍କ ଖଣ୍ଡୁଆ ପାଟ ବୁଣା ସରିଯାଇଥିବା ସମ୍ପର୍କରେ ମଧ୍ୟ ସୂଚନା ଦେଲେ । ଏକଥା ଶୁଣି ଜୟଦେବ ଅତ୍ୟନ୍ତ ଉଲ୍ଲସିତ ହୋଇପଡ଼ିଲେ । ତନୁ ମନ ଶିହରିତ ହୋଇ ଉଠିଲା । ସେ ଚିନ୍ତାକଲେ ଗୀତଗୋବିନ୍ଦର ସମସ୍ତ ଶ୍ଳୋକ କେବଳ ତାଙ୍କୁ ଓ ତାଙ୍କ ପତ୍ନୀ ପଦ୍ମାବତୀଙ୍କୁ ଜଣା । ସେ ଦୁହିଁଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ତେବେ ସେ ବ୍ରାହ୍ମଣ କିଏ ? ମହାପ୍ରଭୁ ନିଶ୍ଚୟ ହୋଇଥିବେ । ଏହା ମନରେ ଭାବି ଜୟଦେବ ପରମ କାରୁଣିକ ମହାପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସେଠାରେ ଲୋଟିଗଲେ । ଆଖିରେ ଥିଲା ଅଶ୍ରୁଭାବ ଓ ଭକ୍ତିର ଆନନ୍ଦାଶ୍ରୁ । ଓଠରେ ଥିଲା ଗୀତଗୋବିନ୍ଦର ସ୍ୱର । ସଂପୂର୍ଣ୍ଣ ଆତ୍ମସମର୍ପଣର ସ୍ୱର ମହାପ୍ରଭୁ ସତରେ ତାଙ୍କର ଇଚ୍ଛା ପୂରଣ କରିଛନ୍ତି । ହୃଦୟରେ ଥିଲା ମହାପ୍ରଭୁଙ୍କ ପ୍ରତି କୃତଜ୍ଞତାର କୋହ ଓ ଅଫୁରନ୍ତ ଉଲ୍ଲାସ ।

ଏଥର ଉଠିଲେ ଜୟଦେବ । ଆବେଗିକ ଉନ୍ମାଦନାରେ କହିଲେ ବୁଣାଳୀମାନଙ୍କୁ, ଭାଇମାନେ ତୁମମାନଙ୍କର ଉଦ୍ୟମ



ସଫଳ ହୋଇଛି । ଖଣ୍ଡୁଆ ପାଟକୁ ମହାପ୍ରଭୁ ଗ୍ରହଣ କରିଛନ୍ତି, ସ୍ୱୀକୃତି ପ୍ରଦାନ କରିଛନ୍ତି। ତୁମେମାନେ ଧନ୍ୟ । ମହାପ୍ରଭୁଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରି ନିଜ ନିଜ ଜୀବନକୁ ଧନ୍ୟ କରିପାରିଛ । ଯାହା ମୁଁ ପାରିନାହିଁ। ତାହା ତୁମେ ପାରିଛ। ଦୁନିଆରେ ତୁମମାନଙ୍କ ଛଡ଼ା ଆଉ କିଏ ବା ଅଛି ଭାଗ୍ୟବାନ । ବୁଣାଳୀ ବସ୍ତିରେ ଖେଳିଗଲା ଭକ୍ତି ଭାବର ଲହରୀ। ପରିବେଶ ହୋଇ ଉଠିଲା ଭକ୍ତିମୟ ।

ପରଦିନ ପତ୍ନୀଙ୍କ ସହ ଜୟଦେବ ଚାଲିଲେ ପୁରୀ ଅଭିମୁଖେ । ଶ୍ରୀଜଗନ୍ନାଥଙ୍କୁ ଖଣ୍ଡୁଆ ପାଟ ସମର୍ପଣ କରିବାର ପ୍ରବଳ ଇଚ୍ଛା ତାଙ୍କୁ ବିଚଳିତ କରି ପକାଇଲା । ଗୀତଗୋବିନ୍ଦ ଗାଇ ଗାଇ ପତିପତ୍ନୀ ପହଞ୍ଚିଲେ ଶ୍ରୀକ୍ଷେତ୍ରରେ । ସେବାୟତମାନଙ୍କୁ ଭେଟିଲେ ଓ ନିଜ ଇଚ୍ଛା ସଂପର୍କରେ ସେମାନଙ୍କୁ ଜଣାଇ ଖଣ୍ଡୁଆ ପାଟକୁ ମହାପ୍ରଭୁଙ୍କୁ ସମର୍ପଣ କରିବାର ଅଭିଳାଷ ପ୍ରକଟ କଲେ। ମାତ୍ର ସେବାୟତମାନେ ଏଥିରେ ଅମଙ୍ଗ ହେଲେ। ବରଂ ଜୟଦେବଙ୍କୁ ତିରସ୍କାର କଲେ। ଜୟଦେବ ଏଥିରେ ଭାଙ୍ଗି ନପଡ଼ି ଧୈର୍ଯ୍ୟର ସହ ସମୟକୁ ଅପେକ୍ଷା କଲେ । ରାଜାଙ୍କ କାନକୁ ଗଲା ଏହି ପ୍ରସଙ୍ଗ। ରାଜା ଏ ସଂପର୍କରେ ନିଷ୍ପତ୍ତି ନେବାକୁ ଦରବାର ଡକାଇଲେ । ଦରବାର ବସିଲା । ସେବାୟତଙ୍କ ସମେତ ଜୟଦେବ ସପତ୍ନୀକ ଉପସ୍ଥିତ ଥିଲେ। ବହୁ ବାଦାନୁବାଦ ଓ ବିଚାର ବିମର୍ଶ ଚାଲିଲା । ଶେଷରେ ରାଜା ନିଷ୍ପତ୍ତି ଘୋଷଣା କଲେ ଯେ ଜୟଦେବଙ୍କ ଖଣ୍ଡୁଆ ପାଟକୁ ମାର୍କଣ୍ଡେୟ ପୁଷ୍କରିଣୀରେ ଫିଙ୍ଗି ଦିଆଯିବ । ଯଦି ପାଟଟି ପାଣି ଭିତରେ ବୁଡ଼ି ନଯାଇ ପାଣି ଉପରେ ଭାସମାନ ଅବସ୍ଥାରେ ରହିବ, ତେବେ ପାଟଟିକୁ ମହାପ୍ରଭୁ ଗ୍ରହଣ କରିଛନ୍ତି ବୋଲି ବୁଝିବାକୁ ହେବ। ରାଜାଙ୍କ ଘୋଷଣା ମୁତାବକ ଜୟଦେବଙ୍କ ଖଣ୍ଡୁଆ ପାଟକୁ ପୁଷ୍କରିଣୀରେ ଫିଙ୍ଗି ଦିଆଗଲା ଏବଂ ଆଶ୍ଚର୍ଯ୍ୟର ବିଷୟ ଯେ ପାଟଟି ପାଣିରେ ନବୁଡ଼ି ଭାସିବାକୁ ଲାଗିଲା । ସେଠାରେ ଉପସ୍ଥିତ ସମବେତ ଜନତାଙ୍କ ହରିବୋଲ ହୁଳହୁଳି ଶବ୍ଦରେ ଗଗନ ପବନ ପ୍ରକମ୍ପିତ ହୋଇଉଠିଲା । ସମସ୍ତେ ଜୟଦେବଙ୍କୁ ପ୍ରଶଂସା କଲେ। ରାଜା ନିଜେ ତାଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ। ଜୟଦେବ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାରୁ ତାଙ୍କ ଆଖି ଆନନ୍ଦରେ ଛଳ ଛଳ ହୋଇଉଠିଲା । ନିଷ୍ପତ୍ତି ଅନୁସାରେ ଜୟଦେବଙ୍କ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କୁ ସମର୍ପଣ କରାଗଲା। ଭକ୍ତ ଓ ଭକ୍ତିର ବିଜୟ ହେଲା ।

ସେହିଦିନଠାରୁ ମହାପ୍ରଭୁଙ୍କ ବଡ଼ସିଂହାର ବେଶ ନୀତିରେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ବ୍ୟବହାର କରାଯାଇ ଆସୁଛି । ଏହି ବେଶ ହିଁ ଦିନଚର୍ଯ୍ୟାର ଶେଷ ବେଶ। ରାତିରେ ଏହି ବେଶରେ ମହାପ୍ରଭୁଙ୍କୁ ସଜାଇ ଦିଆଯିବା ସହ ଗୀତଗୋବିନ୍ଦ ଖଣ୍ଡୁଆ ପାଟରେ ମହାପ୍ରଭୁଙ୍କ ଶରୀରକୁ ଆବରଣ କରାଯାଏ । ଗୀତଗୋବିନ୍ଦର କାନ୍ତକୋମଳ ପଦାବଳୀ ଦେବଦାସୀମାନେ ଗାନ କରିବା ସହ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସମ୍ମୁଖରେ ନୃତ୍ୟ ପରିବେଷଣ କରୁଥିଲେ । ଏବେ ଅବଶ୍ୟ ଗାନ ଓ ନୃତ୍ୟପ୍ରଥା ବନ୍ଦ ହୋଇଯାଇଛି ।

ଗୀତଗୋବିନ୍ଦ ଖଣ୍ଡୁଆ ପାଟ ପ୍ରଚଳନ ପରମ୍ପରା ହିଁ ସୂଚାଇ ଦେଉଛି ଯେ ଜୟଦେବ ମହାପ୍ରଭୁଙ୍କର ଶ୍ରେଷ୍ଠ ଭକ୍ତ ଥିଲେ ଓ ତାଙ୍କଦ୍ୱାରା ରଚିତ ଗୀତଗୋବିନ୍ଦ ତାଙ୍କର ଅତି ପ୍ରିୟ ସଂଗୀତ ରୂପେ ପରିଚିତ ।

ନୂଆଗାଁ, କୁଜଙ୍ଗ
ଜଗତସିଂହପୁର





# ମହାପ୍ରଭୁଙ୍କ ରଥକାଠ ଓ ଏହାର ଭବିଷ୍ୟତ

**ସ୍ୱପ୍ନେଶ୍ୱର ଗୋଛି**

ଏ କଥା ସମସ୍ତଙ୍କୁ ଜଣା ଯେ ମହାପ୍ରଭୁ ଭାଇ, ଭଉଣୀ ଓ ସୁଦର୍ଶନଙ୍କ ସହ ବର୍ଷରେ ଥରେ ନବଦିନାତ୍ମକ ରଥଯାତ୍ରାରେ ବାହାରନ୍ତି। ସବୁ ବର୍ଷ ନନ୍ଦିଘୋଷ, ତାଳଧ୍ୱଜ ଓ ଦର୍ପଦଳନ ରଥ ନୂଆକରି ଗଢ଼ା ହୁଅନ୍ତି। ନୂଆରଥରେ ଖଣ୍ଡିଏ ହେଲେ ପୁରୁଣା କାଠ ଲାଗି ହୁଏ ନାହିଁ । ନନ୍ଦିଘୋଷରେ ୮୩୨ ଖଣ୍ଡ, ତାଳଧ୍ୱଜରେ ୭୬୩ ଖଣ୍ଡ ଓ ଦର୍ପଦଳନରେ ୫୯୩ ଖଣ୍ଡ ଓ ସର୍ବମୋଟ୍ ୨୧୮୮ ଖଣ୍ଡ କାଠ ଲାଗେ । ଏହି ୨୧୮୮ ଖଣ୍ଡ କାଠ ପାଇବା ପାଇଁ ୧୧୩୯ ଖଣ୍ଡ ବିଭିନ୍ନ ପ୍ରକାର ଓ ମାପର କାଠଗଣ୍ଡି ଯୋଗାଇ ଦେବା ପାଇଁ ସରକାରଙ୍କର ବନ ବିଭାଗକୁ ନିର୍ଦ୍ଦେଶ ଅଛି । ସେଥିମଧ୍ୟରୁ ୮୬୨ ଖଣ୍ଡ ଫାଶୀ, ଧଉରା ଓ ଅସନ ପରି ଟାଣ କାଠ ଓ ବାକି ୨୭୭ ଖଣ୍ଡ ଶିମିଳି, ଦେବଦାରୁ, ପାଳଧୁଆ, କଅଂସ ଓ ମହାନିମ୍ବ ପରି ହାଲୁକା କାଠର ଗଣ୍ଡି ।



ରଥର ଚକ କେବଳ ଫାଶୀକାଠରେ ଗଢ଼ାଯାଏ। ଚକର ତୁମ୍ବ ଓ ପଇ ଗଢ଼ିବା ପାଇଁ ୭୨ ଖଣ୍ଡ ୬ ଫୁଟିଆ ଫାଶୀ ଗଣ୍ଡି ଆବଶ୍ୟକ ହୁଏ । ଅର ବା ଦାଣ୍ଡିଆ ଗଢ଼ିବା ପାଇଁ ୪୨୧ ଖଣ୍ଡ ୩ ଫୁଟିଆ କାଠଗଣ୍ଡି ଦରକାର ହୁଏ। ଆଜିକାଲି ଫାଶୀକାଠ ପର୍ଯ୍ୟାପ୍ତ ପରିମାଣରେ ମିଳୁ ନଥିବାରୁ କିଛି ଅସନ ବା ଧଉରା ଗଣ୍ଡି ଫାଶୀଗଣ୍ଡି ସହ ମିଶାଇ ଅର ଗଢ଼ା ଯାଉଛି। ରଥର ଅଖ ଓ ଦଣ୍ଡା କେବଳ ଧଉରା କାଠରେ ତିଆରି ହୁଏ । ଓଡ଼ିଶା, ପଶ୍ଚିମବଙ୍ଗ ଓ ଝାଡ଼ଖଣ୍ଡ ଅଞ୍ଚଳରେ ଶଗଡ଼ ଅଖ ପାଇଁ ଧଉରା କାଠ ଲୋକମାନଙ୍କର ପ୍ରଥମ ପସନ୍ଦ। ଅଖ ଓ ଦଣ୍ଡା ପାଇଁ ୫୦ ଖଣ୍ଡ ୩ ଫୁଟିଆ ଧଉରା ଗଣ୍ଡି ଲାଗେ। ରଥର ବାକି ଅଂଶ ୩୧୨ ଖଣ୍ଡ ୩ ଫୁଟିଆ ଫାଶୀ, ଧଉରା ବା ଅସନ କାଠଗଣ୍ଡିରେ ଗଢ଼ାଯାଏ । ୨୭୭ ଖଣ୍ଡ ହାଲୁକା କାଠର ଗଣ୍ଡି ପଟା ପାଇଁ ଦରକାର ପଡ଼େ। ସେଗୁଡ଼ିକର ଗୋଲେଇ ୩ ଫୁଟ୍‌ରୁ ୫ ଫୁଟ୍ ହେବା ଦରକାର। ଆଗେ କେବଳ ଶିମିଳି କାଠ ପଟା ପାଇଁ ବ୍ୟବହାର ହେଉଥିଲା । ଏବେ ଶିମିଳି କାଠ ଅଭାବ ଯୋଗୁଁ ଦେବଦାରୁ, କଅଂସ, ପାଳଧୁଆ ଓ ମହାନିମ୍ବ କାଠ ଯୋଗାଇ ଦିଆଯାଉଛି । ତା' ବାହାରେ ୬୦ ଖଣ୍ଡ କାଳଚୂଆ ତରୁଆ ରଥ ସଂପର୍କିତ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଯୋଗାଇ ଦିଆଯାଉଛି । ଏସବୁ କାଠ ପରମ୍ପରା ଅନୁସାରେ ଆଗେ ଦଶପଲ୍ଲା ରାଜା ଓ ଏବେ ନୟାଗଡ଼ ଡିଏଫ୍‌ଓ ଯୋଗାଇ ଆସୁଛନ୍ତି । ବର୍ତ୍ତମାନ ନୟାଗଡ ଓ ଖୋର୍ଦ୍ଧା ଡି.ଏଫ୍.ଓ ଠିକ୍ ସମୟରେ ଠିକ୍ ଗୁଣ, ମାନ ଓ ମାପର କାଠ ଦରକାର ମୁତାବକ ଯୋଗାଇ ଦେବା ପାଇଁ ମନ୍ଦିର ପ୍ରଶାସନ ପାଖରେ ପ୍ରତିଶ୍ରୁତିବଦ୍ଧ । ଅତୀତରେ ଯେତେବେଳେ ଯାନବାହନର ପ୍ରଚଳନ ନଥିଲା, ରଥକାଠ ମହାନଦୀ ଓ ତା'ର ଶାଖା



ନଦୀମାନଙ୍କରେ ଭାସି ଭାସି ପୁରୀରେ ପହଞ୍ଚୁ ଥିଲା । ସେଥିପାଇଁ ରଥକାଠରେ ତିନୋଟି ମୁଖ୍ୟ ଗୁଣ ରହିବା ଦରକାର ଥିଲା । ଏକ ବୃହଦାକାର ରଥ ନିର୍ମାଣ କରିବା ପାଇଁ ବ୍ୟବହୃତ ହେଉଥିବା କାଠ ଶକ୍ତ ହେବା ଦରକାର । ପାଣିରେ ଭାସି ଆସିବା ପାଇଁ ଏହା ଅପେକ୍ଷାକୃତ ହାଲୁକା ହେବା ଆବଶ୍ୟକ । ଦୂରରୁ କାଠ ଆଣି ନଦୀକୂଳରେ ପହଞ୍ଚାଇବା କଷ୍ଟସାଧ ହୋଇଥିବାରୁ ଏ ଗଛଗୁଡ଼ିକ ନଦୀକୂଳ ଜଙ୍ଗଲରେ ମିଳୁଥିବା ଦରକାର । ଫାଶୀ ଓ ଧଉରା ବେଶ୍ ଶକ୍ତ ଓ ଟାଣ କାଠ । ଧଉରା ଗଛ ଓଡ଼ିଶାର ସବୁ ଅଞ୍ଚଳରେ ମିଳେ । ଫାଶୀ ଗଛ କେବଳ ନଦୀ ଓ ବଡ଼ ନାଳ କୂଳରେ ମିଳେ । କଞ୍ଚା ଫାଶୀ ଓ ଧଉରା କାଠ ପାଣିରେ ଭାସେ । ଶିମିଳି କାଠ ହାଲୁକା ଓ ଜଙ୍ଗଲର ସବୁ ଅଞ୍ଚଳରେ ମିଳେ । ଆଗେ ମହାନଦୀ କୂଳର ଦଶପଲ୍ଲା ଜଙ୍ଗଲରୁ ଏ କାଠ କାଟି ସେଥିରେ ସିନ୍ଦୂର ଲଗେଇ ହରିବୋଲ ହୁଳହୁଳି ସଂକୀର୍ତ୍ତନ ସହ ନଦୀରେ ଭସେଇ ଦିଆଯାଉଥିଲା । କାଠ ଭାସିଗଲାବେଳେ କୂଳରେ ଲାଗିଗଲେ, ପାଖ ଗାଆଁଲୋକେ ସିନ୍ଦୂରରୁ ଜଗନ୍ନାଥଙ୍କ କାଠ ଚିହ୍ନି ଶୁଦ୍ଧପୂତ ଭାବରେ ଖୋଳ କୀର୍ତ୍ତନ ହରିବୋଲ ହୁଳହୁଳି ସହ ପୁଣି ନଦୀରେ ଭସାଇ ଦେଉଥିଲେ । ନଦୀକୂଳିଆ ଗାଆଁ ଲୋକଙ୍କର ନଦୀରୁ କାଠ ସଂଗ୍ରହ କରିବା ଗୋଟେ ନିତିଦିନିଆ ସାଧାରଣ କାମ ହୋଇଥିଲେ ମଧ୍ୟ ସିନ୍ଦୂର ଲଗା ରଥକାଠକୁ ହଡ଼ପ କରିବାର ସାହସ କେହି କରୁ ନଥିଲେ ।

ଆଜିକାଲି ରଥକାଠ ଟ୍ରକ୍‌ରେ ବୁହା ହୋଇ ଆସୁଥିଲେ ମଧ୍ୟ ଏବଂ ଫାଶୀ ଓ ଧଉରା କାଠର ଅନେକ ବିକଳ୍ପ ଆମ ଜଙ୍ଗଲରେ ଉପଲବ୍ଧ ହେଉଥିଲେ ମଧ୍ୟ ପୁରୁଣା ପରମ୍ପରାକୁ ସମ୍ମାନ ଦେଇ ସେଇ ଫାଶୀ ଓ ଧଉରାରେ ରଥ ନିର୍ମାଣ ହୁଏ । ଅତୀତରେ ଜଙ୍ଗଲର ଆୟତନ ବେଶୀ ଥିଲା । ପ୍ରତି ଏକର ଜଙ୍ଗଲରୁ ଆଜିଠାରୁ ବହୁ ଗୁଣରେ ବେଶୀ ପରିମାଣର ଓ ମାନର କାଠ ମିଳୁଥିଲା । ତେଣୁ ରଥ କାଠ ଯୋଗାଇ ଦେବା ପାଇଁ ଆଗେ ଦଶପଲ୍ଲା ରାଜା ଓ ପରେ ନୟାଗଡ଼ ଡିଏଫ୍‌ଓଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁ ନଥିଲା । ପରେ କେବେ ଦରକାର ପଡୁଥିବା କାଠ ସଂଗ୍ରହ ଓ ଯୋଗାଣକୁ ସହଜ କରିବା ପାଇଁ ହାଲୁକା କାଠର ଯୋଗାଣ ଦାୟିତ୍ୱ ଖୋର୍ଦ୍ଧା ଡିଏଫ୍‌ଓଙ୍କ ଉପରେ ନ୍ୟସ୍ତ କରାଗଲା ।

ଏବେ ରଥକାଠ ଯୋଗାଣ ଜଙ୍ଗଲ ବିଭାଗର ମୁଣ୍ଡବ୍ୟଥାର ଏକ କାରଣ ହୋଇଛି । ଉପଯୁକ୍ତ ମାନ ଓ ମାପର କାଠ କାଳକ୍ରମେ ବିରଳ ହେବାକୁ ବସିଲାଣି । ତଥାପି ଏ ପର୍ଯ୍ୟନ୍ତ ସୁରୁଖୁରୁରେ କାଠ ଯୋଗାଣ ଚାଲିଛି । କିନ୍ତୁ ଆଉ ବର୍ଷ କେତେଟା ପରେ ନୟାଗଡ଼ ଓ ଖୋର୍ଦ୍ଧା ଡିଏଫ୍‌ଓ ରଥ କାଠ ଯୋଗାଇବାରେ ଅସମର୍ଥ ହେବେ । ତେଣୁ ଆଜିଠାରୁ ସେ ସମ୍ବନ୍ଧରେ ଚିନ୍ତା କରିବାର ଆବଶ୍ୟକତା ଅନୁଭବ କରି ଜଙ୍ଗଲ ବିଭାଗ ଜଗନ୍ନାଥ ବନ ପ୍ରକଳ୍ପ ଆରମ୍ଭ କରିଛନ୍ତି । ଫାଶୀ ଗଛ ସ୍ୱଚ୍ଛନ୍ଦରେ ବଢ଼ିବା ପାଇଁ ନଦୀକୂଳିଆ ବାଲିଆ ଦୋରସା ମାଟି ଦରକାର କରେ । ସେ ଗଛକୁ ପଥୁରିଆ, ମୋରମ, ଟାଣ, ଖଳି ମାଟିରେ ଲଗେଇଲେ, ସେ ଉଧେଇବ ନାହିଁ । ଦ୍ୱିତୀୟତଃ ସର୍ବସାଧାରଣ ଜାଗାରେ ଗାଈଗୋରୁ ଅହରହ ଚରୁ ଥିବାରୁ ଏ ପ୍ରକଳ୍ପ ସଫଳ ହୋଇପାରୁ ନାହିଁ ।

ଫାଶୀ ଓ ଧଉରା କାଠ ବିନା ରଥ ନିର୍ମାଣ କରିବା ଅସମ୍ଭବ । ଧଉରା ଗଛ ଓଡ଼ିଶାର ସବୁ ଜଙ୍ଗଲରେ ଦେଖାଯାଏ । ଫାଶୀ ଗଛ ଯେ କେବଳ ନୟାଗଡ଼ ଜଙ୍ଗଲରେ ଦେଖାଯାଏ, ସେ କଥା ନୁହେଁ । ସୁନ୍ଦରଗଡ଼ ଜିଲ୍ଲାର ବ୍ରାହ୍ମଣୀ ଓ ତା'ର ଉପନଦୀମାନଙ୍କର ଦୁଇ କୂଳରେ ଏ ଗଛ ବହୁ ପରିମାଣରେ ମିଳେ । କାଂଶବାହାଲ ସହର ନିକଟରେ କେବଳ ଫାଶୀ ଗଛର ଗୋଟେ ଛୋଟ ଜଙ୍ଗଲ ଥରେ ମୁଁ ତତ୍‌କାଳୀନ ପ୍ରଧାନ ମୁଖ୍ୟ ବନ ସଂରକ୍ଷକ ଶ୍ରୀଯୁକ୍ତ ଗୌରହରି ମିଶ୍ରଙ୍କୁ ଦେଖାଇଥିଲି ଓ ନୟାଗଡ଼ ଜଙ୍ଗଲକୁ କିଛି ବର୍ଷ ବିଶ୍ରାମ ଦେଇ ଓଡ଼ିଶାର ଅନ୍ୟ ଜଙ୍ଗଲରୁ ଫାଶୀ ଓ ଧଉରା କାଠ ସଂଗ୍ରହ କରି ଯୋଗାଇ ଦେବାକୁ ଅନୁରୋଧ କରିଥିଲି । ମହାନଦୀ କୂଳେ କୂଳେ ବୌଦ୍ଧ, ସୋନପୁର, ଅନୁଗୋଳ ଓ ଆଠମଲ୍ଲିକ ଇଲାକାରେ ଏ ଗଛ ଅନେକ ପରିମାଣରେ ଦେଖାଯାଏ । ତେଲ ନଦୀର ଦୁଇ କୂଳରେ ଏ ଗଛ ମିଳେ ବୋଲି ମୋର ଜଙ୍ଗଲ ଅଧିକାରୀ



ବନ୍ଧୁମାନଙ୍କ ଠାରୁ ଶୁଣିଛି । ତେଣୁ ବର୍ତ୍ତମାନ ପାଇଁ ନୟାଗଡ଼କୁ ଛାଡ଼ି ଉପରୋକ୍ତ ଅଞ୍ଚଳର ଜଙ୍ଗଲରୁ ଏ କାଠ ସଂଗ୍ରହ ପାଇଁ ନିଷ୍ପତ୍ତି ନିଆଯିବା ଉଚିତ୍ ।

ଉପରୋକ୍ତ ଅଞ୍ଚଳରେ ଅନେକ ଲୋକଙ୍କ ଘରବାଡ଼ି, ଚାଷଜମି, ତୋଟା ତଇଲାରେ ଫାଶୀ ଗଛ ବଢ଼ି ଠିଆ ହୋଇଛି । ଜଗନ୍ନାଥଙ୍କ ରଥ ପାଇଁ କାଠ ଯୋଗାଇ ଦେବା ପାଇଁ ସେମାନେ ନିଜର ପରମ ସୌଭାଗ୍ୟ ମଣିବେ । ରଥ କାଠ ଯୋଗାଇ ଦେବା ପାଇଁ ଇଚ୍ଛୁକ ଲୋକ ଅନ୍ଦାଜରେ ଗଛର ଉଚ୍ଚତା ଓ ଛାତିଏ ଉଚ୍ଚରେ ଗଛର ଗୋଲେଇ ମାପି ନିକଟସ୍ଥ ରେଞ୍ଜ ଅଫିସ୍‌ରେ ଜଣାନ୍ତୁ ବୋଲି ଗଜପତି ମହାରାଜା ଅନୁରୋଧ କଲେ ହଜାର ହଜାର ସଂଖ୍ୟାରେ କାଠ ଦାନ ଆକାରରେ ମିଳିବ । ମାପ ଓ ମାନ ପରୀକ୍ଷା କରି ଜଙ୍ଗଲ ବିଭାଗ ଏ କାଠ ଯୋଗାଇ ଦେଇ ପାରିବେ ।

ଭବିଷ୍ୟତରେ କାଠ ଯେପରି ନିରବଚ୍ଛିନ୍ନ ଭାବେ ମିଳିପାରିବ, ସେଥିପାଇଁ ଚିନ୍ତା କରିବା ଦରକାର । ଆଗପରି ଆଜି ମଧ୍ୟ ସବୁ ଜଙ୍ଗଲରେ ମଞ୍ଜି ପଡ଼ି ଫାଶୀ ଓ ଧଉରା ଗଛ ଉଠୁଛି । କିନ୍ତୁ ସେଗୁଡ଼ିକ ଛାତିଏ ଉଚ୍ଚରେ ୪୦ ସେ.ମି. ଗୋଲେଇ ହୋଇଗଲେ ପାଖ ଗାଆଁର ଲୋକ ନିଜର ଚାହିଦା ମେଣ୍ଟାଇବା ପାଇଁ ସେ ଗଛକୁ କାଟି ନେଇ ଯାଉଛନ୍ତି । ଘର ମରାମତି, ଲଙ୍ଗଳ, ଈଷ, ଶଗଡ଼ ଦଣ୍ଡା, ଫସଲରେ ବାଡ଼ ଦେବା, ଏପରିକି ଜାଳ ପାଇଁ ସେ ଗଛ ସବୁ କାଟି ନେଉଛନ୍ତି । ତେଣୁ ନୟାଗଡ଼, ଖୋର୍ଦ୍ଧା, ସୋନପୁର, ଆଠମଲ୍ଲିକ, ଅନୁଗୋଳ ଓ ଆଠଗଡ଼ ଜଙ୍ଗଲରେ ଫାଶୀ ଧଉରା, ଅସନ, ଶିମିଳି ଗଛର ଗୋଲେଇ ଛାତିଏ ଉଚ୍ଚର ୪୦ ସେ.ମି. ହୋଇଗଲେ, ସେ ଗଛ ଜଗନ୍ନାଥଙ୍କ ପାଇଁ ଉତ୍ସର୍ଗୀକୃତ ବୋଲି ଗଛରେ ଛାତିଏ ଉଚ୍ଚର ନାଲି ରଙ୍ଗର ବ୍ୟାଣ୍ଡ୍ ଲଗାଇ ଦେବାକୁ ହେବ । ନାଲି ବ୍ୟାଣ୍ଡ୍ ଚିହ୍ନିତ ଗଛ ରଥ ପାଇଁ ଉତ୍ସର୍ଗ କରାଯାଇଛି ବୋଲି ମନ୍ଦିର ପ୍ରଶାସନ ଆଖପାଖ ଅଞ୍ଚଳରେ ପ୍ରଚାର କରିଦେବେ । ଗାଁ ଗହଳର ଜଗନ୍ନାଥ ପ୍ରେମୀ ଲୋକ ଏ ଗଛକୁ କାଟିବା ତ ଦୂରର କଥା, ଏପରି ଗଛଟିଏ ଦେଖିଲେ ପାଖକୁ ଆସି ମୁଣ୍ଡିଆ ମାରିବେ । ବହୁ ଅତୀତରେ ନଦୀ ସୁଅରେ ଭାସିଗଲାବେଳେ ରଥ କାଠକୁ ସିନ୍ଦୂର ଚିହ୍ନରୁ ଚିହ୍ନି ହଡ଼ପ କରିବାର ସାହସ କେହି କରୁନଥିଲେ । ଥରେ ଠାକୁରଙ୍କୁ ଉତ୍ସର୍ଗ ହୋଇଗଲେ, ଦାରୁ ପ୍ରସାଦ ନିଜେ ନିଜକୁ ରକ୍ଷା କରିବେ ।

ଏହି ପ୍ରକାରେ ଚିହ୍ନିତ ଗଛମାନଙ୍କର ତାଲିକା କ୍ରମିକ ସଂଖ୍ୟା ସହ ମାପ ଲେଖି ନିକଟସ୍ଥ ରେଞ୍ଜ ଅଫିସ୍ ଓ ଡିଭିଜନ ଅଫିସ୍‌ରେ ରହିବ । ପ୍ରତିବର୍ଷ ୪୦ ସେ.ମି. ଗୋଲେଇର ନୂଆ ଗଛ ସନ୍ଧାନ କରି ତାକୁ ସେହିପରି ଚିହ୍ନିତ କରି ତାଲିକାଭୁକ୍ତ କରିବେ । ସେତେବେଳେ ଆଗରୁ ଚିହ୍ନିତ ଗଛର ମାପ ନେଇ ତାଲିକା ସଂଶୋଧନ କରିବେ । ଗଛଗୁଡ଼ିକ ରଥ କାଠ ଯୋଗ୍ୟ ହେଲେ ଚାଲାଣ କରି ତାଲିକାରୁ ବାଦ୍ ଦେବେ ।

ଏଠି ଗୋଟେ କଥା ଲକ୍ଷ୍ୟ କରିବାର କଥା ଯେ ଗଛର ତୁମ୍ବ ଓ ପଇ ନିର୍ମାଣ ପାଇଁ ୬ ଫୁଟିଆ ୭୨ ଖଣ୍ଡ ଫାଶୀଗଣ୍ଡି ଦରକାର । ଫାଶୀକାଠ ଗଣ୍ଡି ୬ ଫୁଟ୍ ହେବା ପାଇଁ ଶତାଧିକ ବର୍ଷ ଲାଗେ । ତେଣୁ ୬ ଫୁଟିଆ ଫାଶୀ ଗଛ କିଛି ବର୍ଷ ପରେ ନୟାଗଡ଼ ଜଙ୍ଗଲରେ ମିଳିବ ନାହିଁ । ଏହି ମାପର ଗଛ ଓଡ଼ିଶା ଜଙ୍ଗଲରେ ଯେଉଁ ଜଙ୍ଗଲ ବା ଘରୋଇ ଜମିରେ ଅଛି, ତା'ର ଏକ ତାଲିକା ପ୍ରସ୍ତୁତ କରି ରଖାଯିବା ଦରକାର । ସେସବୁ ଗଛକୁ ନାଲି ବ୍ୟାଣ୍ଡରେ ଚିହ୍ନିତ କରି ରଥ କାଠ ପାଇଁ ରହିଲା ବୋଲି ପ୍ରଚାର କରାଯିବା ଦରକାର । ନୟାଗଡ଼ ଜଙ୍ଗଲରେ ସେ କାଠ ନ ମିଳିଲେ ଅନ୍ୟ ଜାଗାରୁ ସେ କାଠ ଆଣି ପାରିବା ଅବସ୍ଥାରେ ଆମେ ରହିବା ଦରକାର । ଏସବୁ ଅଞ୍ଚଳରେ ଏ ଗଛ ୫ ଫୁଟ୍‌ରୁ ଊର୍ଦ୍ଧ୍ୱ ହୋଇଗଲେ, ସେଗୁଡ଼ିକ ମଧ୍ୟ ଚିହ୍ନିତ କରି ୬ ଫୁଟିଆ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ସେସବୁ ଗଛକୁ ତିନି ଫୁଟିଆ କାଠ ଜାଗାରେ ଯୋଗାଇ ଦେବା ଠିକ୍ ନୁହେଁ ।

ଅଖ ଓ ଦଣ୍ଡ ପାଇଁ ଦରକାର ହେଉଥିବା ୭୨ ଖଣ୍ଡ କାଠକୁ ଛାଡ଼ିଦେଲେ ବାକି ଦରକାର ହେଉଥିବା ଟାଣ କାଠର



ଚାହିଦା ଫାଶୀ ପୂରଣ କରିପାରିବ । ଉପକୂଳ ଅଞ୍ଚଳର ମାଟି ବାଲିଆ ଦୋରସା ହୋଇଥିବାରୁ ସେ ଅଞ୍ଚଳରେ ଫାଶୀ ଗଛ ସ୍ୱଚ୍ଛନ୍ଦରେ ବଢ଼ିପାରିବ। ଗଛ ରଥ କାଠ ଯୋଗ୍ୟ ହେଲେ ଉପକୂଳ ଅଞ୍ଚଳରୁ ସହଜରେ ପୁରୀକୁ ବୋହି ନେଇ ହେବ। ପୁରୀ, କଟକ, ଜଗତସିଂହପୁର, ଯାଜପୁର, କେନ୍ଦ୍ରାପଡ଼ା, ଭଦ୍ରକ ଓ ବାଲେଶ୍ୱର ଜିଲ୍ଲାରେ ରଥକାଠ ପାଇଁ ଫାଶୀ ଗଛର ଚାରା ଲୋକଙ୍କୁ ଦେଲେ ସେମାନେ ଆନନ୍ଦରେ ବାଡ଼ି କଡ଼ରେ, ଖଳା ଚାରିପଟେ ଏହାକୁ ଲଗେଇ ବଢ଼େଇବାକୁ ପୁଣ୍ୟ ମନେ କରିବେ। ଓଡ଼ିଶାର ସାମାଜିକ ବନ ପ୍ରକଳ୍ପର ଅନୁଭୂତିରୁ ମୁଁ ଦୃଢ଼ତାର ସହ କହିପାରେ ଯେ ଏ ପ୍ରକାର ବୃକ୍ଷରୋପଣ କାର୍ଯ୍ୟକ୍ରମ ଅନ୍ୟସବୁ ବୃକ୍ଷରୋପଣ କାର୍ଯ୍ୟକ୍ରମଠାରୁ ଅନେକ ଗୁଣରେ ଶସ୍ତା ଓ ସଫଳ କାର୍ଯ୍ୟକ୍ରମ ଥିଲା । ଅଧିକନ୍ତୁ ଏ କାର୍ଯ୍ୟକ୍ରମ ଆରମ୍ଭରୁ ମହାପ୍ରଭୁଙ୍କ ନାମରେ ହେଲେ ସଫଳତାହାର ବହୁ ଗୁଣରେ ବଢ଼ିଯିବ ।

ଏବେ ପଟା ପାଇଁ ଦେବଦାରୁ, କଦମ୍ବ, ମହାନିମ୍ବ, ପାଳଧୁଆ ଓ କଅଁସ କାଠ ବ୍ୟବହାର କରାଯାଉଛି। ଦେବଦାରୁ ବାଲୁଗାଁର ବରବେରା ଜଙ୍ଗଲରେ ମହାଦ୍ରୁମ ଆକାରରେ ଦେଖାଯାଏ । ପଥପାର୍ଶ୍ୱ ବୃକ୍ଷରୋପଣ କାର୍ଯ୍ୟକ୍ରମରେ କଦମ୍ବ ଓ ମହାନିମ୍ବର ଆଦର ବେଶୀ । ଏ ପ୍ରକାର କାର୍ଯ୍ୟକ୍ରମରେ ଦେବଦାରୁ ଓ ପାଳଧୁଆ ମଧ୍ୟ ଲଗାଯାଇପାରିବ । ଏହି କାର୍ଯ୍ୟକ୍ରମରେ ଲଗାଯାଉଥିବା ଗଛର ସିଂହଭାଗ ରଥ କାଠ ଗଛ ରଖିବା ପାଇଁ ବନ ବିଭାଗ ବା କାର୍ଯ୍ୟକ୍ରମ ହାତକୁ ନେଇଥିବା ଯେକୌଣସି ସଂସ୍ଥାକୁ ଅନୁରୋଧ କରାଯାଇପାରେ ବା ସରକାରୀ ନିର୍ଦ୍ଦେଶନାମା ପଠାଯାଇପାରେ ।

ଚାରା କରି ବଣ୍ଟନ କରିବା କାର୍ଯ୍ୟକ୍ରମ ପାଇଁ ଗୋଟିଏ ବର୍ଷ ଗୋଟିଏ ଜିଲ୍ଲାକୁ ନିଆଯାଇପାରେ। ଉଦାହରଣ ସ୍ୱରୂପ ପ୍ରଥମ ବର୍ଷ ପୁରୀ ଡିଏଫ୍‌ଓ ରଥକାଠ ଲଗେଇବା ପାଇଁ ଇଚ୍ଛୁକ ବ୍ୟକ୍ତିଙ୍କଠାରୁ ଦରଖାସ୍ତ ଆହ୍ୱାନ କରି ସେମାନଙ୍କୁ ଚାରା ଯୋଗାଇ ଦେବେ। ଚାରା ଲଗେଇଥିବା ଲୋକର ଠିକଣା ଓ ଚାରାର ବିବରଣୀ ଲେଖି ତା'ର ତାଲିକା ରଖିବେ। ଅତି କମ୍‌ରେ ବର୍ଷକୁ ଥରେ ଜଣେ ବନ ବିଭାଗ କର୍ମଚାରୀ ଏ ଗଛ ପରିଦର୍ଶନ କରି ରେଜିଷ୍ଟରରେ ତାଙ୍କର ମନ୍ତବ୍ୟ ଲେଖି ରଖିବେ। ଦ୍ୱିତୀୟ ବର୍ଷ ଆଉ ଏକ ଜିଲ୍ଲାରେ ସେ କାର୍ଯ୍ୟକ୍ରମ କରାଯିବ । ସବୁ ଜିଲ୍ଲାରେ ଥରେ ଏ କାର୍ଯ୍ୟକ୍ରମ ହେଲା ପରେ ଦଶମ ବର୍ଷ ପୁଣି ପୁରୀ ଜିଲ୍ଲାକୁ ଫେରିବେ। ଗୋଟିଏ ଜିଲ୍ଲାରେ ବର୍ଷକୁ ୫୦ ହଜାର ଚାରା ରୋପଣ କରାଯିବ। ଚାରା ପିଛା ବର୍ତ୍ତମାନ ହାରରେ ୩ ଟଙ୍କା କରି ଦେଢ଼ ଲକ୍ଷ ଟଙ୍କା ମନ୍ଦିର ପ୍ରଶାସନ ବହନ କରିବେ। ରଥ ନିର୍ମାଣ ପାଇଁ ଯେତେ ସଂଖ୍ୟକ ଫାଶୀକାଠ ଦରକାର, ତା'ର ପ୍ରାୟ ଅଧା ସଂଖ୍ୟକ ହାଲୁକା କାଠର ଗଣ୍ଡି ଦରକାର ହୁଏ । ତେଣୁ ୫୦ ହଜାର ଚାରାରୁ ୩୫ ହଜାର ଫାଶୀ ଓ ୧୫ ହଜାର ଦେବଦାରୁ, ମହାନିମ୍ବ, କଦମ୍ବ ଗଛର ଚାରା ପ୍ରସ୍ତୁତ କରି ବଣ୍ଟାଯିବା ଉଚିତ୍ ।

ଏ କାର୍ଯ୍ୟକ୍ରମରେ ସଫଳତା ହାର ଶତକଡ଼ା ଦଶରୁ ଅଧିକ ହେବ। ଅତି କମ୍‌ରେ ଶତକଡ଼ା ଦଶ ହେଲେ, ଚାଳିଶ ବର୍ଷ ପରେ ବର୍ଷକୁ ୫ ହଜାର ଗଛ ଉପଲବ୍ଧ ହେବ ଓ ଏହା ଚାରି ବର୍ଷର ରଥକାଠ ଚାହିଦା ପୂରଣ କରିବ। ରଥକାଠର ଚାହିଦା ପୂରଣ କରିବା ସଂଗେ ସଂଗେ ପରିବେଶର ସନ୍ତୁଳନ ରକ୍ଷା କରିବାରେ ଏ କାର୍ଯ୍ୟକ୍ରମ ସହାୟକ ହୋଇପାରିବ ।

ଅବସରପ୍ରାପ୍ତ ଭାରତୀୟ ବନ ସେବା
ଏସ୍-୯୭, ମୈତ୍ରୀ ବିହାର, ଭୁବନେଶ୍ୱର
ପିନ୍- ୭୫୧୦୨୩





# ମାନବୀୟ ଚେତନାରେ ଭକ୍ତି ରସ

**ଶାଶ୍ୱତୀ ସୌମ୍ୟା ମିଶ୍ର**

ଭକ୍ତିରେ ଭଗବାନଙ୍କର ସ୍ଥିତି ଅନନ୍ତକାଳ ପାଇଁ । ସେ କୌଣସି କାଳର ପରିଧି ମଧ୍ୟରେ ସୀମିତ ନୁହନ୍ତି । କୌଣସି ନିର୍ଦ୍ଦିଷ୍ଟ ଗୁଣର ଅଠାକାଠିରେ ଲାଖି ରହିବା ପରି ପକ୍ଷୀଟିଏ ନୁହନ୍ତି । ଅପର କି ପର କେହି ତାଙ୍କୁ ଠାବ କରିପାରେନା । ଏଣୁ ତ ସେ ପୁରୁଷ ଶ୍ରେଷ୍ଠ, ପୁରୁଷୋତ୍ତମ । ସଂସାରର ମଙ୍ଗଳ ପାଇଁ ସେ ଉଦାରତାର ନିଚ୍ଛକ ପ୍ରତିଛବିଟିଏ ତ କେବେକେବେ ଦରଦୀ ବନ୍ଧୁର ମଧୁର ଆସ୍ୱାଦନଟିଏ । ଭକ୍ତି ଭାବରେ ବନ୍ଧା ହୋଇଥିବା ସଖାଟିଏ ତ ପୁଣି ବୋଲକରା ଦାସଟିଏ । କେତେବେଳେ ବିଦୂରର ଶାଗଭଜା ତ କେବେ ସୁଦାମାର ଖୁଦ ଭଜା ଅଥବା ଶବରୀର ଅଇଁଠା ଫଳ ବାନ୍ଧି ରଖେ ତାଙ୍କୁ ଚିରଦିନ ପାଇଁ ଜନମାନସରେ ପୁରାଣ ପୃଷ୍ଠା ମାଧ୍ୟମରେ ।

ଭକ୍ତ ଏବଂ ଭଗବାନଙ୍କର ଅନାବିଳ ସମ୍ପର୍କର ମୂକସାକ୍ଷୀ ପାଲଟିଛନ୍ତି କେତେ ଯେ ଯୁଗ ତା'ର କଳନା କରିବା ନିହାତି ଭାବେ ଅସମ୍ଭବ । ଯୁଗ ଯୁଗ ଧରି ଭକ୍ତିର ନାଆକୁ ଅବିରତ ବାହି ଚାଲିଛନ୍ତି ନାବିକଟିଏ ହୋଇ ସେହି ପରମପୁରୁଷ ।

ବିଦ୍ୟାପତି ନୀଳାଦ୍ରିନାଥ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନ ପାଇ ମଧ୍ୟ କେବଳ ତାଙ୍କ ନାମ, ରୂପ, ଗୁଣ, ଯଶ ଏବଂ ଲୀଳାକୁ ଚିନ୍ତନ କରି ବାନ୍ଧି ଦେଇଛନ୍ତି ନିଜ ମନ ଏବଂ ଆତ୍ମାକୁ ସେହି ଆଧାତ୍ମିକ ବନ୍ଧନରେ । ସମଗ୍ର ଶରୀର ତାଙ୍କର ଭଗବଦ୍ ପ୍ରେମରେ ଉତ୍‌ଫୁଲ୍ଲିତ । ହୃଦୟର ପ୍ରତ୍ୟେକ କୋଣ ଅନୁକୋଣ ପ୍ରେମାଶ୍ରୁରେ ପରିମାର୍ଜିତ । କୁହାଯାଏ, ଯେତେବେଳେ ଭକ୍ତ ଭଗବାନଙ୍କର ଶରଣାଗତ ହୁଏ । ସେତେବେଳେ ତା'ର ସମସ୍ତ ଧାର୍ମିକ କ୍ରିୟା ସୁଚାରରୂପେ ସମ୍ପନ୍ନ ହେଉଥିବାର ସେ ଅନୁଭବ କରେ । ଭଗବଦ୍ ପ୍ରେମୀଟିଏ ପ୍ରତ୍ୟେକ ମୁହୂର୍ତ୍ତରେ ଶୁଦ୍ଧ ମନରେ ପ୍ରଭୁଙ୍କ ଲୀଳା, ଗୁଣାଦି ଚିନ୍ତନ କରିଥାଏ । କାରଣ ଚିନ୍ତନ ସୁଦୃଢ ହେଲେ ବୌଦ୍ଧିକ, କାୟିକ ଓ ଐନ୍ଦ୍ରିୟିକ ଭାବ ଭକ୍ତିର ଉଦ୍ରେକ ସମ୍ଭବ ହୋଇଥାଏ । ମନରେ ଦୃଢତା ନ ଥାଇ କେବଳ ଲୋକ ଦେଖାଣିଆ ଭକ୍ତିରେ କ'ଣ ଭଗବଦ୍ ପ୍ରାପ୍ତି ସମ୍ଭବ ? ତେଣୁ ସତ୍ୟ ଯୁଗର ରାଜ ପୁରୋହିତ ବିଦ୍ୟାପତିଙ୍କ ଅମ୍ଳାନ ଆଦର୍ଶ ଅପ୍ରକାଶରେ ପ୍ରକାଶିତ ଏବଂ ପ୍ରକାଶରେ ଅପ୍ରକାଶିତ ସବୁ କାଳରେ ଏକାନ୍ତ କାମ୍ୟ । ଏହା ହିଁ ସନାତନ ଧର୍ମର ଚରମ ଲକ୍ଷ୍ୟ, ଯାହାକି ପରବର୍ତ୍ତୀ ମୁହୂର୍ତ୍ତରେ ଭାଗବତ ଧର୍ମରେ ରୂପାନ୍ତରିତ ହୋଇଛି ।

ଭକ୍ତି ଭାବର ଅଭିବୃଦ୍ଧି କେବଳ ଯେ ସତ୍ୟଯୁଗର, ତାହା ନୁହେଁ, କାରଣ ତ୍ରେତା ଯୁଗରେ ବିଭୀଷଣଙ୍କ ସତ୍ୟ ପ୍ରତି ପ୍ରତିବଦ୍ଧତା ଏକାନ୍ତ ସ୍ୱାଗତଯୋଗ୍ୟ । ରାମାୟଣର ସୁନ୍ଦରକାଣ୍ଡରେ ବର୍ଣ୍ଣିତ ଅଛି ଏକଦା ବିଭୀଷଣ ଜ୍ୟେଷ୍ଠ ଭ୍ରାତା ରାବଣର ଶୁଭ ମନାସି ନିବେଦନ କରିଥିଲେ ।

ଅର୍ଥାତ୍ ହେ ରାଜନ୍ ! ଆମ୍ଭେମାନେ ସମସ୍ତ ଧନରତ୍ନ, ସୁନ୍ଦର ଆଭୂଷଣ, ଦିବ୍ୟବସ୍ତୁ ଏବଂ ବିଚିତ୍ର ମଣି ମାଣିକ୍ୟ ଏବଂ ସ୍ୱୟଂ ଦେବୀ ସୀତାଙ୍କୁ ଶ୍ରୀରାମଙ୍କ ହସ୍ତରେ ଅର୍ପଣ କରି ଶୋକରହିତ ହୋଇଯିବା ଏବଂ ନିର୍ଭୟରେ କାଳାତିପାତ କରିବା, ଏହାଦ୍ୱାରା ଆମ୍ଭ କୁଳ ସମେତ ସମଗ୍ର ସଂସାରର କଲ୍ୟାଣ ହେବ । ମାତ୍ର ବିଭୀଷଣର ଏହି ଅପ୍ରିୟ ସତ୍ୟ ବଚନ ଶ୍ରବଣ କରି ଦଶାନନ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବିଭୀଷଣକୁ ପଦାଘାତ କରି ଲଙ୍କାରୁ ନିର୍ବାସିତ କଲା । ଅନନ୍ୟୋପାୟ ହୋଇ ଅତ୍ୟନ୍ତ



ଆନନ୍ଦ ଚିତ୍ତରେ ବିଭୀଷଣ ସମସ୍ତ ଆତ୍ମୀୟତାକୁ ତ୍ୟାଗ କରି ରଘୁନନ୍ଦନଙ୍କ ନିକଟକୁ ଅଗ୍ରସର ହେବାବେଳର ଚିନ୍ତାଧାରା ଅତ୍ୟନ୍ତ ସୁନ୍ଦର ଭାବରେ ରାମଚରିତ ମାନସର ସୁନ୍ଦର କାଣ୍ଡରେ ବର୍ଣ୍ଣିତ ହୋଇଅଛି ।

ଦେଖିହଉଁ ଜାଇ ଚରନ ଜଲ ଜାତା
ଅରୁନ ମୃଦୁଲ ସେଓ୍ୱକ ସୁଖଦାତା ।
ଯେ ପଦ ପରସି ତରୀ ରଷିନାରୀ
ଦଂଡକ କାନନ ପାଓ୍ୱନକାରୀ ।
ଯେ ପଦ ଜନକ ସୁତାଁ ଉର ଲାଏ
କପଟ କୁରଂଗ ସଂଗ ଧରି ଧାଏ ।
ହର ଉରସର ସରୋଜ ପଦ ଜେଈ
ଅହୋ ଭାଗ୍ୟ ମୈଂ ଦେଖି ହଉଁ ତେଇ ।
(ରାମଚରିତ ମାନସ ସୁନ୍ଦରକାଣ୍ଡ)

ଭାବୁଛନ୍ତି ବିଭୀଷଣ, ମୁଁ ଯାଇ ପ୍ରଭୁଙ୍କ ପାଦପଦ୍ମ ଦର୍ଶନ କରିବି, ଯେଉଁ ପାଦପଦ୍ମ ଅରୁଣ, ମୃଦୁଳ ଓ ସେବକଙ୍କୁ ସୁଖପ୍ରଦ । ଯେଉଁ ପାଦକୁ ସ୍ପର୍ଶ କରି ଗୌତମ ଋଷିଙ୍କ ପତ୍ନୀ ଅହଲ୍ୟା ମୁକ୍ତି ପାଇଲେ, ଯେଉଁ ପାଦ ଦଣ୍ଡକାରଣ୍ୟକୁ ପବିତ୍ର କରିଛି, ଯେଉଁ ପାଦକୁ ଜନକ ନନ୍ଦିନୀ ସୀତା ନିଜ ବକ୍ଷସ୍ଥଳରେ ଧାରଣ କରିଛନ୍ତି, ଯେଉଁ ପାଦ କପଟ କୁରଙ୍ଗର ଅନୁଧାବନ କଲା ଏବଂ ଯାହା ମହା ଶିବଙ୍କ ଉର ସ୍ଥଳ ରୂପକ ପୁଷ୍କରିଣୀର କମଳ, ଅହୋ ଭାଗ୍ୟ ! ମୁଁ ଆଜି ସେଇ ପଦଦ୍ୱୟ ଦର୍ଶନ କରିବି, ଏକଥା ଚିନ୍ତା କରି ଶିହରିତ ହେଉଛନ୍ତି ବିଭୀଷଣ । ଉକ୍ତ ପଂକ୍ତିରୁ ସତ୍ୟଯୁଗର ବିଦ୍ୟାପତିଙ୍କ ଭାବଭକ୍ତି ଅଖଣ୍ଡିତ ହୋଇ ବିଭୀଷଣଙ୍କ ହୃଦୟରେ ସକ୍ରିୟ ହୋଇଥିବା ସ୍ପଷ୍ଟ ରୂପେ ପରିଲକ୍ଷିତ ହୋଇଅଛି ।

କେବଳ ଯେ ସତ୍ୟ ଏବଂ ତ୍ରେତାରେ ଭକ୍ତିଭାବର ଉଦ୍ରେକ ଏବଂ ଅଭିବୃଦ୍ଧି ତାହା ନୁହେଁ, ଦ୍ୱାପରରେ ମଧ ଏହା ମହାତ୍ମା ଅକ୍ରୁରଙ୍କ ପାବନ ଚରିତ୍ରରେ ଦୃଷ୍ଟିଗୋଚର ହୁଏ । ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧରେ ବର୍ଣ୍ଣିତ ଅଛି ଯେତେବେଳେ ମଥୁରାଧିପତି କଂସ ଧନୁର୍ଯଜ୍ଞ ଛଳରେ ରାମକୃଷ୍ଣଙ୍କୁ ଆଣିବା ପାଇଁ ଅକ୍ରୁରଙ୍କୁ ବୃନ୍ଦାବନ ପଠାଇଲା, ସେତେବେଳେ ଅକ୍ରୁର ଚିନ୍ତା କରୁଛନ୍ତି :

କିଂ ମୟାଚରିତଂ ଭଦ୍ରଂ କିଂ ତପ୍ତଂ ପରମଂ ତପଃ
କିଂ ବାଥାପ୍ୟର୍ହତେ ଦତ୍ତଂ ଯଦ୍ ଦ୍ରକ୍ଷ୍ୟାମ୍ୟଦ୍ୟ କେଶବମ୍ ।

(ଭାଗବତ)

ଅର୍ଥାତ୍, ମୁଁ କେଉଁ ସତ୍‌କର୍ମ କରିଛି, କେଉଁ ପରମ ତପସ୍ୟା କରିଛି, ଅଥବା ସତ୍‌ପାତ୍ରରେ କ'ଣ ବା ଦାନ କରିଛି ଯେ ଯାହାଦ୍ୱାରା କେଶବଙ୍କ ଦର୍ଶନ କରିବି ।

ପୁଣି ପୁରୁଷୋତ୍ତମଙ୍କ ପରମ କରୁଣା ଉପରେ ଆସ୍ଥା ରଖୁଛନ୍ତି ଅକ୍ରୁର । ମନେ ମନେ ଉଲ୍ଲସିତ ହେଉଛନ୍ତି ଏବଂ ଭାବୁଛନ୍ତି :

ମୈବଂ ମମାଧମସ୍ୟାପି ସ୍ୟାଦେବା ଚ୍ୟୁତ ଦର୍ଶନମ୍
ହ୍ରିୟମାଣଃ କାଳନଦ୍ୟା କ୍ୱଚିଭରତି କଶ୍ଚନ ।।

(ଭାଗବତ)

ଅର୍ଥାତ୍ ଏସବୁ ଅନାବଶ୍ୟକ ଚିନ୍ତାର କୌଣସି ଆବଶ୍ୟକତା ନାହିଁ । ମୁଁ ଅଧମ ହେଲେ ମଧ ଶ୍ରୀକୃଷ୍ଣଙ୍କୁ ଦର୍ଶନ ଯେ କରିପାରିବି ନାହିଁ ତାହା ନୁହେଁ କାରଣ ନଦୀସ୍ରୋତରେ ଭାସି ଯାଉଥିବା ଘାସକୁଟାଟିଏ ମଧ ବେଳେବେଳେ କୂଳରେ ଲାଗିଯାଇଥାଏ, ସେହିପରି କର୍ମବଶତଃ କାଳନଦୀ ଭସେଇ ନେଉଥିବା ଜୀବମାନଙ୍କ ମଧ୍ୟରୁ କଦାଚିତ୍ କେହି ଜଣେ ସଂସାର ସାଗର ଉତ୍ତୀର୍ଣ୍ଣ ହୋଇଥାଏ ।

ନିଜ ଚତୁଃପାର୍ଶ୍ୱର ଅନୁକୂଳ ପରିବେଶକୁ ଦେଖି ଅଧିକ ଆଶାବାଦୀ ହୋଇପଡୁଛନ୍ତି ଅକ୍ରୁର ।

ଅର୍ଥାତ୍ – ଭାବୁଛନ୍ତି ଅକ୍ରୁର ମୁଁ ନିଶ୍ଚୟ ଶ୍ରୀକୃଷ୍ଣଙ୍କ ମୁଖ ଦର୍ଶନ କରିବି, ଯେଉଁ ମୁଖ ସୁରମ୍ୟ କପାଳ ଏବଂ ସୁନ୍ଦର ନାସିକାଯୁକ୍ତ, ଦରହାସଯୁକ୍ତ ଦୃଷ୍ଟିପାତ ଏବଂ ରକ୍ତକମଳ ତୁଲ୍ୟ



ନୟନ ଦ୍ୱାରା ବିଭୂଷିତ ତଥା ସୁନ୍ଦର କେଶରାଜିରେ ଆଚ୍ଛାଦିତ । ଏସବୁକୁ ମୁଁ ନିଶ୍ଚିତ ଦର୍ଶନ କରିବି କାରଣ ମୃଗମାନେ ମୋ ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କରୁଛନ୍ତି ।

ଉପରୋକ୍ତ ବିଶ୍ଳେଷଣରୁ ସ୍ପଷ୍ଟ, ଭକ୍ତି ଭାବର ମୂଳପିଣ୍ଡ ହେଉଛି ବିଶ୍ୱାସ ଏବଂ ବିଶ୍ୱାସର ମୂଳଦୁଆ ଉପରେ ଏ ସମଗ୍ର ସୃଷ୍ଟି ଦଣ୍ଡାୟମାନ । ବିଶ୍ୱାସରୁ ଭକ୍ତି ଏବଂ ଭକ୍ତିରୁ ମୁକ୍ତି । କେବଳ ଯେ ଏହି ପୌରାଣିକ ଚରିତ୍ରମାନେ ଭକ୍ତିଭାବର ବଶବର୍ତ୍ତୀ ହୋଇଛନ୍ତି ତାହା ନୁହେଁ, ପୁରାତନ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ସବୁ କାଳରେ ଏହି ମହାନ୍ ଭକ୍ତମାନଙ୍କର ଅଭ୍ୟୁଦୟ ହୋଇଛି ଏବଂ ନିଜର ଅପାର ଭକ୍ତି ମାଧ୍ୟମରେ ସେମାନେ ମହାପୁରୁଷ ବୋଲାଇଛନ୍ତି । ସୁଦାମାଙ୍କଠାରୁ ଆରମ୍ଭ କରି ସାଲବେଗଙ୍କ ପର୍ଯ୍ୟନ୍ତ, ଚୈତନ୍ୟଙ୍କଠାରୁ ଆରମ୍ଭ କରି ଦାସିଆ ବାଉରୀ ପର୍ଯ୍ୟନ୍ତ ସମସ୍ତେ ଭକ୍ତିଭାବରେ ବଶୀଭୂତ ହୋଇ କୃଷ୍ଣ ପ୍ରେମର ବିରହ ଜ୍ୱାଳାରେ ଜର୍ଜରିତ ହୋଇଛନ୍ତି । କୁହାଯାଏ, ମହାପୁରୁଷମାନେ ସାଧାରଣତଃ ଦୁଇଟି ଭାବ ନେଇ ଭଗବାନଙ୍କ ସଚ୍ଚିଦାନନ୍ଦ ସ୍ୱରୂପକୁ ଉପଲବ୍ଧି କରିଥାଆନ୍ତି । ପ୍ରଥମଟି ବିରହ ଏବଂ ଦ୍ୱିତୀୟଟି ମିଳନ । ଯେଉଁଠି ବିରହ ନାହିଁ ସେଠି ମିଳନର କୌଣସି ଆନନ୍ଦ ନାହିଁ କାରଣ ବିରହ ସର୍ବଦା ଭଗବତ୍ ସତ୍ତାର ଉପଲବ୍ଧି କରାଇଥାଏ । ଯେଉଁଠାରେ ଭଗବତ୍ ସତ୍ତାର ସ୍ପର୍ଶ ଅଛି ସେ ମିଳନରେ ସ୍ୱର୍ଗୀୟ ସୁଖର ଆସ୍ୱାଦନ ଅଛି । ତେଣୁ ଭଗବାନ ଏବଂ ତାଙ୍କଦ୍ୱାରା ରଚିତ ସ୍ୱର୍ଗୀୟ ନନ୍ଦନକାନନରେ ଭକ୍ତି ରୂପକ ସୁବାସକୁ ସଞ୍ଚରିତ କରୁଥିବା ପାରିଜାତ ପୁଷ୍ପ ସଦୃଶ ମହାତ୍ମାମାନେ ସଦାକାଳେ ଚିର ନମସ୍ୟ ।

ଦରଖା ପାଟଣା, କଲ୍ୟାଣୀ ନଗର
କଟକ - ୧୩

# କଳା ଚିକ୍‌ଚିକ୍ ଚେହେରା

**ସଂଗ୍ରାମ କେଶରୀ ମହାନ୍ତି**

କଳା ଚିକ୍‌ଚିକ୍ ଚେହେରାକୁ ଚକାଆଖି ତୋର
ଲାଲ୍ ଟୁକ୍ ଟୁକ୍ ଓଠକୁ ଯେ ହସ ମନୋହର
ହାୟ ତୁଇ ଜୀବନ ଧନ ମୋର
ଆହା- ଗଳାର ମାଳି ମୋର
ତୋର ବିନାରେ ମୋର ଆକୁଳ ଅନ୍ତର ।

ଶଙ୍ଖବାଜେ ଘଣ୍ଟାବାଜେ ବାଜେ କରତାଳି
ହରିବୋଲ ହୁଳହୁଳି ପଡଇ ଉଚ୍ଛୁଳି
ରଥଯାଏ ଗଡିଗଡି ଚକ ଯାଏ ଗଡି
ଚାଲିଛୁ ତୁ ହଲିଝୁଲି ନନ୍ଦିଘୋଷ ଚଢି
ଯିବାର ଲାଗି ମାଉସୀର ଘର ହୋ ସାଆନ୍ତେ
ମନହୁଏ ତର ତର ତୋର ।



କେରି କେରି ପାଟସୂତା କାନ୍ଧରେ ପଇତା
ତୁଳସୀ ଦୟଣା ମାଳ ସୁବର୍ଣ୍ଣର ଚିତା
ଯତନେ ସାଜି ପିନ୍ଧିଛୁ ପାଟପୀତାମ୍ବର
ଗଳାରେ କୌସ୍ତୁଭମଣି କରେ ଝଲମଲ

ଦେଖିଦେଲେ ଉଲ୍ଲସେ ଅନ୍ତର ହୋ ସାଆନ୍ତେ
ତତେ ଛାଡି ଯିବିନି ମୁଁ ଘର ।

ଜେଲ୍‌ରୋଡ୍, ବାରିପଦା
ପୋ- ଭଞ୍ଜପୁର, ଜିଲ୍ଲା- ମୟୂରଭଞ୍ଜ





# ଶ୍ରୀଜଗନ୍ନାଥଙ୍କ ମହିମା ଅନନ୍ତ, କଥା ବି ଅନନ୍ତ

ଶିବ ପ୍ରସାଦ ତ୍ରିପାଠୀ

ଶ୍ରୀଜଗନ୍ନାଥାଷ୍ଟକମ୍‌ରେ ଆଦିଶଙ୍କର ଶ୍ରୀକ୍ଷେତ୍ରର ତିନି ଠାକୁରଙ୍କ ମହିମା ବର୍ଣ୍ଣନା ସହ ପ୍ରଣିପାତ ଜଣାଇଛନ୍ତି। ଏହି ଅଷ୍ଟପଦାବଳୀ ପରି ଯୁଗେ ଯୁଗେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନାରେ ବିଜ୍ଞ ପଣ୍ଡିତବର୍ଗ ଶତମୁଖର। ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ରକୁ ସ୍କନ୍ଦପୁରାଣ, ବାମଦେବ ସଂହିତା ଓ ସୁତପୁରାଣ ପ୍ରଭୃତିରେ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

ଆବହମାନ କାଳରୁ ଆମ ଦେଶ ଧର୍ମ, ସଂସ୍କୃତି ଓ ସଭ୍ୟତାର ମୂଳାଧାର ଭାବରେ ସ୍ୱୀକୃତ। ତା’ ମଧ୍ୟରେ ପୁଣ୍ୟତୋୟା ଉତ୍କଳ ଭୂମି ବା ଓଡ଼ିଶା ଜଗତର ନାଥଙ୍କ ଲୀଳାଭୂମି ଭାବରେ ଆର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ସମ୍ମିଳିତ ଏକ ଉଦାର ସ୍ୱରୂପର ଉଦ୍‌ଗାତା। କୋଟି କୋଟି ଜନତାର ଆଶା, ଆକାଂକ୍ଷା ଓ ଆସ୍ଥାର ପ୍ରତୀକ ମହାପ୍ରଭୁ ଶ୍ରୀଜଗନ୍ନାଥ।



ଦାରୁଦେବତା ଶ୍ରୀଜଗନ୍ନାଥ ଯୁଗେ ଯୁଗେ ଓଡ଼ିଶାବାସୀଙ୍କୁ ଆଶ୍ୱାସନା, ସାହସ, ଶକ୍ତି ଓ ଚେତନା ପ୍ରଦାନ କରିଆସିଛନ୍ତି। ମୁକ୍ତି ଓ ମୋକ୍ଷ ଦେଇଛନ୍ତି ଭକ୍ତମାନଙ୍କୁ । ଏଣୁ ଆମ ଶାସ୍ତ୍ର କହେ–

ଦୋଳେଷ୍ଟ ଦୋଳଗୋବିନ୍ଦ, ଚାପେଷ୍ଟ ମଧୁସୂଦନ
ରଥେତୁ ବାମନଂଦୃଷ୍ଟ୍ୱା, ପୁନର୍ଜନ୍ମ ନ ବିଦ୍ୟତେ।

ବୈଦିକ ଯୁଗରେ ଦ୍ରାବିଡ଼ମାନେ ମହୋଦଧିର ପୂର୍ବତଟରେ ଦାରୁ ଉପାସନା କରୁଥିଲେ। ଉତ୍କଳ ଭୂଖଣ୍ଡକୁ ଦୈତ୍ରଯାତ୍ରା କାଳରେ ବୈଦିକ ଯଜ୍ଞ ତଥା ଅନ୍ୟ କର୍ମକର୍ମାଣି ପରେ ବ୍ରହ୍ମାଙ୍କ ପଞ୍ଚମ ପୁରୁଷ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଯଜ୍ଞରେ ପୂଜାର୍ଚ୍ଚିତ ମହାଦାରୁକୁ ଚତୁର୍ଦ୍ଧାମୂର୍ତ୍ତିରେ ରୂପାନ୍ତର କରିଥିଲେ। ପୂର୍ବେ ଆର୍ଯ୍ୟମାନେ ବିଗ୍ରହ ଆରାଧନା ପ୍ରତି ଆଗ୍ରହୀ ବା ଆସକ୍ତ ହୋଇନଥିଲେ ମଧ୍ୟ କ୍ରମେ ଏହି ମହାଦାରୁକୁ ଅନନ୍ତ ବ୍ରହ୍ମାଣ୍ଡର ସ୍ୱରୂପ ବୋଲି ବିଶ୍ୱାସ କରିବାକୁ ଲାଗିଲେ ଏବଂ ରଜା ଇନ୍ଦ୍ରଦ୍ୟୁମ୍ନ ଦାରୁ ଉପାସନା ସ୍ଥଳରେ ପହଞ୍ଚିଥିଲେ ବୋଲି ଗବେଷକମାନେ ମତପ୍ରକାଶ କରିଛନ୍ତି। ତେଣୁ ସାତହଜାର ବର୍ଷ ପୂର୍ବରୁ ଚତୁର୍ଦ୍ଧାମୂରତି ବୈଦିକ ଦେବତା ରୂପରେ ମହିମା ମଣ୍ଡିତ। ନିର୍ଗୁଣ ଓ ସଗୁଣ ବ୍ରହ୍ମଙ୍କର ଏକାତ୍ମତାର ପ୍ରତୀକ ରୂପରେ ବିବେଚିତ ହେଲେ ଏହି ଦେବତା ।

ଶ୍ୱେତ ଶ୍ୱେତରୋପନିଷଦରେ ମଧ୍ୟ ଆର୍ଯ୍ୟଋଷିଗଣ ଦାରୁରେ ପରମ ପୁରୁଷର ପରିକଳ୍ପନା କରିଛନ୍ତି।

କୈବଲ୍ୟ ଉପନିଷଦରେ ମଧ୍ୟ ଦାରୁବ୍ରହ୍ମଙ୍କ ମୂର୍ତ୍ତିରୂପର ପରିକଳ୍ପନା ବର୍ଣ୍ଣିତ। ତେଣୁ ଏହା ସ୍ପଷ୍ଟ ଯେ ପୂର୍ବରୁ ଦ୍ରବିଡ଼ମାନଙ୍କ ଦ୍ୱାରା ସାଗରର ପୂର୍ବତଟରେ ଉପାସନା କରାଯାଉଥିବା ଦାରୁରୁ ଆର୍ଯ୍ୟମାନଙ୍କ ଦ୍ୱାରା ଅପାଣିପାଦ (ହସ୍ତପଦ ବିହୀନ) ବିଗ୍ରହ



ନିର୍ମାଣ କରାଯାଇ ଶ୍ରୀଜଗନ୍ନାଥ, ବଳଭଦ୍ର ସ୍ୱାମୀ ଓ ଭଗବତୀ ସୁଭଦ୍ରାଙ୍କର ଆରାଧନା କରାଗଲା । ମୂଳତଃ ଦ୍ରାବିଡ଼ ଦେବତା ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆର୍ଯ୍ୟ, ବୌଦ୍ଧ, ଜୈନ ଓ ଶିଖ୍ ଆଦି ଧର୍ମାବଲମ୍ବୀଙ୍କର ମଧ୍ୟ ଗ୍ରହଣୀୟ ଆରାଧ୍ୟ ଦେବତା ଭାବରେ ପୂଜିତ । ଏପରିକି ଦରିଆପାରି ଦେଶଗୁଡ଼ିକରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ଆରାଧନା ଆରମ୍ଭ ହେଲା । ଓଡ଼ିଶା ଭୂଖଣ୍ଡରେ ଭୌମ ରାଜତ୍ୱ କାଳରେ ତନ୍ତ୍ରର ମାହାତ୍ମ୍ୟ ବୃଦ୍ଧି ପାଇଥିଲା । ଏହି କାଳରେ ଶାକ୍ତ ତାନ୍ତ୍ରିକଗଣ ଶ୍ରୀକ୍ଷେତ୍ରକୁ ଏକ ତନ୍ତ୍ରପୀଠ ଭାବରେ ସ୍ୱୀକାର କରିଥିଲେ । ସେମାନେ ବଳଭଦ୍ରଙ୍କୁ ତାରା, ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ଓ ଜଗନ୍ନାଥଙ୍କୁ ଦକ୍ଷିଣକାଳୀ ଭାବରେ ବିବେଚନା କରିଥିଲେ । ତେଣୁ ଉଲ୍ଲେଖ ଅଛି–

ତାରାଯନ୍ତ୍ର ମହାଶେଷ ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମ ଚକ୍ରେ ଜଗନ୍ନାଥ ଦକ୍ଷିଣ କାଳିକା ସ୍ୱୟମ୍ ।

ବିଭିନ୍ନ ତନ୍ତ୍ରଶାସ୍ତ୍ରରେ ଓଡ଼ିଶା ତନ୍ତ୍ରସାଧନାର ଆଦିଭୂମି ଭାବରେ ବର୍ଣ୍ଣିତ । ସହରାଞ୍ଚଳ ସମେତ ପ୍ରତ୍ୟେକ ଗ୍ରାମାଞ୍ଚଳରେ ଗ୍ରାମଦେବତୀଙ୍କ ଆସ୍ଥାନ ରହିଛି । 'କାଳିକା ପୁରାଣ'ର ବର୍ଣ୍ଣନାନୁସାରେ ବିଶ୍ୱର ପ୍ରଧାନ ତନ୍ତ୍ର ପୀଠ ଉଡ୍ଡୀୟାନ ତନ୍ତ୍ରକ୍ଷେତ୍ର ଯାଜପୁରରେ ପ୍ରତିଷ୍ଠିତ । ଓଡ଼ିଶା ଶ୍ରେଷ୍ଠ ତନ୍ତ୍ରସାଧକମାନଙ୍କର ନିବାସସ୍ଥଳ । ଭୌମକର ବଂଶର ରାଜାମାନେ ଉଡ୍ଡୀୟାନ ପୀଠରେ ରାଜଧାନୀ ପ୍ରତିଷ୍ଠା ସମେତ ତନ୍ତ୍ର ଆରାଧନା କ୍ଷେତ୍ରରେ ବ୍ୟାପକ ବିକାଶ ସାଧନ କରିଥିଲେ । ଶାକ୍ତତନ୍ତ୍ରର ବିକାଶ ପ୍ରକ୍ରିୟାରେ ଶ୍ରୀମନ୍ଦିର ପରିସରରେ ମହାଭୈରବୀ ବିମଳାଙ୍କ ମନ୍ଦିର ପ୍ରତିଷ୍ଠା ଦ୍ୱାରା ପୁରୀ ଏକ ବିଶ୍ୱବିଦିତ ତନ୍ତ୍ର କ୍ଷେତ୍ରର ମାନ୍ୟତା ଲାଭ କରିଛି ତଥା ପୁରୀ ସହରର ବିଭିନ୍ନ ସ୍ଥାନରେ ହରଚଣ୍ଡୀ ବାସେଳୀ, ମଙ୍ଗଳା, ଶୀତଳା, ଚର୍ଚ୍ଚିକା, ଶ୍ୟାମାକାଳୀ, ଇନ୍ଦ୍ରାଣୀ ଏବଂ ସର୍ବୋପରି ରତ୍ନସିଂହାସନରେ ଜଗତରନାଥ ଶ୍ରୀଜଗନ୍ନାଥ ଏବଂ ବଳଭଦ୍ର ମହାପ୍ରଭୁଙ୍କ ସହ ଭଗବତୀ ସୁଭଦ୍ରାଙ୍କ ଆରାଧନା ଏହି ମତକୁ ବଳିଷ୍ଠ କରୁଛି ବୋଲି 'କରୁଣାମୟୀ ସମଲେଶ୍ୱରୀ' ପୁସ୍ତକରେ ଉଲ୍ଲେଖିତ ।

ଇତିହାସ କହେ, ଭୌମକର ଯୁଗରେ ଯବନ ଦୌରାତ୍ମ୍ୟଜନିତ କାରଣରୁ ଚତୁର୍ଦ୍ଧାମୂର୍ତ୍ତି ସୋନପୁର ଅଞ୍ଚଳରେ ୧୪୪ ବର୍ଷକାଳ ପାତାଳି ହୋଇ ରହିଲେ । ଅଧୁନା ଉକ୍ତ ସ୍ଥାନକୁ ପାତାଳି ଶ୍ରୀକ୍ଷେତ୍ର କୁହାଯାଉଛି । ନବମ ଶତାବ୍ଦୀର ପ୍ରାରମ୍ଭରେ ଆଦି ଶଙ୍କରାଚାର୍ଯ୍ୟ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଉଦ୍ଧାର କରି ପୁରୀକୁ ଆଣିଲେ ଓ ପ୍ରଥମ ଯଯାତିକେଶରୀଙ୍କ ଦ୍ୱାରା ନିର୍ମିତ ଭବ୍ୟ ମନ୍ଦିରରେ ପ୍ରତିଷ୍ଠା କଲେ । ଏହି ମନ୍ଦିର ହିଁ ଶ୍ରୀମନ୍ଦିର । କଥିତ ଅଛି, ଶ୍ରୀଜଗନ୍ନାଙ୍କଠାରେ ମହାବିଷ୍ଣୁତ୍ୱ ଆରୋପଣ କାମନାରେ ଆଦିଶଙ୍କରାଚାର୍ଯ୍ୟ ନେପାଳ ନରେଶ ଶଙ୍କରଦେବଙ୍କଠାରୁ ଜୀବନ୍ତ ଶାଳଗ୍ରାମ ଆଣି ଠାକୁରଙ୍କ ନାଭି କମଳରେ ସ୍ଥାପନ କଲେ । ପରବର୍ତ୍ତୀ କାଳରେ ଚୋଡ଼ଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀରେ ଶ୍ରୀମନ୍ଦିରର ଜୀର୍ଣ୍ଣସଂସ୍କାର କରାଇ ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରୀୟଦେବତା ଭାବରେ ଗ୍ରହଣ କଲେ । ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଉପାସନାରୁ ଜନ୍ମ ନେଇଥିବା ଜଗନ୍ନାଥ ସଂସ୍କୃତିର ଉଦ୍ଭବ ଘଟିଥିଲା । ପ୍ରାଗ୍ ବୈଦିକ ଯୁଗରୁ ଦିବ୍ୟ ନୀଳାଚଳରେ ଦାରୁ ଉପାସନାର ପ୍ରବହମାନ ଧାରା ସଂପର୍କରେ ଋଗ୍‌ବେଦରେ ଉଲ୍ଲିଖିତ ଥିବାରୁ ପ୍ରମାଣିତ ହୁଏ ଯେ ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ପ୍ରାଗ୍‌ବୈଦିକ ସଂସ୍କୃତି ବୋଲି 'ଶ୍ରୀଜଗନ୍ନାଥ ସଂସ୍କୃତି' ଗ୍ରନ୍ଥରେ ଗବେଷକ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର ମତବ୍ୟକ୍ତ କରିଛନ୍ତି ।

ବାଲ୍ମୀକି ରାମାୟଣର ଉତ୍ତରାକାଣ୍ଡର ଏକ ଶ୍ଳୋକରେ ରଘୁକୁଳ ତିଳକ ପ୍ରଭୁ ଶ୍ରୀରାମଚନ୍ଦ୍ର ରାକ୍ଷସରାଜ ବିଭୀଷଣଙ୍କୁ ଶ୍ରୀଜଗନ୍ନାଥଙ୍କୁ ଆରାଧନା କରିବା ନିମନ୍ତେ ପରାମର୍ଶ ଦେଉଥିଲେ ।

କିଂ ଚାନ୍ୟାତ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳଃ
ଆରାଧୟ ଜଗନ୍ନାଥ ମିକ୍ଷାକୁ କୁଳ ଦୈବତମ୍ ।

'ଜଗନ୍ନାଥ' ଶବ୍ଦ ଏହିଠାରେ ହିଁ ସର୍ବପ୍ରଥମ ଥର ପାଇଁ ବ୍ୟବହୃତ ହୋଇଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରିଛନ୍ତି । ଶ୍ରୀମନ୍ଦିରରେ ପ୍ରଚଳିତ ବିଭୀଷଣ ବନ୍ଦାପନା ନୀତି ଉପରୋକ୍ତ ଶ୍ଳୋକର ପ୍ରାମାଣିକତାକୁ ପ୍ରକଟ କରୁଛି । ପୁନଶ୍ଚ





ତିନିଠାକୁରଙ୍କ ଅଧିଷ୍ଠାନ ବା ବିଜେସ୍ଥାନ ରତ୍ନସିଂହାସନ ଉପରକୁ ଆରୋହଣ ନିମନ୍ତେ ସେବାୟତମାନଙ୍କ ବ୍ୟତୀତ କେବଳ ନେପାଳ ନରେଶଙ୍କ ଅଧିକାର ରହିଥିବାରୁ ଶଙ୍କରଦେବ ପ୍ରସଙ୍ଗ ମଧ୍ୟ ପ୍ରମାଣିତ ହେଉଛି ।

ପୁରୀ ଗୋବର୍ଦ୍ଧନ ପୀଠାଧୀଶ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଦଣ୍ଡଧାରଣ ସମୟରେ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟଦେବତା ଭାବରେ ସ୍ମରଣ କରନ୍ତି । ଶ୍ରୀମନ୍ଦିର ଭିତରକୁ ଦଣ୍ଡଧାରଣ କରି ପ୍ରବେଶ କରିବା ଓ ଗମ୍ଭୀରାରେ ଆସନାସୀନ ହୋଇ ଆରାଧନା କରିବା ନିମନ୍ତେ ସେ ଅଧିକାରପ୍ରାପ୍ତ । ଆଦି ଶଙ୍କରାଚାର୍ଯ୍ୟ ପୁରୀରେ ଚତୁର୍ଦ୍ଧାମ ମଧ୍ୟରୁ ଗୋଟିଏ ଧାମ ପୂର୍ବାମ୍ନାୟ ଗୋବର୍ଦ୍ଧନ ଧାମ ବା ଗୋବର୍ଦ୍ଧନ ମଠ ବା ଗୋବର୍ଦ୍ଧନ ପୀଠ ସ୍ଥାପନ କରିବା ପରେ ବିଭିନ୍ନ ସଂପ୍ରଦାୟର ବହୁ ସାଧୁସନ୍ଥ ଶ୍ରୀକ୍ଷେତ୍ରକୁ ଆସି ସର୍ବଧର୍ମ ଓ ସର୍ବମତ ସମନ୍ୱୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀଜଗନ୍ନାଥଙ୍କ ସେବାରେ ନିଜକୁ ନିୟୋଜିତ କରିଛନ୍ତି । ମହାଭାରତ ଯୁଗରେ ମଧ୍ୟ ଜଗନ୍ନାଥ ଧର୍ମ ଥିଲା ଭାରତର ରାଷ୍ଟ୍ରଧର୍ମ ।

ବେଦୋତ୍ତର ପୁରାଣ ସାହିତ୍ୟ ଯଥା ବ୍ରହ୍ମ ପୁରାଣ, ନାରଦ ପୁରାଣ, ମତ୍ସ୍ୟ ପୁରାଣ, ଗରୁଡ ପୁରାଣ, ପଦ୍ମ ପୁରାଣ ଓ ବିଷ୍ଣୁ ପୁରାଣ ଆଦିରେ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଏ ସମ୍ବନ୍ଧୀୟ ତଥ୍ୟମାନ ବର୍ଣ୍ଣିତ । ଅନେକେ ପ୍ରଶ୍ନ କରନ୍ତି ଯେ, ବିଷ୍ଣୁ ସହସ୍ର ନାମରେ ଶ୍ରୀଜଗନ୍ନାଥଙ୍କ ନାମୋଲ୍ଲେଖ କାହିଁକି ହୋଇନାହିଁ । ଶ୍ରୀଜଗନ୍ନାଥ ସ୍ୱୟଂ ମହାବିଷ୍ଣୁ ହୋଇଥିବାରୁ ବିଷ୍ଣୁ ସହସ୍ର ନାମରେ ତାଙ୍କ ନାମ ଉଲ୍ଲେଖ ନାହିଁ ବୋଲି ଭାଷ୍ୟକାରମାନେ ମତବ୍ୟକ୍ତ କରିଛନ୍ତି ।ପରବର୍ତ୍ତୀ କାଳରେ କ୍ରମେ ଓଡ଼ିଶାର ପୁରପଲ୍ଲୀ ସମେତ ଦେଶ ବିଦେଶର ବିଭିନ୍ନ ପ୍ରାନ୍ତରେ ଶ୍ରୀଜଗନ୍ନାଥଙ୍କ ଆରାଧନା ନିମନ୍ତେ ଛୋଟବଡ଼ ହଜାର ହଜାର ମନ୍ଦିର ପ୍ରତିଷ୍ଠିତ ହୋଇଛି । ବ୍ରହ୍ମଦେଶର ପ୍ରୋମ୍ ନଗରୀରେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ବହୁ ପ୍ରାଚୀନ ବୋଲି ଐତିହାସିକ ପ୍ରାମାଣିକତା ରହିଛି । ଅସୀମ ଆକାଶ ଓ ଅକଳନ ବାରାନିଧି ପରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା ଅନନ୍ତ, କଥା ବି ଅନନ୍ତ ।

ବଡ଼ବଜାର, ସମ୍ବଲପୁର–୩

# ବିଲୀନ

ଡକ୍ଟର ନିବେଦିତା ମହାନ୍ତି

ଏ ଆଖି ଦେଖିଛି ତୁମ ଚକାଆଖି
ଆଖିରେ ଭରିଛି ତୁମର ପ୍ରତୀକ୍ଷା
ହଜିଯାଇଛି ଏ ଆଖି ଦୁଇ ଯାହା
ଅମାନିଆ ଆଖି ପାଏ ନାହିଁ ରାହା ।

ଏ ଦୁଇ ହାତର ବ୍ୟାକୁଳିତ ଆଶା
ଛୁଇଁବାକୁ ତୁମ କଳା ବଦନ
ତୁମରି ପରଶ ଆତ୍ମାରେ ଭିଜି
ଲିଭିଯାଉ ଏ ମୋ ପ୍ରାଣ ସ୍ପନ୍ଦନ ।



ଥକା ପାଦ ଦୁଇ ଚାଲିଛି ଚାଲିଛି
ତୁମରି ଦୁଆରେ ଅଟକି ରହୁ
ତୁମ ନନ୍ଦିଘୋଷ ରଥର ପଛରେ
ମୁଠାଏ ଧୂଳି ସେ ପାଲଟି ଯାଉ ।

ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ
କିସ୍, କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରରେ ମହାବୀର ଉପାସନା

**କାଞ୍ଚି ନାରାୟଣ ମହାନ୍ତି**

ବିଶ୍ୱ ବ୍ରହ୍ମାଣ୍ଡର ନାୟକ ପୁଣି ଅନାଦି କାଳରୁ ସର୍ବ ଉପାସ୍ୟ ଦେବତା । ସେ ଅଜ୍ଞେୟ। କେତେ ମତ, କେତେ ତତ୍ତ୍ୱ, କେତେ ଧର୍ମ ଓ କେତେ ଦର୍ଶନ, କେତେ ଶରଣାଗତି, କେତେ ଆକ୍ରମଣ, କେତେ ବୈଚିତ୍ର୍ୟ କେତେ ଉପାସ୍ୟ ସବୁ ସମନ୍ୱୟର ଅଧୀଶ୍ୱର ! ତାର ପ୍ରତିଦିନ ଚାଲିଥାଏ ନୂଆ ଉଦ୍‌ବୋଧନ । ଯୁଗ ଯୁଗ ଅବତାର ଗ୍ରହଣ କରି ସଂସାରକୁ ବିପତ୍ତିରୁ ଉଦ୍ଧାର କରିଛ। ସଂକଟମୋଚନ କରିଛ। ସାଧୁସନ୍ଥମାନଙ୍କୁ ପରିତ୍ରାଣ କରିଛ। ଦୁଃଖୀର ଦୂରିତ ନାଶନ କରିଛ। ତୁମେ ନାରାୟଣ, ତୁମେ ରାମ, ତୁମେ ଶ୍ୟାମ ପୁଣି ପରଂବ୍ରହ୍ମ। କଳିଯୁଗର ଅଲୌକିକ ଲୀଳା ପ୍ରକଟ କରି ଦାରୁଦେବତା ପରିଗ୍ରହ କରିଛନ୍ତି ପରଂବ୍ରହ୍ମ ଭାବରେ ।

ପରମପୁରୁଷ ପୁରୁଷୋତ୍ତମ, ସର୍ବଧର୍ମ ସମନ୍ୱୟର ପ୍ରତୀକ ଦେବତା। ଭାବ, ଭକ୍ତି, ଉପଚାରରେ ଯାହାଙ୍କ ଉପାସନା। ଗୁଣାତୀତ, ତର୍କାତୀତ, ସର୍ବମୂଳାଧାର ସର୍ବବ୍ୟାପୀ, ସର୍ବମୟ, ସର୍ବ ନିୟନ୍ତା, ସର୍ବନାମ। ତାଙ୍କୁ ଯେ ଯେଉଁ ନାମରେ ଡ଼ାକିଛି ସେ ତା'ର ଅନ୍ତରର କଥା ବୁଝିଛନ୍ତି ।

ତାଙ୍କର ଶାଶ୍ୱତ ସଂସ୍କୃତିର ମହାସାଗରରେ ବିଲୀନ ହୋଇଯାଇଛି କେତେ ଧର୍ମ ଓ ବିଶ୍ୱାସ । ତମ ନିକଟରେ ସବୁ ତତ୍ତ୍ୱ ତୁଚ୍ଛ । କେବଳ ସ୍ୱଚ୍ଛ , ଶୁଦ୍ଧଚିତ୍ତ ଭକତ ହାତରୁ ତୋଳି ନିଅନ୍ତି ନୀଳକଇଁ, ଆମ୍ବ, ନଡ଼ିଆ, ଖୁଦଭଜା, କୋଳି । ସବୁଧର୍ମର ଉପାସକମାନେ ତୁମରିଠାରେ ଉପଲବ୍ଧି କରିଛନ୍ତି ସେମାନଙ୍କର ଉପାସ୍ୟ ଦେବତାଙ୍କୁ ।

ତମ ପାଇଁ ମନ୍ତ୍ରତନ୍ତ୍ରର ଆବଶ୍ୟକତା ନାହିଁ । ତମ ପାଖରେ ଜାତି ଅଜାତି ଭେଦଭାବ ନାହିଁ। ତମେ ଗଣଦେବତା ଜଗତଜୀବନ। ତମେ ଭକ୍ତ ବତ୍ସଳ, ସତେ ଯେମିତି ଭକ୍ତମାନଙ୍କୁ ବାହୁମେଲି କୋଳେଇ ନେବାକୁ ଉଦ୍‌ଗ୍ରୀବ ତମ ବିଶାଳ ହୃଦୟ। ଭକତ ମେଳିରେ ପ୍ରତିବର୍ଷ ତୁମେ ରତ୍ନ ସିଂହସନ ତ୍ୟାଗକରି ପାର୍ଶ୍ୱ ଦେବଦେବୀମାନଙ୍କୁ ଏପରି କି ମାଆ ଲକ୍ଷ୍ମୀଙ୍କୁ ଭୁଲି ଗୁଣ୍ଡିଚା ରାଣୀଙ୍କର କଥା ରକ୍ଷା କରି ଜନ୍ମବେଦିରୁ ଚାଲିଆସ । ଏଭଳି ମହାପ୍ରଭୁ ଚଳନ୍ତି ଠାକୁରଙ୍କର ରଥଯାତ୍ରା ପରମ୍ପରା ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ଶ୍ରୀମନ୍ଦିରରେ ଅବା ଶ୍ରୀକ୍ଷେତ୍ରରେ ପୂଜିତ ଯେତେ ଦେବଦେବୀ ସମସ୍ତ ପ୍ରଭୁଙ୍କର ଉପାସନା, ସେବା, ସଂସ୍କୃତି ସହିତ ବିବିଧ ଭାବରେ ଜଡ଼ିତ ହେତୁ ପ୍ରଭୁଙ୍କ ପରିପାର୍ଶ୍ୱ ଦେବଦେବୀଗଣ ମଧ୍ୟ ସମଭାବରେ ମହତ୍ତ୍ୱପୂର୍ଣ୍ଣ ଓ ଉପାସ୍ୟ। କେଉଁ ସ୍ମରଣାତୀତ କାଳରୁ ଶ୍ରୀମନ୍ଦିରରେ ମହାବୀର ହନୁମାନଙ୍କର ସେବା ପୂଜାର ବ୍ୟବସ୍ଥା ରହିଛି ।

ମହାପ୍ରଭୁଙ୍କ ସମ୍ପର୍କରେ ରଚିତ ଇନ୍ଦ୍ରମଣି ପୁରାଣରେ ଭଗବାନ ମହାବଳୀ ହନୁମାନଙ୍କର ଭକ୍ତିରେ ପ୍ରସନ୍ନ ହୋଇ ବର ପ୍ରଦାନ କରିଥିଲେ । ପୁରାଣ ବର୍ଣ୍ଣନା ଅନୁଯାୟୀ ପ୍ରଭୁ କହିଥିଲେ– ହେ କପିବର ! ତୁମ ସମର୍ପିତ ସେବା ଜଗତରେ ଶ୍ରେଷ୍ଠ ଓ କରଣୀୟ। ତୁମେ ଏ ଶ୍ରୀକ୍ଷେତ୍ର ପୁରୁଷୋତ୍ତମରେ ମୋର ପ୍ରିୟତମ ଭକ୍ତ ରୂପେ ରହିବା ପାଇଁ ସ୍ଥାନ ପାଇବ। ପ୍ରତି ଗୃହେ, ଗ୍ରାମେ, ନଗ୍ରେ ତୁମର ପୂଜା ଅନୁଷ୍ଠିତ ହେବ ଏବଂ ଏହି ପୁଣ୍ୟକ୍ଷେତ୍ରରେ ପ୍ରତି ଧ୍ୱଜାରେ କପି ଚିହ୍ନିତ ହୋଇ ଗଗନ ପବନକୁ ପବିତ୍ର କରିବ। ଶ୍ରୀଗୁଣ୍ଡିଚା ରଥଯାତ୍ରାରେ ପ୍ରଭୁଙ୍କର ଝୁଲଣଯାତ୍ରା ଚନ୍ଦନଯାତ୍ରା ବିମାନରେ ନବକଳେବର ଦାରୁ ସନ୍ଧାନ ସମୟରେ କପିକେତନ ନେବା ପରମ୍ପରା ରହିଛି । ମହାଭାରତ ଯୁଦ୍ଧ ସମୟରେ ନନ୍ଦିଘୋଷ ରଥରେ କପିବର ନେତରେ ସ୍ୱୟଂ



ମହାବୀର ରହି ରଥକୁ ନିୟନ୍ତ୍ରଣ କରୁଥିଲେ ବୋଲି ବର୍ଣ୍ଣନା ରହିଛି ।

ହନୁମାନ ହେଉଛନ୍ତି, ଭାରତୀୟ ଆଧାତ୍ମିକ ଦର୍ଶନରେ ଜଣେ ଆଦର୍ଶ ଭକ୍ତର ନିଦର୍ଶନ, ଭକ୍ତ ଶିରୋମଣି ସେ ହେଉଛନ୍ତି ଶକ୍ତି ଅର୍ଥାତ୍ ସୀତାମାତା, ବ୍ରହ୍ମ ଅର୍ଥାତ୍ ଶ୍ରୀରାମଙ୍କ ଏକୀଭୂତ ବିଗ୍ରହ । ଜୀବ ଓ ପରମର ସଂଯୋଗ ନିମିତ୍ତ ଆୟୁଧ । ସେ ଅଚଳାଚଳ ଭକ୍ତି ସ୍ୱରୂପ ତାଙ୍କ ହୃଦୟରେ ସଦା କଳନା କରୁଥିବା ପରମ ବନ୍ଦନୀୟ ସୀତାରାମଙ୍କୁ ଛାତି ଚିରି ଦେଖାଇ ଦେଇଥିଲେ। ଭଗବତ୍ କୃପା ଲାଭକରି ସେ ଚିର ଅମର ହୋଇ ରହିଛନ୍ତି । ଶାସ୍ତ୍ର କହେ, ଯେଉଁ ସାତଜଣ ଶ୍ରେଷ୍ଠ ଦିବ୍ୟସତ୍ତା ଚିରଞ୍ଜୀବୀ ହୋଇ ରହିଛନ୍ତି ସେମାନେ ହେଲେ – ସତ୍ୟଯୁଗରେ ବାଳୀ, ତ୍ରେତୟାରେ ମହାବୀର ହନୁମାନ, ପରଶୁରାମ ଓ ବିଭୀଷଣ, ଦ୍ୱାପରରେ କୃପାଚାର୍ଯ୍ୟ, ବ୍ୟାସଦେବ ଓ ଅଶ୍ୱତ୍ଥମା ।

ପ୍ରଭୁ ଶ୍ରୀରାମଙ୍କର ପରମ ଭକ୍ତ ହନୁମାନ ବାନର ରୂପ ଧାରଣ କରିଥିଲେ ସତ କିନ୍ତୁ ଅସୀମ ସଦ୍‌ଗୁଣ ଯୋଗୁଁ ସେ ଏଭଳି ବରପ୍ରାପ୍ତ ହୋଇଥିଲେ ଯେ ତାଙ୍କୁ ଉପାସନା କଲେ ସବୁ କିଛି ଅଭିଳାଷ ପୂରଣ ହୋଇଥାଏ ।

ପ୍ରଭୁ ହନୁମାନ ଦେବାଦେବୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେବାର ଚାରିଟି ମୁଖ୍ୟ କାରଣ ରହିଛି । ପ୍ରଥମତଃ ସେ ଅତୁଳନୀୟ ବଳବିକ୍ରମର ଅଧିକାରୀ, ଦ୍ୱିତୀୟରେ ଜ୍ଞାନଗାରିମା ସହିତ ଗୁଣବାନ ମଧ୍ୟ, ତୃତୀୟରେ ସବୁକିଛି ସଦ୍‌ଗୁଣର ଅଧିକାରୀ ହୋଇ ମଧ୍ୟ ସେ ସମର୍ପିତ ପ୍ରଭୁ ଭକ୍ତି ପରାୟଣ, ଚତୁର୍ଥରେ ସେ ଚିର ଅମର ଓ ମୃତ୍ୟୁଞ୍ଜୟ। ଅଞ୍ଜନୀ ପୁତ୍ର ହନୁମାନଙ୍କର ଜନ୍ମ ଯେଭଳି ଅପୂର୍ବ ତାଙ୍କର ଅମାପ ଶକ୍ତିର ପରୀକ୍ଷା ମଧ୍ୟ ଯୁଗେ ଯୁଗେ ପରୀକ୍ଷିତ। ଆଜନ୍ମ ବ୍ରହ୍ମଚାରୀ ସେ। ଭୀମ ଆତ୍ମଗର୍ବୀ ଥିଲେ। ସେ ଭାବୁଥିଲେ ତାଙ୍କଠାରୁ ବଳି ଶକ୍ତିମାନ କେହି ନାହିଁ। ହନୁମାନଙ୍କୁ ଦେଖି ସାମାନ୍ୟ ବାନର ଜ୍ଞାନ କରୁଥିଲେ। ହନୁମାନଙ୍କର ପରାକ୍ରମ ପରୀକ୍ଷା କରିବେ କ'ଣ ତାଙ୍କର ଲାଞ୍ଜଟାକୁ ମଧ୍ୟ ଭୂମିରୁ ଉଠାଇ ପାରି ନଥିଲେ ।

ସେହିପରି ଚକ୍ରଧାରୀ ଶ୍ରୀକୃଷ୍ଣ ପତ୍ନୀ ସତ୍ୟଭାମା, ସୁଦର୍ଶନ ଓ ଗରୁଡ଼ଙ୍କର ଗରିମା ହନୁମାନଙ୍କର ସହାୟତାରେ ଭାଙ୍ଗି ଦେଇଥିଲେ ।

ପ୍ରଭୁ ଶ୍ରୀରାମଙ୍କର କୃପାଲାଭ କରିଥିବା ଗୋସ୍ୱାମୀ ତୁଳସୀ ଦାସ ତାଙ୍କ ରଚିତ ଚାଳିଶାରେ ବିଷୟାସକ୍ତ ମୋହମଗ୍ନ ମୂଢ଼ ମନୁଷ୍ୟକୁ ବିବିଧ ସଂକଟରୁ ଉଦ୍ଧାର କରିବା ପାଇଁ ହନୁମାନଙ୍କୁ ସ୍ମରଣ କଲେ ସନ୍ତାପରୁ ମୁକ୍ତି ମିଳିବ ବୋଲି ଦମ୍ଭୋକ୍ତି ପ୍ରକାଶ କରିଛନ୍ତି । ସେ ଏ କଥା ମଧ୍ୟ ସ୍ପଷ୍ଟ କରିଛନ୍ତି ଯେ ହନୁମାନ ଚାଳିଶା ହେଉଛି ବହୁ ପରୀକ୍ଷିତ ମହାମନ୍ତ୍ର ସଦୃଶ ।

ମହାବିଷୁବ ସଂକ୍ରାନ୍ତିରେ ହନୁମାନ ଜୟନ୍ତୀ ପାଳନ କରାଯାଏ । ଏହା ମଧ୍ୟ ଉତ୍କଳର ନବବର୍ଷର ଶୁଭଦିନ । ଶ୍ରୀମନ୍ଦିରରେ ହନୁମାନ ଜୟନ୍ତୀ ପାଳନ ଉପଲକ୍ଷେ ପୂଜାପଣ୍ଡା ସେବକ ପ୍ରଭୁଙ୍କର ଆଜ୍ଞାମାଳ ପ୍ରାପ୍ତ ହୋଇ ଦକ୍ଷିଣ ଘରେ ବିରାଜିତ ହନୁମାନଙ୍କୁ ନେଇ ଝୁଲଣ ମଣ୍ଡପ ନିକଟରେ ସଜ ହୋଇଥିବା ବିମାନରେ ବିଜେ କରାନ୍ତି ।

ଶ୍ରୀମନ୍ଦିରର ଚାରି ଦୁଆରେ ବିରାଜିତ ମହାବୀର ଓ ଦକ୍ଷିଣ ପାର୍ଶ୍ୱ ବେଢ଼ା ବାହାରେ ଥିବା ମହାବୀରଙ୍କୁ ମହା ସମାରୋହରେ ଘଣ୍ଟଘଣ୍ଟା, କାହାଳୀ, ବାଦ୍ୟବାଜଣା ମଧ୍ୟରେ ଜଗନ୍ନାଥ ବଲ୍ଲଭ ମଠ ପ୍ରାଙ୍ଗଣକୁ ଯାଆନ୍ତି । ସେଠାରେ ଅବସ୍ଥିତ ହନୁମାନଙ୍କୁ ଲାଗି କରାନ୍ତି। ସେଠାରୁ ପଟୁଆର ନେଇ ଦରିଆପାରି ହନୁମାନଙ୍କୁ ଲାଗି କରିବାକୁ ବାହାରନ୍ତି ।

ସେଠାରୁ ଫେରିବା ପରେ ଜଗନ୍ନାଥ ବଲ୍ଲଭ ମଠରେ ବିଶେଷ ଭୋଗରାଗ ବ୍ୟବସ୍ଥା ହୋଇଥାଏ । ସେଠାରୁ ଶ୍ରୀମନ୍ଦିରର ଦକ୍ଷିଣ ଦୁଆରକୁ ଯେଉଁ ବାହୁଡ଼ାବିଜେ କରିଥାନ୍ତି, ତାହା ଭକ୍ତଜନମାନେ ଦେଖି ବିଭୋର ହୋଇଥାନ୍ତି ।

ଶ୍ରୀରାମଙ୍କ ଭକ୍ତମାନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ରୂପେ ଆରାଧନା କରିଥାନ୍ତି । ପ୍ରଭୁ ଶ୍ରୀରଘୁନାଥ ଯେତେବେଳେ ଶ୍ରୀମନ୍ଦିରରେ ରହିଲେ ତାଙ୍କର ସେବକ ହନୁମାନ ଅବଶ୍ୟ ରହିବେ। ସେଥିପାଇଁ ତାଙ୍କୁ ମନ୍ଦିରରେ ବିବିଧ ସ୍ଥାନରେ ସ୍ଥାପନା



କରାଯାଇଛି। ଅନେକ ଗବେଷକମାନଙ୍କର ମତ ଯେ ସେ ଶ୍ରୀନୀଳଚକ୍ର ଓ ଶ୍ରୀମନ୍ଦିର ସହିତ ମହୋଦଧି ଓ ପ୍ରାକୃତିକ ବିପର୍ଯ୍ୟୟରୁ ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରକୁ ସୁରକ୍ଷା ଦେଇଥାନ୍ତି । ଶ୍ରୀମନ୍ଦିର ସୁରକ୍ଷା ଦାୟିତ୍ୱରେ ଚାରିଦ୍ୱାରରେ ଚାରି ହନୁମାନ ବା ଚାରି ମହାବୀର ବିଦ୍ୟମାନ। ସେମାନେ ହେଲେ– ପୂର୍ବ ଦ୍ୱାରରେ ଫତେ ମହାବୀର, ପଶ୍ଚିମ ଦ୍ୱାରରେ କାନପତା ବା ବୀର ବିକ୍ରମ ମହାବୀର, ଦକ୍ଷିଣ ଦ୍ୱାରରେ ବାରଭାଇ ମହାବୀର, ଉତ୍ତର ଦ୍ୱାର ରକ୍ଷକ ଭାବେ ଚାରିଚକ୍ର ମହାବୀର ବା ତପସ୍ୱୀ ମହାବୀର । ତାଙ୍କୁ ମଧ୍ୟ ଅଷ୍ଟଭୁଜା ମହାବୀର କୁହାଯାଏ । କାନପତା ମହାବୀରଙ୍କ ଯୋଗୁଁ ସମୁଦ୍ର ଯେତେ ଗର୍ଜନ କଲେ ମଧ୍ୟ ଶ୍ରୀମନ୍ଦିର ପାଚେରି ଭିତରକୁ ପ୍ରବେଶ କରେ ନାହିଁ । ବସ୍ତୁତଃ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ସମୁଦ୍ର ଗର୍ଜନ ଶୁଭେ ନାହିଁ ।

ଏହାଛଡ଼ା ଶ୍ରୀକ୍ଷେତ୍ରର ପଞ୍ଚକୋଶି ମଧ୍ୟରେ ଅନେକ ମହାବୀର ବିରାଜିତ ରହି ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରର ସୁରକ୍ଷା କରି ଚାଲିଛନ୍ତି। ଷୋଳମୂର୍ତ୍ତି ହନୁମାନ ବିଗ୍ରହ ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ଦାୟିତ୍ୱରେ ରହିଛନ୍ତି । ଏମାନେ ସିନ୍ଦୂର ବିହୀନ ମୂର୍ତ୍ତି । ଅନ୍ୟ ସମସ୍ତ ହନୁମାନଙ୍କଠାରେ ସିନ୍ଦୂର ମଖା ଯାଇଥାଏ କେବଳ ଏମାନେ ବ୍ୟତିକ୍ରମ। ଆନନ୍ଦ ବଜାରରେ କୋଠଭୋଗ, ଭୋଗ ବିକ୍ରୟ, ଭକ୍ତମାନଙ୍କ ଆତ୍ମତୃପ୍ତି ମହାପ୍ରସାଦର ମାହାତ୍ମ୍ୟ ରକ୍ଷା ତଥା ଶୃଙ୍ଖଳା ପାଇଁଏହି ହନୁମାନମାନେ ବିରାଜିତ ।

ଶ୍ରୀମନ୍ଦିରର କାରୁକାର୍ଯ୍ୟମୟ ନାଟମଣ୍ଡପ ହନୁମାନ ବିରାଜମାନ କରିଛନ୍ତି। ତାଙ୍କର ଦାୟିତ୍ୱ ହେଲା ଆଗନ୍ତୁକ ଯାତ୍ରୀ, ଭକ୍ତ, ସାଧକ, ସନ୍ନ୍ୟାସୀ ମୁନିଋଷି ମହାପୁରୁଷମାନେ ଯେପରି ଶୃଙ୍ଖଳିତ ଭାବେ ପ୍ରଭୁଙ୍କ ଦର୍ଶନ ସୁଯୋଗ ଲାଭ କରିବେ, ତାହା ସେ ଦେଖନ୍ତି। ପଶ୍ଚିମ ପାର୍ଶ୍ୱ ବାହାର ବେଢ଼ାରେ ବିରାଜିତ ପ୍ରତ୍ୟକ୍ଷ ମହାବୀର ହେଲେ ଦେବ ଦ୍ୱାରପାଳ ପଞ୍ଚମୁଖୀ ହନୁମାନ। ଶ୍ରୀଜଗନ୍ନାଥ ମନ୍ଦିର ହୁଣ୍ଡିକୁ ଯେଉଁମାନେ ମୁକ୍ତ ହସ୍ତରେ ଦାନ କରନ୍ତି ସେହି ଭକ୍ତଜନମାନଙ୍କୁ ପଞ୍ଚମୁଖୀ ହନୁମାନ ଆଶୀର୍ବାଦ ପ୍ରଦାନ କରିଥାନ୍ତି। ଯେଉଁମାନେ ନାମ ଫଳକ ପକାଇବାକୁ ଚାହିଁଥାନ୍ତି ସେସବୁ ତାଙ୍କ ପାଖରେ ଦେଖିବାକୁ ମିଳେ ।

ଶ୍ରୀମନ୍ଦିରର ନାଟମଣ୍ଡପରେ, ସ୍ତମ୍ଭମାନଙ୍କରେ, ସରଘରେ, କୂର୍ମ ବେଢ଼ାରେ ପଥର, ଧାତୁ ତଥା ରଙ୍ଗତୂଳୀର ଚିତ୍ରିତ ମହାବୀର ପୂଜା ପାଉଥିବା ଦେଖାଯାଏ। ଏହି ମହାବୀରମାନେ ଭକ୍ତଜନମାନଙ୍କର ସଂକଟମୋଚନ କରିଥାନ୍ତି।

ପଞ୍ଚମୁଖୀ ମହାବୀରଙ୍କର ପାଞ୍ଚମୁଖ କାହିଁକି ହେଲା ଓ ସେ କାହିଁକି ସ୍ଥାପିତ ହେଲେ ଏ ସମ୍ପର୍କରେ ଚମତ୍କାର ଆଖ୍ୟାୟିକା ରହିଛି। ସେ ସମସ୍ତ ବିସ୍ତୃତ ଅଧ୍ୟାୟ ଏହି କ୍ଷୁଦ୍ର ନିବନ୍ଧରେ ଉପସ୍ଥାପନା ସମ୍ଭବ ନୁହେଁ । ଅନୁରୂପ ଭାବରେ ଶ୍ରୀମନ୍ଦିର ସହ ସଂପୃକ୍ତ ଅନ୍ୟ ଅନେକ ମହାବୀର ଅଛନ୍ତି, ସେମାନେ ହେଲେ– ସିଦ୍ଧ ମହାବୀର, ଦରିଆ ମହାବୀର, ସୁଡ଼ଙ୍ଗ ମହାବୀର, ଶିରୁଳୀ ମହାବୀର, ମକରଧ୍ୱଜ ମହାବୀର, ମଶାଣି ମହାବୀର, ବର୍ଗୀ ମହାବୀର । ସମସ୍ତଙ୍କର ମଧ୍ୟ ସ୍ୱତନ୍ତ୍ର ମହିମା ରହିଛି । ସେମାନଙ୍କର ଶ୍ରୀମନ୍ଦିର ସହ ସଂପୃକ୍ତି ମଧ୍ୟ ସମୟକ୍ରମେ ଆଲୋଚିତ ହୋଇସାରିଛି କିମ୍ବା ଉପସ୍ଥାପିତ ହୋଇପାରେ ।

ସର୍ବୋପରି ସାରା ଓଡ଼ିଶାର ଯେତେ ଦେବଦେବୀ, ଯେତେ ମଠ, ଭାଗବତ ଅନୁଷ୍ଠାନ ଓ ଆଶ୍ରମ ଅଛି, ସବୁର ଉପରେ ସେଇ ନାଥ ମଉଡ଼ମଣି ଶ୍ରୀଜଗନ୍ନାଥ। ଆମ ଜାତିର ସେ ହେଲେ ଇଷ୍ଟ । ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ହେଲା ଆମର ଇଷ୍ଟକ୍ଷେତ୍ର । ପୁରୀ ହେଲା ସବୁ ତୀର୍ଥର ତୀର୍ଥ ତୀର୍ଥରାଜ। ମହୀମଣ୍ଡଳରେ ପୁରୀ ହେଲା ମହାମଣ୍ଡଳ। ସେ ଆମ ଓଡ଼ିଆମାନଙ୍କର ଦିଅଁ ଯେ କି ଏକମାତ୍ର ଧ୍ୟେୟ। ସେ ପୁଣି ବିଶ୍ୱ ଚିନ୍ତାମଣି। ପବିତ୍ର ଶ୍ରୀଗୁଣ୍ଡିଚାରେ ପ୍ରତି ବର୍ଷ ତାଙ୍କର ଘୋଷଯାତ୍ରା ଜଗତବାସୀ ଦେଖିବା ପାଇଁ ସତୃଷ୍ଣ ନୟନରେ ଚାହିଁ ରହିଥାନ୍ତି।

ଆଶ୍ରମ, ଶ୍ରୀବିହାର, କଟକ



# ଶ୍ରୀକ୍ଷେତ୍ରରେ କଳ୍ପବଟ ଉପାସନା

ଗଙ୍ଗୋତ୍ରୀ ଦେବୀ

ଭାରତୀୟ ଧର୍ମ କେବଳ ମୂର୍ତ୍ତି ଉପାସନା ଉପରେ ଗୁରୁତ୍ୱ ଦେଇନଥାଏ। ତତ୍ ସଙ୍ଗେ ସଙ୍ଗେ ପ୍ରାକୃତିକଭାବେ ସୃଷ୍ଟି ହୋଇଥିବା ନଦନଦୀ, ସମୁଦ୍ର, ପର୍ବତ, ବୃକ୍ଷଲତା ପଶୁପକ୍ଷୀଙ୍କ ଭିତରେ ନିଜ ବିଶ୍ୱାସର ଧର୍ମ ଦର୍ଶନ କରିଥାଏ। ଜଡ଼ ମଧ୍ୟରେ ଚେତନର ଅଲୌକିକତା ଅନୁଭବୀ ଥାଏ । ନିଜଠାକୁରଙ୍କ ବାହାନ ଭାବରେ ପଶୁ , ପକ୍ଷୀ, ସରୀସୃପ ଆଦିଙ୍କୁ ଗ୍ରହଣ କରିଥାଏ ତ ନିଜ ଅଭୀଷ୍ଟ ପୂରଣ କରିବାକୁ ବଟବୃକ୍ଷ, ନିମ୍ବ, ଅଶ୍ୱତ୍‌ଥ, ତୁଳସୀ, ବେଲ ଆଦି ବୃକ୍ଷଙ୍କର ଯତ୍ନନେବା ସହ ପୂଜା ମଧ୍ୟ କରିଥାଏ। ପୁରାଣକାର କହିଛନ୍ତି, ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର। ଏଣୁ ବୃକ୍ଷପୂଜାର ପରମ୍ପରା, ଦୃଢ଼ବିଶ୍ୱାସ କେଉଁ ଆବହମାନ କାଳରୁ ଆମ ଭାରତବର୍ଷରେ ଚଳିଆସିଛି, ତାହା ଆଲୋଚନା ସାପେକ୍ଷ ।

ଶ୍ରୀମନ୍ଦିର ମଧ୍ୟରେ ଥିବା ବିଭିନ୍ନ ମନ୍ଦିର ମଧ୍ୟରେ ଅଧିଷ୍ଠିତ ଦେବଦେବୀ ଧାତୁ କିମ୍ବା ପ୍ରସ୍ତର ନିର୍ମାଣ ହୋଇଥିବାବେଳେ ପ୍ରଭୁ ଶ୍ରୀଜଗନ୍ନାଥ, ପ୍ରଭୁ ବଳଭଦ୍ର, ମାଆ ସୁଭଦ୍ରା ଓ ପ୍ରଭୁ ସୁଦର୍ଶନ ଦାରୁ ନିର୍ମିତ । ପ୍ରକୃତିର ବିଭିନ୍ନ ବିଭବ ମଧ୍ୟରେ ମନୁଷ୍ୟ ସର୍ବ ପ୍ରଥମେ ବୃକ୍ଷକୁ ନିଜର ଉପାସ୍ୟ ରୂପେ ଗୃହୀତ କରିଛି । ବୃକ୍ଷ ହିଁ ମନୁଷ୍ୟର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସାଥେ ସାଥେ ରହିଆସିଛି । ବୃକ୍ଷ ମନୁଷ୍ୟର ପିତା, ମାତା, ବନ୍ଧୁ, ସଖା, ଭାବରେ ବିବେଚିତ ହୋଇଛି । ଏହା ମଧ୍ୟ ଖାଦ୍ୟ, ବସ୍ତ୍ର, ପାନୀୟ, ଆଶ୍ରୟାଦିରେ ସାହାଯ୍ୟ କରିଥାଏ ବୋଧହୁଏ ଶ୍ରୀମନ୍ଦିରରେ ସ୍ତମ୍ଭାକୃତି କାଷ୍ଠ ଉପାସନା ପରବର୍ତ୍ତୀ କାଳରେ ଦାରୁନିର୍ମିତ ବିଗ୍ରହରେ ରୂପାନ୍ତରିତ ହୋଇଥିବାର ବିଶ୍ୱାସ କରାଯାଏ । କିନ୍ତୁ ଶ୍ରୀମନ୍ଦିର ମଧ୍ୟରେ ଶ୍ରୀଜୀଉଙ୍କର ରହସ୍ୟ ଜାଣିବା ପୂର୍ବରୁ ମନ୍ଦିର ମଧ୍ୟସ୍ଥ କଳ୍ପବଟ ସମ୍ପର୍କରେ କିଞ୍ଚିତ ଆଲୋଚନା କରାଯାଇପାରେ । ଶ୍ରୀକ୍ଷେତ୍ରର ଏହି କଳ୍ପବଟଙ୍କ ମହିମା ଅଲୌକିକ। ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ଏହି ବଟବୃକ୍ଷରୂପୀ ନାରାୟଣଙ୍କ ଦର୍ଶନରେ ମନୁଷ୍ୟର ପାପ କ୍ଷୟ ହୋଇଯାଏ । ତାଙ୍କର ପୂଜାସ୍ତବ କରି ଯେଉଁ ବିସ୍ତୃତ ଫଳଲାଭ ହୁଏ, ତାହା ବର୍ଣ୍ଣନାତୀତ। ପଞ୍ଚତୀର୍ଥ ମାହାତ୍ମ୍ୟ କୀର୍ତ୍ତନରେ ସ୍କନ୍ଦପୁରାଣରେ କଳ୍ପବଟ ପ୍ରସଙ୍ଗରେ ବର୍ଣ୍ଣନା ଅଛି ଯେ, ମାର୍କଣ୍ଡେୟ ବଟ ତୀର୍ଥରେ ସ୍ନାନ କରି ମୌନତାର ସହ ଏହାର ଦକ୍ଷିଣ ଦିଗରେ ଅବସ୍ଥିତ ସାକ୍ଷାତ ନାରାୟଣ ସ୍ୱରୂପ ଅକ୍ଷୟ ବଟ ନିକଟକୁ ଗମନ କଲେ ସମସ୍ତ ପାପ କ୍ଷୟ ହୋଇଥାଏ। ଦୂରରୁ ସେହି ବୃକ୍ଷଙ୍କୁ ପ୍ରଣାମ କଲେ ପୁରୁଷୋତ୍ତମଙ୍କୁ ପ୍ରଣାମ କରିବା ବୋଧ ହୋଇଥାଏ । ତାହାଙ୍କୁ ପ୍ରଣାମ ପୂର୍ବକ କୁହାଯିବ, ହେ ବଟବୃକ୍ଷ ! ତୁମ୍ଭେ କଳ୍ପାନ୍ତକାଳ ପର୍ଯ୍ୟନ୍ତ ଅମର। ତୁମେହିଁ ବିଷ୍ଣୁଙ୍କର ଆବାସ ଭୂମି। ହେ ବିଷ୍ଣୁ ସ୍ୱରୂପ, ତୁମ୍ଭଙ୍କୁ ବାରମ୍ବାର ପ୍ରଣିପାତ କରୁଛି, ମୋର ସମସ୍ତ ପାପତାପ ହରଣ ହେଉ। ଏହି ମନ୍ତ୍ର ପାଠକରି ବୃକ୍ଷଙ୍କୁ ତିନିଥର ପ୍ରଦକ୍ଷିଣ କରାଯିବ। ଅକ୍ଷୟବଟଙ୍କୁ ଏହି ସ୍ତୁତି କରି ଏହାଙ୍କ ମୂଳଦେଶରେ ଥିବା ଜନାର୍ଦ୍ଦନଙ୍କୁ ପୂଜା କରାଯିବା ଦ୍ୱାରା ସମସ୍ତ ପାପକ୍ଷୟ ଘଟିବ।

ଏହା ସ୍ୱୀକାର୍ଯ୍ୟ ଯେ କଳ୍ପବଟ କେଉଁ କାଳରୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଶୋଭା ପାଉଛନ୍ତି । ଯାହା ମହାକବି ସାରଳା ଦାସଙ୍କ ମହାଭାରତରେ କଳ୍ପବଟର ମହିମା ଗାନ କରିଛନ୍ତି । ବ୍ୟାସଦେବ କୃତ ସଂସ୍କୃତ ଶ୍ରୀମଦ୍ ମହାଭାରତରେ କଳ୍ପବଟର ଚିତ୍ର ବ୍ୟାସଦେବ ମାର୍କଣ୍ଡେୟ ଉପାଖ୍ୟାନରେ ବର୍ଣ୍ଣନା କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ଅଙ୍ଗରୁ କଳ୍ପବୃକ୍ଷଙ୍କ ଉତ୍ପତ୍ତି ବୋଲି ବ୍ୟାସଦେବଙ୍କ ମତ। ବ୍ରହ୍ମତେଜରେ ତେଜୀୟାନ ଏହି ବୃକ୍ଷ ବିଷ୍ଣୁ ସ୍ୱରୂପ । ଏଣୁ ଏହାଙ୍କୁ ଦର୍ଶନ କଲେ ରାଜସୂୟ ଓ ଅଶ୍ୱମେଧ



ଯଜ୍ଞର ଫଳ ଲାଭ ଘଟେ । ମାନବ ସ୍ୱବଂଶ ଉଦ୍ଧାର କରି ବିଷ୍ଣୁ ଲୋକଙ୍କୁ ଗମନ କରେ। ଏହାକୁ ପ୍ରଦକ୍ଷିଣ କରି ପ୍ରଣାମ କଲେ ସର୍ପ ନିଜ ପୁରୁଣା ଖୋଳପା ତ୍ୟାଗ କରି ନୂତନ କଳେବର ଧାରଣ କଲାଭଳି ମନୁଷ୍ୟ ନିଜକୁ ପାପମୁକ୍ତ କରି ନିଷ୍ପାପ ଜୀବନଯାପନ କରେ। ବ୍ରହ୍ମ ହତ୍ୟା ଭଳି ପାପ ମଧ୍ୟ ଏହାଙ୍କ ପ୍ରସାଦରୁ ଧ୍ୱଂସ ହୋଇଥାଏ । (ବ୍ରହ୍ମପୁରାଣ ସଂସ୍କୃତ)

ଶ୍ରୀକ୍ଷେତ୍ରରେ ଥିବା ବହୁ ପ୍ରାଚୀନ ବସ୍ତୁମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି କଳ୍ପବଟ । ନୀଳାଦ୍ରିର ନାଭିଦେଶକୁ ମଣ୍ଡନ କରିଥିବା ଏହି ବୃକ୍ଷ କେଉଁ କାଳରୁ ଅବସ୍ଥାନ କରିଛନ୍ତି, ତାହା କହିହେବ ନାହିଁ । କଥିତ ଅଛି, ସଂସାର ପ୍ରଳୟ ହେବାର ସୂଚନା ପାଇବା ମାତ୍ରେ ପାତାଳରୁ ଅନନ୍ତଦେବ ଆସି ନିଜେ କଳ୍ପବଟ ରୂପେ ବିରାଜମାନ କରିଛନ୍ତି । ଏଯାବତ୍ ସେ ଶ୍ରୀକ୍ଷେତକୁ ନିଜର ଅତି ପ୍ରିୟ ଓ ପବିତ୍ର ସ୍ଥାନ ରୂପେ ଗ୍ରହଣ କରିଆସିଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପୂର୍ବରୁ ନୀଳମାଧବ ଉପାସିତ ହେଉଥିଲେ ଏହା ସର୍ବସମ୍ମତ । ମହା ପ୍ରଳୟରେ ନୀଳଗିରିର କଳ୍ପବଟ ନିମଗ୍ନ ହୋଇନଥିବାର ମହର୍ଷି ମାର୍କେଣ୍ଡୟ ଦେଖି ଏହାଙ୍କ ମୂଳରେ ନାରାୟଣ ମୂର୍ତ୍ତିକୁ ଦର୍ଶନ କରି ନିଜକୁ ଧନ୍ୟ ମନେ କରିଥିଲେ ଓ ତତ୍ ସଙ୍ଗେ ସଙ୍ଗେ ଉକ୍ତ ବୃକ୍ଷଙ୍କର ମହିମାରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ। ନୀଳଗିରି ଉପରେ ଏହି ବୃକ୍ଷ ଏକକୋଶ ବ୍ୟାପୀ ଆଚ୍ଛାଦିତ ହୋଇଥିବାର ସ୍କନ୍ଦ ପୁରାଣ, ବିଷ୍ଣୁଖଣ୍ଡ ୧୦ ଅଧ୍ୟାୟରେ ରହିଅଛି। ମହର୍ଷି ମାର୍କଣ୍ଡେୟ ଏହି ବୃକ୍ଷଙ୍କୁ ଦେଖି ଚିନ୍ତା କରିଥିଲେ ଯେ, ମହାପ୍ରଳୟରେ ସମସ୍ତ ସ୍ଥାବର ଜଙ୍ଗମ ନଷ୍ଟବିନଷ୍ଟ ହୋଇଯିବା ବେଳେ କିପରି ଏ ବୃକ୍ଷ ଭୂଭାଗରେ ସ୍ଥିର ରହିଲା। ନିଶ୍ଚୟ ଏହା ବିଷ୍ଣୁ ସ୍ୱରୂପ । 'ନୀଳସୁନ୍ଦର' ପୁରାଣ କହନ୍ତି, ମାର୍କଣ୍ଡେୟ ମୁନି ପ୍ରଳୟ ଜଳରେ ଭାସି ଭାସି ସେଠାରେ ପହଞ୍ଚି ବିଶ୍ୱାତ୍ମାଙ୍କୁ ଦର୍ଶନ କରି ପ୍ରଣାମ କରିବା ପରେ ସେହି ସ୍ଥାନରେ ଅବସ୍ଥାନ କରିବା ପାଇଁ ଅନୁମତି ପ୍ରାର୍ଥନା କଲେ। ପ୍ରଭୁ ତାଙ୍କୁ କୃପାକରି ତାଙ୍କୁ ପଦାଗ୍ରରେ ଶତପାଦ ଦୂରକୁ ଠେଲି ଦେଇଥିଲେ। ଯେଉଁଠାରେ କି ଏକ ଗର୍ତ୍ତ ସୃଷ୍ଟି ହେଲା। ଏହା ମାର୍କଣ୍ଡେୟ ପୁଷ୍କରିଣୀ ନାମରେ ଖ୍ୟାତ ଓ ଏହାର ରକ୍ଷକ ହେଲେ ଅଘୋର ଶିବ । ଏହି ପବିତ୍ର କଳ୍ପବଟଙ୍କର କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ତିଥିରେ ଆବିର୍ଭାବ ହୋଇଥିବାର କୁହାଯାଏ। ଏହି ତିଥିରେ କଳ୍ପବଟଙ୍କର ଜନ୍ମ ଦିବସ ପାଳନ କରାଯାଇଥାଏ। ପରମ୍ପରାକ୍ରମେ ବଟ ଦେବତାଙ୍କୁ ବ୍ରାହ୍ମଣ ପଞ୍ଚାମୃତ ଦ୍ୱାରା ଗାଧୋଇ ଦେଇ ନୂଆ ଲୁଗା ପିନ୍ଧାଇ ଭୋଗ ଲଗାଇ ଥାଆନ୍ତି। ଜଗନ୍ନାଥ ଓ କଳ୍ପବଟ ଭିନ୍ନାଭିନ୍ନ ନୁହଁନ୍ତି । ଜଗନ୍ନାଥଙ୍କ ପୂଜାବିଧି ସହିତ କଳ୍ପବଟ ସଂପୃକ୍ତ। ଏହାଙ୍କୁ ବାଦ୍‌ଦେଇ ପ୍ରଭୁଙ୍କ ପୂଜା କରାଯାଇପାରେନା। ବାହୁଡ଼ା ଦିନ ଠାକୁର ଯେତେବେଳେ ପହଞ୍ଚି ଯାଆନ୍ତି, ସେତେବେଳେ କଳ୍ପବଟଙ୍କୁ ବନ୍ଦାପନା କରାଯାଏ। କଳ୍ପବଟଙ୍କୁ ବନ୍ଦାପନା ନ ସରିବା ଯାଏଁ ପ୍ରଭୁ ଭିତରକୁ ଯାଆନ୍ତି ନାହିଁ। ଏଥିରୁ କଳ୍ପବଟଙ୍କ ମହନୀୟତା ପ୍ରତିପାଦିତ ହୁଏ ।

ଲୋକମାନଙ୍କ ହୃଦୟରେ କଳ୍ପବଟ ପ୍ରତି ଯୁଗେ ଯୁଗେ ବିଶ୍ୱାସ ରହିଆସିଛି। ଶ୍ରୀଜଗନ୍ନାଥ ଦର୍ଶନ କରି ଭକ୍ତ ଯେତିକି ତୃପ୍ତି ପାଇଥାଆନ୍ତି, କଳ୍ପବଟଙ୍କୁ ପ୍ରଦକ୍ଷିଣ କରି ତା'ରି ଛାୟାତଳେ ଦଣ୍ଡେ ବସି ଓ ମନେ ମନେ ଅଭୀଷ୍ଟପୂରଣ ପାଇଁ ମାନସିକ କରି ସେତିକି ଶାନ୍ତି ପାଇଥାଆନ୍ତି। କଳ୍ପବଟ ତଳେ ମାନସିକଧାରିଣୀ ସ୍ତ୍ରୀ ଲୋକମାନେ ନିଜର ଶାଢ଼ୀ କାନିପାତି ବସି ରହନ୍ତି। ଯେପର୍ଯ୍ୟନ୍ତ ବଟଫଳଟିଏ ଉକ୍ତ କାନିରେ ନ ପଡ଼ିଛି, ସେଠାରୁ ଉଠନ୍ତି ନାହିଁ। ପ୍ରାୟତଃ ପୁତ୍ର ପ୍ରାର୍ଥିନୀ ମହିଳାମାନେ ମନେ ମନେ ପ୍ରଭୁ ବିଷ୍ଣୁଙ୍କୁ ଧାରଣା ପୂର୍ବକ ଏହି ବୃକ୍ଷତଳେ ବସି ରହନ୍ତି। ଫଳଟିଏ ପାଇଲେ, ତାହାକୁ ପ୍ରଭୁଙ୍କର ଦାନ ବୋଲି ମନେକରି ମହା ଆନନ୍ଦରେ ଉଠାଇ ନେଇଥାନ୍ତି। ବିଶ୍ୱାସ ଅଛି, କଳ୍ପବଟ ମୂଳେ ମାନସିକ କରି ବନ୍ଧ୍ୟାନାରୀ ସନ୍ତାନସମ୍ଭବା ହୋଇଥାନ୍ତି। ଆର୍ତ୍ତୀମାନେ ତାଙ୍କର ଛାୟାତଳେ ଦଣ୍ଡେ ବସିଯାଇ ନିଜକୁ ମାନସିକ ଭାରାକ୍ରାନ୍ତରୁ ବିମୁକ୍ତ କରିପାରିଛନ୍ତି। କଳ୍ପବଟ ତଳେ ଉପବିଷ୍ଟ ହୋଇ ନୀଳଚକ୍ରକୁ ଚାହିଁଦେଲେ ହୃଦୟରେ ଅପୂର୍ବ ଶାନ୍ତି, ସୁଖ ଓ ଆତ୍ମ ସନ୍ତୋଷ ମିଳିଥାଏ ।

ପ୍ରଧାନ ଶିକ୍ଷୟିତ୍ରୀ
ଏଗ୍ରିକଲ୍‌ଚର କଲୋନୀ ପ୍ରାଥମିକ ବିଦ୍ୟାଳୟ
ୟୁନିଟ୍-୮, ଭୁବନେଶ୍ୱର -୧୨



# ଶ୍ରୀଗୁଣ୍ଡିଚା ଯାତ୍ରା

ଅଧ୍ୟାପକ ଉଦୟନାଥ ତ୍ରିପାଠୀ

ସ୍କନ୍ଦ ପୁରାଣ ଅନୁଯାୟୀ ଶ୍ରୀକ୍ଷେତ୍ର ନୃସିହ କ୍ଷେତ୍ର ନାମରେ ପରିଚିତ। ପୁରୁଷୋତ୍ତମଙ୍କ ଉପସ୍ଥିତି ଯୋଗୁଁ ଶ୍ରୀକ୍ଷେତ୍ର ସର୍ବୋତ୍ତମ କ୍ଷେତ୍ର ଭାବେ ପରିଚିତ ଓ ମର୍ତ୍ତ୍ୟ ବୈକୁଣ୍ଠ ନାମରେ ବିଦିତ। ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ କୃଷ୍ଣ, ଶ୍ୱେତ, ପୀତ ଓ ଲୋହିତ ବର୍ଣ୍ଣ ବିଶିଷ୍ଟ। ଶ୍ରୀବଳଭଦ୍ର ଜ୍ଞାନଯୋଗ, ଶ୍ରୀଜଗନ୍ନାଥ ଭକ୍ତି ଯୋଗ ଓ ଦେବୀ ସୁଭଦ୍ରା ହେଉଛନ୍ତି କର୍ମଯୋଗର ପ୍ରତୀକ। କର୍ମର ହସ୍ତ, ଜ୍ଞାନର ଚକ୍ଷୁ ଓ ଭକ୍ତିର ହୃଦୟ ଓ ଭକ୍ତି ରସର ସମନ୍ୱୟରେ ମାନବ ଜୀବନ ସାର୍ଥକ ହୁଏ ଓ ଏହି ତ୍ରିଗୁଣ ସମନ୍ୱୟରେ ସେ ବ୍ରହ୍ମତ୍ୱ ପ୍ରାପ୍ତ କରି ମୁକ୍ତ ହୁଏ । ସଂସାରର ମାୟା ଚକ୍ରରେ ପଡ଼ି ବାରମ୍ବାର ଜନ୍ମ ମୃତ୍ୟୁର ଯନ୍ତ୍ରଣା ପାଏ ନାହିଁ ।

ଜଗନ୍ନାଥ ନାରାୟଣ ରୂପରେ, ବଳଭଦ୍ର ତ୍ରିଲୋଚନ ରୂପରେ, ସୁଭଦ୍ରା ଯୋଗମାୟା ରୂପରେ ଏବଂ ସୁଦର୍ଶନ ଗଣଦେବତା ମାଧବ ରୂପରେ ବିଦ୍ୟମାନ। ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଓଁକାର ଭାବେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ରୂପରେ ସତ୍‌ଚିତ୍ ଆନନ୍ଦ ଭାବରେ, ଋକ୍, ଯଜୁ ସାମ, ବେଦଭାବେ, ହ୍ରୀଁ, ଶ୍ରୀଁ, କ୍ଲୀଁ ବୀଜ ଭାବେ ଏବଂ ସତ୍ତ୍ୱ, ରଜ, ତମ ଭାବେ ପ୍ରତିପାଦିତ କରାଯାଇଛି। ଚତୁର୍ଦ୍ଧାମୂର୍ତ୍ତି ଏକ, ଅଭିନ୍ନ ଏବଂ ବିଭିନ୍ନ ଧର୍ମାବଲମ୍ବୀଙ୍କୁ ପ୍ରୀତ କରିବା ପାଇଁ ଆରାଧ୍ୟ ଦେବତା ରୂପେ ରତ୍ନସିଂହାସନରେ ବିଜେ କରିଛନ୍ତି । ଏହି ସର୍ବଧର୍ମର ଆରାଧ ଦେବତା ପୁଣି ଜାତି ପାତି ଭେଦଭାବର ଉର୍ଦ୍ଧ୍ୱରେ ।

ଯେଉଁ ବ୍ୟକ୍ତି ଭକ୍ତ ଭାବରେ ପରମେଶ୍ୱରଙ୍କ ନିକଟରେ ପ୍ରାଣ ଅର୍ପଣ କରି ତତ୍ପରତା ସହିତ ପରମ ଶ୍ରଦ୍ଧାରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଉପାସନା କରେ, ସେ ପରମେଶ୍ୱରଙ୍କ ଶ୍ରଦ୍ଧା ଓ ପ୍ରିୟପାତ୍ରର ଯୋଗ୍ୟତା ଅର୍ଜନ କରିଥାଏ । ପ୍ରଭୁ ଭକ୍ତର ଡାକରା ସର୍ବଦା କର୍ଣ୍ଣପାତି ଶ୍ରବଣ କରିଥାନ୍ତି ଓ ଭକ୍ତର ଆଗ୍ରହ ଦେଖି ରତ୍ନ ସିଂହାସନର ସମସ୍ତ ସୁଖ, ପୂଜା ମାର୍ଜନା ଦିବ୍ୟ ଅନ୍ନ ପ୍ରସାଦ ଇତ୍ୟାଦି ତ୍ୟାଗ କରି ନବଦିନ ପାଇଁ ବଡ଼ଦାଣ୍ଡକୁ ଭକ୍ତମାନଙ୍କର ଦର୍ଶନ ପାଇଁ ଶ୍ରୀଗୁଣ୍ଡିଚା ବା ରଥଯାତ୍ରା ଅବସରରେ ଅବତରଣ କରିଥାନ୍ତି । ଜାତି ବର୍ଣ୍ଣ ଧର୍ମର ଉର୍ଦ୍ଧ୍ୱରେ ରହି ଭକ୍ତମାନଙ୍କ ମନୋବାଞ୍ଛା ପୂରଣ କରିଥାନ୍ତି। ଖରା, ବର୍ଷା, ଝଡ଼ଝଞ୍ଜା ଇତ୍ୟାଦି ପ୍ରାକୃତିକ କ୍ରିୟାକୁ ଭୃକ୍ଷେପ ନକରି ପ୍ରଭୁ ହସ ହସ ବଦନରେ, ଦାସିଆ ପରି ଭକ୍ତମାନଙ୍କ ହାତରୁ ଶ୍ରୀଫଳ ନେଇଥାନ୍ତି । ସାଲବେଗ ପରି ଜୀବନ ଭକ୍ତର ଭକ୍ତି ଅର୍ଘ୍ୟ ଲାଭ କରିବା ପାଇଁ ରଥ ଉପରେ ଦାଣ୍ଡଧୂଳିରେ ଅପେକ୍ଷା କରି ରୁହନ୍ତି। ଶିରରେ ଟାହିଆ ବାନ୍ଧନ୍ତି, ଶଙ୍ଖ, ଘଣ୍ଟା କାହାଳୀ, ମର୍ଦ୍ଦଳର ଶବ୍ଦ ଝଙ୍କାରରେ ଆତ୍ମବିଭୋର ହୋଇପଡ଼ନ୍ତି । ଶ୍ରୀଚୈତନ୍ୟ ଦେବଙ୍କ ପରି ଭକ୍ତମାନଙ୍କ ଗହଣରେ ସଂକୀର୍ତ୍ତନରେ ଆତ୍ମନିବେଶ କରନ୍ତି । ସାମ୍ୟ, ମୈତ୍ରୀ, ବିଶ୍ୱ ଭ୍ରାତୃତ୍ୱର ନିଦର୍ଶନ ଜନସମୁଦ୍ରରେ ଦେଖିବାକୁ ଭଲ ପାଆନ୍ତି । ସେ ତତ୍ତ୍ୱ ନିରଞ୍ଜନ ଅନାଦି ଆଦିରାମ ପୁରୁଷ ରୂପରେ ରଥଯାତ୍ରା ଦିନ ଅଚ୍ୟୁତ ଶୂନ୍ୟ ନିତ୍ୟ ରାସ, ଶୂନ୍ୟ ବାଙ୍ଫି, ଗନ୍ଧର୍ବ ମଠଠାରେ ଦ୍ୱାଦଶ ଗୋପାଳଙ୍କ ସହିତ ନିତ୍ୟରାସ କୀର୍ତ୍ତନ ଶ୍ରବଣ କରନ୍ତି। ଭକ୍ତ ବଳରାମ ଦାସଙ୍କ ବାଲି ତିଆରି ରଥ ନିକଟରେ ଉଭା ହୁଅନ୍ତି । ମାଉସୀ ମା' ଘର ନିକଟରେ ଠିଆ ହୋଇ ତାଙ୍କ ଶ୍ରଦ୍ଧା ସ୍ୱରୂପ ପୋଡ଼ପିଠା ଭକ୍ଷଣ କରନ୍ତି। ଭକ୍ତର ଗର୍ବ ଅହଂକାର ଗଞ୍ଜନ ପାଇଁ ବଡ଼ଦାଣ୍ଡରେ ଅଚଳ ମହାମେରୁ ହୋଇ ଘଣ୍ଟାଘଣ୍ଟା ଧରି ନ ଖାଇ ନ ପିଇ ଦଣ୍ଡାୟମାନ ହୋଇ ଉଭା ହୁଅନ୍ତି । ଥଟ୍ଟା, ତାମସା, ଡଗ, ଢମାଳି,



କୁତ୍ସାରଚନା, ତୁଣ୍ଡଗାଳିକୁ ଭ୍ରୁକ୍ଷେପ ନକରି ନିର୍ବିକାର, ନିରାକାର ଦାରୁଭୂତ ମୁରାରୀ ସାଜି ନିଜର, ଗରିମାର ପରିଚୟ ଦିଅନ୍ତି । ପ୍ରଥମ ଭକ୍ତ ପରମ ଭକ୍ତ ରାଜ ଶିରୋମଣି ପୁରୀ ରାଜାଙ୍କ ଛେରାପହଁରା, ଜଳମିଶ୍ରିତ ସୁଗନ୍ଧିତ ଚନ୍ଦନ କର୍ପୂରର ପରଶ ଲାଭ କରିବା ପାଇଁ ଚାହିଁ ବସନ୍ତି । ମହିଳା, ପୁରୁଷ, ଶିଶୁ, ବୃଦ୍ଧ, ଯୁବକ ଯୁବତୀଙ୍କ ଆତ୍ମ ନିବେଦନ ଓ ଗୁହାରୀ କର୍ଣ୍ଣଡେରି ଶ୍ରବଣ କରନ୍ତି ଓ ତାଙ୍କ ମନୋବାଞ୍ଛା ପୂରା କରନ୍ତି ଇତ୍ୟାଦି । ସ୍କନ୍ଦ ପୁରାଣ ଅନୁଯାୟୀ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଏହି ମହୋତ୍ସବକୁ ଦର୍ଶନ କଲେ ଭକ୍ତଜନଙ୍କ ସାତକୋଟି ପାପରାଶି ନଷ୍ଟ ହୁଏ । ମହାଦେବୀଙ୍କ ଗମନ କାଳରେ ରଥାରୂଢ଼ ପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ମାନବର ଜନ୍ମାର୍ଜିତ ପାପ ସମୂହ କ୍ଷୟ ହୋଇଯାଏ ।

ରଥଯାତ୍ରା ଦିନ ପହଣ୍ଡି ବିଜେ ସମୟରେ ଶ୍ରୀସୁଦର୍ଶନ ପରେ ବଳଭଦ୍ର, ତା'ପରେ ଦେବୀ ସୁଭଦ୍ରା ଓ ସର୍ବଶେଷରେ ଶ୍ରୀଜଗନ୍ନାଥଙ୍କୁ ଧାଡ଼ି ପହଣ୍ଡିରେ ବିଜେ କରାଯାଇଥାଏ । ଶ୍ରୀବିଗ୍ରହମାନେ ରଥାରୂଢ଼ ହେବା ପରେ ଦଇତାପତିମାନେ ରୁନ୍ଧା କାର୍ଯ୍ୟ ଶେଷ କରନ୍ତି ।

ରଥ ଉପରେ ରୁନ୍ଧା, ମାଳଫୁଲ ଦେବା, ସୋଲ ଚିତା ଇତ୍ୟାଦି ଲାଗି ହେବା ପରେ ଗୋବର୍ଦ୍ଧନ ପୀଠର ପୀଠାଧୀଶ ଜଗତଗୁରୁ ଶଙ୍କରାଚାର୍ଯ୍ୟ ତିନି ରଥ ଉପରେ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରନ୍ତି ।

ଏହାପରେ ଗଜପତି ମହାରାଜା ବ୍ରତାଚାରଣ ପୂର୍ବକ ରାଜଗୁରୁଙ୍କ ଉପସ୍ଥିତିରେ ରାଜନଅରରେ ଥିବା ଇଷ୍ଟଦେବୀ କନକ ଦୁର୍ଗା ଓ ପଞ୍ଚଦେବଙ୍କ ଉପାସନା କାର୍ଯ୍ୟ ସମାପନ କରି ରଥ ଉପରେ ଛେରାପହଁରା ନିମନ୍ତେ ରାଜାଙ୍କୁ ପଟୁଆରରେ ରାଜଗୁରୁଙ୍କ ସହିତ କାହାଳିଆମାନଙ୍କର କାହାଳୀ ବାଦନ କରାଯାଇ ରଥମାନଙ୍କ ନିକଟକୁ ନିଆଯାଏ । ବଡ଼ଦାଣ୍ଡରେ ଉପସ୍ଥିତ ଲୋକାରଣ୍ୟ ଛାମୁଙ୍କୁ ଦର୍ଶନ କରି କୃତାର୍ଥ ହୋଇଥାନ୍ତି ।

ବିଧି ମୁତାବକ ମହାରାଜା ସମସ୍ତ ପ୍ରକାର ପୂଜାର୍ଚ୍ଚନା କରିସାରିବା ପରେ ତାଙ୍କ ହାତରେ ସୁନାବେଷ୍ଟିଯୁକ୍ତ ଖଡ଼ିକାମୁଠା ଧରାଇ ଦିଆଯାଏ । ରଥ ଉପରେ ରାଜା ଛେରାପହଁରା ଆରମ୍ଭ କଲେ ପଛରୁ ପୂଜାପଣ୍ଡା ଓ ଅନ୍ୟ ସେବକମାନେ ଚନ୍ଦନ, କର୍ପୂର ଓ ସୁବାସିତ ଜଳ ସିଞ୍ଚନ କରି ମନ୍ତ୍ର ଉଚ୍ଚାରଣ ସହିତ ରଥ ଶୁଦ୍ଧ କରିଥାନ୍ତି । ଏହି କ୍ରମରେ ମହାରାଜା ଛେରାପହଁରା କାର୍ଯ୍ୟ ଶେଷ କରି, ଦଣ୍ଡ ପ୍ରଣାମ ପରେ ଶ୍ରୀନଅରକୁ ଫେରି ଯାଇଥାନ୍ତି ।

ପରେ ପରେ ରଥଟଣା ଆରମ୍ଭ ହେବା ସହିତ ରଥ ଉପରୁ କାହାଳିଆ ସେବକମାନେ କାହାଳୀ ବଜାଇଥାନ୍ତି । ଏହା ପରେ ଘଣ୍ଟୁଆ ସେବକମାନେ ରଥ ଉପରେ ଦୁଇପାର୍ଶ୍ୱରେ ଠିଆ ହୋଇ ସମତାଳରେ ଘଣ୍ଟ ବାଦନ କରିଥାନ୍ତି ।

ପ୍ରଥମେ ବଳଭଦ୍ରଙ୍କ ରଥଟଣା ଆରମ୍ଭ ହେଲା ପରେ ପରେ ଟଣାଯାଏ ସୁଭଦ୍ରାଙ୍କର ରଥ ଓ ଶେଷରେ ଟଣାଯାଏ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ।

ରଥଗୁଡ଼ିକ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ପହଞ୍ଚିବା ପରେ ରଥ ଉପରେ ବିଭିନ୍ନ ରୀତିନୀତି ପାଳନ କରାଯାଇ ମହାପ୍ରଭୁଙ୍କୁ ଶ୍ରୀଗୁଣ୍ଡିଚା ମନ୍ଦିର ପହଣ୍ଡି ବିଜେ କରାଯାଇଥାଏ । ତା'ପରେ ମହାପ୍ରଭୁଙ୍କୁ ବାହୁଡା ଦିନ ରଥରେ ବସାଇ ଶ୍ରୀମନ୍ଦିର ଅଭିମୁଖେ ବାହୁଡ଼ା ଯାତ୍ରା ପୂର୍ବବିଧି ଅନୁସାରେ କରାଯାଇ, ସୁନାବେଶ, ଅଧରପଣା ନୀତି ଉତ୍ସବ ପାଳନ କଲା ପରେ ଶ୍ରୀମନ୍ଦିରକୁ ପଟୁଆରରେ ନିଆଯାଇ ରଥଯାତ୍ରା କାର୍ଯ୍ୟ ସମାପ୍ତ ହୁଏ ।

ଶ୍ରଦ୍ଧା, ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଳବାଇ କଲୋନୀ, ଭୁବନେଶ୍ୱର–୧୭



# ତୁଳସୀ କ୍ଷେତ୍ରର ସିଦ୍ଧ ବଳଦେବ

ଡକ୍ଟର ବାସୁଦେବ ଦାସ

ପୁରୁଷୋତ୍ତମ ପୀଠ ପଞ୍ଚମ ଷଷ୍ଠ ଶତାବ୍ଦୀ ବେଳକୁ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲା ବୋଲି ପୂଜାରୀପାର୍ଲି ଶିଳାଲେଖରୁ ପ୍ରମାଣିତ ହୁଏ । ୬ଷ୍ଠ ଶତାବ୍ଦୀର ମଣିନାଗ ବଳଭଦ୍ର ଅଧିକ ଲୋକପ୍ରିୟ ଓ ପ୍ରସିଦ୍ଧ ହୋଇଥିବାରୁ ଶମ୍ଭୁଯଶ ରାଷ୍ଟ୍ରୀୟ ମର୍ଯ୍ୟାଦା ଦେଉଥିଲେ । ଏହି ମଣିନାଗ ବଳଭଦ୍ର ସଂପ୍ରତି ପୂଜା ପାଉଥିବା 'ମଣିଶୃଙ୍ଗ' ବଳଦେବ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ଦୁଇଟି ଅର୍ଥରେ ମଣି ଶବ୍ଦ ପ୍ରଯୁକ୍ତ ହୋଇଥିବାର ବିଶ୍ୱାସ: ମଣିନାଗ ପର୍ବତରେ ପୂଜା ପାଇଥିବା ବଳଭଦ୍ର ଅଥବା 'ମଣିଗର୍ଭିତ' ବଳଦେବଙ୍କୁ ସୂଚିତ କରାଯାଇଥାଏ । ଏଠାରେ ବୈଦିକ ଯୁଗର 'ହିରଣ୍ୟଗର୍ଭ' ଧାରଣାକୁ ମଧ୍ୟ ସ୍ୱୀକାର କରାଯାଇପାରେ । ତୁଳସୀକ୍ଷେତ୍ର କେନ୍ଦ୍ରାପଡ଼ାର ଅଧିଷ୍ଠାତା ଦେବତା ସିଦ୍ଧ ବଳଦେବ ସ୍ତୋତ୍ରରେ ତାହାକୁ 'ମଣିଶୃଙ୍ଗ ନିବାସାୟ ବଳଦେବାୟତେ ନମଃ' ସ୍ତୁତି କରାଯାଉଥିବାରୁ ମୁଦ୍‌ଗଳ ରାଜନ ଶମ୍ଭୁଯଶଙ୍କର ରାଷ୍ଟ୍ରଦେବତା ହିଁ ଏହି ବଳଭଦ୍ର ବା ବଳଦେବ ।



ପୁରାଣବର୍ଣ୍ଣିତ ଶ୍ରୀକୃଷ୍ଣ ଶ୍ରୀ ବଳଦେବ ସମର ଓ କୃଷିର ପ୍ରତୀକ ଭାବରେ ଭାରତବର୍ଷରେ 'ପଞ୍ଚ ଦୈବ୍ରଜମଣ୍ଡଳେ' କାଷ୍ଠ ନିର୍ମିତ ମୂର୍ତ୍ତି ଭାବେ ପୂଜା ପାଉଥିଲେ । ବଳଦେବଙ୍କର ଦେହାବସାନକୁ ଅଲୌକିକ ସହସ୍ରଶୀର୍ଷା ପୁରୁଷ ଅନନ୍ତ ବା ଶେଷ ନାଗର କଳ୍ପନା କରାଯାଇ ବଳଦେବ ଚେତନାକୁ ଅଧିକ ବିଶ୍ୱାସଯୋଗ୍ୟ କରାଯାଇଅଛି । ସହସ୍ର ଶୀର୍ଷା ନାଗ ବା ସପ୍ତଫଣାଙ୍କିତ ନାଗ ରୂପୀ ଅନନ୍ତ, ଯାହାଙ୍କର ଗୋଟିଏ ଫଣା ଉପରେ ବିଶ୍ୱର ସ୍ଥିତି ବୋଲି ବୈଷ୍ଣବ ଦର୍ଶନରେ ପ୍ରତିଫଳିତ ହୁଏ । ବିଶ୍ୱର ମାଧ୍ୟାକର୍ଷଣ ଶକ୍ତିକୁ ସହସ୍ରଶୀର୍ଷା ସଂକର୍ଷଣର ବୌଦ୍ଧିକ ବିଚାର ସ୍ୱୀକାର କରିନେଲା । ଏଠାରେ ଉଲ୍ଲେଖନୀୟ ଯେ 'ମଣିନାଗ ବଳଭଦ୍ର'ଙ୍କ ପୂର୍ବରୁ ନାଗବଂଶୀ ନରପତିମାନେ ନାଗ ବା ସର୍ପ ଦେବତାଙ୍କର ପୂଜା ଏହି ଶିବରୂପୀ ସଂକର୍ଷଣଙ୍କଠାରେ ସ୍ଥାପିତ ହୋଇଗଲା । ଏଣୁ ପଞ୍ଚରାତ୍ର, ଭାଗବତ ଧର୍ମ, ନାଗଧର୍ମ ଓ ସଂକର୍ଷଣ ବଳଦେବ ଏକ ସଂହତିର ରୂପ ଗ୍ରହଣ କରି ଭାରତବର୍ଷରେ ବିଭିନ୍ନ ସ୍ଥାନରେ ପୂଜା ପାଇଲେ । ଆଧୁନିକ କେନ୍ଦ୍ରାପଡ଼ା 'ବ୍ରହ୍ମକ୍ଷେତ୍ର' ଓ ବ୍ରାହ୍ମଣୀ ତୁଳସୀଙ୍କୁ ସମ୍ମିଳିତ କରି ପରବର୍ତ୍ତୀ ସମୟରେ 'ତୁଳସୀ କ୍ଷେତ୍ର' ହୋଇଅଛି । ସ୍ଥୂଳତଃ ଜଗନ୍ନାଥ ଚେତନାର ବିକାଶ ପୂର୍ବରୁ ବଳଦେବ ଚେତନାର ବିକାଶ ଘଟିଥିବାରୁ ବଳଦେବ 'ବଡ଼ଭାଇ' ମର୍ଯ୍ୟାଦା ଲାଭ କରିଅଛନ୍ତି ।

ଶ୍ରୀତୁଳସୀ କ୍ଷେତ୍ର ମାହାତ୍ମ୍ୟର ରଚୟିତା ୧୬ଶ ଶତାବ୍ଦୀର ବିପ୍ରଶ୍ରୀ ମାଧୁରୀ । ସେଥିରେ 'ବେଦ ସସ୍ରଯୁଗ'ରେ



ପୂଜା ପାଇବାର କଥା ଉଲ୍ଲେଖ ଅଛି । ବୈଦିକ ଯୁଗର ପ୍ରଭାବ ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପର୍ଯ୍ୟନ୍ତ ଥିଲା ବୋଲି ଆଲୋଚକମାନେ ପ୍ରତିପାଦିତ କରିଅଛନ୍ତି । ଏହାର ପରବର୍ତ୍ତୀ ଏକ ହଜାର ବର୍ଷ ଅର୍ଥାତ୍ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ବଳଦେବଙ୍କର ଆରାଧନାକୁ ସ୍ୱୀକାର କରାଯାଏ । ରାଜା ଶମ୍ଭୁଯଶଙ୍କ କାଳରେ ଏହି ଅଧିଷ୍ଠାତ୍ରି ଦେବତାଙ୍କର ଲୋକପ୍ରିୟତା ଓ ଆଧାତ୍ମିକ ଚେତନା ଅନନ୍ୟ ସାଧାରଣ ଥିବାରୁ ତାଙ୍କର 'ତୋଷଳୀ' ସାମ୍ରାଜ୍ୟରେ ବହୁ ସ୍ଥାନରେ ବଳଦେବଙ୍କର ପୂଜୋପାସନା ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମହାନଦୀର ଉତ୍ତରରେ ତୋଷଳୀ ରାଜ୍ୟ ହୋଇଥିବାରୁ ଅଧିକାଂଶ ସ୍ଥାନରେ ତ୍ରିମୂର୍ତ୍ତି (ବଳଦେବ, ଜଗନ୍ନାଥ ଓ ସୁଭଦ୍ରା) ପୂଜା ପାଉଥିଲେ ମଧ୍ୟ ସେଗୁଡ଼ିକ ବଳଦେବ ମନ୍ଦିର ନାମରେ ନାମିତ । ଏହିଭଳି ସାଲେପୁର, ଇନ୍ଦୁପୁର, ଢେଙ୍କାନାଳ, କେନ୍ଦୁଝର, କୁପାରୀ, ଔରଙ୍ଗବାଦ ଓ ମଂଙ୍କୁରିରୋଡ ଆଦି ସ୍ଥାନରେ ବଳଦେବଜୀଉଙ୍କର ପୂଜା ପ୍ରଚଳିତ । ମହାନଦୀର ଦକ୍ଷିଣ ଦିଗରେ ଅର୍ଥାତ୍ କଙ୍ଗୋଦ ରାଜ୍ୟର ରାଷ୍ଟ୍ରଦେବତା ଜଗନ୍ନାଥ ପୂଜା ପାଉଅଛନ୍ତି । ପ୍ରଥମେ ବଳଦେବ ଏକାକୀ ଏକମାତ୍ର ବିଗ୍ରହ ଶ୍ୱେତ ମାଧବ ବା ମୁଦ୍‌ଗଲ ମାଧବ ରୂପେ ପୂଜା ପାଉଥିଲେ । ପରେ ତାଙ୍କ ସହ ଶକ୍ତିରୂପା ରେବତୀଙ୍କୁ ସ୍ଥାପନ କରାଯାଇଥିଲା ।

ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବଳଦେବ ଏକ ମଣିମୟ ମଣ୍ଡପ 'ଚତୁରସ୍ର' ଉପରେ ପୂଜା ପାଉଥିଲେ । ଭୌମବଂଶୀ ରାଣୀ କଲାଣୀ ଦେବୀ ବଳଦେବଙ୍କ ନିମନ୍ତେ ବିଶାଳ ମଣ୍ଡପ ନିର୍ମାଣ କରାଇଥିଲେ । ଦେବଗଣ ତୁଳସୀକ୍ଷେତ୍ରରେ ଦେଖିଲେ ମନୋରମ ମଣ୍ଡପ । 'ଚତୁରସ୍ର' ମଧ୍ୟରେ ରତ୍ନବେଦୀ ସୁବର୍ଣ୍ଣସ୍ତମ୍ଭରେ ସଂଯୁକ୍ତ । ମଣ୍ଡପର ଦୈର୍ଘ୍ୟ ୨୫୦ହାତ ଏବଂ ପ୍ରସ୍ଥ ୨୫୦ ହାତ ଥିଲା । ଏହି ସ୍ଥଳୀ ବୈକୁଣ୍ଠ ସଦୃଶ ପବିତ୍ର ଓ ଶୋଭନୀୟ । ଦେବଗଣ ଅମର୍ତ୍ତ୍ୟ ଦୁର୍ଲଭ ଦୃଶ୍ୟ ସଂଦର୍ଶନ କରି ନିଜକୁ ଧନ୍ୟ ମଣିଥିଲେ । ସପ୍ତମ–ଅଷ୍ଟମ ଶତାବ୍ଦୀରେ ଏଠାରେ ବୌଦ୍ଧ ଓ ଜୈନ ଧର୍ମର ପ୍ରଭାବ ପଡ଼ିଥିଲା । ଭୌମ ରାଜବଂଶୀ ଶାସକଗଣ ବିଶେଷ ଭାବେ ବୌଦ୍ଧ ଭାବଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ ।

ଇନ୍ଦ୍ରଦ୍ୟୁମ୍ନ ମହାରାଜ ନୀଳାଚଳ ଧାମ ଯାତ୍ରା କରିବାର କାହାଣୀ ସର୍ବଜନବିଦିତ । ତାଙ୍କର ଏହି ଯାତ୍ରା ପଥର ଅନୁସଂଧାନ କଲେ, ମହାନଦୀର ଉତ୍ତର ପଟରେ ଆସି ଉଡ୍ର ରାଜାଙ୍କ ସହିତ ରାତ୍ର ତୃତୀୟ ପ୍ରହର ପର୍ଯ୍ୟନ୍ତ ବିଭିନ୍ନ ବିଷୟ ଆଲୋଚନା ପୂର୍ବକ ପରଦିନ ପ୍ରଭାତରେ 'ଧାତୁ କନ୍ଦର' ଅରଣ୍ୟରେ ମାଧବ–ପୂଜା ସଂପନ୍ନ କରି ମହାନଦୀ–ଚିତ୍ରୋତ୍ପଳା ପାରହୋଇ ନୀଳାଚଳ ଧାମକୁ ଯାତ୍ରା କରିଥିଲେ । ଯେଉଁ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ଅବସ୍ଥାନ କରିଥିଲେ ତାହା 'ଇନ୍ଦ୍ରପୁର' ବା ଇନ୍ଦୁପୁର ନାମରେ ଖ୍ୟାତ । ଯେଉଁ ମାଧବଙ୍କୁ ଇନ୍ଦ୍ରଦ୍ୟୁମ୍ନ ମହାରାଜ ପୂଜା କରିଥିଲେ ତାହା ହିଁ 'ଶ୍ୱେତମାଧବ' ବା ମୁଦ୍‌ଗଳ ମାଧବ । ଯଯାତିକେଶରୀଙ୍କୁ ନୀଳକଣ୍ଠ ଦାସ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ବିଚାର କରିଛନ୍ତି । ଏହି ପରିପ୍ରେକ୍ଷୀରେ ଯଯାତି କେଶରୀ ଏଠାରେ ମାଧବ ପୂଜା କରିବା ସହିତ ଛୋଟ ମନ୍ଦିରଟି ବଳଦେବଙ୍କ ପାଇଁ ଚତୁରସ୍ର ମଣ୍ଡପରେ ନିର୍ମାଣ କରାଇଥିଲେ ।

ପ୍ରାଚୀନ ଦେଉଳ ନିର୍ମାଣ– ଓଡ଼ିଶାର ଧାର୍ମିକ ଓ ସାଂସ୍କୃତିକ ଇତିହାସର ମହାମହିମ ସମ୍ରାଟ ତୃତୀୟ ଅନଙ୍ଗଭୀମ ଦେବ ଅବିସ୍ମରଣୀୟ । ଯଯାତି କେଶରୀଙ୍କ ନିର୍ମିତ ୩୮ ହାତ ଉଚ୍ଚତା ବିଶିଷ୍ଟ ମନ୍ଦିରକୁ ତୃତୀୟ ଅନଙ୍ଗଭୀମଦେବ ବିଶାଳ ଶ୍ରୀମନ୍ଦିରରେ ପରିଣତ କରିବା ଇତିହାସ କହେ । ବଳଦେବଙ୍କ ପୂଜାଉପାସନା କ୍ଷେତ୍ରରେ କୁହାଯାଏ ଯେ ମହାପ୍ରଭୁ ପାତାଳି ହୋଇଯାଇଥିଲେ । ପାତାଳି ହେବାର ସମୟ ସମ୍ଭବତଃ ନବମ ଶତାବ୍ଦୀ ପରେ ତୃତୀୟ ଅନଙ୍ଗ ଭୀମଦେବ ବିଶାଳ ଶ୍ରୀମନ୍ଦିରରେ ପରିଣତ କରିବା ଇତିହାସ କହେ । ବଳଦେବଙ୍କ ପୂଜା ଉପାସନା କ୍ଷେତ୍ରରେ କୁହାଯାଏ ଯେ ମହାପ୍ରଭୁ ପାତାଳି ହୋଇ ଯାଇଥିଲେ । ପାତାଳି ହେବାର ସମୟ ସମ୍ଭବତଃ ନବମ ଶତାବ୍ଦୀ ପରେ ତୃତୀୟ ଅନଙ୍ଗଭୀମ ବା ଗଙ୍ଗ ବଂଶ ରାଜତ୍ୱର ଅଭ୍ୟୁଦୟ ପର୍ଯ୍ୟନ୍ତ । ବୌଦ୍ଧ ଧର୍ମ ପ୍ରାଧନ୍ୟ ହେତୁ ତାହାକୁ ପାତାଳି



କରାଯାଇଥିଲା ଏବଂ ଆବିଷ୍କାର ସ୍ୱପ୍ନାଦିଷ୍ଟ ଛଳରେ ବ୍ୟକ୍ତ କରାଯାଇଅଛି । ଏହି ପ୍ରସଙ୍ଗ ରାଜାଙ୍କ କର୍ଣ୍ଣଗୋଚର କରାଯାଇ ମନ୍ଦିର ନିର୍ମାଣ ଓ ମୂର୍ତ୍ତି ପ୍ରତିଷ୍ଠା ହୋଇଥିଲା । ଏହି ମନ୍ଦିରରେ ରେବତୀ ଓ ବଳଦେବଙ୍କର ପୂଜା ହୋଇଥିଲା । ଷାଠିଏ ହାତ ଉଚ୍ଚତାର ଏକ ରେଖ ଦେଉଳି ନିର୍ମିତ ହୋଇଥିଲା, ଯାହାର ଏକ ମଡ଼େଲ ସଂପ୍ରତି ଇଛାପୁର ମନ୍ଦିରସ୍ଥ ବେଢ଼ାରେ ବିଦ୍ୟମାନ ।

ମୂଳ ମନ୍ଦିରର ବିକାଶ ଓ ଜଗନ୍ନାଥ ମୂର୍ତ୍ତି– ଶ୍ରୀବଳଦେବଙ୍କର ଗୌରବମୟ ଅଧ୍ୟାୟ ବିକଶିତ ହୋଇଥିଲା ଭକ୍ତିଯୁଗ ବା ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ । ଅତିବଡ଼ୀ ଜଗନ୍ନାଥ ଦାସ ଏହି କ୍ଷେତ୍ରରେ ଅଧିକାଂଶ ସମୟ ବିତାଉଥିଲେ । ରେବତୀ ଓ ପୂଜାରିଣୀ ତୁଳସୀଙ୍କ ପରିବର୍ତ୍ତେ ମନ୍ଦିରରେ ବିଜେ କଲେ ଜଗନ୍ନାଥଙ୍କ ଶ୍ରୀମୂର୍ତ୍ତି । ଏହି ମୂର୍ତ୍ତି ଓ ସୁଭଦ୍ରା ଭାଗବତକାର ଜଗନ୍ନାଥ ଦାସ ଓ ଅଚ୍ୟୁତାନନ୍ଦ ଦାସଙ୍କ ପରାମର୍ଶ ଓ ତତ୍ତ୍ୱାବଧାନରେ ନିର୍ମିତ ତଥା ପ୍ରତିଷ୍ଠା ହୋଇଥିଲା । 'ତୁଳସୀ'ଙ୍କୁ ବୈଷ୍ଣବ ଭାବାଦର୍ଶରେ ପ୍ରାଧାନ୍ୟ ଦିଆଯାଇଥିଲେ ହେଁ, ଦେଉଳ ମଧ୍ୟସ୍ଥ ତୁଳସୀ ସୁଭଦ୍ରାରେ ପରିଣତ ହେବା ଏବଂ ତୁଳସୀ 'ବାଣୀ' ରୂପୀ ହୋଇ ଅନତି ଦୂରରେ ପୂଜା ପାଇଲେ । ଶ୍ରୀଚୈତନ୍ୟ ପ୍ରତିବର୍ଷ ତୁଳସୀ କ୍ଷେତ୍ରକୁ ଆସି ସଂକୀର୍ତ୍ତନ ରସ ପ୍ରସାରଣ ପୂର୍ବକ ସ୍ନାନ ପୂର୍ଣ୍ଣିମା ବେଳକୁ ଶ୍ରୀକ୍ଷେତ୍ର ପ୍ରତ୍ୟାବର୍ତ୍ତନ କରୁଥିଲେ । ନବମ ଦଶମ ଶତାବ୍ଦୀର ହରିହର ବିଚାରଦୃଷ୍ଟେ ମନ୍ଦିରରେ ବିଲ୍ୱପତ୍ର ଓ ତୁଳସୀ ଜଳର ପ୍ରବର୍ତ୍ତନ କରାଯାଇଥିଲା । ଉଲ୍ଲେଖନୀୟ ଯେ ଜଗନ୍ନାଥ ଶ୍ରୀମୂର୍ତ୍ତି ଶ୍ରୀକ୍ଷେତ୍ର ସଦୃଶ ଚକାଡୋଳା ନହୋଇ ବଙ୍କାଡୋଳା ବା ପୁଣ୍ଡରୀକାକ୍ଷ ହୋଇଅଛନ୍ତି ।

ବିଗ୍ରହ ଓ ପୂଜା ସଂପର୍କରେ ସେବକ ସ୍ୱର୍ଗତ ନାରାୟଣ ମେକାପ ଏକ ପାଣ୍ଡୁଲିପିରେ ଉଲ୍ଲେଖ କରିଛନ୍ତି ଯେ ଆଜିକାଲି ପରି ବିଗ୍ରହ ବୃହଦାକାର ନଥିଲେ । ଭାଗବତ ରଚୟିତା ଭକ୍ତ କବି ଜଗନ୍ନାଥ ଦାସଙ୍କ ସମୟରେ ପରିବର୍ତ୍ତନ ହୋଇଥିଲା । ଏହି ସମୟରେ ଯାତ୍ରା ସଙ୍ଗତ ନଥିଲା କିନ୍ତୁ ନୀତିଖଞ୍ଜା ପ୍ରଚୁର ଥିଲା । ସେବା ନୀତି ମହାଜନ ପାଣିଗ୍ରାହୀ ସୁଚାରୂପେ ଚଳାଉଥିଲେ । ପୂଜକ ଥିଲେ ପତ୍ରୀ, ଏହା ପୂର୍ବରୁ ସୂପକାର କାନ୍ୟକୁବ୍‌ଜରୁ ଅଣାଯାଇ କାର୍ଯ୍ୟ କରୁଥିଲେ । ଶ୍ରୀଜୀଉଙ୍କର ଯାବତୀୟ ପଦାର୍ଥ ବସ୍ତ୍ର ଗୋଡ୍ରୀୟଙ୍କ ହସ୍ତରେ ନ୍ୟସ୍ତ ଥିଲା । ଏମାନେ ମଣିମୁକ୍ତା ରତ୍ନାଦିଠାରୁ ଶ୍ରୀଜୀଉଙ୍କ ସାମାନ୍ୟ ବସ୍ତ୍ର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟର ଭାର ନେଇ ଭୋଗ କରୁଥିଲେ । ଜଗନ୍ନାଥ ଦାସ ଶ୍ରୀଜୀଉଙ୍କ ସେବକମାନଙ୍କୁ ସ୍ୱ ଅତିବଡ଼ୀ ଧର୍ମରେ ଦୀକ୍ଷିତ କରାଇ ସେବକଙ୍କୁ ଛତିଶା ନିଯୋଗୀରେ ବିଭକ୍ତ କରାଇ ସେବାର ଶୃଙ୍ଖଳା କରାଇ ଦେଲେ । ଠାକୁର ରାଜା, ପରିଛା, ସୁଆର, ମେକାପ ପ୍ରଭୃତି ବିଭାଗ ଯୋଗାଇବାକୁ ହୋଇଥିଲା ।

କଳାପାହାଡ– ହିନ୍ଦୁ ବିଦ୍ୱେଷୀ କଳାପାହାଡ ତତ୍‌କାଳ ଆକ୍ରମଣ କରି ବହୁ ଦେବ ମନ୍ଦିର ଧ୍ୱଂସ ଓ ଲୁଣ୍ଠନ କରିଥିଲେ । କେନ୍ଦ୍ରାପଡାସ୍ଥ ବଳଦେବଙ୍କୁ ଆକ୍ରମଣ କରି ସୁନା, ହୀରା ଓ ରତ୍ନାଦି ଲୁଟି ନେଇଥିଲେ ମାତ୍ର ମନ୍ଦିର ଧ୍ୱଂସ କରି ପାରି ନଥିଲେ । ପୂଜକ ଓ ସେବାୟତମାନେ ଦିଅଁଙ୍କୁ ସ୍ଥାନାନ୍ତର କରି ଝାଡ଼ ଜଙ୍ଗଲରେ ଲୁଚାଇଥିଲେ । କଳାପାହାଡ଼ ଯିବା ପରେ ପୁନଶ୍ଚ ମନ୍ଦିରରେ ପ୍ରତିଷ୍ଠା ପାଇଥିଲେ ଶ୍ରୀବଳଦେବ ।

ଇଛାପୁର ଇଛାବିହାରୀ– ଲୁଣାନଦୀ ତଟରୁ ଶ୍ରୀସିଦ୍ଧ ବଳଦେବଙ୍କୁ କୁଜଙ୍ଗ ରାଜା ନେଇଯିବାର ଉଦ୍ୟମ କରିଥିଲେ । କିମ୍ବଦନ୍ତୀ ଅଛି– ମଧୁସାଗରରେ ପୋତ ଅଟକି ରହିଲା । ରାଜାଦେଶ ସତ୍ତ୍ୱେ ନାବିକ ନୌକା ଚଳାଇ ପାରିଲେ ନାହିଁ । ଯେଉଁଠି ଆଜି ଶ୍ରୀଜୀଉ ବିରାଜମାନ, ତାହା 'ଛେଦରା' ଭୂମି । ଛେଦରା ରାଜାଙ୍କୁ ସ୍ୱପ୍ନାଦେଶ ହୋଇ ମନ୍ଦିର ନିର୍ମାଣ କରିବା ସହିତ ଭୂସଂପତ୍ତି କିଛି ଖଞ୍ଜା କରିଥିଲେ । ଛେଦରା ରାଜାଙ୍କ ସହଯୋଗ ଓ ସଦିଚ୍ଛାରେ ପ୍ରଥମ ଅର୍ଥାତ୍ ଆଜିର ବାଟଦେଉଳ ନିର୍ମାଣ କରାଯାଇ ପୂଜାର୍ଚ୍ଚନା ହୋଇଥିଲା । 'ଇଛାପୁର' ବୋଲି ଏକ ମୌଜା ନଥିଲା । ତାହା ଶାମଗୁଡିଆ ଗ୍ରାମର ଅନ୍ତର୍ଭୁକ୍ତ । ଶ୍ରଦ୍ଧାଳୁ ଭକ୍ତମାନଙ୍କର ବିଶ୍ୱାସ ସେ ମହାପ୍ରଭୁ ଇଛାକରି ଏଠାରେ ରହିବାରୁ ସେ ଇଛା ବିହାରୀ ଏବଂ ତାଙ୍କର ବିଜେସ୍ଥଳୀ



'ଇଛାପୁର' । ଛେଦରା ରାଜା ଠାକୁର ବେଢ଼ା ନିର୍ମାଣାଦି କେତେକ କାର୍ଯ୍ୟ ଓ ନୀତି ଚଳାଇ ବଂଶାନୁକ୍ରମେ ସୁରୁଖୁରୁରେ ନୀତି ଚଳାଇଥିଲେ ।

ଠାକୁର ରାଜା – ଚତୁର୍ଦ୍ଦଶ ଶତାବ୍ଦୀରେ ଆଳି ରାଜପୁତ୍ର ଶୈଳନାଥ ସନ୍ନ୍ୟାସୀରୁ ସଂସାର ଗ୍ରହଣ କରିଥିଲେ । ସେହି ସମୟରେ ଛେଦରା ରାଜବଂଶର ଉତ୍ପତ୍ତି । କୁଜଙ୍ଗ ଆଳି ରାଜବଂଶର ବୈବାହିକ ସଂପର୍କ ସ୍ଥାପନ ପରେ ଛେଦରା ରାଜା ରଥଯାତ୍ରାରେ ଛେରାପହଁରା କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ଏହି ବଂଶର ଦୁର୍ଗା ପ୍ରସାଦ ନରେନ୍ଦ୍ର ମହାପାତ୍ର ଦୁଇଟି କନ୍ୟା ସଂତାନ ଛାଡ଼ି ପରଲୋକ ଗମନ କରିବା ପରେ ତାଙ୍କର ରାଣୀ ପାଟ ମହାଦେଈ କନ୍ୟା ବିବାହ ପାଇଁ ବଡ଼କୋଠା ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କୁ ତାଙ୍କର ରାଜସ୍ୱତ୍ୱ ବିକ୍ରୟ କରିଦେବା ପରେ ନରେନ୍ଦ୍ର ଓ ପରବର୍ତ୍ତୀ କାଳରେ ବଳରାମ ଭ୍ରମରବର ଆଦି ପୁରୁଷାନୁକ୍ରମେ ଠାକୁର ରାଜାର ମାନ୍ୟତା ଲାଭ କରିଥିଲେ । ଏହି ବଂଶର ଭ୍ରାତୃତ୍ୱ ବିବାଦ ହେବାରୁ ଉକ୍ତ ସେବା ତାଙ୍କ କୁଳ ପୁରୋହିତ ଗୋସାଇଁ ବଂଶକୁ ଅର୍ପଣ କରିଥିଲେ । ସେବେଠାରୁ ଗୋସାଇଁ ବଂଶ ଛେରାପହଁରା କରନ୍ତି ।

୬ଷ୍ଠ ଶତାବ୍ଦୀର ରାଜା ବସୁକଳ୍ପ କେଶରୀଙ୍କ ପତ୍ନୀ ତୁଳସୀ ନାମରେ ତୋଷଳୀ ରାଜ୍ୟ ତୁଳସୀ କ୍ଷେତ୍ର ହେବା ବିଶ୍ୱାସଯୋଗ୍ୟ । ଶ୍ରୀକ୍ଷେତ୍ର ଲକ୍ଷ୍ମୀଙ୍କର କ୍ଷେତ୍ର ହେବାବେଳେ ଶ୍ରୀତୁଳସୀ କ୍ଷେତ୍ର ଅତୁଳନୀୟ ଧାର୍ମିକ ଓ ଐତିହାସିକ ବିଭବରେ ପରିପୂର୍ଣ୍ଣ । ୧୯୪୨ ପରେ ଟ୍ରଷ୍ଟି ଶ୍ରୀଧର ସାହୁଙ୍କ ଦ୍ୱାରା ଅନେକ କିଛି ଉନ୍ନତି ସାଧିତ ହୋଇଥିଲା । ୧୯୮୦ ପରେ ଆନନ୍ଦ ବଜାର କୋଠା ନିର୍ମାଣ ପାର୍ଶ୍ୱ ମନ୍ଦିର କସ୍ତୁରୀ ଚରଣ ଦାଶ କରାଇଥିଲେ ଓ ଜନ ପ୍ରତିନିଧିମାନଙ୍କ ଜରିଆରେ ରଥ ଦାଣ୍ଡ, ରାସ୍ତା ଓ ଚନ୍ଦନ ପୋଖରୀର ଉନ୍ନତି ହୋଇପାରିଅଛି । ଏହି କ୍ଷେତ୍ରର ଅଂଶବିଶେଷ ବହୁ ଦେବାଦେବୀ ଓ ତୀର୍ଥ ରହିଅଛି, ଯାହାର ଧାର୍ମିକ ଓ ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ବେଶ୍ ଉପଲବ୍ଧ । ଇନ୍ଦୁପୁର ବଳଦେବ, ଲଛମନଜୀ, ସଖୀବଟ, ସିଦ୍ଧଦାସ ପୀଠ କୁହୁଡି, କିଆରବାଙ୍କ ମଠ, ବାୟାମଠ, ହନୁମାନ ମଠ, ସିଦ୍ଧ ସରୋବର ଓ ଗୋବିନ୍ଦଜୀଉ ଆଦି ବଳଦେବ ପୀଠର ଅବିଚ୍ଛେଦ୍ୟ ଅଙ୍ଗ ।

ଗବେଷକ
ଜୟୀପୁରା, ତୁଳସୀ କ୍ଷେତ୍ର, କେନ୍ଦ୍ରାପଡା–୭୫୪୨୧୧

# ଜଗନ୍ନାଥ

ମଧୁସୂଦନ ଦାଶ



ସବୁ ବାଲି ହେଉ, ଶରଧାବାଲି
ସବୁ କ୍ଷେତ୍ର ହେଉ ତୋ ଶ୍ରୀକ୍ଷେତ୍ର
ସବୁ ଦାଣ୍ଡ ହେଉ ତୋ ବଡଦାଣ୍ଡ
ସବୁ ଯାତ ହେଉ ଗୁଣ୍ଡିଚା ଯାତ

ଏ ମଣିଷ ଭିତରେ
ଉଡୁଥାଉ ଖାଲି
ଶାନ୍ତି ମୈତ୍ରୀର
ପତିତପାବନ ନେତ ।

ଉପ ଜିଲ୍ଲାପାଳ, ପୁରୀ



# ଓଡ଼ିଶାରେ ବୈଷ୍ଣବ ଧର୍ମ ଓ ଭଗବାନ ପୁରୁଷୋତ୍ତମ ନରସିଂହ

ଡକ୍ଟର ଭାରତୀ ପାଲ

ଓଡ଼ିଶାର ଧାର୍ମିକ ଚେତନାକୁ ଅଧିକ ଋଦ୍ଧିମନ୍ତ କରିଅଛି ଦ୍ୱାଦଶ ଶତାବ୍ଦୀରେ ପୁରୀଠାରେ ସ୍ଥାପିତ ହୋଇଥିବା ପ୍ରସିଦ୍ଧ ଏବଂ ବିଶାଳକାୟ ପୁରୁଷୋତ୍ତମ - ଶ୍ରୀଜଗନ୍ନାଥ ମନ୍ଦିର । ଏହି ମନ୍ଦିରର ନିର୍ମାତା ଯଥା ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବ ଉତ୍କଳ ଅଧିକାର କରି ତାଙ୍କର ରାଜଧାନୀକୁ କଳିଙ୍ଗ ନଗରରୁ କଟକକୁ ଉଠାଇ ଆଣିଥିଲେ । ରାଜା ଚୋଡ଼ଗଙ୍ଗ ତାଙ୍କର ପୂର୍ବ ପୁରୁଷମାନଙ୍କ ପରି ପରମ ଶିବଭକ୍ତ ଥିଲେ, କିନ୍ତୁ ପରବର୍ତ୍ତୀ ସମୟରେ ସେ ନିଜର ମତ ପରିବର୍ତ୍ତନ କରି ନିଜକୁ ପରମ ମହେଶ୍ୱର, ପରମ ବୈଷ୍ଣବ ଏବଂ ପରମ ବ୍ରାହ୍ମଣ୍ୟ ରୂପେ ପରିଚିତ କରାଇଥିବାର ଖ୍ରୀଷ୍ଟାବ୍ଦ ୧୧୧୨ରେ ପ୍ରଦତ୍ତ କୋର୍ଣ୍ଣ ତାମ୍ର ଫଳକରୁ ସୂଚନା ମିଳେ । ଏହି ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଓ ପ୍ରଚାର ବହୁଳ ଭାବରେ ବୃଦ୍ଧି ପାଇଥିଲା ଏବଂ ପୁରୁଷୋତ୍ତମ ଜଗନ୍ନାଥ ଧାମ ପୂର୍ବ ଭାରତରେ ଏକ ପ୍ରସିଦ୍ଧ ଧାର୍ମିକ କ୍ଷେତ୍ର ଭାବରେ ପରିଗଣିତ ହୋଇ ଆସିଅଛି ।



ବିଶ୍ୱ ବ୍ରହ୍ମାଣ୍ଡର ପରମ ଆରାଧ୍ୟ ଦେବତା ପ୍ରଭୁ ପୁରୁଷୋତ୍ତମ ସମୟାନୁକ୍ରମେ ବିଭିନ୍ନ ଚେତନା ମାଧ୍ୟମରେ ବିଭିନ୍ନ ନାମରେ ଏବଂ ରୂପରେ ପୂଜା ପାଇ ଆସୁଛନ୍ତି । ଶୈବ ଧର୍ମ ପରି ବୈଷ୍ଣବ ଧର୍ମ ମଧ୍ୟ ବହୁ ପ୍ରାଚୀନ ଅଟେ । ଐତିହାସିକ ଦୃଷ୍ଟିରୁ ଅବଲୋକନ କଲେ ଜଣାଯାଏ ଗଙ୍ଗ ବଂଶର ବହୁ ପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲା । ଖ୍ରୀଷ୍ଟାବ୍ଦ ୪ର୍ଥ ଶତାବ୍ଦୀରେ ଗୁପ୍ତ ବଂଶର ସମ୍ରାଟ୍ ସମୁଦ୍ର ଗୁପ୍ତଙ୍କର ଦକ୍ଷିଣ ଭାରତ ଅଭିଯାନ ପରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଉତ୍ପତ୍ତି ହୋଇଥିଲା ।

ପରବର୍ତ୍ତୀ ସମୟରେ ଖ୍ରୀଷ୍ଟାବ୍ଦ ପଞ୍ଚମ ଶତାବ୍ଦୀରେ ଓଡ଼ିଶାର କଳାହାଣ୍ଡି ଏବଂ କୋରାପୁଟ ଜିଲ୍ଲାରେ ରାଜୁତି କରୁଥିବା ନଳବଂଶର ରାଜାମାନେ ପୃଷ୍ଠପୋଷକତା କରିଥିଲେ ଏବଂ ଭଗବାନ ବିଷ୍ଣୁଙ୍କର ଏକ ପାଦଚିହ୍ନ ପ୍ରତିଷ୍ଠା କରିବା ସଙ୍ଗେ 'ରାଜୀବ ଲୋଚନ' ନାମରେ ମନ୍ଦିର ପ୍ରତିଷ୍ଠା କରୁଥିବାର ବିଭିନ୍ନ ଶିଳାଲେଖରୁ ସୂଚନା ମିଳେ । ଏହି ବଂଶର ଶିଳାଲେଖରୁ ମଧ୍ୟ ଭଗବାନ ବିଷ୍ଣୁଙ୍କର 'ବାମନ' ଅବତାର ସମ୍ବନ୍ଧରେ ସୂଚନା ମିଳେ । ସେହିପରି ଭାବରେ ଦକ୍ଷିଣ କୋଶଳ ରାଜ୍ୟ ଯଥା ସମ୍ବଲପୁର, ବଲାଙ୍ଗିର, ସୋନପୁର ଏବଂ କଳାହାଣ୍ଡି ଜିଲ୍ଲାରେ ରାଜୁତି କରୁଥିବା ଶରଭ ପୁରୀୟ ବଂଶର ଶାସକମାନେ ମଧ୍ୟ 'ପରମ ଭଗବତ' ଉପାଧି ଧାରଣା କରିଥିଲେ ଏବଂ ସେମାନଙ୍କର ପ୍ରଦତ୍ତ ସୁବର୍ଣ୍ଣ ମୁଦ୍ରାରେ ଗରୁଡ଼ ଦେବତାଙ୍କର ପ୍ରତିଚ୍ଛବି ରହିଅଛି । ଏହି ବଂଶର ଶାସକ ପ୍ରସନ୍ନ ମାତ୍ରାଙ୍କର



ସୁବର୍ଣ୍ଣ ମୁଦ୍ରାରେ ଗରୁଡ଼ ଦେବତା ତାଙ୍କର ଦୁଇ ହାତରେ ଶଙ୍ଖ ଓ ଚକ୍ର ଧାରଣ କରିଥିବାର ପ୍ରତିଛବି ଦେଖିବାକୁ ମିଳେ।

ଶରଭ ପୁରୀୟଙ୍କ ପରେ ପାଣ୍ଡୁବଂଶୀ ରାଜାମାନେ ଦକ୍ଷିଣ କୋଶଳରେ ଶାସନ କରୁଥିଲେ । ଏହି ବଂଶର ଶାସକ ତିବର ଦେବ 'ପରମ ବୈଷ୍ଣବ' ପଦବୀ ଧାରଣ କରିଥିଲେ ଏବଂ ଏହି ଧର୍ମର ପ୍ରସାର ଓ ପ୍ରଚାର ଘଟିଥିଲା । ହର୍ଷଗୁପ୍ତ ଏବଂ ତାଙ୍କ ରାଣୀ ବାସୁଟାଙ୍କ ସମୟରେ ରାଣୀ ବାସୁଟାଙ୍କର ଅଷ୍ଟମ ଶତାବ୍ଦୀ ଶିର୍‌ପୁରର ଲକ୍ଷ୍ମଣ ମନ୍ଦିର ଅଭିଲେଖରେ ପ୍ରଥମେ ଭଗବାନ ପୁରୁଷୋତ୍ତମଙ୍କର ପ୍ରଶସ୍ତି ବର୍ଣ୍ଣନା କରାଯାଇଅଛି ଏବଂ ଏହି ଶିଳାଲେଖର ପ୍ରଥମ ତିନିଟି ପଦରେ ବିଷ୍ଣୁଙ୍କର ନୃସିଂହ ବା ନରସିଂହ ଅବତାରର ସମ୍ବନ୍ଧରେ ବର୍ଣ୍ଣନା କରାଯାଇଅଛି ଏବଂ ପୁରୁଷୋତ୍ତମଙ୍କୁ ନରସିଂହ ନାମରେ ଅଭିହିତ କରାଯାଇଅଛି । ଯଦିଓ ଭଗବାନ ପୁରୁଷୋତ୍ତମ – ଜଗନ୍ନାଥ ବିଷ୍ଣୁ ନାମରେ ଗୁପ୍ତ ସମୟର ପୂଜା ପାଇଁ ଆସୁଛନ୍ତି, ଦକ୍ଷିଣ କୋଶଳର ପ୍ରାଚୀନ ରାଜଧାନୀ ମହାନଦୀ କୂଳସ୍ଥିତ ଶିର୍‌ପୁର ଅଭିଲେଖରେ ପ୍ରଥମ କରି ପୁରୁଷୋତ୍ତମ–ନରସିଂହଙ୍କ ପ୍ରଶସ୍ତି ବର୍ଣ୍ଣନା କରାଯାଇଅଛି। ନରସିଂହ ବହୁ ପ୍ରାଚୀନ କାଳରୁ ଜଗନ୍ନାଥଙ୍କ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ବର୍ତ୍ତମାନ ମଧ୍ୟ ଭଗବାନ ନରସିଂହ ନବକଳେବର ସମୟରେ ପ୍ରମୁଖ ସ୍ଥାନ ଗ୍ରହଣ କରୁଛନ୍ତି, ଅଣବସର ସମୟରେ ଯେତେବେଳେ ପ୍ରଭୁ ବଳଭଦ୍ର, ଜଗନ୍ନାଥ ଏବଂ ସୁଭଦ୍ରା ଅସୁସ୍ଥ ହୋଇପଡ଼ନ୍ତି ସେହି ସମୟରେ ଭକ୍ତମାନେ ନରସିଂହଙ୍କର ପୂଜାର୍ଚ୍ଚନା କରିଥାନ୍ତି। ନରସିଂହ ପୁରୀ ଜଗନ୍ନାଥ ମନ୍ଦିରର ମୁଖ୍ୟ ଦେବତା ଅଟନ୍ତି। ମନ୍ଦିରର ରୋଷେଇଠାରୁ ଆରମ୍ଭ କରି ସମସ୍ତ ବିଧି ବା ପୂଜା ପ୍ରଥମେ ନରସିଂହଙ୍କୁ ସମର୍ପଣ କରାଯାଏ । ନବକଳେବର ସମୟରେ ଦାରୁ ଚିହ୍ନଟଠାରୁ ଆରମ୍ଭ କରି ଦାରୁ ଛେଦନ ଓ ମୂର୍ତ୍ତି ନିର୍ମାଣ ପର୍ଯ୍ୟନ୍ତ ସମସ୍ତ ପୂଜାବିଧି ନୃସିଂହ ମନ୍ତ୍ରରେ ସମ୍ପାଦିତ ହୋଇଥାଏ। କିମ୍ବଦନ୍ତୀ ଅନୁସାରେ ଅବନ୍ତୀ ରାଜା ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ନବକଳେବର ମୂର୍ତ୍ତି ସ୍ଥାପନ କରିବାକୁ ଯାଆନ୍ତି ସେତେବେଳେ ସେହି ସ୍ଥାନରେ ନରସିଂହଙ୍କୁ ପ୍ରଥମେ ପ୍ରାର୍ଥନା କରନ୍ତି ଏବଂ ବ୍ରହ୍ମାଙ୍କ ଆଦେଶ ଅନୁଯାୟୀ ଦାରୁଦେବତାଙ୍କୁ ନୃସିଂହ ମନ୍ତ୍ରରେ ପୂଜାର୍ଚ୍ଚନା କରିଥିଲେ।

ଶିର୍‌ପୁର ଶିଳାଲେଖ ବ୍ୟତୀତ ନବମ ଶତାବ୍ଦୀର ନାରାୟଣ ପାଳ ଦେବ ସମୟରେ ଗୟା ଶିଳାଲେଖରେ ମଧ୍ୟ ପ୍ରଭୁ ପୁରୁଷୋତ୍ତମ ଜଗନ୍ନାଥଙ୍କର ବହୁଳ ପ୍ରଶଂସା ପରିଲକ୍ଷିତ ହେବା ସହ ରାକ୍ଷସ ରାଜାଙ୍କୁ ନଖରେ ବିଦାରୀ ଥିବା ପ୍ରଭୁ ନରସିଂହଙ୍କର ବର୍ଣ୍ଣନା ମଧ୍ୟ ରହିଅଛି। ସେହିପରି ଖଜୁରାହ ଶିଳାଲେଖରେ ଏକ ନୂତନ ଶବ୍ଦର ଉଲ୍ଲେଖିତ ହୋଇଅଛି, ଯଥା– ପୁରୁଷସିଂହ, ଏହା ସାଧାରଣତଃ ଭଗବାନ ପୁରୁଷୋତ୍ତମ– ନରସିଂହ ସମ୍ବନ୍ଧରେ ହିଁ ବର୍ଣ୍ଣନା କରାଯାଇଅଛି।

ଏହିସବୁ ବିଭିନ୍ନ ଐତିହାସିକ ତଥ୍ୟରୁ ସୂଚନା ମିଳେ ଯେ ପୁରୁଷୋତ୍ତମ ଜଗନ୍ନାଥଙ୍କର ବହୁ ପୂର୍ବରୁ ନରସିଂହଙ୍କର ପୂଜାର୍ଚ୍ଚନା ହୋଇଆସୁଅଛି ଏବଂ ନବକଳେବର ସମ୍ବନ୍ଧରେ ଏହି ଦେବତା ପ୍ରମୁଖ ସ୍ଥାନ ଗ୍ରହଣ କରିଆସୁଛନ୍ତି। ସେହିପରି ଭାବରେ ପୁରୀଠାରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ପୂର୍ବରୁ ଭଗବାନ ନରସିଂହଙ୍କର ଏକ ମନ୍ଦିର ପ୍ରତିଷ୍ଠା ହୋଇଥିଲା। ଏହାର ପ୍ରକୃଷ୍ଟ ଉଦାହରଣ ମନ୍ଦିରର ଦ୍ୱାର ବନ୍ଧରେ ଥିବା ଚୋଡ଼ଗଙ୍ଗ ଦେବଙ୍କର ଏକ ଶିଳାଲେଖ, ଯେଉଁଥିରେ ରାଜା ପୁରୁଷୋତ୍ତମଙ୍କୁ ଏକ ଅଖଣ୍ଡଦୀପ ପ୍ରଦାନ କରିବାର ବର୍ଣ୍ଣନା କରାଯାଇଅଛି।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର





# ରସଗୋଲା: ନୀଳାଦ୍ରି ବିଜେର ନୈବେଦ୍ୟ

ଅସିତ ମହାନ୍ତି

ରସଗୋଲା ଓଡ଼ିଶାର। ଏଥିରେ କୌଣସି ସନ୍ଦେହ ନାହିଁ। ଯଥେଷ୍ଟ ତଥ୍ୟ, ପ୍ରମାଣ ବି ଏ ବାବଦରେ ରହିଛି। ଶ୍ରୀଜଗନ୍ନାଥ ମନ୍ଦିରର ପାରମ୍ପରିକ ଭୋଗ ଭିତରେ ମଧ୍ୟ ଏହା ସ୍ଥାନ ପାଇଛି। ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଅନ୍ତିମପର୍ବ 'ନୀଳାଦ୍ରି ବିଜେ'ରେ ଏହା ପାରମ୍ପରିକ ଭାବରେ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଦେବୀ ଲକ୍ଷ୍ମୀଙ୍କୁ ଅର୍ପିତ ହୋଇଥାଏ। ଅଥଚ ଦୁର୍ଭାଗ୍ୟର ବିଷୟ



ଏହି ଯେ ବହୁ ଫମ୍ପା ଓ ମନଗଢ଼ା ତଥ୍ୟକୁ ନେଇ ପଡ଼ୋଶୀ ପଶ୍ଚିମବଙ୍ଗ 'ରସଗୋଲା' ନାମକ ମିଠା ଓ 'ରସଗୋଲା' ଶବ୍ଦକୁ ନିଜର ବୋଲି ଦାବି କରୁଛି । ଶ୍ରୀମନ୍ଦିରର ଏହି 'ନୀଳାଦ୍ରି ବିଜେ'ର ନୈବେଦ୍ୟ ତାଙ୍କ ପାଇଁ କେବଳ ଏକ ପଣ।

ରସଗୋଲା ଗୋଟିଏ ଛୋଟ ଆଉ ନରମ ମିଠା । ଆକାର ବାଟୁଳିଠାରୁ ଟିକିଏ ବଡ଼ ଅଥଚ ତାହାକୁ ନେଇ ଏକ 'ମିଠାଯୁଦ୍ଧ' ଜାରି ରହିଛି ଦୁଇ ପଡ଼ୋଶୀ ରାଜ୍ୟ ବଙ୍ଗଳା ଓ ଓଡ଼ିଶା ମଧ୍ୟରେ। ୨୦୧୫ ମସିହା ଜୁଲାଇ ମାସ ୩୦ ତାରିଖରେ ଓଡ଼ିଶାରେ 'ରସଗୋଲା ଦିବସ' ପାଳନ କରି ବଙ୍ଗଳାକୁ ଏକ ଜୋରଦାର ଜବାବ ଦେଇଛି ଓଡ଼ିଶା। 'ରସଗୋଲା ଓଡ଼ିଶାର' ଓ 'ରସଗୋଲା ଶ୍ରୀଜଗନ୍ନାଥ ଓ ଦେବୀ ଲକ୍ଷ୍ମୀଙ୍କ ନୀଳାଦ୍ରି ବିଜେ' ନୀତିର ବୋଲି କହିବାକୁ ହେଲେ, ବଙ୍ଗଳାର ଦାବିକୁ ତଥ୍ୟ ଓ ଯୁକ୍ତି ବଳରେ ଖଣ୍ଡନ କରିବା ସହିତ ଓଡ଼ିଶାର ଦାବିକୁ ପ୍ରାମାଣିକ ଭାବରେ ସାବ୍ୟସ୍ତ କରିବାକୁ ପଡ଼ିବ।

ଗତ ୨୦୧୫ ମସିହାର ମଧ୍ୟଭାଗରେ ରାଜ୍ୟ ସରକାରଙ୍କ ପକ୍ଷରୁ ପାହାଳ ରସଗୋଲା ପାଇଁ ଜି.ଆଇ. (ଭୌଗୋଳିକ ଉପଦର୍ଶନ) ମାନ୍ୟତା ହାସଲ ଉଦ୍ୟମ ଆରମ୍ଭ ହୋଇଥିଲା। ଏହି ମାନ୍ୟତାର ବିଶେଷତ୍ୱ ହେଉଛି- କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ ଉଦ୍ଭବ ହେଉଥିବା ଉତ୍ପାଦନ ବା ସାମଗ୍ରୀକୁ ଏହାଦ୍ୱାରା ସ୍ୱତନ୍ତ୍ର ଭାବରେ ଚିହ୍ନିତ କରାଯାଏ। ୨୦୦୫-୦୬ରେ ଓଡ଼ିଶାର କୋଟପାଡ଼ ହସ୍ତତନ୍ତ ଲୁଗା ଓ ଇକତ, ୨୦୦୮-୦୯ରେ କୋଣାର୍କର ପଥର ଖୋଦେଇ, ପଟ୍ଟଚିତ୍ର ଓ ପିପିଲିର ଚାନ୍ଦୁଆ କାମ, ୨୦୦୯-୧୦ରେ ଖଣ୍ଡୁଆ ଶାଢୀ, ୨୦୧୧-୧୨ରେ ଗୋପାଳପୁରର ଟସର ବୁଣା, ଗଞ୍ଜାମର କିଆ ଫୁଲ ଓ ଦ୍ରବଣ (ରୁହ), ୨୦୧୨-୧୩ରେ ଧଳାପଥରର ପରଦା ଓ ତନ୍ତବୁଣା, ସମ୍ବଲପୁରୀ ବାନ୍ଧଶାଢୀ ଓ ତନ୍ତବୁଣା ଲୁଗା, ବୋମକାଇ ଶାଢୀ ଓ ଲୁଗା ଏବଂ ବ୍ରହ୍ମପୁରୀ ପାଟ (ଫୋଡ଼ା କୁମ୍ଭ) ଶାଢୀ ଓ ଯୋଡ଼, ୨୦୧୩-୧୪ରେ ଓଡ଼ିଶା ପଟ୍ଟଚିତ୍ର



(ଲୋଗୋ) ଏହି ମାନ୍ୟତାରେ ପଞ୍ଜୀକୃତ ହୋଇଛି। କିନ୍ତୁ ସେହିସବୁ ସାମଗ୍ରୀର ଜି.ଆଇ. ମାନ୍ୟତା ହାସଲ ନେଇ କୌଣସି ବିବାଦର ସୂତ୍ରପାତ ହୋଇନଥିଲା। ହେଲେ ରସଗୋଲା ଯେ ଓଡ଼ିଶାର– ଏ ଦାବି ପାଇଁ ଉଦ୍ୟମ, ଓଡ଼ିଶା ଓ ବଙ୍ଗ ମଧ୍ୟରେ ଦୀର୍ଘଦିନ ଧରି ସୁପ୍ତ ଥିବା ଏକ ବିବାଦକୁ ପୁଣି ଥରେ ତେଜିଦେଲା। ବଙ୍ଗବାସୀ ଚମକି ଉଠିପଡ଼ିଲେ ଏବଂ ‘ରସଗୋଲା କେବଳ ଆମର’ ବୋଲି ଦୃପ୍ତ କଣ୍ଠରେ ଦାବି କଲେ। ଓଡ଼ିଶାର ସଚେତନ ମହଲ ମଧ୍ୟ ପଛରେ ପଡ଼ିନଥିଲେ। ସମ୍ବାଦପତ୍ର, ପତ୍ରପତ୍ରିକା, ଟେଲିଭିଜନ ଚ୍ୟାନେଲ– ସବୁଠି ଏ ନେଇ ଖବର, ଆଲୋଚନା, ବିତର୍କ ସରଗରମ ହେଲା। ବିଧାନସଭାରେ ବି କଥା ଉଠିଲା। ଫଳରେ ରାଜ୍ୟ ସରକାର ୨୨ ସେପ୍ଟେମ୍ବର, ୨୦୧୫ରେ ତିନିଟି କମିଟି ଗଢ଼ିଦେଲେ। ସେହି ତିନି କମିଟିର କାମ ଥିଲା– ୧. ରସଗୋଲାର ଉଦ୍ଭବ ବା ଆଦିଭୂମି ଯେ ଓଡ଼ିଶା, ସେ ବାବଦରେ ତଥ୍ୟ, ପ୍ରମାଣ ସଂଗ୍ରହ କରି ତାହାର ଜି.ଆଇ. ମାନ୍ୟତା ପାଇଁ ଭାରତ ସରକାରଙ୍କ ବୌଦ୍ଧିକ ସଂପଦ (ଇଣ୍ଟେଲେକ୍ଚୁଆଲ୍ ପ୍ରପର୍ଟି) ସଂସ୍ଥାକୁ ଆବେଦନ କରିବା, ୨. ରସଗୋଲାର ଉଦ୍ଭବ ସ୍ଥଳ ବା ଆଦିଭୂମି ବୋଲି ପଶ୍ଚିମବଙ୍ଗ ଯେଉଁ ଦାବି କରୁଛି, ସେହି ଦାବିର ଅଯଥାର୍ଥତା ସାବ୍ୟସ୍ତ କରିବା ଏବଂ ୩. ବଙ୍ଗର ଯୁକ୍ତିକୁ ଖଣ୍ଡନ ଏବଂ ଓଡ଼ିଶାର ଦାବିକୁ ମଣ୍ଡନ କରି ରସଗୋଲା ଯେ ଓଡ଼ିଶାର ତାହା ସାବ୍ୟସ୍ତ କରିବା ପାଇଁ ଦାବିପତ୍ର ଦେବା।

ଏ ଭିତରେ କେତେକ ଜି.ଆଇ. ବିଶେଷଜ୍ଞ ଗୋଟିଏ ଯୁକ୍ତି ନେଇ ଉଭା ହୋଇଛନ୍ତି ଯେ ରସଗୋଲା ପରି ଏକ ଖାଦ୍ୟ–ଉତ୍ପାଦ ପାଇଁ ଜି.ଆଇ. ମାନ୍ୟତା ଦାବି ଅଯଥାର୍ଥ। କିନ୍ତୁ ତିରୁପତିର ଲଡ୍ଡୁ, ମଧ୍ୟପ୍ରଦେଶର ରତଲାମି ସେଓ, ଧାରୱାଡ଼ର ପେଡ଼ା, ହାଇଦ୍ରାବାଦର ହାଲିମ ଓ ଜଇନଗର (ପଶ୍ଚିମବଙ୍ଗ)ର ମୁଆଁ ପରି ଖାଦ୍ୟସାମଗ୍ରୀକୁ ଯଦି ଜି.ଆଇ. ମାନ୍ୟତା ମିଳିଛି, ତେବେ ‘ଓଡ଼ିଶାର ରସଗୋଲା’ ପାଇଁ ସେହି ମାନ୍ୟତା ଦାବି କାହିଁକି ଯଥାର୍ଥ ହେବ ନାହିଁ?

ଓଡ଼ିଶା ହେଉ ବା ବଙ୍ଗଳା– ରସଗୋଲାର ପ୍ରସ୍ତୁତି ଠିକ୍ କେବେଠାରୁ ଓ କେଉଁଠୁ ଆରମ୍ଭ, ତାହାର ଇତିହାସ ଅଜ୍ଞାତ। ତେବେ ବଙ୍ଗଳାରୁ ଏହାର ଉଦ୍ଭବ ବୋଲି ଯେଉଁମାନେ କହନ୍ତି ସେମାନଙ୍କ ପାଇଁ ଗଢ଼ା ହୋଇଛି ନାନା ରୋଚକ କାହାଣୀ।

**କାହାଣୀ: କର୍ଣ୍ଣୱାଲିସ୍**

ବଙ୍ଗଦେଶରେ ଗଢ଼ା ସେହିପରି ଏକ କାହାଣୀ କହେ, ଇଂରେଜ ରାଜତ୍ୱ କାଳରେ ଲର୍ଡ଼ କର୍ଣ୍ଣୱାଲିସ୍ ଥିଲେ ଭାରତର ବଡ଼ଲାଟ୍। ଥରେ ଜମିଦାରମାନଙ୍କଠାରୁ ଅଧିକ ଖଜଣା ପାଇବା ପାଇଁ ସେମାନଙ୍କୁ ସେ ଖୁସି କରିବାକୁ ଚାହିଁଲେ। ସେମାନଙ୍କ ପାଇଁ ଏକ ବଡ଼ ଭୋଜିସଭାର ଆୟୋଜନ କରାଗଲା। ସେତେବେଳର ପ୍ରଥା ଅନୁସାରେ ବଡ଼ ବଡ଼ ଭୋଜିସଭାରେ ବରେଣ୍ୟ ଅତିଥିମାନଙ୍କୁ ମିଠା ‘ପୁଡ଼ିଂ’ ପରିବେଷଣ କରାଯାଉଥିଲା। କିନ୍ତୁ ଯେଉଁ ବଙ୍ଗାଳୀ ରୋଷେଇଆ ଜଣକ ପୁଡ଼ିଂ ତିଆରି କରିବାରେ ନିଯୁକ୍ତ ଥିଲା, ସେ ହଠାତ୍ ଅସୁସ୍ଥ ହୋଇପଡ଼ିବାରୁ ସେହି ଦାୟିତ୍ୱ ଆଉ ଜଣଙ୍କ ଉପରେ ପଡ଼ିଲା। ସେ ଲୋକଟି ପୁଡ଼ିଂ ତିଆରି ଜାଣି ନଥିଲା। ଫଳରେ ଯେଉଁ କ୍ଷୀରରେ ପୁଡ଼ିଂ ତିଆରି ହେବା କଥା, ସେହି କ୍ଷୀରକୁ ଗରମ କରି ଠିକ୍ ଭାବରେ ସେ ପ୍ରକ୍ରିୟାକରଣ କରିପାରିଲା ନାହିଁ। ଫଳରେ କ୍ଷୀରତକ ଛିଣ୍ଡିଗଲା। ସେଇ ଛିଣ୍ଡାକ୍ଷୀରର ଛେନାକୁ କ’ଣ କରିବ ଜାଣି ନପାରି ସେହି ଲୋକଟି ତାହାକୁ ଗୋଟିଏ ଧୋତିରେ ବାନ୍ଧି ଟାଙ୍ଗିଦେଲା। କିନ୍ତୁ କେମିତି କେଜାଣି ରାତିରେ ତାହାର ଗଣ୍ଠି ଖୋଲିଯାଇ ପାଣି ନିଗିଡ଼ି ଯାଇଥିବା ଛେନାତକ ତଳେ ଥିବା ଗୋଟିଏ କଡ଼େଇ ଭିତରେ ଅଜାଡ଼ି ହୋଇ ପଡ଼ିଲା। ସେହି କଡ଼େଇରେ ଚିନିସିରା ରଖାଯାଇଥିଲା। ପରଦିନ ସକାଳେ ଦେଖିବା ବେଳକୁ ଛେନାତକ ଚିନିସିରାରେ ଭାସୁଛି। ସେଥିରୁ ଟିକିଏ ନେଇ ସେ ଚାଖି ଦେଖିଲା, ଖୁବ୍ ସୁଆଦିଆ ଲାଗୁଛି। ପୁଡ଼ିଂ ବଦଳରେ ସେଇ ଚିନିସିରା–ଭିଜା ଛେନାରୁ କିଛିକିଛି ଅତିଥିମାନଙ୍କୁ ପରିବେଷଣ କରାଗଲା। ସେପରି ସୁଆଦିଆ ମିଠା ସେମାନଙ୍କ ଭିତରୁ କେହି ବି ଆଗରୁ ଖାଇ ନଥିଲେ। ତେଣୁ



ସମସ୍ତେ ତାହାର ଉଚ୍ଚ ପ୍ରଶଂସା କଲେ। ସେହି କାହାଣୀ ଅନୁସାରେ, ତାହା ହିଁ ଥିଲା ରସଗୋଲାର ଆଦି ରୂପ।

କିନ୍ତୁ ଏହି କାହାଣୀକୁ ସତ ସାବ୍ୟସ୍ତ କରିବା ପାଇଁ ସେପରି କିଛି ନିର୍ଭରଯୋଗ୍ୟ ତଥ୍ୟ, ପ୍ରମାଣ ମିଳେନାହିଁ। କିନ୍ତୁ କାହାଣୀଟିକୁ ଯଦି ସତ ବୋଲି ଗ୍ରହଣ କରାଯାଏ, ତେବେ ଦେଖାଯିବ ଯେ ଲର୍ଡ଼ କର୍ଣ୍ଣୱାଲିସ୍ ଇଂରେଜ ଶାସିତ ଭାରତର ପ୍ରଥମ ବଡ଼ଲାଟ୍ (ଗଭର୍ଣ୍ଣର ଜେନେରାଲ) ଥିଲେ ୧୭୮୬ରୁ ୧୭୯୩ ପର୍ଯ୍ୟନ୍ତ। ଅର୍ଥାତ ଏହି କାହାଣୀ ଅନୁସାରେ ବଙ୍ଗଳାରେ ରସଗୋଲାର ପ୍ରଥମ ପ୍ରସ୍ତୁତିର ସମୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ। କିନ୍ତୁ ସେହି ବଙ୍ଗବାସୀ ଦେଉଥିବା ତଥ୍ୟ ଅନୁସାରେ, କଲିକତାରେ ରସଗୋଲା ପ୍ରସ୍ତୁତ ହୋଇଛି ତାହାର ପ୍ରାୟ ୮୦-୯୦ ବର୍ଷ ପରେ, ୧୮୬୮ ମସିହାରେ।

'ରସଗୋଲା' ପୁସ୍ତକର ଲେଖକ ଶ୍ରୀ ଭୌମିକ ଇତିହାସ ଓ ସଂସ୍କୃତିର ଚର୍ଚ୍ଚା ସମ୍ବଳିତ ପ୍ରବନ୍ଧ ଲେଖୁଥିବା ଜଣେ ଲେଖକ ଭାବରେ ବଙ୍ଗଳାର ବିଦ୍ୱତ ସମାଜରେ ସୁପ୍ରତିଷ୍ଠିତ ବୋଲି ପୁସ୍ତକର ମଲାଟ ପୃଷ୍ଠାରେ ସୂଚିତ ହୋଇଛି। ଅଥଚ ତାଙ୍କ ପୁସ୍ତକର ଏହି ଉଦ୍ଧୃତି ପାଠ କଲେ ତାଙ୍କର ବକ୍ତବ୍ୟ କି ବିଭ୍ରାନ୍ତିକର ତାହା ଅନାୟାସରେ ବୁଝିହୁଏ । 'କ୍ଷୀରମୋହନ'ର ନାମାନ୍ତର ହେଉଛି 'କ୍ଷୀରସାଗର'। 'ଉତ୍କଳ ମିଷ୍ଟାନ୍ନ ବ୍ୟବସାୟୀ ସମିତି'ର ସଭାପତି ବିମ୍ବାଧର ବେହେରାଙ୍କ ଅନୁସାରେ– ଛେନାର ଛୋଟ ଛୋଟ ଗୁଳିକୁ ସିରାରେ ସିଝାଇ ଏବଂ ତାହାକୁ ସିଝା କ୍ଷୀରରେ ପକାଇ 'କ୍ଷୀରସାଗର' ପ୍ରସ୍ତୁତ ହୁଏ । ଏହାର ଅନ୍ୟନାମ କ୍ଷୀରମୋହନ। ଏଣୁ ଏହାର ମୁଖ୍ୟ ଉପାଦାନ କ୍ଷୀର ଓ ଛେନା। ଏଣୁ ଏହାକୁ 'ଛେନାର କ୍ଷୀରମୋହନ' କହିବା ଭୁଲ କାହିଁକି ହେବ ? ପୁଣି ତାହା କିପରି 'ସୁନାର ପଥରବାଟି' ପରି ହେବ ? 'କ୍ଷୀରମୋହନ' ପ୍ରକୃତରେ 'କ୍ଷୀରଗୋଲକ' ନୁହେଁ କ୍ଷୀରର ସିରାରେ ଅବଗାହନ କରୁଥିବା ଛେନାଗୋଲକ। ଓଡ଼ିଶାର ପ୍ରସିଦ୍ଧ ଓ ପାରଂପରିକ ରସାବଳିର ପ୍ରସ୍ତୁତି ବିଧି ମଧ୍ୟ ମୋଟାମୋଟି ଏହି ଧରଣର।

**ଛେନା କେବଳ ବଙ୍ଗଳାର ?**

ଶ୍ରୀ ଭୌମିକ ତାଙ୍କ ପୁସ୍ତକରେ ଛେନା ସଂପର୍କରେ ଗୋଟିଏ ହାସ୍ୟାସ୍ପଦ ଦାବି କରି କହିଛନ୍ତି, ''ଛେନା ଶବ୍ଦଟି ବଙ୍ଗରେ ହିଁ ପ୍ରଚଳିତ ହୋଇଥିଲା। ସଂସ୍କୃତ ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ। ସେଠାରେ ଗରମ ଦୁଧକୁ ଦହି ସଂଯୋଗରେ ନଷ୍ଟ କରି ଦେବାର ବିକୃତ ଦ୍ରବ୍ୟକୁ 'ଆମିକ୍ଷା', 'କିଲାଟ' ଏବଂ 'ଦଧିକୁର୍ଚ୍ଚିକା' କୁହାହୋଇଛି। ସଂସ୍କୃତ 'ଛିନ୍ନ' ଶବ୍ଦରୁ 'ଛାନା' ବା 'ଛେନା' ଆସିଛି। ଏହି ଶବ୍ଦଟି ବଙ୍ଗଳାର ନିଜସ୍ୱ ଶବ୍ଦ ।'' କିନ୍ତୁ ଓଡ଼ିଶାର ଆଦିକବି ସାରଳା ଦାସଙ୍କ 'ମହାଭାରତ' ଓ ବଳରାମ ଦାସଙ୍କ 'ରାମାୟଣ'ଠାରୁ ଆରମ୍ଭ କରି ପରବର୍ତ୍ତୀ କାଳର ଅନେକ ରଚନାରେ କେବଳ 'ଛେନା' ନୁହେଁ, ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ମଧ୍ୟ ପ୍ରଚୁର ଉଲ୍ଲେଖ ମିଳେ। ତୁଳନାତ୍ମକ ଭାବରେ ସେସମୟର ବଙ୍ଗଳା ସାହିତ୍ୟ ପ୍ରାୟ କିଛି ନାହିଁ।

ଓଡ଼ିଶାର ଆଦିକବି ହେଉଛନ୍ତି ସାରଳା ଦାସ। ତାଙ୍କ 'ମହାଭାରତ'ର 'ମଧ୍ୟପର୍ବ'ରେ ଥିବା ବର୍ଣ୍ଣନା ଅନୁସାରେ, ଧର୍ମଯଜ୍ଞର ଆୟୋଜନ କାଳରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ବାରୁଣାବନ୍ତ ଘେନି ଆସିଛନ୍ତି ଏବଂ ମାତା କୁନ୍ତୀ ନିଜ ପୁତ୍ରମାନଙ୍କୁ ଓ ତାଙ୍କୁ ଅନେକ ସୁସ୍ୱାଦୁ ଖାଦ୍ୟ ପରଷିଛନ୍ତି। ସେହି ଖାଦ୍ୟଦ୍ରବ୍ୟ ମଧ୍ୟରେ ଛେନା ଓ ଛେନାଜାତ ସାମଗ୍ରୀ ରହିଛି। ତାହାର ବର୍ଣ୍ଣନା ପ୍ରସଙ୍ଗରେ ସାରଳା ଦାସ ଲେଖିଛନ୍ତି,

ଚକୁଳି ଛୁଞ୍ଚି ପତର ଛେନା ମନୋହର
ଖିରୀ ଖିରିସା ଶାକର ସକଳ ଦ୍ରବ୍ୟ ସାର ।

ସେହିପରି 'ଦାଣ୍ଡି ରାମାୟଣ' ବା 'ଜଗମୋହନ ରାମାୟଣ' ଭାବରେ କଥିତ ବଳରାମ ଦାସଙ୍କ 'ରାମାୟଣ'। ସେଥିରେ ମଧ୍ୟ ଛେନା ଓ ଛେନାଜାତ ସାମଗ୍ରୀର ପ୍ରଚୁର ବର୍ଣ୍ଣନା ଅଛି। ଏହାର ପ୍ରଥମ ସଂପାଦକ ଓ ପ୍ରକାଶକ ପଣ୍ଡିତ ଗୋବିନ୍ଦ ରଥ। ବାଙ୍କିର ପାଟପୁର (ପଦ୍ମନାଭପୁର) ଶାସନରେ ୧୮୪୮ ମସିହାରେ ତାଙ୍କର ଜନ୍ମ। ୧୯୧୮ ମସିହା ମେ ମାସ ୨୯



ତାରିଖରେ ଇହଲୀଳା ସମ୍ବରଣ କରିବା ପୂର୍ବରୁ ଓଡ଼ିଆ ଭାଷା ସାହିତ୍ୟ ପାଇଁ ସେ ଅନେକ କାମ କରିଥିଲେ । ୨୦୦ରୁ ଊର୍ଦ୍ଧ୍ୱ ପୁସ୍ତକର ସଂଗ୍ରହ, ସଂପାଦନା ଓ ରଚନା କରିଥିଲେ । କଟକରେ 'ରଥ ପ୍ରେସ' ନାମରେ ଏକ ମୁଦ୍ରଣାଳୟ ପ୍ରତିଷ୍ଠା କରି ବିଦଗ୍ଧକବି ଅଭିମନ୍ୟୁ ସାମନ୍ତ ସିଂହାର, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟ ବଳଦେବ ରଥ ପ୍ରମୁଖଙ୍କ ରଚିତ ପ୍ରାଚୀନ ଓଡ଼ିଆ କାବ୍ୟର ପ୍ରକାଶନ ସହିତ ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକୀର ମୋହନ ସେନାପତିଙ୍କର କେତେକ ପୁସ୍ତକ ମଧ୍ୟ ପ୍ରକାଶ କରିଥିଲେ । ସେ ପ୍ରକାଶ କରିଥିବା 'ଦାଣ୍ଡି ବାଲ୍ମୀକି ରାମାୟଣ' ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ । ତାହାର ଦ୍ୱିତୀୟ ସଂସ୍କରଣ ଏବେ ଭୁବନେଶ୍ୱରର ପ୍ରାଚୀନ ଗବେଷଣା ଅନୁଷ୍ଠାନ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ'ରେ ଉପଲବ୍ଧ । ସେଥିରେ 'ରସଗୋଲା' ରହିଛି ।

ବଳରାମ ଦାସଙ୍କ ରଚିତ ରାମାୟଣର 'ଅଯୋଧ୍ୟା କାଣ୍ଡ'ରେ ଥିବା ବର୍ଣ୍ଣନା ଅନୁସାରେ, ରାମଙ୍କ ବନବାସ ପରେ ଭରତ ଓ ଶତ୍ରୁଘ୍ନ ତାଙ୍କୁ ଫେରାଇ ଆଣିବା ପାଇଁ ଯାଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ଆତିଥ୍ୟ ଗ୍ରହଣ କରିଛନ୍ତି । ସେତେବେଳେ ଭରଦ୍ୱାଜ ଋଷି ମାୟାବ୍ରାହ୍ମଣଙ୍କ ଦ୍ୱାରା ପ୍ରସ୍ତୁତ କରାଇ ଭରତ ଓ ଶତ୍ରୁଘ୍ନ ଏବଂ ତାଙ୍କର ଅନୁଚରବର୍ଗଙ୍କୁ ଯେଉଁସବୁ ଖାଦ୍ୟଦ୍ରବ୍ୟ ପରିବେଷଣ କରିଛନ୍ତି, ସେଥି ମଧ୍ୟରେ 'ଦୁଧ ଛେନା' ରହିଛି । ଛେନାରୁ ପ୍ରସ୍ତୁତ ସାମଗ୍ରୀ ମଧ୍ୟରେ ରହିଛି 'ଛେନାପୁରୀ' 'ଛେନା ଲଡ଼ୁ', 'ରସଗୋଲା' ଓ 'ରସାବଳି' । ତାହାର ପୃଷ୍ଠା ୭୫-୭୬ରେ ଥିବା ବର୍ଣ୍ଣନା ଅନୁସାରେ, ବଳରାମ ଦାସ ଲେଖିଛନ୍ତି–

'ହିଙ୍ଗୁ ଜିରା ମରିଚ ନଡ଼ିଆ ଦୁଧଛେନା
ଘୃତରେ କରି ନାନାଦି ପିଷ୍ଟକ ରଚନା ।
ମାଛ ମାଏଁସ ଯେ ଛଡ଼ା ଝଡ଼ା ଜଣ ପ୍ରତି
ପଣା ପଇଡ଼ ଯେ ଆଣି ବଳେ ଯାଚି ଦନ୍ତି ।
କ୍ଷୀରି କ୍ଷୀରିଷା ଶାକର ପରଷନ୍ତି ଆଣି
ଏମନ୍ତ ଅନେକ ଦ୍ରବ୍ୟ କେ ପାରେ ବଖାଣି ।
ନାଡ଼ୀ ସରପୁଳି ଯେ ଆରିଷା ଛେନା ପୁରୀ
କାକରା ଛେନାଲଡ଼ୁ ଯେ ମାଲପୁଆ ପୁରୀ ।
ସଜମରା ଘିଅ ଆଣି ଦନ୍ତି ବଡ଼ା ବଡ଼ା
ଗଜା କଚୁରୀ ପଣସ ଖୋସା ବିରିବରା ।
କୋରା ରସଗୋଲା ଯେ ଅମୃତ ରସାବଳି
ମଣ୍ଡା ନାନାମାନ ଅମୃତପାଣି କଦଳୀ ।'

ସେହିପରି ବ୍ରଜନାଥ ବଡ଼ଜେନାଙ୍କ 'ଅମ୍ବିକା ବିଳାସ' ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ରହିଛି ଛେନା ଓ ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ପ୍ରଚୁର ଉଲ୍ଲେଖ ।

ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ଯେ ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ, ଏହାକୁ କେବଳ ବଙ୍ଗଳାର ବୋଲି କହି, ରସଗୋଲା କେବଳ ବଙ୍ଗଳାର ଏହା ସାବ୍ୟସ୍ତ କରିବା ପାଇଁ ଏକ ହାସ୍ୟାସ୍ପଦ ଉଦ୍ୟମ କରିଛନ୍ତି 'ରସଗୋଲା' ପୁସ୍ତକର ଲେଖକ ହରିପଦ ଭୌମିକ । କିନ୍ତୁ ସାରଳା ଦାସ, ବଳରାମ ଦାସ, ବ୍ରଜନାଥ ବଡ଼ଜେନା ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଉପରୋକ୍ତ କୃତିଗୁଡ଼ିକର ଉଲ୍ଲେଖ ତାଙ୍କର ଏହି ଦାବିକୁ ଅସାର ପ୍ରତିପାଦିତ କରେ । କାରଣ, ଗବେଷକଙ୍କ ମତରେ ସାରଳା ଦାସଙ୍କ ସମୟ ହେଉଛି ସୂର୍ଯ୍ୟବଂଶୀ ଗଜପତି ମହାରାଜା କପିଳେନ୍ଦ୍ର ଦେବ (୧୪୩୫-୬୮) ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ (୧୪୬୮-୯୭)ଙ୍କ ସମୟ । ବଳରାମ ଦାସଙ୍କ ସମୟ ୧୪୭୨-୧୫୫୦ ଖ୍ରୀଷ୍ଟାବ୍ଦ ଏବଂ ତାହା ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ସମୟ । ବ୍ରଜନାଥ ବଡ଼ଜେନାଙ୍କ ସମୟ ୧୭୩୦-୧୮୦୦ ଖ୍ରୀଷ୍ଟାବ୍ଦ ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ସମୟ ୧୭୬୦-୧୮୦୬ ଖ୍ରୀଷ୍ଟାବ୍ଦ । ଏସବୁ ବଙ୍ଗଳାରେ ନବୀନ ଚନ୍ଦ୍ର ଦାଶଙ୍କ ତଥାକଥିତ 'ରସଗୋଲା'ର ଉଦ୍ଭବ କାଳ ବା ୧୮୬୮ର ବହୁ ପୂର୍ବବର୍ତ୍ତୀ ।

**'ଆମିକ୍ଷା' ଆକ୍ଷେପ**

ଏବେ ଦେଖାଯାଉ ଶ୍ରୀ ଭୌମିକଙ୍କ 'ଆମିକ୍ଷା' ଆକ୍ଷେପ ପ୍ରସଙ୍ଗକୁ । 'ରସଗୋଲ୍ଲା' ପୁସ୍ତକରେ ସେ କହିଛନ୍ତି, ସଂସ୍କୃତ



ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ ଅଛି 'ଆମିକ୍ଷା'। କିନ୍ତୁ 'ଆମିକ୍ଷା' କ'ଣ ଛେନା ନୁହେଁ ? ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ଗୁପ୍ତ ଯୁଗରେ ଅମର ସିଂହଙ୍କ ଦ୍ୱାରା ରଚିତ କୋଷଗ୍ରନ୍ଥ 'ଅମରକୋଷ'ରେ 'ଆମିକ୍ଷା'ର ଉଲ୍ଲେଖ ଅଛି। 'ଅମରକୋଷ'ର ରଚନାକାଳ ପ୍ରାୟ ୪୦୦ ଖ୍ରୀଷ୍ଟାବ୍ଦ । 'ଆମିକ୍ଷା'ର ପ୍ରସ୍ତୁତି ବିଧିରୁ ସ୍ୱଷ୍ଟ ସୂଚିତ ଯେ ଏହା କ୍ଷୀରଛେନାର ଏକ ସଂସ୍କୃତ ପ୍ରତିଶବ୍ଦ । ଉଷ୍ମ କ୍ଷୀରରେ ଦହି (ବା ଅମ୍ଳ ଦ୍ରବ୍ୟ) ଯୋଗ କଲେ ଆମିକ୍ଷା (କ୍ଷୀରଛେନା) ପ୍ରସ୍ତୁତ ହୁଏ। 'ରସଗୋଲ୍ଲା' ପୁସ୍ତକର 'ଛାନା ନାମକରଣ' (ଛେନା ନାମକରଣ) ଅଧ୍ୟାୟରେ ମଧ୍ୟ ଶ୍ରୀ ଭୌମିକ ଏହାକୁ ସ୍ୱୀକାର କରିଛନ୍ତି। ଏହା ସତ୍ତ୍ୱେ ''ପ୍ରାଚୀନ ଭାରତରେ 'ଛେନା' ନଥିଲା'ଆମିକ୍ଷା' ଥିଲା'' ବୋଲି ସେ ଯାହା କହିଛନ୍ତି, ତାହାର ଯଥାର୍ଥତା କିଛି ନାହିଁ। କାରଣ 'ଛେନା' ଓ 'ଆମିକ୍ଷା' ସମାନ। ପୁଣି 'ଅମରକୋଷ'ରେ ଛେନାର ପ୍ରସ୍ତୁତିବିଧି ସଂପର୍କରେ ସ୍ୱଷ୍ଟ ଉଲ୍ଲେଖ ଥିବା ବେଳେ, ନିଜ ପୁସ୍ତକରେ ''ପ୍ରାଚୀନ ଭାରତରେ 'ଛେନା'ର ବ୍ୟବହାର ନଥିଲା'' ବୋଲି ସେ କହିବା ଅତ୍ୟନ୍ତ ଅସମୀଚୀନ।

ଏ ପ୍ରସଙ୍ଗରେ ଏକ ଆକସ୍ମିକ ସଂଯୋଗ ହେଲା– ଯେଉଁ ୧୮୬୮ ମସିହାରେ ବଙ୍ଗଳାରେ 'ରସଗୋଲା'ର ଆବିଷ୍କାର ହେଲା ବୋଲି କୁହାଯାଉଛି, ସେହି ୧୮୬୮ ମସିହାରେ ଓଡ଼ିଶାରେ ଓ ଓଡ଼ିଆ ଭାଷାରେ 'ଉତ୍କଳ ଭାଷାର୍ଥାଭିଧାନ' ନାମରେ ଏକ ଶବ୍ଦକୋଷ ପ୍ରକାଶ ପାଇଛି। ତାହାର ପୃ–୮୦ରେ ଅଛି 'ଛେନା' ଶବ୍ଦ । ତାହାର ପ୍ରତିଶବ୍ଦ ଓ ଅର୍ଥଭାବେ 'ଆମିକ୍ଷା' ଓ 'ଦୁଗ୍ଧର ବିକାର' ବୋଲି ସ୍ୱଷ୍ଟ ଉଲ୍ଲେଖ ଅଛି। ଏଣୁ ଯାହା 'ଆମିକ୍ଷା', ତାହା 'ଛେନା'।

**'ଛେନା' ଦୁଧର ଶବ !**

ଏଥିରେ କୌଣସି ସନ୍ଦେହ ନାହିଁ ଯେ 'ଛେନା' ଶବ୍ଦର ମୂଳ ହେଉଛି ସଂସ୍କୃତ 'ଛିନ୍ନ'। ଓଡ଼ିଆରେ ମଧ୍ୟ ଏ ଦୃଷ୍ଟିରୁ 'ଛେନା ଛିଣ୍ଡିବା'ର ପ୍ରୟୋଗ ଅଛି। ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ତାଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ରେ ମଧ୍ୟ 'ଛେନା' 'ଛିନ୍ନ' ଶବ୍ଦରୁ ସୃଷ୍ଟ ବୋଲି କହିଛନ୍ତି। ତାଙ୍କ ଅନୁସାରେ, ଏହା 'ଦୁଗ୍ଧ ବିକାର ବିଶେଷ'। କିନ୍ତୁ 'ଛିନ୍ନ'କୁ ଆଧାର କରି ଶ୍ରୀ ଭୌମିକ ତାଙ୍କ 'ରସଗୋଲ୍ଲା' ପୁସ୍ତକରେ ଛେନାର ଯେଉଁ ବିକୃତ ଅର୍ଥ କରିଛନ୍ତି, ତାହା ସଂପୂର୍ଣ୍ଣ ଭିତ୍ତିହୀନ ମନେହୁଏ। ସେ କହିଛନ୍ତି, ଛେନା ହୁଏ ଦୁଧକୁ ଛିନ୍ନ କରି। ଅମ୍ଳ ସହଯୋଗରେ ଦୁଧକୁ ଛିଣ୍ଡାଇ ଛେନା ହେଉଥିବାରୁ ସଂସ୍କାରର ଜଟିଳ ଜାଲରେ ଅବଙ୍ଗାଳୀ ଭାରତୀୟଙ୍କ ପାଇଁ ତାହା 'ନା–ପାକ' (ଅ–ପାକ) ହୋଇଯାଏ। ଏଣୁ ବଙ୍ଗଦେଶ ବ୍ୟତୀତ ଭାରତରେ ସର୍ବତ୍ର ମିଷ୍ଟାନ୍ନର ପ୍ରଧାନ ଉପକରଣ କ୍ଷୀର। ବଙ୍ଗଦେଶ– କେବଳ ବଙ୍ଗଦେଶ କିନ୍ତୁ ଛେନାକୁ ଅଛୁଆଁ କରି ରଖି ନାହିଁ। ବରଂ ତାହାକୁ ଉପକରଣ ରୂପେ ଉପଯୋଗ କରି ପ୍ରସ୍ତୁତ କରିଛି ନାନା ମିଠା। ଶ୍ରୀ ଭୌମିକ ପୁଣି ଏତିକିରେ ଅଟକି ନାହାନ୍ତି। ଏ ଦିଗରେ ଆଉ ପାଦେ ଆଗେଇ ଯାଇ ଛେନାକୁ ଏକ ମୃତ ପଦାର୍ଥ ରୂପେ ଗ୍ରହଣ କରାଯାଉଥିଲା ବୋଲି ମଧ୍ୟ କହିଛନ୍ତି ।

କିନ୍ତୁ କେବଳ ଯେ ହରିପଦ ଭୌମିକ ଏପରି ମତ ଦିଅନ୍ତି, ତା' ନୁହେଁ। ରସଗୋଲାକୁ ବଙ୍ଗଳାର ବୋଲି ସୂଚାଇବାକୁ ଯାଇ ଭାରତୀୟ ଖାଦ୍ୟର ଖ୍ୟାତନାମା ଗବେଷକ କେ.ଟି. ଆଚାୟା ମଧ୍ୟ ତାଙ୍କ 'ଏ ହିଷ୍ଟୋରିକାଲ ଡିକ୍ସନାରୀ ଅଫ ଇଣ୍ଡିଆନ ଫୁଡ଼'ରେ ଏହାକୁ ସମର୍ଥନ କରନ୍ତି। ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ ଛେନା ପ୍ରସ୍ତୁତିର ଇତିହାସକୁ ସେ ପର୍ତ୍ତୁଗୀଜମାନଙ୍କର ଭାରତ ଆଗମନର ଇତିହାସ ସହିତ ଯୋଡ଼ିଛନ୍ତି। ତାଙ୍କ ଅନୁସାରେ, ପର୍ତ୍ତୁଗୀଜମାନେ ହୁଗୁଳିର ଚନ୍ଦନ ନଗରଠାରେ ବାଣିଜ୍ୟ ଘାଟି ସ୍ଥାପନ କରିବା ପରେ ବଙ୍ଗାଳୀମାନଙ୍କୁ ଛେନାର ପ୍ରସ୍ତୁତି ଶିଖାଇଥିଲେ।

କିନ୍ତୁ ଇତିହାସ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ ପର୍ତ୍ତୁଗୀଜମାନେ ଭାରତକୁ ଆସିଲେ ଷୋଡ଼ଶ ଶତାବ୍ଦୀର ତୃତୀୟ ଦଶକରେ। କେବଳ ଯେ ହୁଗୁଳି ନଦୀତଟର ଚନ୍ଦନ ନଗର ତାଙ୍କର ବାଣିଜ୍ୟପେଣ୍ଠ ଥିଲା, ତାହା ନୁହେଁ । ସମକାଳରେ



ଓଡ଼ିଶାର ବାଲେଶ୍ୱରଠାରେ ମଧ୍ୟ ତାଙ୍କର ବାଣିଜ୍ୟପେଣ୍ଠ ରହିଥିଲା । ତେଣୁ ବଙ୍ଗାଳୀମାନେ ଯଦି ସେମାନଙ୍କଠାରୁ କ୍ଷୀରଛେନାର ପ୍ରସ୍ତୁତି ବିଧି ଶିଖିପାରିଲେ, ତେବେ ଓଡ଼ିଆମାନେ ଶିଖିବାରେ କି ଅସୁବିଧା ଥିଲା ? ଅନ୍ୟ ଦୃଷ୍ଟିରୁ ଦେଖିଲେ, ସାରଳା ଦାସ ଓ ବଳରାମ ଦାସଙ୍କ କୃତିରେ 'ଛେନା'ର ଉଲ୍ଲେଖ ଅଛି ଏବଂ ଏହା ପର୍ତ୍ତୁଗୀଜମାନଙ୍କ କଲିକତା ଆଗମନର ପୂର୍ବବର୍ତ୍ତୀ ।

**ଛେନା ପାଇଁ ମନ୍ଦିର ମନା !**

ଅନ୍ୟ କେତେକ ଖାଦ୍ୟ ଗବେଷକ ନିଜ ନିଜର ଲେଖାରେ, 'କ୍ଷୀରର ବିକାର' ହେତୁ ଛେନା ଦେବଭୋଗ ନୁହେଁ ତେଣୁ ତା'ପାଇଁ ମନ୍ଦିର ମନା ବୋଲି ଦର୍ଶାଇଛନ୍ତି । ଶ୍ରୀ ଭୌମିକ ଓ ଶ୍ରୀ ଆଚାର୍ଯ୍ୟା ମଧ୍ୟ ସେମାନଙ୍କର ପକ୍ଷଧର । କିନ୍ତୁ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସମେତ ଅନ୍ୟାନ୍ୟ ଦେବଦେବୀ ମନ୍ଦିରରେ ଛେନାରୁ ପ୍ରସ୍ତୁତ ସାମଗ୍ରୀ ଭୋଗ ରୂପେ ସୁପ୍ରାଚୀନ କାଳରୁ ପ୍ରଚଳିତ ରହିଆସିଛି । ଶ୍ରୀଜଗନ୍ନାଥଙ୍କ ଅଣସର ଓ ନବକଳେବର ସମୟର ମହାଅଣସର ଗୁପ୍ତନୀତିର ଭୋଗନୈବେଦ୍ୟ ମଧ୍ୟରେ ଛେନା ଏକ ମୁଖ୍ୟ ଉପାଦାନ ରୂପେ ଉପଯୋଗ ହୁଏ । ଏହାବ୍ୟତୀତ ଶ୍ରୀଗୁଣ୍ଡିଚା ଓ ବାହୁଡ଼ାଯାତ୍ରା ସମୟରେ, ମାଉସୀ ମା' ମନ୍ଦିରର ପ୍ରସିଦ୍ଧ ପୋଡ଼ପିଠା ଓ ରଥଉପରର ଅଧରପଣା, ଚନ୍ଦନଯାତ୍ରା ସମୟର ତାଡ଼ିଆ ଓ ମାଣ୍ଡୁଅ ଭୋଗ ଏବଂ କେଳି, ଘେଉଳି ଓ ପାରିଜାତକ ଆଦି ପିଠାରେ ଛେନା ଏକ ମୁଖ୍ୟ ଉପାଦାନ । କ୍ଷୀରରେ ଛେନା ତାଡ଼ିଆ ପଡ଼ି ପ୍ରସ୍ତୁତ ହେଉଥିବା ମଧ୍ୟାହ୍ନ ଧୂପର ଭୋଗରେ ମଧ୍ୟ ଛେନାର ସ୍ଥାନ ରହିଛି । ଏଣୁ ଏହା ଶତ ପ୍ରତିଶତ ଅଭ୍ରାନ୍ତ ଯେ ପର୍ତ୍ତୁଗୀଜ ବା ଫରାସୀଙ୍କ ପୂର୍ବରୁ ଭାରତବାସୀ ଛେନାର ବ୍ୟବହାର ଜାଣିଥିଲେ । ଭାରତର ଅନ୍ୟ କୌଣସି ପ୍ରାନ୍ତରେ ଏହା ହୁଏତ 'ଦୁଗ୍ଧର ବିକାର' ଭାବରେ ଦେବଭୋଗ ନ ହୋଇଥାଇପାରେ, ଅନ୍ୟ କୌଣସି ସ୍ଥାନରେ ହୁଏତ ଛେନାପାଇଁ ମନ୍ଦିର ମନା ହୋଇଥାଇପାରେ, କିନ୍ତୁ ଓଡ଼ିଶାର ମନ୍ଦିରମାନଙ୍କରେ ଛେନାପାଇଁ ବାରଣ ନାହିଁ । ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିରରେ ଏହା ଆବହମାନ କାଳରୁ ଶ୍ରୀଜିଉମାନଙ୍କର ଭୋଗ ନୈବେଦ୍ୟ ରୂପେ ବହୁଳ ଭାବରେ ଉପଯୋଗ ହୋଇ ଆସିଛି ।

**ଢେଲା ରସଗୋଲା କଥା**

ଉପରୋକ୍ତ କାହାଣୀଗୁଡ଼ିକ ମଧ୍ୟରେ ସ୍ୱଷ୍ଟ ସୂଚନା ଅଛି ଯେ ଫୁଲିୟା ହେଉ ବା ଶାନ୍ତିପୁର କି ବାଗବାଜାର– ସେତେବେଳେ ବଙ୍ଗଦେଶରେ ଯେଉଁ ଧରଣର ରସଗୋଲା ତିଆରି ହେଉଥିଲା, ତାହାର ନାଆଁ ଥିଲା 'ଡେଲା ରସଗୋଲା' । ଓଡ଼ିଆରେ ତାହା ହେବ 'ଢ଼େଲା ରସଗୋଲା' । କାରଣ ଆଜିର ରସଗୋଲା ପରି ନରମପଣ ସେଥିରେ ନଥିଲା । ତାହା ଥିଲା ମାଟିଟେଲା ପରି ଟାଣ । ବାଗବାଜାରର କାଳୀଇନ୍ଦ୍ର ଦୋକାନରେ ଜଣେ ଶିକ୍ଷାନବିଶ ଭାବରେ କାର୍ଯ୍ୟ ଆରମ୍ଭ କରିଥିବା ନବୀନ ଚନ୍ଦ୍ର ଦାଶ ହିଁ ପରବର୍ତ୍ତୀ କାଳରେ ସେହି 'ଢେଲା ରସଗୋଲା' ବା 'ଟେଳା ରସଗୋଲା'କୁ ଦେଇଥିଲେ ଏକ ନରମ ରୂପ । ତାହା ହେଉଛି କଲିକତାର 'ସ୍ୱଞ୍ଜ ରସଗୋଲା' ।

**ରସଗୋଲାର କଲମ୍ବସ !**

ମିଠାପ୍ରିୟ ବଙ୍ଗାଳୀ ଜାତି ରସଗୋଲାର ଏହି ନୂଆ ରୂପ ପାଇଁ ନବୀନ ଚନ୍ଦ୍ର ଦାଶଙ୍କୁ ଉଚ୍ଛ୍ୱସିତ ପ୍ରଶସ୍ତି କରିଛି । ତାଙ୍କୁ 'ରସଗୋଲାର କଲମ୍ବସ' ଆଖ୍ୟା ଦେଇଛି । କାରଣ ସେତେବେଳେ କଲିକତାରେ ପ୍ରସ୍ତୁତ ହେଉଥିବା 'ଡେଲା ରସଗୋଲା' ଓ ଅନ୍ୟ କିସମର 'ଦାନାଦାର ରସଗୋଲା'କୁ ସେ ନୂଆ ଚରିତ୍ର ଦେଇଥିଲେ । ତେବେ ଅନ୍ୟ ତଥ୍ୟ ଅନୁସାରେ, କଲିକତାର ବେନେଟୋଲାର ସୀତାନାଥ ଘୋଷ ଷ୍ଟ୍ରୀଟରେ ଦୀନୁ ମୟରାଙ୍କ ପୂର୍ବପୁରୁଷ ବ୍ରଜ ମୟରା କଲିକତା ହାଇକୋର୍ଟ ନିକଟରେ ଗୋଟିଏ ଦୋକାନ କରି ସେଠାରେ ପ୍ରଥମ କରି ରସଗୋଲାର ଆବିଷ୍କାର କରିଥିଲେ । ଶ୍ରୀ ଭୌମିକଙ୍କ 'ରସଗୋଲା' ପୁସ୍ତକରେ ମଧ୍ୟ ଏହାର ବିବରଣୀ ଲିପିବଦ୍ଧ ହୋଇଛି । ଏଣୁ କଲିକତୀ ରସଗୋଲାର ପ୍ରଥମ ଉନ୍ନତ କିସମର





ଆବିଷ୍କାରକ ଭାବରେ ଅନେକେ ବ୍ରଜ ମୟରାଙ୍କୁ ମଧ୍ୟ ମାନ୍ୟତା ପ୍ରଦାନ କରନ୍ତି ।

**ଛେନାବରା: ଛେନାଝିଲ୍ଲୀ**

କଲିକତାରେ ଗୋଟିଏ କଥା ବେଶ୍ ପ୍ରଚଳିତ ଯେ 'ଛେନାବଡ଼ା' (ଛେନାବରା) ହେଉଛି ରସଗୋଲାର ବୃଦ୍ଧ ପ୍ରପିତାମହ ବା ପୂର୍ବସୂରୀ । ଏହାର ପ୍ରସ୍ତୁତି ବିଧି ସଂପର୍କରେ ବଙ୍ଗଳାର ବିଭିନ୍ନ ଖାଦ୍ୟ ଗ୍ରନ୍ଥରେ ଯେଉଁ ବର୍ଣ୍ଣନା ଅଛି, ସେଥିରୁ ଜଣାଯାଏ ଯେ ଏହା ଓଡ଼ିଶାର ନିମାପଡ଼ାରେ ପ୍ରସ୍ତୁତ ହେଉଥିବା 'ଛେନାଝିଲ୍ଲୀ' ବା କେନ୍ଦ୍ରାପଡ଼ାର 'ରସାବଳି' ସହିତ ତୁଳନୀୟ । ପୁରୀ ଶ୍ରୀମନ୍ଦିରର 'ଛପନଭୋଗ' ମଧ୍ୟରେ ବି ଝିଲ୍ଲୀର ସ୍ଥାନ ଅଛି । ଏହି 'ଝିଲ୍ଲୀ' ବା 'ରସାବଳି' ଯେ କଲିକତା 'ଛେନାବରା'ର ବହୁ ପୂର୍ବବର୍ତ୍ତୀ, ଏଥିରେ ସନ୍ଦେହ ନାହିଁ ।

**ଗୋପାଳଗୋଲା: ଯତୀନ ଗୋଲା: ଭବାନୀ ଗୋଲା**

ବଙ୍ଗୀୟମାନଙ୍କର ତଥ୍ୟ ଯେ କେବଳ ରସଗୋଲାର ପୂର୍ବସୂରୀ ଭାବରେ 'ଛେନାବଡ଼ା'କୁ ସ୍ୱୀକାର କରେ, ତାହା ନୁହେଁ । ଆହୁରି ଅନେକ 'ଗୋଲା'ର ଉପସ୍ଥିତି ମଧ୍ୟ ବଙ୍ଗଳାର ମିଠା ଇତିହାସରେ ରହିଛି । ସେମାନଙ୍କର 'ଅତୀତ ପୃଷ୍ଠା' କହେ, ବିପ୍ରଦାସ ମୁଖୋପାଧ୍ୟାୟ ୧୮୮୭ ଖ୍ରୀଷ୍ଟାବ୍ଦରେ 'ମିଷ୍ଟାନ୍ନ ପାକ' ନାମକ ଏକ ଗ୍ରନ୍ଥରେ ରସଗୋଲାର ପ୍ରସ୍ତୁତି ବିଧି ପ୍ରଥମେ ଲିପିବଦ୍ଧ କରିଥିଲେ । ସେହି ପୁସ୍ତକର ପ୍ରଥମ ସଂସ୍କରଣ ୧୩୦୫ ସାଲ ବା ୧୯୦୦ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଥିବା ଜଣାଯାଏ । ତାହାର ଦ୍ୱିତୀୟ ସଂସ୍କରଣ ୧୯୦୬ରେ ପ୍ରକାଶ ପାଇଥିବା ବିଷୟ 'ଅକ୍ସଫୋର୍ଡ଼ କଂପାନିୟନ ଅଫ ସୁଗାର ଆଣ୍ଡ ସୁଇଟ୍‌ସ'ରେ ଉଲ୍ଲେଖ ଅଛି । ତଦନୁସାରେ, ଗୋପାଳ ମୟରା ବର୍ଦ୍ଧମାନର ରସଗୋଲା ପରି ଏକ ପ୍ରକାରର ମିଠା ପ୍ରସ୍ତୁତ କରିଥିଲେ । ତାହାର ନାମ ଥିଲା 'ଗୋପାଳ ଗୋଲା' । 'ମିଷ୍ଟି କଥା' ନାମରେ ପଶ୍ଚିମବଙ୍ଗ ମିଷ୍ଟାନ୍ନ ବ୍ୟବସାୟୀ ସଂଘ ପକ୍ଷରୁ ପ୍ରକାଶିତ ଏକ ସମ୍ବାଦପତ୍ରିକା ଅନୁସାରେ, ଆହୁରି ଅନେକ ସମଜାତୀୟ ମିଷ୍ଟାନ୍ନ ମଧ୍ୟ ସମକାଳୀନ ବଙ୍ଗଳାରେ ପ୍ରସ୍ତୁତ ହେଉଥିଲା । ସେସବୁ 'ଯତୀନ ଗୋଲା', 'ଭବାନୀ ଗୋଲା', 'ରସୁଗୋଲା' ଆଦି ନାମରେ ମଧ୍ୟ ପରିଚିତ ଥିଲା ।

ଏ ଦୃଷ୍ଟିରୁ ନବୀନ ଚନ୍ଦ୍ର ଦାଶଙ୍କୁ ରସଗୋଲାର ଜନକ ଭାବରେ ଏକକ ମାନ୍ୟତା ଦିଆଯିବା ସର୍ବାଦୌ ଅଯଥାର୍ଥ ମନେହୁଏ ।

**ରସକୋରା: ରସଗୋଲା**

କିନ୍ତୁ 'ରସକୋରା' ନାମକ ଏକ ମିଷ୍ଟାନ୍ନ ଓଡ଼ିଶାରେ ଅନେକ ଶତାବ୍ଦୀ ପୂର୍ବରୁ ସୁପ୍ରଚଳିତ ଥିବା ଜଣାଯାଏ । ଓଡ଼ିଶାରେ 'କୋରା' କହିଲେ ସାଧାରଣ ଭାବରେ ବୁଝାଯାଏ, କୋରା ନଡ଼ିଆ ସହିତ ଚିନି ପାଗରେ ପ୍ରସ୍ତୁତ ଏକପ୍ରକାରର ଗୋଲାକାର ମିଠାକୁ । ଏଣୁ 'ରସକୋରା' ରସ ମିଶ୍ରିତ ଏକ ଗୋଲାକାର ମିଷ୍ଟାନ୍ନର ଏକ ନାମ ହୋଇଥିବା ଖୁବ୍ ସମ୍ଭବ । ଏହାର ବହୁଳ ପ୍ରଚଳନର ପ୍ରମାଣ ମିଳେ ପ୍ରାଚୀନ ଓଡ଼ିଆ ଶବ୍ଦକୋଷମାନଙ୍କରୁ । ଖ୍ରୀଷ୍ଟିଆନ ମିସ୍‌ନାରୀ ରେଭରେଣ୍ଡ ଆମସ ସଟନଙ୍କ ୧୮୪୩ ମସିହାର ଓଡ଼ିଆ–ଇଂରାଜୀ ଶବ୍ଦକୋଷ ଏହାର ଏକ ପ୍ରମାଣ । ତାଙ୍କ ପ୍ରଣୀତ 'ଆନ ଓରିୟା ଆଣ୍ଡ ଇଂଲିଶ ଡିକ୍ସନାରୀ'ରେ 'ରସକୋରା'କୁ ଏକପ୍ରକାରର ମିଷ୍ଟାନ୍ନ (ଏ କାଇଣ୍ଡ ଅଫ ସୁଇଟ୍‌ମିଟ୍) ତୃପ୍ତିଦାୟକ (ସାଭୋରୀ) ଓ ରସଯୁକ୍ତ (ଲିକ୍ୱିଫାଏଡ଼) ବୋଲି କୁହାଯାଇଛି । ଏହା ରସଗୋଲାକୁ ହିଁ ସୂଚାଏ । ସେହିପରି ୱିଲିୟମ ବ୍ରୁକସଙ୍କ ୧୮୪୭ର 'ଓଡ଼ିଆ–ଇଂରାଜୀ ଶବ୍ଦକୋଷ (ଆନ ଓରିୟା ଆଣ୍ଡ ଇଂଲିଶ ଡିକ୍ସନାରୀ)ରେ ଏହାକୁ 'ଗୋଲାକୃତି ମିଷ୍ଟାନ୍ନ' ବୋଲି କୁହାଯାଇଛି । 'ରସକୋରା'କୁ ତେଣୁ 'ରସଗୋଲା'ର ନାମାନ୍ତର ବୋଲି କୁହାଯାଇପାରିବ । ଏହି ଦୁଇ ଶବ୍ଦକୋଷ ନବୀନ ଚନ୍ଦ୍ର ଦାଶଙ୍କ ତଥାକଥିତ ରସଗୋଲା ଉଦ୍ଭାବନ(୧୮୬୮)ର ବହୁ ପୂର୍ବବର୍ତ୍ତୀ ।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର 'ଛେନାବଡ଼ା' ମଧ୍ୟ ଏହାର ସମପର୍ଯ୍ୟାୟବାଚୀ । କାରଣ 'ଛେନାବଡ଼ା' ସଂପର୍କରେ ସେଥିରେ ଲେଖାଅଛି,



'ଗୁଡ଼ପକ୍ୱ ଛେନାର ପିଠା ବା ମିଷ୍ଟାନ୍ନ ବିଶେଷ'। ଓଡ଼ିଶାରେ ଚିନିର ବ୍ୟବହାର ପୂର୍ବରୁ ଏହି 'ଗୁଡ଼ ରସଗୋଲା'ର ପ୍ରସ୍ତୁତି ହେଉଥିବା ଜଣାଯାଏ।

**ଦାଣ୍ଡି ରାମାୟଣର 'ରସଗୋଲା'**

କିନ୍ତୁ ଏହିସବୁ ଶବ୍ଦ ସାମ୍ୟ 'ରସଗୋଲା' ବାବଦରେ ଶତପ୍ରତିଶତ ନିର୍ଦ୍ଦିଷ୍ଟତା ବହନ କରୁ ନଥିବା ବେଳେ, ଶତପ୍ରତିଶତ ନିର୍ଦ୍ଦିଷ୍ଟତା ମିଳେ 'ଦାଣ୍ଡି ରାମାୟଣ'ରୁ। ଏ ପ୍ରସଙ୍ଗ ପୂର୍ବରୁ ଆଲୋଚିତ ହୋଇଛି। ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ 'ଓଡ଼ିଆ ସାହିତ୍ୟର ଇତିହାସ', ପ୍ରଥମ ଭାଗ (୧୯୬୩)ର ପୃ-୪୩୨ରେ ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ରେ 'ରସଗୋଲା'ର ଉଲ୍ଲେଖ ଅଛି। ସେ କହିଛନ୍ତି, ''ଭରଦ୍ୱାଜ ଆଶ୍ରମରେ ଭରତଙ୍କୁ ଋଷିମାନେ ଯେଉଁ ଅଭ୍ୟର୍ଥନା କରିଥିଲେ, ସେଥିରେ ଖାଦ୍ୟର ପରିପାଟୀ ରାଜୋଚିତ ହୋଇଥିଲେ ମଧ୍ୟ ତାହା ଊଣା ଅଧିକରେ ଓଡ଼ିଶାରେ ସମସ୍ତଙ୍କ ଘରେ ଚଳେ। ଏହା ଭୋଜିରେ ଜାତୀୟ ଖାଦ୍ୟର ଚିତ୍ର ମାତ୍ର। ଋଷି ମାୟାରେ ବହୁ ପୁରୁଷ ଓ ସ୍ତ୍ରୀଙ୍କୁ ସର୍ଜ୍ଜନାକରି ଅଭ୍ୟର୍ଥନାରେ ଲଗାଇଥିଲେ। ମାୟା ବ୍ରାହ୍ମଣମାନେ ରୋଷେଇ କରି ପରଷିଥିଲେ। ଏଥିରୁ ବ୍ରାହ୍ମଣମାନେ ଭୋଜିରେ ରୋଷେଇ କରିବା ଓ ପରଷିବା କାର୍ଯ୍ୟ କରୁଥିବା ରୀତି ପ୍ରଚଳିତ ଥିବା ଜଣାଯାଉଛି। ବସା, ଘୃତ, ଅଦା, ଲୁଣ ଦେଇ ନିରାମିଷ, ଆମିଷ ବହୁ ପ୍ରକାର ତିଅଣ କଲେ। ହେଙ୍ଗୁ, ଜୀରା, ମରିଚ ଦେଇ, ନଡ଼ିଆ, ଦୁଧଛେନା ପ୍ରଭୃତି ବହୁ ପିଷ୍ଟକ ଘୃତପାକରେ କଲେ। ମାଛ-ମାଂସ ଛଡ଼ା, ଝଡ଼ା ତିଅଣ, କ୍ଷୀରି, କ୍ଷୀରିଷା, ଶାକର ପରଷିଲେ। ପଣା, ପଇଡ଼ ବଳେ ଯାଚି ଦେଲେ।

ନାଡ଼ି, ସରପୁଳି, ଆରିଷା, ଛେନାପୁରୀ, କାକରା, ଛେନାଲଡ଼ୁ, ମାଲପୁଆ, ପୁରୀ, ସଜମରା ଘିଅ ବଡ଼ାରେ ଆଣି ଦେଲେ। ଗଜା, କଚୁରୀ, ପଣସଖୋସା, ବିରିବଡ଼ା, କୋରା, ରସଗୋଲା, ଅମୃତରସାବଳୀ, ମଣ୍ଡା, ନାନମାନ, ଅମୃତପାଣି କଦଳୀ ଦେଲେ। ଝୁମ୍ପା, ଝରିରେ ନାନା ତୀର୍ଥଜଳ ଆଣି ଦେଲେ। ପଣସିଆ ମଣ୍ଡା, ଲବଣୀ, ପାଣି, ପଣା, ଫେଣା, ଖୁଡ଼ୁମୁଆ ପ୍ରଭୃତି ଖାଇଖାଇ ଲୋକେ ଚିଟା ହୋଇଗଲେ।''

ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଗବେଷକ ଡକ୍ଟର ଭୋଳାନାଥ ରାଉତ ମଧ୍ୟ ତାଙ୍କ 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି' ଶୀର୍ଷକ ଗବେଷଣା ସନ୍ଦର୍ଭ (୧୯୯୮)ରେ ଦାଣ୍ଡି ରାମାୟଣରେ 'ରସଗୋଲା' ଶବ୍ଦର ଉଲ୍ଲେଖ କରିଛନ୍ତି।

କଲିକତା ବିଶ୍ୱବିଦ୍ୟାଳୟରୁ ୧୯୨୧ରେ ପ୍ରକାଶିତ ଏବଂ ବିଜୟ ଚନ୍ଦ୍ର ମଜୁମଦାରଙ୍କ ସଂପାଦିତ 'ଟିପିକାଲ ସିଲେକ୍‌ସନ୍‌ସ ଫ୍ରମ୍ ଓଡ଼ିଆ ଲିଟରେଚର'ର ପ୍ରଥମ ଭାଗରେ ଓଡ଼ିଶାର ଆଦିକବିମାନଙ୍କ କୃତିର ଯେଉଁ ନିର୍ବାଚିତ ଅଂଶ ଦିଆଯାଇଛି, ସେଥିରେ ବଳରାମ ଦାସଙ୍କ 'ରାମାୟଣ'ର ନିର୍ବାଚିତ ଅଂଶ ଅଛି। ସେହି ନିର୍ବାଚିତ ଅଂଶ (ଓଡ଼ିଆ ସାହିତ୍ୟର ପରିଚୟ, ପୃ-୮୪)ରେ ମଧ୍ୟ ଛେନା, ଛେନାଜାତ ସାମଗ୍ରୀ ଓ ରସଗୋଲାର ଉଲ୍ଲେଖ ଅଛି। ଏହାର ପ୍ରତିଲିପି 'ୱାର୍ଲଡ଼ ଇ ବୁକ୍ ଲାଇବ୍ରେରୀ'ରେ ଉପଲବ୍ଧ। କଲିକତା ବିଶ୍ୱବିଦ୍ୟାଳୟର ତତ୍‌କାଳୀନ କୁଳପତି ସାର୍ ଆଶୁତୋଷ ମୁଖାର୍ଜୀ ତାହାର ମୁଖବନ୍ଧ ଲେଖିଛନ୍ତି। ପୁସ୍ତକର ଆରମ୍ଭରେ ଯେଉଁ ଦୀର୍ଘ ଇଂରାଜୀ ପ୍ରବନ୍ଧ ଅଛି, ସେଥିରେ ସ୍ପଷ୍ଟ ସୂଚିତ ହୋଇଛି ଯେ ବଳରାମ ଦାସଙ୍କ ସମୟ ହେଉଛି ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ଉଭୟ ଗଜପତି ମହାରାଜାଙ୍କର ସମୟ। ୩୨ ବର୍ଷ ବୟସରେ ବଳରାମ ଦାସ ଏହି 'ରାମାୟଣ'ର ରଚନା ସଂପୂର୍ଣ୍ଣ କରିସାରିଥିଲେ। ଏହା ଥିଲା ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟ (୧୪୬୮-୧୯୪୭)। ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ବେଳକୁ ବଳରାମ ପରିଣତ ବୟସରେ ପଦାର୍ପଣ କରିଥିଲେ। ଏହା ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନର ଅର୍ଦ୍ଧଶତାବ୍ଦୀ ପୂର୍ବର ଏବଂ ବଙ୍ଗଳାର ତଥାକଥିତ ଆଧୁନିକ ରସଗୋଲାର ଜନ୍ମ (୧୮୬୮ ଖ୍ରୀଷ୍ଟାବ୍ଦ)ର ପ୍ରାୟ ୩୫୦ ବର୍ଷ ପୂର୍ବବର୍ତ୍ତୀ ।



## ବଙ୍ଗୀୟ 'ବିଶ୍ୱକୋଷ'ର 'ରସଗୋଲା'

ଏ ପ୍ରସଙ୍ଗରେ ଆଉ ଏକ ବଳିଷ୍ଠ ପ୍ରମାଣ ହେଉଛି ନଗେନ୍ଦ୍ର ନାଥ ବସୁ (୧୮୬୬-୧୯୩୬)ଙ୍କ ବଙ୍ଗୀୟ 'ବିଶ୍ୱକୋଷ'। ଏହା ହେଉଛି ବଙ୍ଗଳା ଭାଷାର ପ୍ରଥମ ବିଶ୍ୱକୋଷ। ଦୀର୍ଘ ୨୭ ବର୍ଷର ଅକ୍ଳାନ୍ତ ଅଧ୍ୟବସାୟ ଫଳରେ ନଗେନ୍ଦ୍ର ନାଥ ବସୁ ଏହାର ୨୪ଟି ଭାଗ ପ୍ରକାଶ କରିପାରିଥିଲେ ଏବଂ ଶେଷ ଭାଗଟି ପ୍ରକାଶ ପାଇଥିଲା ୧୯୧୧ରେ। ସେଥିରେ 'ରସଗୋଲା' ଶବ୍ଦଟିକୁ 'ଦେଶଜ' ବୋଲି କୁହାଯାଇଛି। ଏହା ବଙ୍ଗଳା ଭାଷାର ଶବ୍ଦ ବା 'ରସଗୋଲା' ବଙ୍ଗଳାର ଉଦ୍ଭାବନ ବୋଲି ସେଥିରେ କୌଣସି ଉଲ୍ଲେଖ ନାହିଁ। ଏ ଦୃଷ୍ଟିରୁ ବିଶିଷ୍ଟ ଇତିହାସ ପ୍ରଫେସର ତଥା ଊନବିଂଶ ଶତାବ୍ଦୀର କାଳଖଣ୍ଡ ସଂପର୍କରେ ବିଶେଷ ଗବେଷଣା କରିଥିବା ପ୍ରଫେସର କୈଳାସ ଚନ୍ଦ୍ର ଦାଶ 'ଫ୍ରେଶ ଲାଇଟ ଅନ୍ ରସଗୋଲା' ଶୀର୍ଷକ ଏକ ଇଂରାଜୀ ଗବେଷଣା ନିବନ୍ଧରେ ପ୍ରଶ୍ନ କରିଛନ୍ତି, ଊନବିଂଶ ଶତାବ୍ଦୀର ଶେଷ ଦଶକରେ ମୁଦ୍ରିତ ଏହି ବିଶ୍ୱକୋଷରେ କାହିଁକି 'ରସଗୋଲା' ଏକ ଦେଶଜ ଶବ୍ଦ ବୋଲି ଲେଖାଅଛି ? କାହିଁକି 'ରସଗୋଲା' ଏକ ବଙ୍ଗୀୟ ଉଦ୍ଭାବନ ବୋଲି ସେଥିରେ ଲେଖା ନାହିଁ ? ରସଗୋଲାର ଉଦ୍ଭବ ଯେ କଲିକତାରେ ଏବଂ ୧୮୬୮ରେ, ସେ ବାବଦରେ କୌଣସି ପ୍ରାମାଣିକ ତଥ୍ୟ ଅଛି କି ?

ଏସବୁ ପ୍ରଶ୍ନର ଉତ୍ତର ଏବେ ବଙ୍ଗଳା ଦେବାର ସମୟ ଆସିଛି।

## ନଗେନ୍ଦ୍ର ନାଥ ବସୁଙ୍କ 'ହିନ୍ଦୀ ରସଗୁଲା'

ନଗେନ୍ଦ୍ର ନାଥ ବସୁ ଯେ କେବଳ 'ବଙ୍ଗଳା ବିଶ୍ୱକୋଷ'ର ପ୍ରଣେତା ଥିଲେ, ତାହା ନୁହେଁ 'ଦ ଏନସାଇକ୍ଲୋପିଡ଼ିଆ ଇଣ୍ଡିକା' ଅନ୍ତର୍ଗତ 'ହିନ୍ଦୀ ବିଶ୍ୱକୋଷ'ର ମଧ୍ୟ ସେ ସଂପାଦକ ଥିଲେ। ୧୯୧୯ ମସିହାରେ ପ୍ରକାଶିତ ଏହି 'ହିନ୍ଦୀ ବିଶ୍ୱକୋଷ'ର ଊନବିଂଶ ଭାଗରେ 'ରସଗୁଲା' ଶବ୍ଦ ଅଛି ଏବଂ ଆଶ୍ଚର୍ଯ୍ୟଜନକ ବିଷୟ ଏହି ଯେ ନଗେନ୍ଦ୍ର ନାଥ ବସୁ ତାହାକୁ ଏକ 'ହିନ୍ଦୀ' ଶବ୍ଦ ଭାବରେ ସୂଚିତ କରିଛନ୍ତି। ଏହା ସ୍ପଷ୍ଟ ସୂଚାଏ, 'ରସଗୋଲା' ଯେ ଏକ ବଙ୍ଗଳା ଶବ୍ଦ ଏବଂ ଛେନାରୁ ପ୍ରସ୍ତୁତ ଏହି ମିଷ୍ଟାନ୍ନ ଯେ ବଙ୍ଗଳାର ଏକ ଉଦ୍ଭାବନ– ସେ ବାବଦରେ ନଗେନ୍ଦ୍ର ନାଥ ସନ୍ଦିହାନ ଥିଲେ।

## ଓଡ଼ିଶାର ରସଗୋଲା

ରସଗୋଲାକୁ ନେଇ ଓଡ଼ିଶାରେ ମଧ୍ୟ କଥା, ଉପକଥା, ସ୍ମୃତିକଥା ଆଦିର ଅଭାବ ନାହିଁ। 'ସାରଳା ମହାଭାରତ'ଠାରୁ ଆରମ୍ଭ କରି 'ଦାଣ୍ଡି ରାମାୟଣ', 'ଅମ୍ବିକା ବିଳାସ', 'ବିଦଗ୍ଧ ଚିନ୍ତାମଣି' ଆଦି ଅନେକ କାବ୍ୟକୃତିରେ ଓଡ଼ିଆ ଖାଦ୍ୟ ପରଂପରାର ପ୍ରଚୁର ଉଲ୍ଲେଖ ରହିଛି। ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ଯେ 'ରସଗୋଲା' ଶବ୍ଦ ପ୍ରସଙ୍ଗରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ''ସଂକଳ୍ପର ମଣ୍ଡା ହେଲା ସତ ରସଗୋଲା''ର ଉଲ୍ଲେଖ ଅଛି। ସେ ସଂପର୍କିତ ସୂଚନାରେ ଅଛି 'ଚିନ୍ତାମଣି'। ଓଡ଼ିଆ ଲୋକସାହିତ୍ୟର ଏକ ଆଲୋଚନା ପ୍ରସଙ୍ଗରେ ବିଶିଷ୍ଟ ଗବେଷିକା ଡକ୍ଟର ତୁଳସୀ ଓଝା ଏହାକୁ ଷୋଡ଼ଶ ଶତାବ୍ଦୀର 'ଚିନ୍ତାମଣି' କାବ୍ୟର ଅଂଶ ବୋଲି କହିଛନ୍ତି। ସେହି ଆଲୋଚନାରେ ଓଡ଼ିଶାର ପାରଂପରିକ ବ୍ରତ 'ସୁଦଶାବ୍ରତ'ର ଶୁକ୍ଳମଣ୍ଡା ଭୋଗ ସହିତ ଶୁଭ୍ର ରସଗୋଲାର ସାମ୍ୟ ସେ ସୂଚିତ କରିଛନ୍ତି। ଏହି ସୁଦଶାବ୍ରତ ଦେବୀ ଲକ୍ଷ୍ମୀଙ୍କର ପୂଜା। ଓଡ଼ିଶାର ପାରଂପରିକ ଓଷାବ୍ରତର ବିଧାନ ଅନୁସାରେ, ମାର୍ଗଶିର ମାସ ଗୁରୁବାର ଦିନ ଏହି ବ୍ରତରେ ମହାଲକ୍ଷ୍ମୀଙ୍କୁ ଛେନା ଓ ଗୁଡ଼ ମିଶ୍ରିତ ଗୁଳା ଭୋଗ କରିବାର ବିଧି ଅଛି। ଡକ୍ଟର ଓଝାଙ୍କ ଅନୁସାରେ, ଛେନାମଣ୍ଡା ଓ ଛେନାଗୁଳା ଭୋଗ ଦେବୀ ଲକ୍ଷ୍ମୀଙ୍କର ଅତି ପ୍ରିୟ ହୋଇଥିବାରୁ, ମହାପ୍ରଭୁ ଶ୍ରୀଜଗନ୍ନାଥ ଲକ୍ଷ୍ମୀଦେବୀଙ୍କର ମାନଭଞ୍ଜନ କରିବା ନିମିତ୍ତ ନୀଳାଦ୍ରିବିଜେ ଦିନ ନିଜ ସାଙ୍ଗରେ ରସଗୋଲା ନେଇ ଶ୍ରୀମନ୍ଦିରକୁ ଯାଇଥାନ୍ତି।

ଉପଲବ୍ଧ ତଥ୍ୟଗୁଡ଼ିକର ସଂକଳନ ମଧ୍ୟ କରାଯାଇନାହିଁ। ବିଶିଷ୍ଟ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଆତ୍ମଜୀବନୀ



'ପଥିକ'ର 'କଟକ ରସଗୋଲା ଓ କଲିକତୀ ରସଗୋଲା' ଏହାର ଏକ ଉତ୍କୃଷ୍ଟ ଉଦାହରଣ । ସେଥିରେ ଓଡ଼ିଶା ଓ ବଙ୍ଗଳା– ଏହି ଦୁଇ ପ୍ରତିବେଶୀ ରାଜ୍ୟର ରସଗୋଲା ସଂପର୍କରେ ତୁଳନାତ୍ମକ ବିବରଣୀ ରହିଛି ଏବଂ କଲିକତା ରସଗୋଲା ତୁଳନାରେ କଟକ ରସଗୋଲାର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଛି ।

ଓଡ଼ିଶାର ସମସ୍ତଙ୍କୁ ଜଣା ଯେ ଭୈରବ ଚନ୍ଦ୍ର ମହାନ୍ତି ଓଡ଼ିଶାର କ୍ରୀଡ଼ା ଇତିହାସର ଏକ ଚିରସ୍ମରଣୀୟ ବ୍ୟକ୍ତିତ୍ୱ । ଗୋପାଳ ଛୋଟରାୟଙ୍କ ବର୍ଣ୍ଣନା ଅନୁସାରେ, ଦିନେ କଲିକତାର ଦୁଇଟି ଦମ୍ପତି ଆସି ତାଙ୍କର ଅତିଥି ହୋଇଥିଲେ । ସେଦିନ ଗୋପାଳବାବୁଙ୍କୁ ଭୈରବବାବୁ କହିଲେ, କଲିକତାରୁ ଏମାନେ ଆସିଛନ୍ତି । ତମେ ତ ବାଲୁବଜାର ଅଞ୍ଚଳରେ ରହୁଚ– ଯେଉଁଠି ରଙ୍ଗିଆ ଦୋକାନ ପ୍ରଭୃତି ଭଲ ମିଠା ଦୋକାନ ଅଛି । ତମେ କୁହ, ଏମାନଙ୍କୁ ଆମେ କି ମିଠା ଖୁଆଇବା ?

ଗୋପାଳବାବୁ କହିଲେ, ଆମ କଟକ ସହର କଲେଜଛକର ବାଞ୍ଛା ସାହୁ ଦୋକାନ, ଆମ ବାଲୁବଜାରର ରଙ୍ଗିଆ ଦୋକାନର ରସଗୋଲା, କ୍ଷୀରମୋହନ ବା ରାଜଭୋଗ, ପୁଣି ହାଇକୋର୍ଟ ପାଖ ଗୋବିନ୍ଦ ସାହୁଙ୍କ ଦୋକାନର ସ୍ପଞ୍ଜ ରସଗୋଲାର ପରିଚୟ ଆପଣମାନଙ୍କର ଅତିଥି ନିଶ୍ଚୟ ପାଇନାହାନ୍ତି । ମୁଁ ଏ ତାଲିକା କରିଦେଉଚି । ଆପଣ ରଙ୍ଗିଆ ଦୋକାନରୁ ଏ ମିଠା ମଗେଇ ଆଣନ୍ତୁ ।

ଭୈରବବାବୁ ତାହା କଲେ । ପରେ ଯେତେବେଳେ ତାଙ୍କ ସହ ଗୋପାଳ ଛୋଟରାୟଙ୍କର ଭେଟ ହେଲା, ଭୈରବବାବୁ ଖୋଲା ମନରେ କହିଲେ, ତୁମ କଥା ଠିକ୍ । ଆମ ଏଠିକା ଛେନା ଜିନିଷ, ବିଶେଷତଃ ରସଗୋଲା, ରାଜଭୋଗର ପ୍ରଶଂସା ସେମାନେ ମୁକ୍ତ କଣ୍ଠରେ କରିଯାଇଚନ୍ତି । ଏହି ପ୍ରସଙ୍ଗର ବର୍ଣ୍ଣନା କରି ପରିଶେଷରେ ଶ୍ରୀ ଛୋଟରାୟ କହିଛନ୍ତି, ତାଙ୍କ କଥାରୁ ମୁଁ ଜାଣିଲି, କଲିକତା ରସଗୋଲା ଅପେକ୍ଷା ଆମର ଏଠିକା ରସଗୋଲାକୁ ସେମାନେ ବେଶୀ ପସନ୍ଦ କରନ୍ତି ।

ନୀରଦ ସି. ଚୌଧୁରୀ ଜଣେ ବିଶିଷ୍ଟ ଭାରତୀୟ–ଇଂରାଜୀ ଲେଖକ । ଏକଦା ଭାରତର ପ୍ରସିଦ୍ଧ ଇଂରାଜୀ ସାପ୍ତାହିକ ପତ୍ରିକା 'ଇଲଷ୍ଟ୍ରେଟେଡ଼ ୱିକ୍ଲି'ରେ ଭାରତୀୟ ଖାଦ୍ୟ ବିଷୟରେ ସେ ଗୋଟିଏ ଲେଖା ଲେଖିଥିଲେ । ଖାଦ୍ୟ ଗବେଷକ କେ.ଟି. ଆଚାୟାଙ୍କ ପରି ସେ ମଧ୍ୟ ସେଥିରେ ଛେନା ଓ ଦୁଗ୍ଧ ଉପାଦାନରେ ପ୍ରସ୍ତୁତ ମିଠାର ଆଦିଶ୍ରେୟ ବଙ୍ଗଦେଶକୁ ହିଁ ଦେଇଥିଲେ । ତାଙ୍କର ସେହି ଲେଖାର ଅବତାରଣା କରି ଗୋପାଳ ଛୋଟରାୟ କହିଛନ୍ତି, ହାୟ, ଛେନା ଓ ଦୁଗ୍ଧ ଉପାଦାନରେ ପ୍ରସ୍ତୁତ ମିଷ୍ଟାନ୍ନର ଏକ ପୀଠସ୍ଥଳୀ ରୂପେ ବଙ୍ଗଦେଶର ପଡ଼ୋଶୀ ରାଜ୍ୟ ଓଡ଼ିଶା– ବିଶେଷତଃ ଉପକୂଳ ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ୱର ଯେ ବହୁ କାଳରୁ ସୁପ୍ରସିଦ୍ଧ, ତା'ର ସୂଚନା ନୀରଦବାବୁଙ୍କ ଲେଖାରେ ଦୃଷ୍ଟିଗୋଚର ହେଲା ନାହିଁ କାହିଁକି ?

ଏପରି ପକ୍ଷପାତ ଯେ କେବଳ ବଙ୍ଗୀୟ ନୀରଦ ସି. ଚୌଧୁରୀ ଓ ଦକ୍ଷିଣ ଭାରତୀୟ କେ.ଟି. ଆଚାୟା କହିଛନ୍ତି, ତାହା ନୁହେଁ । ଆହୁରି ଅନେକେ ବି କହିଛନ୍ତି । କିନ୍ତୁ ଓଡ଼ିଶା ଯେ ରସଗୋଲାର ଆଦିଭୂମି, ସେ କଥାଟି ସେହିସବୁ ଆକ୍ଷେପ ଓ ଉପସ୍ଥାପନାର ତୀବ୍ରତା ମଧ୍ୟରେ ନିର୍ବାପିତ ହୋଇଯାଇ ନାହିଁ । ଆହୁରି ଅନେକ ବଙ୍ଗୀୟ, ଭାରତୀୟ ଓ ବିଦେଶୀ ଖାଦ୍ୟ ଗବେଷକ ଓଡ଼ିଶାର ଶ୍ରେୟ ସପକ୍ଷରେ ଦୃଢ଼ ସ୍ୱର ଉଠାଇଛନ୍ତି ।

ତେବେ ଓଡ଼ିଶା ନା ବଙ୍ଗଳା– ରସଗୋଲାର ଆଦିଭୂମି କେଉଁଟି, ସେ ସଂପର୍କରେ ଉତ୍କଳଗୌରବ ମଧୁସୂଦନ ଦାଶଙ୍କ ଜୀବନର ଏକ ଆଲେଖ୍ୟ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ।

୧୯୫୧ ମସିହାରେ 'ଉତ୍କଳଗୌରବ ମଧୁସୂଦନ' ଶୀର୍ଷକ ଏକ ପୁସ୍ତକ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶ ପାଇଥିଲା । ତାହାର ଲେଖକ ଥିଲେ ନବକିଶୋର ଦାସ । ମଧୁବାବୁଙ୍କ ମୃତ୍ୟୁଶଯ୍ୟାରେ ତାଙ୍କର ସେବା କରିବାର ସୁଯୋଗ ଶ୍ରୀ ଦାସଙ୍କୁ ମିଳିଥିଲା । ସେତେବେଳେ ତାଙ୍କର ଜୀବନୀ ଲେଖିବା



ଚିନ୍ତା ମଧ୍ୟ ନବକିଶୋରଙ୍କ ମନରେ ଜାଗ୍ରତ ହୋଇଥିଲା । କିନ୍ତୁ ମଧୁବାବୁ ସେଥିପାଇଁ ବିଶେଷ ଆଗ୍ରହ ପ୍ରକାଶ କରିନଥିଲେ ।

ମଧୁବାବୁଙ୍କ ମୃତ୍ୟୁ ପରେ ଶ୍ରୀ ଦାସ ସେହି 'ଉତ୍କଳଗୌରବ ମଧୁସୂଦନ' ପୁସ୍ତକଟିକୁ ଲେଖିଛନ୍ତି । ସେଥିରେ ସେ ସୂଚାଇଛନ୍ତି, ''ମଧୁସୂଦନଙ୍କ ଜୀବନୀ ବିଷୟରେ ଯାହା ଏହି ବହିରେ ଲେଖାଯାଇଛି, ତାହା ସମସ୍ତ ପ୍ରାୟ ଲିଖିତ କାଗଜପତ୍ରରୁ ସଂଗୃହୀତ । ଶୁଣାକଥା ସମାନ ।'' ସେହି ପୁସ୍ତକରେ ଅଛି ଚିନ୍ତାମଣି ଆଚାର୍ଯ୍ୟଙ୍କର ଏକ ମୁଖବନ୍ଧ । ସେଥିରେ ମଧୁବାବୁଙ୍କ ଓକିଲାତି ଜୀବନର ଗୋଟିଏ ଆଖ୍ୟାୟିକା ବର୍ଣ୍ଣିତ ହୋଇଛି । ତାହାର ଆଧାରରେ 'ମିଠାରୁ ଲୁଣ ଯାଏ' ଶୀର୍ଷକରେ, ୨୦୧୨ ମସିହା ମେ ୧୨ ତାରିଖ 'ସମ୍ବାଦ'ରେ ଦାଶ ବେନହୁର ଗୋଟିଏ ଲେଖା ଲେଖିଥିଲେ । ପରେ ତାହା ତାଙ୍କ ଉପନ୍ୟାସ 'ପଗଡ଼ି ପୁରୁଷ'ର ୫୨ ଅଧ୍ୟାୟ ରୂପେ ସଂକଳିତ ହୋଇଛି । ସେଥିରେ ଅଛି ମଧୁସୂଦନ ଦାସ ଲଢ଼ିଥିବା ଏକ ମକଦ୍ଦମାର ବିବରଣୀ । ମକଦ୍ଦମାଟି ୧୯୦୧–୦୨ର ବୋଲି ଜଣାଯାଏ । ସେଥିରେ ଜଣେ ମଧୁବୈଶଙ୍କୁ ମଧୁବାବୁ ସାକ୍ଷୀ ଭାବରେ ଜେରା କରିବାର ବୃତ୍ତାନ୍ତ ଅଛି । ତାହାର ବିବରଣୀ ଏହିପରି–

''ମଧୁସୂଦନ ପଚାରିଲେ– ଭାଇ ନାଁଟା କ'ଣ ଟି ଭୁଲିଗଲି ।

ସାକ୍ଷୀ– ବରଜାନନ୍ଦ ସାହୁ ।

ମଧୁସୂଦନ– ସାହୁ ବୋଇଲେ ?

ସାକ୍ଷୀ– ଜାତିରେ ଆମ୍ଭେ ମଧୁବୈଶ ।

ମଧୁସୂଦନ କହିଲେ– ଜାଣିଲି । ତୁମେ ପ୍ରସିଦ୍ଧ ମିଠା ପ୍ରସ୍ତୁତକାରୀ କାଙ୍ଗାଳୀ ସାହୁଙ୍କ ବଂଶଜ ।

ସାକ୍ଷୀଟି ଏବେ ଆଗ୍ରହୀ ଆଖିରେ ଚାହିଁଲା ମଧୁସୂଦନଙ୍କୁ । ମଉକା ଠିକ୍ ଜାଣି ମଧୁସୂଦନ କହିଲେ– ''ଆରେ ଭାଇ, ବାପା ଜେଜେବାପା ଅମଳରୁ ମିଠେଇ, ରସଗୋଲା, ମୋହନ ଭୋଗ କରି ଲୋକଙ୍କ ପାଟି ମିଠା କରୁଚ, ସେଥିପାଇଁ ଓଡ଼ିଶାରେ ଓଡ଼ିଆଙ୍କଠାରୁ ଆରମ୍ଭ କରି ବଙ୍ଗାଳୀଯାଏଁ ସମସ୍ତଙ୍କ ବଚନ ମଧୁର, ଆଉ ତୁମ ପାଟିରେ ମଧୁର ବଚନ ନାହିଁ କାହିଁକି ?

ସାକ୍ଷୀଟି ବିଚରା ମୁହଁ ପୋତିଦେଲା । ତେଣିକି ମଧୁସୂଦନ ଯାହା ପଚାରିଲେ, ମଧୁର ବଚନ କହୁ କହୁ ସତକଥା ଗୁଡ଼ାକ ଗାଳି ପକାଇଲା ଗୋଟିଗୋଟି କରି । ବିଚାରପତି ମଧ୍ୟ ହସି ପକାଇଲେ ମନେ ମନେ । ମଧୁସୂଦନଙ୍କର ଜିତାପଟ ହେଲା ।''

ଆନୁମାନିକ ୧୯୦୧–୦୨ ମସିହାର ଏହି ମକଦ୍ଦମା ବିବରଣୀ ସୂଚାଏ ଯେ ଉକ୍ତ ମଧୁବୈଶଙ୍କର ପରିବାରରେ ବାପା–ଜେଜେବାପା ଅମଳରୁ ରସଗୋଲା ସମେତ ଅନ୍ୟ ମିଠା ପ୍ରସ୍ତୁତ କରିବାର ପରଂପରା ଥିଲା । ତାଙ୍କ ବାପା–ଜେଜେବାପା ଅମଳକୁ ଯଦି ଅତି କମରେ ୭୦–୮୦ ବର୍ଷ ବୋଲି ହିସାବକୁ ନିଆଯାଏ, ତେବେ ସେହି ପରିବାରରେ ରସଗୋଲା ପ୍ରସ୍ତୁତିର ସମୟ ହେବ ନବୀନ ଚନ୍ଦ୍ର ଦାଶଙ୍କ ରସଗୋଲା ଉଦ୍ଭାବନର ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବର ।

ତେବେ, ବିଶିଷ୍ଟ ସାମ୍ବାଦିକ ସୁଭାଷ ଚନ୍ଦ୍ର ପଟ୍ଟନାୟକ ତାଙ୍କ 'ୱେବ ଜର୍ନାଲ'ର ୩୧ ଜୁଲାଇ ୨୦୧୫ ସଂଖ୍ୟାରେ ନାନା ଐତିହାସିକ ତଥ୍ୟର ଆଧାରରେ ଓଡ଼ିଶାର ବାଙ୍କୀ ଗଡ଼ଜାତ ଅନ୍ତର୍ଗତ ବଦାଳର ଏକ ପରିବାର ସାତପୁରୁଷ ଧରି ରସଗୋଲା ତିଆରି କରୁଥିବା ବିଷୟ ଉଲ୍ଲେଖ କରିଛନ୍ତି । ଅପରପକ୍ଷେ କଲିକତାର ନବୀନ ଚନ୍ଦ୍ର ଦାଶଙ୍କ ପରିବାର ପକ୍ଷରୁ ରସଗୋଲା ମାତ୍ର ତିନିପୁରୁଷ ଧରି ପ୍ରସ୍ତୁତ ହେଉଥିବା ଜଣାଯାଏ । ବାଙ୍କୀର ପରିବାର ତତ୍‌କାଳୀନ ରାଜାଙ୍କୁ ରସଗୋଲା ଖୁଆଇ ତାଙ୍କ ପରିବାର ସାତ ମାଣ ନିଷ୍କର ଜମି ଦାନ ରୂପେ ପାଇଥିଲେ ବୋଲି ସେଥରୁ ଜଣାଯାଏ ।

ତେବେ କେବଳ ଯେ ଓଡ଼ିଶାର ଲେଖକ ଓ ଗବେଷକ ରସଗୋଲା ଓଡ଼ିଶାର ବୋଲି କହୁଛନ୍ତି, ତାହା ନୁହେଁ ବଙ୍ଗଳାର କେତେକ ଲେଖକ ଓ ଗବେଷକ ମଧ୍ୟ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି ।



ଏହାର ଗୋଟିଏ ବଡ଼ ପ୍ରମାଣ କଲିକତାରୁ ପ୍ରକାଶ ପାଉଥିବା ବଙ୍ଗଳା ଭାଷାର ଲୋକପ୍ରିୟ ପତ୍ରିକା 'ସାପ୍ତାହିକ ବର୍ତ୍ତମାନ'ର ଏପ୍ରିଲ, ୨୦୧୧ ସଂଖ୍ୟା । ସେଥିରେ ଅଛି ସମ୍ରାଟ ନନ୍ଦୀଙ୍କର ଏକ ଲେଖା । ପତ୍ରିକାର 'ଏକଟୁ ଜାନୁନ ଏକଟୁ ଭାବୁନ'(ଟିକିଏ ଜାଣନ୍ତୁ, ଟିକିଏ ଭାବନ୍ତୁ)ରେ ସେ ଏହାର ଏକ ରୋଚକ ବିବରଣୀ ଦେଇ କହିଛନ୍ତି–

''ରସଗୋଲା ଶବ୍ଦଟି ଶୁଣିଲେ ହିଁ ଆପେଆପେ ଜିଭ ଓଦା ହୋଇଯାଏ । ଏହି ମିଠାଟି ବଙ୍ଗାଳୀପଣର ଏକ ବାହକ ରୂପେ ବିବେଚିତ ହୁଏ । ଅଥଚ ଶୁଣିଲେ ଚକିତ ହେବାକୁ ପଡ଼େ ଯେ ରସଗୋଲାକୁ ବଙ୍ଗାଳୀମାନେ ଯେତେ ନିଜର ବୋଲି ଦାବି କରନ୍ତୁ ନା କାହିଁକି, ଏହାର ସୃଷ୍ଟି କିନ୍ତୁ ଓଡ଼ିଶାରେ । ଯୁଗଯୁଗ ଧରି ଏଇଟି ଓଡ଼ିଶାର ମିଠା । ଏପରିକି ପୁରୀର ଜଗନ୍ନାଥ ମନ୍ଦିରରେ ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀଙ୍କୁ ଏହି ମିଠା ଭୋଗ ଦିଆଯାଏ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରୁ ଅନେକ ବ୍ରାହ୍ମଣ ପାଚକ (ଯାହାଙ୍କୁ ଆମେ 'ଠାକୁର' କହୁ) କାର୍ଯ୍ୟୋପଲକ୍ଷେ ଏ ରାଜ୍ୟକୁ ଆସୁଥିଲେ । ବସ୍ତୁତଃ ତାଙ୍କରି ସୂତ୍ରରେ ହିଁ ସେ ରାଜ୍ୟରୁ ଅନେକ 'ରେସିପି' ସହିତ ରସଗୋଲା ବି ପଦାର୍ପଣ କରିଛି ବଙ୍ଗଳାରେ । ତେବେ ଏଠି ରସଗୋଲାର ପ୍ରଚଳନ କରନ୍ତି ଏନ.ସି. ଦାଶ ନାମକ ଜଣେ ମିଷ୍ଟାନ୍ନ ନିର୍ମାତା । ପରବର୍ତ୍ତୀ କାଳରେ ତାଙ୍କ ପୁତ୍ର କେ.ସି. ଦାଶ ସେହି ବ୍ୟବସାୟର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ତାଙ୍କରି ହାତଧରି ରସଗୋଲା ଯାଇଛି ସାଗର ପାରି ରାଇଜକୁ ।'' ଏହା ସ୍ପଷ୍ଟ ସୂଚାଏ ଯେ ଓଡ଼ିଶାର ରସଗୋଲା ପ୍ରଥମେ କଲିକତାକୁ ଯାଇ ସେଠାରେ ପ୍ରସିଦ୍ଧିଲାଭ କରିଛି ।

ଏହାର ସଦ୍ୟତମ ସମର୍ଥକ ହେଉଛନ୍ତି ଆଉ ଜଣେ ବଙ୍ଗୀୟ ସାମ୍ବାଦିକ ବିଶ୍ୱବିଜୟ ମିତ୍ର । ୨୦୧୫ ଜୁଲାଇ ୬ ତାରିଖ ଦିନ 'ଟାଇମ୍ସ ଅଫ ଇଣ୍ଡିଆ'ରେ ତାଙ୍କର ଏକ ଲେଖାର ଶୀର୍ଷକ ଥିଲା, 'ରସଗୋଲାର ଉଦ୍ଭାବକ କିଏ ?' ସେଥିରେ ଦୁଇ ପଡ଼ୋଶୀ ରାଜ୍ୟ– ଓଡ଼ିଶା ଓ ବଙ୍ଗଳା ମଧ୍ୟରେ ରସଗୋଲାକୁ ନେଇ ରହିଥିବା ବିବାଦର ଅବତାରଣା କରି, ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ବହୁ ପୂର୍ବରୁ ଏହାର ପ୍ରଚଳନ ଅଛି ବୋଲି ସେ କହିଥିଲେ । ଭାରତବର୍ଷର ଜଣେ ବିଶିଷ୍ଟ ଇତିହାସ ପ୍ରଫେସର ତଥା ଖାଦ୍ୟ ଗବେଷକ ପୁଷ୍ପେଶ ପନ୍ତ ମଧ୍ୟ ଏହାକୁ ସମର୍ଥନ କରନ୍ତି । ସେ କହନ୍ତି– ଓଡ଼ିଶା ଯେ ରସଗୋଲାର ଆଦିଭୂମି ଏ ତଥ୍ୟରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଗତ ୨୦୧୫ ମସିହା ଅଗଷ୍ଟ ମାସ ୨୪ ତାରିଖ ଦିନ ଓଡ଼ିଶାର ଭୁବନେଶ୍ୱରଠାରେ 'ନ୍ୟୁ ଇଣ୍ଡିଆନ ଏକ୍ସପ୍ରେସ୍' ପକ୍ଷରୁ ଆୟୋଜିତ ହୋଇଥିଲା ଏକ ସାହିତ୍ୟ ଉତ୍ସବ । ତାହାର ଏକ ଅଧିବେଶନରେ ଆଲୋଚନାର ବିଷୟ ଥିଲା, 'ଭାରତୀୟ ରନ୍ଧନରେ ଏତେ ଆବର୍ଜନା କାହିଁକି ?' ସେଥିରେ ଯୋଗଦେଇ ପ୍ରଫେସର ପନ୍ତ ତାଙ୍କ ମତର ପୁନରାବୃତ୍ତି କରିଥିଲେ । ସେହି ଉତ୍ସବରେ, ଅଗଷ୍ଟ ୨୩ ତାରିଖ ଦିନ ଭାରତର ବିଖ୍ୟାତ ସିନେ ବ୍ୟକ୍ତିତ୍ୱ ଇମତିଆଜ ଅଲ୍ଲି ମଧ୍ୟ ବଙ୍ଗଳା ରସଗୋଲା ତୁଳନାରେ ଓଡ଼ିଶା ରସଗୋଲାର ଉତ୍କର୍ଷ ଦୃଷ୍ଟିରୁ, ଏହାର ଉଦ୍ଭବ ଓଡ଼ିଶାରୁ ବୋଲି କହିଥିଲେ । ସେହିପରି ୨୪ ତାରିଖର ଅନ୍ୟ ଏକ ଅଧିବେଶନରେ ଭାରତର ବିଖ୍ୟାତ ଡିଟେକ୍ଟିଭ ଲେଖକ, ବଙ୍ଗୀୟ ଶୋଭନ ଚୌଧୁରୀ ମଧ୍ୟ ରସଗୋଲାକୁ ନେଇ ଏକ ବ୍ୟଙ୍ଗ କରିଥିଲେ । ସେ କହିଥିଲେ, ''ଦିନେ ବଙ୍ଗୀୟମାନେ ସେମାନଙ୍କ ସତ୍ୟଜିତ ରାୟ ଓ ରବୀନ୍ଦ୍ରନାଥ ଠାକୁରଙ୍କୁ ନେଇ ଗର୍ବ କରୁଥିଲେ । ମାତ୍ର ଏବେ ବୋଧେ ଗର୍ବ କରିବାକୁ କିଛି ନାହିଁ ବୋଲି ସେମାନେ ଓଡ଼ିଆମାନଙ୍କୁ କହୁଛନ୍ତି, ରସଗୋଲାକୁ ଆମଠାରୁ ନେଇଯାଅ ନାହିଁ । ତୁମ ପାଖରେ ତ ଗର୍ବ କରିବାପାଇଁ କୋଣାର୍କ ଓ ପୁରୀର ମନ୍ଦିର ଅଛି ଆମ ପାଖରେ ଅଛି କ'ଣ !''

ଏ ପ୍ରସଙ୍ଗରେ ଆଉ ଜଣେ ଅଧ୍ୟାପକ ଓ ଗବେଷକ ପ୍ରଫେସର ଉତ୍ପଳ ରାୟ ଚୌଧୁରୀଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ । ପ୍ରାୟ ପାଞ୍ଚବର୍ଷ ତଳେ, ୨୦୧୧ ମସିହା ଅଗଷ୍ଟ ମାସ ପ୍ରଥମ ସପ୍ତାହରେ, ଓଡ଼ିଶାର ପ୍ରମୁଖ ରସଗୋଲା ନିର୍ମାତା ବିକଳାନନ୍ଦ



କରଙ୍କ ସ୍ମୃତିରେ ପ୍ରତିଷ୍ଠିତ ଏକ ଟ୍ରଷ୍ଟ ପକ୍ଷରୁ ନିମନ୍ତ୍ରିତ ହୋଇ ସେ ଆସିଥିଲେ ଓଡ଼ିଶା। ଡକ୍ଟର ରାୟଚୌଧୁରୀ ଯାଦବପୁର ବିଶ୍ୱବିଦ୍ୟାଳୟର 'ଫୁଡ଼ ଟେକ୍ନୋଲୋଜି ଆଣ୍ଡ ବାୟୋ କେମିକାଲ' ବିଭାଗର ପ୍ରଫେସର। ସେତେବେଳେ, ''ତ୍ରୟୋଦଶ ଶତାବ୍ଦୀଠାରୁ (ଅର୍ଥାତ ଦୀର୍ଘ ପ୍ରାୟ ସାତଶହ ବର୍ଷ ଧରି) ପୁରୀ ମନ୍ଦିରରେ ରସଗୋଲା ଭୋଗ ପ୍ରଚଳିତ ଅଛି'' ବୋଲି ସେ କହିଥିଲେ। ସେ ସଂକ୍ରାନ୍ତ ରିପୋର୍ଟ ପ୍ରଖ୍ୟାତ ଇଂରାଜୀ ଦୈନିକ 'ଦ ପାଇଓନିୟର'ର ୫ ଅଗଷ୍ଟ, ୨୦୧୧ ସଂଖ୍ୟା ସମେତ ଅନ୍ୟାନ୍ୟ ଗଣମାଧ୍ୟମରେ ପ୍ରକାଶ ପାଇଛି। ବିଶିଷ୍ଟ ଟେଲିଭିଜନ ସାମ୍ବାଦିକା ଆଲୋକାନନ୍ଦା ମୁଖାର୍ଜୀ, ବିଶିଷ୍ଟ ଗବେଷିକା ଦୀପ୍ତି ରାୟ, ବିଶିଷ୍ଟ ଖାଦ୍ୟ ଗବେଷକ ଚାର୍ମିନ ଓ ବ୍ରିଏନ, କଲିକତାର ବିଶିଷ୍ଟ ଖାଦ୍ୟ ଗବେଷକ ଏସ.ଏମ ଗନି ପ୍ରମୁଖ ମଧ୍ୟ ଓଡ଼ିଶା ହିଁ ରସଗୋଲାର ଆଦିଭୂମି ବୋଲି ମତ ଦିଅନ୍ତି।

ସେହିପରି ଶାମସୁଦ୍ଦିନ ମହମ୍ମଦ ଗନି। ସେ କେବଳ ଭାରତ ସରକାରଙ୍କ ପର୍ଯ୍ୟଟନ ମନ୍ତ୍ରାଳୟ ଅଧୀନରେ ଉତ୍ତର-ପୂର୍ବ ଭାରତର ଆଞ୍ଚଳିକ ନିର୍ଦ୍ଦେଶକ ନଥିଲେ କୋଲକାତା ଇନଷ୍ଟିଚ୍ୟୁଟ ଅଫ ହୋଟେଲ ମ୍ୟାନେଜମେଣ୍ଟର ଅଧ୍ୟକ୍ଷ ମଧ୍ୟ ଥିଲେ। ନିକଟରେ ବିଶିଷ୍ଟ ଜର୍ମାନ ଗବେଷକ ପ୍ରଫେସର ହରମାନ କୁଲକେଙ୍କ ସଂପାଦନାରେ, ଦୁଇଖଣ୍ଡରେ ପ୍ରକାଶ ପାଇଛି 'ଇମେଜିଂ ଓଡ଼ିଶା' ଶୀର୍ଷକ ସୁଦୃଶ୍ୟ ଗ୍ରନ୍ଥ। ସେଥିରେ ଏସ. ଏମ. ଗନି ଓଡ଼ିଶାର ଦୁଗ୍ଧମୂଳ ମିଠା ମଧ୍ୟରେ ଛେନା ପୋଡ଼ପିଠା, ଛେନା ଝିଲ୍ଲୀ ଓ ରସଗୋଲାକୁ ସ୍ଥାନ ଦେଇଛନ୍ତି।

**'ନୀଳାଦ୍ରି ବିଜେ'ର ରସଗୋଲା**

ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ବହୁ ଶତାବ୍ଦୀ ଧରି 'ନୀଳାଦ୍ରି ବିଜେ' ଦିନ ମହାଲକ୍ଷ୍ମୀଙ୍କ ମାନଭଞ୍ଜନର ମଧୁର ନୈବେଦ୍ୟ ଭାବରେ ରସଗୋଲା ଭୋଗ ଅର୍ପିତ ହୋଇଆସୁଛି। କେବଳ ସେତିକି ନୁହେଁ, ଶ୍ରୀଜଗନ୍ନାଥଙ୍କ ସେବା ପୂଜା ସହିତ ଜଡ଼ିତ ବଡ଼ ଓଡ଼ିଆ ମଠ, ଉତ୍ତର ପାର୍ଶ୍ୱ ମଠ, ରାଧାବଲ୍ଲଭ ମଠ, କଟକୀ ମଠ, ନେବଳ ଦାସ ମଠ ଓ ରାଧାଶ୍ୟାମ ମଠ ଆଦିରେ ମଧ୍ୟ ରସଗୋଲା ଭୋଗ ୧୦୦ ବର୍ଷରୁ ୩୦୦ ବର୍ଷ ହେଲା ପ୍ରଚଳିତ ଥିବା ଜଣାଯାଇଛି। ଏ ପ୍ରସଙ୍ଗରେ ପୁରୀ 'ମଠ ପରଂପରା'ର ବିଶିଷ୍ଟ ଗବେଷକ ଡକ୍ଟର ଭାସ୍କର ମିଶ୍ର ରାଘବ ଦାସ ମଠରେ ସ୍ୱତନ୍ତ୍ର ଉଲ୍ଲେଖ କରନ୍ତି। ସେ କହନ୍ତି, ''ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀକ୍ଷେତ୍ରର ଏଇ ଗୋଟିଏ ମଠ, ଯାହାର କି ରସଗୋଲା ଭୋଗ ଜଗମୋହନକୁ ଆସି ଶ୍ରୀଜଗନ୍ନାଥ ଓ ଶ୍ରୀଦେବୀ (ମହାଲକ୍ଷ୍ମୀ)ଙ୍କର ବିବାହ ଗଇଣ୍ଠାଳ ଫିଟିବା ସମୟରେ ଜନୈକ ପୂଜାପଣ୍ଡା ସେବକଙ୍କ ଦ୍ୱାରା ସର୍ପାମଣୋହି ବିଧିରେ ଶ୍ରୀଜଗନ୍ନାଥଙ୍କୁ ନିବେଦିତ ହୋଇଥାଏ। ଏହାର ପରଂପରା ପ୍ରାୟ ୩୦୦ବର୍ଷର।'' ତେବେ ଏ ପ୍ରସଙ୍ଗରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସୂଚନା ହେଉଛି, ଶ୍ରୀଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ଶ୍ରୀମନ୍ଦିରରେ ଛେନା ଭୋଗର ପ୍ରଥମ ପ୍ରଚଳନ କରିଥିଲେ ବୋଲି ବଙ୍ଗୀୟ ଗବେଷକ ଦାବି କରୁଥିବାବେଳେ, ପୁରୀର ଶ୍ରୀଚୈତନ୍ୟ ଗୌଡ଼ୀୟ ମଠରେ ନୀଳାଦ୍ରି ବିଜେରେ ମଧ୍ୟ ରସଗୋଲା ଭୋଗ ହୁଏନାହିଁ। ସେହିପରି, ଶ୍ରୀଜଗନ୍ନାଥଙ୍କର ଅଣସର ସମୟରେ ତାଙ୍କର ଦର୍ଶନ ନପାଇ ବିରହରେ ଶ୍ରୀଚୈତନ୍ୟ ନିକଟବର୍ତ୍ତୀ ଅଲାରନାଥ ପୀଠକୁ ଯାଇ ଅଲାରନାଥ ଦେବଙ୍କ ଦର୍ଶନ କରୁଥିଲେ ମଧ୍ୟ ସେଠାରେ ରସଗୋଲା ଭୋଗର ପ୍ରଚଳନ ନାହିଁ। ସେଠାର ପ୍ରିୟ ଭୋଗ ହେଉଛି କ୍ଷୀରି।

ଓଡ଼ିଶାର ଶ୍ରୀଜଗନ୍ନାଥ ମନ୍ଦିର ପରଂପରାର ଗୋଟିଏ ବିଶେଷତ୍ୱ ହେଉଛି- 'ରଥଯାତ୍ରା'ର ଅନ୍ତିମ ଉତ୍ସବ 'ନୀଳାଦ୍ରି ବିଜେ'ରେ ରସଗୋଲା ଭୋଗର ପାରମ୍ପରିକ ପ୍ରଚଳନ ଅଛି। ଶ୍ରୀଜଗନ୍ନାଥ ଚେତନାର ବିଶିଷ୍ଟ ଗବେଷକ ଜଗବନ୍ଧୁ ପାଢ଼ୀ ଏହାକୁ ଶ୍ରୀମନ୍ଦିରର ଛଅଶହ ବର୍ଷର ପରମ୍ପରା ବୋଲି କହିଥିବା ବେଳେ, ଅନ୍ୟମାନେ ଏହାକୁ ଅନ୍ୟୂନ ତିନିଶହ ବର୍ଷର ବୋଲି କହିଛନ୍ତି।

ଶ୍ରୀଜଗନ୍ନାଥ ଚେତନାରେ ଶ୍ରୀଜୀଉଙ୍କର ଅନେକ ଅନ୍ତରଙ୍ଗ ନୀତି ଗୋପନୀୟ ଓ ଅବର୍ଣ୍ଣନୀୟ। ଏ ବାବଦରେ



ଆମେ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କବି ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ର ଏକ ଉଦାହରଣ ଦେଇପାରିବା। 'ଉତ୍କଳୀୟ ପ୍ରାଚୀ ଗ୍ରନ୍ଥମାଳା (ଓଡ଼ିଆ)' ଅନ୍ତର୍ଗତ ସେହି ଗ୍ରନ୍ଥ ୧୯୯୧ ମସିହାରେ ଓଡ଼ିଶା ସଂସ୍କୃତି ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରକାଶିତ। ଏହି ପୁସ୍ତକର ୨୬ଟି ଅଧ୍ୟାୟ ମଧ୍ୟରୁ ପ୍ରଥମ ଅଧ୍ୟାୟରେ ମଙ୍ଗଳାଚରଣ ଶେଷ ଅଧ୍ୟାୟ ହେଉଛି ଶ୍ରୀଜଗନ୍ନାଥଙ୍କ ଦୈନିକ ନୀତି। ତାହାର ସପ୍ତଦଶ ଅଧ୍ୟାୟରେ ଅଛି ଶ୍ରୀଜଗନ୍ନାଥଙ୍କ 'ଶ୍ରୀମନ୍ଦିର ପ୍ରବେଶ' ବା 'ନୀଳାଦ୍ରି ବିଜେ'ର ବର୍ଣ୍ଣନା।

ପାରମ୍ପରିକ ପ୍ରଥା ଅନୁସାରେ ନୀଳାଦ୍ରିବିଜେରେ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ଶ୍ରୀମନ୍ଦିରରେ ପ୍ରବେଶ କରିବା ପରେ ଦେବୀ ଲକ୍ଷ୍ମୀଙ୍କ ଆଦେଶରେ ଦାସୀମାନେ ଶ୍ରୀମନ୍ଦିର ଦ୍ୱାର ରୁଦ୍ଧ କରି ଦିଅନ୍ତି। ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରରେ ପ୍ରବେଶ କରି ନପାରି ଶ୍ରୀଜଗନ୍ନାଥ ଦାସୀଙ୍କ ମାଧ୍ୟମରେ ଦେବୀ ଲକ୍ଷ୍ମୀଙ୍କୁ ବିନୟ ବଚନ ସମ୍ବଳିତ ଅନୁରୋଧ କରିବା ପରେ ଦେବୀ ଲକ୍ଷ୍ମୀ ଦ୍ୱାର ଖୋଲନ୍ତି। 'ନୀଳାଦ୍ରି ମହୋତ୍ସବ'ର ବର୍ଣ୍ଣନା ଅନୁସାରେ, ସହଚରୀମାନେ ଯାଇ ଦେବୀ ଲକ୍ଷ୍ମୀଙ୍କୁ ବିନୟ ବଚନ ସମ୍ବଳିତ ଶ୍ରୀଜଗନ୍ନାଥଙ୍କ ଅନୁରୋଧ ଜଣାଇବା ପରେ, ଲକ୍ଷ୍ମୀଦେବୀ ତାଙ୍କର ଛଦ୍ମ କଠୋରତା ପରିହାର କରି, ଆନନ୍ଦ ବିହ୍ୱଳ ଚିତ୍ତରେ ଶ୍ରୀମନ୍ଦିରର ଦ୍ୱାର ଖୋଲି ଦେବାପାଇଁ ସେମାନଙ୍କୁ ଆଦେଶ ଦେଇଛନ୍ତି।

ଶ୍ରୀମନ୍ଦିରରେ 'ନୀଳାଦ୍ରି ବିଜେ' ନୀତିର ପାରମ୍ପରିକ ପ୍ରଥା ଅନୁଯାୟୀ, ଏହା ପରେ ଦାସୀ ବା ସହଚରୀ ଭୂମିକାରେ ଥିବା ସେବକମାନେ ଶ୍ରୀମନ୍ଦିରର କବାଟ ଖୋଲି ଦିଅନ୍ତି ଏବଂ ପ୍ରଭୁ ଭିତରକୁ ବିଜେ କରନ୍ତି। ଭଣ୍ଡାର ଦ୍ୱାର ସମ୍ମୁଖରେ ଲକ୍ଷ୍ମୀ–ନାରାୟଣ ଭେଟ ସହିତ 'ବିବାହ ଗଇଣ୍ଠାଳ' ଫିଟା ହୁଏ ଏବଂ ସେହି ଅପୂର୍ବ ମିଳନ ମୁହୂର୍ତ୍ତରେ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଲକ୍ଷ୍ମୀଦେବୀଙ୍କ ମାନଭଞ୍ଜନଜନିତ ମଧୁର ନିଦର୍ଶନ ସ୍ୱରୂପ ରସଗୋଲା ଭୋଗ ଅର୍ପିତ ହୁଏ।

ଏଇ 'ଗଇଣ୍ଠାଳ'ର ଏକ ଗୁରୁତ୍ୱପୂର୍ଣ୍ଣ ବିଶେଷତ୍ୱ ହେଉଛି, ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ରୁକ୍ମିଣୀ ହରଣ ପରେ ଶ୍ରୀଜଗନ୍ନାଥଙ୍କର ଯେଉଁ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ, ତାହା ପରେ ପରେ ପ୍ରଭୁ ସ୍ନାନଯାତ୍ରାକୁ ଆସି ସ୍ନାନନୀତି ପରେ ଜ୍ୱରରେ ପଡ଼ନ୍ତି ଏବଂ ଜ୍ୱରରୁ ଉଠିବା ପରେ ନବଯୌବନ ଦର୍ଶନ ଦେଇ ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କୁ ନେଇ ପରଦିନ ଘୋଷଯାତ୍ରାରେ ବାହାରି ଯାଆନ୍ତି। ତେଣୁ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ପଡ଼ିଥିବା ବିବାହ ଗଇଣ୍ଠାଳ ଫିଟିପାରି ନଥାଏ। ତାହା ଯାଇ ଫିଟେ ରଥଯାତ୍ରା ଓ ବାହୁଡ଼ା ପରର 'ନୀଳାଦ୍ରି ବିଜେ' ଦିନ। ଯେଉଁ ବର୍ଷ ନବକଳେବର ହୁଏ, ସେ ବର୍ଷର ବିଶେଷତ୍ୱ ହେଉଛି, ଏହି ଗଇଣ୍ଠାଳ ବିଦାୟୀ ବିଗ୍ରହଙ୍କ ସହିତ ପଡ଼ିଥିବା ବେଳେ, ନୂତନ ବିଗ୍ରହଙ୍କଠାରେ ଗଇଣ୍ଠାଳ ଫିଟା ନୀତି ଅନୁଷ୍ଠିତ ହୁଏ।

କିନ୍ତୁ ଗଇଣ୍ଠାଳ ଫିଟା ନୀତି ସହିତ, ପାରଂପରିକ ଭାବରେ ହେଉଥିବା ରସଗୋଲା ଭୋଗର ଉଲ୍ଲେଖ 'ନୀଳାଦ୍ରି ବିଜେ' ପ୍ରସଙ୍ଗରେ କାହିଁକି ନାହିଁ ତାହାର ଏକ ସଂକେତ ମିଳେ ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ର ପରବର୍ତ୍ତୀ ବର୍ଣ୍ଣନାରୁ।

ଏହି ଅନ୍ତରଙ୍ଗ ନୀତି କେବଳ ଦର୍ଶନଯୋଗ ବର୍ଣ୍ଣନୀୟ ନୁହେଁ। କେବଳ ଦର୍ଶନକାରୀ ଭକ୍ତ ତାହାର ଅନୁଭବ ପାଆନ୍ତି ଏବଂ ଦେବୀଲକ୍ଷ୍ମୀ ଓ ତାଙ୍କ ନାହା ଶ୍ରୀଜଗନ୍ନାଥ ତାହା ଜାଣନ୍ତି। ସେଥିପାଇଁ ପାରଂପରିକ ଭାବେ ପ୍ରତିବର୍ଷ ହେଉଥିବା 'ଲକ୍ଷ୍ମୀ ନାରାୟଣ ବଚନିକା' ଓ 'ରସଗୋଲା ଭୋଗ' ଆଦି ନୀତିର ବିଶେଷ ଉଲ୍ଲେଖ ସ୍ୱତ୍ୱଲିପି ବା ଓଡ଼ିଆ ସାହିତ୍ୟ କୃତିଗୁଡ଼ିକରେ ପ୍ରାୟ ମିଳେନାହିଁ। ସଂପୃକ୍ତ ସେବକମାନଙ୍କ ଗୃହରେ ଥିବା ପାରମ୍ପରିକ ପୋଥି ଅନୁସାରେ ବଚନିକା ହେଉଥିବା ବେଳେ, ରସଗୋଲା ଭିତରଚ୍ଛ ମହାପାତ୍ର ସେବକ ନିଜ ଘରେ ଶୁଦ୍ଧପୂତ ଭାବରେ ପ୍ରସ୍ତୁତ କରି ଆଣି ଭୋଗ କରିଥାଆନ୍ତି। ପ୍ରମୁଖ ମଠମାନଙ୍କ ପକ୍ଷରୁ ମଧ୍ୟ ଏହି ଭୋଗ ରଥସ୍ଥ ଠାକୁରଙ୍କୁ ବା ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ହୋଇଥାଏ।



ଏ ସବୁରୁ ସ୍ପଷ୍ଟ ସାବ୍ୟସ୍ତ ଯେ କଲିକତାରେ ନବୀନ ଚନ୍ଦ୍ର ଦାଶଙ୍କ ଦ୍ୱାରା ୧୮୬୮ରେ ପ୍ରସ୍ତୁତ ହେବାର ବହୁ ପୂର୍ବରୁ ରସଗୋଲା ଓଡ଼ିଶାରେ ଲୋକପ୍ରିୟ ଥିଲା। କୌଣସି ଏକ ଲୋକ ପରଂପରାର ନିର୍ଦ୍ଦିଷ୍ଟ ପ୍ରବର୍ତ୍ତନ ସମୟ ସବୁବେଳେ କହି ହୁଏନାହିଁ। ଏ ଦୃଷ୍ଟିରୁ 'ନୀଳାଦ୍ରିବିଜେ'ରେ ରସଗୋଲା ଭୋଗ ପ୍ରଚଳନର ନିର୍ଦ୍ଦିଷ୍ଟ ସମୟ ମିଳୁ ନଥିଲେ ହେଁ, ଅନ୍ୟୂନ ତିନି ଶହ ବର୍ଷରୁ ସାତଶହ ବର୍ଷ ଧରି ଏହା ପୁରୀ ଶ୍ରୀମନ୍ଦିରରେ ପ୍ରଚଳିତ ଅଛି ବୋଲି କୁହାଯାଇପାରିବ। 'ଦାଣ୍ଡି ରାମାୟଣ'ର 'ରସଗୋଲା' ଓଡ଼ିଶା ରସଗୋଲାର ୫୦୦ ବର୍ଷର ପ୍ରମାଣ। ଏହା ସହିତ 'ନୀଳାଦ୍ରି ବିଜେ' ଦିନ ଏହା ପରଂପରାକ୍ରମେ ଶ୍ରୀଜଗନ୍ନାଥ ଓ ମା' ମହାଲକ୍ଷ୍ମୀଙ୍କୁ ଭୋଗରୂପେ ଅର୍ପିତ ହେବା ମଧ୍ୟ ସ୍ପଷ୍ଟ ଓ ଦୃଢ଼ ଭାବରେ ପ୍ରମାଣ କରେ ଯେ ଓଡ଼ିଶା ହିଁ ରସଗୋଲାର ଆଦିଭୂମି।

୪ ଆର୍- ୧/୨, ୟୁନିଟ୍-୩
ଖାରବେଳ ନଗର, ଭୁବନେଶ୍ୱର

# କାହିଁକି ବିଳମ୍ବ କରୁଚ ଆଉ

**ରାଧାନାଥ ଦାସ**

ମଉସୁମୀର ଏ ପହିଲି ଛୁଆଁରେ, ନିଦାଘର ତାତି ହଜିଲାଣି
ବରଷାରେ ମାଟି ଭିଜିଲାଣି, ଶ୍ରୀଗୁଣ୍ଡିଚା ଯାତ ବାରତା ଆଣି
ଆସିଚି ଆଷାଢ଼ ଧରାକୁ ପୁଣି, ପୁଣ୍ୟ ଶ୍ରୀକ୍ଷେତ୍ରେ ପହଣ୍ଡି ବିଜୟେ
ଘଣ୍ଟ, ମର୍ଦ୍ଦଳ ବାଜିଲାଣି ।
ଆହାକି ସୁନ୍ଦର ଦିଶେ ବଡଦାଣ୍ଡ, ତିନିରଥ ପାଉଥାନ୍ତି ଶୋଭା
ଦିଶୁଥାନ୍ତି ବଡ ମନଲୋଭା, ପହଣ୍ଡି ହୁଅନ୍ତି କାଳିଆ ଧନ
ଫୁଲର ଟାହିଆ ମୋହୁଚି ମନ ଭକତଙ୍କୁ ଦରଶନ ଦେବା ପାଇଁ
ନନ୍ଦିଘୋଷ ରଥେ ହେବେ ଉଭା ।
ଭକତ ଭୋଳିଆ ଜଗତର ନାଥ, କରୁଛନ୍ତି ଶ୍ରୀଗୁଣ୍ଡିଚା ଲୀଳା
ଭକତ ଭାବରେ ହୋଇ ଭୋଳା, ସଂକୀର୍ତ୍ତନ ପଡୁଅଛି ଉଚ୍ଛୁଳି
ହରିବୋଲ ସାଙ୍ଗକୁ ହୁଳହୁଳି ।
ବଡଦାଣ୍ଡେ ରଥ ଟାଣିବା ପାଇଁକି, ଭକତିରେ ମଥା କରି ନତ
ଚାହିଁ ରହିଛନ୍ତି ଯେ ଭକତ, କାହିଁକି ବିଳମ୍ବ କରୁଚ ଆଉ
ରଥେ ବିଜେ କର ହେ ମହାବାହୁ
ବଡଦାଣ୍ଡେ ରଥ ଟାଣିବେ ଭକତ
ମୁଖେ କହି ଜୟ ଜଗନ୍ନାଥ ।

ଆଠଗଡ ଟାଉନ୍, କଟକ

# ଭାବଗ୍ରାହୀ

**ଦିଲ୍ଲୀପ କୁମାର ବେହୁରା**

ଜଗତ ଠାକୁର ନାମ ବହିଅଛ
ଭକତରେ ଦେଇ ଦୁଃଖ
ଭକତ ଆଖିରେ ଲୁହକୁ ଦେଖିଲେ
ଲାଗେ କିଆଁ ପ୍ରଭୁ ସୁଖ
ବାଇଶି ପାହାଚେ ଗଡଇ ଭକତ
ବଡଦାଣ୍ଡେ ଯାଏ ପଡି
ଯେତେ ଡାକିଲେ ବି ଡାକ ଶୁଭେ ନାହିଁ
ଛାଡୁଥିଲେ ସେଠି ରଡି
ରାଗିଲେ କାହିଁକି ରାଗ ଭୁଲିଯାଏ
ଦେଖିଦେଲେ କଳାମୁଖ ।
ଅରୁଣ ସ୍ତମ୍ଭକୁ ଜାବୁଡି ଧରିଲେ
ଲାଗେ ଗଲା ସବୁ ମିଳି
ଗରୁଡ ଖମ୍ବରୁ ତୋତେ ଦେଖିଦେଇ
ଦୀପଟିଏ ଦେଲେ ଜାଳି
ଭାବଗ୍ରାହୀ ତୁମେ ଭାବକୁ ଜାଣୁଛ ଭକତର ମାନ ରଖ ।

ଗ୍ରାମ–ପୋଖରିଆ, ପୋ.ଅ–ମହୁଲିଆ
ଥାନା–ରାଜନଗର, ଜିଲ୍ଲା–କେନ୍ଦ୍ରାପଡା



# ଶ୍ରୀଜଗନ୍ନାଥଃ ଶ୍ରୀକୃଷ୍ଣଙ୍କର ବିବର୍ତ୍ତିତ ପ୍ରତିଭୂ

**ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା**

ଭାରତୀୟ ଧାର୍ମିକ ଚେତନା ଓ ସଂସ୍କୃତିରେ କୃଷ୍ଣାବତାରର ମହତ୍ତ୍ୱ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଏହି ଅବତାରରେ କୃଷ୍ଣଙ୍କ ଲୀଳାକୁ ବାଳଲୀଳା,ଐଶ୍ୱର୍ଯ୍ୟ ଲୀଳା, ମାଧୁର୍ଯ୍ୟ ଲୀଳାରେ ଚିହ୍ନିତ କରାଯାଇଛି। କୃଷ୍ଣ ଚେତନା ଦିନେ ଭାରତର ଏକ ବିସ୍ତୃତ ଅଞ୍ଚଳକୁ ତା'ର ଆଧ୍ୟାତ୍ମିକ ଶୀତଳ ଛାୟାରେ ରସସ୍ନିଗ୍ଧ କରି ରଖିଥିଲା । ଅତ୍ୟାଚାରୀ କଂସର ନିର୍ମମ ଅତ୍ୟାଚାରରେ ଯେତେବେଳେ ସମଗ୍ର ଧରଣୀ ଭୟ ଓ ଯନ୍ତ୍ରଣାରେ ଅସ୍ଥିର ହୋଇ ଉଠିଥିଲା, ମାନବ ସଭ୍ୟତାର ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜନକ ବସୁଦେବଙ୍କ ଔରସରୁ ଓ ଜନନୀ ଦେବକୀଙ୍କ ଗର୍ଭରୁ ଭଗବାନ୍ କୃଷ୍ଣ ଜନ୍ମଗ୍ରହଣ କଲେ । କେବଳ କଂସ ନିଧନ ନୁହେଁ ସମକାଳୀନ ସମାଜର ଦେଖାଦେଇଥିବା ଚରମ ବିଶୃଙ୍ଖଳା, ଅଧର୍ମ ଓ ଅନୀତିର ବିଲୋପ ସାଧନ କରି ଧର୍ମ ସଂସ୍ଥାପନ ପାଇଁ ତାଙ୍କର ଆବିର୍ଭାବ ଘଟିଥିଲା । ସୁସ୍ଥ- ସୁନ୍ଦର ତଥା ଭୟ ଓ ଆଶଙ୍କା ମୁକ୍ତ ଏକ ଆଦର୍ଶ ସମାଜ ପ୍ରତିଷ୍ଠା ପାଇଁ ଦିଗ୍‌ଦର୍ଶନ ଦେବାକୁ ଭଗବାନ ଏକ ଏକ ଚେତନା ନେଇ ଏ ପୃଥିବୀରେ ଜନ୍ମଗ୍ରହଣ କରିଥାନ୍ତି ଏବଂ ସେହି ଚେତନାକୁ ମଧ୍ୟ ଏ ଧରାରେ ଆଦର୍ଶରୂପେ ପ୍ରତିଷ୍ଠା କରନ୍ତି । ଏହିଭଳି ଏକ ଉଚ୍ଚତର ଚେତନା ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରା ଭାରତୀୟ ସମାଜରେ ପ୍ରତିଷ୍ଠା ଲାଭ କରିଥିବା ସୁବିଦିତ ।

ଓଡ଼ିଶାରେ ମଧ୍ୟ ଏହି ଚେତନାର ଉଲ୍ଲେଖଯୋଗ୍ୟ ଉତ୍ତରଣ ସଂଘଟିତ ହୋଇଅଛି । ଏହି ଉତ୍ତରଣର ନେପଥ୍ୟରେ ଯେଉଁ ପ୍ରେରଣା ଉତ୍କଳୀୟଙ୍କୁ ବିଶେଷ ଭାବେ ଉତ୍ସାହିତ କରିଛି, ତାହା ହେଉଛି ଉତ୍କଳରେ ଶ୍ରୀଜଗନ୍ନାଥଙ୍କ ଅଧିବାସ। ସମାଲୋଚକଙ୍କ ମତରେ ଆନୁମାନିକ ଦ୍ୱାଦଶ ଶତାବ୍ଦୀ ଶେଷଭାଗକୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଅଭିନ୍ନ ବୋଲି ପରିଗୃହୀତ ହୋଇଥିଲେ । ପରବର୍ତ୍ତୀ ସମୟରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀରେ ରଚିତ ବହୁ ଭକ୍ତି ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପରେ ଚିତ୍ରଣ କରାଯାଇଛି । ସାରଳା ଦାସଙ୍କ ମହାଭାରତର ମୂଷଳି ପର୍ବରେ ଶ୍ରୀକୃଷ୍ଣଙ୍କର ଦେହାବଶେଷ ହିଁ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହର ରୂପାନ୍ତର ବୋଲି ଉଲ୍ଲେଖ କରାଯାଇଛି ଏବଂ କଳିଯୁଗରେ ଶ୍ରୀଜଗନ୍ନାଥ ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କର ପରିବର୍ତ୍ତିତ ଅବତାର କଥା ସାରଳା ଦାସ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଏତଦ୍‌ବ୍ୟତୀତ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ ଓ ଦିବାକର ଦାସ ଇତ୍ୟାଦିଙ୍କ ବହୁ ଗ୍ରନ୍ଥରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ଅଭିନ୍ନତ୍ୱ ପ୍ରକାଶିତ। କିନ୍ତୁ ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ଅପୋଡ଼ା ପିଣ୍ଡ କଳିଯୁଗରେ ନୀଳକନ୍ଦରରେ ବୌଦ୍ଧ ରୂପରେ ପ୍ରକାଶିତ ହେବା କଥା କୁହାଯାଇଥିଲେ ହେଁ ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ପରେ ଅର୍ଥାତ୍ ୧୫୦୯ ଖ୍ରୀଷ୍ଟାବ୍ଦ ପରେ ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀକୃଷ୍ଣଙ୍କର ଅଭିନ୍ନତ୍ୱ ବଳିଷ୍ଠ ଭାବରେ ପରିଲକ୍ଷିତ ହେଲା । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ରୂପରେ ସଂଦର୍ଶନ କରିଥିଲେ ଏବଂ ଶ୍ରୀଜଗନ୍ନାଥ ପରମ ପ୍ରେମପୁରୁଷ ଶ୍ରୀକୃଷ୍ଣ ଓ ପ୍ରକୃତି ସ୍ୱରୂପା ଶ୍ରୀରାଧାଙ୍କର ନିତ୍ୟରାସର ଯୁଗନଦ୍ଧ ମୂର୍ତ୍ତିରୂପେ ଦେଖିଥିଲେ। କୃଷ୍ଣ ଧର୍ମର ପ୍ରବର୍ତ୍ତକ ତଥା ପ୍ରଚାରକ ଶ୍ରୀଚୈତନ୍ୟ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ଉତ୍କଳକୁ ଆସିଥିଲେ । ସେତେବେଳକୁ ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱ ବିଶେଷ ଭାବରେ ଆରୋପିତ ହୋଇନଥିଲା । ଗଜପତି ପ୍ରତାପରୁଦ୍ରଦେବ ଚୈତନ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମରେ ଦୀକ୍ଷିତ



ହେଲାପରେ ଶ୍ରୀଜଗନ୍ନାଥ ସମ୍ପୂର୍ଣ୍ଣ ରୂପରେ ଉତ୍କଳୀୟ ଜନମାନସରେ ରାଧାକୃଷ୍ଣଙ୍କର ମିଳିତ ତନୁ ରୂପ ଗୃହୀତ ହେଲେ। ଚୈତନ୍ୟଙ୍କ ଆଗମନ ପୂର୍ବରୁ ଜଗନ୍ନାଥ ବହୁ ଭାବରେ ବିଷ୍ଣୁ ରୂପରେ ଗୃହୀତ ହୋଇ ଆସିଥିଲେ । ଶ୍ରୀଚୈତନ୍ୟଙ୍କ ସମସାମୟିକ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ ପ୍ରଭୃତି ପଞ୍ଚ ବୈଷ୍ଣବ କବିଙ୍କ ଲେଖନୀରେ ଜଗନ୍ନାଥଙ୍କଠାରେ କୃଷ୍ଣୈକତ୍ୱ ଧାରଣା ବଳବତ୍ତର ହୋଇ ଉଠିଲା । ଏହା ଶ୍ରୀଚୈତନ୍ୟଙ୍କ ପ୍ରଭାବରେ ତଥା ରାଜାନୁସାରି ଧର୍ମର ପ୍ରେରଣା ଯୋଗୁଁ ହିଁ ଘଟିଥିଲା ବୋଲି କୁହାଯାଇପାରେ। କିନ୍ତୁ ଉତ୍କଳରେ ଥିବା ଜ୍ଞାନମିଶ୍ରା ଉପାସନା ଓ ଚୈତନ୍ୟଙ୍କର ପ୍ରେମଭକ୍ତି ଉପାସନାର ସମିଶ୍ରଣରେ ପଞ୍ଚସଖା ଯୁଗୀୟ ବୈଷ୍ଣବ କବି ସେମାନଙ୍କର ସାହିତ୍ୟ ସୃଷ୍ଟି କରିଥିଲେ ହେଁ ଶ୍ରୀଜଗନ୍ନାଥଙ୍କୁ ସର୍ବୋତ୍କୃଷ୍ଟ ଉପାସ୍ୟ ଦେବତା ରୂପରେ ଗ୍ରହଣ କରିଛନ୍ତି ।

ପଞ୍ଚସଖା ମଧ୍ୟରୁ ଅନ୍ୟତମ କବି ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟସଂହିତାରେ ଜଗନ୍ନାଥ ଯିଏ କୃଷ୍ଣ ସେହି ବୋଲି ଦର୍ଶାଯାଇଛି । ମହାମନ୍ତ୍ର କୃଷ୍ଣ ଯେହୁ ଜଗନ୍ନାଥ ସେହି ବୋଲି ସେ କହିଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଅବତାରୀ କହି ଶ୍ରୀକୃଷ୍ଣଙ୍କୁ ଅବତାର ରୂପରେ ଗ୍ରହଣ କରିଛନ୍ତି । ଅଚ୍ୟୁତାନନ୍ଦ ଶୂନ୍ୟସଂହିତାରେ ଉଲ୍ଲେଖ କରି କହନ୍ତି– ଅବତାର ଦାଶ, ଏହି ଦାରୁରୂପ, ଏହି ଦାରୁରେ ସେ ଲୀନ। ଜୟଦେବଙ୍କ ଗୀତଗୋବିନ୍ଦରେ କୃଷ୍ଣଙ୍କୁ ଅବତାର ରୂପରେ ଗ୍ରହଣ କରାଯାଇନାହିଁ । ଦଶାବତାର ମଧ୍ୟରେ କୃଷ୍ଣ ଅନ୍ତର୍ଭୁକ୍ତ ନୁହଁନ୍ତି, କିନ୍ତୁ ଅଚ୍ୟୁତାନନ୍ଦ କୃଷ୍ଣଙ୍କୁ ଅବତାର ବୋଲି ଗ୍ରହଣ କରିଛନ୍ତି ।

ଜଗନ୍ନାଥ ବଳଭଦ୍ର ଭଦ୍ରା ସୁଦର୍ଶନ
ମହାମନ୍ତ୍ର ମନ୍ତ୍ରରାଜ ରୂପ ଦାରୁବ୍ରହ୍ମ
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଘେନି ସିଂହାସନପରେ
ବିଜୟ କରି ଅଛନ୍ତି ଚତୁର୍ଦ୍ଧା ରୂପରେ। (ଶୂନ୍ୟ ସଂହିତା)

ଅନ୍ୟତମ ବୈଷ୍ଣବ କବି ଦିବାକର ଦାସ ତାଙ୍କର ଜଗନ୍ନାଥ ଚରିତାମୃତରେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ଓ କୃଷ୍ଣଙ୍କୁ ଅବତାର ବୋଲି ସ୍ପଷ୍ଟ କହିଛନ୍ତି –

ଈଶ୍ୱର ଉପରେ ଈଶ୍ୱର, ପରମ ପରେ ପରାପର
ବ୍ରହ୍ମ ଉପରେ ବ୍ରହ୍ମ ଏହି, କୃଷ୍ଣ ଉପରେ କୃଷ୍ଣ ସେହି।
ଅନାଦି ଉପରେ ଅନାଦି, ସର୍ବ କାରଣ ପରସିଦ୍ଧି
ଶ୍ରୀଜଗନ୍ନାଥ ଶ୍ରୀମୂରତି, ଏଥିଁଟି ସର୍ବ ଉତପତି।

ଏବଂ

ଅବତାରୀ ଏ ଜଗନ୍ନାଥ
ଏ ତହୁଁ ଅବତାର ଜାତ।(ଦ୍ୱାଦଶ ଅଧ୍ୟାୟ)
ପରମ ବ୍ରହ୍ମ ଜଗନ୍ନାଥ।
ଅବତାରଟି ଏଥୁଁ ଜାତ।
କୋଟିକୋଟି ଯେ ଅବତାର।
ଏ ତହୁଁ ହୁଅନ୍ତି ବାହାର।
ଏଥିରେ ସନ୍ଦେହ ନକର
ଏହା ଅଟଇ ତତ୍ତ୍ୱସାର।(ଚତୁର୍ଥ ଅଧ୍ୟାୟ)

ବଳରାମ ଦାସ ତାଙ୍କ ବେଦାନ୍ତ ସାର ଗୀତାରେ ଲେଖିଛନ୍ତି–

ଓଡ୍ର ରାଷ୍ଟ୍ରରେ ନୀଳଗିରି, ଯହିଁ ବିଜୟ ନରହରି।
ଜଗତ ଈଶ୍ୱର ଠାକୁର, ଲୀଳା ଏ ନାନା ଅବତାର।

ଏବଂ

ସର୍ବଦା ନୀଳାଦ୍ରିରେ ସ୍ଥିତି।
ଏଥୁ ସକଳ ଜାତ ହୋନ୍ତି।
ସମସ୍ତ ଅବତାର ମାନ।
ଜାତ ହୋଇଣ ପଶେ ପୁଣ।
ବେଦାନ୍ତ ସାର ବ୍ରହ୍ମ ଏହି।
ବେଦ ହିଁ ବର୍ଣ୍ଣି ନ ପାରଇ।

ଦୀନକୃଷ୍ଣ ଦାସ ତାଙ୍କ 'ରସକଲ୍ଲୋଳ' କାବ୍ୟରେ ଲେଖିଛନ୍ତି–

କଲେ ଇଚ୍ଛା ମନେ ହେବା କଂସ ଅନ୍ତକ,
କରିବା ଉଶ୍ୱାସ ମହୀ ଭାରା ଯେତେକ।



କପଟେ ହୋଇବା ନନ୍ଦ ବ୍ରଜ ବାଳକ,
କଉତୁକେ ବୋଲାଇବା ପଶୁ ପାଳକ ।
କରିଏ ବିଚାର କଇବଲ୍ୟ ଦାୟକ,
କଂସ ଆଦି ମାରିବାକୁ ହେଲେ ଉତ୍ସୁକ।
କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ,
କରିବାକୁ ଜାତ ଜଗନ୍ନାଥ ଜନକ। (ପ୍ରଥମ ଛାନ୍ଦ)

ଶ୍ରୀଜଗନ୍ନାଥ ହିନ୍ଦୁ ଜଗତର ସର୍ବଶ୍ରେଷ୍ଠ ଦେବତା ରୂପରେ ପରିଗୃହୀତ ହୋଇ ଆସିଛନ୍ତି । ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ଓ ସୌର ଉପାସକମାନେ ନିଜ ନିଜର ଉପାସ୍ୟଭାବେ ଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି । ଶ୍ରୀଜଗନ୍ନାଥଙ୍କର ମୂର୍ତ୍ତିରେ, ରୂପରେ, ବେଶରେ ତଥା ପୂଜାନୀତିରେ ନିଜ ନିଜର ଧର୍ମର ସଂକେତକୁ ଦେଖି ତାଙ୍କୁ  ଉପାସ୍ୟ ଭାବରେ ଗ୍ରହଣ କରିନେବା ସ୍ୱାଭାବିକ। ବହୁ ଧର୍ମର ଆରାଧ୍ୟ ଦେବତା ରୂପେ ଗୃହୀତ ହୋଇଥିଲେ ହେଁ ଜଗନ୍ନାଥଙ୍କର ଦୈନନ୍ଦିନ ପୂଜାନୀତି ଓ ବେଶ ଇତ୍ୟାଦିକୁ ଦେଖିଲେ ସେ ଯେ ବହୁ ଭାବରେ ଶ୍ରୀକୃଷ୍ଣଙ୍କର ପ୍ରତିନିଧିତ୍ୱ କରୁଛନ୍ତି, ଏହା ସହଜରେ  ଜଣାପଡ଼େ। ହୁଏତ ପ୍ରେମଭକ୍ତି ପ୍ରଚାରିତ ହେବା ପରେ ଜଗନ୍ନାଥଙ୍କଠାରେ କୃଷ୍ଣଙ୍କର ଅଭେଦତ୍ୱ କଳ୍ପନା କରି ଶ୍ରୀଜଗନ୍ନାଥଙ୍କ ଦୈନିକ ନୀତି ଓ ପୂଜାପାର୍ବଣ ତଥା ବେଶ ଇତ୍ୟାଦି ଆରୋପିତ ହୋଇଅଛି। ଜଗନ୍ନାଥଙ୍କ ରତ୍ନ ସିଂହାସନ ନିତ୍ୟ ଗୋଲକ ରୂପେ ପରିଗୃହୀତ ହେବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ଚାରିଦ୍ୱାରକୁ ବୈଷ୍ଣବଧର୍ମ ସଂପ୍ରଦାୟର ନିମ୍ବାର୍କ, ମାଧ୍ୱ, ବିଷ୍ଣୁସ୍ୱାମୀ ଓ ରାମାନନ୍ଦ ସଂପ୍ରଦାୟର ପ୍ରତୀକ ଭାବରେ  ବର୍ଣ୍ଣନା କରାଯାଇଛି । ଶ୍ରୀଜଗନ୍ନାଥଙ୍କ ପୂଜାରେ ଦ୍ୱାଦଶାକ୍ଷର ମନ୍ତ୍ରରାଜ ଓଁ ନମୋ ଭଗବତେ ବାସୁଦେବାୟ ଉଚ୍ଚାରିତ ହେବା ସଙ୍ଗେ ସଙ୍ଗେ ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନଃ ବଲ୍ଲଭାୟ ସ୍ୱାହା କୃଷ୍ଣ ମନ୍ତ୍ରରେ ପୂଜା କରାଯାଇଥାଏ । ଶ୍ରୀମନ୍ଦିରର ଅନବସର ପିଣ୍ଡିର ଉଭୟ ପାର୍ଶ୍ୱରେ ଶ୍ରୀରାଧା ଓ ଚନ୍ଦ୍ରାବଳୀଙ୍କ ମୂର୍ତ୍ତି ବିରାଜମାନ ଏବଂ ଶ୍ରୀମନ୍ଦିରର ଜଗମୋହନରେ କୃଷ୍ଣଲୀଳା ସଂପର୍କୀୟ କାରୁକାର୍ଯ୍ୟ ତଥା ଚିତ୍ର ଦେଖିବାକୁ ମିଳିଥାଏ । ଜୟବିଜୟ ଦ୍ୱାର ନିକଟରେ ରାଧାକୃଷ୍ଣଙ୍କର ପ୍ରେମ ସଂପର୍କିତ ଉକ୍ତି – ପ୍ରତ୍ୟୁକ୍ତି ତଥା ଛେକୋକ୍ତି ଶ୍ରୀ ରାଧାମାଧବ ରସସୁଧା ଲିପିପଦ୍ଧ କରାଯାଇଛି । ଶ୍ରୀଜଗନ୍ନାଥଙ୍କ ଉତ୍ସବମାନଙ୍କ ମଧ୍ୟରେ ମଦନମୋହନଙ୍କ ଧାତବ ବିଗ୍ରହ ପ୍ରତିନିଧିତ୍ୱ କରିଥାନ୍ତି । କୃଷ୍ଣ ଭକ୍ତିରେ ପରମ ପୁରୁଷ କୃଷ୍ଣଙ୍କୁ ପାଇବାକୁ ହେଲେ ନାରୀଭାବ ଭକ୍ତକୁ ଗ୍ରହଣ କରିବାକୁ ପଡ଼ିଥାଏ । ଏକମାତ୍ର ପୁରୁଷ ଶ୍ରୀକୃଷ୍ଣ ଓ ଅନ୍ୟ ସମସ୍ତେ ନାରୀ । ଏହି ଚିନ୍ତାଧାରାର ନିଦର୍ଶନ ଜଗନ୍ନାଥଙ୍କ ସେବା ପୂଜାରେ ପରିଲକ୍ଷିତ। ଗୋପୀ ଭାବରେ ନାରୀ ଭଳି ବସ୍ତ୍ର ପରିଧାନ ଏବଂ ଗୋପୀ ତିଳକରେ ନାସାଗ୍ରରୁ ଊର୍ଦ୍ଧ୍ୱ ପୁଣ୍ଡରିକ ଚିତା ଗ୍ରହଣ ପୂର୍ବକ ପୂଜା ଅର୍ଚ୍ଚନା କରାଯାଇଥାଏ । ଶ୍ରୀମନ୍ଦିରରେ ଅନୁଷ୍ଠିତ ଗୁଣ୍ଡିଚା ଯାତ୍ରା ଜଗନ୍ନାଥଙ୍କର ବ୍ରଜପୁରକୁ ଗମନ ଯାତ୍ରା ଭାବରେ ଚିତ୍ରିତ। ଶ୍ରାବଣରେ ଝୁଲଣ ଯାତ୍ରା, ଭାଦ୍ରବରେ ଜନ୍ମାଷ୍ଟମୀ ପାଳନ ଓ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା କାଳୀନ ବେଶ, କାର୍ତ୍ତିକ ମାସରେ ରାଧାଦାମୋଦର ବେଶ, ମାର୍ଗଶିରରେ ପ୍ରଥମାଷ୍ଟମୀ, ପୌଷ ମାସରେ  ପହିଲି ଭୋଗ ନୀତି, ମାଘ ମାସରେ ଗଜ ଉଦ୍ଧାରଣ ବେଶ, ଫାଲ୍‌ଗୁନରେ ବାସନ୍ତିକ ଦୋଳଉତ୍ସବ, ରୁକ୍ମିଣୀ ହରଣ, ବୈଶାଖରେ ଚନ୍ଦନ ଉତ୍ସବ ଇତ୍ୟାଦିରେ କୃଷ୍ଣ ଚେତନା ଜଗନ୍ନାଥଙ୍କଠାରେ ପରିଦୃଷ୍ଟ ।

ପଞ୍ଚସଖା କବି ବଳରାମ ଦାସ ତାଙ୍କ ବେଦାନ୍ତ ସାର ଗୁପ୍ତ ଗୀତାରେ ନୀଳଗିରିକୁ ନିତ୍ୟରାସ ସ୍ଥଳୀରୂପେ ଚିତ୍ରଣ କରିଛନ୍ତି ।

ଜଗନ୍ନାଥଙ୍କୁ ନିର୍ଗୁଣ ନିରାକାର ରୂପରେ ଉତ୍କଳୀୟ ବୈଷ୍ଣବମାନେ ଗ୍ରହଣ କରିବା ସହିତ ଶ୍ରୀକୃଷ୍ଣଙ୍କୁ ମଧ୍ୟ ସଗୁଣ, ନିର୍ଗୁଣ, ସାକାର, ନିରାକାର ରୂପରେ ଉପାସନା କରିଛନ୍ତି । ସାଧକର ସାଧନା ସାକାର ହୋଇପାରେ କିନ୍ତୁ ସାଧ୍ୟ ବସ୍ତୁ ନିରାକାର, ନିର୍ଗୁଣ ହେବା ହିଁ ଜଗନ୍ନାଥ ଚେତନାର ବୀଜମନ୍ତ୍ର। ଶ୍ରୀଜଗନ୍ନାଥଙ୍କୁ ପାଇବା ପାଇଁ ଜ୍ଞାନ ଓ ଭକ୍ତି ଉଭୟ ମିଶ୍ରଣ ଯେ ଆବଶ୍ୟକ, ଏହା ବୈଷ୍ଣବୀୟ ଚିନ୍ତାଧାରାରେ ସ୍ୱୀକୃତ । ଅବତାର ପୁରୁଷ ଶରୀରଧାରୀ ତଥା ବିଗ୍ରହବନ୍ତ ଅଟନ୍ତି। ତେଣୁ ସେମାନେ



ସସୀମ, ଶାନ୍ତ, ଉପାଧିଯୁକ୍ତ ଓ ଅଚିର ହୁଅନ୍ତି । ସେମାନେ ଯେତେ ଉର୍ଦ୍ଧ୍ୱ ଚେତନାରେ ରହିଲେ ଏବଂ ସେମାନଙ୍କ ଶରୀର ଯେତେ ଚିନ୍ମୟ ହେଲେ ମଧ୍ୟ ଆବିର୍ଭାବ ଓ ତିରୋଭାବ ସେମାନଙ୍କ ଜୀବନରେ ଦେଖା ଦେଇଥାଏ । ଜଗନ୍ନାଥ ଏସବୁର ଊର୍ଦ୍ଧ୍ୱରେ । ସେ ନିରାକାର, ନିର୍ବିକଳ୍ପ, ନିତ୍ୟ ଓ ସନାତନ। ବିଭିନ୍ନ ଲୀଳା ପାଇଁ ରାମକୃଷ୍ଣାଦି ଅବତାର ରୂପରେ ସେ ଆବିର୍ଭୂତ ହୁଅନ୍ତି । ଜଗନ୍ନାଥଙ୍କଠାରୁ ସମସ୍ତ ସଗୁଣବାଦର ସୃଷ୍ଟି । ସେ ନିଜେ ପରମତତ୍ତ୍ୱ ସ୍ୱରୂପ।

ପୁରୁଷୋତ୍ତମ ତତ୍ତ୍ୱ ବ୍ରହ୍ମ ଭଗବତ୍ ଓ ଆତ୍ମତତ୍ତ୍ୱର ତ୍ରିଗୁଣାତ୍ମକ ସମାବେଶ। ସୁତରାଂ ଗୀତାରେ କଥିତ ଭଗବାନ କୃଷ୍ଣଙ୍କର ମୁଖ ନିସୃତ ଉକ୍ତି ସହିତ ଶ୍ରୀଜଗନ୍ନାଥଙ୍କ ସାମ୍ୟତା କୃଷ୍ଣ ଓ ଜଗନ୍ନାଥ ଅଭିନ୍ନତ୍ୱ ପ୍ରମାଣ କରିଥାଏ । ଏଥି ସହିତ ଜଗନ୍ନାଥଙ୍କ ରୂପ ବିଗ୍ରହରେ ଦୁଇଟି ପରସ୍ପର ବିରୋଧୀ କୃଷ୍ଣ ଓ ଗୌରବର୍ଣ୍ଣର ସମ୍ମିଶ୍ରଣ ହୋଇଥିବାରୁ ସେ ଯେ କୃଷ୍ଣ ଏବଂ ରାଧାଙ୍କର ମିଳନାତ୍ମକ ବିଗ୍ରହ, ଏହା କୁହାଯାଇପାରେ । ଏଣୁ ବୈଷ୍ଣବମାନଙ୍କର ଗତିମୁକ୍ତିର କ୍ଷେତ୍ର ରୂପରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପରିଗଣିତ । ଶ୍ରୀଜଗନ୍ନାଥ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ବିବର୍ତ୍ତିତ ପ୍ରତିଭୂ ।

ପି.ଏମ୍. ବି– ୬୪, ହାଉସିଂବୋର୍ଡ଼ କଲୋନୀ
ବଳିଆପଣ୍ଡା, ପୁରୀ–୭୫୨୦୦୧

---

# ଜଗାରେ ...

**ସ୍ୱର୍ଣ୍ଣଲତା ତ୍ରିପାଠୀ**

ଜଗାରେ !
ତୋତେ ଝୁରିବି ନା କାହାକୁ,
କାଳିଆ ସାଆନ୍ତ ଝୁରନ୍ତି ଭକତ
ବାସଛୁଟେ ଚଉଦିଗକୁ ।

ଭାଇ ଓ ଭଗିନୀ ନିଜ ସଙ୍ଗେ ଘେନି
ବିଜେ ରତ୍ନସିଂହାସନକୁ
ଦେବ ଅଧିରାଜ ମହାପ୍ରଭୁ ତୁମେ
ପ୍ରସାରିଛ ମହାବାହୁକୁ

ନମୋ ଚକ୍ରପାଣି କମନୀୟ ଠାଣି
କଳା କଳେବର କାଳକୁ,
ନନ୍ଦ ନନ୍ଦନ ପଦେ କରି ଧ୍ୟାନ
କେବଳ ପତିତ ଜନକୁ ।





ତିନିପୁର ସାର କରୁଣା ସାଗର
ସକଳ ତୀର୍ଥ ତୋ' ପୁରକୁ,
ଦ୍ୱାରିକା, ବଦ୍ରିକା କି କାରଣେ ଯିବା
ଲୀଳା ନାନା ଅବତାରକୁ ।

ହେ ଭବ ସାଗର ଭବୁ କର ପାର
ଜପୁଥିଲେ ନାମ ଗାନକୁ
ତନୁ, ମନ, ଧନ କରି ନିବେଦନ
ପ୍ରସନ୍ନତା କାଳକାଳକୁ,
ତୋତେ ଝୁରିବି ନା କାହାକୁ ।

ପ୍ରଧାନ ଶିକ୍ଷୟିତ୍ରୀ
ବାଲିଦୋକାନ ନୋଡାଲ୍ ଉ.ପ୍ରା. ବିଦ୍ୟାଳୟ
କୋଣାର୍କ, ଜିଲ୍ଲା–ପୁରୀ



# ଶ୍ରୀକ୍ଷେତ୍ରରେ ଶାକ୍ତ ଉପାସନାର ଐତିହ୍ୟ

ଡକ୍ଟର ହରିଶ୍ଚନ୍ଦ୍ର ବେହେରା

ପ୍ରାୟ ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶାରେ ତନ୍ତ୍ରର ପ୍ରାଧାନ୍ୟ ବିଶେଷଭାବେ ପରିଲକ୍ଷିତ ହୋଇଥିଲା । ବିଭିନ୍ନ ସଂସ୍କୃତ ଶକ୍ତି ପୁରାଣଗୁଡ଼ିକରେ ଶ୍ରୀଜଗନ୍ନାଥ ମଧ୍ୟ ତାନ୍ତ୍ରିକ ଦେବତାଭାବରେ ବର୍ଣ୍ଣିତ ହେବାକୁ ଲାଗିଲେ । ଶ୍ରୀମନ୍ଦିର ମଧ୍ୟରେ ବିମଳା, ଲକ୍ଷ୍ମୀ, କୁତାମଚଣ୍ଡି, ଅପରାଜିତା, ଜୟା, ବିଜୟା ପ୍ରଭୃତି ଶକ୍ତିଙ୍କର ପୂଜାମାନ ତାନ୍ତ୍ରିକ ପଦ୍ଧତିରେ ହେବାକୁ ଲାଗିଲା । ଶ୍ରୀଜଗନ୍ନାଥଙ୍କଠାରେ ପଞ୍ଚମକାର ପୂଜାର ପ୍ରଚଳନ ହେଲା ଏବଂ ଏହି ଉପାସନା ପଦ୍ଧତିରେ ଶ୍ରୀଜଗନ୍ନାଥଙ୍କୁ ଜଣେ ତାନ୍ତ୍ରିକ ଦେବତା ଭାବରେ ମଧ୍ୟ ପ୍ରତିଷ୍ଠା ଦିଆଗଲା । ପଞ୍ଚଦଶ ଶତାବ୍ଦୀବେଳକୁ ସର୍ବଭାରତୀୟ ସ୍ତରରେ ବୈଷ୍ଣବ ଓ ଶାକ୍ତଧର୍ମର ଏକପ୍ରକାର ସମନ୍ୱୟ ହୋଇ ତାନ୍ତ୍ରିକ ବୈଷ୍ଣବ ଧର୍ମର ସୂତ୍ରପାତ ହୋଇଥିଲା । ତନ୍ତ୍ରରେ ଯନ୍ତ୍ରର ପରିକଳ୍ପନା ହେବା ସଙ୍ଗେ ସଙ୍ଗେ ଏହି ଯନ୍ତ୍ରରେ ପ୍ରକୃତି ଓ ପୁରୁଷର ମିଳନ ମଧ୍ୟ ସଂଗଠିତ ହେଲା । ଶ୍ରୀଜଗନ୍ନାଥ ମଧ୍ୟ ତନ୍ତ୍ରପ୍ରଚାରରେ ଉପାସିତ ହେଲେ । ଶ୍ରୀଜଗନ୍ନାଥଙ୍କୁ ସ୍ୱୟଂ ଦକ୍ଷିଣ କାଳିକା (ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକାଃ) ଭାବରେ ଚିନ୍ତାକରି ଶାକ୍ତମାନେ ବିଭିନ୍ନ ଯନ୍ତ୍ରର ପରିକଳ୍ପନା କଲେ । ଓଡ଼ିଶାକୁ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ଆଗମନ ପରେ ଏହି ତାନ୍ତ୍ରିକ ମତବାଦ ଅଧିକରୁ ଅଧିକ ପରିବ୍ୟାପ୍ତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କ ପୂଜାପଦ୍ଧତିରେ ନୃସିଂହମନ୍ତ୍ର ସନ୍ନବେଶିତ ହୋଇ ତାଙ୍କୁ ତନ୍ତ୍ରଦେବତା ଭାବରେ ରୂପାୟିତ କରାଗଲା । ଶ୍ରୀମନ୍ଦିରରେ ହେଉଥିବା ତାନ୍ତ୍ରିକ ପଞ୍ଚମକାର ପୂଜାରେ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରର ଆରାଧ୍ୟ ଦେବତାଭାବେ ଉପାସନା କରାଯାଇଥାଏ ।

ପଞ୍ଚସଖା ଯୁଗର ଅନ୍ୟତମ ସାଧକ ଅଚ୍ୟୁତାନନ୍ଦ ଦାସ ସଂସ୍କୃତ ଶୂନ୍ୟ ସଂହିତାରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ରତ୍ନବେଦୀକୁ ପଞ୍ଚବୀଜ ପଞ୍ଚତତ୍ତ୍ୱରେ ପରିକଳ୍ପନା କରିଛନ୍ତି–

ହ୍ରୀଂ ବୀଜ ବଳଭଦ୍ରଶ୍ଚ ଶ୍ରୀଂ ସୁଭଦ୍ରିକାସ୍ତଥା
କ୍ଳୀଂ ଶୈବ ଜଗନ୍ନାଥମ୍ ଧ୍ରୀଂ ସୁଦର୍ଶନମ୍ ଭବେତ୍
ଶ୍ରୀଂ ସିଂହାସନମ୍ ବ୍ରହ୍ମଂ ପଞ୍ଚବୀଜମ୍ ଇଦଂ ଭବେତ୍ ।

ଏହି ପଞ୍ଚବୀଜ ପଞ୍ଚତତ୍ତ୍ୱକୁ ଯନ୍ତ୍ରମଧ୍ୟରେ ସ୍ଥାପନ କରି ଆରାଧନା କଲେ ପରମାର୍ଥ ଲାଭହୁଏ । ଅନ୍ୟ ପଞ୍ଚସଖାମାନେ ମଧ୍ୟ ନୀଳାଚଳକୁ ଯନ୍ତ୍ର ମଣ୍ଡଳଭାବେ ପରିକଳ୍ପନା ପୂର୍ବକ ଶ୍ରୀଜଗନ୍ନାଥଙ୍କୁ ଉଭୟ ଭୈରବ ଏବଂ ଶାକ୍ତଭାବେ ଉଲ୍ଲେଖ କରିଛନ୍ତି । ତନ୍ତ୍ରରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀଭାବେ ମଧ୍ୟ କଳ୍ପନା କରାଯାଇଛି ।

ଉତ୍କଳ ନାଭିଦେଶଶ୍ଚ ବିରଜାକ୍ଷେତ୍ର ମୁଚ୍ୟତେ
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।

ସ୍କନ୍ଦପୁରାଣ ଉତ୍କଳ ଖଣ୍ଡରେ ସୁଭଦ୍ରାଙ୍କୁ ଭଦ୍ରକାଳୀ ଭାବରେ ମଧ୍ୟ ବର୍ଣ୍ଣନା କରାଯାଇଛି–

ଜୟ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷାଂ ଉଦ୍ରଦାୟିନୀ
ଭଦ୍ରୀ ଭଦ୍ର ସ୍ୱରୂପାଂ ତ୍ୱ ଭଦ୍ରକାଳୀ ନମୋସ୍ତୁତେ ।

ନୀଳାଚଳ ଧାମ ବୈଷ୍ଣବ କ୍ଷେତ୍ର ହେବାପୂର୍ବରୁ ଶୈବକ୍ଷେତ୍ର ଭାବରେ ବିଶେଷ ପ୍ରସିଦ୍ଧି ଥିଲା । ଶୈବମାନେ ବଳଭଦ୍ରଙ୍କୁ ଶିବ ଏବଂ ଶାକ୍ତମାନେ ସୁଭଦ୍ରାଙ୍କୁ ଭଦ୍ରକାଳୀ ରୂପରେ ଦେଖନ୍ତି । ଶିଖର ଦାସ ତାଙ୍କ 'ନୀଳସୁନ୍ଦର ଗୀତା'ରେ ଉଲ୍ଲେଖ କରିଛନ୍ତି ଯେ ଶ୍ରୀକୃଷ୍ଣଙ୍କର ଗୋପଲୀଳା କାଳରେ ଦିନେ ବ୍ରହ୍ମା



ତାଙ୍କର ଗୋବତ୍ସ ହରଣ କରିନେବାରୁ ଶ୍ରୀକୃଷ୍ଣ ବ୍ରହ୍ମାଙ୍କୁ ଅପୂଜା ରହିବାର ଅଭିଶାପ ଦେଲେ । ପରେ ବ୍ରହ୍ମାଙ୍କର ସ୍ତୁତିରେ ପ୍ରୀତ ହୋଇ ତାଙ୍କୁ ବରଦେଲେ ଯେ ନୀଳାଚଳରେ ସେ ତାଙ୍କର ଭଗିନୀ ରୂପରେ ପୂଜା ପାଇବେ-

ବୋଇଲେ କଳିରେ ଦାରୁବ୍ରହ୍ମ ହେବି ମୁହିଁ
ଏ ମୋର ଶାପ୍ୟତ ମେଣ୍ଟି ଯିବ ନାହିଁ ।
ଗୁପତେ ପୂଜା ପାଇବୁ ଭାଇଙ୍କ ସଂଗତେ
ନ ଚିହ୍ନିବେ ବୋଲି ବୋଲିବେ ସୁଭଦ୍ରେ ।
ଶୁଣ ଫାଲ୍‌ଗୁନୀ ମୋ ଶାପ୍ୟର ମହିମା
ସୁଭଦ୍ରାରୂପେ ପୂଜା ପାଇବେଟି ବ୍ରହ୍ମା ।

('ନୀଳସୁନ୍ଦର' ଗୀତା ୬ଷ୍ଠ ଅଧ୍ୟାୟ)

ସାରଳା ଦାସ ମଧ୍ୟ ତାଙ୍କ ମହାଭାରତରେ ବ୍ରହ୍ମାଙ୍କ ଅଭିଶାପ ପାଇ ସୁଭଦ୍ରାରୂପ ଧାରଣ କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

ସ୍କନ୍ଦ ପୁରାଣରେ ମଧ୍ୟ ସୁଭଦ୍ରାଙ୍କୁ ଶ୍ରୀଜଗନ୍ନାଥଙ୍କର ଶକ୍ତି ସ୍ୱରୂପିଣୀ ଭାବେ ଉଲ୍ଲେଖ କରାଯାଇଛି । ସୁଭଦ୍ରା ଭୁବନେଶ୍ୱରୀ ଯନ୍ତ୍ରରେ ଅବସ୍ଥାନ କରନ୍ତି ଓ ଭୁବନେଶ୍ୱରୀ ମନ୍ତ୍ରରେ ଉପାସିତ ହୁଅନ୍ତି । ଭୁବନେଶ୍ୱରୀ ଯନ୍ତ୍ରରେ ମା' ସୁଭଦ୍ରାଙ୍କୁ ଅଷ୍ଟଦଳ ପଦ୍ମରେ ସ୍ଥାପନ କରାଯାଇଛି । ପଦ୍ମର ପ୍ରତି ପାଖୁଡ଼ାରେ ଜଣେ ଜଣେ ପୀଠଶକ୍ତି ବିରାଜମାନ । ସେମାନେ ହେଲେ ଅନଙ୍ଗ କୁସୁମା, ଅନଙ୍ଗ କୁସୁମ ମାତୁରା, ଅନଙ୍ଗ ମଦନା, ଅନଙ୍ଗ ମଦାନାତୁରା, ଅନଙ୍ଗବେଦଗା, ଅନଙ୍ଗ ମେଖଳା, ଅନଙ୍ଗଭୁଜା ପ୍ରଭୃତି ।

ଗୌତମୀୟ ତନ୍ତ୍ରରେ ଲକ୍ଷ୍ମୀଙ୍କୁ ପୁରୁଷୋତ୍ତମଙ୍କ ଅଙ୍କାଶ୍ରିତା ବୋଲି ମଧ୍ୟ ପରିକଳ୍ପନା କରାଯାଇଛି । କୃଷ୍ଣାନନ୍ଦ ଭଟ୍ଟାଚାର୍ଯ୍ୟଙ୍କ ତନ୍ତ୍ରସାର ଗ୍ରନ୍ଥରେ ହ୍ଲୀଂ କ୍ଲୀଂ ଶ୍ଲୀଂ ଭାବରେ ବଳଭଦ୍ର, ଶ୍ରୀଜଗନ୍ନାଥ ଓ ସୁଭଦ୍ରାଙ୍କୁ ପରିକଳ୍ପନା କରାଯାଇଛି ।

ଶ୍ରୀଜଗନ୍ନାଥଙ୍କ ପୂଜାବିଧିରେ ଅଷ୍ଟାଦଶାକ୍ଷର ମନ୍ତ୍ରର ପ୍ରୟୋଗ 'ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନାମଃ' - ଏଥିରେ ବୈଦିକ ଓଁ ସହ ତାନ୍ତ୍ରିକ କ୍ଲୀଂ ବୀଜକୁ ନେଇ ଶ୍ରୀଜଗନ୍ନାଥଙ୍କୁ ଗୋରକ୍ଷକ ଗୋବିନ୍ଦ ଓ ଗୋପୀଜନପ୍ରିୟ ଶ୍ରୀକୃଷ୍ଣ ଭାବରେ ଅର୍ଚ୍ଚନା କରାଯାଏ । ଶ୍ରୀଜଗନ୍ନାଥ ଯେତିକି ବୈଦିକ ସେତିକି ତାନ୍ତ୍ରିକ ।

ଆଜି ମଧ୍ୟ ଶ୍ରୀଜୀଉମାନଙ୍କଠାରେ ଉତ୍ସର୍ଗୀକୃତ ନୈବେଦ୍ୟ ମା' ବିମଳାଙ୍କଠାରେ ପୁନଃ ସମର୍ପିତ ହେବାପରେ ତାହା ନିର୍ମାଲ୍ୟ ବା ମହାପ୍ରସାଦରେ ପରିଣତ ହୁଏ । ବିମଳା ପ୍ରଥମେ ଥିଲେ ପରମ ବୈଷ୍ଣବୀ । ବୈଷ୍ଣବ ମାତୃଭୁଜା ରୀତିରେ ତାଙ୍କର ଉପାସନା ହେଉଥିଲା । ବୈଷ୍ଣବ ଧର୍ମ ସହ ତାନ୍ତ୍ରିକ ମତବାଦର ସମନ୍ୱୟ ସାଧିତ ହେଲା । ଶ୍ରୀକ୍ଷେତ୍ରରେ କ୍ରମେ ବିମଳାରୂପୀ ଦୁର୍ଗାଙ୍କସହ ଶ୍ରୀଜଗନ୍ନାଥ ରୂପୀ ମାଧବଙ୍କର ସମନ୍ୱୟ କରାଯାଇ ଦୁର୍ଗାମାଧବ ପୂଜାର ପ୍ରଚଳନ କରାଗଲା ।

ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଆଶ୍ୱିନ ଶୁକ୍ଳ ମହାଷ୍ଟମୀ ପର୍ଯ୍ୟନ୍ତ ମା'ଙ୍କର ବୋଧନ, ଆମନ୍ତ୍ରଣ, ଅଧିବାସ, ମହାସ୍ନାନ, ହୋମାନୁଷ୍ଠାନ ପ୍ରଭୃତି ମହା ପୂଜାବିଧି ପ୍ରଚଳିତ ଥିଲେ ହେଁ ମହାସପ୍ତମୀ ଦିନ ପୂଜକ, ପୁରୋହିତ, ପରିଛା ଆଦି ୧୦ଜଣ ସେବକ ସଂକଳ୍ପ କରିବାପରେ ତାନ୍ତ୍ରିକ ହୋମ ହୋଇ ତ୍ରିଦିନାତ୍ମକ ମହାପୂଜାର ଆୟୋଜନ କରାଯାଏ । ଏଇ ସମୟରେ ମା' ବିମଳା ରାଜନଅରରୁ ଆସିଥିବା କାଣ୍ଡହେଙ୍ଗୁଳ ଶାଢ଼ୀ ପରିଧାନ କରନ୍ତି । ପଶ୍ଚିମ-ଉତ୍ତରପଟ ମେଘନାଦ ପାଚେରିକୁ ଲାଗି ଏକ ଅସ୍ଥାୟୀ ନଡ଼ିଆଚାଞ୍ଚର ବାଡ଼ ବଳୟ ଭିତରେ ବିମଳାଙ୍କ କୂଅ ପାଖରେ ଏକ ଅସ୍ଥାୟୀ ରୋଷର ବ୍ୟବସ୍ଥା କରାଯାଏ । ବିମଳା ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ପରମଶକ୍ତି ଭୈରବୀ ଏବଂ ଶ୍ରୀଜଗନ୍ନାଥ ହେଉଛନ୍ତି ସ୍ୱୟଂ ଭୈରବ ।

ଶ୍ରୀଜୀଉମାନେ ଅଣସର ଘରେ ଥିବା ସମୟରେ ମା' ଦୁର୍ଗାଙ୍କର ପାର୍ଶ୍ୱଚରୀ ଦେବୀମାନଙ୍କର ଶ୍ରୀକ୍ଷେତ୍ରରେ ଅଦୃଶ୍ୟ ସମାବେଶ ହୋଇଥାଏ । ସେମାନଙ୍କ ମଧ୍ୟରୁ କ୍ରୋଧସମ୍ଭୂତା ଦେବୀମାନେ ରଥଯାତ୍ରାପରେ ଅଧରପଣା ଖାଇ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରୁଥିବାବେଳେ ଦେବୀଙ୍କର ଅଟ୍ଟହାସରୁ ଉଦ୍‌ଭବ



ଅନୁଚରୀଗଣ ଅଶରୀରୀ ଭାବେ ଅପେକ୍ଷା କରିଥାନ୍ତି । ଏହି ଅଶରୀରୀ ଯୋଗିନୀ ବା ଏମାନଙ୍କ ପ୍ରତୀକ ବିଗ୍ରହ ଗୋସାଣୀମାନଙ୍କୁ ପୂଜା କରିବାପରେ ଦଶହରା ଶେଷରେ ବିଦାୟ ଦିଆଯାଇଥାଏ । ଏହି ଗୋସାଣୀମାନେ ହେଉଛନ୍ତି ରକ୍ତମୁଖା ଦେବୀଙ୍କର ପାର୍ଶ୍ୱଚରୀ ପିଶାଚୀ ଡ଼ାହାଣୀ । ଗୋସାଣୀମାନଙ୍କ ନାଁ କାକୁଡ଼ି ଖାଇ, ଜହ୍ନିଖାଇ, କଖାରୁ ଖାଇ, ବେଲଖାଇ ପ୍ରଭୃତି । ଦଶହରା ଦିନ କେବଳ କାକୁଡ଼ିଖାଇ ଗୋସାଣୀଙ୍କୁ ମଧ୍ୟରାତ୍ରରେ ବିସର୍ଜନ ଦିଆଯାଇଥାଏ । ଦଶହରା ଦିନ ଶ୍ରୀମନ୍ଦିରରୁ ଚନ୍ଦନ ଓ ବଳଦେବଙ୍କଠାରୁ ବାରହାତି ଶାଢ଼ୀ ଆସି ଲାଗିହୋଇ ପଣା ସମର୍ପଣ ପରେ କାକୁଡ଼ି ଖାଇ ପଦାକୁ ବାହାରନ୍ତି। ତାଙ୍କୁ ବାରବାଟି ଗୋସାଣୀଙ୍କ ପର୍ଯ୍ୟନ୍ତ ନେଇ ସେଠାରୁ ବିସର୍ଜନ ଉଦ୍ଦେଶ୍ୟରେ ଜଳଘାଟକୁ ନିଆଯାଇଥାଏ । କାକୁଡ଼ି ଖାଇଙ୍କର ବିସର୍ଜନ ପ୍ରକ୍ରିୟା ମଧ୍ୟ ଭିନ୍ନ। ତାଙ୍କୁ ପ୍ରଥମେ ବିମାନରେ ବସେଇ ସେବକ ଓ ଦର୍ଶକମାନେ ଶୋଭାଯାତ୍ରାରେ ଯାଇ ରାଜନବର ସମ୍ମୁଖରେ ଶାଢୀ ପ୍ରସାଦ ଲାଗି ହୋଇ ବନ୍ଦାପନା ସରିବା ପରେ ପଶ୍ଚାତ୍‌ମୁଖୀ କରି ଜଳଘାଟ ଯାଏଁ ନିଆଯାଇଥାଏ । କଥିତ ଅଛି ଏଇ ସମୟରେ କାକୁଡ଼ି ଖାଇଙ୍କ ଦୃଷ୍ଟି ସାମ୍ନାରେ ପଡ଼ିଲେ ସେଇ ଲୋକର ଆସନ୍ନ ମୃତ୍ୟୁ ହୁଏ, ତେଣୁ ଶ୍ରୀନଅର ଅତିକ୍ରମ ପରେ କାକୁଡ଼ିଖାଇ ଗୋସାଣୀଙ୍କ ମୁହଁ ସାମ୍ନାରେ କଳାଶାଢୀ ଢ଼ାଙ୍କି ଦିଆଯାଏ । ତା'ପରେ ନରେନ୍ଦ୍ର ପୁଷ୍କରିଣୀ ସଂଲଗ୍ନ ମୃଷାନଈରେ ତାଙ୍କର ଭସାଣି ହୁଏ । ଭସାଣି ପୂର୍ବରୁ ୧୦୮ ବେଲପତ୍ର ଅଗ୍ନିରେ ଆହୂତି ଦିଆଯାଏ । କାକୁଡ଼ି ଖାଇଙ୍କ ବିସର୍ଜନପରେ ପୁରୀର ଅନ୍ୟାନ୍ୟ ଦୁର୍ଗାମେଢ଼ଙ୍କୁ ବିସର୍ଜନ ଦିଆଯାଏ ।

ଦଶହରା ପରଦିନ ଅର୍ଥାତ୍ ଶୁକ୍ଳ ଏକାଦଶୀ ଅପରାହ୍ନରେ ଅନ୍ୟାନ୍ୟ ଗୋସାଣୀମାନଙ୍କର ବିସର୍ଜନ ପାଇଁ ସେମାନଙ୍କ ଆସ୍ଥାନରୁ ଧୂପ, ଦୀପ, ଦିହୁଡ଼ି, ଛତ୍ରଚାମର, ଚାନ୍ଦୁଆ, ଘଣ୍ଟଘଣ୍ଟା, କାହାଳୀ, ମର୍ଦ୍ଦଳ, ଶଙ୍ଖ,ତୂରୀ, ତେଲିଙ୍ଗି ବାଇଦ ବଜେଇ ପଟୁଆରରେ ସେମାନଙ୍କୁ ଅଣାଯାଇ ସିଂହଦ୍ୱାର ସମ୍ମୁଖସ୍ଥ ଅରୁଣସ୍ତମ୍ଭ ସଂଲଗ୍ନ ପ୍ରଶସ୍ତ ସ୍ଥାନରେ ସମବେତ କରାଯାଏ । ଏହାକୁ ଗୋସାଣୀ ମିଳନ କୁହାଯାଏ । ଏଇଠି ଜହ୍ନିଖାଇ, କଖାରୁଖାଇ, ବେଲଖାଇ, ହାଡ଼ବାଈ, ଗେଲବାଈ, ପ୍ରାଣଦନ୍ତ, ବନଦୁର୍ଗା, ହରଚଣ୍ଡୀ, ମହଢେଶ୍ୱରୀ, ଚକ୍ରକୋଟ ଠାକୁରାଣୀ, ଯମକୋଟ ଠାକୁରାଣୀ ପ୍ରଭୃତି ଏକତ୍ର ହୋଇ ମହାଭୈରବ ଶ୍ରୀଜଗନ୍ନାଥ ଓ ଭୈରବୀ ବିମଳାଙ୍କୁ ଦର୍ଶନ କରନ୍ତି ବୋଲି କୁହାଯାଏ । ସଂଧ୍ୟାରେ ସେବକମାନେ ନିଜ ନିଜର ଗୋସାଣୀଙ୍କୁ ସୋଲ ଜରିର ମକୁଟ ପିନ୍ଧେଇ ନାନା ଭାବରେ ସଜେଇ ସମବେତ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । ଦର୍ଶକଙ୍କ ମନୋରଞ୍ଜନ ଲାଗି ଗୋସାଣୀମାନଙ୍କ ସମ୍ମୁଖରେ ବିଭିନ୍ନ ନୃତ୍ୟ, ସଂଗୀତ ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମମାନ ଆୟୋଜିତ ହୁଏ । ଶେଷରେ ବିଭିନ୍ନ ବିଜ୍ଞାପନ ସଂସ୍ଥାମାନଙ୍କ ଦ୍ୱାରା ଶ୍ରେଷ୍ଠ ମୂର୍ତ୍ତି ନିର୍ମାତା, ସାଜସଜ୍ଜା କଳାକାର ତଥା ଶୃଙ୍ଖଳିତ ଅନୁଷ୍ଠାନଙ୍କୁ ପୁରସ୍କୃତ କରାଯାଇଥାଏ । ଶେଷରେ କିଛି ଗୋସାଣୀଙ୍କୁ ମୃଷାନଈରେ ଆଉ କେତେକଙ୍କୁ ମହୋଦଧିରେ ବିସର୍ଜନ ଦିଆଯାଏ ।

ଶ୍ରୀଜଗନ୍ନାଥ ଧାମକୁ ନିଜ ନିଜ ଧାର୍ମିକ ମତବାଦ ତଥା ଦାର୍ଶନିକ ମତବାଦ ପ୍ରଚାରର ଶ୍ରେଷ୍ଠତମ ପୀଠଭାବେ ମନେକରି ବିଭିନ୍ନ ସଂପ୍ରଦାୟର ଆଚାର୍ଯ୍ୟଗଣ ଏହି ଧାମକୁ ଆସି ସେମାନଙ୍କର ମତବାଦକୁ ଶ୍ରୀଜଗନ୍ନାଥଙ୍କ ଉପାସନା ସହ ମିଶେଇବାର ପ୍ରୟାସ କରିଛନ୍ତି । ଏଇ ନ୍ୟାୟରେ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରେ ଶାକ୍ତ ମତବାଦ ମଧ୍ୟ ଶତାବ୍ଦୀ ଶତାବ୍ଦୀ ଧରି କ୍ଷୀରନୀର ପରି ମିଶିଯାଇଛି ।

କଲ୍ୟାଣ ନଗର
ବାଲେଶ୍ୱର-୧



# ଶ୍ରୀଜଗନ୍ନାଥ ଉବାଚ

ଏକାଦଶୀ ଜେନା

କାଳେକାଳେ ଭଗବାନ ହେଉଛନ୍ତି ଭକ୍ତର । ଏ ମାୟା ସଂସାରରୁ ଭକ୍ତଗଣଙ୍କୁ ଉଦ୍ଧାର କରିବା ନିମନ୍ତେ ମହାପ୍ରଭୁଙ୍କ ଲୌକିକ ଲୀଳା ବାସ୍ତବିକ୍ ଚେତନା ଉଦ୍ରେକକାରୀ । ପ୍ରଭୁ ତାଙ୍କର ମହାବାହୁରେ ଭକ୍ତଗଣଙ୍କୁ କୋଳାଗ୍ରତ କରିବା ନିମନ୍ତେ ଅପଲକ ନୟନରେ ଚାହିଁ ରହିଥାନ୍ତି ଓ ଭକ୍ତଙ୍କ ଉଦ୍ଦେଶ୍ୟରେ ସ୍ମିତହାସ୍ୟ ପୂର୍ବକ କହିଥାନ୍ତି ...

ପ୍ରିୟ ଅମୃତର ସନ୍ତାନ !

ତୁମେମାନେ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ମୋର ଦାରୁ ବିଗ୍ରହକୁ ଯେଉଁଭଳି ପୂଜା କରୁଛ, ତା'ର ପଟ୍ଟାନ୍ତର ନାହିଁ । ମୋର ଜୀର୍ଣ୍ଣ ଶରୀରକୁ ବଦଳାଇ ନୂତନ ଦାରୁ ବିଗ୍ରହ ନିର୍ମାଣ କରୁଛ । ସେଥିପାଇଁ ମୋ' ଆଜ୍ଞାମାଳ ଲାଭ ସହ ଦାରୁ ଅନ୍ୱେଷଣ, ଯଜ୍ଞ, ଜପ ଆଦି ଅନୁଷ୍ଠାନ ପୂର୍ବକ ଦାରୁ ଛେଦନ କରୁଛ । ପ୍ରତ୍ୟେକ ପର୍ଯ୍ୟାୟରେ ଯେଉଁଭଳି ଶ୍ରଦ୍ଧା ଭକ୍ତି ପ୍ରଦର୍ଶନ କରୁଛ ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ । ଯଦିଓ ମୁଁ ଏକ, ଅଦ୍ୱିତୀୟ, ଅଜ, ଅନନ୍ତ, ଅଚିନ୍ତ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ, ସର୍ବାନ୍ତର୍ଯ୍ୟାମୀ, ସର୍ବାଧାର ସଚ୍ଚିଦାନନ୍ଦ ସ୍ୱରୂପ ତଥାପି ତୁମର ଶ୍ରଦ୍ଧା ହେତୁ ସାକାର ବିଗ୍ରହ ଗ୍ରହଣ କରିଛି ଓ ତୁମର ନୀତିରେ ତୁମମାନଙ୍କୁ ଦର୍ଶନ ଦେଉଛି । ବାସ୍ତବରେ ତୁମର ମୋର ମଧ୍ୟରେ କୌଣସ ଫରକ ନାହିଁ । ବ୍ରହ୍ମରୁ କୀଟ ପର୍ଯ୍ୟନ୍ତ ଚରାଚର ବିଶ୍ୱରେ ମୁଁ ପରିବ୍ୟାପ୍ତ । ମୋ' ବ୍ୟତୀତ ଆଉ କିଛି ନାହିଁ । ମୁଁ ହିଁ ବିଶ୍ୱରୂପ । ଅନାଦି, ଅଚ୍ୟୁତ, ଅପରିମେୟ, ସୃଷ୍ଟି ସ୍ଥିତି ଲୟର କାରଣ । ଲୀଳା ପାଇଁ ବିଶ୍ୱର ସୃଷ୍ଟି । ସ୍ୱମାୟାରେ ନିଜେ ସଂସାର ମଧ୍ୟରେ ଅବତାର ନେଇ ସୃଷ୍ଟି ରକ୍ଷା କରେ । ନୂତନ ସୃଷ୍ଟି ପୂର୍ବରୁ ସମସ୍ତଙ୍କୁ ମୋ'ଠାରେ ସଂଗ୍ରହ କରିଦିଏ । ଅର୍ଥାତ୍ ମୋର ସତ୍ତା ସ୍ଫୁର୍ତ୍ତିରେ ପ୍ରକୃତି ଏସବୁ କରୁଥାଏ । ପ୍ରକୃତି ମୋର ହିଁ ଶକ୍ତି । ତୁମେମାନେ ମୋରିଠାରେ ସମର୍ପଣ କରି ପ୍ରକୃତିର ଦାନକୁ ଭୋଗ କରୁଛ । ତୁମେ ମୋତେ ପିତା, ମାତା, ଭ୍ରାତା, ସଖା, ଗୁରୁ ଆଦି ରୂପରେ ଖୋଜୁଛ ଏବଂ ତୁମର ଶ୍ରଦ୍ଧା ଅନୁରୂପ ତୁମକୁ ପ୍ରାପ୍ତ ହୋଇଥାଏ । ଏଥିପାଇଁ ମୁଁ ନିରାକାର, ନିର୍ବିକାର ହେଲେ ମଧ୍ୟ ତୁମ ଶ୍ରଦ୍ଧା ବିଗ୍ରହରେ ଅବତୀର୍ଣ୍ଣ ହୋଇ ତୁମର ଯାଚଞ୍ଚା ପୂରଣ କରିଥାଏ । ଲୀଳା କଳେବର ଧରିଥିଲେ ମଧ୍ୟ ଶାସ୍ତ୍ର ଓ ଗୁରୁବାକ୍ୟ ଦ୍ୱାରା ତୁମେମାନେ ମୋର ସାକାର ବିଗ୍ରହରୁ ମୋର ନିର୍ବିକାର ସଚ୍ଚିଦାନନ୍ଦ ସ୍ୱରୂପକୁ ଜାଣି ମୋର ଉପାସନା କରିଥାଅ । ଯାହା ମୋତେ ପରମ ଆନନ୍ଦ ଦିଏ ଏବଂ ଏହି ଆନନ୍ଦ ସ୍ୱରୂପରେ ସବୁଠାରେ ସବୁ ସମୟରେ ସର୍ବତୋଭାବେ ପ୍ରାପ୍ତ ମୋତେ ଏହି ଭାବରେ ସମସ୍ତଙ୍କଠାରେ ଦେଖିବା ହିଁ ତୁମର କର୍ତ୍ତବ୍ୟ ଓ ଧର୍ମ । ଏହା ହିଁ ଏକମାତ୍ର ପଥ ।

ମୋର କଳେବର ହାତ, ପାଦ, କାନ ନାହିଁ । ତାହା ହିଁ ମୋର ଅସୀମତାକୁ ସୂଚାଉଛି । ହାତର ପାପୁଲି ଥିଲେ ମୁଁ ସୀମିତ ହୋଇଥାନ୍ତି । ମୁଁ ମୋର ଅନନ୍ତ ହସ୍ତରେ ସାରା ସୃଷ୍ଟିକୁ କୋଳେଇ ଧରିଛି । ଅପଲକ ନେତ୍ରରେ ତିନି ଲୋକକୁ ଯୁଗପତ୍ ପ୍ରତ୍ୟକ୍ଷ କରୁଛି । ସବୁଠି ମୋର କାନ ଅଛି, ତା'ମାନେ ଯିଏ ଯେଉଁଠି ଯେତେବେଳେ ଡାକିଲେ ମୁଁ ଶୁଣୁଛି । ସମସ୍ତଙ୍କ ପାଦ ମୋର ହିଁ ପାଦ, ମୁଁ ସହସ୍ର ଶୀର୍ଷ, ସହସ୍ରବାହୁ, ସହସ୍ରପାତ୍ ପୁରୁଷ ପୁଣି ନିଷ୍କଳ । ଭୂତ ବର୍ତ୍ତମାନ ଓ ଭବିଷ୍ୟତକୁ ଯୁଗପତ୍ ଦେଖୁଥିଲେ ବି ମୁଁ କାଳାତୀତ । ପୁଣି ତୁମ ଶରୀର ରୂପକ ରଥରେ ମୁଁ ବାମନ ରୂପରେ ବିରାଜିତ । ମୋରି ସତ୍ତା ସ୍ଫୁର୍ତ୍ତି



ଦ୍ୱାରା ସମସ୍ତ ଅଙ୍ଗପ୍ରତ୍ୟଙ୍ଗ କାର୍ଯ୍ୟକ୍ଷମ ଅଟନ୍ତି । ମାତ୍ର ମୁଁ ସାକ୍ଷୀ ବା ଦ୍ରଷ୍ଟା ରୂପରେ ଥାଏ । ତୁମେମାନେ ମୋର ଅବସ୍ଥିତିକୁ ଅବଜ୍ଞା କରି ଅହଂ ବଶତଃ ନିଜକୁ କର୍ତ୍ତା ଓ ଭୋକ୍ତା ବୋଲି ମାନି ନେଇ କର୍ମଫଳକୁ ପାପ ପୁଣ୍ୟ ଭାବରେ ଭୋଗ କରୁଛ । ତୁମେ ମୋତେ ମାନିଲେ ବା ନ ମାନିଲେ, ଜାଣିଲେ ବା ନ ଜାଣିଲେ ମଧ ମୁଁ ଅନ୍ତର ବାହାରେ ସର୍ବତ୍ର ବିଦ୍ୟମାନ । ମୁଁ କର୍ତ୍ତା, ଧର୍ତ୍ତା ଓ ହର୍ତ୍ତା । ଏହା ହିଁ ସତ୍ୟ ।

ନାମ ରୂପମୟ ଜଗତ୍ ଯାହା ଦେଶ ଓ କାଳର ଅଧୀନ ସେଥିରୁ ମୋର ସ୍ଥିତି ଊର୍ଦ୍ଧ୍ୱରେ । ସବୁର କାରଣ ହେଲେ ମଧ ମୁଁ ଅକାରଣ, ନିର୍ଲିପ୍ତ, ନିର୍ବିକାର, ନିରୀହ, ନିରଞ୍ଜନ, ନିତ୍ୟ, ନିରବଦ୍ୟ, ମୋଠାରେ ସବୁ ଦ୍ୱନ୍ଦ୍ୱର ପର୍ଯ୍ୟବସାନ । ତଥାପି ମୁଁ ନିର୍ଦ୍ୱନ୍ଦ୍ୱ, ନିର୍ବିକଳ୍ପ, ଅବିଚଳିତ ସ୍ଥାଣୁ । ସୃଷ୍ଟି ଲୀଳାର ସାକ୍ଷୀ ମାତ୍ର । ମୋତେ ଏହିଭଳି ଜାଣିଗଲେ ତୁମେ ମଧ ଜନ୍ମମୃତ୍ୟୁ ଚକ୍ରର ଊର୍ଦ୍ଧ୍ୱରେ ନିଜକୁ ଆବିଷ୍କାର କରିବ ଓ ସେତେବେଳେ ତୁମ ଓ ମୋ ଭିତରେ ଥିବା ଅଜ୍ଞାନଜନିତ ସୀମାର ପ୍ରାଚୀର ଆଉ ନଥିବ । ଯେ ମୁଁ– ସେ– ତୁମେ–ଏକ ଅଭିନ୍ନ ସତ୍ତା । ଅସ୍ତି ଭାତି ଆନନ୍ଦ ବା ସତ୍ ଚିତ୍ ଆନନ୍ଦ ଭାବରେ ଅସୀମ, ଅପରିଚ୍ଛିନ୍ନ, ଅନନ୍ତ ରୂପରେ ନିଜକୁ ପାଇବ । ନାମ, ରୂପ, ଉପାଧିର ସକଳ ସୀମିତ, ପରିଚ୍ଛିନ୍ନ ବନ୍ଧନ କେତେବେଳୁ ହଜିଯାଇଥିବ । ବିଶ୍ୱର ଲୀଳାକୁ ବୁଝିଯାଇ ଆନନ୍ଦରେ ଜୀବନ୍ମୁକ୍ତ ହୋଇ ବିଚରଣ କରିବ । ସଂସାର ନିୟମ ତଥା କାଳର ପ୍ରଭାବରେ ତୁମର ପଞ୍ଚଭୂତ ନିର୍ମିତ ଶରୀର ନଶ୍ୱର ହେଲେ ବି ତୁମେ ଆମ ଭାବରେ ଅମର, ସାଂସାରିକ ବାଧା ବନ୍ଧନରୁ ମୁକ୍ତ: ନିତ୍ୟ ଆନନ୍ଦ ସ୍ୱରୂପ । ଏହି ଭାବରେ ନିଜକୁ ଆବିଷ୍କାର କର । ମୁଁ ତୁମକୁ ସବୁଠାରେ ପ୍ରାପ୍ତ ଅଟେ । ତୁମର ହୃଦୟରେ ମୁଁ ଅନବରତ ସ୍ଫୁରିତ ହେଉଛି । ସଂସାର ମଧରେ ପିତା, ମାତା, ଆତ୍ମୀୟ ସ୍ୱଜନ, ବନ୍ଧୁ ପରିଜନ, ଗୁରୁ, ପ୍ରାଜ୍ଞ, ପଞ୍ଚଭୂତ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର ଆଦି ରୂପରେ ଦର୍ଶନ ଦେଉଛି । ତାଙ୍କୁ ମୋରି ଜ୍ଞାନରେ ଦେଖ । ତୁମର ଶ୍ରଦ୍ଧାବିବେଶ ହୋଇ କାମନା ପୂରଣ ପାଇଁ ବିଭିନ୍ନ ଗୁରୁ, ଦେବତା ଆଦି ପୂଜା କରୁଛ । ସେମାନଙ୍କୁ ମିଳୁଥିବା ପୂଜା ଓ ଭକ୍ତିକୁ ଗ୍ରହଣ କରିଥାଏ । ପ୍ରକାରାନ୍ତରେ ସେମାନଙ୍କଠାରୁ ପ୍ରାପ୍ତ ବର ମୁଁ ହିଁ ପ୍ରଦାନ କରେ । ତୁମେ କିନ୍ତୁ ନ ବୁଝିବା କାରଣରୁ ମୋର ଓ ସେମାନଙ୍କ ମଧରେ ଭିନ୍ନତା ଆଣ । ଏଭଳି ନାନାତ୍ୱ ଆଣିଲେ ଭ୍ରମରେ ପଡ଼ିବ । ଭ୍ରମବଶତଃ ନାନା ମତ, ପନ୍ଥ, ଧର୍ମ, ବେଶଭୂଷା, ଭାଷା ଆଦି ବିଭେଦ ସୃଷ୍ଟି ହୋଇଛି । ଜାତି ଓ ବର୍ଣ୍ଣକୁ ନେଇ ବାଦ ରହିଛି । ଯାହା ମଧ ଠିକ୍ ନୁହେଁ । ସେଥିରୁ ନିବୃତ୍ତ ନ ହେଲେ ମୋତେ ପାଇବା କଷ୍ଟ ହେବ । କାରଣ ଈଶ୍ୱର ଏକ ଓ ସମସ୍ତେ ତାଙ୍କର ସନ୍ତାନ । ତେଣୁ ସମସ୍ତେ ସମାନ ଭାବରେ କୃପାର ପାତ୍ର ବରଂ ମୋ ବିଗ୍ରହ ପାଖରେ ଥିବା ଲୋକ ଅପେକ୍ଷା ମୋ ପାଖରେ ପହଞ୍ଚି ପାରୁ ନଥିବା ଲୋକ ପାଇଁ ମୋର ଅଧିକ ଚିନ୍ତାଥାଏ । ମୋତେ ଦର୍ଶନ କରିବା ଓ ସ୍ପର୍ଶାନନ୍ଦ ଅନୁଭବ କରିବା ପାଇଁ ନିଜ ଭିତରେ ପ୍ରତିଯୋଗିତା କରିଥାଅ, ଠେଲାପେଲା ହୁଅ । ଯାହା ଠିକ୍ ନୁହେଁ, ମୁଁ ତ ତୁମ ହୃଦୟରେ ଅଛି । ସ୍ଥୂଳ ବିଗ୍ରହ ଅପେକ୍ଷା ମୋର ସୂକ୍ଷ୍ମ ରୂପକୁ ଦେଖ, ବେଶି ଆନନ୍ଦ ପାଇବ । ସବୁ ପ୍ରାଣୀଙ୍କୁ ବଞ୍ଚିବାର ସମାନ ଅଧିକାର ଦିଅ । ପିମ୍ପୁଡ଼ିଟିର ମଧ ବଞ୍ଚିବାର ସେତିକି ଅଧିକାର ଅଛି ।

ପ୍ରକୃତିର ଦାନକୁ ସମସ୍ତଙ୍କ ମଧରେ ସେମାନଙ୍କ ପ୍ରାପ୍ୟ ଅନୁଯାୟୀ ବାଣ୍ଟିସାରି ଅବଶିଷ୍ଟାଂଶରେ ସନ୍ତୁଷ୍ଟ ହୁଅ । ଏହିପରି ଯଜ୍ଞ ଶେଷ ଭୋଗ କରି ପୂର୍ଣ୍ଣ ଆୟୁ ଆନନ୍ଦରେ ଉପଭୋଗ କର । ମୋର ନବକଳେବର ପାଇଁ ଗୋଟିଏ ବୃକ୍ଷ ଛେଦନ କଲେ ଆଉ ୧୦ ଗୋଟି ବୃକ୍ଷ ରୋପଣ କର । ତୁମର ମଙ୍ଗଳ ହେବ । ଆଜି ବୁଦ୍ଧି ବଳରେ ସବୁକିଛି ଜୟକରି ଯାଇଛ, କିନ୍ତୁ ଦୁଃଖ ଓ ଅଶାନ୍ତିରୁ ମୁକ୍ତି ପାଉନାହଁ । ଯେଉଁ ପ୍ରକୃତି ତୁମର ଶରୀର ନିର୍ମାଣ କରି ଲାଳନ ପାଳନ କରୁଛି ତୁମେ ତାକୁ ଉଜାଡ଼ି ଦେଉଛ । ତେଣୁ ତୁମେ ପୂର୍ଣ୍ଣ ସୁଖରୁ ବଞ୍ଚିତ ହେଉଛ । ଯେଉଁ ମଣିଷକୁ ସବୁ ସୃଷ୍ଟି ମଧରେ ସାର କରିଛି ତା'ର ଦୈବୀଗୁଣ ତିରୋହିତ ହୋଇ ଆସୁରିକ ପ୍ରବୃତ୍ତି ବୃଦ୍ଧି ପାଉଛି । ଧର୍ମ, ମତ, ପନ୍ଥ, ବେଶଭୂଷା, ଭାଷାକୁ ଆଳ କରି ଯଦୁବଂଶୀଙ୍କ ଭଳି ପରସ୍ପରର ବିରୋଧୀ ହେଉଛ । ଏହା କେତେଦୂର ଠିକ୍ ।



ତୁମେମାନେ ମୋତେ ମହାବାହୁ, ମହାପ୍ରଭୁ ବୋଲି ମାନୁଛ । ମୋ ଦେଉଳକୁ ବଡ଼ଦେଉଳ, ଦାଣ୍ଡକୁ ବଡଦାଣ୍ଡ ବୋଲି ଅଭିହିତ କରିଛ । ତା'ର ତାତ୍ପର୍ଯ୍ୟ କ'ଣ ? ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଉଠି ବିଶାଳତା ବା ଭୂମାକୁ ପ୍ରାପ୍ତ ହୁଅ । ସେଥିରେ ନିତ୍ୟ ସୁଖ ଅଛି । ଅଳ୍ପରେ ଦୁଃଖ ଅଛି । ଦୁଃଖ ବୋଲି ଯେଉଁ ପରିସ୍ଥିତିକୁ ତୁମେ ଏତେ ଭୟ କରୁଛ ତାହା ବାସ୍ତବରେ ମୋ ଆଡ଼କୁ ଆସିବାର ନିମନ୍ତ୍ରଣ । ତୁମେ ଯେ ଅମୃତର ବା ଆନନ୍ଦର ସନ୍ତାନ, ତାହା ଅନୁଭବ କରିବା ପାଇଁ ଦୁଃଖ ଅଭାବ ଅଧିକ ସମ୍ବେଦନଶୀଳ ପରିସ୍ଥିତି ଉତ୍ପନ୍ନ କରି ଆନନ୍ଦର ଉତ୍ସ ମୋ ଆଡ଼କୁ ପ୍ରେରିତ କରେ । ମୁକ୍ତି ପାଇଁ ବାଟ ଦେଖାଏ । ଶାଶ୍ୱତ ମାର୍ଗରେ ଚାଲିବା ପାଇଁ ଶିକ୍ଷା ଦିଏ । ତାହା ତୁମେ ବୁଝି ସେହି ଆହ୍ୱାନକୁ ସାମ୍ନା କରି ଦୃଢ଼ ହୁଅ, ଦେଖିବ ତୁମେ ମୃତ୍ୟୁଞ୍ଜୟୀ ହୋଇଯିବ । ଦୁଃଖ, ଦୈନ୍ୟ ତୁମ ବନ୍ଧୁ ତେଣୁ ମୁଁ ଦୀନବନ୍ଧୁ । ମୁଁ ଗୁରୁ ଓ ଶାସ୍ତ୍ରଦ୍ୱାରା ଶିକ୍ଷା ଦେଇଛି । ଦୁଃଖରେ ଉଦ୍‌ବିଗ୍ନ ହେବ ନାହିଁ କି ସୁଖରେ ଆସକ୍ତ ହେବ ନାହିଁ । ତା' ହେଲେ ତୁମେ ଦୃଢ଼ ଭାବେ ମୋତେ ଧରିବ, ସ୍ଥିର ହୋଇଯିବ । ଆଉ କେଉଁ ପରିସ୍ଥିତି ତୁମକୁ ବିଚଳିତ କରିପାରିବ ନାହିଁ । ଏହିପରି ଭକ୍ତର ବିନାଶ ନାହିଁ । ଇହ ଲୋକରେ ସେ ପ୍ରଶଂସନୀୟ କାର୍ଯ୍ୟ କରି ଯଶର ଅଧିକାରୀ ହୁଏ ଓ ମୃତ୍ୟୁରେ ଆନନ୍ଦରେ ପରଲୋକ ଗମନ କରେ, ତେଣୁ ତୁମର ହୃଦୟକୁ ଆକାଶ ଭଳି ବିଶାଳ କର । ତହିଁରେ ଦୟା, କ୍ଷମା, ତିତିକ୍ଷା, ପରୋପକାର, ସାହସ, ଧୈର୍ଯ୍ୟ ଆଦି ଦୈବୀଗୁଣକୁ ବିକଶିତ କରିବ, ଯାହା ମୋର ଲକ୍ଷଣ ବା ସ୍ୱରୂପ ଅଟେ । ଏଥିପାଇଁ ଅଯଥା ଇନ୍ଦ୍ରିୟ ସୁଖ ଲୋଭକୁ ତିରସ୍କାର କରିବାକୁ ପଡ଼ିବ ।

ତାହା ବିଚାର କରୁନାହଁ । ଯେ ବିଚାରଶୀଳ ଗୁଣିଜ୍ଞାନୀ ବ୍ୟକ୍ତି ଅଛନ୍ତି ତାଙ୍କୁ ଉପେକ୍ଷା କରୁଛ । ବିଚାର ହିଁ ଧର୍ମ ନିର୍ଣ୍ଣୟ କରେ । ଉକ୍ତ ବିଚାର ବୁଦ୍ଧିଦୀପ୍ତ ଓ ହୃଦୟ ପ୍ରଚୋଦିତ ହେବା ଉଚିତ । ଧର୍ମ ବା ନୀତି ଉପରେ ପ୍ରତିଷ୍ଠିତ ମାର୍ଗ ସୁଖ ଆଣେ । ଅନୀତି ମାର୍ଗରେ ସୁଖ ସ୍ଥାୟୀ ନୁହେଁ । ଅନୀତି ଓ ସୁଖ ପରସ୍ପର ବିରୋଧୀ ।

ତୁମେ ମୋତେ ଜଗତର ସ୍ୱାମୀ ବୋଲି ଡାକୁଛ । ମୋର ମହିମା ବଖାଣି ନାନା ଭଜନ, ଜଣାଣ ଓ ବନ୍ଦନା ଗାଉଛ । ଭକ୍ତ କଣ୍ଠରୁ ଏପରି ଭଜନ ଓ ଜଣାଣ ଶୁଣିଲେ ମୁଁ ଅତ୍ୟନ୍ତ ପ୍ରସନ୍ନ ହୁଏ । ପ୍ରଚାର ନ କରି ଏକାନ୍ତ ଭକ୍ତି ମୋର ଅଧିକ ପ୍ରିୟ । ତୁମେମାନେ ''ଦେଖାଦିଅ କୃପାକର'' ବୋଲି ଅଳି କର । ତାହା ତ ମୁଁ ତୁମେ ନ ମାଗିବା ଆଗରୁ କରିସାରିଛି । ସଂସାରରେ ପ୍ରତ୍ୟେକ ଜୀବ ତଥା ତୁମର ମାତା, ପିତା ଗୁରୁଜନ, ବନ୍ଧୁ ସହୋଦର ଆଦି ରୂପରେ ମୁଁ ଦେଖା ଦେଉଛି । ମୁଁ କୃପା ଓ କ୍ଷମାର ସାଗର, ତାହା ତୁମେ ଜାଣ । ମୋର କୃପା ବଳରେ ତୁମେ ଦୁର୍ଲଭ ମଣିଷ ଜନ୍ମ ପାଇଛ, ଅନେକ ଦୈବୀଗୁଣ, ଅଙ୍ଗପ୍ରତ୍ୟଙ୍ଗରେ ଶକ୍ତି, ମସ୍ତିଷ୍କରେ ବୁଦ୍ଧି, ହୃଦୟରେ ମମତା, ସମାଜରେ ବନ୍ଧୁ ପରିଜନ ଓ ପ୍ରକୃତିର ଆନନ୍ଦର ସମ୍ଭାର ସବୁତ ମୋର କରୁଣା । ତାହା ତୁମେ ଅନ୍ୟ ସହିତ ଭାଗ କଲେ ମୋର ଆହୁରି କୃପାଭାଜନ ହେବ । ମାତ୍ର ତୁମେ ଅହଂକାର ପରାୟଣ ହୋଇ ଈର୍ଷା, ଦ୍ୱେଷ, ଲୋଭର ବଶବର୍ତ୍ତୀ ହୋଇ ତାହା ଉପଭୋଗ କରିପାରୁନା । ମୁଁ ସମସ୍ତଙ୍କ ପିତା । ସମସ୍ତ ସନ୍ତାନମାନଙ୍କୁ ସମାନ ଭାବରେ ଦେଖିବା ମୋର କାମ । ତୁମେ ମଧ୍ୟ ମୋର ସନ୍ତାନ ହେତୁ ମୋ ଭଳି ଅନ୍ୟମାନଙ୍କୁ ଦେଖିବା କଥା । ଯାହା ନିଜ ପାଇଁ ଭଲ ତାହା ଅନ୍ୟପାଇଁ ଚାହିଁବ । ଯାହା ନିଜକୁ ଭଲ ନଲାଗେ ତାହା ଅନ୍ୟପ୍ରତି ଆଚରଣ କରିବ ନାହିଁ । ଏହା ହିଁ ମାନବିକ ଧର୍ମ ।

ଅତିରିକ୍ତ ଜିଲ୍ଲାପାଳ, କୋରାପୁଟ





# ଜଗନ୍ନାଥ ଧର୍ମରେ ସୁଭଦ୍ରା ତତ୍ତ୍ୱ

ମମତା ପାଣିଗ୍ରାହୀ

ଶ୍ରୀଜଗନ୍ନାଥ କେବଳ ଓଡ଼ିଶାରେ ନୁହଁନ୍ତି କି ଭାରତବର୍ଷରେ ନୁହଁନ୍ତି, ଭାରତବାହାରେ ତଥା ଦେଶବିଦେଶରେ ମଧ୍ୟ ପରମ ଉପାସ୍ୟ ଦେବତା ଭାବରେ ପୂଜିତ ହୁଅନ୍ତି । ଶ୍ରୀଜଗନ୍ନାଥ ତତ୍ତ୍ୱ ଜଗନ୍ନାଥ, ବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନ ରୂପୀ ମୂର୍ତ୍ତି ଚତୁଃଷ୍ଟୟର ମନୋଜ୍ଞ ସମାହାର । ଗୋଟିକର ଅନୁପସ୍ଥିତିରେ ସମଗ୍ର ଜଗନ୍ନାଥ ତତ୍ତ୍ୱ ଅପୂର୍ଣ୍ଣ । ତେଣୁ କୁହାଯାଇଛି 'ଜ'କାରଶ୍ଚ ଜଗନ୍ନାଥ, 'ଗ' କାରଶ୍ଚ ବଳଦେବ, ଭଦ୍ରା 'ନ'କାର ଭାବେନ, 'ଥ'କାରଶ୍ଚ ସୁଦର୍ଶନ । ଜଗନ୍ନାଥ ତତ୍ତ୍ୱରେ ଦେବୀ ସୁଭଦ୍ରାଙ୍କ ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମହାଭାରତର ନାରାୟଣୀୟ ଉପାଖ୍ୟାନକୁ ଅନୁଶୀଳନ କଲେ ଜଣାଯାଏ ଯେ ଏହି ଚାରିମୂର୍ତ୍ତିଙ୍କ ଉପାସନାର ଆରମ୍ଭ ପୂର୍ବରୁ ପ୍ରଥମେ ବାସୁଦେବ ବିଷ୍ଣୁ ବିରାଜିତ ହୋଇଥିଲେ । ଦ୍ୱିବ୍ୟୁହ ତତ୍ତ୍ୱରେ ଶଙ୍କର୍ଷଣ ଶିବରୂପେ ଗୃହୀତ ହେଲେ । ପରବର୍ତ୍ତୀ କାଳରେ ଜଗନ୍ନାଥ ଓ ବଳଭଦ୍ରଙ୍କ ସହିତ ଦେବୀ ସୁଭଦ୍ରା ବିରାଜିତ ହେଲେ । ସୁଭଦ୍ରା ଯେ ବ୍ରହ୍ମା ଏଥିରେ ସନ୍ଦେହ ନାହିଁ । ବ୍ରହ୍ମା ତୀର୍ଥଗୁରୁ ପୁଷ୍କରକୁ ଯଜ୍ଞ ପାଇଁ ପ୍ରକୃଷ୍ଟ ସ୍ଥାନଭାବରେ ମନୋନୀତ କରି ଯଜ୍ଞ ଆରମ୍ଭ କରିବା ପୂର୍ବରୁ ନିଜ ପତ୍ନୀ ସାବିତ୍ରୀଙ୍କର ଜରୁରୀ ଆବଶ୍ୟକତା ମନେକରି ତାଙ୍କୁ ଆଣିବାକୁ ନିଜର ପୁଅ ନାରଦଙ୍କୁ ପଠାଇ ଥିଲେ । ନାରଦ ଓ ସାବିତ୍ରୀ ଆସିବାରେ ବିଳମ୍ୱ କରିବାରୁ ବ୍ରହ୍ମା ଗାୟତ୍ରୀଙ୍କୁ ପୁନଃବିବାହ କରି ଯଜ୍ଞ ଆରମ୍ଭ କଲେ, ପରେ ସାବିତ୍ରୀ ସେଠାରେ ପହଞ୍ଚି ବ୍ରହ୍ମାଙ୍କର ଏତାଦୃଶ ଆଚରଣ ଦେଖି ବ୍ରହ୍ମାଙ୍କୁ ଅଭିଶାପ ଦେଲେ ଯେ 'ତୁମ୍ଭେ ସୃଷ୍ଟିକର୍ତ୍ତା ହୋଇଥିଲେ ହେଁ ଏହି ପୁଷ୍କର ସ୍ଥାନ ବ୍ୟତୀତ ଅନ୍ୟକୌଣସି ସ୍ଥାନରେ ପୂଜା ପାଇପାରିବ ନାହିଁ ।' ସତକୁ ସତ କେବଳ ରାଜସ୍ଥାନର ଥର୍ ମରୁଭୂମି ନିକଟସ୍ଥ ଏହି ତୀର୍ଥ ଶ୍ରେଷ୍ଠ ପୁଷ୍କର ହ୍ରଦ ନିକଟରେ କେବଳ ଚତୁର୍ମୁଖ ବ୍ରହ୍ମା ପୂଜା ପାଉଛନ୍ତି । ଅନ୍ୟତ୍ର କୌଣସି ସ୍ଥାନରେ ବ୍ରହ୍ମା ପୂଜା ପାଉନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ। ସେହି ଦୃଷ୍ଟିରୁ ଜଗନ୍ନାଥ ବଳଭଦ୍ରଙ୍କ ସହିତ ସୁଭଦ୍ରା ବ୍ରହ୍ମା ବୋଲି ପରିଗଣିତ ହୁଅନ୍ତି । ଆଦିକବି ସାରଳା ଦାସ ଦେବୀଙ୍କୁ ବ୍ରହ୍ମାବୋଲି ପ୍ରକାଶ କରି କୁହନ୍ତି–

ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ ହରିବ୍ରହ୍ମା ।

ଚାରିବେଦ ମଧ୍ୟରେ ସୁଭଦ୍ରାଙ୍କୁ ଭକ୍ତମାନେ କେତେବେଳେ ଋଗ୍‌ବେଦ ରୂପେ ଗ୍ରହଣ କରିଛନ୍ତି ତ ପୁଣି କେତେବେଳେ ଯର୍ଜୁବେଦ ଭାବରେ ଗ୍ରହଣ କରିଛନ୍ତି । ବେଦର ମାହାତ୍ମ୍ୟ ଜାଣିବାକୁ ହେଲେ ଆମର ପ୍ରତ୍ୟେକ ଦିନର ଜୀବନଚର୍ଯ୍ୟାରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଜାଣିବା ଅତ୍ୟନ୍ତ ପ୍ରୟୋଜନୀୟ । ଶ୍ରୀଜଗନ୍ନାଥ ଅବ୍ୟକ୍ତ ଜଗତରୁ ଜୀବ ମଧ୍ୟରେ ମନ୍ତ୍ରପ୍ରକାଶ କରୁଥିବାରୁ ସେ ହେଉଛନ୍ତି ଋଗ୍‌ବେଦ । ଏହି ମନ୍ତ୍ରକୁ ଶକ୍ତିମୟୀ ସୁଭଦ୍ରା ଅନୁଭବ ସ୍ତରରେ ଯୋଗ କରୁଥିବାରୁ ସେ ହେଉଛନ୍ତି ଯର୍ଜୁବେଦ । ଏହି ସମ୍ବେଦନ କର୍ମେନ୍ଦ୍ରୀୟ ରୂପୀ ବଳରାମ ସାମ୍ୟଧାରଣ କରନ୍ତି ବୋଲି ସେ ହେଉଛନ୍ତି ସାମବେଦ ଓ ସୁଦର୍ଶନଙ୍କୁ ଅଥର୍ବ ବେଦଭାବରେ ବିବେଚନା କରାଯାଏ ।

ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବର୍ଣ୍ଣ ଯଥାକ୍ରମେ କୃଷ୍ଣ, ଶ୍ୱେତ ଓ ପୀତ । ଏହି ବର୍ଣ୍ଣସବୁ ବିଭିନ୍ନ ବର୍ଣ୍ଣର ଲୋକମାନଙ୍କ ସୂଚନା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଭ୍ରାତୃଭାବର ସମ୍ପର୍କ ସୃଷ୍ଟି କରିଥାଏ । ପିଣ୍ଡ ମଧ୍ୟରେ



ଆତ୍ମତତ୍ତ୍ୱ, ପ୍ରକୃତିତତ୍ତ୍ୱ ଓ ପୁରୁଷତତ୍ତ୍ୱ ଇତ୍ୟାଦି ନିହିତ ଅଛି । ଯୋଗତତ୍ତ୍ୱ ଏମାନଙ୍କ ମଧ୍ୟରେ ପ୍ରଧାନ । ଏହାକୁ ବିଶେଷ କରି ଆଧାର, ଲିଙ୍ଗ, ନାଭି, ହୃଦୟ ଓ କଣ୍ଠ ଇତ୍ୟାଦିକୁ ପିଣ୍ଡର ଅଂଶ ସ୍ୱରୂପ ବିଚାର କରିଛନ୍ତି ।

ସନାତନ ଧର୍ମର ମୁଖ୍ୟ ତ୍ରିଧାରା ହେଉଛନ୍ତି ଶାକ୍ତ, ବୈଷ୍ଣବ ଓ ଶୈବ । ଶାକ୍ତମାନଙ୍କର ଉପାସିତା ଦୁର୍ଗା ବା ଯୋଗମାୟା ହେଉଛନ୍ତି ଦେବୀ ସୁଭଦ୍ରା । ସ୍କନ୍ଦ ପୁରାଣରେ ସୁଭଦ୍ରାଙ୍କର ଦୁଇଗୋଟି ହସ୍ତର କଳ୍ପନା କରାଯାଇଛି । ଦେବୀ ସୁଭଦ୍ରା ଗୋଟିଏ ହସ୍ତରେ ପଦ୍ମ ଓ ଅନ୍ୟହସ୍ତରେ ଅଭୟ ଦାନ କରୁଥିବାର ବର୍ଣ୍ଣନା ଅଛି । ନୀଳମାଧବ ବା ମାଧବ ତତ୍ତ୍ୱରେ ଜଗନ୍ନାଥ ଧର୍ମର ଆଦିମତା ବା ପ୍ରାଚୀନତା ନିହିତ ଥିବା କୁହାଯାଇଥାଏ । ନୀଳ + ମା + ଧବ । ଏହି ମା'ଶବ୍ଦର ପ୍ରତୀକ ମା' ସୁଭଦ୍ରା ହୋଇଥିବା କେତେକ ମତବ୍ୟକ୍ତ କରନ୍ତି ।

ବୌଦ୍ଧମତରେ ତ୍ରିମୂର୍ତ୍ତି ହେଉଛନ୍ତି ବୌଦ୍ଧ ତ୍ରିରତ୍ନ । ବୁଦ୍ଧ, ଧର୍ମ ଓ ସଂଘ । ବୁଦ୍ଧର ଅର୍ଥ ପୁରୁଷ, ଧର୍ମର ଅର୍ଥ ପ୍ରକୃତି ଓ ସଂଘ ଉଭୟ ପୁରୁଷ ଓ ପ୍ରକୃତିର ମିଳନସ୍ଥଳ । ଅନେକଙ୍କ ମତରେ ଏହି ତ୍ରିରତ୍ନ ହେଉଛନ୍ତି ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା ଓ ଶ୍ରୀବଳଭଦ୍ର । ଏହାବ୍ୟତୀତ ଏହି ମୂର୍ତ୍ତିତ୍ରୟ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦର ପ୍ରତୀକ । ସତ୍‌ରୂପୀ ଜଗନ୍ନାଥ ଜଡ ହୋଇଥିବା ସ୍ଥଳେ, ଚିତ୍‌ରୂପୀ ବଳଭଦ୍ର କ୍ରିୟାଶୀଳ, ଆନନ୍ଦସ୍ୱରୂପା ଦେବୀ ସୁଭଦ୍ରାହିଁ ସତ୍‌ରୂପୀ ଶ୍ରୀଜଗନ୍ନାଥଙ୍କ ପ୍ରାଣଧାର । ଏହାବ୍ୟତୀତ ଏହି ତିନିମୂର୍ତ୍ତି ଓଁକାର ରୂପିଣୀ ହ୍ଲାଂ, ଶ୍ଲାଂ,କ୍ଲାଂ । ଈଶ୍ୱରୀୟ ଶକ୍ତିତତ୍ତ୍ୱରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ସମନ୍ୱିତ ପ୍ରକୃତି ସ୍ୱରୂପା ଭାବରେ ସୁଭଦ୍ରା ମଧ୍ୟ ପ୍ରତିଷ୍ଠିତା । ସୃଷ୍ଟି ପାଳନ ଓ ସଂହାର ତତ୍ତ୍ୱରେ ବିଚାର କରାଗଲେ ସେ ସାବିତ୍ରୀରୂପରେ ସୃଷ୍ଟିକର୍ତ୍ତ୍ରୀ ଓ କାତ୍ୟାୟନୀ ଭାବରେ ସଂହାର କର୍ତ୍ତ୍ରୀ ଏବଂ ମହାଲକ୍ଷ୍ମୀ ଭାବରେ ପାଳନକର୍ତ୍ତ୍ରୀ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଅଙ୍ଗରେ ସେ ଜଡିତଥିବାର ପ୍ରମାଣ ସ୍ୱରୂପ କୁହାଯାଇଛି –

ବକ୍ଷସ୍ଥଳେ ସ୍ଥିତୋ ବିଷ୍ଣୋ ଶମ୍ଭୋ ଅର୍ଦ୍ଧାଙ୍ଗ ଶୋଭିତା
ପଦ୍ମଯୋନି ମୁଖାଦ୍‌ବାସ୍ଥାଂ ତାଂ ନମାମି ହରିପ୍ରିୟାମ୍ ।

ସେ ଚଣ୍ଡୀରେ ଶକ୍ତି, ଜ୍ଞାନ, ବିଦ୍ୟା ଓ ଲକ୍ଷ୍ମୀ ଇତ୍ୟାଦି ସର୍ବଗୁଣର ଅଧୀଶ୍ୱରୀ ହେଲେ ହେଁ ନାରାୟଣୀ ଭାବରେ ସମସ୍ତେ ତାଙ୍କୁ ନମସ୍କାର କରିଥାନ୍ତି । ମହାଭାରତ ସମୟରୁ ଦେବୀ ସୁଭଦ୍ରା ହିଁ ଏକାଂନସାରୂପେ ପରିଗଣିତ ହୋଇଥିଲେ । ମହାଭାରତର ବିରାଟ ପର୍ବରେ ତାଙ୍କୁ ଯଶୋଦା ଗର୍ଭ ସମ୍ଭୁତ ବିଜୁଳି କନ୍ୟାରୂପେ ପରିକଳ୍ପନା କରାଯାଇଛି । ବିଷ୍ଣୁ ପୁରାଣରେ ସେ ନିଦ୍ରାଦେବୀରୂପେ ପରିଚିତା । ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରତିଷ୍ଠିତ ହେବାପରେ ସେ ଶାକ୍ତ ମତରେ ଦେବୀଭାବରେ ପରିଚିତ ନହୋଇ ବୈଷ୍ଣବ ମତାନୁସାରେ ନୀରାଜିତ ହୋଇ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଭଗ୍ନୀରୂପେ ସର୍ବସାଧାରଣରେ ଗୃହୀତ ହୋଇଛନ୍ତି । ବରାହମିହିର ତାଙ୍କ ବୃହତ୍ ସଂହିତାରେ ଏକାଂନସା ଓ ସୁଭଦ୍ରାଙ୍କ ମଧ୍ୟରେ ଅଭେଦ କଳ୍ପନା କରି କହିଛନ୍ତି ।

ଏଣୁ ଦେବୀ ସୁଭଦ୍ରା ଉଭୟ ଶିଳାବ୍ରହ୍ମ ଓ ଦାରୁବ୍ରହ୍ମ ରୂପରେ ଶକ୍ତିଭାବରେ ନୀରାଜିତା ହୋଇ ଆସୁଛନ୍ତି । ରତ୍ନବେଦୀରେ ସୁଦର୍ଶନ ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ଶୋଭା ପାଉଥିବା ବେଳେ ରଥଯାତ୍ରା ସମୟରେ ସେ ଦେବୀ ସୁଭଦ୍ରାଙ୍କ ସହିତ ରୁନ୍ଧା (ବନ୍ଧା) ହୋଇଥାନ୍ତି । ଲିଙ୍ଗସ୍ୱରୂପ ସୁଦର୍ଶନ ସୁଭଦ୍ରାଙ୍କ ସହ ରୁନ୍ଧା ହେଉଥିବାରୁ ଦେବୀ ଶକ୍ତିସ୍ୱରୂପା ବୋଲି ପ୍ରମାଣିତ ହୁଏ ।

ଶ୍ରୀଜଗନ୍ନାଥ ବିଭିନ୍ନ ମତାବଲମ୍ବୀଙ୍କ ଦ୍ୱାରା ବିବିଧରୂପେ ନିରାଜିତ ହେବାପରି ଦେବୀ ସୁଭଦ୍ରା ମଧ୍ୟ ହୋଇଛନ୍ତି ବୈଚିତ୍ର୍ୟମୟୀ । ସେ ଜଗତ (ବଳଭଦ୍ର) ଓ ଜଗନ୍ନାଥଙ୍କ ମଧ୍ୟରେ ଅବସ୍ଥାପିତ ହୋଇ କର ପଦାଦି ରହିତ । ବିଶ୍ୱର ସବୁ ନରନାରୀ, ସ୍ତ୍ରୀ ଓ ପୁରୁଷ ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କର ଅଂଶ ବିଶେଷ ଏଥିରେ ସନ୍ଦେହ ନାହିଁ ।

ଅଷ୍ଟଶମ୍ଭୁ ବାଳିକା ଉଚ୍ଚ ବିଦ୍ୟାଳୟ
ହାଜିପୁର, ବିରିଡି

◆◆◆



# ଶ୍ରୀଜୀଉଙ୍କ ପହଣ୍ଡିବିଜେ - ଏକ ଅନୁଶୀଳନ

ଶ୍ୟାମ ପ୍ରକାଶ ସେନାପତି

ଶ୍ରୀଜୀଉଙ୍କ ପହଣ୍ଡି ଏକ ବ୍ୟାପକ ଓ ପ୍ରାଚୀନ ଶବ୍ଦ । ପହଣ୍ଡି ଅର୍ଥ ଚାଲିବା । ଶ୍ରୀବିଗ୍ରହମାନଙ୍କର ପହଣ୍ଡିରୂପକ ଗମନ ହିଁ ପହଣ୍ଡି ବିଜେ । ଏହା ସ୍ୱୟଂ ଜଗନ୍ନାଥ ତତ୍ତ୍ୱକୁ ଉଦ୍‌ଘାଟନ କରେ । ଏହି ପହଣ୍ଡି ଯାତ୍ରା ଯେତିକି କୌତୁହଳପ୍ରଦ ସେତିକି ବିସ୍ମୟକର ମଧ୍ୟ । ଚତୁର୍ଦ୍ଧାମୂର୍ତ୍ତିଙ୍କ ପହଣ୍ଡି ଯେପରି ଦର୍ଶନୀୟ ସେହିପରି ଆଧ୍ୟାତ୍ମିକତା ଦୃଷ୍ଟିରୁ ତତ୍ତ୍ୱପୂର୍ଣ୍ଣ ମନେହୁଏ । ଏହି ପହଣ୍ଡିର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଭକ୍ତ ମନରେ ଏହି ଦୃଶ୍ୟ ଅପୂର୍ବ ଭାବ ସଂଚାର କରେ । ପହଣ୍ଡି ସାଧାରଣତଃ ଦୁଇ ପ୍ରକାର- ଗୋଟି ପହଣ୍ଡି ଓ ଧାଡ଼ି ପହଣ୍ଡି । ଏକ ବିଗ୍ରହଙ୍କୁ ସ୍ୱ ଆସ୍ଥାନରୁ ଉଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇବା ପରେ ଅନ୍ୟ ଏକ ବିଗ୍ରହ ଆସ୍ଥାନ ଛାଡ଼ି ବିଜେ ହେଲେ ଏହାକୁ 'ଗୋଟି ପହଣ୍ଡି' ଏବଂ ଏକାଦିକ୍ରମେ କ୍ରମାନ୍ୱୟରେ ସମସ୍ତ ବିଗ୍ରହଙ୍କୁ ବିଜେ କରାଇଲେ ତାହା 'ଧାଡ଼ିପହଣ୍ଡି' ନାମରେ ଅଭିହିତ ହୋଇଥାଏ । ବିଶେଷତଃ ଶ୍ରୀଗୁଣ୍ଡିଚା ବା ରଥଯାତ୍ରାରେ ଶ୍ରୀବିଗ୍ରହମାନଙ୍କର ଅନୁଷ୍ଠିତ ପହଣ୍ଡିବିଜେକୁ 'ମହାପହଣ୍ଡି' ବୋଲି କୁହାଯାଇଥାଏ । ଶ୍ରୀମନ୍ଦିରରେ ପାଳିତ ହେଉଥିବା ଶ୍ରୀଜୀଉଙ୍କର ଦ୍ୱାଦଶଯାତ୍ରା ମଧ୍ୟରେ ସ୍ନାନ ଓ ଗୁଣ୍ଡିଚା ଯାତ୍ରା ହେଉଛି ଶ୍ରେଷ୍ଠ ଯାତ୍ରା । ଏହି ଦୁଇ ଯାତ୍ରାରେ ହିଁ ଶ୍ରୀଜୀଉମାନେ ପହଣ୍ଡି ହୋଇ ଆସନ୍ତି ଓ ଏହି ଦୁଇ ଯାତ୍ରା ସହିତ କେବଳ ପହଣ୍ଡି ସଂପୃକ୍ତ । ଏହି ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ ପହଣ୍ଡି ବିଜେ ଯେପରି ମନୋମୁଗ୍ଧକର, ସେହିପରି ଭକ୍ତି ଉଦ୍ରେକକାରୀ ମଧ୍ୟ । ଶ୍ରୀମଦ୍ ଭାଗବତର ଅଷ୍ଟବିଂଶ ଅଧ୍ୟାୟରେ ଲେଖାଅଛି-

ଦାରୁ ପାଷାଣ ଧାତୁମୟୀ, ଲେପ ଲେଖନ ମଣିମୟୀ
ବାଲୁକାମୟୀ, ମନୋମୟୀ ଏମନ୍ତ ପ୍ରତିମା ଭିଆଇ ।



ଅର୍ଥାତ୍, ଭାଗବତର ବାକ୍ୟ ଅନୁଯାୟୀ ପ୍ରତିମା ଆଠ ପ୍ରକାରର । ଯଥା- ପ୍ରସ୍ତରମୟୀ, ଦାରୁମୟୀ, ଧାତୁମୟୀ, ଚନ୍ଦନ ପ୍ରକୃତି ଲେପମୟୀ, ଚିତ୍ରସ୍ୱରୂପା, ବାଲୁକାମୟୀ, ମନୋମୟୀ ଓ ମଣିମୟୀ । ଏଥିମଧ୍ୟରୁ ଦାରୁ ପ୍ରତିମା ଶ୍ରେଷ୍ଠ । ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଅଚଳ ମହାମେରୁ, ସେ ଦାରୁବ୍ରହ୍ମ ସ୍ୱରୂପ । ଦାରୁ ବିଗ୍ରହମାନେ ବିରାଟକାୟ ହୋଇଥିବାରୁ ଅନ୍ୟ ପ୍ରତିମାମାନଙ୍କ ପରି ଟେକିକରି ନେବା ସମ୍ଭବ ନୁହେଁ । ତେଣୁ ସେମାନଙ୍କ ପାଇଁ ଏହି ପହଣ୍ଡିର ବ୍ୟବସ୍ଥା । ଶିଶୁଠାରୁ ଆରମ୍ଭ କରି କିଶୋର-କିଶୋରୀ, ବୃଦ୍ଧ-ବୃଦ୍ଧା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରିବା ଭଳି ଦୃଶ୍ୟ ଏହି ପହଣ୍ଡି ବିଜେରେ ସଂଯୁକ୍ତ ହୋଇଛି । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏହି ପହଣ୍ଡିବିଜେ ସମସ୍ତଙ୍କର ଚିତ୍ତକୁ ଉଦ୍‌ବେଳିତ କରିପାରେ ଓ ମୋହିତ କରିପାରେ । ଭକ୍ତକବି ସାଲବେଗଙ୍କ ମତରେ ଏହା ହେଉଛି- ଅତି ମୋହନ ବେଶ । ଅତିମୋହନ ବେଶର ଦର୍ଶନରେ ମଣିଷ ପାପବନ୍ଧନରୁ ମୁକ୍ତ ହୋଇ ମହାଜାଗତିକ ଚେତନା ଆଡ଼କୁ ଆଗେଇଯାଏ । ଏହିବେଶ ଦ୍ୱାରା ତିନିପୁର ବଶୀଭୂତ ହୋଇଛି ବୋଲି କଥିତ





ଅଛି । ଏହି ବେଶକୁ କେହି କେହି ମଧ୍ୟ ତ୍ରୈଲୋକ୍ୟ ସୁଖଦାୟକ, ତ୍ରୈଲୋକ୍ୟ ମୋହନରୂପ ଓ ତ୍ରିପୁରା ମୋହନରୂପ ବୋଲି କହିଥାନ୍ତି । ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ରସର ବିଳାସ ପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ସଂପୂର୍ଣ୍ଣ ଭାବେ ବିକଶିତ ହୁଏ । ଐଶ୍ୱର୍ଯ୍ୟ ଶକ୍ତିକୁ ଅତିକ୍ରମ କରି ଜଗତର ନାଥ ଜଗନ୍ନାଥ ବ୍ରଜଦାଣ୍ଡରେ ପହଣ୍ଡିବିଜେ କରି ଗୋପୀଜନବଲ୍ଲଭ ରୂପରେ କୋଟି ନୟନ ସାର୍ଥକ କରି ବିପୁଳ ଉଲ୍ଲାସରେ ହଲିଦୋହଲି ନବଘନ ସୁନ୍ଦର ତ୍ରିଭୁବନ ଠାଣିରେ ଅପଲକ ନେତ୍ରରେ ଅଗଣିତ ଭକ୍ତଜନଙ୍କର ହୃଦୟକୁ ଆକର୍ଷଣ କରିଥାନ୍ତି । ପହଣ୍ଡିର ପ୍ରଥମ ପର୍ବ ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀବିଗ୍ରହମାନେ ରତ୍ନସିଂହାସନ ଛାଡ଼ି ଦିଅନ୍ତି । ଏହାକୁ କୁହାଯାଏ 'ଚକାଛାଡ଼' । ଏଠି ଜାଣି ରଖିବା କଥା ଯେ, ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀଜୀଉମାନେ ଚକାଛାଡ଼ କଲେ ଆଉ ରତ୍ନସିଂହାସନକୁ ଫେରନ୍ତି ନାହିଁ । ସ୍ନାନପୂର୍ଣ୍ଣମୀ ଦିନ ରତ୍ନସିଂହାସନରୁ ସ୍ନାନମଣ୍ଡପ-ଅଣସର ଗୃହ-ରଥଯାତ୍ରାଦିନ ଅଣସରଗୃହରୁ ରଥ ଉପରକୁ-ରଥରୁ ଗୁଣ୍ଡିଚା ମଣ୍ଡପକୁ-ବାହୁଡ଼ା ଯାତ୍ରା ଦିନ ରଥତ୍ରୟ ଶ୍ରୀମନ୍ଦିର ଦୁଆରେ ପହଞ୍ଚିବା ପରେ ବାହୁଡ଼ା ପରଦିନ ସୁନାବେଶ, ଅଧରପଣା ସରିବା ପରେ ତୃତୀୟ ଦିନ କିମ୍ବା ଚତୁର୍ଥ ଦିନ ରତ୍ନସିଂହାସନକୁ ଫେରନ୍ତି । ସେହି ଦିନକୁ 'ନୀଳାଦ୍ରିବିଜେ' କୁହାଯାଏ । ଏହା ବ୍ୟତୀତ ସ୍ନାନପୂର୍ଣ୍ଣମୀ ଦିନ ସିଂହାସନ ଉପରୁ ଗର୍ଭ ଗୃହର ଚଟାଣ ପର୍ଯ୍ୟନ୍ତ ଚାରମାଳ ବନ୍ଧା ଯାଇଥାଏ । ଏହି ଚାରମାଳକୁ କୋଠସୁଆଁସିଆ ନାମକ ସେବକ ନିର୍ମାଣ କରିଥାନ୍ତି । ସେହି ଦିନଠାରୁ ସେହି ଚାରମାଳ ସେଇଠି ସେହିପରି ବନ୍ଧା ହୋଇ ରହିଥାଏ । ନୀଳାଦ୍ରି ବିଜେ ଦିନ ସେହି ଚାରମାଳ ଉପରେ ବିଗ୍ରହମାନେ ରତ୍ନସିଂହାସନ ଉପରକୁ ବିଜେ କଲା ପରେ ଚାରମାଳ ଖୋଲାଯାଇଥାଏ ।

**ପହଣ୍ଡି ବିଜେର କ୍ରମ :** ପହଣ୍ଡିବିଜେ ସମୟରେ ଏକ ନିର୍ଦ୍ଦିଷ୍ଟ କ୍ରମ ଅନୁସୃତ ହୋଇଥାଏ । ଏହି ପ୍ରସଙ୍ଗରେ 'ନୀଳାଦ୍ରି ମହୋଦୟ'ରେ ଉଲ୍ଲେଖ ଅଛି –

ସୁଦର୍ଶନଂ ପୁରସ୍କୃତ୍ୟ ବଳଭଦ୍ରଂ ତତଃ ପରମ୍
ସୁଭଦ୍ରାଞ୍ଚ ତତୋନିତ୍ୱା ଜଗଦୀଶଂ ସୁରେଶ୍ୱରମ୍ ।

ଅର୍ଥାତ୍, ପହଣ୍ଡି ସମୟରେ ପ୍ରଥମେ ଶ୍ରୀସୁଦର୍ଶନ ବିଜେ ହୁଅନ୍ତି । ସେ ସାତ ପାହାଚ ଦ୍ୱାର ଅତିକ୍ରମ କରିବା ପରେ ଶ୍ରୀବଳଭଦ୍ରଙ୍କର ରୁନ୍ଧା (ବନ୍ଧା) ଖୋଲାଯାଏ । ପ୍ରଭୁ ଶ୍ରୀବଳଭଦ୍ର ସାତପାହାଚ ଦ୍ୱାର ପାରି ହେବା ପରେ ଶକ୍ତିରୂପା ଦେବୀ ସୁଭଦ୍ରାଙ୍କର ସାତ ପାହାଚ ଅତିକ୍ରମ ପରେ ପରେ ସର୍ବଶେଷରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ରୁନ୍ଧା ଖୋଲାଯାଏ । ସାତ ପାହାଚଠାରେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ମସ୍ତକରେ ଟାହିଆ ଲଗାଯାଇଥାଏ । ଏହି କ୍ରମରେ ପହଣ୍ଡି ବିଜେ ଉତ୍ସବ ଅନୁଷ୍ଠିତ ହୋଇଥାଏ । ପ୍ରଭୁ ଶ୍ରୀସୁଦର୍ଶନ ଓ ଦେବୀ ସୁଭଦ୍ରାଙ୍କ ପହଣ୍ଡି ଖୁବ୍ ଅଳ୍ପ ସମୟ ଏବଂ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ପହଣ୍ଡି ଦୀର୍ଘ ସମୟ ଲାଗିଥାଏ । ଏହି ଦିବ୍ୟ ପହଣ୍ଡିର ଶୁଭାରମ୍ଭ ପୂର୍ବରୁ ଚୂନରା ସେବକ ପରିଷ୍କୃତ ମାର୍ଗକୁ ଚୂନପାଣି ଛିଞ୍ଚି ଶୁଦ୍ଧପୂତ କରନ୍ତି । ପହଣ୍ଡିର ଯଥେଷ୍ଟ ପୂର୍ବରୁ ଶ୍ରୀଅଙ୍ଗକୁ ସୁରକ୍ଷିତ ରଖିବା ପାଇଁ ସେନାପଟା ଓ ବାହୁଟି ଆଦି ଲଗାଯାଇଥାଏ । ଶୁଭ ଶଙ୍ଖଧ୍ୱନି ଓ ବିଜେ କାହାଳୀ ବାଜିବା ପରେ ପହଣ୍ଡି ବିଜେର ଉପକ୍ରମ ଆରମ୍ଭ ହୋଇଥାଏ । ଦଇତା ସେବକମାନେ ପହଣ୍ଡିବିଜେ କାର୍ଯ୍ୟରେ ମୁଖ୍ୟଭୂମିକା ଗ୍ରହଣ କରିଥାନ୍ତି । ଶ୍ରୀଜୀଉଙ୍କୁ ପହଣ୍ଡି କରାଇବା ପାଇଁ ଅଂଶଗ୍ରହଣ କରିଥିବା ଅନ୍ୟାନ୍ୟ ସେବକମାନଙ୍କ ମଧ୍ୟରେ ସୁଆର, ମହାସୁଆର, ପଣ୍ଡା, ପ୍ରତିହାରୀ, ଭିତରସେବକ, ପଶୁପାଳକ ଆଦି ଅନ୍ୟତମ । ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଦୁଇଭୁଜ ପାଖରେ ଦଇତାମାନେ, ପଶ୍ଚାତ୍‌ଭାଗରେ ସୁଆର ଓ ସମ୍ମୁଖ ଭାଗରେ ପୂଜାପଣ୍ଡା ଓ ପୁଷ୍ପାଳକ ଆଦି ରହି ପହଣ୍ଡି ସେବା ସଂପନ୍ନ କରୁଥିବାର ଦେଖାଯାଏ । ରାଜକୀୟ ଆଡ଼ମ୍ବରରେ ମହାପ୍ରଭୁଙ୍କୁ ମଣିମା ମଣିମା ଡାକ ସହିତ ଆଲଟ, ଚାମର, ଛତି, ତ୍ରାସ, ଘଣ୍ଟ, ମର୍ଦ୍ଦଳ ଓ ହରିବୋଲ ହୁଳହୁଳି ଧ୍ୱନି ଶୋଭାଯାତ୍ରାକୁ ଜୀବନ୍ତ କରିଦିଏ । ସମବେତ ଘଣ୍ଟନାଦ ଓ ଘଣ୍ଟୁଆମାନଙ୍କର ସମବେତ ଅଙ୍ଗଭଙ୍ଗୀ ଉପସ୍ଥିତ ଲକ୍ଷ ଲକ୍ଷ ଦର୍ଶକଙ୍କୁ ବିମୋହିତ କରିଥାଏ । ପ୍ରବଳ ଜନସମୁଦ୍ର ଅପଲକ ନେତ୍ରରେ ଏହି ଦୃଶ୍ୟ ଦେଖିବା ପାଇଁ ସିନ୍ଧୁଲହରୀ ଭଳି ମାଡ଼ି



ଆସୁଥିବାର ଦୃଶ୍ୟ ଅତ୍ୟନ୍ତ ମନୋରମ ଓ ହୃଦୟସ୍ପର୍ଶୀ । ଏହି ସମୟରେ ଆମ୍ବ, କଦଳୀ, ସପୁରୀ, ପଣସ ଆଦି ସୁମିଷ୍ଟ ଫଳ ଓ ବିଭିନ୍ନ ପ୍ରକାର ମିଷ୍ଟାନ୍ନ ଦ୍ରବ୍ୟ ପନ୍ତିଭୋଗ ଭାବରେ ଶ୍ରୀଜୀଉମାନଙ୍କ ପହଣ୍ଡିମାର୍ଗରେ ଅର୍ପଣ କରାଯାଏ । ବାହୁଡ଼ା ଯାତ୍ରାର ନୀଳାଦ୍ରିବିଜେ ଦିନ ଠାକୁରମାନେ ରଥରୁ ଶ୍ରୀମନ୍ଦିରକୁ ଯିବା ବେଳେ କେବଳ ବର୍ଷକରେ ଏଇ ଦିନ ରସଗୋଲା ଭୋଗ ହେବାର ଦେଖାଯାଏ ।

ରତ୍ନ ସିଂହାସନସ୍ଥ ବିଗ୍ରହମାନଙ୍କର ପହଣ୍ଡି ବିଜେ ବର୍ଷ ମଧ୍ୟରେ ଛଅ ଥର ହୁଏ । ସ୍ନାନପୂର୍ଣ୍ଣିମା (ଜ୍ୟେଷ୍ଠ ପୂର୍ଣ୍ଣିମା ତିଥି) ଦିନ ପୂର୍ବାହ୍ନରେ ରତ୍ନସିଂହାସନରୁ ସ୍ନାନବେଦୀକୁ ଧାଡ଼ି ପହଣ୍ଡିରେ, ସ୍ନାନ ପୂର୍ଣ୍ଣିମା ଦିନ ରାତ୍ରରେ ସ୍ନାନବେଦୀରୁ ରତ୍ନସିଂହାସନ ନିକଟ ଅଣସର ପିଣ୍ଡିକୁ ଗୋଟି ପହଣ୍ଡିରେ, ଶ୍ରୀଗୁଣ୍ଡିଚା ବା ରଥଯାତ୍ରା (ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା) ଦିନ ପୂର୍ବାହ୍ନରେ ଶ୍ରୀମନ୍ଦିର ଗର୍ଭଗୃହସ୍ଥ ଅଣସର ପିଣ୍ଡିରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ, ରଥଯାତ୍ରା ପରଦିନ ସଂଧ୍ୟାରେ ରଥ ଉପରୁ ଗୁଣ୍ଡିଚା ମନ୍ଦିର ସିଂହାସନକୁ ଗୋଟି ପହଣ୍ଡିରେ, ବାହୁଡ଼ାଯାତ୍ରା ଅର୍ଥାତ୍ ନବମୀ ସଂଧ୍ୟା ଦର୍ଶନ ପରଦିନ ପୂର୍ବାହ୍ନରେ ଗୁଣ୍ଡିଚା ସିଂହାସନରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ ଏବଂ ସୁନାବେଶ, ଅଧରପଣା ପରଦିନ ଅର୍ଥାତ୍ ନୀଳାଦ୍ରି ବିଜେ ଦିନ ସଂଧ୍ୟାରେ ରଥରୁ ଶ୍ରୀମନ୍ଦିର ରତ୍ନସିଂହାସନକୁ ଗୋଟି ପହଣ୍ଡିରେ ବିଜେ ହୁଅନ୍ତି । ସ୍ନାନ ପୂର୍ଣ୍ଣମାଠାରୁ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଶ୍ରୀଜୀଉମାନେ ଦଇତାସେବକ (ବିଶ୍ୱାବସୁ ଶବର ବଂଶଜ) ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହୁଥିବାରୁ ସମସ୍ତ ପହଣ୍ଡି ବିଜେ ମୁଖ୍ୟତଃ ସେମାନଙ୍କ ଦ୍ୱାରା ନିର୍ବାହ ହୋଇଥାଏ ।

**ଟାହିଆ :** ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମସ୍ତକରେ ଧାରଣ କରିଥିବା ଟାହିଆର ଗଠନରେ ଉନ୍ନତ କଳାତ୍ମକ ରୁଚିବୋଧର ପରିଚୟ ମିଳିଥାଏ । ଏହି ଟାହିଆ ଭୂଷଣରେ ରହି ମହାପ୍ରଭୁ କୋଟି କୋଟି ଭାବପ୍ରବଣ ହୃଦୟକୁ କାଳକାଳ ଧରି ଆଲୋଡ଼ିତ କରି ଆସିଛନ୍ତି । ମହାପ୍ରଭୁ ଢଳି ଢଳି ଚାଲିବା ସମୟରେ ଏହି ଟାହିଆ ସତେଯେପରି ତାଙ୍କ ସହିତ ଝୁଲି ଝୁଲି ତାଳ ଦେଉଥାଏ । ଟାହିଆ ହେଉଛି ବାଉଁଶ ପାତିଆ ଦ୍ୱାରା ନିର୍ମିତ ଏକ ଛାଞ୍ଚ । ଏଥିରେ ନାନା ପ୍ରକାର ସୁବାସିତ ଫୁଲ, ତୁଳସୀ, ଦୁବ, ବରକୋଳିପତ୍ର, ସୋଲ ନିର୍ମିତ ଶ୍ୱେତ କଦମ୍ବ ଓ ପତ୍ର ଏବଂ ବିଭିନ୍ନ ପ୍ରକାରର ଜରିଜମ୍ଭୁରା ଆଦି ଖଞ୍ଜା ଯାଇଥାଏ । ଏହି ସୁନ୍ଦର ଟାହିଆକୁ ପ୍ରସ୍ତୁତ କରିବା ପାଇଁ ପୁରୀର ବାଲିସାହିରେ ଅବସ୍ଥିତ ରାଘବଦାସ ମଠ ଦାୟିତ୍ୱ ନେଇଥାନ୍ତି । ଏହା ସେହି ମଠର ଏକ ପରମ୍ପରା । ପହଣ୍ଡିକାଳୀନ ଏହି ରୂପକୁ ତ୍ରୈଲୋକ୍ୟ ସୁଖଦାୟକ ବୋଲି 'ନୀଳାଦ୍ରି ମହୋଦୟ'ରେ ଲେଖାଅଛି । ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ମସ୍ତକ ଉପରେ ଶୋଭା ପାଉଥିବା ଏହି ଦୋଳାୟମାନ ଟାହିଆ ଯେଉଁ ମହାନ୍ ସତ୍ୟ ଘୋଷଣା କରେ ତାହା ଓଡ଼ିଆ କବିଙ୍କ ଲେଖନୀରେ ଜୀବନ୍ତ ହୋଇଛି । ଯଥା –

ଯାତ୍ରା ବେଳେ ଟାହିଆ ଭାଷଇ<br>
ବ୍ରହ୍ମ ସଂସାରେ ସତ୍ୟ ଅଟଇ ।

ଅର୍ଥାତ୍ – ବ୍ରହ୍ମ ସତ୍ୟ ଓ ଜଗତ୍ ମିଥ୍ୟା, ଏହି ମହାନ୍‌ବାଣୀ ଟାହିଆର ଦୋଳନ ଫଳରେ ପ୍ରଚାରିତ ହୋଇଥାଏ । ଏହି ଟାହିଆ ସାତ ପାହାଚଠାରେ କେବଳ ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ମସ୍ତକରେ ଧାରଣ କରିଥାନ୍ତି ।

**ପହଣ୍ଡିର ମାର୍ଗ :** ସ୍ନାନ ପୂର୍ଣ୍ଣିମା ଦିନ ଶ୍ରୀଜୀଉମାନଙ୍କର ପ୍ରଥମ ପହଣ୍ଡି ଆରମ୍ଭ ହୁଏ । ରତ୍ନସିଂହାସନ ଉପରୁ ପୂର୍ବାଭିମୁଖୀ ହୋଇ ସିଧା ଗତି କରନ୍ତି ଜଗମୋହନସ୍ଥ ଗରୁଡ଼ସ୍ତମ୍ଭ ନିକଟକୁ । ଅଣସର ଗୃହ ଏବଂ ଜଗମୋହନ ମଧ୍ୟରେ ପଡ଼େ ଏକ ଗୁରୁତ୍ୱପୂର୍ଣ୍ଣ ଦ୍ୱାର, ଯାହାର ନାମ ଜୟ-ବିଜୟ ଦ୍ୱାର । ଜୟ ଓ ବିଜୟ ଏମାନେ ଦୁଇଭାଇ ଏବଂ ବିଷ୍ଣୁଭକ୍ତ । ସେଥିସକାଶେ ଏମାନେ ଶ୍ରୀମନ୍ଦିର ପ୍ରହରୀ ହିସାବରେ ଦୁଇ ପାର୍ଶ୍ୱରେ ରହିଛନ୍ତି । ଏହି ଦ୍ୱାର ନିକଟରେ ନୀତି ସଂପନ୍ନ ହେବା ପରେ ଗରୁଡ଼ ସ୍ତମ୍ଭ ସମ୍ମୁଖରେ ପହଞ୍ଚି ଉତ୍ତରାଭିମୁଖୀ ହୋଇ ସାତ ପାହାଚ ଦ୍ୱାରରୁ ପାଟଅଗଣା ମଧ୍ୟକୁ ଗତି କରନ୍ତି । ଏହି ସାତପାହାଚ ନିକଟରେ



ଟାହିଆ ଲାଗି ଓ ବନ୍ଦାପନା ହୁଏ । ପାଟଅଗଣାରେ ମହାଲକ୍ଷ୍ମୀଙ୍କୁ ସାମ୍ନାସାମ୍ନି ହୋଇଗଲେ ପୂର୍ବାଭିମୁଖୀ ହୋଇ ସିଧା ଆନନ୍ଦ ବଜାରକୁ ପ୍ରବେଶ କରି ଶେଷରେ ଉତ୍ତରାଭିମୁଖୀ ହୋଇ ସ୍ନାନମଣ୍ଡପ ଉପରକୁ ଉଠନ୍ତି ଏବଂ ପୂର୍ବାଭିମୁଖୀ ହୋଇ ବସନ୍ତି । ସ୍ନାନ ଉତ୍ସବ ପହଣ୍ଡିର ଯିବା ଆସିବା ମାର୍ଗ ଗୋଟିଏ । ସେଥିରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ତା'ପରେ ଶ୍ରୀଗୁଣ୍ଡିଚା ଉପଲକ୍ଷେ ମହାପହଣ୍ଡିରେ ଶ୍ରୀଜୀଉମାନେ ସ୍ନାନପୂର୍ଣ୍ଣିମା ପହଣ୍ଡି ପରି ଆନନ୍ଦ ବଜାରରେ ପ୍ରବେଶ ହେବା ପରେ ଠାକୁର ଦକ୍ଷିଣାଭିମୁଖୀ ହୋଇ ବାଇଶିପାହାଚ ଆଡ଼କୁ ଯାତ୍ରା କରି ପୂର୍ବାଭିମୁଖୀ ହୋଇ ଓହ୍ଲାଇ ଆସନ୍ତି ଏବଂ ଶେଷରେ ସିଂହଦ୍ୱାର ଅତିକ୍ରମ କରି ଥାଆନ୍ତି । ଯଥାକ୍ରମେ, ସର୍ବପ୍ରଥମେ ଶ୍ରୀସୁଦର୍ଶନ ଅରୁଣସ୍ତମ୍ଭ ଟପି ଦର୍ପଦଳନ ରଥ ଉପରକୁ, ପ୍ରଭୁ ଶ୍ରୀବଳଭଦ୍ର ତାଳଧ୍ୱଜ ରଥ ଉପରକୁ, ପରେ ଦେବୀ ସୁଭଦ୍ରା ଦର୍ପଦଳନ ରଥ ଉପରକୁ ଓ ଶେଷରେ ଜଗତରନାଥ ଜଗନ୍ନାଥ ମହାପ୍ରଭୁ ନନ୍ଦିଘୋଷ ରଥ ଉପରକୁ ଦକ୍ଷିଣାଭିମୂଖୀ ହୋଇ ଉଠନ୍ତି ଏବଂ ଉତ୍ତରାଭିମୁଖୀ ହୋଇ ରଥାରୂଢ଼ ହୁଅନ୍ତି । ଦର୍ପଦଳନ ରଥରେ ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ ଏକାଠି ବିଜେ ହୁଅନ୍ତି । ରଥଯାତ୍ରା ଉପଲକ୍ଷେ ରଥତ୍ରୟ ଯାତ୍ରା ସାରି ଗୁଣ୍ଡିଚା ମନ୍ଦିର ଆଗରେ ପହଞ୍ଚିବା ପରେ ତା' ପରଦିନ ରାତ୍ରୀ ସମୟରେ ରଥରୁ ଅବତରଣ କରି ଆଡ଼ପ ମଣ୍ଡପକୁ ପ୍ରବେଶ କରି ପ୍ରଥମେ ଗୁଣ୍ଡିଚା ମନ୍ଦିର ସିଂହଦ୍ୱାର ଅତିକ୍ରମ କରନ୍ତି ଏବଂ ପୂର୍ବାଭିମୁଖୀ ହୋଇ ସିଧା ଆସନ୍ତି ଦ୍ୱାରବତୀଙ୍କ ପାର୍ଶ୍ୱକୁ । ସେଠାରୁ ଅଗଣା ମଧ୍ୟକୁ ପ୍ରବେଶ କରି ଜଗମୋହନରେ ପ୍ରବେଶ କରନ୍ତି ଦକ୍ଷିଣାଭିମୁଖୀ ହୋଇ । ଗରୁଡ଼ଙ୍କ ଆଗରେ ପହଞ୍ଚି ପୁଣି ପଶ୍ଚିମାଭିମୁଖୀ ହୋଇ ଆଡ଼ପ ମଣ୍ଡପକୁ ଉଠନ୍ତି ଏବଂ ସର୍ବଶେଷରେ ପୂର୍ବାଭିମୁଖୀ ହୋଇ ଆସୀନ ହୁଅନ୍ତି । ଆଡ଼ପ ଉତ୍ସବର ପରିସମାପ୍ତି ପରେ ଗରୁଡ଼ଙ୍କ ସାମ୍ନା ହୋଇ ଜଗମୋହନସ୍ଥ ପ୍ରସ୍ଥାନ ଦ୍ୱାର ନିକଟରେ ଟାହିଆ ଲାଗି ଓ ବନ୍ଦାପନା ବଢ଼ିବା ପରେ ନାକଚଣା ଦ୍ୱାର ଦେଇ ଆସନ୍ତି ରଥ ଉପରକୁ । ଏହା ପୂର୍ବରୁ ଗୁଣ୍ଡିଚା ମନ୍ଦିରସ୍ଥ ସିଂହଦ୍ୱାରରୁ ରଥ ତ୍ରୟ ଆସି ଅନ୍ୟ ପାର୍ଶ୍ୱରେ ଥିବା ନାକଚଣା ଦ୍ୱାର ନିକଟରେ ଅବସ୍ଥାନ କରିଥାନ୍ତି । ଗୁଣ୍ଡିଚା ମନ୍ଦିରରେ ଠାକୁରମାନେ ପ୍ରବେଶ କରନ୍ତି ସିଂହଦ୍ୱାର ବାଟେ ଏବଂ ପ୍ରସ୍ଥାନ କରନ୍ତି ନାକଚଣା ଦ୍ୱାର ବାଟେ । ତେଣୁ ପ୍ରବେଶ ଏବଂ ପ୍ରସ୍ଥାନ ପହଣ୍ଡି ମାର୍ଗ ଏକ ନୁହେଁ । କିନ୍ତୁ ଶ୍ରୀମନ୍ଦିରରେ ସମସ୍ତ ପହଣ୍ଡି ମାର୍ଗ ଏକା ଅଟେ ।

ଶ୍ରୀଜୀଉମାନଙ୍କର ଏହି ଦିବ୍ୟ ପହଣ୍ଡି ଲୀଳା ଦର୍ଶନ କରି ନିଜକୁ ଧନ୍ୟ ମନେ କରିବା ପାଇଁ ଉଦ୍‌ବେଳିତ ହୋଇଉଠେ ଭକ୍ତର ହୃଦୟ । ବିଜେ କାହାଳୀ ବାଜିବା ସଂଗେ ସଂଗେ ଛାମୁଖୁଣ୍ଟିଆର 'ମଣିମା ମହାବାହୁ ହେ ବିଜେ କରିବା ହେଉ' ସମ୍ଭାଷଣ ପରେ ଭକ୍ତମାନଙ୍କର ଜୟ ଜଗନ୍ନାଥ, ପତିତପାବନ, ମହାବାହୁ, କଳିଆର ଭୁଜ ଆଦି ସମ୍ବୋଧନ ସହ ବିବିଧ ବାଦ୍ୟର ନିନାଦ ମଧ୍ୟରେ ଲକ୍ଷ ଲକ୍ଷ ଦର୍ଶକଙ୍କ ହରିବୋଲ, ହୁଳହୁଳି ଧ୍ୱନି ମଧ୍ୟରେ କେତକୀ, ଦୟଣା, କସ୍ତୁରୀ, ଗୋରଚନା, ଚନ୍ଦନ, କର୍ପୂର, ଅଗୁରୁ ଆଉ କୁଙ୍କୁମର ଭୁରୁଭୁରୁ ବାସ ମଧ୍ୟରେ ଛତି, ତ୍ରାସ, ଆଲଟ, ଚାମରର ଦୋଳନ ମଧ୍ୟରେ ଶିରରେ ଦୁବ, ତୁଳସୀ, ବିଭିନ୍ନ ପୁଷ୍ପ ଓ ସୋଲଖଚିତ ଟାହିଆ ଲଗାଇ, କଟିରେ ପାଟଡୋର ବାନ୍ଧି, ସଂଗୀତଜ୍ଞମାନଙ୍କର ଗୀତ ତଥା ଛନ୍ଦୋମୟ ଦେବଦାସୀ ନୃତ୍ୟ ମଧ୍ୟରେ, ଘଣ୍ଟୁଆଳର ଏକତାଳି ଘଣ୍ଟର ତାଳେ ତାଳେ, ଝୁଲାହାତୀର ଝୁଲନ୍ତା ଚାଲିରେ, ଆଗକୁ ଦୁଇ ପାଦ ପଛକୁ ପାଦେ ଟାଣି ହୋଇ ଚତୁର୍ଦ୍ଦିଗରେ ପ୍ରେମାମୃତ ଧାରା ବର୍ଷଣ କରି କରି ଭକ୍ତମାନଙ୍କୁ କୋଳକରି ଶ୍ରୀଜୀଉମାନେ ପହଣ୍ଡି ବିଜେ କରିଥାନ୍ତି । ପହଣ୍ଡିବେଳେ ବିଗ୍ରହମାନଙ୍କୁ ଥରେ ସ୍ପର୍ଶ କରିବା ପାଇଁ ଜାତି–ଧର୍ମ–ବର୍ଣ୍ଣ ନିର୍ବିଶେଷରେ ଯେଉଁ ବ୍ୟାକୁଳତା ପ୍ରକାଶ ପାଉଥାଏ, ଯେଭଳି ଭାବେ ଠେଲାପେଲା, ଟଣାଓଟରା ଚାଲେ, ସେହି ମନୋରମ ଦୃଶ୍ୟକୁ ଦୂରରୁ ହେଉ ବା ନିକଟରୁ ହେଉ ଯିଏ ଥରେ ଦେଖିଛି, ତା'ର ମାନସପଟରୁ କେବେ ଲିଭିବାର ନୁହେଁ । ଭକ୍ତବତ୍ସଳ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରିୟସ୍ଥାନ ହେଉଛି ଭକ୍ତର ହୃଦୟ । ତେଣୁ ସେ ନିତ୍ୟ ବୈକୁଣ୍ଠସ୍ଥଳୀ ରତ୍ନସିଂହାସନ ପରିତ୍ୟାଗ ପୂର୍ବକ ଭକ୍ତମାନଙ୍କ ପରିସରକୁ ଆସି ତାଙ୍କର ଅଳି–ଅର୍ଦ୍ଦଳି, ମାନ–ଅଭିମାନ ଆଉ ଗାଳି–ଅପମାନ ସବୁ ସହ୍ୟ କରିଥାନ୍ତି । ପହଣ୍ଡି ସମୟରେ ତାଙ୍କ ମସ୍ତକରେ



ଦୋଳାୟିତ ଟାହିଆ, ଚାହାଣୀର ଅପୂର୍ବ ଠାଣି, ବାମକୁ ଦକ୍ଷିଣକୁ, ଆଗକୁ ପଛକୁ ଢଳି ପଡ଼ିବାର କମନୀୟ ଭଙ୍ଗୀ ଏସବୁ କୌଣସି ଦର୍ଶକକୁ ସ୍ଥିର କରି ରଖିପାରେନା । ତାଙ୍କ ଅସ୍ଥିର ଗତିରେ ସେବକ କୁଳ ଅସ୍ଥିର, ସାଜସଜ୍ଜା ଉପକରଣଧାରୀମାନେ ଅସ୍ଥିର, ଚାମର ସେବକ ଓ ସଂକୀର୍ତ୍ତନରତ ଭକ୍ତଗଣ ମଧ୍ୟ ଅସ୍ଥିର ହେବାର ଦେଖାଯାଏ । ପ୍ରଭୁଙ୍କର ଏହି ପହଣ୍ଡିକାଳୀନ ଛନ୍ଦାୟିତ, ଦୋଳାୟିତ, ମୁଦ୍ରାୟିତ ଘୂମନ୍ତ ଯାତ୍ରା କାହିଁ କେଉଁ କାଳରୁ ସଂଖ୍ୟାତୀତ ଭକ୍ତଗଣଙ୍କୁ ମୁଗ୍ଧ, ଚକିତ, ପ୍ରଭାବିତ, ରସାଣିତ,ଅନୁପ୍ରାଣିତ ଓ ଆମୋଦିତ କରି ଆସିଛି, ତା'ର ହିସାବ ନାହିଁ । ଜ୍ଞାନର ଗଭୀରତା ନେଇ କିଏ ତାଙ୍କର ଦିବ୍ୟଲୀଳାକୁ ଦେଖୁଛନ୍ତି ତ ଆଉ କିଏ ଆଧ୍ୟାତ୍ମିକ ଅନୁଭୂତି ସହ ଏକାକାର କରିଦେଇଛନ୍ତି ॥

ସଂପାଦକ– 'ଅଭିନନ୍ଦନିକା',
ସେନାପତି ଭବନ, ବଡ଼ଦାଣ୍ଡ, ପୁରୀ–୧

# ଯେତେ ଦୁଃଖ ମୋତେ ଦେ'ରେ କାଳିଆ

**ବିଜୟଲକ୍ଷ୍ମୀ ରାୟ**

ଯେତେ ଦୁଃଖ ମୋତେ ଦେ'ରେ କାଳିଆ ଆଞ୍ଜୁଳି ଭରି ମୁଁ ନେବି
ମୋତେ ଦୁଃଖ ଦେଇ ତୁ ହସୁଥିଲେ କାହାଆଗେ ଆଉ କହିବି
ପତିତ ପାବନ ଯାତ୍ରା ତୋର ଆଜି ପତିତ ଉଦ୍ଧାର ପାଇଁ
ମୋ ପରି ପତିତ ଜଗତରେ ନାହିଁ ଉଦ୍ଧାର କର ଗୋସାଇଁ
ନନ୍ଦିଘୋଷ ରଥେ ବିଜେ କରି ଅଛ ବାମନ ରୂପକୁ ଧରି
ସେ ରୂପ ଦେଖିଲେ ମଣିଷ ଜନମ ଆଉ ନୁହଁଇ କାହାରି
ନବଦିନ ଯାତ୍ରା କରିବା ପାଇଁକି ଯାଅ ଗୁପ୍ତ ବୃନ୍ଦାବନ
ତୋର ନାମ ଧ୍ୟାୟୀ ତୋର ନାମ ଗାଇ ସରିଯାଉ ମୋର ଦିନ
ଜନମେ ଜନମେ ତୋର ପଦ୍ମପାଦେ ମନମୋର ରହିଥାଉ
ତୋର ବଡଦାଣ୍ଡେ ନୀଳଚକ୍ର ଚାହିଁ ଏ ପିଣ୍ଡରୁ ପ୍ରାଣ ଯାଉ ।

ପ୍ଲଟ୍ ନଂ– ୬କେ, ଚିନ୍ତାମଣିଶ୍ୱର
ଭୁବନେଶ୍ୱର



# ଜଗତ ଜୀବନ

**ଗଣେଶ ଚନ୍ଦ୍ର ଦାଶ**

ହେ ପରମ ପିତା ପରମେଶ୍ୱର ହେ
ତୁମେ ଜଗଦୀଶ ଜଗନ୍ନାଥ
ତୁମ ନାମ ରସ ଜଗାଏ ଜୀବନେ
ସଦା ମୁକତିର ଗତିପଥ ।
ହେ ଜଗତ ବନ୍ଧୁ କୋଟି ପ୍ରାଣଇନ୍ଦୁ
ଏ ସାରା ଜଗତର ଜୀବନ
ହେ ଚକା ନୟନ ଶ୍ରୀମଧୁସୂଦନ
ଭକତର ଜଗମୋହନ
ତୁମେ ଗଢୁଥାଅ ଧରାରେ ଜୀବନ
ତା' ଭିତରେ ତା'ର ମନୋରଥ ।
ତୁମେ ଅମେଇଶା ଅମାବୋଳା ରାତି
ପୁନେଇଁ ରାତିର କଉମୁଦୀ
ଶୀଳାବୁକୁ ଚିରି ଆସ ଯେବେ ଝରି
କର ଝରଣାକୁ ରୂପବନ୍ତ ।

ଘର ନଂ ଇ–୨୨, ୟୁନିଟ୍–୭
ଭୁବନେଶ୍ୱର





# ସୂକ୍ଷ୍ମ ପରାଜୟ

ଡାକ୍ତର ସରୋଜିନୀ ଷଡଙ୍ଗୀ

ତୁମ ଦିବ୍ୟରୂପ ଏବଂ
ତୁମ ଦୁଇ ଅପଲକ
ନେତ୍ରର ପାଖୁଡ଼ା,
ତୁମ ମହାବାହୁ ଆଉ ପଦ୍ମପାଦ,
ଲେଖନୀ ମୁନରେ ଥରେ
ରଚନା କରିବେ ବୋଲି,
ତୁମ ଦାରୁବ୍ରହ୍ମ ମୂର୍ତ୍ତି
ଆଖିମେଲି ଥରଟିଏ
ଦର୍ଶନ କରିବେ ବୋଲି,
ତୁମ ସୂକ୍ଷ୍ମ ସତ୍ତାଟିକୁ
ଅନୁଭବୀ ନେବେ ବୋଲି,
କେତେ କେତେ କବି, ବାଗ୍ମୀ
କଥାକାର, ଋଷି ଓ ମହର୍ଷି
କେତେ ଶିଳ୍ପୀ, କେତେ ଭକ୍ତ
ସାଧୁ ଓ ସନ୍ୟାସୀ,
ମହାମହା ଚିତ୍ରକରମାନେ
ଶହ ଶହ ବର୍ଷ ଧରି
ତୂଳୀରେ ଆଙ୍କିଲେ ତୁମ
ସୁଶୋଭିତ ଚିତ୍ର ।
ଶିଳ୍ପୀ ତ' ନିହାଣ ମୁନେ
ଫୁଟାଇଲେ ଅପୂର୍ବ ଶିଳ୍ପର କଳା
ପଥରର ବୁକୁଫାଟି
ଉଭାହେଲେ ଶ୍ରୀବିଗ୍ରହମାନେ
ହୋଇ ସତେ କେଡ଼େ ପ୍ରାଣବନ୍ତ !



କବି ଆଉ କଳାକାର
ଭକ୍ତିର ଅପୂର୍ବ କାଳି
ଭରିଦେଇ କଲମରେ
ଫୁଟାଇଲେ କାଗଜରେ
ମୁଗ୍ଧ ତୁମ ବେଶ ରୂପବନ୍ତ ।
ତୁମ ସୃଷ୍ଟି ସାରାଂଶର
ଉନ୍ମୋଚନ ପାଇଁ
ଭକ୍ତମାନେ, କେତେକେତେ
ଉପାୟ ଖଂଜିଲେ
କିଏ ନ୍ୟୂନ ହୋଇ ତୁମ ପାଦ ମଂଚାଳିଲା
କିଏ ଦେଲା ଆଲଟ ଚାମର,
କିଏ ସେ ଆଖି ଲୁହରେ
ପଦ୍ମ ପାଦ ଧୋଇଦେଇ
ପିନ୍ଧା ଗାମୁଛାରେ ତୁମ
ଦେହ ପୋଛିଦେଲା ।
କିଏ ଗାଳିଦେଲା ପୁଣି,
କିଏ ପଦାଘାତ କଲା
କିଏ ଦେଲା ଅରୁଣସ୍ତମ୍ଭ ପାଖରୁ,
ନଡ଼ିଆ ବଢ଼େଇ,
କିଏ ସେ ଅଭିମାନରେ
ଦର୍ଶନ ନକରିପାରି,
ନନ୍ଦିଘୋଷ ରଥେ,
ଲୁହରେ ଭିଜାଇ ବାଲି
ବାଙ୍କୀ ମୁହାଣକୁ ଯାଇ



ଗଢ଼ିଦେଲା ବାଲି ରଥ
ତୁମେ ସେଠି ବିଜେ ହେବ ବୋଲି !!
କିଏ ହେଲା ବଶମ୍ବଦ
କିଏ ଅନୁଗତ,
କେତେ ସାଧୁ ମନୀଷୀଙ୍କ
ତତ୍ତ୍ୱ, ତର୍କ, ଧର୍ମ ଆଉ
ବେଦ ମାଧ୍ୟମରେ
ହେଉଥିଲା ବାକ୍ୟ ବିନିମୟ,
ତୁମକୁ ବଖାଣିବାକୁ,
ତୁମ ପାଇଁ ଶବ୍ଦ, ଛନ୍ଦ, ତାଳ, ଲୟ
ଖୋଜୁ ଖୋଜୁ, ମିଳୁଥିଲା
ସୂକ୍ଷ୍ମ ପରାଜୟ ।
ସତରେ କି କେହି କେବେ
ପାଇଛନ୍ତି ତୁମ ପରିଚୟ ?
ନିର୍ଦ୍ଧାରଣ କରିଛନ୍ତି
ତୁମ ସୀମା ସରହଦ
ଦେଖିଛନ୍ତି ତୁମ ଦୁଇ
ଦ୍ୟୁତିର ଗୋଲକ ?
ତୁମ ରହସ୍ୟର ଉତ୍ସ ଖୋଜୁ ଖୋଜୁ
ଚାହୁଁ ଚାହୁଁ ସରିଯାଏ ଦିନରାତି,
ସରିଯାଏ ଅନନ୍ତ ସମୟ,
କେଉଁଠୁ ଆରମ୍ଭ ତୁମ
କେଉଁଠାରେ ଶେଷ ?
କେଉଁଯାଏ ବ୍ୟାପ୍ତ ତୁମ
ସୃଷ୍ଟିର ବଳୟ ?
କେଉଁଠାରେ ଅସ୍ତଯାଅ
କେଉଁଠାରେ ହୁଅ ତୁମେ
ପୁନଶ୍ଚ ଉଦୟ ?

ଲିଙ୍କରୋଡ଼, କଟକ-୧୨

# ଜଣାଣ

**ଚନ୍ଦ୍ରଶେଖର ପଣ୍ଡା**

ଜୟ ଜୟ ଜନପ୍ରିୟ ପ୍ରଭୁ ଅନ୍ତର୍ଯ୍ୟାମୀ
ସର୍ବଘଟେ ଅଛପୂରି ଜଗନ୍ନାଥ ସ୍ୱାମୀ
ତୁମେ ଗତି ମୁକ୍ତି ଧାମ
ତୁମ୍ଭ ଗୁଣ କିବର୍ଣ୍ଣିବି ମୁଁ ମୂଢ଼ ଅଧମ ।
ତ୍ରିଭୁବନ ମନୋଲୋଭା କିସୁନ୍ଦର ରୂପ
ବାର ବେନି ପୁରେ କେବା ହେବ ତୁମ୍ଭ ଯୋଖ
ଭକତ ହିତେ ଶ୍ରୀହରି
ନୀଳ କନ୍ଦରେ ବସିଛ ଶଂଖଚକ୍ରଧାରୀ ।
କିମଂଜୁଳ ଧଣ୍ଡାମାଳ ରାହୁରେଖା ଶିରେ
ପୁଣ୍ଡରୀକ ନେତ୍ରେ ଡୋଳା ଭୃଂଗ ଯେହ୍ନେ ଖେଳେ
ଶିରେ ସୁରମ୍ୟ ଚାହିଆ
ହେମ ବ୍ୟାଘ୍ର ନଖ ଦେଖି ଭକତେ ବାଇଆ ।
ନମୋ ନମଃ ଜଗଦୀଶ ଅନାଦି ପୁରୁଷ
ବରୁଣାଳୟ ଶ୍ରୀହରି ନୀଳାଚଳାଧିଶ
ରୂପ କେଡେ ମନୋଲୋଭା
କୋଟି କାମ ସମ ନୁହେଁ ତୋ ଶ୍ରୀଅଂଗ ଶୋଭା ।
ଶ୍ରୀରଙ୍ଗ ଅଧରେ ତୁମ ଦରୋଟିଆ ହସ
ଦେଖି କୋଟି ଜନ୍ମ ଦୁଃଖ ଆହେ ପୀତବାସ
ଅପଲକେ ଘୁଞ୍ଚିଯାଏ
ନବଜଳ ଧରେ ଯଥା ଚପଳା ପରାଏ ।



ନୟନାଭିରାମ ନବ ଦୁର୍ବାଦଳ ଶ୍ୟାମ
ଭକତ ବାନ୍ଧବ ହରି ଗତି ମୁକ୍ତି ଧାମ
ଭକ୍ତ ଜନ ମୋକ୍ଷ ଗୃହ
ତୁମ୍ଭ ଶ୍ରୀପୟରେ ମୋର ସଦା ଥାଉ ଲୟ ।
ଅନିତ୍ୟ ସଂସାରେ ନିତ୍ୟ ତୁମେ ଜଗଦୀଶ
ଜଗନ୍ମିଥ୍ୟା ତୁମେ ସତ୍ୟ ଅନାଦି ପୁରୁଷ
ନମୋ ନବ ଜଳଧର
ସଚିଦାନନ୍ଦ ବିଗ୍ରହ ମୁକତିର ଦ୍ୱାର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ତୁମେ ଆହେ ଦନୁଜାରି
ନାମଧରି ଦେଲେ ପାପୀ ଭବୁଯାନ୍ତି ତରି
ଆହେ ଶରଣ ପଂଜର
ବିଷୟା ବିଷକୁ ଗଦ ତୁମ୍ଭେ ଚକ୍ରଧର ।
ଶୁକ ସନାତନ ଆଦି କେତେ ବ୍ରହ୍ମବେତା
ନପାଇ ତୁମ ଦର୍ଶନ ତପସାଧି ବୃଥା
ଭାବି ହୋଇଲେ ବିମୁଖ
କେବା ତୁମକୁ ଜପୁଛି କଳପ କଳପ ।
ପତିତ ପାବନ ପତିତପାବନେ ଡାକି
ପାତକ ନାଶୁଛ ପରା ପରଖି ପରଖି
ଆହେ ଲକ୍ଷ୍ମୀ ପ୍ରାଣଧନ
ଆରତେ ଡାକୁଛି ଶୁଣ ଆରତ ନାଶନ ।
ଏ ଜନମେ ଅବା ପୂର୍ବ ଜନମେ ଯେତେକ
ପାତକ ଅରଜି ଅଛି ଆହେ ପଦ୍ମମୁଖ
କୃପାଜଳେ ଧୋଇ ଦେବ
ସମନ ଦଣ୍ଡ ଯେଶନ ମୋତେ ନଲାଗିବ ।

ପ୍ଲଟ୍ ନଂ –୧୮୫୩/୩୭୨୦, କପିଳ ପ୍ରସାଦ
ପୁରୁଣା ଭୁବନେଶ୍ୱର

# ନୀଳାଦ୍ରି ଭ୍ରମର ବଡ଼ ବିଚିତ୍ର !!

ଇଂଜିନିୟର ରଘୁନାଥ ପାତ୍ର

ଶ୍ରୀଭୁଜ, ଉଦରେ ପଦ୍ମହାର ଲୋଳେ
ହୃଦେ ହୃଦପଦ୍ମ ନିତି
କମଳିନୀ ପ୍ରିୟ  କରୁଣା ଆଳୟ
ପ୍ରଭୁ ପଦ୍ମାଳୟା ପତି ।
ମାଳତୀ ଟଗର  ପ୍ରିୟ ନଟବର
ସୁଗନ୍ଧରାଜ ସୁମନ
କେତକୀ ଚମ୍ପକ  ଗୋଲାପେ ରସିକ
ଦିଶନ୍ତି କି ସୁଶୋଭନ ।
ତମିସ୍ରା ଗୋପନ  ପୀରତିରେ ଧନ୍ୟ
ମଣେ କ୍ଷୁଦ୍ର ଜାଇ ଫୁଲ



ପ୍ରକାଶ୍ୟ ପ୍ରେମରେ  କମଳିନୀ ଲୋଳେ
ଆଲୋକେ, ତିମିରେ ଖେଳ ।
ନିଭୃତ ନିକୁଞ୍ଜେ  ରାଧା ସଙ୍ଗେ ରଞ୍ଜେ
ପ୍ରାସାଦେ ରକ୍ମିଣୀ ସାଥେ
ଗୋପନେ ପୀରତି  ପ୍ରକାଶ୍ୟରେ ପ୍ରୀତି
କରନ୍ତି ରଚନା କେତେ !
ଜୀର୍ଣ୍ଣ କୁଟୀରରେ  କୁବୁଜା ସଙ୍ଗରେ
ପୀରତି କଲେ ଗୋବିନ୍ଦ
ପୂର୍ଣ୍ଣକାମ ହରି  ଭାବ ଅନୁସରି
ଦିଅନ୍ତି ଜୀବେ ଆନନ୍ଦ ।



କ୍ଷୁଦ୍ର ବା ବୃହତ ତିଳେ ବିଶ୍ୱତାତ
ନ ଆଣନ୍ତି ମନେ କେବେ
ସୃଷ୍ଟି ସଙ୍ଗେ ଲୀଳା ରଚି ଚକାଡୋଳା
ଲୀଳାମୟ ହରି ଭବେ !
ପୁରୁଷ ପ୍ରକୃତି ଲୀଳା ଦିବାରାତ୍ରି
ପ୍ରକାଶ୍ୟେ ଗୋପନେ ଚାଲେ
କେବେ ମାଧୁର୍ଯ୍ୟରେ କେବେ ଐଶ୍ୱର୍ଯ୍ୟରେ
ବୃନ୍ଦାବନେ, ଦ୍ୱାରକାରେ ।
ଗୋପିକା ଗୋପାଳ ଲୀଳା ସୁମଧୁର
ଦ୍ୱାରକାରେ ପଡ଼େ ମନେ
ସ୍ଥୂଳରେ ଐଶ୍ୱର୍ଯ୍ୟ ସୂକ୍ଷ୍ମରେ ମାଧୁର୍ଯ୍ୟ
ପ୍ରାସାଦେ, ହୃଦ ବିପିନେ ।

ଆଷାଢ଼ ମାସରେ ରଥଯାତ୍ରା ଛଳେ
ତେଜି ରତ୍ନସିଂହାସନ
ସୁନ୍ଦରାଚଳରେ ବିଜେ ପ୍ରେମ ଭୋଳେ
ନୀଳାଦ୍ରି ଆନନ୍ଦ ଘନ ।
କବି ରଘୁ ଭାଷେ ବାତ୍ସଲ୍ୟ ସୁରସେ
ଲୀଳା ପଦ୍ମାଳୟା କାନ୍ତ
ପୁରୁଷ ପ୍ରକୃତି ଲୀଳା ଦେଖି ନିତି
ଜୀବନ ମଣେ କୃତାର୍ଥ !

ବୃନ୍ଦାବନ ଧାମ
ଲୋକନାଥ ରୋଡ଼
ପାଟଣାହାଟ ସାହି ଛକ–ପୁରୀ–୭୫୨୦୦୧

# ଶଙ୍ଖରେ ପୂରାଇ ଚକ୍ରରେ ରଖ

ଡକ୍ଟର ସୁନାମଣି ରାଉତ

ଧନ୍ୟପ୍ରଭୁ ତୁମ ସୁନ୍ଦର ସଂସାର
ଧନ୍ୟ ତୁମର ଏ ମାନବ ଲୀଳା,
କେବେ ତୁମେ ବ୍ରହ୍ମ ଦାରୁରେ ବିରାଜ
କେବେ ପୁଣି ଶାଳଗ୍ରାମରେ ଶିଳା ।
ତୁମେ ତ ନିର୍ଗୁଣ, ସଗୁଣ ସଦୃଶ
କେବେ ହୁଅ ଦୃଶ୍ୟ, ଅଦୃଶ୍ୟ କେବେ,
ପରା–ଅପରାର ବିଦ୍ୟାରେ ତୁମେତ
ଅଗୋଚର ହୁଅ ମାନବେ, ଦେବେ ।



ତୁମ ଚକା ଆଖି ଭିତରେ ରହିଛି
ସସାଗରା ଧରା ବ୍ରହ୍ମାଣ୍ଡ ବିଶ୍ୱ
ତୁମେ କରିଅଛ କାହାକୁ କୁବେର
କାହାକୁ କରିଛ ନିରୀହ ନିଃସ୍ୱ ।
ହେ ବଡ଼ଠାକୁର ତୁମ ବଡ଼ଦାଣ୍ଡେ
ଗଡ଼ିଗଡ଼ି ଯାଉ ରଥର ଚକ
ଆହେ ଜଗନ୍ନାଥେ ଏଇ ଜଗତକୁ
ଶଙ୍ଖରେ ପୂରାଇ ଚକ୍ରରେ ରଖ ।

ରାଜାବଗିଚା, କଟକ –୯



# ଲୀଳାକମଳ

ରକ୍ଷକ ନାୟକ



ସମୟକୁ ସର୍ଜନା କରି
ତାକୁ ନାନା ରୂପ ଦେଲ
ଗ୍ରହ, ତାରା, ନକ୍ଷତ୍ର, ଅଥଳ ଶୂନ୍ୟତା
ଜୀବ ଓ ଜଗତ, ସୃଷ୍ଟିର ସ୍ଥାପତ୍ୟ
ପ୍ରାଣର ପୁରାଣର ତୁମେ ଲିପିକାର
ରହସ୍ୟର ସୌନ୍ଦର୍ଯ୍ୟରେ
ସମସ୍ତଙ୍କୁ ଆସକ୍ତ କରିଲ ।
ତୁମେ ହିଁ ସବୁର ସାରାଂଶ, କେବେ
ଅଣୁରେ ତ କେବେ ଅଣାକ୍ଷରରେ
କେବେ ଦ୍ୟୁତିରେ ତ କେବେ ଦର୍ଶନରେ
କେବେ ଭାବରେ ତ କେବେ ଚତୁର୍ଦ୍ଦଶ ଭୁବନରେ
ଜ୍ଞାନାତୀତ, ଚିର ଅଗୋଚର,
ଶୂନ୍ୟାକାର, ପୂର୍ଣ୍ଣାକାର ।
ତୁମେ ହିଁ ଆରମ୍ଭ, ତୁମେ ହିଁ ଅନ୍ତ
ତୁମେ ହିଁ ପୃଥିବୀ, ତୁମେ ହିଁ ପଥ
ତୁମେ ଆଲୋକର ଏକୁଡିଶାଳ
ଅନ୍ଧାରର ଲିପିକାର, ତୁମେ
ବିରଚିତ ଯେତେ ଯେତେ
ସେତେ ବେଶୀ ବିଷୟାନ୍ତର ।
ମିଛ ବୋଲି କିଛି ନାହିଁ ସତର ସୂତ୍ର ସ୍ଥିର ନାହିଁ
ଯେତିକି ଉଭା, ସେତିକି ପୋତା
ଠଉରାଇ ହୁଏ ନାହିଁ
ତୁମ ଠାର ବୁଝୁବୁଝୁ
ସହସ୍ର ବାର ସମୟର ସୃଷ୍ଟି ଓ ଲୟ
ହୋଇଥାଇ ।
ସବୁ ତୁମରି ଭିଆଣ
ଦୃଶ୍ୟ ଓ ଦର୍ଶକ, ଚିତ୍ର ଓ ଚେତନା
ଯେତିକି ଗମି ପାରିବ, ସେତିକି ପାଇବ
ଅନ୍ତହୀନ ଅନ୍ୱେଷଣ
ତୁମେ ଅନ୍ୱେଷଣର ଅନ୍ୟ ଏକ ନାମ ।
କେବେଠୁ କେଜାଣି, ତୁମେ ଏଇ
ସମୟର ସାଗର କୂଳରେ
ଲୀଳା ରଚିଛ, ନିଜେ ଲୀଳା ହୋଇ
ମାୟା ଲଗେଇଛ, ଲୀଳାକମଳ ହୋଇ
ସମସ୍ତଙ୍କୁ ବିଭୋର କରୁଛ ।

ରାଜ୍ୟପାଳଙ୍କ ଲୋକସମ୍ପର୍କ ଅଧିକାରୀ
ରାଜଭବନ, ଭୁବନେଶ୍ୱର

# ବେଗେ ହୁଅ ସଜବାଜ

ମିନତି ମହାପାତ୍ର

ମନ ଚାହୁଁଛି ଯିବି ଶ୍ରୀକ୍ଷେତ୍ର
ବେଗି ବେଗି ହୋଇ ବାହାରି ପଡ଼ିଲି
ଯିବାକୁ ମୁ ହିଁ 'ଶ୍ରୀକ୍ଷେତ୍ର' ।
ଶରଧା ବାଲିକୁ ମୁଣ୍ଡେ ମାରିଦେଇ
ଚଳିଲି ମୁଁ 'ଶ୍ରୀମନ୍ଦିର'
ସ୍ନାନ ମଣ୍ଡପରେ ବିଜେ କରିଛନ୍ତି
ଭାଇ, ଭଉଣୀ କି ସୁନ୍ଦର ।



ସ୍ନାନ କରାଇବେ, ସ୍ନାନ ମଣ୍ଡପରେ
ସେବକମାନେ ତାଙ୍କର
ଦୂର ଦୂରାନ୍ତରୁ ଭକତ ଆସିଛନ୍ତି
ଦେଖିବେ ସ୍ନାନ ତାଙ୍କର ।
ଆହା କେତେ ଜଳ ଢ଼ାଳି ଯାଉଛନ୍ତି
ନିଘାନାହିଁ ତ କାହାର,
ଅଣ୍ଡାଲାଗି ଜ୍ୱର ହୋଇବ ନିଶ୍ଚୟ
ଭାଇ,ଭଉଣୀଙ୍କୁ ଏଥର ।
ଘୋଡ଼ାଘୋଡ଼ି ହୋଇ ଶୋଇଯିବେ
କେତେ ବଇଦ ଆସିବେ ଧାଇଁ,
ପଥି ପାଚନ ତ ରନ୍ଧାହେବ
ଆଉ ଅବଢ଼ା ମିଳିବ ନାହିଁ ।



ବେଶ କରାଇବେ ଅପୂର୍ବ ରୂପରେ
ଦେହ ହୋଇଗଲେ ଭଲ,
ଆନନ୍ଦେ ସେବକ କହିବେ ଠାକୁରେ
'ରତ୍ନସିଂହାସନେ' ଚାଲ
'ନେତ୍ରୋତ୍ସବ' ଆଜି ହେବ ଯେ ତୁମର
ସଜଡ଼ା ହୋଇଛି ଚିଜ,
ମାଡ଼ି ଆସିଯିବେ ଭକତ ତୁମର
ବେଗେ ହୁଅ 'ସଜବାଜ' ।

ଏନ୍ ୧/୨୦ ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର

# ଧ୍ୟାନ ଦେଲେ ନାହିଁ କାହା ଚିନ୍ତାରେ

**ଉର୍ମିଳା ଷଡ଼ଙ୍ଗୀ**

ଝିପି ଝିପି ହେଇ ବରଷା ଝରେ
ଡ଼ାହୁକ ଡ଼ାକୁଛି ରଥ ଉପରେ
ଦେଇ ଘୋର ରଡ଼ି ରଥ ଯାଏ ଗଡ଼ି
ବଡ଼ ଦିଅଁଙ୍କର ବଡ଼ ଦାଣ୍ଡରେ ।
ମହାଦେଇଙ୍କର ଶୁଖିଛି ମୁହଁ
ଅନ୍ତର ଭିତରେ ଭରିଛି କୋହ
କାହାକୁ କହିବେ କିପରି କହିବେ
ପ୍ରଭୁ ନେଲେ ନାହିଁ ତାଙ୍କୁ ସାଥିରେ ।
କଳପ ବଟ ବିକଳେ ଚାହିଁଛି
ଗତ ଦିନ କଥା ମନେ ଭାବୁଛି
ପ୍ରଭୁ କରିଥିଲେ ମତେ କେତେ ଆପଣାର
କେଉଁ ଅପରାଧ ପାଇଁ କରିଲେ ସେ ପର



ଭାଇଭଉଣୀଙ୍କୁ ସଂଗତେ ନେଇ
ଜନମ ବେଦିକୁ ଗଲେ ଗୋସାଇଁ
ଆହକେ ଶୋଇବେ ମୋ ଛାଇରେ ।
ସିଂହଦ୍ୱାର କାନ୍ଦୁଛି ଶରଧା ବାଲି ହସୁଛି
ଦେବଦାସୀ ପଣତରେ ଲୁହ ପୋଛୁଚି
ଆନନ୍ଦ ଲହରି ଖେଳେ ଘଣ୍ଟ ଘଣ୍ଟା ଶବଦରେ
ବଡ଼ଦାଣ୍ଡ କହେ ମୋର ବଡ଼ ଭାଗ୍ୟରେ
ଭକ୍ତ ଭାବଭୋଳା ପ୍ରଭୁ ଚକାଡ଼ୋଳା
ଭକତଙ୍କୁ ଦେଖି ହୋଇ ମହା ଖୁସି
ଧ୍ୟାନ ଦେଲେନାହିଁ କାହା ଚିନ୍ତାରେ
ରଥ ଗଡ଼ିଯାଏ ବଡ଼ ଦାଣ୍ଡରେ ।

ନନ୍ଦ ଏନ୍‌କ୍ଲେଭ, କପିଳ ପ୍ରସାଦ, ଭୁବନେଶ୍ୱର-୨



# ମାଧବ ହେ ଦୀନ ବାନ୍ଧବ

**ଶରତ କୁମାରୀ ମିଶ୍ର**



ମାଧବ ହେ ଦୀନ ବାନ୍ଧବ ହରି
ତୁମର ମଧୁର ରୂପ
ମଧୁମୟ ତୁମ ଚରଣାମୃତକୁ
ପାଇବାକୁ ମୁଁ ଇଚ୍ଛୁକ ।
ମର୍ଯ୍ୟାଦା ପୁରୁଷୋତ୍ତମ ସଙ୍ଗ ପାଇଁ
ମୁହିଁ ଅଟଇ ପ୍ରଲୁବ୍ଧ
ମଧୁସ୍ୱନ ତୁମ ବଂଶୀରୁ ଝରିଲେ
ଶ୍ରବଣେ ଗୋପିକା ମୁଗ୍ଧ ।
ମନସ୍ଥ କରିଛ ତୁମକୁ ପୂଜିବି
ଥିବାଯାଏଁ ଜୀବନରେ
ମହିମା ତୁମର ଗାଇ ବୁଲୁଥିବି
ମୁଁ ମେଘ ମହ୍ଲାର ସୁରେ ।
ମନୋରଥ ମୋର କରିବି ପୂରଣ ତୁମେ ତ ଅନ୍ତରଯ୍ୟାମୀ
ମଙ୍ଗୁଆଳ ହୋଇ ପାରି କରିଦେବ
ମୋତେ ତପ୍ତ ବୈତରଣୀ ।

ମଂଜରୀ ତୁଳସୀ ଦେଇ ପଦ୍ମ ପାଦେ
ମନକଥା ଜଣାଇବି ମଙ୍ଗଳମୟହେ ତୁମକୁ ଦେଖିଲେ
ସବୁ ଦୁଃଖ ଭୁଲିଯିବି ।
ମହୀପାଳ ତୁମେ ମହୀୟାନ ଯେଣୁ
ମୋ କଥା ନିଶ୍ଚେ ବୁଝିବ
ମରଣ ବେଳରେ ସାହା ହେବ ମୋର
ତୁମ ରୂପ ଦେଖାଇବ ।
ମନ ମୋ କହୁଚି ତୁମ ଦୟା ହେଲେ
ହୋଇବ ସବୁ ପୂରଣ ।
ମାଧମ ହୋଇବ ଯଦି ତୁମେ ମୋର
ନାମ କରିବି ସ୍ମରଣ ।

ଏନ ୫/୧୨୮
ଆଇ.ଆର.ସି ଭିଲେଜ, ଭୁବନେଶ୍ୱର

# ଶୁଣ ମୋ ବିନତି

**ରବି ମହାପାତ୍ର**



ଦୁଃଖ ମନେ ଭରି
ଆସିଛି ମୁଁ ପୁରୀ
ଜଗତର ନାଥ ଭରସା ଚାହିଁ
ମୁଁ ଯେ ହୀନିମାନ କରେ ନିବେଦନ
ବଡ଼ଦାଣ୍ଡେ ହାତ ପାତୁଛି ରହି ।
ଯାଏ ଦିନବେଳା ଦେଖି ଚକାଡୋଳା
ରାତି ରାତି ବଳେ ନଖ ସଳିତା
ଜଳୁଥିଲେ ଦୀପ ଭକତ ହାତରେ
ମୋ ଦୁଃଖ ଜାଣିବେ ଦିଅଁ ଦେବତା

ଅସଜଡ଼ା ସିନା ମୋ ପରାଣ ଦୀପ
ସଜାଡୁଛି ପ୍ରଭୁ ଦୀପ ସଳିତା
ନିରିମାଖିର ଏ ଦଦରା ନାବରେ
ମୋହନ ମୂରଲୀ ଆହୁଲା ଦାତା
ଦୀନବନ୍ଧୁ ହେ ମାଗୁଛି ଏତିକି
ମୋ' ରାତି ଯାଉ ସଅଳ ପାହି ।

୩୪୪/୬୭, ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର–୧୮



# ଦାସିଆ ବାଉରି

ସୂର୍ଯ୍ୟ ମିଶ୍ର

ଶାଗ ଓ ପଖାଳ
ମାଟି  କାଦୁଅର ଘର
ନାହିଁ ପିଲାପିଲିଙ୍କ ଜଂଜାଳ
କି ଦାଂପତ୍ୟର ଦାଉ, ଅବାଂତର
ନିରବ ସଂସାର
କେବଳ ନାମଟି ସାର ଜଗନ୍ନାଥଂକର ।

ଲୁହରେ ମାଖି ଶ୍ରୀଫଳ
ନାସିରେ ଗୁଂଥି ଜୀବନ ଯାତନାର
ଯାବତୀୟ ମୂଳ
ପଠାଇଦିଏ ଶ୍ରୀପୁରସ୍ତମ
ଅବିଦ୍ୟା ଅଂଧାରର ଅଗଣାରେ
ଫୁଲ ପ୍ରାୟେ ଫୁଟଂତି ତାରାଏ
ଯୋଡହାତରେ ଥରନ୍ତି ଭଗତେ ।
ବିରଳ ପ୍ରଣାମୀ
ଅଦୃଶ୍ୟରେ ଆଦରି ନିଅଂତି ହାତପାଦହୀନ ଈଶ୍ୱର,
କାନ ଡେରି ଶୁଣଂତି
ବ୍ରାହ୍ମଣ ଓଠରୁ ହଜିଯାଇଥିବା ନୈବେଦ୍ୟ ମଂତ୍ର
ନିରବ ଉଚ୍ଚାରଣରେ ଦଳିତର ।
ବାଡିଗଡିଆର ଜଳ ଭଉଁରୀରେ
ଛାଇ ପଡେ ରଥଯାତର,
ଶବ୍ଦରେ ତୋରାଣି କଂସାର
ନାଦ ମିଶେ ଘଂଟ କାହାଳୀର ।

ହାତ ଯୋଡେ ଜଣେ କୋତରା ଅଛବ
ଅଂଟିରେ ପାତି ଅଳଂକାର
ବରାଭୟ ଭକ୍ତିର, ସମର୍ପଣର ।
ଈଶ୍ୱରଂକୁ ଦାନ ଦିଆ ଯେତେ ଅଳଂକାର
ସବୁ ମହଳଣ ମୂଲ୍ୟହୀନ ବ୍ୟର୍ଥ ଆଡଂବର
ସମ୍ରାଟ ବସାଂତି ଦଳିତକୁ
ସିଂହାସନରେ ଆମ ସ୍ମୃତିକୋଷର,
ଜୀବନ ଆଗରେ ତୁଚ୍ଛ ଆମେ,
ଅଦୃଷ୍ଟର ଇଲାକାରେ ଅସ୍ତ୍ରହୀନ ଦୁଃସ୍ଥ ଅଧୀଶ୍ୱର ।
ପ୍ରମାଣ ରହେ ଚିରକାଳ-
ଜାତି ଭେଦ ଓ ସଂକୀର୍ଣ୍ଣତାର ଉପରେ
ସୂତ୍ରଟିଏ ସବୁ ମଣିଷଂକ ସମାନତାର,
ଈଶ୍ୱର ହିଁ ମହାନାୟକ ଗଣତଂତ୍ରର, ମାନବତାର,
ରାଜନୀତି ଓ ଦର୍ଶନର ଖୋଳାଯାଏ କବର,
ଘୋଷିତ ହୁଏ ଅଲିଖିତ ନିୟମଟି ଧର୍ମର ଓ ସାରା ସଂସାରର ।
ଅମୃତ ସଂତାନ ହୋଇ
ଦଳିତଟି ସବୁ କାଳେ ହାଣଇ ଆଘାତ,
ନିଃଶବ୍ଦେ ଘୋଷଣା ହୁଏ
ଆମର ତଥାକଥିତ ପ୍ରାର୍ଥନା ଓ ଅହଂକାର ଛଳନା ମିଶ୍ରିତ
ମୋଟେ ନୁହଁ ଅର୍ଥମୟ, ଆଦୌ ନୁହେଁ ସତ ।

୮୯୫/୮୯୬, ସତ୍ୟନଗର, ଭୁବନେଶ୍ୱର-୭





# ଜୀବନ ଯାଉଛି ସରି

ସନ୍ତୋଷ କୁମାର କାନୁନ୍‌ଗୋ

ଆସିଛି ଖାଲି ଯିବି ମୁଁ ଆଉ
ତୁମର ଏସବୁ ସୃଷ୍ଟି
ପ୍ରଣାମ କରୁଛି ବିନମ୍ର ଭାବରେ
ଦୁଇ ହାତ ଟେକି, ଟେକି ।
କରମ ଆଦେରି ପଡ଼ି ରହି ମୁହିଁ
ଜୀବନ ଜଞ୍ଜାଳେ ହେଲି ଋଣୀ
କେମିତି ଶୁଝିବି ଭାବିତ ପାରୁନି
ଜୀବନ ଯାଉଛି ସରି ।



ଯାହାତ ଚିନ୍ତଇ ଯାହାତ ଭାବଇ
ସବୁରି ଜଣେ ଗୋସାଇଁ
ଡ଼ାକି ଡ଼ାକି ମୁଁ ଥକିତ ଗଲିଣି
ମନତ ବୁଝିଲା ନାହିଁ ।
ମାଗିଅଛି କେତେ କାହା ପାଇଁ
ସବୁତ ଦେଇଛ ଭରି
ଆନନ୍ଦରେ ଗଡ଼ିଯାଏ ତୋ' ବେଢ଼ାରେ
ଦୁଃଖ କଷ୍ଟକୁ ପାଶୋରି ।
ସବୁରି ମନରେ ମନ୍ଦିର ରହିଛି
ସେ ଆତ୍ମାରୂପି ଠାକୁର,
ପୂଜା ଉପାସନା ଜାଣି ନାହିଁ କିଛି
କରିନାହିଁ ଉପଚାର ।

ପ୍ଲଟ ନଂ-୪୩/୧୨୫୫
କପିଳ ପ୍ରସାଦ, ଭୁବନେଶ୍ୱର-୨

# ଚେତନାର ପଥ

ନିରୁପମା କର

ଏ ଦେହ ରଥରେ ତୁମେ ହିଁ ତ ରଥୀ
ଗଢ଼େ ଜୀବନର ରଥ,
ସୁଖରେ ଦୁଃଖରେ ଭରସାର ବନ୍ଧ
ତୁମେ ପ୍ରଭୁ ଜଗନ୍ନାଥ ।
ଫୁଲରେ, କଣ୍ଟାରେ ତୁମେ ଦିଅ ଦେଖା,
ଭିତର, ବାହାର ସବୁଲାଗେ ଏକା,
ଶୟନରେ ତୁମେ, ଜାଗରଣେ ତୁମେ
ଏକା ମୋ, ଜୀବନ ବ୍ରତ
ତୁମ ପ୍ରେମେ ମଜ୍ଜି, ଆଖିଦେଲେ ବୁଜି
ଜୀବନ ଲାଗେ ପୁଷ୍ପିତ ।

ହୃଦୟକୁ ମୋର କରେ ଆମୋଦିତ
ତୁମେ ପ୍ରେମସିନ୍ଧୁ ରସ,
ମନମନ୍ଦିରର ଦେବତା ହେ ମୋର
ଚିନ୍ତା ଚେତନାର ପଥ ।
ମାଧବହେ, ତୁମେ ବାନ୍ଧବ ବେଶାରେ
ମନ୍ଦିରୁ ଆସ ବାହାରି ।
ଦେହ ସାଥେ ଦେହୀ ହୋଇ କୋଳାକୋଳି
ନବରସ ପଡ଼େ ଝରି,
ଭାବ ସମୁଦ୍ରର ଉଚ୍ଛୁଳା ସୁଅରେ
ଗଡ଼ିଚାଲେ ନନ୍ଦିଘୋଷ ।
ହୃଦସିନ୍ଧୁକେ ମୋ' ନାହିଁ ଟଙ୍କା ସୁନା
ଲୁଚାଇବି ସେଠି ତୁମକୁ ମୁଁ ସିନା

ପୂର୍ବକଚ୍ଛ, ମଧ୍ୟକଚ୍ଛ, ସାଲେପୁର, କଟକ



# କୁହ ତୁମେ ଜଗନ୍ନାଥ !

**ସ୍ନେହଲତା ପୃଷ୍ଟି**

ଜୀବନ ସରିନି କେମିତି ଗାଇବି
ଜୀବନର ଶେଷ ଗୀତ
ମାଗିଥିଲି ଯାହା ଏଯାଏଁ ପାଇନି
କେମିତି କୁହ ମୁଁ
ଫେରାଇ ନେବି ମୋ ହାତ
କୁହ କୁହ ତୁମେ ଜଗନ୍ନାଥ ।

ଭାବିଥିଲି ମୁଁ ଦୁଃଖ ସବୁ ମୋର
ତୁମ ଆଗେ ଦେବି କହି
କହିବା ଆଗରୁ ଲୁହ କହିଦେଲା
ଆଉ କିଛି ଲୋଡା ନାହିଁ ।



ରାତି ପାହି ନାହିଁ କେମିତି ଚାଲିବି
ଧରି ସକାଳର ହାତ
କୁହ ତୁମେ ଜଗନ୍ନାଥ ।

ମାଗିବା ଆଗରୁ ଯାଚିଦିଅ ବୋଲି
ଜାଣିଥିଲି ମହାବାହୁ
ମୁହଁ ଖୋଲି ପୁଣି ମାଗିବା ପରେ ବି
କୁହ କେତେ ଡେରି ଆଉ
ସପନ ସରିନି ନିଦକୁ କେମିତି
କହିବି ଭୁଲିଯା ବାଟ
କୁହ ତୁମେ ଜଗନ୍ନାଥ ।

ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଜଗନ୍ନାଥ ଶରଣ

**କିଶୋର ଚନ୍ଦ୍ର ଦାଶ**

ଶ୍ରୀକ୍ଷେତ୍ରେ ସୁନ୍ଦର ଶିରି ମନ୍ଦିରଲୋ ମନ୍ଦିରେ ଚକାନୟନ
ଶ୍ରୀମୁଖେ ଚନ୍ଦନ ହୀରାର ରତନ ଶ୍ରୀଅଙ୍ଗେ ପାଟ ବସନ
ଶ୍ରୀରଙ୍ଗ ଅଧର ଦିଶେ ମନୋହର ବାସେ ଗଜମୋତି ପାନ
ନବରତ୍ନ ହାର ଗଳାରେ ସୁନ୍ଦର ସୁନ୍ଦର କଳା ବଦନ
କଟିତଟେ ଝୁମ୍ପା ସୁନ୍ଦର ପଇତା ମଧୁର ବଇଁଶୀ ସ୍ୱନ
କି ସୁନ୍ଦର ଦିଶେ ମୟୂର ଚନ୍ଦ୍ରିକା ମୋହି ନିଏ ଭକ୍ତ ମନ
ରତନ ପଲଙ୍କ ଦେବଦାସୀ ନୃତ୍ୟ ଶୋଭା ରତ୍ନସିଂହାସନ
ଶଙ୍ଖ ଚକ୍ର ଗଦା ପଦ୍ମୁଆଁ ସୁନ୍ଦର ଚିତା ଦିଶେ ଶୋଭାବନ
ବାରମାସେ ତେର ଯାତରା ତୁମର କଳନା ନାହିଁ ସୁବର୍ଣ୍ଣ
ଦଶ ଅବତାର ଅତି ମନୋହର ନାନା ବେଶ ଶୋଭାବନ
ନାନା ରୂପ ନେଇ ଆସନ୍ତି ଓଲ୍ଲାଇ ସ୍ୱର୍ଗରୁ ଦେବତାଗଣ
ଭକ୍ତ ମୁନି ଋଷି ଶ୍ରୀମନ୍ଦିର ଆସି କରନ୍ତି ତବ ଦର୍ଶନ
ମୁହିଁ ଦୁଃଖୀଜନ ହେ ଦୁଃଖ ଭଞ୍ଜନ କୋଟି ପ୍ରଣାମ ମୋ ଘେନ
ତୁମ ଚରଣରେ ଶରଣ ରଖ ହେ ନମୋ ନମଃ ନାରାୟଣ ।

ଡାଇରୀ ଅଧ୍ୟକ୍ଷକ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର





# ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀ

ଉର୍ମିଳା ମିଶ୍ର

ଉତ୍କଳୀୟ ସଂସ୍କୃତିର ପ୍ରାଣପିଣ୍ଡ ଶ୍ରୀଜଗନ୍ନାଥ କେବଳ ଓଡିଆ ଜାତିର ନୁହେଁ, ସେ ହେଉଛନ୍ତି ସମଗ୍ର ପୃଥିବୀର ଆରାଧ୍ୟ ଦେବତା । ସେ ସ୍ୱୟଂ କୃଷ୍ଣ ଏବଂ ବିଷ୍ଣୁ ଓ ସମସ୍ତ ଦେବାଦେବୀଙ୍କର ଗୁଣ ତାଙ୍କରିଠାରେ ହିଁ କେନ୍ଦ୍ରିଭୁତ । ମହାପ୍ରଭୁ ଯଥାର୍ଥରେ ସମସ୍ତଙ୍କ ଉର୍ଦ୍ଧ୍ୱରେ ।



ଓଡିଶା ଭୂଖଣ୍ଡର ପରିଚୟ ଶ୍ରୀଜଗନ୍ନାଥ । ଓଡିଆ ଜାତିର ଓଡିଆ ସାହିତ୍ୟ ଓ ସଂସ୍କୃତିର ମୂଳପିଣ୍ଡ ଶ୍ରୀଜଗନ୍ନାଥ । ସ୍ମରଣାତୀତ କାଳରୁ ଦୃଶ୍ୟମାନ ଜଗତକୁ ଅଗଣିତ ନକ୍ଷତ୍ରକୁ ସ୍ୱ ଗର୍ଭରେ ଧାରଣ କରିଥିବା ସର୍ବବ୍ୟାପି ଦିବ୍ୟ ପୁରୁଷ ହେଲେ ସଚ୍ଚିଦାନନ୍ଦ ପରଂବ୍ରହ୍ମ । ସେ ଅଦ୍ୱିତୀୟ ଓ ମନ ବୁଦ୍ଧିର ଅଗୋଚର । ସେ ସକଳ ଘଟରେ ବ୍ରହ୍ମ ବା ଆତ୍ମା ରୂପେ ବିରାଜିତ । ଏ ସୃଷ୍ଟିରେ ଜୀବ ଓ ବ୍ରହ୍ମ ଏକ ଓ ଅଭିନ୍ନ । ସନ୍ଥ ଗୋସ୍ୱାମୀ ତୁଳସୀ ଦାସ - ବ୍ରହ୍ମଙ୍କ ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି-

'ବିନୁପଦ ଚଲଇ ସୁନଇ ବିନୁ କାନା
କର ବିନୁ କରମ କରଇ ବିଧି ନାନା'

ଏଥିରୁ ହୃଦବୋଧ ହୁଏ ଯେ, ବିନା ପାଦରେ ଯେ ଚାଲି ପାରନ୍ତି, କାନ ବିନା ଶ୍ରବଣ କରିପାରନ୍ତି ଓ ବିନା ହସ୍ତରେ କର୍ମ କରିପାରନ୍ତି, ସେହି ପରଂବ୍ରହ୍ମ ନୀଳାଚଳ ଧାମରେ ହିଁ ଅଧିଷ୍ଠିତ । ବିଶ୍ୱ ବ୍ରହ୍ମାଣ୍ଡରେ ହିନ୍ଦୁ ଶାସ୍ତ୍ରାନୁମୋଦିତ ପବିତ୍ର ତଥା ଅମୂଲ୍ୟ ପ୍ରସାଦ ଦେଉଛି ମହାପ୍ରସାଦ । ଏହି ମହାପ୍ରସାଦର ମହାତ୍ମ୍ୟ ଅସାଧାରଣ । ଏହାକୁ ଯେଉଁ ଭକ୍ତ, ଭକ୍ତି ବିଶ୍ୱାସରେ ପାଇଥାଏ, ତାହାର ଜନ୍ମ ଜନ୍ମାନ୍ତର ପାପ ତାପ ଧ୍ୱଂସ ହୋଇଯାଇଥାଏ । ବିଶ୍ୱବନ୍ଦିତ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ରଥଯାତ୍ରା ଅନ୍ୟତମ । ଓଡିଆ ଘରେ ବାରମାସରେ ତେର ପର୍ବ ନ୍ୟାୟରେ ନୀଳାଚଳର ଏହି ରଥଯାତ୍ରା ସର୍ବପ୍ରଧାନ ଉତ୍ସବ । ରଥତତ୍ତ୍ୱ ମଧ୍ୟ ବୈଦିକ ଯୁଗର ଭାବନା ଉପରେ ପର୍ଯ୍ୟବସିତ । ଶ୍ରୀଜଗନ୍ନାଥ ହିଁ ଦାରୁବ୍ରହ୍ମ ଓ ତାଙ୍କ ରଥ ମଧ୍ୟ ଦାରୁରେ ତିଆରି ହୋଇଥାଏ । ଏହି ଶରୀରକୁ ମଧ୍ୟ ରଥ ସହ ତୁଳନା କରାଯାଇଛି । ଏହି ଶରୀର ରୂପକ ରଥରେ ଆତ୍ମା ହେଉଛି ସାରଥୀ । ମନ ହେଉଛି ରଜ୍ଜୁ ଏବଂ ଇନ୍ଦ୍ରିୟଗୁଡିକ ଘୋଡା ସ୍ୱରୂପ । ଶ୍ରୀଜଗନ୍ନାଥଙ୍କ ରଥ ଉପରେ ପରମାତ୍ମା ସ୍ୱରୁପ ଶ୍ରୀଜଗନ୍ନାଥ ଯେପରି ସବାର ଅଟନ୍ତି ଠିକ୍ ସେହିପରି ଶରୀର ରୂପକ ରଥରେ ଆତ୍ମା ମଧ୍ୟ ସବାର ଅଟନ୍ତି ।

ଏହି ରଥଯାତ୍ରାର ମୂଳତତ୍ତ୍ୱ ପରମ ମଙ୍ଗଳମୟ ପରମେଶ୍ୱର ଶ୍ରୀଜଗନ୍ନାଥଙ୍କୁ ଯେଉଁମାନେ ରଥ ଉପରେ ଦର୍ଶନ କରିଥାନ୍ତି, ସେମାନେ ବିଷ୍ଣୁଙ୍କ ଚରଣକମଳରେ ଲୀନ ହୋଇଥାନ୍ତି । ସେମାନଙ୍କର ପୁନର୍ଜନ୍ମ ନଥାଏ । ସେଥିପାଇଁ ଶାସ୍ତ୍ରରେ କୁହାଯାଇଛି - 'ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।' ଏହି ମତଟିରେ ଦୃଢ ବିଶ୍ୱାସ ରଖି ଲକ୍ଷ ଲକ୍ଷ ଭକ୍ତ



ଶ୍ରୀକ୍ଷେତ୍ରକୁ ରଥଯାତ୍ରା ଦେଖିବାକୁ ଆସିଥାନ୍ତି । ଭକ୍ତମାନେ ଆତ୍ମହରା ହୋଇ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକାଠି ହୋଇ ପରମାତ୍ମାଙ୍କୁ ଦର୍ଶନ କରନ୍ତି ବା ଏକ ରଥରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ବୈଚିତ୍ର୍ୟକୁ ଦର୍ଶନ କଲେ ତା'ର ମାନବ ଜୀବନ ଧନ୍ୟ ହୋଇଯାଏ ।

ଓଡ଼ିଆ ଚେତନାରେ ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତର ପିତା ଏବଂ ମା' ମହାଲକ୍ଷ୍ମୀ ଜଗତର ଜନନୀ ଭାବେ ବିଶ୍ୱ ବନ୍ଦିତ ହୋଇଛନ୍ତି । ଜଗଦ୍‌ଜନନୀ ମା' ମହାଲକ୍ଷ୍ମୀ ଓଡ଼ିଆ ପରମ୍ପରାରେ ଶ୍ରୀମନ୍ଦିରରେ ଓଡିଆ ଘରର କୁଳବଧୂ ରୂପେ ଅଧିଷ୍ଠାନ ପୂର୍ବକ ଓଡିଆ ସଂସ୍କୃତିର ରକ୍ଷାକାରିଣୀ ଭୂମିକା ମଧ୍ୟ ନିର୍ବାହ କରନ୍ତି । ଓଡିଆ ଚେତନାର ବିଶ୍ୱାସରେ ମା' ମହାଲକ୍ଷ୍ମୀ ହେଉଛନ୍ତି ଅନ୍ନଦାତ୍ରୀ । ମା' ପ୍ରତି ଗୁରୁବାରରେ ପଡିଦାନ କରିବା ପାଇଁ ନଗର ଭ୍ରମଣ କରିଥାନ୍ତି । ଏହି ବିଶ୍ୱାସରେ ପ୍ରତ୍ୟେକ ଗୁରୁବାରରେ ଓଡିଆ ପରିବାରରେ ଘରଦ୍ୱାର ଲିପି ପୋଛି ଶୁକ୍ଳ ବସ୍ତ୍ର ପରିଧାନ କରି ମା' ଲକ୍ଷ୍ମୀଙ୍କର ପୂଜାର୍ଚ୍ଚନା କରିଥାନ୍ତି । ମାର୍ଗଶିର ମାସ ଗୁରୁବାରରେ ମାଣବସା ଓଷା ପାଳନ କରିଥାନ୍ତି । ମାଣବସା ଓଷାରେ ଓଡିଆ ଘରର ଘରଣୀ ଘରଦ୍ୱାର ଲିପିପୋଛି ଝୋଟି ଚିତା ପକାଇ ଆସ୍ଥାନରେ ନୂଆମାଣରେ ଧାନ ଗୁଆ ଓ ଶ୍ରୀମହାଲକ୍ଷ୍ମୀଙ୍କୁ ବସାଇ ଆବାହନ କରି ମା' ଲକ୍ଷ୍ମୀଙ୍କୁ ଷୋଡଶ ଉପଚାରରେ ପୂଜାର୍ଚ୍ଚନା କରିଥାନ୍ତି । ପୁରାଣ ବର୍ଣ୍ଣନା ଅନୁସାରେ ଶ୍ରୀ ମହାଲକ୍ଷ୍ମୀ ଜାତି ଭେଦ ଉଠାଇ ଦେଇ ଶ୍ରୀମନ୍ଦିରରୁ ଦୀନହୀନ ଅକଞ୍ଚିନ ଶ୍ରୀୟା ଚଣ୍ଡାଳୁଣୀର ପୂଜା ଆସ୍ଥାନକୁ ଓହ୍ଲାଇ ଆସି ଭକ୍ତିଭାବରେ ପୂଜା ଗ୍ରହଣ କରିଥାନ୍ତି । ଏପରି କାର୍ଯ୍ୟ କଳାପ ଦେଖି ଶ୍ରୀ ମହାଲକ୍ଷ୍ମୀଙ୍କର ଦେଢଶୁର ବଳଭଦ୍ର ମହାଲକ୍ଷ୍ମୀଙ୍କୁ ଧିକ୍କାର କରି ଚାଣ୍ଡାଳୁଣୀ କହି ଶ୍ରୀମନ୍ଦିରରୁ ବାହାର କରିଦେଲେ, ଯାହା ଫଳରେ କି ଶ୍ରୀମହାଲକ୍ଷ୍ମୀ ମଧ୍ୟ ରାଗିଯାଇ ଦୁଇଭାଇଙ୍କୁ ଅଭିଶାପ ଦେଇ କହିଲେ –

'ମୁହିଁ ଚାଣ୍ଡାଳୁଣି ଯେବେ ଟେକିଦେବି ଅନ୍ନ
ମଣୋହି କରିବେ ପ୍ରଭୁ କାଳିଆ ଗଞ୍ଜନ'



ଶ୍ରୀମହାଲକ୍ଷ୍ମୀଙ୍କର ଅଭିଶାପରେ ଜଗନ୍ନାଥ, ବଳଭଦ୍ର ଲକ୍ଷ୍ମୀଛଡା ହୋଇ ଅନ୍ନ ଜଳ ନପାଇ ବାରବର୍ଷ ବୁଲିଲେ । ପରିଶେଷରେ ଜଗନ୍ନାଥ ଓ ବଳଭଦ୍ର ସବୁଠାରୁ ହତାଶ ହୋଇ ଭିକ୍ଷା ମାଗି ଅଜ୍ଞାତରେ ମହାଲକ୍ଷ୍ମୀଙ୍କ ଦ୍ୱାରା ପ୍ରସ୍ତୁତ ଅନ୍ନ ବ୍ୟଞ୍ଜନ ମଣୋହୀ ସେବନ କରି ପରମାନନ୍ଦ ଲାଭ କରିଥିଲେ । ଭୋଜନ ଶେଷରେ ପୋଡପିଠା ଖାଇ ଦୁଇଭାଇ ମହାମାୟୀ ମହାଲକ୍ଷ୍ମୀଙ୍କର ହାତଧରି କ୍ଷମା ମାଗିଥିଲେ । ଏହି ସୁଯୋଗରେ ଶ୍ରୀମହାଲକ୍ଷ୍ମୀ ଜାତି ବର୍ଣ୍ଣର ଭେଦାଭେଦ ଦୂର କରିବା ନିମିତ୍ତ ମହାପ୍ରଭୁଙ୍କୁ ସତ୍ୟ କରାଇଥିଲେ –

'ହାଡି ହାତରୁ ବ୍ରାହ୍ମଣ ଛଡାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ
ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡଦେଉଳକୁ ଯିବି ଜଗନ୍ନାଥ' ।

ପ୍ରଭୁ ଶ୍ରୀଜଗନ୍ନାଥ ଓ ଦେଢଶୁର ପ୍ରଭୁ ଶ୍ରୀବଳଭଦ୍ର ମଧ୍ୟ ମା' ମହାଲକ୍ଷ୍ମୀଙ୍କ ସର୍ତ୍ତରେ ରାଜି ହୋଇଥିବାରୁ ଶ୍ରୀମହାଲକ୍ଷ୍ମୀ ବଡଦେଉଳକୁ ବିଜେ କଲେ । ସେହିଦିନଠାରୁ ମଧ୍ୟ ବଡ



ଦେଉଳରେ ଜାତି ଧର୍ମ ସବୁର ଉର୍ଦ୍ଧ୍ୱରେ ରହି ଶ୍ରୀଜଗନ୍ନାଥ ଚେତନା ଭକ୍ତମାନଙ୍କୁ ଉଦ୍ଧାର କରିବାରେ ଲାଗିଛି । ଶ୍ରୀକ୍ଷେତ୍ରରେ ଜାତି ବର୍ଣ୍ଣର ଭେଦଭାବ ଲୋପ ପାଇଯାଇଛି । ଓଡିଆ ପରମ୍ପରାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ବାରମାସରେ ତେରପର୍ବ ପାଳନ କରାଯାଉଛି । ଓଡିଆ ଜାତୀୟ ଜୀବନର ଚିନ୍ତା ଓ ଚେତନାରେ ଶୟନେ ସପନେ କିମ୍ବା ଜାଗରଣେ ଶ୍ରୀଜଗନ୍ନାଥଙ୍କ ସ୍ମୃତି ଅନୁଭୂତ ହୋଇଥାଏ । ବ୍ରହ୍ମ ବିଚାରରେ ପରଂବ୍ରହ୍ମ ଅବ୍ୟକ୍ତ, ନିରାକାର, ଅଚିନ୍ତ୍ୟ, ଅଜ୍ଞେୟ ଓ ଅବର୍ଣ୍ଣନୀୟ ହେଲେ ମଧ୍ୟ ଓଡିଆ ଚେତନାରେ ଶଙ୍ଖ ଚକ୍ରଧାରୀ ଦେହଧାରୀ ମନୁଷ୍ୟ ସଦୃଶ୍ୟ ଓଡିଆ ଜାତି ଶ୍ରୀଜଗନ୍ନାଥଙ୍କୁ ଅତି ନିଜର ଓ ଆପଣାର ବୋଲି ମନେକରି ତାଙ୍କୁ ନିଜ ଭିତରେ ଦେଖେ ଓ ଅନୁଭବ କରେ । ଏଣୁ ମହାପ୍ରଭୁ ହେଉଛନ୍ତି ଓଡିଆ ଜାତିର ପ୍ରାଣ । ସେହି ଜଗତର ନାଥ ମହାପ୍ରଭୁଙ୍କୁ ନିରନ୍ତର ଚିନ୍ତନ ମନନ କଲେ ଦେହ, ମନ ପବିତ୍ର ହୋଇଯାଏ ଓ ସମସ୍ତ ବିକାର କ୍ଷୟ ହୋଇଯାଏ ।

ଯେପରିକି ଗଙ୍ଗାରେ ସ୍ନାନ, ଗୟାରେ ପିଣ୍ଡଦାନ ଓ ନୀଳାଚଳରେ ନୀଳାଦ୍ରିନାଥଙ୍କୁ ଦର୍ଶନ କଲେ ମନୁଷ୍ୟ ମୁକ୍ତିଲାଭ କରେ ଠିକ୍ ସେହିପରି ରଥଯାତ୍ରା ସମୟରେ ରଥ ଉପରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ସ୍ୱର୍ଗପ୍ରାପ୍ତି ହୁଏ । କାରଣ ଜଗତର ନାଥ ଶ୍ରୀଜଗନ୍ନାଥ ଆମ ସମସ୍ତଙ୍କର ପ୍ରାଣର ପ୍ରାଣ ଓ ପ୍ରାଣର ଅଧୀଶ୍ୱର ଅଟନ୍ତି ।

ଶ୍ରୀଜଗନ୍ନାଥଙ୍କର ଏହି ବିଶ୍ୱପ୍ରସିଦ୍ଧ ରଥଯାତ୍ରା ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୋଇଥାଏ । ଭାରତୀୟ ଆଧ୍ୟାତ୍ମିକ ଭାବଧାରାକୁ ଭିତ୍ତିକରି ତିନି ରଥରେ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ଯାତ୍ରାକୁ ସମ୍ପନ୍ନ କରିଥାନ୍ତି । ଏସବୁ ସତ୍ତ୍ୱେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଗୋଟିଏ ପ୍ରମୁଖ ବିଶେଷତ୍ୱ ହେଉଛି– ଏହି ଯାତ୍ରାରେ ମହାପ୍ରଭୁ ଭକ୍ତମାନଙ୍କ ନିକଟକୁ ହିଁ ଆସିଥାନ୍ତି । ସେତେବେଳେ ଜାତି, ଧର୍ମ ଓ ବର୍ଣ୍ଣର କିଛି ବି ବାଛ ବିଚାର ରହେ ନାହିଁ । ଜଗତର ନାଥ ଶ୍ରୀଜଗନ୍ନାଥ ସକଳ ପ୍ରାଣୀମାନଙ୍କ ଘଟରେ ବିରାଜମାନ । ଆତ୍ମା ରୂପୀ ଜଗନ୍ନାଥ ଏହି ଶରୀର ରୂପକ ରଥର ରଥି । ଶରୀର ରୂପକ ରଥ ହିଁ ଚଳନ୍ତି ନନ୍ଦିଘୋଷ । ଏହି ରଥର ସାରଥି ଆତ୍ମା, ମନ ହେଉଛି ଏହି ରଥର ଲଗାମ । ଇନ୍ଦ୍ରିୟମାନେ ଏହି ରଥରେ ଯୋଚା ହୋଇଥିବା ଚାରୋଟି ଅଶ୍ୱ ଯଥା – କର୍ମ, ଜ୍ଞାନ, ଭକ୍ତି ଓ ଧ୍ୟାନ ଯୋଗରେ ରଥ ଟାଣି ନେବାରେ ସହଯୋଗ କରୁଛନ୍ତି ।

ସଂସାର ରୂପକ ଦରିଆରେ ଜୀବନ ନାଆଟି ସର୍ବଦା ଟଳମଳ । ଏହି ଜୀବନ ନାଆର ନାଉରୀ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ । ସେ ହେଉଛନ୍ତି ବଡ ଦୟାଳୁ, ତାଙ୍କ ନିକଟରେ ସମସ୍ତେ ସମାନ । ତାଙ୍କର କରୁଣା ବିନା କିଛି ବି ସମ୍ଭବ ନୁହେଁ । ଏହି ଭବସାଗରରୁ ପାରି ହେବାକୁ ହେଲେ ତାଙ୍କର ଅପାର କରୁଣାର ଆବଶ୍ୟକତା ରହିଛି । ସେ ଚାହିଁଲେ ନିମିଷକରେ ଆମେ ମୁକ୍ତ ହୋଇପାରିବା । ଏଣୁ ପ୍ରଭୁଙ୍କୁ ନିରନ୍ତର ଆରାଧନା, ସତ୍ୟାଚାର, କର୍ମନିଷ୍ଠ, ଧ୍ୟାନଧାରଣା ଓ ତପସ୍ୟାର ନିତାନ୍ତ ପ୍ରୟୋଜନ ରହିଛି, କାରଣ, ଶ୍ରୀଜଗନ୍ନାଥ ହେଉଛନ୍ତି ଆମମାନଙ୍କ ପ୍ରାଣର ପ୍ରାଣ ଓ ପ୍ରାଣାଧୀଶ୍ୱର, ତାଙ୍କ ବିନା ସବୁ ନିରର୍ଥକ ।

ମାର୍ଫତ୍ – ଶ୍ରୀଚରଣ ମିଶ୍ର
ଗ୍ରାମ/ପୋ– ମହୁଲିଆ
ଭାୟା – ବଡମ୍ବା, ଜିଲ୍ଲା – କଟକ





# ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତା

ଡକ୍ଟର ଗୋପାଳ ଚନ୍ଦ୍ର ବାରିକ

ହିନ୍ଦୁ ପରମ୍ପରାରେ ଜଗନ୍ନାଥ ସଂସ୍କୃତି ଓତପ୍ରୋତ ଭାବେ ଜଡିତ । ଓଡ଼ିଶାର ସଂସ୍କୃତି, ସାହିତ୍ୟ, ଧର୍ମବିଶ୍ୱାସ, ଆଚାର ବିଚାରରେ ଜଗନ୍ନାଥ ସଂସ୍କୃତି ନିହିତ । ଗୋଟିଏ ଜାତିର ଚିନ୍ତା, ଚେତନା, ଭାବ, ଅନୁଭବ, ଆବେଗ, ମୂଲ୍ୟବୋଧ ମହତ ଲକ୍ଷ୍ୟ କାର୍ଯ୍ୟଧାରା, ବୃତ୍ତି, ପ୍ରବୃତ୍ତି ସାଫଲ୍ୟ ଓ ବିକାଶର ଧାରା ହିଁ ସଂସ୍କୃତି । ସଂସ୍କୃତି ହେଉଛି ମାନବ ସଭ୍ୟତାର ପ୍ରାଣ ଓ କେନ୍ଦ୍ରବିନ୍ଦୁ । ଜାତିର ଜୀବନଯାପନ ଧାରା ରୁଚି ସମ୍ପନ୍ନ ଓ ମାର୍ଜିତ ହେଲେ ସଂସ୍କୃତିର ଅଭ୍ୟୁଦୟ ଘଟେ ତଥା ଭାଷା, ସାହିତ୍ୟ, କଳା, ଶିଳ୍ପ, ସ୍ଥାପତ୍ୟ, ନୃତ୍ୟ ସଂଗୀତ ଓ ଦର୍ଶନ ପ୍ରଭୃତିରେ ଏହାର ପରିପ୍ରକାଶ ଘଟିଥାଏ । ସଂସ୍କୃତି ସହିତ ଧର୍ମ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲେ ସଭ୍ୟତା ଉନ୍ନତ ହୋଇ ସମାଜ ସମୃଦ୍ଧ ହୁଏ ।

ବିଶ୍ୱର ସକଳ ଧର୍ମଶାସ୍ତ୍ରର ସାରତତ୍ତ୍ୱ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ । ଏହି ସଂସ୍କୃତି କୌଣସି ଧର୍ମଧାରାରେ ସୀମାବଦ୍ଧ ନୁହେଁ । ପ୍ରାଗ୍ ବୈଦିକ କାଳରୁ ଦିବ୍ୟ ନୀଳାଚଳରେ ଦାରୁ ଉପାସନାର ପ୍ରବହମାନ ଧାରା ସମ୍ପର୍କରେ ଋଗ୍‌ବେଦରେ ଉଲ୍ଲେଖ ଅଛି ବୋଲି ବହୁ ସାଧୁ ସନ୍ଥମାନେ ପ୍ରମାଣିତ କରିଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ପ୍ରାଗ୍‌ବୈଦିକ ସଂସ୍କୃତି । ନିର୍ଗୁଣ ନିରାକାର ପରଂବ୍ରହ୍ମ ସଗୁଣ ସାକାର ଦାରୁ ରୂପରେ ପୂଜା ପାଇ ବିଶ୍ୱର ପ୍ରଥମ ସାକାର ଦେବତାର ଆସନ ଲାଭ କରିଅଛି । ସେହି ଦାରୁ ଉପାସନାରୁ ଜନ୍ମ ନେଲା ଜଗନ୍ନାଥ ସଂସ୍କୃତି । ଆଧାତ୍ମିକତାର ସୌରଭରେ ପ୍ରଫୁଲିତ ତଥା ଆଧାତ୍ମିକ ସ୍ପନ୍ଦନରେ ଉଦ୍‌ଫୁଲିତ ସେହି ସଂସ୍କୃତିର ଆଚାର ବିଚାର, ପରମ୍ପରା ଜନଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇଗଲା । ସାମାଜିକ ଓ ଅର୍ଥନୈତିକ ଜୀବନ ସହିତ ଧାର୍ମିକ ଓ ସାଂସ୍କୃତିକ ଜୀବନର ସମନ୍ୱୟରେ ଏହି ସଂସ୍କୃତି ମାନବୀୟ ପ୍ରଜ୍ଞାର ଉତ୍ତରୋତ୍ତର ଅଭିବୃଦ୍ଧି ଘଟାଇଲା । ମାନବ ସମାଜର ଜୀବନ ଚର୍ଯ୍ୟାକୁ ସରସ ସୁନ୍ଦର, ସମୃଦ୍ଧ, ସୃଜନଶୀଳ ଓ ପରିପୂର୍ଣ୍ଣ କରି ବିଶ୍ୱରେ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରି ପାରିଥିଲା ।

ଜାତି, ବର୍ଣ୍ଣ ସମ୍ପ୍ରଦାୟ ଭେଦରେ ତାହା ବିଭାଜିତ ନହୋଇ ଚିନ୍ତନଠାରୁ ବ୍ୟବହାରିକ ଜୀବନ ତଥା ମାନବୀୟ ସମ୍ବେଦନାଠାରୁ ସମଷ୍ଟିଗତ ଏକତାକୁ ଆଧାର କରି ଏହି ସଂସ୍କୃତି ସଂପ୍ରସାରିତ ହୋଇଥିଲା । ମହନୀୟତା ହେଉଛି ଏହି ସଂସ୍କୃତିର ଉନ୍ମେଷ ସ୍ଥଳୀ । ଦିବ୍ୟ ନୀଳାଚଳର ପବିତ୍ର ବାଲୁକାରେଣୁ ସ୍ପର୍ଶ କଲାମାତ୍ରେ ସଭିଏଁ ଜଗନ୍ନାଥ ସଂସ୍କୃତିର ମହା ସାଗରରେ ଆପଣାକୁ ହଜାଇ ଦେଇଥାଆନ୍ତି । ଶ୍ରୀଜଗନ୍ନାଥଙ୍କ ନାମ ଓ ଧାମକୁ ଆଧାର କରି ପୃଥିବୀର ଏହି ପ୍ରାଚୀନତମ ସଂସ୍କୃତି ବିକଶିତ ହୋଇଥିଲା । ପୁରୁଷୋତ୍ତମ ଚେତନା ସହିତ ବିକଶିତ ବୈଶିଷ୍ଟ୍ୟ ଦ୍ୱାରା ଅଭିପୂରିତ ଜୀବନଶୈଳୀ ଜଗନ୍ନାଥ ସଂସ୍କୃତି ନାମରେ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କଲା । ପ୍ରାଥମିକ ପର୍ଯ୍ୟାୟରେ ଏହା ପୁରୁଷୋତ୍ତମ କ୍ଷେତ୍ରରେ ଜନ୍ମ ନେଇଥିଲେ ହେଁ ପରବର୍ତ୍ତୀ କାଳରେ ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । ତେଣୁ କୁହାଯାଏ ଜଗନ୍ନାଥ ସଂସ୍କୃତି ହେଉଛି ବିଶ୍ୱର ପ୍ରାଚୀନତମ ସଂସ୍କୃତି । ତପୋନିଷ୍ଠ ମହାତ୍ମାଙ୍କ ମୁଖରୁ ବେଦ ନିସୃତ ହେବାର ବହୁ ପୂର୍ବରୁ ଶ୍ରୀଜଗନ୍ନାଥ ସଂସ୍କୃତି ଲୋକ ଲୋଚନରେ ପ୍ରସାରିତ ହୋଇ ସାରିଥିଲା ।

ଧର୍ମଶାସ୍ତ୍ରକୁ ଟିକିନିଖି ନିରୀକ୍ଷଣ କଲେ ଜଣାଯାଏ ଏହାର ସାରତତ୍ତ୍ୱ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ ଅଥଚ



ଏହି ସଂସ୍କୃତି କୌଣସି ଧର୍ମଧାରାରେ ସୀମାବଦ୍ଧ ନୁହେଁ । ଜଗନ୍ନାଥ  ସଂସ୍କୃତିରେ କୌଣସି ପ୍ରକାର ସଂକୀର୍ଣ୍ଣତା ନାହିଁ । ଏହା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗକାରୀ ସେତୁ । ଏହାର ମୂଳତତ୍ତ୍ୱ ଅପରିବର୍ତ୍ତିତ ରହିଛି । ପରିଣାମ ସ୍ୱରୂପ ବିଶ୍ୱର ସକଳ ସଂସ୍କୃତି ମଧ୍ୟରେ ଏହା ସମନ୍ୱୟ ପ୍ରତିଷ୍ଠା କରିପାରିଛି । ଜଗନ୍ନାଥ ସଂସ୍କୃତିରେ ଏକତା, ସମାନତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଭ୍ରାତୃତ୍ୱର ବାଣୀ ଅତି ସୁସ୍ପଷ୍ଟ । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ସମଗ୍ର ମାନବ ଜାତିର ବିଭିନ୍ନ ରଙ୍ଗର ନିଦର୍ଶନ । ସେଥିପାଇଁ ଜଗନ୍ନାଥ ସଂସ୍କୃତି ହେଉଛି ସାର୍ବଜନୀନ ସଂସ୍କୃତି ।

ଏକତା ସମାନତା ଓ ବିଶ୍ୱଭ୍ରାତୃତ୍ୱ ଏହାର ପରମ ଲକ୍ଷ୍ୟ । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ହେଉଛି ପ୍ରତୀକାତ୍ମକ, ଯାହା ସମଗ୍ର ବିଶ୍ୱବାସୀଙ୍କ ନିକଟରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱ ପ୍ରତିଷ୍ଠା କରି ଆସୁଅଛି । ଏହି ପୁରୋଦୃଷ୍ଟିରେ ଜଗନ୍ନାଥ ସଂସ୍କୃତି କେବଳ ଜନହିତୈଷୀ ସଂସ୍କୃତି ନୁହେଁ, ଏହା ବିଶ୍ୱହିତୈଷୀ ସଂସ୍କୃତି । ଏହି ସଂସ୍କୃତି ବିଶ୍ୱର ମଙ୍ଗଳ ଉପରେ ପ୍ରାଧାନ୍ୟ ଦିଏ  ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଗଣମହୋତ୍ସବର ସଂସ୍କୃତି କହିଲେ ଭୁଲ ହେବନି ? ଏହି ଗଣମହୋତ୍ସବ ମାନବବାଦର ସାକାର ରୂପ ବିଶ୍ୱ ସଂସ୍କୃତିର ପରିଚାଳକ । ସାମ୍ୟ, ମୈତ୍ରୀ, ପ୍ରୀତି, ଶାନ୍ତି, ସଂହତି ଓ ସଂପ୍ରୀତି ଏହି ଗଣ ମହୋତ୍ସବରେ ଏକ ପରିଭାଷା ।

ଏମିତି ଦେଖି ବସିଲେ ଜଗନ୍ନାଥ ସଂସ୍କୃତିର ସମିଶ୍ରଣ ମାନବ ଜୀବନର ପ୍ରତ୍ୟେକ ସଂସ୍କୃତି ସହିତ ଜଡିତ । ଯେମିତି ନୃତ୍ୟ, ସଂଗୀତ, ସାହିତ୍ୟ, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ହେଉଛି ସଂସ୍କୃତିର ଅନ୍ତରଙ୍ଗ ବିଭବ । ବିଶେଷତ୍ୱ ହେଉଛି ଯୁଗଯୁଗ ଧରି ଏହି ଅନ୍ତରଙ୍ଗ ବିଭବ ସମୂହ ବିଶ୍ୱ ଜନମାନସଙ୍କୁ ଆକର୍ଷିତ କରି ଜଗନ୍ନାଥ ସଂସ୍କୃତି ସହିତ ଜନଜୀବନକୁ ଅଙ୍ଗାଙ୍ଗୀ ଭାବରେ ଜଡିତ କରିପାରିଛି । ଶ୍ରୀଜଗନ୍ନାଥଙ୍କଠାରେ ନିତ୍ୟ ସମାହିତ ତିନିଧୂପ, ପାଂଚ ଅବକାଶ ରୀତିରେ ପୂଜା, ନୈମିତିକ ପର୍ବପର୍ବାଣି ଓ ବାର ମାସରେ ତେରଯାତ୍ରା ଜଗନ୍ନାଥ ସଂସ୍କୃତିକୁ ସୁସଂଗଠିତ କରିପାରିଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ସଂଗଠିତ ପ୍ରତ୍ୟେକ ପର୍ବପର୍ବାଣି ଓ ଯାନିଯାତ୍ରା ସଭିଙ୍କ ଭିତରେ ସଂପ୍ରୀତି, ମାନବିକତା, ଗୋଷ୍ଠୀଗତ ଐକ୍ୟ ଓ ଆଧ୍ୟାତ୍ମିକ ଚେତନାକୁ ସୁଦୃଢ କରିପାରିଛି । ସେଥିପାଇଁ ଆଜି ଶ୍ରୀଜଗନ୍ନାଥ ସଂସ୍କୃତିକୁ ବିଶ୍ୱ ସଂସ୍କୃତିରେ ରୂପାନ୍ତରିତ କରିପାରିଛି । ବିଭିନ୍ନତା ଭିତରେ ଏକତା ଆଣି ମାନବ ସମାଜରେ ମଙ୍ଗଳ ସାଧନା କରିବାରେ ଏବଂ ସଂହତି ସ୍ଥାପନ କରିବାରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ସକଳ ଦାର୍ଶନିକ ଚିନ୍ତା ଓ ଚେତନାର ସମିଶ୍ରଣ ଘଟି ସମନ୍ୱୟର ମହାଭାବ ସୃଷ୍ଟି ହୋଇଛି । ଏହି ସଂସ୍କୃତିର ବଡଦାଣ୍ଡରେ ସମସ୍ତେ ସମାନ । ଚଣ୍ଡାଳରୁ ବ୍ରାହ୍ମଣ ଯାଏଁ ସମସ୍ତେ ଗୋଟିଏ ପତ୍ରରେ ମହାପ୍ରସାଦ ସେବନ କରନ୍ତି । ମୁଣ୍ଡରେ ବୋଲି ଜୟ ଜଗନ୍ନାଥ କହି ଆନନ୍ଦରେ ନାଚି ଉଠନ୍ତି । ଏ ହେଉଛି ଆମର ରୀତି ନୀତି, ସଂସ୍କୃତି ଆଉ ମହନୀୟତା ।

---

ଶ୍ରୀରାମ ନଗର, ମଧୁପାଟଣା, କଟକ





# ଭକ୍ତ କଳ୍ପଦ୍ରୁମ, ପୂର୍ଣ୍ଣବ୍ରହ୍ମ, ଶ୍ରୀଜଗନ୍ନାଥ ସଚ୍ଚିଦାନନ୍ଦ ବିଗ୍ରହ

ପଣ୍ଡିତ ଅକ୍ଷୟ କୁମାର ପତି



ନୀଳାଦ୍ରିରେ, ଶଙ୍ଖକ୍ଷେତ୍ର ମଧ୍ୟରେ, ଶତଦଳ କମଳ ଉପରେ, ନୂତନ ମେଘସଦୃଶ କମନୀୟ କାନ୍ତିଯୁକ୍ତ ଶ୍ରୀଜଗନ୍ନାଥ, କାଳିଆ ଠାକୁର, ସମସ୍ତ ପ୍ରକାର ଅଳଙ୍କାରରେ ବିଭୂଷିତ ହୋଇ ରତ୍ନସିଂହାସନରେ ଅଧିଷ୍ଠିତ ହୋଇଅଛନ୍ତି । ସେ ଅଗ୍ରଜ ଶ୍ରୀବଳଭଦ୍ରଙ୍କ ସହ ଦେବୀ ସୁଭଦ୍ରାଙ୍କର ବାମ ପାର୍ଶ୍ୱରେ ବିଦ୍ୟମାନ ଅଛନ୍ତି । ଚକ୍ରରାଜ ଶ୍ରୀସୁଦର୍ଶନ, ବ୍ରହ୍ମା-ରୁଦ୍ର ଓ ଇନ୍ଦ୍ରଙ୍କ ଦ୍ୱାରା ବନ୍ଦିତ ହେଉଅଛନ୍ତି । ସୁତରାଂ ମୁଁ ବେଦମାନଙ୍କ ସାରସତ୍ତ୍ୱ ସମ୍ବଳିତ ସମସ୍ତ ଗୁଣଯୁକ୍ତ ସେହି ବ୍ରହ୍ମଦାରୁଙ୍କୁ ସ୍ମରଣ କରୁଅଛି ।

ଶ୍ଳୋକରେ ଅଛି ଧର୍ମ ଅର୍ଥ-କାମ-ମୋକ୍ଷ (ଚାରିପୁରୁଷାର୍ଥ) ଚତୁର୍ବର୍ଗ ଫଳରେ ଅନ୍ତର୍ନିହିତ ଚିତ୍ରର ସ୍ମରଣ ଘଟିଛି । ବ୍ୟାକରଣ ଶାସ୍ତ୍ରରେ ଧର୍ମ ଅର୍ଥ-କାମ-ମୋକ୍ଷର ସମାବେଶକୁ ଧର୍ମଅର୍ଥକାମମୋକ୍ଷ ଶବ୍ଦର ଉଦ୍‌ଭବ ଘଟିଅଛି । ଏହାକୁ ସମାହାର ଦ୍ୱନ୍ଦ୍ୱ ସମାସ କୁହାଯାଏ ।

ଭକ୍ତ ଭଗବାନଙ୍କ ସଂପର୍କ ସମ୍ବଳିତ ଶ୍ଳୋକଟି ମଧ୍ୟରେ ଅନ୍ତର୍ନିହିତ ଅଛି ବିଶାଳ ଦର୍ଶନତତ୍ତ୍ୱ । ଅବଗୁଣ୍ଠିତ ହୋଇଛି, ଭକ୍ତର ରସାଳିତ ଭାବବିନୋଦିଆ ଚିନ୍ତା ଓ ଚୈତନ୍ୟ । ଆଧ୍ୟାତ୍ମ୍ୟବାଦର ଚିନ୍ମୟ ଚେତନା ତାକୁ ଉଦ୍‌ଭ୍ରାନ୍ତ କରି ତୋଳିଛି ।

ଦେବତା କାଠ, ପାଷାଣ, କିମ୍ବା ମାଟି ମୂର୍ତ୍ତିରେ ନିବାସ କରନ୍ତି ନାହିଁ । ପରନ୍ତୁ ଭାବନାହିଁ ଦେବତାଙ୍କ ଅସ୍ତିତ୍ୱର କାରଣ ଅଟେ । ଏଥିପାଇଁ ଭାଗବତରେ ଭଗବାନ ଭକ୍ତମାନଙ୍କର ମହିମାଗାନ କରିଅଛନ୍ତି –

ମୁଁ ଅଟେ ଭକତର ଦାସ<br>ଭକତ ମୋହର ସର୍ବସ୍ୱ ।

ଉପରୋକ୍ତ ଉକ୍ତିରେ ଘଟିଛି ଭକ୍ତ ଭଗବାନଙ୍କ ଚିନ୍ତନ ଓ ସଂପର୍କର ମହାମିଳନ । ଏକ ପକ୍ଷରେ ପୁରୁଷାର୍ଥ ଚତୁର୍ବର୍ଗଫଳ (ଧର୍ମ-ଅର୍ଥ-କାମ-ମୋକ୍ଷ) ଅପର ପକ୍ଷରେ ଭକ୍ତର ମୁକ୍ତିକାମନା ।

ସର୍ବଜ୍ଞସ୍ତ୍ୱ ମନିଜ୍ଞାତଃ ସର୍ବଯୋନି ସ୍ତ୍ୱମାତ୍ମଭୂଃ<br>ସର୍ବ ପ୍ରଭୁରନୀଶସ୍ତ୍ୱ ମେକସ୍ତ୍ୱଂ ସର୍ବରୂପଭାକ୍ ।

(ରଘୁବଂଶ ୨୦,୧୦ମ ସର୍ଗ)

ଅର୍ଥାତ୍ ଆପଣ ଏକ ଏବଂ ଅଦ୍ୱିତୀୟ ରୂପରେ ସମସ୍ତ ପଦାର୍ଥରେ ବିରାଜମାନ କରିଅଛନ୍ତି । ଆପଣଙ୍କ ଅଣୁଆତ୍ମା ସମସ୍ତ ଯୋନିରେ ଆଶ୍ରୟ କରିଅଛି । କିନ୍ତୁ ଆପଣ ହିଁ ପ୍ରଭୁଙ୍କର ପ୍ରଭୁ ମହାପ୍ରଭୁ ଅଟନ୍ତି । ଅତଏବ ବିଶ୍ୱ ଆପଣଙ୍କ ଦ୍ୱାରା ଉଦ୍ଭବ ଅଥଚ ଆପଣ ସ୍ୱୟମ୍ଭୁ ଅଟନ୍ତି । ବିଶ୍ୱର ମୂଳାଧାର ଭୂମିକାରେ



ଆପଣ ହିଁ ବିଦ୍ୟମାନ । ଏଠାରେ ଭକ୍ତର ମନୋବିଜ୍ଞାନ ମନ୍ଥନ ସଞ୍ଜାତ ଅମୃତମୟ ଚିନ୍ତନ, ସତେ ଯେମିତି ସ୍ୱପ୍ନାଞ୍ଜନା ଦିବ୍ୟ ଚେତନାକୁ ବିଭାଗୀକୃତ କରିଦେଇଛି । ସୁତରାଂ ଏମିତି ଏକ ଶାସ୍ତ୍ରୀୟ ଅନୁଶୋଚନା ମଧ୍ୟରେ ଭଗବାନଙ୍କ ସାନ୍ନିଧତା ସାକ୍ଷତକାର ଭାବେ ଉପରୋକ୍ତ ଶ୍ଳୋକକୁ ବିଶ୍ଳେଷଣ କରି ଦେଖୁଛି । ଉପରୋକ୍ତ ଶ୍ଳୋକରେ ଧର୍ମ-ଅର୍ଥ-କାମ-ମୋକ୍ଷ କିପରି ଭାବେ ଅନ୍ତର୍ନିହିତ ଅଛି ।

ପ୍ରଥମ ପଂକ୍ତିରେ ରହସ୍ୟମୟ ଠାକୁର ଶ୍ରୀନୀଳାଦ୍ରି ମହୋଦୟଙ୍କ ସ୍ଥିତି, ନୀଳକନ୍ଦରରେ, ଶଙ୍ଖକ୍ଷେତ୍ରରେ, ଶତଦଳ କମଳ ଉପରେ, ରତ୍ନସିଂହାସନରେ ଉପବେଶନ କରିଥିବାରୁ, ଶ୍ରୀକ୍ଷେତ୍ର, ଶ୍ରୀପୁରୁଷୋତ୍ତମ ପୀଠ ଶ୍ରୀଶଙ୍ଖକ୍ଷେତ୍ର ମର୍ଯ୍ୟାଦା ପ୍ରାପ୍ତ ହୋଇଅଛି । ସେ ପରିଣତ ହୋଇଛି ଅବ୍ୟୟ, ଅବ୍ୟକ୍ତ ଅପୂର୍ବ ରହସ୍ୟମୟ ତୀର୍ଥକ୍ଷେତ୍ର ରୂପରେ । ପ୍ରସଙ୍ଗକ୍ରମେ କୁହାଯାଇ ପାରେ ସତ୍ୟଯୁଗରେ ବଦ୍ରିନାଥ, ଦ୍ୱାପର ଯୁଗରେ ଦ୍ୱାରିକାନାଥ, ତ୍ରେତୟାରେ ରାମେଶ୍ୱରମ୍ ଏବଂ କଳିଯୁଗରେ ଶ୍ରୀଜଗନ୍ନାଥ ବୌଦ୍ଧ ଅବତାର ହୋଇ ଶ୍ରୀପୁରୁଷୋତ୍ତମ ପୀଠକୁ ଶ୍ରେଷ୍ଠତ୍ୱ ପ୍ରାପ୍ତ କରାଇ ଅଛନ୍ତି । ସୁତରାଂ ନୀଳାଦ୍ରି ମହୋଦୟଃ ୧ମ ଭାଗ ତୀର୍ଥାନାଂ କ୍ଷେତ୍ରନାଶୀନାଂ ମଧ୍ୟେ ଶ୍ରୀପୁରୁଷୋତ୍ତମଃ ଉକ୍ତିରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠତୀର୍ଥ ପାଲଟିଯାଇଛି । ସେହିପରି ବ୍ରହ୍ମପୁରାଣରେ ମଧ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ପ୍ରାବଲ୍ୟତା ବର୍ଣ୍ଣନା କରାଯାଇଅଛି ।

ସେହିପରି ଶ୍ରୀସ୍କନ୍ଦ ପୁରାଣରେ ପୁରୁଷୋତ୍ତମ ପ୍ରୀତି ସାଧକ (ବ୍ରହ୍ମପୁରାଣ) ବ୍ରତ ବିଶେଷ ବିଧିକଥନ ଉପାଖ୍ୟାନରେ ବର୍ଣ୍ଣନା ଅଛି ।

ଶ୍ରୀକ୍ଷେତ୍ର ପ୍ରଭୁଙ୍କ ଦର୍ଶନ, ଯେ କରେ ସେହି ମହାଜନ
ସେ ଜନ ପାପ ମୁକ୍ତ ହୋଇ, ବୈକୁଣ୍ଠ ଗତିକୁ ଲଭଇ ।

ସୁତରାଂ କଳିଯୁଗରେ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠତୀର୍ଥ ସ୍ୱରୂପ ଶ୍ରୀ ପୁରୁଷୋତ୍ତମ ଶଙ୍ଖକ୍ଷେତ୍ର ଯେ ଅଦ୍ୱିତୀୟ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବାମଦେବ ସଂହିତା ଅନୁଯାୟୀ ଶ୍ରୀଦାରୁବ୍ରହ୍ମଙ୍କ ମାନବୀୟ ଲୀଳା ପ୍ରକଟ ହେବା ବହୁପୂର୍ବରୁ ଯୁଗସ୍ରଷ୍ଟା ବ୍ରହ୍ମା କ୍ଷେତ୍ରମହିମା ପ୍ରଚାର କରିସାରିଥିଲେ । ସେ ନିଜର ଚାରୋଟି ଆୟୁଧକୁ ଭୂପୃଷ୍ଠକୁ ନିକ୍ଷେପକରି ଗଢ଼ି ତୋଳିଥିଲେ ଅପୂର୍ବ ତୀର୍ଥରାଜି ।

ବାମଦେବ ସଂହିତା ଅଧ୍ୟୟନରୁ ଜଣାଯାଏ ଶଙ୍ଖକ୍ଷେତ୍ର ନୀଳାଚଳ ଧାମକୁ ପ୍ରଭୁ କାହିଁକି ନିଜ ନାମରେ ନାମିତ କରିଅଛନ୍ତି । ବ୍ୟାକରଣ ଶାସ୍ତ୍ର କହେ- ପୁରୁଷମାନଙ୍କ ମଧ୍ୟରେ ଉତ୍ତମ ପୁରୁଷୋତ୍ତମ ଅଟେ । ଏଠାରେ ସପ୍ତମୀ ତତପୁରୁଷ ସମାସ ହୋଇଅଛି । ଅର୍ଥାତ ଏଇଠି ପ୍ରଶ୍ନ ଉଠେ ସର୍ବତ୍ର ସମସ୍ତଙ୍କ ହୃଦୟରେ ପରୁଷୋତ୍ତମ ବିଦ୍ୟମାନ ଥିବାସ୍ଥଳେ ପ୍ରଭୁ ସ୍ୱୟଂ କାହିଁକି ଉକ୍ତ କ୍ଷେତ୍ରକୁ ନିଜ ନାମରେ ନାମିତ କଲେ ? ଏହା ହିଁ ନିମ୍ନୋକ୍ତ ଶ୍ଳୋକର ଅର୍ଥ ଅଟେ ଯଥା –

ସର୍ବସ୍ଥଳେ ସର୍ବହୃଦି ପୂର୍ଣ୍ଣଃ ସ୍ୟାତ୍ ପୁରୁଷୋତ୍ତମଃ
ଏତଦ୍‌କ୍ଷେତ୍ରବରେପ୍ୟାତ୍ମନାମ ଯଦ୍ଦତ୍ତବାନ୍ ବିଭୁଃ

(ବାମଦେବ ସଂହିତା)

ଶ୍ରୀକ୍ଷେତ୍ର ମହିମା ସଂପର୍କରେ ବହୁ ଶାସ୍ତ୍ରରେ ବହୁବିଧ କିମ୍ବଦନ୍ତୀ ଥିଲେ ମଧ୍ୟ ପ୍ରବନ୍ଧର କଳେବର ବୃଦ୍ଧିକୁ ଦୃଷ୍ଟିରେ ରଖାଯାଇ ଗୋଟିଏ ମାତ୍ର ଦିଆଗଲା ।

ଚନ୍ଦ୍ର – ସୂର୍ଯ୍ୟଙ୍କ ଉତ୍ପତ୍ତି ପରେ ନିରାକାର ପୁରୁଷଙ୍କ ସାକାରତ୍ୱ ପ୍ରାପ୍ତହେଲା । ନିରାକାରରୁ ନିର୍ଗୁଣବ୍ରହ୍ମ ସଗୁଣରୂପ ଧାରଣ କରନ୍ତି । ସୁତରାଂ ସେ ନାରାୟଣ ଶରୀରବାନ ହୋଇ ଉତ୍ପନ୍ନ ହେଲେ । ତତ୍‌ପରେ ନାରାୟଣଙ୍କଠାରୁ ଜନ୍ମ ନେଲେ ପଂଚମୁଖ ବ୍ରହ୍ମା । ବ୍ରହ୍ମାହେଲେ ବିକାଶମୁଖୀ । ବ୍ରହ୍ମାଙ୍କଠାରୁ ବ୍ରହ୍ମାଣ୍ଡ ସର୍ଜନା ଫଳବତୀ ହେଲା । ବ୍ରହ୍ମାଙ୍କର ପରିକଳ୍ପନା ମର୍ତ୍ତ୍ୟବୈକୁଣ୍ଠ ଉତ୍ପତ୍ତିକାଳରୁ ଜନ୍ମ ନେଲେ ଶ୍ରୀମାଧବ । ମାଧବରୁ ନୀଳମାଧବ ନାମରେ ନୀଳକନ୍ଦର ଶ୍ରୀବର୍ଦ୍ଧନ କଲେ । ସେହିଠାରୁ ଶାବରୀଲୀଳା ପ୍ରକଟ ହେଲା ମହାପ୍ରଭୁଙ୍କର । ମୁନିଶ୍ରେଷ୍ଠ ନାରଦଙ୍କ ନିର୍ଦ୍ଦେଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କ ଦର୍ଶନାଭିଳାଷୀ



ହୋଇ ବିଦ୍ୟାପତିଙ୍କୁ ଅନୁସରଣ କରନ୍ତି । ଅନୁଶୀଳନ ଏବଂ ଅନୁଶାସନରୁ ପୁଷ୍ପିଳ ହୋଇଉଠେ, ଅନୁସନ୍ଧିତ୍ସା, ଅନ୍ୱେଷଣ । ବିଦ୍ୟାପତିଙ୍କ ସଫଳତାର ପ୍ରାସଙ୍ଗିକ ପ୍ରାମାଣିକ ସତ୍ୟତା ଉପଲବ୍ଧି ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ବିଲ୍ୱେଶ୍ୱର ଦର୍ଶନ ଲାଭ କରନ୍ତି । ସେହିଠି ରାଜାହେଲେ ପଥଭ୍ରଷ୍ଟ । ତଦନ୍ତେ ପଥଭ୍ରଷ୍ଟ ରାଜାଙ୍କର ବାମବାହୁ ଏବଂ ବାମଚକ୍ଷୁର ବାରମ୍ବାର ସ୍ଫୁରଣ (କଂପନ) ଘଟିବାରୁ ଅନୁସନ୍ଧିତ୍ସୁ ରାଜା ନାରଦଙ୍କ ପରାମର୍ଶାଭିଳାଷୀ ହୋଇଉଠନ୍ତି ।

ଅନନ୍ତରେ ଅନନ୍ତଯୁଗର ସଂଧାନ ଦେଇ ଦେବର୍ଷି ନାରଦ ରାଜାଙ୍କର ଅଙ୍ଗସ୍ଫୁରଣ ଅଶୁଭ ଲକ୍ଷଣର ସମୀକ୍ଷା କରନ୍ତି ଏବଂ ନୀଳମାଧବଙ୍କ ଦର୍ଶନାଭିଳାଷ ହତାଶାବାଣୀ ବ୍ୟକ୍ତ କରନ୍ତି । ତାଙ୍କ ଭାଷାରେ ବିଦ୍ୟାପତିଙ୍କ ପ୍ରଭୁଦର୍ଶନ ପରେ ସନ୍ଧ୍ୟାକାଳରେ ପ୍ରବଳ ପବନ ବହି ସ୍ୱର୍ଣ୍ଣବାଲୁକା ଝଡ଼ ଦ୍ୱାରା ପ୍ରଭୁ ଅନ୍ତର୍ଦ୍ଧାନ ହୋଇଯାଇଥିବାର ସ୍ଥିର ନିଷ୍ପତ୍ତି ପ୍ରତିପାଦନ କରନ୍ତି ।

ରାଜା ଇନ୍ଦ୍ରଦ୍ୟୁମ୍ନ ଭୋଜନ ତ୍ୟାଗ ପୂର୍ବକ ଦେହତ୍ୟାଗ କରିବାର ଦୃଢ଼ ନିଷ୍ପତ୍ତି ଶୁଣାଇବାରୁ ତତ୍ୱଜ୍ଞ ନାରଦ ନୀଳାଦ୍ରିନାଥଙ୍କ ଅପୂର୍ବ ଚରିତ ବୟାନ କରିଥିଲେ । ତଦନ୍ତେ ମୁନିଙ୍କ ଉପଦେଶ ଅନୁସାରେ ଏକସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ସାରି ଅବଭୃଥ ସ୍ନାନ କରି ଶରଣାଗତି ହେବା ପରେ ସେହିଦିନ ରାତ୍ରିରେ ରାଜା ସ୍ୱପ୍ନାଦେଶ ପ୍ରାପ୍ତ ହେଲେ ଯେ– ଶ୍ୱେତଦୀପରୁ ଏକ ରମଣୀୟ ଚନ୍ଦନ ବୃକ୍ଷ ଆସି ବିଲ୍ୱେଶ୍ୱରଙ୍କ ନିକଟରେ ଲାଗିଛି ଏବଂ ବୃକ୍ଷ ଚତୁପାର୍ଶ୍ୱରେ ବ୍ରହ୍ମାଦି ଦେବତାମାନେ ବେଦଧ୍ୱନି କରୁ ଅଛନ୍ତି । ସୁତରାଂ ପରବର୍ତ୍ତୀ କାଳରେ ତହିଁରୁ ଚତୁର୍ଦ୍ଧାମୂର୍ତ୍ତିଙ୍କ ନିର୍ମାଣ କରାଯାଇଥିଲା । ଏହି ମୂର୍ତ୍ତି ପ୍ରତିଷ୍ଠା କାଳରେ ସ୍ୱୟଂ ବ୍ରହ୍ମା, ଜଗନ୍ନାଥ–ବଳଭଦ୍ର–ସୁଦର୍ଶନ–ସୁଭଦ୍ରା ନାମରେ ନାମିତ କରି ରତ୍ନସିଂହାସନରେ ସ୍ଥାପନ (ଉପବେଶନ) କରିଥିଲେ । ଏହା ହିଁ ବ୍ରହ୍ମାଙ୍କର ପୂର୍ବାର୍ଦ୍ଧର ନୀଳମାଧବ ଏବଂ ଅପରାର୍ଦ୍ଧର ଶ୍ରୀଜଗନ୍ନାଥଙ୍କ ଐତିହ୍ୟର ଇତିହାସ ବା ଇତିକଥା ଅଟେ ।

୨ୟ ପଂକ୍ତିରେ ଜଗନ୍ନାଥଙ୍କର ଜଗତମୋହନ ରୂପକାନ୍ତିର ପରିଚର୍ଯ୍ୟା ବିଶ୍ଳେଷଣ କରାଯାଇଅଛି । ନୂତନ କଳାମେଘ ସଦୃଶ ସୁନ୍ଦର କାନ୍ତିଯୁକ୍ତ ମନମୋହନ ଠାଣିରେ ସର୍ବାଳଙ୍କାର ବିଭୂଷିତ ଅବସ୍ଥାନ ଏକ ପ୍ରାଚୁର୍ଯ୍ୟ ଗାମ୍ଭୀର୍ଯ୍ୟତା ପୂର୍ଣ୍ଣସ୍ଥିତିର ସୂଚନା ଦିଏ ।

ସୁନ୍ଦର ତୃପ୍ତିର ଅବସାଦ ନାହିଁ<br>
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।।

ଭକ୍ତ ଢ଼ାଳିଛି ଭକ୍ତିର ତୃଷା । ତୃଷାର କବରୀ ତଳୁ ଢ଼େଣାମେଲିଛି ତୃଷ୍ଣାର ପରିପାଟୀ । ଭକ୍ତ ବିଭୋର ହୋଇଉଠିଛି ପ୍ରଭୁକାନ୍ତିରେ ଶରଣାଗତି ଅର୍ଘ୍ୟାଞ୍ଜଳି ସମର୍ପଣ କରି । ଭକ୍ତ ହୃଦୟ କନ୍ଦରରେ ମହାପ୍ରଭୁ ବିରାଜମାନ କରିଅଛନ୍ତି । କଳା କଳେବର ମେଘକାନ୍ତି ମଧ୍ୟରେ ଚକାଆଖି ଚନ୍ଦ୍ର, ସୂର୍ଯ୍ୟଙ୍କ ଜ୍ୟୋତ୍ସ୍ନା ଏବଂ କିରଣ ପରି ଦାଉଦାଉ ଜଳୁଛି । ଭକ୍ତିର ତୃଷ୍ଣା ତୃପ୍ତିର ପୀୟୂଷ ପସରା ମେଲାଇ ଦେଇଛି ।

ଶିରସ୍ଥ ହୀରା, ନୀଳା, ମୋତି, ମାଣିକ୍ୟ ଖଚିତ କିରୀଟ, ନାସାରେ ବସଣୀ, ଗଳାରେ ସୁଶୋଭିତ କୌସ୍ତୁଭମଣି, ବାହୁରେ କେୟୂର, ପ୍ରଜ୍ୱଳିତ ଅଗ୍ନିଶିଖା ପ୍ରାୟ ଝଟକୁଛି । ରଙ୍ଗ ଅଧରରେ ସ୍ମିତହାସ୍ୟର ଛଟାମେଲାଇ ଦୁଇବାହୁ ପ୍ରସାରି ଆବ୍ରାହ୍ମଣ, ଚଣ୍ଡାଳ ଯାଏଁ ଭକ୍ତିର ପରଖନେଇ କୃତାର୍ଥ କାରଣେ ଉଭାରି ବସିଛି ସେ । ମନଜିଣା ଠାଣିଦେଖି ବିହ୍ୱଳ ହୋଇ ଉଠିଛି ଭକ୍ତ । ମୁକ୍ତ କଣ୍ଠରେ ସ୍ୱୟଂ ଜ୍ଞାନ ମଞ୍ଜୁଷ ମହୁରୀ ବଜାଇ ମନ୍ଦିର ପ୍ରକଂପିତ କରୁଛି ସେ' ।

ଲଲାଟରେ କସ୍ତୁରୀତିଳକ, ବକ୍ଷସ୍ଥଳରେ କୌସ୍ତୁଭମଣି, ନାସାଗ୍ରରେ ମୁକ୍ତାରତ୍ନ ଖଚିତ ବରଗୁଡ଼ି, ଶ୍ରୀହସ୍ତ ଶୋଭିତ ବେଣୁକରେ କଙ୍କଣମଣ୍ଡିତ ଲାବଣ୍ୟ ତନୁକାନ୍ତି ବିରାଜମାନ କରୁଅଛି । ସର୍ବାଙ୍ଗରେ ସୁଶୋଭିତ ହରିଚନ୍ଦନର ପରିପାଟୀ ସହିତ ସୁସୁନ୍ଦର ମୁକ୍ତାବଳୀଗୁଡ଼ିକ କଣ୍ଠଭୂଷଣ ରୂପେ ଶୋଭାବର୍ଦ୍ଧନ କରୁଅଛି । ପ୍ରଭୁଶ୍ରୀ, ଗୋପାଳଚୂଡ଼ାମଣି, ନଟରାଜ ବେଶରେ



ଗୋପାଙ୍ଗନାମାନଙ୍କ ପରିବେଷ୍ଟନୀରେ ବିଜୟଶ୍ରୀ ମୂର୍ତ୍ତିମନ୍ତ ଅଛନ୍ତି ।

ସୁତରାଂ ଏଠାରେ ଭକ୍ତ ଅନୁଭବ କରୁଛି ଶ୍ରୀଜଗନ୍ନାଥଙ୍କ ରୂପକାନ୍ତି ମଧ୍ୟରେ କୃଷ୍ଣଙ୍କ ଷୋଳକଳାକୁ । ସତେ ଯେମିତି ଜଗନ୍ନାଥ ମହାପ୍ରଭୁ ତା'ଚିନ୍ତନ ମଧ୍ୟରେ ନିଜର ଆରାଧ୍ୟ ଦେବତା ପାଲଟି ଯାଇଅଛନ୍ତି କୃଷ୍ଣଙ୍କ ମନମୋହନ ବେଶରେ । ଅନ୍ୟପକ୍ଷରେ କହିଲେ – ଶ୍ରୀଜଗନ୍ନାଥ ବିରାଜମାନ କରିଛନ୍ତି ଭକ୍ତ ହୃଦୟରେ ବାଙ୍କଚୂଳିଆ, ମୋହନ ବଂଶୀଧାରୀ, ନାରୀମନଚୋରା ଦିବ୍ୟାଙ୍ଗମଣ୍ଡିତ ବେଶଭୂଷା ପରିପାଟୀରେ । କୁତ୍ରାପି ଅଷ୍ଟାଙ୍ଗ ପ୍ରଣତି ଢ଼ାଳି ବିଦଗ୍‌ଧ କଣ୍ଠରେ ଭକ୍ତ କାମୋଦୀ ରାଗରେ ଗାଉଛି ।

କୃପାସିନ୍ଧୁ ବଦନ କରି ଅବଲୋକନ<br>
କେଉଁକରମହୀନ ଜନ<br>
କାକୁସ୍ଥତରହୋଇ କର ଯୋଡ଼ି ଜଣାଇ<br>
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ ମହାପ୍ରଭୁ<br>
କୃପାସରିତ ପତିହୋଇ କରମହୀନଜନ ତହିଁ<br>
କରୁଣା କଲନାହିଁ କିମ୍ପା ହେ ଭାବଗ୍ରାହୀ<br>
କହ ମୁଁ ବିଚିତ୍ର ମଣଇଁ ହେ ମହାପ୍ରଭୁ ।

(ଆରତ ତ୍ରାଣ) (ଦୀନକୃଷ୍ଣ ଦାସ)

ଭକ୍ତ ଭଗବାନଙ୍କ ମହାମିଳନ ନିତ୍ୟଲୀଳାଖେଳାରୁ ଶ୍ରୀକ୍ଷେତ୍ର ମର୍ତ୍ତ୍ୟବୈକୁଣ୍ଠ ପାଲଟି ଯାଇଛି । ଆରତ କଣ୍ଠରେ ତ୍ରାହି ତ୍ରାହି ସ୍ୱରରେ ଭକ୍ତ ଡ଼ାକୁଛି ଦାରୁବ୍ରହ୍ମଙ୍କୁ ।

ଦେବ ଦେବ ଜଗନ୍ନାଥ ସଂସାରାର୍ଣ୍ଣବ ତାରକ<br>
ଭକ୍ତାନୁ ଗ୍ରାହକ ସଦା ରକ୍ଷମାଂ ପାଦୟୋର୍ନତମ

ଭକ୍ତ ଚିନ୍ତାମଣିଙ୍କ ଅନୁଗ୍ରହ ଭିକ୍ଷାର୍ଥୀ ରୁପେ ସଂସାରାର୍ଣ୍ଣବରୁ ମୁକ୍ତିକାମନା କରି ଭକ୍ତ ଡ଼ାକୁଛି ଦେବ ଦେବ ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣତି ଢ଼ାଳି । ପ୍ରଭୁ ସତ୍ୟ, ବ୍ରହ୍ମସତ୍ୟ, ସତ୍ୟରୁ ଚନ୍ଦ୍ର, ସୂର୍ଯ୍ୟ ଆତଜାତ ହୋଇ ସଂସାର ରକ୍ଷା କରୁଅଛନ୍ତି। ଏହି ଏକମାତ୍ର ଚିନ୍ତନ ମୂର୍ତ୍ତିମନ୍ତ ହୋଇଉଠିଛି ଭକ୍ତର ଭାବନା ରାଜ୍ୟରେ ।

ବ୍ରହ୍ମଦର୍ଶନର ମୌଳିକତା କଣ ? ଏହାଦ୍ୱାରା ଭକ୍ତ କି ପ୍ରକାର ଫଳ ପ୍ରାପ୍ତ ହୋଇଥାଏ । ସୁତରାଂ ମହାପ୍ରଭୁଙ୍କ ଦର୍ଶନ ମାତ୍ରେ ଭକ୍ତ ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗ ଫଳ ସହଜରେ ପ୍ରାପ୍ତ ହୋଇଥାଏ । ଯେହେତୁ ମହାପ୍ରଭୁ ନିତ୍ୟନୂତନ ସ୍ୱରୂପ ସନାତନ ପୁରୁଷ (ଶ୍ରୀଜଗନ୍ନାଥ ମହାପ୍ରଭୁ) ଅଟନ୍ତି । ଏଣୁ ମହାପ୍ରଭୁଙ୍କ ସ୍ୱରୂପକୁ ବାରମ୍ବାର ନମସ୍କାର । ଏ ଗଲା ରୂପଚର୍ଯ୍ୟାର ବିଶ୍ଳେଷଣ । ତତ୍ ପରେ (ସଂସ୍ଥିତ ଚାଗ୍ରଜେନ) – ସମସ୍ତ ପ୍ରକାର ଅଳଙ୍କାର ବିଭୂଷିତ ହୋଇ ଅଗ୍ରଜଙ୍କ ସହିତ ରତ୍ନସିଂହାସନରେ ଉପବେଶନ କରିଥିବାରୁ ବ୍ରହ୍ମଦାରୁଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ଏହି ଯେ- (୧) ମାନବ ସମାଜରେ ଭ୍ରାତୃତ୍ୱ ବନ୍ଧନର ପୀୟୁଷ ପ୍ଳାବନ ଘଟୁ । ଜାତି ଭେଦ, ବର୍ଣ୍ଣ ବୈଷମ୍ୟ ଅପସରି ଯାଉ, ବିଶ୍ୱ ଭ୍ରାତୃତ୍ୱ ବନ୍ଧନରୁ ଗଢ଼ିଉଠୁ ମୈତ୍ରୀ, ଶାନ୍ତିର ସୁରମ୍ୟ ଅଟ୍ଟାଳିକା । (୨) ମାନବ ସମାଜ ଆବାଳବୃଦ୍ଧବନିତା ସଂପଦଶାଳୀ ହୋଇଉଠନ୍ତୁ । ପୃଥିବୀ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇଉଠୁ । ଏହାହିଁ ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ଅଟେ ।

ଦେବୀ ସୁଭଦ୍ରାଙ୍କ ବାମପାର୍ଶ୍ୱରେ ବିଦ୍ୟମାନ ଚକ୍ରରାଜ (ଶ୍ରୀସୁଦର୍ଶନ)ଙ୍କ ସହଯୁକ୍ତ, ବ୍ରହ୍ମା, ରୁଦ୍ର ଏବଂ ଇନ୍ଦ୍ରଙ୍କ ଦ୍ୱାରା ଶ୍ରୀଦାରୁବ୍ରହ୍ମ ଅବସ୍ଥିତ । ସୁତରାଂ ଚତୁର୍ଦ୍ଧା ଦିବ୍ୟମୂର୍ତ୍ତିଙ୍କ ଶ୍ରୀକ୍ଷେତ୍ର ଅବସ୍ଥାନ (ଭକ୍ତମାନଙ୍କ ପାଇଁ) ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗ ଫଳ ଦାୟକ ଅଟନ୍ତି ।

କାରଣ ବ୍ରହ୍ମାଙ୍କ ଦ୍ୱାରା ମୂର୍ତ୍ତିମାନଙ୍କ ଅବସ୍ଥାନ ଏକ ଗୋଷ୍ଠୀ (କୈନ୍ଦ୍ରିକ) ବା ସାମାଜିକ ଚିତ୍ର ଅଟେ । ଏତଦ୍ୱାରା ସମଗ୍ର ଜନସମାଜ ଭ୍ରାତୃ-ଭଗ୍ନୀ-ରଜା, ପ୍ରଜା, ସମସ୍ତେ ଏକ ଧର୍ମ ରୂପକ ପ୍ରେମ ରଜ୍ଜୁରେ ଆବଦ୍ଧ ଥିବାର ସୂଚନା ମିଳେ ।

ଯେଉଁ ଭାବନା ଦ୍ୱାରା ବ୍ୟକ୍ତି, ଗୋଷ୍ଠୀ, ପ୍ରଜାମାନଙ୍କୁ ଆବଦ୍ଧ କରି ରଖାଯାଇ ପାରେ, ତାହା ହିଁ ଧର୍ମ ଅଟେ । ସୁତରାଂ ଜନସମାଜ ଏକ ଭ୍ରାତୃ-ଭଗ୍ନୀ-ସାମାଜିକ ଭାବଧାରାରେ ଆବଦ୍ଧ



ହୋଇ ବିଶ୍ୱକୁ ଏକ ପରିବାର ଚିନ୍ତନରେ ବାନ୍ଧି ରଖନ୍ତୁ ଏହାହିଁ ଜଗଦ୍ଦୀଶ୍ୱରଙ୍କ ଇଚ୍ଛା ଅଟେ । ମହାପୁରୁଷ ବଳରାମ ଦାସଙ୍କ ଚିନ୍ତନରେ ଗୁପ୍ତଗୀତା ବା ବ୍ରହ୍ମଗୀତାରେ ଶ୍ରୀକ୍ଷେତ୍ର ବିରାଜମାନ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚାରିବେଦର ପ୍ରତୀକ ସ୍ୱରୂପ ତୁଳନା କରାଯାଇ ଅଛି, ଯଥା–

ବଳରାମ ଯେ ସାମହୋଇ
ରକ ଯେ ସୁଭଦ୍ରା ଅଟଇ
ଯର୍ଜୁବେଦ ଶ୍ରୀଜଗନ୍ନାଥ
ଅଥର୍ବ ସୁଦର୍ଶନ ପାର୍ଥ

ଗୁଣଜ୍ଞ ଭକ୍ତ ବଳରାମ ଦାସ ଚତୁର୍ଦ୍ଧା ଦାରୁବ୍ରହ୍ମ ମୂର୍ତ୍ତିଙ୍କ ମାନବୀୟ ଲୀଳାବତାର ପୁରୁଷୋତ୍ତମଙ୍କୁ ଚାରିବେଦର ଅବତାରଣା କରି ଯେଉଁ ଯୁଗାନ୍ତ ବେଦାନ୍ତୀ ସିଦ୍ଧାନ୍ତ ପ୍ରକଟ କରାଇ ଅଛନ୍ତି ତାହା ସମଗ୍ର ଜନ ସମାଜ ପାଇଁ ଧ୍ରୁବ ସତ୍ୟତାର ଅକାଟ୍ୟ ପ୍ରମାଣ ଅଟେ । ବାମଦେବ ସଂହିତାନୁଯାୟୀ ବେଦ ବିଶ୍ୱର ସର୍ବପ୍ରାଚୀନ ଗ୍ରନ୍ଥ, ମୂଲ୍ୟାଙ୍କନରେ ରକବେଦ ହୋଇଥିବା ସ୍ଥଳେ ଶ୍ରୀକ୍ଷେତ୍ରକୁ ରକ୍‌ବେଦର ଧାମ ମର୍ଯ୍ୟାଦା ଦିଆଯାଇଅଛି । ବେଦ ବେଦାନ୍ତ ଭିନ୍ନ ଶ୍ରୀକ୍ଷେତ୍ର ମହିମା ଦର୍ଶନ ସ୍କନ୍ଦ ପୁରାଣରେ ବିଶଦ୍ ଭାବେ ଦେଖିବାକୁ ମିଳେ ।

ଅର୍ଥାତ ସଂସାରର ସମସ୍ତ ଦୁଃଖ ଏହି ପ୍ରତିମା ବିନାଶ କରି ଅବ୍ୟୟ ସୁଖ ପ୍ରଦାନ କରୁଥିବାରୁ ବେଦାନ୍ତରେ ଦାରୁମୟ ବ୍ରହ୍ମ ବୋଲି ବର୍ଣ୍ଣନା କରାଯାଇଅଛି ।

ସର୍ବାଳଙ୍କାର ବିଭୂଷିତ ଜଗତର ନାଥ ଜଗନ୍ନାଥ, ଚତୁର୍ଦ୍ଧାମୂର୍ତ୍ତି ସହିତ ବିରାଜମାନ କରିଅଛନ୍ତି ଏବଂ ଭକ୍ତକୁ ଦର୍ଶନ ଦେଇ ଉନ୍ମତ୍ତ କରିଦେଇଛନ୍ତି ସେ । ଭକ୍ତ ଉଠୁଛି ପଡ଼ୁଛି ସାଷ୍ଟାଙ୍ଗ ପ୍ରଣତି ଜଣାଇ । କ୍ଷମା ପ୍ରାର୍ଥନା କରୁଛି ବିଭୂପାଦ ତଳେ । ପ୍ରଭୁ ପ୍ରଭୁ କହି ନିଜକୁ ହଜାଇ ଦେଇଛି ଈଶ୍ୱରୀୟ ଚେତନା ରାଜ୍ୟରେ ।

ଅନ୍ୟ ପକ୍ଷରେ କହିଲେ ବେଦମାନଙ୍କର ସାରସ୍ୱତ ସମ୍ବଳିତ ସମସ୍ତ ଗୁଣଯୁକ୍ତ ବ୍ରହ୍ମଦାରୁଙ୍କ ନିକଟରେ ଆତ୍ମସମର୍ପଣ ଭାବ ହିଁ ପ୍ରକଟିତ ହୋଇଅଛି । ବ୍ରହ୍ମଶବ୍ଦର ବ୍ୟୁତ୍ପତ୍ତି ଅନୁସନ୍ଧାନ କଲେ ବୃହ୍‌ମନ୍‌ବ୍ରହ୍ମ (ବୃହ ଧାତୁରୁ ମନ୍ ପ୍ରତ୍ୟୟ ଯୋଗରେ ଉଦ୍‌ଭବ ହୋଇଅଛି) ।

ବ୍ରହ୍ମ ଶବ୍ଦ ଏକ ବ୍ୟାପକ ଶବ୍ଦ ଅଟେ । ଯାହାର ରୂପ – ବର୍ଣ୍ଣ– ଦୀର୍ଘତା ମାପିବା ଏକ ଧୃଷ୍ଟତା ମାତ୍ର । ବ୍ରହ୍ମଶବ୍ଦ ଯୋଗରୁ ସ୍ୱୟଂବ୍ରହ୍ମ ପରଂବ୍ରହ୍ମ, ଦାରୁବ୍ରହ୍ମ, ଶବ୍ଦ ବ୍ରହ୍ମ, ଶୂନ୍ୟବ୍ରହ୍ମ, ଅକ୍ଷରବ୍ରହ୍ମ ଏବଂ ଅଲେଖ ବ୍ରହ୍ମ ଇତ୍ୟାଦି ପରିବ୍ୟାପକ ଶବ୍ଦ ସୃଷ୍ଟି କରାଯାଇଅଛି । ସ୍ୱୟଂବ୍ରହ୍ମ ନିଜର ଆତ୍ମା ସଂପର୍କରେ ବର୍ଣ୍ଣନା କରାଯାଇଅଛି । ଉକ୍ତ ବ୍ରହ୍ମାଲୋଚନା ପଞ୍ଚସଖା ଯୁଗର ସାହିତ୍ୟରୁ ପରିଲକ୍ଷିତ ହୋଇଥାଏ । ସେହିପରି ପରଂବ୍ରହ୍ମ ଶବ୍ଦ ପରମେଶ୍ୱରଙ୍କ ଚିନ୍ତା ଚୈତନ୍ୟତା ଭାବଧାରାରୁ ସମ୍ବଳିତ ଅଟେ ।

ଦାରୁ ବ୍ରହ୍ମ ଶବ୍ଦ ଶ୍ରୀଜଗନ୍ନାଥଙ୍କ ଆଲୋଚନା ପରିସରଭୁକ୍ତ ଶବ୍ଦ ରୂପେ ସର୍ବଜନବିଦିତ ଅଟେ । ଉକ୍ତ ଶବ୍ଦ ମଧ୍ୟରେ ଭରିରହିଛି ମାଧୁର୍ଯ୍ୟ ଭକ୍ତିମିଶ୍ର । ଶରଣାଗତି ଭାବଧାରା । ପ୍ରଭୁ ଭକ୍ତର ଭାବ ଡ଼ୋରିରେ ବନ୍ଧା । ରୋଗୀ, ଭୋଗୀ, ବୈରାଗୀ ଯେଉଁ ସ୍ଥରୀୟ ଭକ୍ତ ହେଉନା କାହିଁକି ଯେ ଯେପରି ଭାବରେ ସାନ୍ନିଧ କାମନା କରୁଛି ପ୍ରଭୁ ଦୟାରସାଗର ଦାରୁବ୍ରହ୍ମ ମୂରତି ଅଚିରେ ପ୍ରଦାନ କରନ୍ତି । ଭକ୍ତର କାମନା ବାସନାକୁ କୋଟି କୋଟି ଯୁଗଧରି ପୂର୍ଣ୍ଣ କରି ମଧ ସେ ସ୍ୱୟଂ ଅକ୍ଷୟ ଅଜେୟ ଅଟନ୍ତି ।

ଭକ୍ତ କଳ୍ପତରୁ କାଳିଆଠାକୁର କୁହୁକ ବିଭୁତିପସରା ମେଲାଇଛି ଭକ୍ତର ଭାବନା ରାଜ୍ୟରେ । ତାହାର କମନୀୟକାନ୍ତି ଭକ୍ତକୁ ଭାବବିହ୍ୱଳ କରିଦେଇଛି । ଶୟନେ–ସ୍ୱପନେ– ଜାଗରଣେ ଭକ୍ତ ଦେଖୁଛି ଭଗବାନଙ୍କ ରୂପଗୁଣ ଅଲୌକିକ ନିର୍ଗୁଣ ଭାବର ମହନୀୟତାକୁ ।

ଏହି ଭାବରେ ବିହ୍ୱଳ, ବିଦଗ୍ଧ ଭକ୍ତମାନେ – ଭକ୍ତ ସାଲବେଗ, ଦାସିଆବାଉରୀ, କବି ଜୟଦେବ, ଭକ୍ତ ବଂଧୁ ମହାନ୍ତି ଯୁଗ ଯୁଗାନ୍ତର ଦୃଷ୍ଟାନ୍ତ ସୃଷ୍ଟି କରିଅଛନ୍ତି ।



କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ କାବ୍ୟ ବ୍ୟଞ୍ଜନାରେ ରଚନା କରିଗଲେ –

ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ।

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୧୨ ମଙ୍ଗଳାଚରଣ)

ସୁତରାଂ କମ୍ବୁ କଟକ ଅର୍ଥାତ ଶଙ୍ଖକ୍ଷେତ୍ରର ରାଜା ଜଗନ୍ନାଥ ଚଉବର୍ଣ୍ଣେ ଅର୍ଥାତ ଜଗନ୍ନାଥ ଚାରିଅକ୍ଷର ମଧ୍ୟରେ ଚଉବର୍ଗ ଅର୍ଥାତ୍ ଧର୍ମ – ଅର୍ଥ – କାମ– ମୋକ୍ଷ ଫଳ ଦେବାକୁ ସମର୍ଥ ଅଟନ୍ତି । ସନ୍ଥ ହାଡ଼ିଦାସଙ୍କ ଦିବ୍ୟଚକ୍ଷୁ ନୀଳାଚଳ ଧାମ ଶ୍ରୀକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ରର ଧୂଳିକଣାକୁ କୋଟି ଜନ୍ମର କଳୁଷ ହାରକ ପବିତ୍ର ବସ୍ତୁ ବୋଲି ଚିତ୍ରଣ କରିଯାଇଛନ୍ତି ତାଙ୍କ ଶଙ୍ଖନାଭି ୧୭ ଅଧ୍ୟାୟରେ ।

କୋଟି ବ୍ରହ୍ମାଣ୍ଡ ଯହିଁତହିଁ
ପଡ଼ି ଅଛନ୍ତି ରେଣୁ ହୋଇ ।
ସେ ରେଣୁ ଲାଗେ ଯାର ମୁଣ୍ଡେ
କୋଟି ଜନ୍ମର ପାପଖଣ୍ଡେ ।

ଏ ଦାଣ୍ଡେ ଯେ ହରାଇ ତନ
ସେ'ଲୋକ ବିଷ୍ଣୁରେ ଯେ ଲୀନ ।

ଦାରୁବ୍ରହ୍ମ ସ୍ୱୟଂ ଅକ୍ଷୟ ବା ସଂପୂର୍ଣ୍ଣ ଅଟନ୍ତି । ସେ' ସ୍ୱୟଂ ସଂପୂର୍ଣ୍ଣ ହୋଇଥିବାରୁ ପ୍ରାକୃତିକ ଜଗତ ପରିପୂର୍ଣ୍ଣତାରେ ଭୂଷିତ ଅଟନ୍ତି । ସୁତରାଂ ପୂର୍ଣ୍ଣ ଭଗବାନଙ୍କଠାରୁ ଯାହାକିଛି ଉତ୍ପନ୍ନ ହୁଏ ସେ ସମସ୍ତ ମଧ୍ୟ ପୂର୍ଣ୍ଣ ଅଟନ୍ତି । ସେ ପୂର୍ଣ୍ଣ ହୋଇଥିବାରୁ ତାଙ୍କଠାରୁ ଯେତେ ପୂର୍ଣ୍ଣ ଏକକ ବାହାରି ଆସିଲେ ମଧ୍ୟ ସେ ସ୍ୱୟଂ ପୂର୍ଣ୍ଣରୂପେ ପରିପୂର୍ଣ୍ଣବ୍ରହ୍ମ ଅଟନ୍ତି । ଅନ୍ୟ ପକ୍ଷରେ କହିଲେ ସେ ସଚ୍ଚିଦାନନ୍ଦ ବିଗ୍ରହ ଅକ୍ଷୟ, ଅବ୍ୟୟ, ନିର୍ବିଶେଷ ଦାରୁବ୍ରହ୍ମ, ବ୍ରହ୍ମାନୁଭୂତି ସ୍ୱୟଂ ପରିପୂର୍ଣ୍ଣତାର ଗନ୍ତାଗାର ଅଟନ୍ତି ।

ଭଗବତ ଭଜନ ଚିନ୍ତନ ମାନବ ଜୀବନର ଶ୍ରେଷ୍ଠ ଧର୍ମ ଅଟେ । ସୁତରାଂ ନିଜକୁ ସେହି ମଧୁର ଚିନ୍ତନ ଧାରାରେ ହଜାଇ ଦିଅନ୍ତୁ । ଅନ୍ୟାନ୍ୟ ସମସ୍ତ ଲୌକିକଧର୍ମ ବର୍ଜନ କରନ୍ତୁ । ସାଧୁ ସେବା ହିଁ କାମନାର ତୃଷ୍ଣା ହେଉ । ଭୋଗ ଲାଳସାକୁ ପରିତ୍ୟାଗ କରନ୍ତୁ । ଅନ୍ୟର ଦୋଷ ଗୁଣ ସମାଲୋଚନାରୁ ମୁକ୍ତରୁହନ୍ତୁ । ଶ୍ରେୟ ହେଉ ଭଗବତ କଥାରସ । ଭଗବତ ସେବା, ଭଗବତ ଭଜନ ଚିନ୍ତନ, ଅମ୍ଳାନ ରହୁ ଏହା ହିଁ ଶେଷ କଥା ।

ବୈଜ୍ଞାନିକ ଦୃଷ୍ଟିକୋଣ – କଳାରଙ୍ଗ ସମସ୍ତ ଶୋଷଣ କରିପାରେ । ସର୍ବଶେଷରେ ସଚ୍ଚିଦାନନ୍ଦ ବିଗ୍ରହ କଳ୍ପତରୁ ଶ୍ରୀଜଗନ୍ନାଥଙ୍କ ଚରଣ କମଳେ ଆଜିର ଉଦ୍‌ଭ୍ରାନ୍ତ ମାନବସମାଜ ସଂସ୍କାର ପାଇଁ ପୀୟୁଷ ଧାରା ପଦଟିଏ ଲେଖି ନିବୃତ୍ତି ନେଉଛି ।

ଝରିଆସୁ ସୋମାମୃତ ସହସ୍ରାଧାରାରୁ
ପ୍ରେମେ ପୁଲକିତ ହେଉ ତନୁ–ମନ–ତରୁ
ପୀୟୁଷ ଶାଶ୍ୱତସ୍ୱାସ୍ଥ୍ୟ ଲଭୁ କଳେବର
ଜ୍ଞାନ–ପ୍ରଜ୍ଞାମୃତଧାରା ପ୍ଲାବୁ ଏ ସଂସାର ।

**ସହାୟକ ଗ୍ରନ୍ଥସୂଚୀ**

(୧) ବାମଦେବ ସଂହିତା) (୨) ନୀଳାଦ୍ରି ମହୋଦୟ (୩) ଶୂନ୍ୟସଂହିତା (୪) ଚାଣକ୍ୟ ନୀତି (୫) ରଘୁବଂଶମ୍ (୬) ଭାଗବତ (୭) ବ୍ରହ୍ମପୁରାଣ (୮) ଶ୍ରୀକ୍ଷେତ୍ର ମହିମା (୯) ଚିଲିକା କାବ୍ୟ, ରାଧାନାଥ ରାୟ (୧୦) ଆରତ ତ୍ରାଣ ଚଉତିଶା (୧୧) ଜଗନ୍ନାଥ ତୀଳକମ୍ (୧୨) ବ୍ରହ୍ମଗୀତା ବା ଗୁପ୍ତଗୀତା (୧୩) ସ୍କନ୍ଦପୁରାଣ ଉତ୍କଳଖଣ୍ଡ ନୀଳକନ୍ଦର (୧୪) ଶଙ୍କରାଚାର୍ଯ୍ୟଭାଷ୍ୟ (୧୫) ସର୍ବ ବେଦାନ୍ତ ସାରତତ୍ତ୍ୱ ଶିରୋମଣି (୧୬) ବିରାଟଗୀତା ଜଗନ୍ନାଥ ଚରିତାମୃତ (୧୭) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ (୧୮) ଭକ୍ତି ଚନ୍ଦ୍ରିକା (୧୯) ପୀୟୁଷ ଧାରା (୨୦) ବେଦ (୨୧) ସଂସ୍କୃତ ଭାଗବତ ବ୍ୟାସକୃତ ।

ମାତୃମନ୍ଦିର, ସରପୁର
ଭଦ୍ରକ – ୭୫୬୧୧୬



# ଭାରତୀୟ ଯୋଗ ସଂସ୍କୃତିରେ ଶ୍ରୀଜଗନ୍ନାଥ

**ଡକ୍ଟର ରମାକାନ୍ତ କର**

ଭାରତୀୟ ସଂସ୍କୃତିକୁ ଅନୁଧ୍ୟାନ କଲେ ଯୋଗ, ତନ୍ତ୍ର ଓ ବେଦ ଏହି ତିନୋଟି ବିଷୟ ଉପରେ ଗୁରୁତ୍ୱାରୋପ କରାଯାଏ। ଏ ତିନି ହେଁ ସମସାମୟିକ ଓ ପରସ୍ପର ସହିତ ସମ୍ପର୍କିତ। ଏହି ତିନୋଟି ବିଷୟରେ ଶ୍ରୀଜଗନ୍ନାଥଙ୍କ ସତ୍ତା ବିଦ୍ୟମାନ। ଇନ୍ଦ୍ରିୟାଦିମାନଙ୍କୁ ନିରୋଧ ଅର୍ଥାତ୍ ନିୟନ୍ତ୍ରଣ କରିବାରେ ଶିବ ହିଁ ଦକ୍ଷ ଅଟନ୍ତି । ଶିବ ପାର୍ବତୀଙ୍କୁ ଶାସ୍ତ୍ରତତ୍ତ୍ୱ ଶୁଣାଉଥିବା ସମୟରେ ଯୋଗୀ ଓ ମୁନିମାନେ ଶୁଣିକରି ବିଦ୍ୟା ସଂଗ୍ରହ କରୁଥିଲେ। ସେତେବେଳେ କଲମ ଓ କାଗଜର ବ୍ୟବହାର ନଥିଲା। ଏଣୁ ଶାସ୍ତ୍ରକୁ ଶ୍ରୁତି କରାଯାଉଥିଲା। ସେତେବେଳେ ଯୋଗୀଙ୍କ ମଧ୍ୟରେ ଯୋଗୀମହର୍ଷି ପତଳି ହଠଯୋଗ ତତ୍ତ୍ୱ ଓ ମୁନି କପିଳ ସାଂଖ୍ୟଯୋଗ ତତ୍ତ୍ୱ ସଂଗ୍ରହ କରି ମାନବପିଢି ମଧ୍ୟରେ ପ୍ରଚାର କରିଥିଲେ। ଏଣୁ ହଠଯୋଗର ପ୍ରଣେତା ମହର୍ଷି ପତଳି ଓ ସାଂଖ୍ୟଯୋଗର ପ୍ରଣେତା କପିଳମୁନି ଅଟନ୍ତି। ଯୋଗଶାସ୍ତ୍ରର ସ୍ରଷ୍ଟା ହିଁ ସ୍ୱୟଂ ଶିବ ବା ବଳଭଦ୍ର। ଯେ ସୃଷ୍ଟି କରି ସଂସାରରେ ବିସ୍ତାର କରେ ସେ ହେଉଛନ୍ତି ତାନ୍ତ୍ରିକ ବ୍ରହ୍ମା ବା ମା' ସୁଭଦ୍ରା ଶକ୍ତି ସ୍ୱରୂପିଣୀ। ବେଦ ହିଁ ସ୍ୱୟଂ ବିଷ୍ଣୁ ବା ଶ୍ରୀଜଗନ୍ନାଥ। ଏ ତ୍ରିମୂର୍ତ୍ତି ହିଁ ତିନି ଶାସ୍ତ୍ରର ଊର୍ଦ୍ଧ୍ୱରେ ଓ ଶ୍ରୀସୁଦର୍ଶନ ଆୟୁଧଯୁକ୍ତ ଅଟନ୍ତି । ଏହି ଚତୁର୍ଦ୍ଧାମୂର୍ତ୍ତି ଶ୍ରୀବଳଭଦ୍ର, ମା' ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନ ହିଁ ଶ୍ରୀଜଗନ୍ନାଥ ବା ପତିତପାବନଙ୍କ ଉପରେ ନ୍ୟସ୍ତ ଅଟନ୍ତି ।

'ଜ' ଅର୍ଥାତ୍ ଶ୍ରୀଜଗନ୍ନାଥ, 'ଗ' ଅର୍ଥାତ୍ ଶ୍ରୀବଳଭଦ୍ର, 'ନା' ଅର୍ଥାତ୍ ଶକ୍ତିସ୍ୱରୁପିଣୀ ମା' ସୁଭଦ୍ରା ଓ 'ଥ' ଅର୍ଥାତ୍ ଶ୍ରୀସୁଦର୍ଶନ। ଏହି 'ଜଗନ୍ନାଥ' ଚାରି ଅକ୍ଷରରେ ଚତୁର୍ଦ୍ଧାମୂର୍ତ୍ତି ପରିକଳ୍ପିତ ହୋଇଥିବାରୁ ପୁରୀ ଶ୍ରୀମନ୍ଦିର ଗୁମୁଟ ମଧ୍ୟରେ ସ୍ୱୟଂ ପତିତପାବନ ଶ୍ରୀଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଅବସ୍ଥାନ କରି ଭକ୍ତଙ୍କୁ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନରେ ଫଳ ପ୍ରଦାନ କରିଥାନ୍ତି । ତ୍ରିମୂର୍ତ୍ତି ବ୍ରହ୍ମା, ବିଷ୍ଣୁ, ଶିବ ଯଥାକ୍ରମେ ତନ୍ତ୍ର, ବେଦ ଓ ଯୋଗର ଆରାଧ୍ୟ ହୋଇଥିବାରୁ ଏ ତିନିହେଁ ଭିନ୍ନ ହୋଇ ମଧ୍ୟ ଅଭିନ୍ନ ଭାବରେ ଉପନିଷଦରେ ପ୍ରମାଣିତ ହୋଇଛନ୍ତି । ଏ ତିନିହେଁ ଏକ ଅଟନ୍ତି । ଏହି ତିନିମୂର୍ତ୍ତି ମଧ୍ୟରେ ଯୋଗ, ତନ୍ତ୍ର ଓ ବେଦ ସମସ୍ତ ଶାସ୍ତ୍ରର ସତ୍ତ୍ୱା ରହିଛି ଓ ସମସ୍ତ ଶାସ୍ତ୍ର ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ସତ୍ତ୍ୱା ବିଦ୍ୟମାନ। ଶ୍ରୀଜଗନ୍ନାଥ ସଂସ୍କୃତିରେ ଗବେଷଣାର ସ୍ଥାନ ନାହିଁ । କେବଳ କିଛି ଘୋଷି, ଜାଣି, କହି ନିଜକୁ ଗବେଷକର ପରିଚୟ ଦେବା ଆସ୍ଫାଳନ ମାତ୍ର। ଅତୀତରେ ଅସଂଖ୍ୟ ଗବେଷକ ଗବେଷଣା କରି ବହୁ ଗ୍ରନ୍ଥ ରଚନା କରି ଯାଇଛନ୍ତି । ହେଲେ ଶ୍ରୀଜଗନ୍ନାଥ ଏହି ଗବେଷଣାରୁ ଊର୍ଦ୍ଧ୍ୱରେ। ଅତୀତରେ ଗବେଷଣା କେବଳ ଲେଖକର ସ୍ୱୀୟ ମତ ଅଟେ। ଶ୍ରୀଜଗନ୍ନାଥଙ୍କ ନୀତି, ବିଧି-ବିଧାନ, ତତ୍ତ୍ୱାଦି ଗବେଷଣା କରି ସ୍ଥିରୀକୃତ କରିବା ଅସଂଭବ। ଏ ପର୍ଯ୍ୟନ୍ତ ଯାହା ଲେଖା ଅଛି ତାହା ହେଉ ନାହିଁ କିମ୍ବା ସତ୍ୟ ନୁହେଁ। ସମସ୍ତେ କଳ୍ପନା ସାଗରରେ ଭାସି ଯାଇଛନ୍ତି। ଅସୀମ ଗବେଷଣା ସାଗରରେ ଭାସି ନିଜର ସତ୍ତ୍ୱା ଲୋପ କରିବା ଅପେକ୍ଷା ଭକ୍ତ ମାଧ୍ୟମରେ ପ୍ରଭୁଙ୍କ ସତ୍ତ୍ୱା ଉପଲବ୍ଧ କରିବା ହିଁ ଶ୍ରେୟସ୍କର। ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଚାରି ଦିଗରେ ଚାରିବେଦ ଓ ଚାରିଧାମର ବ୍ୟବସ୍ଥା ରହିଛି। ଶ୍ରୀଜଗନ୍ନାଥଙ୍କୁ ଚାରିବେଦ ଓ ଅଧୀନସ୍ଥ ଉପନିଷଦମାନଙ୍କରେ ତାତ୍ତ୍ୱିକ ପରିକଳ୍ପନା କରାଯାଇଛି। ପୂର୍ବଦିଗସ୍ଥ ଋଗବେଦ ଅଧୀନସ୍ଥ ଐତରାୟ ଉପନିଷଦ (୩/୧/୩)ରେ 'ପ୍ରଜ୍ଞାନଂ ବ୍ରହ୍ମଂ', ଦକ୍ଷିଣ ଦିଗସ୍ଥ ସାମବେଦ



ଅନୁସାରେ 'ଅହଂ ବ୍ରହ୍ମାସ୍ମି', ପଶ୍ଚିମ ଦିଗସ୍ଥ ଯଜୁର୍ବେଦ ଅନୁଯାୟୀ 'ତତ୍ତ୍ୱମସି' ଓ ଉତ୍ତର ଦିଗସ୍ଥ ଅଥର୍ବଦେବ ମତରେ 'ଅୟମାତ୍ମା ବ୍ରହ୍ମ' ବୋଲି ବର୍ଣ୍ଣନା କରାଯାଇଛି। ଏହି ସବୁ ମନ୍ତ୍ର ହିଁ ଯୋଗତତ୍ତ୍ୱଭିତ୍ତିକ। ଷଡ଼ଦର୍ଶନ ମଧ୍ୟରେ ମହର୍ଷି ପତଞ୍ଜଳୀଙ୍କ ଯୋଗଦର୍ଶନ ଅନ୍ୟତମ। ହଠଯୋଗକୁ ପ୍ରଧାନ ଶାସ୍ତ୍ରରୂପେ ସ୍ୱୀକାର କରାଯାଇଛି। ଏହି ଯୋଗଦର୍ଶନ ଅନୁସାରେ ବେଦବର୍ଣ୍ଣିତ 'ପ୍ରଜ୍ଞାନଂବ୍ରହ୍ମଂ' ବା ପ୍ରଜ୍ଞାକୁ କିପରି ସମାଧିସ୍ଥ କରାଯାଇ ବିଜ୍ଞାନରେ ରୂପାନ୍ତରିତ କରାଯାଏ, ତାହାର ତତ୍ତ୍ୱ ରହିଛି। ଜଣେ ଯୋଗୀ ଅସଂପ୍ରଜ୍ଞାତ ସମାଧି ସାଧନା କରିବା ପୂର୍ବରୁ ସଂପ୍ରଜ୍ଞାତ ସମାଧି ସାଧନା କରି ପ୍ରତ୍ୟୟମାନଙ୍କୁ ଆୟତ୍ତାଧୀନ କରିବାଲାଗି ଏବଂ ସେମାନଙ୍କର ତତ୍ତ୍ୱ ଜ୍ଞାତ ହେବା ଉଦ୍ଦେଶ୍ୟରେ ଯୋଗୀ ଧ୍ୟାନଯୋଗର ଆଶ୍ରୟ ଗ୍ରହଣ କରେ। ପତଞ୍ଜଳୀଙ୍କର ଅଷ୍ଟାଙ୍ଗଯୋଗ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଆଠଅଙ୍ଗ ମଧ୍ୟରେ ଧ୍ୟାନ ହିଁ ସପ୍ତମଅଙ୍ଗ ଭାବରେ ପରିଚିତ। ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କ ମତରେ ପ୍ରତ୍ୟୟଗୁଡିକ ହେଲେ କାରଣ, ମନବୃତ୍ତି, କଳ୍ପନା , ବୋଧଗମ୍ୟ ହେବାର ଉପାୟ। ଏହି ପ୍ରତ୍ୟୟମାନଙ୍କ ଏକତା ରକ୍ଷା ନକରି ପାରିବାରୁ ମାନବର ନିୟନ୍ତ୍ରଣ ଅଧୀନରେ ନଥିବାହେତୁ ନିଦ୍ରା ଅବସ୍ଥା ପ୍ରକୃତିର ଅଧୀନରେ ରହିଛି। ଏମାନଙ୍କୁ ନିଜ ଆୟତ୍ତରେ ରଖିବାର ସାଧନାକୁ ଧ୍ୟାନ କୁହାଯାଏ। ଯୋଗ ଦର୍ଶନରେ ଧ୍ୟାନର କାରିକା ବର୍ଣ୍ଣିତ ଅଛି। ଯୋଗ ଦର୍ଶନର ଆଲୋଚ୍ୟ ପ୍ରତ୍ୟୟ ସମ୍ବନ୍ଧୀୟ ଜ୍ଞାନ ଦ୍ୱାରା ଶ୍ରୀମନ୍ଦିର, ଦାରୁବିଗ୍ରହାଦି ନିର୍ମିତ ହୁଅନ୍ତି। ଧ୍ୟାନ ଯୋଗ ତତ୍ତ୍ୱରେ ଶ୍ରୀମନ୍ଦିରର ସମସ୍ତ ଦେବତାଙ୍କ ସ୍ୱରୂପ ନିରୂପଣ କରାଯାଏ। ପ୍ରତ୍ୟେକ ଅବତାରରେ ମଧ୍ୟ ମହାପ୍ରଭୁ ଯୋଗ ଶିକ୍ଷା କରିବାର ପ୍ରମାଣ ରହିଛି। ସତ୍ୟଯୁଗରେ ଭଗବାନ ବିଷ୍ଣୁ ଶହେଯୁଗ ପର୍ଯ୍ୟନ୍ତ ଧ୍ୟାନ ମାଧ୍ୟମରେ ତପସ୍ୟା କରିଥିଲେ। ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କୁ ବ୍ରହ୍ମର୍ଷି ବଶିଷ୍ଠ ଯୋଗଶିକ୍ଷା ଦେଇଥିଲେ। ଦ୍ୱାପରରେ ଭଗବାନ ଶ୍ରୀକୃଷ୍ଣ ଯୋଗଜ୍ଞାନ ହାସଲ କରି ଯୋଗେଶ୍ୱର ଭାବରେ ଖ୍ୟାତି ଅର୍ଜନ କରିବା ପରେ ଅର୍ଜୁନଙ୍କୁ ଯୋଗତତ୍ତ୍ୱ ଉପଦେଶମାନ ପ୍ରଦାନ କରିଥିଲେ। କଳିଯୁଗରେ କର୍ମପ୍ରାଧାନ୍ୟ ହେତୁ କାର୍ଯ୍ୟର କୁଶଳତାକୁ ହିଁ ଯୋଗ କୁହାଯାଏ। ଶ୍ରୀମଦ୍ ଭଗବତ ଗୀତାରେ କଳିଯୁଗ ମାନବକୁ ସଦ୍‌ଜ୍ଞାନ ଦେବା ଉଦ୍ଦେଶ୍ୟରେ ଯୋଗର ସଂଜ୍ଞା ନିରୂପଣ କରାଯାଇଛି, 'ଯୋଗଃ କର୍ମସୁ କୌଶଳମ୍' ।

ଏହି ସମସ୍ତ ପ୍ରମାଣରୁ ଶ୍ରୀଜଗନ୍ନାଥ ହିଁ ଚତୁର୍ଦ୍ଧାମୂର୍ତ୍ତି ରୂପରେ ଓ ଯୋଗାରୂଢ଼ ଅବସ୍ଥାରେ ଦର୍ଶନ ଦିଅନ୍ତି। ଯୋଗ ମାଧ୍ୟମରେ ହିଁ ଜୀବାତ୍ମା (ଭକ୍ତ) ଓ ପରମାତ୍ମା (ଭଗବାନ)ଙ୍କର ସମ୍ପର୍କ ଦୃଢ଼ୀଭୂତ ହୁଏ। ଯେପରି ନଳାନର୍ଦ୍ଦମାଦି ଦୂଷିତବସ୍ତୁ ବିଶାଳ ସାଗରରେ ମିଶିବା ପରେ ନିଜର ଅସ୍ତିତ୍ୱକୁ ହରାଇ ସମୁଦ୍ରରେ ଲୀନ ହୋଇ ପବିତ୍ର ହୋଇଯାଏ, ସେହିପରି ମାନବ ପାପରେ ଘାଂଟିହୋଇ ମଧ୍ୟ ଭକ୍ତିମାଧ୍ୟମରେ ଭଗବାନଙ୍କର ସାନ୍ନିଧ୍ୟଲାଭ କଲେ ନିଜର ପାପସତ୍ତ୍ୱାକୁ ହରାଇ ମୁକ୍ତିଲାଭ କରେ। ଭକ୍ତିର ପରାକାଷ୍ଠା ନେଇ ଏକାଗ୍ର ଚିତ୍ତରେ ପ୍ରଭୁଙ୍କୁ ଧ୍ୟାନପୂର୍ବକ ଅନୁଭୂତିରେ ଆଣିବା ହିଁ ପ୍ରକୃତ ଭକ୍ତି। ଗବେଷଣା ମାଧ୍ୟମରେ ପ୍ରଭୁଙ୍କୁ ପାଇ ହୁଏନା। ଭକ୍ତିମାଧ୍ୟମରେ ଭକ୍ତ ଭଗବାନଙ୍କର ଦର୍ଶନଲାଭ କରି ମୁକ୍ତିଲାଭ କରିବା ବିଧେୟ।

ଯୋଗପଲ୍ଲବ, ଯୋଗନିକେତନ
ଗୁଡ଼ିଆସାହି, ପୁରୀ–୧





# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

**ପରୀକ୍ଷିତ ମିଶ୍ର**

ଅନନ୍ତ କୋଟି ବ୍ରହ୍ମାଣ୍ଡ ଅଧିପତି ଶ୍ରୀଜଗନ୍ନାଥ ପୁରୁଷୋତ୍ତମ କ୍ଷେତ୍ରରେ ମାନବୀୟ ତଥା ଅଲୌକିକ ଲୀଳା ପ୍ରଦର୍ଶନ କରୁଛନ୍ତି ଶ୍ରୀମନ୍ଦିରର ରତ୍ନବେଦୀରେ ବିରାଜମାନ ହୋଇ । ବାର ମାସରେ ତେର ପର୍ବ ପାଳନ ମଧ୍ୟରେ ଘୋଷଯାତ୍ରା ଏକ ବିଶ୍ୱ ପ୍ରସିଦ୍ଧ ବିଶାଳ ପର୍ବ । ଏହି ଯାତ୍ରାରେ ମହାପ୍ରଭୁ ମହାଆଡ଼ମ୍ବରେ ରତ୍ନ ସିଂହାସନର ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରି ବଡ଼ଦାଣ୍ଡକୁ ଆସନ୍ତି । ଭବ୍ୟ ରଥ ଉପରୁ ଜଗତ ଜନଙ୍କୁ ସଦୟ ଦର୍ଶନ ଦିଅନ୍ତି । ସେ ଦର୍ଶନ ଚକ୍ଷୁକୁ ପବିତ୍ର କରେ । ସମସ୍ତ ପାପତାପ ଧୌତ କରେ । ଏହି ନବଦିନ ଯାତ୍ରାରେ ମହାପ୍ରଭୁ ବର୍ଣ୍ଣାଢ଼୍ୟ ଯାତ୍ରାରେ ଜନ୍ମବେଦୀଙ୍କୁ ଉଲ୍ଲସିତ ଚିତ୍ତରେ ଗମନ କରନ୍ତି ଏବଂ ପତିତପାବନ ନାମକୁ ସାର୍ଥକ କରନ୍ତି । ସେ ଭାବର ଦେବତା, ନାମ ଭାବଗ୍ରାହୀ, ଉତ୍ତମ ଭାବରେ ବନ୍ଧା । ସେ ଅନ୍ତରର ସ୍ୱାମୀ, ତେଣୁ ଅନ୍ତର୍ଯ୍ୟାମୀ । ସାଧୁ ସନ୍ଥ ଯୋଗୀ ମୁନି ଋଷି ଏବଂ ଶ୍ରଦ୍ଧାଳୁ ଭକ୍ତଙ୍କ ପ୍ରତି ତାଙ୍କ ହୃଦୟ ଅତ୍ୟନ୍ତ କୋମଳ । ଯିଏ ଯେପରି ଆଚରଣ ପ୍ରଦର୍ଶନ କରନ୍ତି, ସେହିପରି ଫଳ ପାଆନ୍ତି । ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜୁନଙ୍କୁ କହିଛନ୍ତି – ହେ ଅର୍ଜୁନ ! ଯେଉଁ ଭକ୍ତମାନେ ମୋତେ ଯେଉଁପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ସ୍ମରଣ କରେ, କାରଣ ମନୁଷ୍ୟମାନେ ସବୁ ପ୍ରକାରେ ମୋର ହିଁ ମାର୍ଗ ଅନୁସରଣ କରନ୍ତି ।



ତାଙ୍କର କ୍ଷେତ୍ର ଏବଂ ନାମ ଉଭୟ ପୁରୁଷୋତ୍ତମ । ସେ ଆଦ୍ୟ ନୃସିଂହ, ନୀଳମାଧବ, ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତି । ସେ ଅନାଦି, ଅନନ୍ତ, ଅବ୍ୟୟ, ଅବ୍ୟକ୍ତ, ଅସୀମ । ଶ୍ରୀଜଗନ୍ନାଥ ସ୍ୱୟଂ ଅବତାରୀ ପୂର୍ଣ୍ଣବ୍ରହ୍ମ ଆଗମ ନିଗମର ଈଶ୍ୱର, ସୃଷ୍ଟି ସ୍ଥିତି ପ୍ରଳୟର କାରଣ । ଖଳ, ହିଂସ୍ର, ଦ୍ରୋହୀ, ବିଧର୍ମୀ ଏବଂ ଅସୁରମାନଙ୍କୁ ବିକଟରୂପ ଧାରଣ କରି ସଂହାର କରନ୍ତି ।

ସ୍କନ୍ଦ ପୁରାଣ ଉପାଖ୍ୟାନ ଅନୁଯାୟୀ ପୁରୁଷୋତ୍ତମ କ୍ଷେତ୍ରର ନୀଳକନ୍ଦରରେ ବିରାଜିତ ନୀଳମାଧବଙ୍କୁ ଦର୍ଶନ କଲେ ମୋକ୍ଷ ପ୍ରାପ୍ତି ହୁଏ । ଏଠାରେ ଯମ ଦଣ୍ଡ ଲାଗେ ନାହିଁ । ଏହି ଦୀପ୍ତିମନ୍ତ ଇନ୍ଦ୍ରନୀଳମଣି ପ୍ରତିମା ଅତ୍ୟନ୍ତ ମନୋହର, କିନ୍ତୁ ଦର୍ଶନ ଦୁର୍ଲଭ । ନୀଳମାଧବଙ୍କୁ ନିଶାକାଳରେ ଦେବତାମାନେ ପୂଜା କରୁଥିଲେ । ପ୍ରଭୁଙ୍କ ସ୍ଥାନକୁ କେବଳ ଶବର ରାଜା ବିଶ୍ୱାବସୁଙ୍କ ପ୍ରବେଶ ଥିଲା । ପରମ ବିଷ୍ଣୁଭକ୍ତ ଏବଂ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମନରେ ଉତ୍ସୁକତା ଜାତହେଲା । ସେ ପୁରୁଷୋତ୍ତମ କ୍ଷେତ୍ର ଏବଂ ମହାବିଷ୍ଣୁଙ୍କୁ ଠାବ



କରିବାକୁ ଚତୁଃପାର୍ଶ୍ୱକୁ ଦୂତ ପ୍ରେରଣ କଲେ । ଏହି କାମରେ ପଠାଇଲେ ତାଙ୍କ ରାଜପୁରୋହିତଙ୍କ ଅନୁଜ ବିଦ୍ୟାପତିଙ୍କୁ । ସୌଭାଗ୍ୟକୁ ବିଦ୍ୟାପତି ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ପଦାର୍ପଣ କରି ବିଶ୍ୱାବସୁଙ୍କ ସହିତ ବନ୍ଧୁତା ସ୍ଥାପନ କଲେ । ଶେଷରେ ସେ ମହାପ୍ରଭୁ ନୀଳମାଧବଙ୍କୁ ଦର୍ଶନ କରିବାକୁ ସଫଳ ହେଲେ । ସେ ଏହି ବାର୍ତ୍ତା ନେଇ ଅବନ୍ତୀ ନଗରକୁ ଫେରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ରାଜା ପାଟମନ୍ତ୍ରୀ, ସୈନ୍ୟ ସାମନ୍ତ ଏବଂ ଦେବର୍ଷି ନାରଦଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିବା ବେଳକୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ଏକ ଭୀଷଣ ବାଲୁକା ଝଡ଼ରେ । ବିଷାଦଗ୍ରସ୍ତ ରାଜାଙ୍କୁ ଦେବର୍ଷି ଆଶ୍ୱାସନା ଦେଲେ । ତାଙ୍କରି ଉପଦେଶରେ ରାଜା ଏକ ସହସ୍ର ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରାଇଲେ । ସେ ମଧ୍ୟ ନୀଳ କନ୍ଦରରେ ଭୟଙ୍କର ରୂପୀ ନୃସିଂହଙ୍କୁ ଦର୍ଶନ କଲେ । ରାଜା ଏକ ମନୋରମ ମନ୍ଦିର ନିର୍ମାଣ କରି ଏଥିରେ ନୃସିଂହ ମୂର୍ତ୍ତି ସ୍ଥାପନା କଲେ । ଦେବର୍ଷିଙ୍କ ଆଗ୍ରହରେ ନୃସିଂହଙ୍କ ସମ୍ମୁଖରେ ଏକ ହଜାର ବର୍ଷ ପର୍ଯ୍ୟନ୍ତ ଅଶ୍ୱମେଧ ଯଜ୍ଞ କର୍ମ ଅନୁଷ୍ଠିତ ହେଲା । ନୀଳକଣ୍ଠଙ୍କ ସମୀପରେ ମଧ୍ୟ ଏକ ସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହେଲା । ବିଭିନ୍ନ ଦେବତାଙ୍କ ନିକଟରେ ଯଜ୍ଞାନୁଷ୍ଠାନ ଅନ୍ତେ ପବିତ୍ର ମହୋଦଧି ତଟରେ ଦିବ୍ୟଦାରୁର ସନ୍ଧାନ ହେଲା, ଯାହାଙ୍କୁ ମହା ଆଡ଼ମ୍ବର ପୂର୍ଣ୍ଣ ପଟୁଆରରେ ଅଣାଗଲା । ରୁଦ୍ଧଦ୍ୱାର ଏବଂ ନିଷିଦ୍ଧଗୃହରେ ଏକ ବୃଦ୍ଧବର୍ଦ୍ଧକୀ (ଯିଏ ବିଷ୍ଣୁଙ୍କ ଅବତାର ବା ସ୍ୱୟଂ ବିଷ୍ଣୁ)ଙ୍କ ଦ୍ୱାରା ପ୍ରତିମା ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା, କିନ୍ତୁ ମାତ୍ର ପନ୍ଦର ଦିନରେ ଦ୍ୱାର ଉନ୍ମୁକ୍ତ କରିବାରୁ ଚତୁର୍ଦ୍ଧାମୂର୍ତ୍ତି ଅସଂପୂର୍ଣ୍ଣ ରୂପରେ ବିରାଜମାନ ହୋଇଥିବା ଦେଖାଗଲା । ସେ ଥିଲେ ସାକ୍ଷାତ ବ୍ରହ୍ମ ପ୍ରତିମା ଏବଂ ପୂର୍ଣ୍ଣତାର ପ୍ରତୀକ । ପୁରୁଷୋତ୍ତମ ଜଗନ୍ନାଥ ଶ୍ରୀକୃଷ୍ଣ ଏକ ଏବଂ ଅଭିନ୍ନ, ପରଂବ୍ରହ୍ମ । ଏହି ପରମାନନ୍ଦଙ୍କୁ ପାଇବା ପାଇଁ ଜୀବ ବ୍ୟାକୁଳ, କିନ୍ତୁ ସ୍ଥୂଳ ଶରୀର ଏହାକୁ ଜାଣିପାରେନି ।

ଚରାଚର ବିଶ୍ୱବ୍ରହ୍ମାଣ୍ଡ ପରିବ୍ୟାପ୍ତ ମହାବିଷ୍ଣୁ ଭଗବାନ ଜଗନ୍ନାଥଙ୍କ ସେବାଭକ୍ତି ପ୍ରେମରେ ଅବଗାହିତ ରାଜା ଇନ୍ଦ୍ରଦ୍ୟୁମ୍ନ, ଶବର ମୁଖ୍ୟ ବିଶ୍ୱାବସୁ, ଆଚାର୍ଯ୍ୟ ବିଦ୍ୟାପତି ଏବଂ ପରବର୍ତ୍ତୀ ସମୟରେ ଶଙ୍କର, ରାମାନୁଜ, ନାନକ, କବୀର, ଗଣପତି ଭଟ୍ଟଙ୍କ ପରି ଧର୍ମାତ୍ମାମାନେ ଅମର ହୋଇଗଲେ । ପ୍ରଭୁ ଶ୍ରୀଚୈତନ୍ୟ ବୈଷ୍ଣବ ତତ୍ତ୍ୱର ମହାନାୟକ ଯିଏ ଦୀର୍ଘ ବର୍ଷ କାଳ ଶ୍ରୀକ୍ଷେତ୍ରରେ ମହାନାମ ଗାଇ ଆତ୍ମ ବିଭୋର ହୋଇ ପଡୁଥିଲେ ।

**ସହାୟକ ଗ୍ରନ୍ଥ**


୧. ଶ୍ରୀମଦ୍‌ଭଗବଦ୍ ଗୀତା
୨. ବାମଦେବ ସଂହିତା
୩. ନୀଳାଦ୍ରି ମହୋଦୟଃ
୪. ଉତ୍କଳ ପ୍ରସଙ୍ଗ ଜୁଲାଇ ୨୦୦୩
୫. ଭାରତୀୟ ଦେବଦେବୀ ଓ ଶ୍ରୀଜଗନ୍ନାଥ– ଲେଖକ: ପୂର୍ଣ୍ଣେନ୍ଦୁ କୁମାର ନନ୍ଦ ।


ରାଜେନ୍ଦ୍ର ନଗର, କଟକ





# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଦର୍ଶନରେ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ

ସୁରେଶ କୁମାର ପ୍ରଧାନ

ସର୍ବଧର୍ମ-ଦର୍ଶନ-ସମନ୍ୱୟର ପ୍ରତିଭୂ ଶ୍ରୀଜଗନ୍ନାଥ ହିଁ ଅନନ୍ତକୋଟି ବ୍ରହ୍ମାଣ୍ଡର ସ୍ରଷ୍ଟା ଓ ତ୍ରେତିଶକୋଟି ଦେବତାଙ୍କ ମଉଡ଼ମଣି । ସେ ସର୍ବାନ୍ତର୍ଯ୍ୟାମୀ, ସର୍ବବ୍ୟାପୀ ଓ ସର୍ବଶକ୍ତିମାନ ହୋଇଥିଲେ ହେଁ, ତତ୍ତ୍ୱ ତଃ ସେ ନିର୍ଗୁଣ-ନିରାକାର ହୋଇ ମଧ୍ୟ ସଗୁଣ, ସାକାର ଦାରୁ ମଧ୍ୟରେ ଅବିନଶ୍ୱର 'ଦାରୁବ୍ରହ୍ମ' ରୂପେ ବଡ଼ଦେଉଳରେ ବିରାଜିତ । ଦାରବୀ ଲୀଳାର ଦ୍ରଷ୍ଟା ହୋଇ ସେ ମଧ୍ୟ ଶୂନ୍ୟ ଓ ମହାଶୂନ୍ୟର ଅତୀତ ଶୂନ୍ୟବ୍ରହ୍ମ- ନିରାକାର ସେ ତ ଶୂନ୍ୟରେ, ରୂପ ଧରିଛି ମାନବ ଭିତରେ । ଦାରୁ ତ୍ରିମୂର୍ତ୍ତି ପୂର୍ଣ୍ଣ ଅବତାର, ତ୍ରିକାଳ ତ୍ରିଗୁଣ ସାକାର । ସେ ପରମ ପୁରୁଷ ପରଂବ୍ରହ୍ମ, ସେ ଦାରୁରୂପୀ ଦାରୁବ୍ରହ୍ମ । ସେ ଅଚିନ୍ତ୍ୟ, ଅପ୍ରକାଶ୍ୟ ଓ ସର୍ବବ୍ୟାପୀ ହୋଇଥିବାରୁ ସେ ହିଁ 'ବିଷ୍ଣୁ' । ସେ ମଙ୍ଗଳମୟ ହେତୁ 'ଶିବ' । ସେ ସର୍ବୋତ୍କୃଷ୍ଟ ଲକ୍ଷଣଯୁକ୍ତ ହେତୁ 'ଲକ୍ଷ୍ମୀ' । ସେ ଅଖିଳ ପ୍ରଜାଙ୍କ ପାଳକ ହେତୁ 'ପ୍ରଜାପତି' । ସେ ଐଶ୍ୱର୍ଯ୍ୟଶାଳୀ ହେତୁ 'ଇନ୍ଦ୍ର' । ଅସୀମ ବଳଶାଳୀ ହେତୁ ବରୁଣ । ସେ ସଂସାରକୁ କଳନ କରୁଥିବାରୁ 'କାଳୀ' । ଠିକ୍ ସେହିପରି ସେ ସଚରାଚର ବ୍ରହ୍ମାଣ୍ଡକୁ ଜ୍ୟୋତି ପ୍ରଦାନକାରୀ ହେତୁ 'ଜ୍ୟୋତିବ୍ରହ୍ମ' ବା ସୂର୍ଯ୍ୟଦେବ । ଦାରୁବ୍ରହ୍ମ ସକଳ ଘଟରେ ଜ୍ୟୋତିବ୍ରହ୍ମ ରୂପରେ ବିରାଜିତ । ଅତଏବ



ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଓ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ ଏକ ଓ ଅଭିନ୍ନ । ଶୂନ୍ୟବ୍ରହ୍ମଙ୍କ ସତ୍ତା ସାକାର ରୂପରେ ଦାରୁବ୍ରହ୍ମ ଓ ତଦ୍ ଜ୍ୟୋତି ରୂପରେ ପ୍ରକାଶମାନ ଦେବତା ରୂପରେ ଆବିର୍ଭୂତ । ମହାପୁରୁଷ ଅଚ୍ୟୁତାନନ୍ଦ 'ଦାରୁବ୍ରହ୍ମ' ଓ 'ଜ୍ୟୋତିବ୍ରହ୍ମ'ଙ୍କ ଅଭେଦତ୍ୱ ଅବଲୋକନ କରି ଗାଇଛନ୍ତି-

ବ୍ରହ୍ମ ଏକାକ୍ଷର ସେ ଯେ ଆପେ ନିରଞ୍ଜନ<br>
ଦେହରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ<br>
ଭଗତ ଭାବରେ ବିଜେ ଦାରୁବ୍ରହ୍ମ ରାଶି<br>
ଅଲେଖ ଭବନୁଂ ଖସି ଜ୍ୟୋତିରୂପ ଦୃଶି ।

ନାଶଶୀଳ ସଂସାରର ଅବିନଶ୍ୱର ଶାଶ୍ୱତ ସତ୍ତା ହିଁ ବ୍ରହ୍ମଦାରୁ ଶ୍ରୀଜଗନ୍ନାଥ । ଭବମାନବ ସର୍ବପ୍ରଥମେ ପ୍ରକୃତି ମଧ୍ୟରେ ଦାରୁ ବା ବୃକ୍ଷକୁ ଉପାସନା କରିବା ସହିତ ସକଳ ଶକ୍ତିର ଆଧାର ସୂର୍ଯ୍ୟଦେବଙ୍କୁ 'ଜ୍ୟୋତିବ୍ରହ୍ମ' ରୂପେ ପୂଜାର୍ଚ୍ଚନା କଲା । ଏ ଦୃଷ୍ଟିରୁ ବିଚାର କଲେ ଆଦିଦେବତା ଶ୍ରୀ ଦାରୁବ୍ରହ୍ମଙ୍କ ଅଭିନ୍ନ ରୂପ ହିଁ ଜ୍ୟୋତିବ୍ରହ୍ମ ସୂର୍ଯ୍ୟଦେବ ଶ୍ରୀଜଗନ୍ନାଥଙ୍କ କୋଟି ଆକର୍ଷଣରେ ସଂସାର ଚାଳିତ ହେଉଥିବା ବେଳେ ସୂର୍ଯ୍ୟଦେବଙ୍କ ମହାକର୍ଷଣ ବଳରେ ସକଳ ଗ୍ରହ-ନକ୍ଷତ୍ର ନିୟନ୍ତ୍ରିତ ଓ ବିଶ୍ୱବ୍ରହ୍ମାଣ୍ଡ ଆଲୋକିତ । ଦାରୁବ୍ରହ୍ମଙ୍କ ତେଜୋମୟ ପ୍ରକାଶ ରୂପେ



ସୂର୍ଯ୍ୟଦେବତା ଭାରତୀୟ ଆଧ୍ୟାତ୍ମିକ ପରମ୍ପରା ଓ ଜଗନ୍ନାଥ ସଂସ୍କୃତିର ଅବିଚ୍ଛିନ୍ନ ଧାରା ରୂପେ ଗ୍ରହଣୀୟ । ଏ ଦୃଷ୍ଟିରେ ଶ୍ରୀମନ୍ଦିରରେ ଅନୁଷ୍ଠିତ ପର୍ବପର୍ବାଣି ଓ ଉପାସନାରେ ସୂର୍ଯ୍ୟୋପାସନା ସ୍ୱତନ୍ତ୍ର ସ୍ଥାନ ଅଳଙ୍କୃତ କରିପାରିଛି । ସୌର ଉପାସକମାନେ 'ଜ୍ୟୋତିବ୍ରହ୍ମ'ଙ୍କୁ ଦାରୁବ୍ରହ୍ମଙ୍କ ଭିତରେ ଦର୍ଶନ କରି କୃତାର୍ଥ ହୋଇଥାନ୍ତି । ମହନୀୟତା ହେଉଛି ବୌଦ୍ଧ, ଜୈନ, ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ, ସୌର, ଶିଖ ଆଦି ସକଳ ସମ୍ପ୍ରଦାୟର ଧର୍ମାବଲମ୍ବୀ ଆପଣା ଆପଣା ଦେବତା ବା ଇଷ୍ଟଙ୍କୁ ଜଗନ୍ନାଥଙ୍କ ଭିତରେ ଦର୍ଶନ କରି ଧନ୍ୟ ହୋଇଛନ୍ତି ।

ପରଂବ୍ରହ୍ମଙ୍କ ତେଜୋମୟ ବା 'ଜ୍ୟୋତି ରୂପ' ହିଁ ସୂର୍ଯ୍ୟଦେବ । ବ୍ରହ୍ମ ଯେଉଳି ସର୍ବବ୍ୟାପୀ, ଠିକ୍ ସେହିପରି ବ୍ରହ୍ମ ଜ୍ୟୋତି ମଧ୍ୟ ସର୍ବବ୍ୟାପୀ । ଏ ସମ୍ପର୍କରେ ପୁରାଣରେ ବର୍ଣ୍ଣନା ରହିଛି–

'ଜୟ ହେ ଛାୟା ରମଣ ଜଗତ ଗୋସାଇଁ
ଧର୍ମରୂପେ ପୃଥିବୀରେ ଅଛ ଉଦ ହୋଇ ॥
ତବ ତେଜ ପାଇ ଦେବ ତ୍ରିଲୋକ ଜୀବିତ
ତବ ବିହୀନେ ସଂସାର ହୁଏ ରସାଗତ ॥
ତ୍ରିଭୁବନ କର୍ତ୍ତାନାଥ ଅତୁଳ ବିଭୂତି
ସର୍ବଦେବଙ୍କ ଅଗ୍ରଣୀ ସର୍ବଗ୍ରହ ପତି ॥

ଦାରୁବ୍ରହ୍ମଙ୍କ ଦାରବୀ ଲୀଳାର ଶ୍ରେଷ୍ଠ ଗଣପର୍ବ ହେଲା ରଥଯାତ୍ରା । ପ୍ରଭୁ ରଥାରୂଢ଼ ହୋଇ ଜଗତବାସୀଙ୍କୁ ଦର୍ଶନ ଦିଅନ୍ତି । ସେ ଚତୁର୍ଦ୍ଧାମୂର୍ତ୍ତିରେ ଅବସ୍ଥାନ କଲାବେଳେ ଶ୍ରୀସୁଦର୍ଶନ ଓ ରଥଯାତ୍ରାରେ ରଥ ଉଭୟ ସୂର୍ଯ୍ୟଦେବଙ୍କ ଚକ୍ର ଓ ରଥ ସହ ବିଶେଷ ରୂପେ ସମ୍ପର୍କିତ । ସତ୍ୟଯୁଗରେ 'ଚକ୍ର' ବିଷ୍ଣୁଙ୍କ ହସ୍ତରେ, ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ହସ୍ତରେ ଶୋଭାବର୍ଦ୍ଧନ କରୁଥିବାବେଳେ କଳିଯୁଗରେ ଶ୍ରୀଜନ୍ନାଥଙ୍କ ହସ୍ତରେ 'ସୁଦର୍ଶନ ଚକ୍ର' ନାମରେ ମହିମାନ୍ୱିତ । ସୂର୍ଯ୍ୟଦେବ 'ଚକ୍ର'ର ପ୍ରତୀକ ହୋଇଥିବାବେଳେ ଦାରୁବ୍ରହ୍ମ ହିଁ 'ଚକ୍ରଧାରୀ' । ଶାସ୍ତ୍ର ପୁରାଣରେ ଶ୍ରୀଜନ୍ନାଥଙ୍କ ବିଷ୍ଣୁ ରୂପସହ ସୂର୍ଯ୍ୟଦେବଙ୍କ ଅଭିନ୍ନତ୍ୱ ବିଶେଷ ଆଲୋଚିତ । ଏ ଦୃଷ୍ଟିରୁ ଜଗନ୍ନାଥ ଧର୍ମ, ସଂସ୍କୃତି ଓ ପରମ୍ପରାରେ ସୂର୍ଯ୍ୟ ଉପାସନା ଏକ ଅବିଚ୍ଛିନ୍ନ ଅଙ୍ଗ ହୋଇ ଏକ ସମନ୍ୱୟାତ୍ମକ ଧାରା ସୃଷ୍ଟି କରିପାରିଛି ।

ଶ୍ରୀମନ୍ଦିରରେ ସୂର୍ଯ୍ୟଙ୍କ ଉପାସନା ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଥିବାରୁ ଶ୍ରୀମନ୍ଦିରରେ ଲକ୍ଷ୍ମୀ ମନ୍ଦିର ପୂର୍ବକୁ କୂର୍ମ ପ୍ରାଚୀର ନିକଟରେ ସୂର୍ଯ୍ୟ ନାରାୟଣ ମନ୍ଦିର ବିଦ୍ୟମାନ । ପ୍ରତ୍ୟହ ସକାଳ ୮.୩୦ରେ ଶ୍ରୀମନ୍ଦିର ଭୋଗ ସୂର୍ଯ୍ୟଦେବଙ୍କଠାରେ ଲାଗି ହୁଏ । ଏଥିରେ ଦୁଇଗୋଟି କୋରା ଓ ଅନ୍ନ ଭୋଗ ଦିଆଯାଇଥାଏ । ସୂର୍ଯ୍ୟଦେବଙ୍କ ସ୍ୱତନ୍ତ୍ର ରୋଷଘର ମଧ୍ୟ ରହିଛି। ପ୍ରତ୍ୟହ ରବିବାର ଦିନ ସୂର୍ଯ୍ୟନାରାୟଣଙ୍କ ଦୁଇଥର ସ୍ନାନ ହୋଇଥାଏ । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣରେ ମହାସ୍ନାନ ଅନୁଷ୍ଠିତ ହୁଏ । ମାଘ ଶୁକ୍ଳ ସପ୍ତମୀ ତିଥିରେ ସୂର୍ଯ୍ୟଦେବ ପ୍ରଥମ ରଥାରୋହଣ କରନ୍ତି । ଚୈତ୍ର ଗୁଣ୍ଡିଚାରେ ସୂର୍ଯ୍ୟଙ୍କ ପ୍ରତିମା ଜଗମୋହନକୁ ବିଜେ କରନ୍ତି । ସପ୍ତପୁରୀ ଅମାବାସ୍ୟାରେ ସାତଗୋଟି ପୁରୀ ଲାଗି ହୋଇଥାଏ । କୁମାର ପୂର୍ଣ୍ଣିମା, ଓଢ଼ଣ ଷଷ୍ଠୀ ଓ ବସନ୍ତ ପଞ୍ଚମୀରେ ନୂତନ ବସ୍ତ୍ର ଲାଗି ହୁଏ । ଶ୍ରୀମନ୍ଦିର ଦୈନିକ ପୂଜାବିଧିରେ ସୂର୍ଯ୍ୟୋପାସନା ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସ୍ନାନଯାତ୍ରା ଓ ଘୋଷଯାତ୍ରା ସୂର୍ଯ୍ୟଙ୍କ ଗତି ଅନୁସାରେ ଅନୁଷ୍ଠିତ ହେବା ବିଧି ରହିଛି । ଦକ୍ଷିଣାୟନ କର୍କଟ ସଂକ୍ରାନ୍ତିରେ ଶ୍ରୀଜୀଉମାନଙ୍କ ଦକ୍ଷିଣାୟନ ବନ୍ଦାପନା ହୁଏ ।

ସୂର୍ଯ୍ୟଦେବ ଉତ୍ତର ଦିଗରୁ ପ୍ରତ୍ୟାବର୍ତ୍ତନ କଲେ ଅନୁଷ୍ଠିତ ହୁଏ ବାହୁଡ଼ା ଯାତ୍ରା । ଶ୍ରୀମନ୍ଦିର ସେବା ନୀତିରେ ସୂର୍ଯ୍ୟ ଉପାସନାର ପ୍ରଚଳନ ଥିବାରୁ ପ୍ରଥମେ ସୂର୍ଯ୍ୟପୂଜା ଅନୁଷ୍ଠିତ ହୁଏ । ଶ୍ରୀମନ୍ଦିରର ମଧ୍ୟାହ୍ନକାଳୀନ ପୂଜା ସମୟରେ ଜଗନ୍ନାଥଙ୍କୁ 'ବ୍ରହ୍ମଜ୍ୟୋତି' ରୂପେ ଧ୍ୟାନ କରାଯାଇ ଭକ୍ତି ନୈବେଦ୍ୟ ଅର୍ପିତ ହୋଇଥାଏ ।

ସୌରମଣ୍ଡଳରେ ଅବସ୍ଥିତ ନବଗ୍ରହଙ୍କ ଅନୁସାରେ ଦାରୁବ୍ରହ୍ମଙ୍କ ନବଦିନାତ୍ମକ ଯାତ୍ରା ଅନୁଷ୍ଠିତ ହୁଏ । ମହନୀୟତା ଏହିକି ଘୋଷଯାତ୍ରା ସମୟରେ 'ଦାରୁବ୍ରହ୍ମ' ଜ୍ୟୋତିବ୍ରହ୍ମ ରୂପରେ



ବିରାଜମାନ କରି ଅଗଣିତ ଭକ୍ତ ଓ ଦର୍ଶନାର୍ଥୀଙ୍କୁ କୃତାର୍ଥ କରନ୍ତି । ଘୋଷଯାତ୍ରା ଓ ବାହୁଡ଼ାଯାତ୍ରା ସମୟରେ ଶ୍ରୀଜୀଉ ରଥାରୂଢ଼ ହେବା ପୂର୍ବରୁ ତାଙ୍କ ମସ୍ତକରେ ଟାହିଆ ଶୋଭାପାଏ । ଉକ୍ତ ଟାହିଆ ହିଁ ସୂର୍ଯ୍ୟଙ୍କ ଜ୍ୟୋତିମଣ୍ଡଳର ପ୍ରତୀକ । ସୂର୍ଯ୍ୟଦେବଙ୍କୁ ମଧ୍ୟ ଦାରୁବ୍ରହ୍ମଙ୍କ ଚକ୍ଷୁ ବୋଲି ଅଭିହିତ କରାଯାଇଛି । ସେହିପରି ସ୍କନ୍ଦପୁରାଣରେ ସୂର୍ଯ୍ୟଙ୍କୁ ନୃସିଂହ ବୋଲି କୁହାଯାଇଛି । ସୂର୍ଯ୍ୟଙ୍କ ଅସ୍ତକାଳୀନ ଅବସ୍ଥାକୁ ବିଷ୍ଣୁଙ୍କ ସହ ତୁଳନା କରାଯାଇଥିବାବେଳେ ମଧ୍ୟାହ୍ନ ସମୟକୁ ମହେଶ୍ୱର ଓ ଉଦୟ କାଳକୁ ବ୍ରହ୍ମଦେବଙ୍କ ତତ୍ତ୍ୱ ସହ ତୁଳନା କରାଯାଇଛି ।

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ମଧ୍ୟ ମହାକାଳର ପ୍ରତୀକ । ଏ ଦୃଷ୍ଟିରେ ସେ କାଳାତୀତ ଓ କାଳ ସର୍ବଦା ତାଙ୍କ ଇଙ୍ଗିତରେ ନିୟନ୍ତ୍ରିତ ।

'କାଳରୂପିଣମ୍'ଙ୍କ ହସ୍ତରେ ଶୋଭିତ ସ୍ତମ୍ଭକାର ସୁଦର୍ଶନ ମଧ୍ୟ କାଳର ପ୍ରତୀକ । ଶ୍ରୀମନ୍ଦିର ଚୂଡ଼ାରେ ଶୋଭିତ ନୀଳଚକ୍ର ଚକ୍ରାକାର ଧାରଣ କରି ମହାକାଳର ସଙ୍କେତ ମଧ୍ୟ ପ୍ରଦାନ କରିଅଛି । ଏ ଦୃଷ୍ଟିରୁ 'ଶ୍ରୀସୁଦର୍ଶନ' ଓ 'ନୀଳଚକ୍ର' ସୂର୍ଯ୍ୟଦେବତାଙ୍କ କାଳରୂପର ମହାନ୍ ପ୍ରତୀକ । 'ଅଗ୍ନିପୁରାଣ' ଅନୁସାରେ ରାଶିଚକ୍ରରେ ସୂର୍ଯ୍ୟଦେବ ଯେତେବେଳେ ମୀନରାଶିରେ ଅବସ୍ଥାନ କରନ୍ତି ତତ୍କାଳେ ସେ ବିଷ୍ଣୁ ନାମରେ ମହିମାନ୍ୱିତ ହୋଇଥାନ୍ତି ଏବଂ ତଦ୍‌ବର୍ଣ୍ଣ 'ନୀଳ' ବର୍ଣ୍ଣ ବୋଲି କୁହାଯାଇଥାଏ ।

ସୂର୍ଯ୍ୟଦେବଙ୍କ ସହିତ 'ରଥ'ର ସମ୍ପର୍କ ଅତୀବ ନିବିଡ଼ । ସୂର୍ଯ୍ୟଦେବ ସପ୍ତଅଶ୍ୱ ସଜ୍ଜିତ ରଥରେ ବ୍ୟୋମପଥରେ ଯାତାୟାତ କରି ସଂସାର ପାଳନ କରିଥିବାଭଳି, ଦାରୁବ୍ରହ୍ମ 'ଏକ ଚକ୍ର ରଥାରୂଢ଼' ହୋଇ ଜଗତର କଲ୍ୟାଣ କାମନା କରନ୍ତି ।

'ଜ୍ୟୋତିବ୍ରହ୍ମ' ସୂର୍ଯ୍ୟଙ୍କ ସପ୍ତଅଶ୍ୱ ରଥ ସହ ଦାରୁବ୍ରହ୍ମଙ୍କ ରଥ ବେଶ୍ ତୁଳନୀୟ । ତତ୍ତ୍ୱତଃ ସୂର୍ଯ୍ୟଙ୍କ ସପ୍ତରଥ ରାଶିଚକ୍ରର ସାତବାରକୁ ପ୍ରତିନିଧିତ୍ୱ କରିଥାଏ । 'ଋଗ୍‌ବେଦ' ୬।୪୭।୨୮ରେ ରଥକୁ ସୂର୍ଯ୍ୟଙ୍କ ଗର୍ଭ ବୋଲି କୁହାଯାଇଥାଏ । 'ବରାହପୁରାଣ'ରେ ସୂର୍ଯ୍ୟଦେବଙ୍କ ସପ୍ତନାମ ମଧ୍ୟରୁ 'ଜଗନ୍ନାଥ' ଅନ୍ୟତମ । ରଥତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ 'ରଥଯାତ୍ରା' ହେଉଛି 'ଜୀବ' ଓ 'ପରମ'ର ମହାମିଳନ । କଠୋପନିଷଦରେ ମଧ୍ୟ ଆତ୍ମାକୁ ରଥୀ ଓ ଶରୀରକୁ ଏକ ରଥ ବୋଲି କୁହାଯାଇଅଛି । ରଥରେ ସାରଥୀ ହେଉଛି ବୁଦ୍ଧି, ରଜ୍ଜୁ ବା ଦଉଡ଼ି ହେଉଛି ମନ । ଇନ୍ଦ୍ରିୟଗୁଡ଼ିକ ହେଉଛନ୍ତି ଅଶ୍ୱ । ଶରୀର ମଧ୍ୟରେ ଆତ୍ମା ସବାର ହେବାଭଳି, ରଥ ଉପରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ସବାର ହୋଇ ଲୀଳା ସରଂଚନା କରିଥାଆନ୍ତି ।

ସ୍ମରଣାତୀତ କାଳରୁ ସୌରସଂସ୍କୃତି ସନାତନ ସଂସ୍କୃତି (ହିନ୍ଦୁଧର୍ମ)ର ଅବିଚ୍ଛିନ୍ନ ଧାରା ରୂପେ ସୂର୍ଯ୍ୟୋପାସନାର ପ୍ରସାର ପ୍ରଚାର ଘଟାଇ ସୂର୍ଯ୍ୟଦେବଙ୍କ ମହିମାକୁ ଜନମାନସରେ ପ୍ରଭାବିତ କରିପାରିଛି । ଅତଏବ 'ଦାରୁବ୍ରହ୍ମ'ଙ୍କ ପ୍ରକାଶ୍ୟ ରୂପ ହିଁ 'ଜ୍ୟୋତିବ୍ରହ୍ମ' ଯାହା ସକଳ ପ୍ରାଣୀଙ୍କୁ ଲାଳନ-ପାଳନ କରି ଜଗତକୁ ଜ୍ୟୋତି ଦାନ କରୁଅଛି ।

ଖୁଣ୍ଟୁଣୀ, ଆଠଗଡ଼, କଟକ





# ଭକ୍ତ ବଳରାମଙ୍କ ଭକ୍ତି ଅପାର

**ବୈକୁଣ୍ଠନାଥ ମହାପାତ୍ର**

ବଡଦାଣ୍ଡର ବୁକୁ ଉପରେ ନଭଶ୍ଚୁମ୍ୱୀ ତିନିରଥ। ଜନସମୁଦ୍ରରେ ତିନିଟି ପୋତର ଭ୍ରମ ସୃଷ୍ଟି କରୁଛି। ଘଣ୍ଟ ଘଣ୍ଟା, ଖୋଳ, ମର୍ଦ୍ଦଳ, ହରିବୋଲ, ହୁଳହୁଳି ଧ୍ୱନିରେ ପ୍ରକମ୍ପିତ ତ୍ରିଭୁବନ। ମଣିମା ଶୁଣିବା ହେଉ, ରକ୍ଷାକର ମହାବାହୁ ଆଦି ଶବ୍ଦରେ ମୁଖରିତ ପରିବେଶ। ଭକ୍ତ-ଭଗବାନ, ସେବ୍ୟ-ସେବକ ମିଳନର ମହାପର୍ବ। ଆଜି ସାଗର ନଦୀ ଆଡକୁ ପ୍ରଧାବିତ। ଭକ୍ତ ସତ୍ତା ହରାଇ ନିଜକୁ ଆବିଷ୍କାର କରୁଛି ଅନନ୍ତ ସତ୍ତାରେ, ଅପର ପକ୍ଷରେ ଭକ୍ତଭାବରେ ପରିଗଣିତ ବଳରାମ ଦାସ ଐଶ୍ୱରୀୟ ସତ୍ତାର ମହତ୍ତ୍ୱକୁ ପ୍ରେମରେ ଉପଲବ୍ଧି କରିବାକୁ ସେ ଉପସ୍ଥିତ । ପ୍ରଭୁଙ୍କ ପ୍ରତିଟି ସୃଷ୍ଟିକୁ ସମ୍ମାନ ଦେବାକୁ ବଳରାମ ଆଜି ଦେବଦାସୀ ମାଧବୀ ନିକଟରେ । ଜୀବନର ସବୁ ସୁଖକୁ ଜଳାଞ୍ଜଳି ଦେଇ ଯିଏ ସମସ୍ତ ପାପକୁ ଅଙ୍ଗୀକାର କରେ ପୁଣ୍ୟବତୀ ସେହି ମାଟିରେ ବଳରାମ ପାଦ ଥାପିଛନ୍ତି । ଏପଟେ ମୃଦୁମନ୍ଦ ପବନରେ ଭାସିଯାଉଛି ବଡ଼ଦାଣ୍ଡର ଧ୍ୱନି । ଆନମନା ହୋଇ ଉଠିଲେ ବଳରାମ ଦାସ । ଭକ୍ତ ବଳରାମ ମହାପ୍ରଭୁଙ୍କ ଅତୀବ ପ୍ରିୟ । ଦେହ ଜ୍ଞାନ ହଜିଗଲା ତାଙ୍କର । ମାନସପଟରେ ଦେଖିବାକୁ ଲାଗିଲେ ବଡ଼ଦାଣ୍ଡର ଦୃଶ୍ୟରାଜି । ବୀରବର ମହାରାଜା ଗଜପତି ଦିବ୍ୟସିଂହ ଦେବ ଛେରାପହଁରା ସାରିଲେଣି । ଶ୍ରୀନଅରକୁ ବିଜେ କରୁଛନ୍ତି । ଡ଼ାହୁକର ବେତ ହଲାଇବା ଠାଣି ଯେମିତି ଭକ୍ତମାନଙ୍କୁ ଆବାହନ କରୁଛି ରଥ ନିକଟକୁ । ବଳରାମଙ୍କର ଚିନ୍ତା, ଟିକେ ମାତ୍ର ବିଳମ୍ବ କଲେ କାଳିଆ ବାହୁଡ଼ି ଯିବ । ଶୁଭିବ ରଥର ଘର୍ଘର ନାଦ । ନା ଆଉ ନୁହେଁ । ଏଭଳି ଦୁର୍ଲ୍ଲଭ ଦର୍ଶନରୁ ବଞ୍ଚିତ ହେବି ? ଧିକାରିଲେ ନିଜକୁ ବଳରାମ ଦାସ ।

ବୋଇଲେ ଧିକ୍ ମୋ ଜୀବନ । ଅଜ୍ଞାନେ ବଞ୍ଚିଲି ମୁଁ ଦୀନ । ପ୍ରଭୁ ମୋ ରଥେ ବୀଜେ କଲେ । ଶୋଇ ମୁଁ ଅଛି ବେଶ୍ୟାତୁଳେ । ଏମନ୍ତ ବୋଲି ଗଲା ଧାଇଁ । ମିଳିଲା ପ୍ରଭୁ ପାଶେ ଯାଇ । ଅସଂଯତ କେଶ ରାଶି । ଅସଜଡ଼ା ବେଶଭୂଷା । ଗାଲରେ ପାନ ଛେପ । କଦର୍ଯ୍ୟ ଶରୀର । ସ୍ନାନ ଶୌଚ ନାହିଁ । ଛି ! କି କୁତ୍ସିତ ରୂପ ରାଶି । ଜନସମୁଦ୍ର ଠେଲି ଚାରମାଳ ଦେଇ ଉପରକୁ ଉଠିଲେ ବଳରାମ ଦାସ । ସେବକଙ୍କ ନଜର ପଡ଼ିଲା ତାଙ୍କ ଉପରେ। ଜଣେ ସେବକ ଭିଡ଼ି ଧରିଲେ ହାତକୁ । ଅପବିତ୍ର, ଅଶୌଚ ହୋଇ କୁଆଡ଼େ ପଶିଯାଉଛୁ ? ବଡ଼ ଭକ୍ତ ଦେଖେଇ ହେଉଛୁ ! ତା' ପରେ ଅନ୍ୟ ସେବକବୃନ୍ଦ ଲାଗିଗଲେ ମାଡ଼ ଦେବାରେ । ଆଉ କିଏ ବେତରେ ପ୍ରହାର କଲା । କେହି ଜଣେ ସେବକ ଗଳାରେ ଖୁବ୍ ଜୋର୍‌ରେ ଧକ୍କା ଦେଲେ । ବଳରାମ ଭାରସାମ୍ୟ ହରାଇଲେ । ଚାରମାଳ ଦେଇ ତଳେ ପଡ଼ିଗଲେ, ଉଠିବାର ସାମର୍ଥ୍ୟ ନାହିଁ । ପଣ୍ଡାମାନଙ୍କ ନାନାଦି କୁତ୍ସିତ କଟୁ କଥା, ଅଶ୍ରାବ୍ୟ ଭାଷାରେ ଗାଳି ଗୁଲଜ ବଳରାମଙ୍କ ହୃଦୟକୁ ବାରମ୍ବାର ଆଘାତ କରୁଥିଲା । ଜଣେ ସାଧାରଣ ବ୍ୟକ୍ତି ଭାବରେ ନୁହେଁ ଶ୍ରୀଜଗନ୍ନାଥଙ୍କ ଭକ୍ତ ଭାବରେ । କେହି ସେବକ ବଳରାମଙ୍କୁ ଉଠାଇଲେ ତଳୁ । ମୁଣ୍ଡ ଫାଟିଯାଇଛି । ଧାରଧାର ରକ୍ତ ବହୁଛି, ଆଖିରୁ ଲୁହର ଧାର । ବାକ୍ୟ ସ୍ଫୁରୁ ନାହିଁ ଚାହିଁଛନ୍ତି କଳାମୁଖକୁ । ଲମ୍ୱକରି ତଳେ ପଡ଼ିଗଲେ । ଥରିଲା ଥରିଲା ଗଳାରେ କହି ଉଠିଲେ - କାଳିଆ, ଏହି ତୋର ଭକ୍ତ ବତ୍ସଳ ପଣିଆ ! ତୋର ପାଖକୁ ଦର୍ଶନ କରିବାକୁ ଆସିଲି ଯେ ଦର୍ଶନ ଦେବା ବଦଳରେ ମୋ ଲୁହ ଦର୍ଶନ କଲୁ ତୁ । ଏଥିରୁ କି ଯଶ ପାଇଲୁ ।



ମାରିବାର ଅଛି ତ ନିଜେ ମାରିଲୁନି କାହିଁକି !! ପର ହାତରେ ମାଡ଼ ମରାଇ କି ଯଶ ଅର୍ଜିଲୁ ! ! ହେ କାଳିଆ, ଯଦି ସତରେ ତୋର ମୋର ଭାବ ଥାଏ, ତେବେ ଏଇଠୁ ମୁଁ ବାହୁଡ଼ି ଯାଉଛି । ତୋ ନନ୍ଦିଘୋଷ ରହିଥିବ ସେମିତି ।

ବଳରାମଙ୍କ ବ୍ୟାକୁଳତାକୁ ଉପଲକ୍ଷ୍ୟ କରି ରଥରେ ଥିବା ସେବକମାନେ ଶରବ୍ୟ କରୁଥିଲେ, ଇଏ ଚାଲିଗଲେ ରଥ ଅଟକି ଯିବ ଯେମିତି .... ଚାଲ ଚାଲ ଏଠୁ । କାନ୍ଦି କାନ୍ଦି ଗହଳି ଠେଲି ବଳରାମ ବାହୁଡ଼ି ଆସିଲେ ।

ଆସିଲା ବେଳେ ଥରିଲା ଥରିଲା ଗଳାରେ କହୁଥିଲେ । ମହାପ୍ରଭୁଙ୍କୁ ପିତୃତ୍ୱର ଶପଥ ଦେଇ କହୁଥିଲେ ସେବକର ମାନ ରକ୍ଷାକଲେ ସିନା ପ୍ରଭୁ ପଣ ସାର୍ଥକ ହେବ । ଏବେ ମୋର ଭୁଲ କେଉଁଠି ଅଛି ବିଚାର କର । ଚାଲିଲି ସମୁଦ୍ର ଅଭିମୁଖେ। ତୋ କୋଳରେ ସ୍ଥାନ ଦେଲୁନି ତ ସମୁଦ୍ର ଅଛି । ତାରି କୋଳରେ ଚିର ନିଦ୍ରାରେ ଶୋଇଯିବି । ଭକ୍ତ ବଳିଆର ନା ଲିଭିଯିବ ମହୀମଣ୍ଡଳରୁ । କାଳିଆ ଜାଣିବୁ ତୋ ହସ ଖୁସିର କୁହୁକରେ ଜଣେ ଦୁଃଖୀ କେହି ଦୁଃଖ ସହି ନପାରି ଚାଲିଯାଇଛି । ତୋ ଭକ୍ତ ରକ୍ଷଣ, ଦୀନ ବାନ୍ଧବ ବାନାର ସାର୍ଥକ ହୋଇଛି । ପଣ୍ଡାମାନଙ୍କ ମାଡ଼ରେ ଚାଲିବାର ସାମର୍ଥ୍ୟ ହରାଇଥିଲେ ବଳରାମ ଦାସ । ବହୁ କଷ୍ଟରେ ସମୁଦ୍ର କୂଳକୁ ଆସିଲେ । ସମୁଦ୍ରର ଉତ୍ତାଳ ତରଙ୍ଗ । ଯେମିତି ବଳରାମଙ୍କୁ ହାତଠାରି ଡ଼ାକୁଥିଲା । ବଳିଆ, ଆ ମୋ କୋଳକୁ ଆ... । କାଳିଆ ସିନା ତୋତେ ରଥକୁ ଉଠାଇ ଦେଲାନି । ଆଉ ମୁଁ ତୋତେ ମୋ କୋଳକୁ ଡ଼ାକୁଛି । ଭାବନା ରାଜ୍ୟରେ ବଳରାମ ଦାସ । ରଥାରୂଢ ଜଗନ୍ନାଥଙ୍କୁ ହୃଦୟ ପଟ୍ଟରେ ବାରମ୍ବାର ଦେଖୁଛନ୍ତି । ଆଖିରୁ ଲୁହ ଧାର ବହିଚାଲିଥାଏ । କାଠରେ ତିଆରି ରଥରୁ ସିନା କାଳିଆ ମୋତେ ବିଦା କରିଦେଲୁ । ଗଳାରେ ଧକ୍କା ଦେଲୁ। ଦର୍ଶନ କରିବାର ସୁଯୋଗ ଦେଲୁନି । ହେଲେ ଏବେ ଜୀବନ ହାରିବା ପୂର୍ବରୁ କାଠ ରଥରେ ସିନା ଦେଖିପାରିଲିନି, ବାଲିର ରଥରେ ଶେଷରେ ଯାଇ ଦେଖିନିଏ। ମନଭରି କାନ୍ଦିପକାଏ । ଭକ୍ତ ଜୀବନରେ ସମ୍ବଳ ଭଗବାନ । ଭଗବାନ ଯାହାର ସମ୍ବଳ ନୁହଁନ୍ତି ଜୀବନ ସାଥୀ ହୁଏ ଲୁହ । ଆଜି ଲୁହ ହୋଇଛି ବଳରାମ ଦାସଙ୍କର ସର୍ବସ୍ୱ । ଏମିତି କେତେ କ'ଣ ଭାବି ଭାବି ବାଲିରେ ନିର୍ମାଣ କଲେ ତିନିରଥ। ବଳରାମ ଦାସ କଥା ହେଉଛନ୍ତି ମହାପ୍ରଭୁଙ୍କ ସହିତ ମାନସିକ ସ୍ତରରେ । ସର୍ବାନ୍ତର୍ଯ୍ୟାମୀ ପୁରୁଷ ଭଗବାନ ଦାସେଙ୍କର ଅନ୍ତର୍ବେଦନାକୁ ବୁଝିଲେ କାଳବିଳମ୍ବ କଲେ ନାହିଁ । ସପ୍ତସମୁଦ୍ରର ଜଳରେ ଯାହାର କଳେବର ତିନ୍ତେ ନାହିଁ, ଭକ୍ତ ଆଖିର ଦୁଇଟୋପା ଲୁହରେ ସମଗ୍ର ଶରୀର ଜୁଡୁବୁଡୁ ହୋଇଯାଏ । ସାଗର କୂଳରେ ସନ୍ତପ୍ତ ବଳରାମ । ଭକ୍ତ ଦେହରେ ଫୁଲଟିଏ ପଡ଼ିଲେ ଯେଉଁ ପ୍ରଭୁ କଣ୍ଟାର ଅନୁଭବ କରନ୍ତି, ମନସ୍ତାପରେ ବସିଥିବା ଭକ୍ତ ବଳିଆ ଆଜି ବାଲିରେ ରଥ ତିଆରି କରି ମହାପ୍ରଭୁଙ୍କୁ ଡ଼ାକୁଛି, ଆଉ ଭଗବାନ ନଶୁଣି ଯିବେ ବା କୁଆଡ଼େ ! ସେ ଅଚଳ ହେଲେ ବି ସଚଳ। ଚଳଚଞ୍ଚଳ । ଚଳତ୍ ଶକ୍ତିମାନ । ହାତ ନଥାଇ ସେ ମହାବାହୁ, ପାଦ ନଥାଇ ସହସ୍ର ପଦୀ, ଆଖି କାନ ନ ଥାଇ ସେ ସର୍ବଦ୍ରଷ୍ଟା ଓ ସର୍ବଶ୍ରୋତା । ସମସ୍ତ ଚିନ୍ତା ଚେତନାର ଊର୍ଦ୍ଧ୍ୱରେ ସେ । ତାଙ୍କୁ ବୁଝିବ କିଏ । ସେ ଯାହାକୁ ସାମର୍ଥ୍ୟ ଦେବେ ସେ ହିଁ ତାଙ୍କୁ ବୁଝେ । ଆଉ ଯିଏ ତାଙ୍କୁ ବୁଝେ ସେ ହିଁ ତାଙ୍କର ହୋଇଯାଏ । ବିନା ପାଦରେ ସେ ସଚରାଚର ବ୍ରହ୍ମାଣ୍ଡ ଭ୍ରମଣ କରନ୍ତି। ବିନା ହାତରେ ସର୍ବକର୍ମ ସମ୍ପାଦନ କରନ୍ତି। ଅର୍ଦ୍ଧ ଅବୟବରେ ସେ ସ୍ୱୟଂସମ୍ପୂର୍ଣ୍ଣ ।

ଭକ୍ତିରେ କାନ୍ଦୁଛନ୍ତି ବଳରାମ। ଚର୍ମ ଚକ୍ଷୁରେ ମହାପ୍ରଭୁଙ୍କ ଶେଷ ଦର୍ଶନ ପାଇଁ ବ୍ୟାକୁଳିତ। ଆକୁଳିତ ବିହ୍ୱଳିତ। ପ୍ରଭୁ ! ତୋ ରଥ ସିନା କାଠରେ ତିଆରି, ହେଲେ ମୋ ରଥ ବାଲି। ପୀତ ଲୋହିତ ଆବରଣରେ ଆବୃତ ତୋ ରଥ। ମୋର ସବୁକିଛି ବାଲି। ଆବରଣ ବାଲି, ଚକ୍ର ବାଲି, ନେତ ବାଲି ସବୁ କିଛି ବାଲୁକାମୟ। ମୋର ରଥ ବାଲି, ପଥ ବାଲି, ଜଗନ୍ନାଥ ବି ବାଲି। ତୁ ସତେ କ'ଣ ଆସିବୁ ଏ ଦୀନ ବଳିଆର ରଥକୁ!! ବିରାଟ ପ୍ରଶ୍ନବାଚୀ। ବଳରାମ ଦାସଙ୍କର। ଭକ୍ତ ପାଇଁ ଯିଏ



ପୂର୍ଣ୍ଣରୁ ଶୂନ୍ୟ ହୋଇଛନ୍ତି, ସେ ପ୍ରିୟ ବଳିଆର ଡାକରେ ରହନ୍ତେ କିପରି ! ଭଗବାନ ନନ୍ଦିଘୋଷ ରଥରେ ରହିଲେ ନିମିତ୍ତ ମାତ୍ର। ଦେହ ରହିଲା କାଠ ରଥରେ ଦେହୀ ରହିଲେ ବାଲିରଥରେ। ଦେହୀ ବିନା ଦେହ ଜଡ। ଆଉ ଜଡ କିପରି ଚଳତ୍‌ଶକ୍ତି ସମ୍ପନ୍ନ ହୁଅନ୍ତା !!! ବାଙ୍କି ମୁହାଣର ବାଲୁକା ବେଳାରେ ବଳରାମଙ୍କ ବାଲିରଥ। ମତ୍ତ ବଳରାମ ଏବେ ଭକ୍ତ ବଳରାମ। ହଠାତ୍ ଅନୁଭବ କଲେ ବାଙ୍କିମୁହାଣଠାରେ ତୁଳସୀ, ଚନ୍ଦନ , କସ୍ତୁରୀର ମହମହ ସୁଗନ୍ଧ । ବଳରାମଙ୍କ ମନରେ ଆସିଲା ଅଦମ୍ୟ ଶକ୍ତି। ଶୁଣୁଛନ୍ତି ବଳରାମ ପ୍ରଭୁଙ୍କ ଶୁନ୍ୟବାଣୀ। ଭକ୍ତ ବଳରାମ ଭାବବିହ୍ୱଳ ହୋଇ ଉଠିଲେ। କପାଳରେ ହାତ ଦେଇ ନିସ୍ତରିଲି ନିସ୍ତରିଲି ବୋଲି ଡାକଦେଲେ। ବାଲିରେ ବାରମ୍ଭାର ଗଡିଗଡି କାନ୍ଦିବାକୁ ଲାଗିଲେ। ମହାପ୍ରଭୁ କୋଟି କୈବଲ୍ୟନାଥ ବିଜୟ କରିଛନ୍ତି ଅଧମ ବଳିଆର ବାଲିରଥରେ। କ'ଣ କରିବି, କି ଭୋଗ ଦେବି, ତୁଳସୀ ଜଳ ଏଠି କୋଉଠି ପାଇବି ! ଧୂପ ଦୀପ ନୈବେଦ୍ୟ କ'ଣ ଲଗେଇବି। ପାଗଳ ହୋଇଗଲେ ବଳରାମ। କେବଳ ବାଲିକୁ ତୋଳିଧରି ନାଚିବାକୁ ଲାଗିଲେ। ପୁଣି ପ୍ରଭୁଙ୍କୁ ପ୍ରାର୍ଥନା କଲେ । ପରବର୍ତ୍ତୀ ମୁହୂର୍ତ୍ତରେ ବଳରାମ ଅନୁଭବ କରୁଛନ୍ତି ବାସ୍ତବରେ ପ୍ରଭୁଙ୍କୁ ବଡ କଷ୍ଟ ଦେଇଛି। ସେଥିନିମିତ୍ତ ଅନୁତପ୍ତ ହେଉଛନ୍ତି ।

'ମୁଁ ମୂଢ ମନ୍ଦ କୃତ୍ୟ କଲି। ପ୍ରଭୁଙ୍କୁ ଏଡେ କଷ୍ଟଦେଲି।' ଭଗବାନ ବଳରାମଙ୍କ ପାଖରେ ବସି ହସି ହସି କହିଲେ ବଳିଆ, ସେ ରଥ ମୋର ପ୍ରିୟ ନୁହେଁ, ଯେଉଁଠି ଭାବ ଭକ୍ତି ନଥାଏ ମୋତେ ତାହା କ'ଣ ଭଲ ଲାଗେ ? 'ଉତ୍ସବ ମୋର କିସ ହେବ। ମୂଳ ମୋ ଭକତର ଭାବ। ଅଶେଷ ସୁଖ ଭାବ ମୋର। ଭକତ କଥାମୃତ ସାର।' ଅପର ପକ୍ଷରେ ନନ୍ଦିଘୋଷ ରଥ ଦଣ୍ଡାୟମାନ ବଡଦାଣ୍ଡରେ। ଯେତେ ଟାଣିଲେ ମଧ୍ୟ ଟାଣି ହେଲାନି। ପଣ୍ଡାମାନେ ଭାବିଲେ କେଉଁଠି ଅତ୍ୟାଚାର ହେଲା। ବଳିଆଟା ଅଶୌଚ ହୋଇ ରଥରେ ଚଢିଗଲା । ରଥ ମାରା ହୋଇଗଲା। 'ରଥ ଚକ ହିଁ ନ ଚଳିଲେ। ସମସ୍ତେ ଦେଖିଣ ଭାଳିଲେ।। କି ବୁଦ୍ଧି କରିବା ଏଥର। କିମ୍ପା ନ ଚଳେ ରଘୁବର।। ଏମନ୍ତେ ଦେଖିଣ ସମସ୍ତେ। କହିଲେ ନୃପତି ଅଗ୍ରତେ।' ହସ୍ତୀ ଯେତେ ବଳ ପ୍ରୟାଗ କଲେ ମଧ୍ୟ ରଥ ଅଚଳ। ଜଡ ପାଲଟିଯାଇଛି। ରଥି ନଥିଲେ ରଥ କି ଆଉ ଚଳିବ ! ରଥି ପରା ବାଲି ରଥରେ । କାଠ ରଥ ସମ୍ପୂର୍ଣ୍ଣ ଜଡ଼। ରାଜା ପ୍ରତାପରୁଦ୍ରଦେବ ପୁନର୍ବାର ଆଗମନ କରି ନିଜକୁ ସର୍ବସମକ୍ଷରେ ଦୋଷୀ ସାବ୍ୟସ୍ତ କରିବା ପୂର୍ବକ ମହାପ୍ରଭୁଙ୍କ ନିକଟରେ ଗୁହାରିଆ ପଡିଲେ। ଭଗବାନ ମହାରାଜାଙ୍କୁ ସେବକମାନଙ୍କ ବଳରାମ ଦାସଙ୍କ ପ୍ରତି ହୋଇଥିବା ସମସ୍ତ ଅତ୍ୟାଚାରର ବୃତ୍ତାନ୍ତ ଶୁଣାଇଲେ ଏବଂ ଆଦେଶ ଦେଲେ – ଯେଉଁ ସେବକମାନେ ବଳରାମଙ୍କୁ ଦଣ୍ଡ ଦେଇ ରଥରୁ ଘଉଡାଇ ଦେଇଛନ୍ତି, ଜଳାରେ ସେମାନଙ୍କୁ ଜାଲଫାଶ ଭରି। ଦନ୍ତେ ତିରଣ ଥିବେ ଧରି। ପଛରେ ଗଳାଧକ୍କା ଦେଇ। ଘେନାଇ ଯିବୁ ନରସାଇଁ। ମୋ ଭୃତ୍ୟ ଛାମୁରେ ଭେଟିବେ। ସମସ୍ତେ ଚରଣରେ ଲୋଟିବେ। ତୁ ଯେ ଆପଣେ ନୃପରାଣ। ଦାସଙ୍କୁ କୋଳେ ବସାଇଣ। ଅନେକ ଗଉରବ କରି। ଘେନି ଆସିବୁ ଦଣ୍ଡଧାରୀ । ରାଜା ମହାପ୍ରଭୁଙ୍କ ଆଦେଶାନୁଯାୟୀ ଭକ୍ତ ବଳରାମଙ୍କୁ ବାହୁଡାଇ ଆଣିଲେ। ସମସ୍ତଙ୍କ ଅପେକ୍ଷା ଥିଲା ବଳରାମ ଦାସଙ୍କୁ। ରାଜକୀୟ ବେଶରେ ରାଜାଧିରାଜ ଠାଣିରେ ହସ୍ତୀ ପୃଷ୍ଠରେ ବିଜେକରି ରଥାରୂଢ ହେଲେ। ଜନସମୁଦ୍ରରୁ ଭାସି ଆସୁଥାଏ ମହାପ୍ରଭୁଙ୍କ ଜୟ ଜୟକାର ଧ୍ୱନି। ବଳରାମ କାନ୍ଦି କାନ୍ଦି ମହାପ୍ରଭୁଙ୍କୁ ଚାହିଁ – 'ବୋଇଲେ ନମୋ ମହାବାହୁ । ଭକତ ବତ୍ସଳ ବୋଲାଉ। ନାମ କରୁଣା ମହାମେରୁ। କିଞ୍ଚିତେ ଦ୍ରୁବ କରୁ ଦାରୁ। ଏବେ ମୁଁ କହୁଅଛି ତୋତେ ମୋ ପ୍ରଭୁ ବିଜେ କର ପଥେ। ତ୍ୱରିତେ ରଥ ଚଳିଯାଉ। ପ୍ରଭୁ ମହିମା ରହିଥାଉ।'

ନୟାଗଡ଼ ଚିତ୍ରକାର ସାହି
ପୋ– ନୟାଗଡ଼, ଜିଲ୍ଲା– ନୟାଗଡ–୭୫୨୦୭୦



# ବିଚିତ୍ର ଲୀଳାଖେଳା ଯା'ର ଦେବମାନବେ ଅଗୋଚର

ଦେବଦତ୍ତ ରଥ

ବିଚିତ୍ର ଶବ୍ଦଟି ସମଗ୍ର ବିଶ୍ୱର ଏକମାତ୍ର ଦେବତା ପ୍ରତି ସମ୍ପୂର୍ଣ୍ଣ ଭାବରେ ପ୍ରଯୁକ୍ତ, ସେ କିଏ ? ସେ ହିଁ ବିଶ୍ୱ ମାନବାତ୍ମାର ମହିମାବନ୍ତ ପରି ପ୍ରକାଶ ପ୍ରଭୁ ଜଗନ୍ନାଥ । ନିରାକାର, ନିରାଧାର, ନିର୍ନିମେଷ ନିଶ୍ଚେଷ୍ଟ ତଥା ନିରୋପଲବ୍ଧି ମଧ୍ୟ । ତାଙ୍କ ଶୂନ୍ୟରେ ପରିପୂର୍ଣ୍ଣତାର ପରିକଳ୍ପନା ଯେପରି ଅକଳ୍ପନୀୟ ସେପରି ରହସ୍ୟାଚ୍ଛନ୍ନ ମଧ୍ୟ । ବ୍ରହ୍ମ ଶୂନ୍ୟ ହେଲେ ମଧ୍ୟ ସର୍ବବ୍ୟାପୀ, ଅଚଳ, ଧ୍ରୁବ ଓ କୂଟସ୍ଥ । ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କୁ ଉପାସନା ନିମନ୍ତେ ଅଷ୍ଟଗୁଣର ଆବଶ୍ୟକତା ଅନୁଭୂତ ହୁଏ । ଶ୍ରୀମଦ୍ ଭାଗବତଗୀତାର ସେ ହିଁ ଅକ୍ଷର ପୁରୁଷୋତ୍ତମ । ତେଣୁ ଅକ୍ଷର ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ ଅଚିନ୍ତ୍ୟ, କୂଟସ୍ଥ, ଅଚଳ ଓ ଧ୍ରୁବ ଏହି ଶବ୍ଦ ଶ୍ରୀଜଗନ୍ନାଥଙ୍କୁ ଗୀତାରେ ପୁରୁଷୋତ୍ତମ ଭାବରେ ପ୍ରମାଣ କରିଅଛି ।

ପୁରୁଷୋତ୍ତମ ଉପାସନାରେ ଇନ୍ଦ୍ରିୟରୋଧର ଆବଶ୍ୟକତା ମଧ୍ୟ ପରମ ଉପଲବ୍ଧ ।

'ଯଦା ପାବତିଷ୍ଠନ୍ତେ ଜ୍ଞାନାନି ମନା ସହ
ବୁଦ୍ଧିଶ୍ଚନ ବିଚେଷ୍ଟାନ୍ତେ ତମାହୁଃ ପରମାଂଗତିଃ ।

(କଠୋପନିଷଦ୍)

କୌଣସି ଏକ ସ୍ୱତନ୍ତ୍ର ଧର୍ମର ସେ ଆରୋପିତ ଦେବତା ନୁହଁନ୍ତି, କୌଣସି ନିର୍ଦ୍ଦିଷ୍ଟ ଧର୍ମଧାରାରେ ଆବଦ୍ଧ ନୁହଁନ୍ତି ବା କୌଣସି ଚିନ୍ତାଧାରା ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ସେଥିପାଇଁ କୁହାଯାଇଛି 'ସର୍ବ ରହସ୍ୟ ପୁରୁଷୋତ୍ତସ୍ୟ, ଦେବୋ ନଜାନାତି କୁତୋ ମନୁଷ୍ୟଃ' । ଯେ ଚିର ସତ୍ୟ ପ୍ରକାଶ୍ୟ ପୁଣି ଅପ୍ରକାଶ୍ୟ, ପ୍ରକଟ ପୁଣି ଅପ୍ରକଟ, ଏ ପ୍ରସଙ୍ଗରେ ବିଦଗ୍ଧ କବି ଅଭିମନ୍ୟୁ ଲେଖିଛନ୍ତି – 'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟରାଧା ହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି' ।

'ବ୍ରହ୍ମବୈବର୍ତ୍ତ ପୁରାଣ'ରେ ଭଗବାନ୍ ଶ୍ରୀକୃଷ୍ଣ ସଗୁଣ, ନିର୍ଗୁଣ, ସତ୍ୟରୂପ, ସନାତନ, ନିରାକାର ତେଜୋରୂପୀ ଭାବରେ ବର୍ଣ୍ଣିତ । ଏହି ଶୂନ୍ୟ ପୁରୁଷ ହିଁ ବ୍ରହ୍ମ ।

ଆଦିକବି ସାରଳା ଦାସ ଲେଖିଛନ୍ତି ତାଙ୍କର ରଚନାରେ – 'ବଡ଼ ଦେଉଳେ ବିଜେ ତିନି ପ୍ରତିମା, ହରି, ହଳୀ, ବ୍ରହ୍ମା । ଅଉମ ଅକ୍ଷରର ସମ୍ମିଶ୍ରଣରେ 'ଓଁ'କାର ଉତ୍ପତ୍ତି । ଏହି ବ୍ରହ୍ମ ଏକାକ୍ଷର ସ୍ୱୟଂ ନିରଞ୍ଜନ । ସେ 'ହ' ରୂପୀ ଜଗନ୍ନାଥ ଦାରୁ ରୂପରେ ଆବିର୍ଭୂତ । 'ହରେ' ପଦରେ ଜଗନ୍ନାଥ ବା କୃଷ୍ଣଙ୍କୁ ବୁଝାଯାଏ । 'ର' ରାଧାଙ୍କୁ ବୁଝାଏ । 'ହ' କାର ଜଗନ୍ନାଥ ଓ 'ର'କାର ରାଧାଙ୍କୁ ବୁଝାଏ ବୋଲି କବିଙ୍କର ମତ । ସନ୍ଥ ଅଚ୍ୟୁତାନନ୍ଦ ଦାସଙ୍କ 'ପରେଚଗୀତା'ରେ 'ଅ', 'ଉ', 'ମ' – ତ୍ରିଧ୍ୱନିରେ 'ଅ'ରୁ ବୀଜ ନିର୍ଗତ ହୁଅଇ, 'ଉ' ସ୍ୱରୂପ ଯୋନିରେ ବୀଜ ନିକ୍ଷିପ୍ତ ହୁଏ, 'ମ' ଚତୁର୍ଦ୍ଦିଗରେ ପରିପ୍ରକାଶ୍ୟ ରୂପରେ ବିଶ୍ୱ ସ୍ୱରୂପ ହୁଏ । ନୟନ ହିଁ ତିନି ମୂର୍ତ୍ତି । ଭକ୍ତି ଯୁଗର ବରେଣ୍ୟ ସାଧକ ବଳରାମ ଦାସ ତିନି ମୂର୍ତ୍ତିତ୍ୱ ଶରୀର ମଧ୍ୟରେ ଦର୍ଶାଇଛନ୍ତି ।

ଡ଼ୋଳା ଭିତରେ ଧଳା ଯେହୁ, ଶ୍ରୀବଳଭଦ୍ର ଅଟେ ସେହୁ
ତଥି ଉପରେ କଳା ଯେହୁ, ସୁଭଦ୍ରା ଠାକୁରାଣୀ ସେହୁ
ତହିଁରେ ପିତୁଳା ଯେ ଜାଣ, ଶ୍ରୀଜଗନ୍ନାଥ ତାକୁ ଚିହ୍ନ ।



### ଚତୁର୍ଦ୍ଧାମୂର୍ତ୍ତି ଚାରିବେଦ

ଶ୍ରୀଜଗନ୍ନାଥ, ବଳଭଦ୍ର , ସୁଭଦ୍ରା ଓ ସୁଦର୍ଶନ ଏହି ଚତୁର୍ଦ୍ଧା ବିଗ୍ରହଙ୍କୁ ଚାରିବେଦର ମାନ୍ୟତା ପ୍ରଦାନ କରିଛନ୍ତି ସନ୍ଥ ବଳରାମ । ସାମବେଦ - ବଳଭଦ୍ର, ଋଗ୍ - ସୁଭଦ୍ରା, ଯଜୁର୍ବେଦ - ଜଗନ୍ନାଥ, ଅଥର୍ବ - ସୁଦର୍ଶନ ।

**ଚତୁର୍ଦ୍ଧାମୂର୍ତ୍ତି ସିଦ୍ଧିରସ୍ତୁ :** ଏହି ଚତୁର୍ଦ୍ଧାମୂର୍ତ୍ତିତ୍ୱରୁ ହିଁ ଜୀବନର ନିର୍ଯ୍ୟାସ ଆସିଅଛି ।

ସି- ଶିଶୁବେଦ-ବଳଭଦ୍ରାଦ୍ଧି- ଯଜୁର୍ବେଦ-ଜଗନ୍ନାଥ ।
ର- ରକ୍‌ବେଦ - ସୁଭଦ୍ରାସ୍ତୁ - ଅଥର୍ବବେଦ - ସୁଦର୍ଶନ ।
(ଗୁ.ଗୀ)

**ଚତୁର୍ଦ୍ଧାମୂର୍ତ୍ତି :** ଶ୍ରବଣ, ନୟନ, ଅଧର, ନାସିକା ଭେଦକ୍ରମରେ ଶ୍ରବଣ - ବଳଭଦ୍ର । ନୟନ - ଜଗନ୍ନାଥ । ଅଧର - ସୁଭଦ୍ରା । ନାସିକା - ସୁଦର୍ଶନ । (ଗୁ.ଗୀ)

**ଚତୁର୍ଦ୍ଧାମୂର୍ତ୍ତି ଚାରିବର୍ଣ୍ଣ :** ଚତୁର୍ଦ୍ଧାମୂର୍ତ୍ତି ଶୁକ୍ଳ, ପୀତ, ହରିତ, ଲୋହିତ ଏହି ଚାରି ବର୍ଣ୍ଣଠାରୁ ଅଭିନ୍ନ ।

ଶୁକ୍ଳ - ବଳଭଦ୍ର । ପୀତ - ଜଗନ୍ନାଥ, ହରିତ - ସୁଭଦ୍ରା । ଲୋହିତ - ସୁଦର୍ଶନ (ଗୁପ୍ତଗୀତା )

**ତ୍ରିମୂର୍ତ୍ତି ତ୍ରିବୀଜ :** ଶ୍ରୀଁ ବୀଜ ବଳଭଦ୍ର. ହ୍ରୀଁ ବୀଜ ସୁଭଦ୍ରା ଓ କ୍ଳୀଁ ବୀଜ ଜଗନ୍ନାଥ ।

**ଶ୍ରୀଜଗନ୍ନାଥ ଓ ରାଧା ଏକ ଅଙ୍ଗ :** 'ରାଧା' ସ୍ୱୟଂ ଜଗନ୍ନାଥ । ଶ୍ରୀଜଗନ୍ନାଥ ଯେ ରାଧା ସେ ରାଧିକା ସ୍ଥୂଳରୂପିଣୀ' । ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟ ପ୍ରଦଃ' । ଏ ଦାରୁରୂପୀ ଚତୁର୍ଦ୍ଧା ବିଗ୍ରହଙ୍କ ପରିକଳ୍ପନା ପୂର୍ବରୁ ନୃସିଂହ ରୂପରେ ଖ୍ୟାତ । ବୈଦିକ ରୀତିରେ ଲକ୍ଷ୍ମୀନୃସିଂହ ଉପାସନା ଶ୍ରୀକ୍ଷେତ୍ରରେ ପ୍ରଚଳିତ । ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପୁରୁଷୋତ୍ତମ ବିଗ୍ରହ ଶୈବ, ଶାକ୍ତ ଓ ବୈଷ୍ଣବ ମତବାଦର ମିଳନରେ ଗଠିତ ଓ ପରବର୍ତ୍ତୀ ସମୟରେ ବଳଭଦ୍ର (ଶିବ), ସୁଭଦ୍ରା (ଶକ୍ତି), ଜଗନ୍ନାଥ (ବିଷ୍ଣୁ) ଭାବରେ ଦାରୁ ବିଗ୍ରହରେ ରୂପାନ୍ତରିତ ଓ କୋଣାର୍କ ଏବଂ ଭୋଗମଣ୍ଡପ ମନ୍ଦିର ଗାତ୍ରରେ ଜଗନ୍ନାଥ, ଦୁର୍ଗା ଓ ଶିବଲିଙ୍ଗ ରୂପରେ ଦୃଶ୍ୟମାନ ।

ଜଗଦ୍‌ଗୁରୁଙ୍କ ଆଗମନର ପ୍ରାୟ ୭୦୦ ବର୍ଷ ପୂର୍ବରୁ ଏ କ୍ଷେତ୍ରରେ ବୌଦ୍ଧଧର୍ମ ରୂପୀ ବଟବୃକ୍ଷର ଘଞ୍ଚ ସୁବିସ୍ତୃତ କାୟା ସମଗ୍ର ଶ୍ରୀକ୍ଷେତ୍ରର ଧାର୍ମିକ ଭାବନାକୁ ଆଚ୍ଛାଦିତ କରିଥିଲା । ଶଙ୍କରାଚାର୍ଯ୍ୟଙ୍କ ପ୍ରଭାବରେ ପାଶୁପତ ଧର୍ମରୂପୀ ବିଶାଳ ଖଡ୍‌ଗ ବୌଦ୍ଧଧର୍ମ ରୂପୀ ଦ୍ରୁମର ମୂଳୋତ୍‌ପାଟନ କଲା । ଯାହା ଫଳରେ ବ୍ରାହ୍ମଣ୍ୟ ଧର୍ମ ସଂସ୍କୃତିର ପୁନରୁଦ୍ଧାର ହେଲା । ଶଙ୍କରାଚାର୍ଯ୍ୟଙ୍କ ପୂର୍ବରୁ ଏ କ୍ଷେତ୍ରରେ 'ଭୈରବ ଭୈରବୀ' ଆରାଧନା ପରିବ୍ୟାପ୍ତ ଥିଲା ।

ବୌଦ୍ଧ ସଂସ୍କୃତିର ବିଲୋପ ପରେ ବୌଦ୍ଧ ବିହାର ଓ ବୌଦ୍ଧ ସ୍ତୂପମାନ ମଣ୍ଡପ ଓ ଶିବାଳୟ ରୂପରେ ପରିବର୍ତ୍ତିତ ହୋଇ କ୍ଷେତ୍ରର ବ୍ରାହ୍ମଣ୍ୟ ସଂସ୍କୃତି ପ୍ରଚାର ଓ ପ୍ରସାର ସହାୟକ ହୋଇଅଛି, ଅଦ୍ୟାବଧି ଭୁବନେଶ୍ୱରଠାରୁ ଅନତି ଦୂରରେ ପ୍ରାୟ ୨୦ କି.ମି. ଦୂରରେ 'ବାଲିପାଟଣା'ଠାରେ ଗଢ଼ି ଉଠିଥିବା 'ବୁଦ୍ଧନାଥ' ମନ୍ଦିରର ଗଠନ ଭଙ୍ଗୀ ଓ ସ୍ଥାପତ୍ୟ କଳାରେ ବୌଦ୍ଧ ଯୁଗର ସ୍ଥାପତ୍ୟର ପ୍ରଭୁତ ଅଂଶ ବିଶେଷ ପରିଲକ୍ଷିତ ହୁଏ । ଶାବର ସଭ୍ୟତା ଓ ସଂସ୍କୃତି ସହିତ ଶ୍ରୀଜଗନ୍ନାଥଙ୍କର ଘନିଷ୍ଠ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । 'ସ୍କନ୍ଦ ପୁରାଣ' ବର୍ଣ୍ଣିତ ଉତ୍କଳ ଖଣ୍ଡରେ ବର୍ଣ୍ଣିତ ଶବରରାଜ ବିଶ୍ୱାବସୁଙ୍କଦ୍ୱାରା ଆରାଧିତ 'ନୀଳମାଧବ' ହିଁ ନୀଳମାଧବ ତ୍ରିଶକ୍ତିର ତ୍ରିଗୁଣାତ୍ମକ ପ୍ରତୀକ । ଜନଶ୍ରୁତିରେ ଅଦ୍ୟାବଧି ଜୀବିତ କଣ୍ଟିଲୋସ୍ଥିତ 'ଧାନୁଚାଙ୍ଗେଡ଼' ପାହାଡ଼ର ଅଶେଷ ଛୋଟ ଓ ବଡ଼ ପଥର ଖଣ୍ଡ ଶ୍ରୀକ୍ଷେତ୍ର ମୁହାଁଇଥିବା ପ୍ରତୀତ ହୋଇଅଛି । ଏହା କେତେଦୂର ସତ୍ୟାସାପେକ୍ଷ ନା ବିଭ୍ରାନ୍ତିକର ପରିସ୍ଥିତିକୁ ସାମ୍ନା କରିବାର ପ୍ରତୀକ୍ଷା କରେ, ଜାଣେ ନାହିଁ ।

ଖ୍ରୀଷ୍ଟିୟ ତୃତୀୟ ଓ ଚତୁର୍ଥ ଶତକରେ ଶ୍ରୀକ୍ଷେତ୍ରରେ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଅନୁଭୂତ ହୁଏ । ତେଣୁ ପରବର୍ତ୍ତୀ ସମୟରେ ପ୍ରଚାରିତ ଓ ପ୍ରସାରିତ ମଧ୍ୟ ହୋଇ ଉଠେ, ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ, ନୀଳାଦ୍ରୌ ତୁ ଜଗନ୍ନାଥଃ ।



ସାକ୍ଷାତ୍ ଦକ୍ଷିଣକାଳିକା ଶ୍ରୀଦେବୀଙ୍କ ପ୍ରବଳ ପ୍ରାଧାନ୍ୟ ପ୍ରସାରିତ ହେବା ପରେ ଶ୍ରୀବିଗ୍ରହ ଗଜଲକ୍ଷ୍ମୀ ବିଗ୍ରହ ଥିବା ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ଥିବା ଗଜଲକ୍ଷ୍ମୀ ଖିଲାଣରୁ ଜଣାଯାଏ । ଏ ଭୂମିକୁ ଆର୍ଯ୍ୟ ମୁନିଋଷିମାନଙ୍କର ଆଗମନ ପୂର୍ବରୁ ଏଠାରେ ବନବାସୀଙ୍କର ବାସସ୍ଥଳୀ ଥିବା ସ୍ୱାଭାବିକ । ବର୍ତ୍ତମାନ ଯୁଗରେ 'ଅଷ୍ଟ୍ରିକ୍ ବା ଡ୍ରୋଲିକ୍ ସେଫାଲିକ୍ ନାମରେ ଆଖ୍ୟାତ । ଏମାନଙ୍କ ମଧ୍ୟରୁ ଏକ ଗୋଷ୍ଠୀ 'ପୁମ୍' ଦେବତାଙ୍କୁ ଜଗତ ସୃଷ୍ଟି ଓ ଜୀବ ଜଗତର ମୂଳ ଆରାଧନା କରିବା ସମୟରେ 'କନ୍ଧ ଗୋଷ୍ଠୀ' 'ନିରନ୍ତଲୀ' ବା 'କାପାନ୍ତଲୀ'ଙ୍କୁ (ଧରଣୀପେନୁ) ମୂଳ ବା ଆଦି ଦେବୀ ବୋଲି ମାନିବା ସଙ୍ଗେ ସଙ୍ଗେ ସେ ହିଁ ସୃଷ୍ଟିର ମୂଳ ଉତ୍ସ ବୋଲି ସ୍ୱୀକାର କରିଥାନ୍ତି ।

ତାଳ, ତମାଳ, ହେନ୍ତାଳାଦିରେ ପରିପୂରିତ ହୋଇଥିବା ମହାନଦୀ ମୁହାଣ ନଦୀ ନାଳମାନଙ୍କଠାରୁ ବିଚ୍ଛିନ୍ନ ଥିଲା । ପରବର୍ତ୍ତୀ ସମୟରେ ଏହି 'କାଂପିଲ୍ୟାମା' ବା ସୁଭଦ୍ରା ମା' ନାମରେ ନାମିତ ଥାଇ ବର୍ତ୍ତମାନ ଶ୍ରୀକ୍ଷେତ୍ରରେ ଭୂଦେବୀ, ଶ୍ରୀଦେବୀ ବା 'କାମ୍ପିଲ୍ୟ ବାସିନୀ' ନାମରେ ପୂଜିତା । ଶ୍ରୀକ୍ଷେତ୍ରକୁ ଶଙ୍ଖକ୍ଷେତ୍ରର ମାନ୍ୟତା ମିଳିଛି, ଏ କ୍ଷେତ୍ରର ଆକୃତି ଶଙ୍ଖନାଭି ମଣ୍ଡଳରେ ମଧ୍ୟଭାଗରେ ଉଦ୍ଭାସିତ । ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡକୁ ଦ୍ୱିଭାଗ କରିଥିଲା ଏକଦା ମାଳିନୀ ନଦୀ ବା ମୂଷା ନଦୀ, ଯାହା ଏକ ଦିଗରେ ବାଙ୍କି ମୁହାଣରେ ମିଶି ଅନ୍ୟ ଦିଗରେ ଅଠରନଳା ନଦୀରେ ମିଶିଅଛି ।

ରଥ ଓ ପଥ ଦୁଇଟି ଗଭୀରତ୍ୱ ସମ୍ବଳିତ ରହସ୍ୟ ଗର୍ଭିତ ଶବ୍ଦ । ଏ ଦେହରୂପୀ ରଥରେ ଆତ୍ମାରୂପୀ ସାରଥୀ ବିବେକ, ବୈରାଗ୍ୟ ରୂପୀ ଅଶ୍ୱ ପୃଷ୍ଠରେ ସଂସାର ପଥରେ ସତତ ନିଃଶବ୍ଦତାର ସହିତ ଧାବମାନ । ତିନି ରଥର ମୋଟ୍ ଚକ ସଂଖ୍ୟା ୪୨ । ଏହା କର୍ମ ସ୍ଥଳୀରୁ ଜନ୍ମଭୂମି ଓ ଜନ୍ମଭୂମିରୁ କର୍ମଭୂମି ଏପରି ଦୁଇ ଥର ଯାତାୟାତରେ ୮୪ ହୋଇଥାଏ । ୮୪ ଶବ୍ଦ ଭିନ୍ନ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ମନୁଷ୍ୟ ଯେ ନିଜ ଦେହର ମାପ ଚୁପ କଲେ ମଧ୍ୟ ନିଜ ଅଙ୍ଗୁଳିରେ ଆପାଦ ମସ୍ତକ ୮୪ ଅଙ୍ଗୁଳି । ଜୀବ ୮୪ ଲକ୍ଷ ଯୋନିରେ ଜନ୍ମ ଗ୍ରହଣ କରିବା ପରେ ଦୁର୍ଲ୍ଲଭ ନର ଜନ୍ମ ଲାଭ କରିଥାଏ । ଦାରୁ ବ୍ରହ୍ମଙ୍କ ଦାରବୀୟ ସଂସ୍କୃତି ଓ ଲୀଳା ଏକାନ୍ତ ଦେବ ଓ ମାନବ ପାଇଁ ଶିକ୍ଷଣୀୟ ହେଲେ ହେଁ ସମୟାନୁକ୍ରମେ ଗବେଷଣା ସାପେକ୍ଷ ।

ନବେକଳେବର ସମୟରେ ବ୍ରହ୍ମ ପରିବର୍ତ୍ତନ ଏହା ବିଧାତାର ସମ୍ପୂର୍ଣ୍ଣ ଗୋପନୀୟ କାର୍ଯ୍ୟବିଧି । 'ଗୀତା'ରେ ଯେପରି ପରିବର୍ଣ୍ଣିତ ଯେ,

'ବାସଂସି ଜିର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋପରାଣି
ତଥା ଶରିରାଣି ବିହାୟଜିର୍ଣ୍ଣା
ନ୍ୟନାନି ସଂଯାତ ନବାନି ଦେହି ।
( ଶ୍ରୀମଦ୍ ଭଗବତ୍ ଗୀତା)

ହେଲେ ଦାରୁ ବ୍ରହ୍ମଙ୍କର ଦାରବୀୟ ଲୀଳାକ୍ରମରେ ଆସେ 'ସପ୍ତାବରଣ ପ୍ରକ୍ରିୟା' ପ୍ରସଙ୍ଗ, ଏକ ଗୋପନୀୟ ଅଙ୍ଗ ସେବା । ଶ୍ରୀବିଗ୍ରମାନଙ୍କର ଏହି ସପ୍ତାବରଣ ବିଧିରେ ସପ୍ତଧାତୁ ସମ୍ପନ୍ନ ମାନବ ଶରୀରର ପରିକଳ୍ପନାରେ ଗଠିତ ହୁଏ ।

ମାନବ ଶରୀର ସପ୍ତାବରଣ ଧାତୁରେ ଗଠିତ । ସେମାନେ ହେଲେ ଅସ୍ଥି, ମଜ୍ଜା, ମାଂସ, ରକ୍ତ, ଶିରା, ଶୁକ୍ର ଓ ଚର୍ମ । ମୂଳଦାରୁ, ଝୁଣା, ଫୁଲରି ତେଲ, ବାସୁଙ୍ଗାପାଟ, ଚନ୍ଦନାଦି ବିବିଧ ଦ୍ରବ୍ୟ ତଥା ଅଟ୍ଟକାଳିର ଗାଢ଼ ପ୍ରଲେପ ମାଧ୍ୟମରେ ଉପଚାରାଦି ଦ୍ୱାରା ସମ୍ପାଦିତ ହୋଇଥାଏ । 'ନୀଳାଦ୍ରି ମହୋଦୟ' ପୁସ୍ତକରେ ସ୍ୱତନ୍ତ୍ର ବସ୍ତ୍ର ଓ ପାଟଦ୍ୱାରା ମହାପ୍ରଭୁଙ୍କର ପାଦ ରଚନା କରାଯିବାର ବର୍ଣ୍ଣନା ଅଛି । ଦ୍ୱିତୀୟ ପର୍ଯ୍ୟାୟକ୍ରମରେ ଠାକୁରମାନଙ୍କୁ ଖଳିଲାଗି କରାଯାଏ । ଏହା ସହିତ ଅଛି ମଧ୍ୟ 'ବନକ ଲାଗି'ସେବା । ଏହି ଘଣା ଲାଗି ବା ପାଟଡ଼ୋର ମଧ୍ୟରୁ ବଡ଼ ପାଟଡ଼ୋର 'ନାଗ' ଓ ସାନ ପାଟଡ଼ୋର 'ନାଗୁଣୀ' ରୂପରେ କଥିତ । ଶ୍ରୀ ମହାନ୍ତିଙ୍କ ତଥ୍ୟାନୁସାରେ ଠାକୁରଙ୍କ ଯେଉଁ ଅଂଶରେ ଏହି ନାଗ ଓ ନାଗୁଣୀ କୁଣ୍ଡଳି ପ୍ରାୟ ରହନ୍ତି । ସର୍ପକୁ କାଳ ବା ସମୟ ଭାବରେ ମଧ୍ୟ ଗ୍ରହଣ କରାଯାଏ । ଯାହାର କେନ୍ଦ୍ର ବିନ୍ଦୁରେ ବ୍ରହ୍ମ ଅବସ୍ଥାନ କରିଛନ୍ତି । ଏହି



'ସପ୍ତାବରଣ'ବିଧିର ସର୍ବଶେଷ ପକ୍ରିୟା ହେଉଛି 'ଶ୍ରୀମୁଖ ଓତା' । 'ଫୁଲୁରି ନୀତି' 'ଓଷୁଅ ଲାଗି', 'ଚେହେଲି' ଓ 'ଚନ୍ଦନ ଲାଗି' ଘଣା ଲାଗି ଓ ଖଳି ଲାଗି ହେବା ପରେ ଶ୍ରୀମୁଖ ଓଷ ନୀତି ସମ୍ପାଦିତ ହୋଇଥାଏ । କି ବିଚିତ୍ର ଠାକୁର କି ବିଚିତ୍ର ଲୀଳା ଖେଳା, ଏ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ମହାନ୍ ଯାଦୁକର ପ୍ରଭୁ ଜଗନ୍ନାଥ, ଯାହାଙ୍କର ଲୀଳା ଯେ ଏପରି ଦୁରଧିଗମ୍ୟ ତଥା ରହସ୍ୟବୋଧିତ, ତାହା କାହାକୁ ଅଜ୍ଞାତ ନୁହେଁ । ଇଏ ଏପରି ଏକ ମନ୍ଦିର ଯେଉଁଠାରେ ପ୍ରତ୍ୟେକଟି ପ୍ରସ୍ତର ଖଣ୍ଡତାତ୍ତ୍ୱିକତା ପ୍ରତିପାଦିତ କରେ । 'ଶ୍ରୀବତ୍ସଖଣ୍ଡ ଶାଳ' ପ୍ରସ୍ତରରେ ସମଗ୍ର ମନ୍ଦିର ନିର୍ମିତ ।

ଶ୍ରୀମନ୍ଦିର କୂର୍ମ ପ୍ରାଚୀର ଅଭିମୁଖେ ଯିବାକୁ ହେଲେ 'ପତିତପାବନ' ପ୍ରଭୃତି ଦେବାଦେବୀଙ୍କୁ ଦର୍ଶନସାରି ୨୨ ପାହାଚ ଅତିକ୍ରମ କରିବାକୁ ପଡ଼େ । ସନ୍ଥ କବି ବଳରାମ ଦାସ 'ଗୁପ୍ତଗୀତା'ରେ ଲେଖିଛନ୍ତି ।

ବାଇଶି ପାହାଚ ଯେ ବୀର, ରହସ୍ୟ ସ୍ଥଳ ନାମ ତାର
ଏହା ଯେ ବାଇଶି ପାହାଚ, ଅଠର କୋଟି ଶିବଲୋକ
ରହି ଅଛନ୍ତି ପୃଷ୍ଠ ଭାଗେ, ତାକୁ କହିବ ତୋର ଆଗେ ।

'ଅଷ୍ଟ ବୈକୁଣ୍ଠ' ଓ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ସମାହାର ଏହି ପାବଚ୍ଛ ଶ୍ରେଣୀ । ଗାୟତ୍ରୀ ତତ୍ତ୍ୱାନୁସାରେ, ଭୂ, ଭୂର୍ବ, ସ୍ୱଃ, ମହ, ଜନ, ତପ ଓ ସତ୍ୟ ଏବଂ ପ୍ରତ୍ୟେକ ଲୋକରେ ଅଛି ତିନି ସୋପାନ । ତାମସ, ରାଜସ ଓ ସାତ୍ତ୍ୱିକ । ଏହିପରି ୭ X ୩ ୨୧ଟି ପାହାଚ ଅତିକ୍ରମ କଲାପରେ ଶେଷ ଏକମାତ୍ର ପାହାଚକୁ ବ୍ରହ୍ମଲୋକ ପ୍ରାପ୍ତିର ପାହାଚ ବୋଲ କୁହନ୍ତି । ପିତୃଶିଳା ନିକଟରେ ପିତୃପୁରୁଷଗଣ, ଯମଶୀଳା ନିକଟର ଚିତ୍ରଗୁପ୍ତ ଓ ଯମଦୂତ ଗଣ, ତେତ୍ରିଶ କୋଟି ଦେବତା ଯକ୍ଷ, ଗନ୍ଧର୍ବ କିନ୍ନର ଏବଂ ଦେବ ନର୍ତ୍ତକୀଗଣ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଉଭା ହୋଇଥାନ୍ତି ।

ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ହେଲେ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ସହିତ ମନ, ବୁଦ୍ଧି, ଅହଙ୍କାର, କାମ, କ୍ରୋଧ, ଲୋଭ, ମୋହ, ଆସକ୍ତି, କାମନା, ତମ ଓ ରଜ ଗୁଣ ରୂପକ ୨୧ ସୋପାନ ଅତିକ୍ରମ କଲେ ବ୍ରହ୍ମଜ୍ଞାନ ପ୍ରାପ୍ତି ଘଟେ । କେହି କେହି ମତବ୍ୟକ୍ତ କରନ୍ତି ଏହି ୨୨ ପାହାଚ ଜୈନ ଧର୍ମର ୨୪ ତୀର୍ଥଙ୍କର ପ୍ରତୀକ । କେହି ମଧ୍ୟ କହନ୍ତି ଏ ପାହାଚ ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ) । ଦଶ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ର ଏବଂ କ୍ଷେତ୍ର ଓ କ୍ଷେତ୍ରଜ୍ଞର ସମାହାର ହେଉଛି ଏ ଦ୍ୱାବିଂଶ ପାବଚ୍ଛ । କେହି କେହି ଏହା ସହିତ ମଧ୍ୟ ତୁଳନା କରନ୍ତି 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ' ।

ଧନ୍ୟ ଏ କ୍ଷେତ୍ରମଣିଙ୍କର କ୍ଷେତ୍ର ମାହାତ୍ମ୍ୟ, ଲୀଳାର୍ଣ୍ଣବ ସେ ବିଚିତ୍ର ରହସ୍ୟର ବିଶାଳ ଗନ୍ତାଗୃହ ସେ । ଅନନ୍ତ, ଅଚିନ୍ତ୍ୟ, ଅଭେଦ୍ୟ, ଅବର୍ଣ୍ଣନୀୟ, ଅଲୌକିକ, ଅନିର୍ବଚନୀୟ, ଅପାର୍ଥିବ, ଅମୂର୍ତ୍ତ ଚେତନାର ସେ ମୁଗ୍ଧ ପରିପ୍ରକାଶ । ଜୀବନ ଜାହ୍ନବୀର ସେ କଲ୍ଲୋଳ, ଭକ୍ତିରସ ପାରାବାରରେ ହିଲ୍ଲୋଳ ତଥା ସତ୍ୟ ସନାତନ ଯୁଗେ ଯୁଗେ ଏ ଜଗତବାସୀଙ୍କୁ ସତ୍ ମାର୍ଗରେ ପ୍ରେରିତ କରାନ୍ତୁ । ଜଗତବାସୀ ତାଙ୍କରି ବିଶାଳ ବାହୁ ଛତ୍ରଛାୟା ତଳେ ଆତଯାତ ହୋଇ ଏ ଧରାଧାମରେ ଆତଯାତ ହେଉଥାନ୍ତୁ ।

**ସହାୟକ ଗ୍ରନ୍ଥସୂଚୀ :**

୧) ଶ୍ରୀମନ୍ଦିର ତତ୍ତ୍ୱ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

୨) ଉତ୍କଳ ପ୍ରସଙ୍ଗ - ୨୦୧୦, ୨୦୧୧, ୨୦୧୨, ୨୦୧୩ ଓ ୨୦୧୪ ରଥଯାତ୍ରା ସଂଖ୍ୟା ।

୩) ଶ୍ରୀକ୍ଷେତ୍ରର ଅଜ୍ଞାତ ଅଧ୍ୟାୟ - ପଣ୍ଡିତ ହରିହର ମହାପାତ୍ର ।

ସହକାରୀ ପର୍ଯ୍ୟଟନ ଅଧିକାରୀ
ପର୍ଯ୍ୟଟନ ବିଭାଗ, ଭୁବନେଶ୍ୱର - ୧୪



# ନବକଳେବର ଓ ମା' ମଙ୍ଗଳାଙ୍କ ଝାମୁଯାତ୍ରା

ପୀତାମ୍ବର ପ୍ରଧାନୀ

ଓଡ଼ିଶାର ଅନେକ ଶକ୍ତିପୀଠ ମଧ୍ୟରୁ ମା' ମହାମଙ୍ଗଳାଙ୍କ ପୀଠ (କାକଟପୁର) ଅନ୍ୟତମ। ଦୁର୍ଗାତନ୍ତ୍ର ଅନୁସାରେ ମା' ମଙ୍ଗଳା ଅଷ୍ଟ ଯୋଗିନୀଙ୍କ ମଧ୍ୟରୁ ପ୍ରଧାନ। ଧର୍ମପୀଠରେ ପଶ୍ଚିମରେ ପୁରାଣ ଯୁଗର କୁଳୁକୁଳୁ ନାଦିନୀ ପ୍ରାଚୀ ନଦୀ, ପୂର୍ବରେ ବଙ୍ଗୋପସାଗର, ଉତ୍ତରରେ ସରସ୍ୱତୀ ନଦୀ, ଦକ୍ଷିଣରେ କୋଣାର୍କର ସୂର୍ଯ୍ୟମନ୍ଦିର, ଅର୍କତୀର୍ଥ ଓ ରାମଚଣ୍ଡୀ ମନ୍ଦିର। ନିକଟରେ ଅସଂଖ୍ୟ ଋଷିମଠ, ଅଷ୍ଟତୀର୍ଥ, ଅଷ୍ଟଶମ୍ଭୁ, ଅଷ୍ଟଚଣ୍ଡୀ, ଅଷ୍ଟମାଧବ, ଅଷ୍ଟସାକ୍ଷୀ ଓ ଦ୍ୱାଦଶ ଶମ୍ଭୁ ଥିବାର ପରିଦୃଷ୍ଟ ହୁଏ। ପୀଠରେ ପରମ ବୈଷ୍ଣବୀ ଓ ମହାନ ଖ୍ୟାତିସମ୍ପନ୍ନ ମା' ମଙ୍ଗଳାଙ୍କ ଆରାଧନା ମନ୍ଦିର। ମନ୍ଦିର ଓ ମୁଖଶାଳାର ଉଚ୍ଚତା ଯଥାକ୍ରମେ ୫୦ ଓ ୪୫ ଫୁଟ। ନିର୍ମାଣ ପରିପାଟୀରୁ ଅନୁମେୟ ଏହା ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀରୁ ପୂର୍ବବର୍ତ୍ତୀ। ମନ୍ଦିରର ନିର୍ମାଣ କୌଶଳ ଏପରି ଯେ ସୂର୍ଯ୍ୟଙ୍କର ପ୍ରଥମରଶ୍ମୀ ଦେବୀଙ୍କର ବିଗ୍ରହ ଉପରେ ପଡ଼ିଥାଏ।

ମନ୍ଦିର ମଧ୍ୟରେ ଚତୁଃଷ୍କୋଣ ବିଶିଷ୍ଟ କଳାମୁଗୁନି ପଥରରେ ଦେବୀଙ୍କ (ପ୍ରତିମା) ବିଗ୍ରହ ଖୋଦିତ। ପ୍ରାୟ ୬.୫ ଫୁଟ ଉଚ୍ଚତା ଓ ୪.୫ ଫୁଟ ପ୍ରସ୍ତ ବିଶିଷ୍ଟ ପଥର ନିମ୍ନଭାଗରେ ମୃଣାଳଯୁକ୍ତ ପ୍ରସ୍ଫୁଟିତ ପଦ୍ମପୁଷ୍ପା ଉପରେ ସ୍ମିତହାସ୍ୟ ଭରା, ସୌମ୍ୟ ଶାନ୍ତ ସ୍ଥିରବଦନା ମା' ମହାମଙ୍ଗଳା। ଚକ୍ଷୁଯୁଗଳ ଅର୍ଦ୍ଧନିମିଳିତ। ଚାରୋଟି ହସ୍ତ ମଧ୍ୟରୁ ଦକ୍ଷିଣ ଉର୍ଦ୍ଧ୍ୱ ହସ୍ତରେ ପୂର୍ଣ୍ଣଚନ୍ଦ୍ର, ନିମ୍ନହସ୍ତରେ ଜପାମାଳା। ବାମ ଉର୍ଦ୍ଧ୍ୱ ହସ୍ତରେ ପଦ୍ମକଳିକା, ନିମ୍ନ ହସ୍ତରେ ଏକ ମୃଣାଳଖଣ୍ଡ। ଜଣାଯାଏ ଏହା ସୃଷ୍ଟିକୁ ଆଶୀର୍ବାଦ ଓ ଅନ୍ୟପକ୍ଷରେ ଜପସଂଖ୍ୟା କରଣରେ ନିମଗ୍ନା ପଦବାଚ୍ୟା। ମଙ୍ଗଳାଙ୍କ ଉଭୟ ପାର୍ଶ୍ୱରେ ଦୁଇଜଣ ପରିଚାଳିକା । ଉର୍ଦ୍ଧ୍ୱରେ ଦେବକନ୍ୟାଗଣ ଏବଂ ଦେବୀଙ୍କ ପଦତଳେ ଏକ ସରଳରେଖାରେ ଉପବେଶନ କରିଛନ୍ତି ଆଠଟି ନାରୀ ମୂର୍ତ୍ତି ।

ଏହି ଚିତ୍ର ପଛରେ ଅନେକ କାହାଣୀ ଓ ଲୋକକଥା ଶୁଣିବାକୁ ମିଳେ। ମା' ମଙ୍ଗଳାଙ୍କ ପବିତ୍ର ଶକ୍ତିପୀଠ ରାଜଧାନୀ ଭୁବନେଶ୍ୱରଠାରୁ ଦକ୍ଷିଣ ପୂର୍ବକୁ ପ୍ରାୟ ୬୦ କି.ମି. ଦୂର ଓ ପୁରୀଠାରୁ ପ୍ରାୟ ୫୦ କି.ମି. ଉତ୍ତର ପୂର୍ବକୁ କାକଟପୁରଠାରେ ଅବସ୍ଥିତ। ଉକ୍ତ ପୀଠରେ ଚୈତ୍ର ମାସ ମଙ୍ଗଳବାରରେ ପୂଜାର ମାହାତ୍ମ୍ୟ ସର୍ବାଧିକ। ମଙ୍ଗଳା ଏକଦା ସିଂହଳ (ଲଙ୍କା) ରାଜା ରାବଣର ଆରାଧ୍ୟା ଦେବୀ ଥିଲେ। ରାବଣର ଦୁର୍ନୀତି ଦୁର୍ବିସହ ହେବାରୁ ମଙ୍ଗଳା ପ୍ରଭୁ ରାମଚନ୍ଦ୍ରଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କ ଦ୍ୱାରା ରାବଣକୁ ନିହତ କଲେ। ଯୁଗ ପରେ ଯୁଗ ଅତିବାହିତ ହେଲା। ପ୍ରାଚୀ ନଦୀ ମଧ୍ୟ ଦେଇ ବାଣିଜ୍ୟ ଉଦ୍ଦେଶ୍ୟରେ ବଣିକମାନେ ସିଂହଳ ଯାତ୍ରା କରୁଥିଲେ। ମମତାନାମ୍ନୀ ବଣିକ ଝିଅ ସିଂହଳ ଯାତ୍ରା ଶେଷରେ ମଙ୍ଗଳା ବିଗ୍ରହକୁ ବୋଇତରେ ଧରି ଫେରୁଥିଲା। କୌଣସି ଏକ ଘନ ଅନ୍ଧକାର ନିଶାର୍ଦ୍ଧରେ ବୋଇତ ଜଳମଗ୍ନ ହେଲା। ଜଳ ମଧ୍ୟରୁ ମଙ୍ଗଳାଙ୍କ ଉଦ୍ଧାର ନିମିତ୍ତ ମମତା ବାରବର୍ଷକାଳ ଚାନ୍ଦ୍ରାୟାଣ ବ୍ରତ ପାଳନ କରିଥିଲା। ସାଗରର ଜଳ ଶାନ୍ତ ହେଲା । ଦେବୀଙ୍କ ସ୍ୱପ୍ନାଦେଶ ଫଳରେ ଜଳ ମଧ୍ୟରୁ ମା' ମଙ୍ଗଳା ଉଦ୍ଧାର ହେଲେ। ଯେଉଁ ସ୍ଥାନରୁ ଦେବୀ ବିଗ୍ରହ ଉଦ୍ଧାର ହୋଇଥିଲେ, ସେ ସ୍ଥାନର ନାମକରଣ କରାଗଲା 'ମଙ୍ଗଳପୁର'। ତା'ପରେ ଦେବୀଙ୍କୁ ନିକଟସ୍ଥ ଦେଉଳୀ ମଠରେ ରଖାଗଲା। ପରବର୍ତ୍ତୀ ସମୟରେ ଦେବୀ କିୟଦ ଉତ୍ତର ଦିଗକୁ ସ୍ଥାନାନ୍ତରିତ ହେଲେ। ସେହି ସ୍ଥାନର ଅଧିଷ୍ଠାତ୍ରୀ କାକଟେଈଙ୍କ ନାମାନୁଯାୟୀ ସ୍ଥାନର ନାମକରଣ



କରାଗଲା 'କାକଟପୁର'। ଲୋକମୁଖରୁ ଶୁଣାଯାଏ, କଳାପାହାଡ଼ର ଶକ୍ତିପୀଠକୁ ଆଗମନ ବେଳେ 'ମଙ୍ଗଳା' ପ୍ରାଚୀରେ ଜଳମଗ୍ନା ହୋଇଥିଲେ। କିଛିକାଳ ଅନ୍ତେ କୌଣସି ଏକ ଭକ୍ତ ପ୍ରାଚୀ ଜଳରୁ ଦେବୀଙ୍କର ବିଗ୍ରହ ଉଦ୍ଧାର କରି ପୁନଃବିଧ ପୂର୍ବକ ମନ୍ଦିରରେ ରଖାଇଥିଲେ।

ବହୁ ପୂର୍ବରୁ କାକଟପୁରଠାରେ ମଙ୍ଗଳାପୀଠ ପ୍ରତିଷ୍ଠିତ ଥିଲା। ମାଦଳାପାଞ୍ଜି ଅନୁଯାୟୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ମହାଦାରୁ ସଂଗ୍ରହ ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ମଙ୍ଗଳାଙ୍କ ଆଜ୍ଞା ପାଇଁ ହଟ ଓ ବଟଧାରୀ ଦୁଇଜଣ ତାନ୍ତ୍ରିକଙ୍କୁ ପ୍ରେରଣ କଲେ। ଦେବୀ ବିଗ୍ରହ ପୀଠ ସ୍ଥାନରେ ନଥିବା ଜାଣି ଅନେକ ଆରାଧନା ପରେ ପ୍ରାଚୀ ଜଳରୁ ବି ପାଇନଥିଲେ। ବ୍ୟର୍ଥ ମନୋରଥ ହୋଇ ସେମାନଙ୍କ ଜୀବନକୁ ଉତ୍ସର୍ଗ କରିବାକୁ ଉଦ୍ୟତ ହେବା ବେଳେ ଦେବୀ ପ୍ରସନ୍ନା ହୋଇ ଆବିର୍ଭୂତା ହୋଇଥିଲେ। ମଙ୍ଗଳାଙ୍କ ଆଜ୍ଞା ପାଇ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଦାରୁ ନିର୍ମାଣ ଶେଷ ହେଲା। ଅଦ୍ୟାବଧି ଏହି ଦାରୁ ସଂଗ୍ରହବେଳେ (ନବକଳେବର ବେଳେ) ମା' ମଙ୍ଗଳାଙ୍କ ଆଜ୍ଞା ନିଆଯାଇଥାଏ।

ମା' ମଙ୍ଗଳାଙ୍କ ଝାମୁଯାତ୍ରା ପାଞ୍ଚପାଳି କରିବାର କାରଣ– ଯେତେବେଳେ ହଟ, ବଟ (ତାନ୍ତ୍ରିକ) ଦେବୀପୀଠରେ ପହଞ୍ଚିଲେ, ସେଦିନ ଥିଲା ଚୈତ୍ର ମାସର ପ୍ରଥମ ମଙ୍ଗଳବାର ଏବଂ ଶେଷରେ ଦେବୀ ପଞ୍ଚମ ମଙ୍ଗଳବାର ଦିନ ପ୍ରସନ୍ନା ହୋଇଥିଲେ। ସେହି ତିଥିକୁ ଝାମୁଯାତ୍ରା ରୂପେ ପାଳନ କରାଯାଇଥାଏ। ସେହିବର୍ଷଠାରୁ ଅଦ୍ୟାବଧି ଝାମୁଯାତ୍ରା ପାଞ୍ଚପାଳି ହୋଇଥାଏ। ଚୈତ୍ର ମାସର ପ୍ରତ୍ୟେକ ପାଳି ଯାତ୍ରାରେ 'ପାଟୁକା ନାଚ' ମଙ୍ଗଳାଙ୍କର ଏକ ଆକର୍ଷଣୀୟ ନାଚ। ପାଟୁକା ନାଚ ଦୁଇ ଶ୍ରେଣୀର ପାଟୁକା ନାଚ କରନ୍ତି। ପ୍ରଥମ ଶ୍ରେଣୀର ପାଟୁକା ହେଉଛନ୍ତି ପାଞ୍ଚଜଣ ମାଳି ଓ ଦ୍ୱିତୀୟ ଶ୍ରେଣୀର ପାଟୁକା ପାଞ୍ଚଜଣ ଭୋଇ। ମାଳିପାଟୁକା ମଙ୍ଗଳାଙ୍କ ନିକଟରୁ ଧଣ୍ଡା (ଆଜ୍ଞା) ନେଇ ବାହାରକୁ ଯାଇ ନାଚ କରନ୍ତି। ପାଟୁକାମାନେ କାଷ୍ଠଦଣ୍ଡ ଗୋଡ଼ରେ ପୂରାଇ ପିତ୍ତଳ ନିର୍ମିତ ପଞ୍ଚମୁଖୀ ଘଟଧାରଣ କରିଥାନ୍ତି। ଢୋଲ ଓ ମହୁରୀ ବାଦ୍ୟ ଗହଣରେ ପାଟୁକାନାଚ ହୁଏ। ପଞ୍ଚମପାଳି ଯାତ୍ରା (ଝାମୁ) ପୂର୍ବଦିନ ରାତିରେ କାଳିକାମାନେ କେତେକ ନିର୍ଦ୍ଦିଷ୍ଟ ପରିବାର ଦାଣ୍ଡରେ ନାଚକରି ଅତୀତ, ବର୍ତ୍ତମାନ, ଭବିଷ୍ୟତ କଥା ଶୁଣାନ୍ତି। ଜଣାଯାଏ, ଏଥିରେ ଚିର ବାସ୍ତବତା ଥାଏ। ପଞ୍ଚମପାଳି ଯାତ୍ରା ଦିନ ମଙ୍ଗଳାଙ୍କ ସିଂହଦ୍ୱାର ସମ୍ମୁଖରେ ଏକ ଗଭୀର ଗର୍ତ୍ତ ଖୋଳାଯାଇ ନିଆଁରଡ ଭିତରେ ପାଟୁକାମାନଙ୍କର ନାଚ ଦର୍ଶକମାନଙ୍କୁ ବିମୋହିତ କରିଥାଏ। ଝାମୁଯାତ୍ରା ମଧ୍ୟରାତ୍ର ସମୟରେ ମଙ୍ଗଳାଙ୍କ ମନ୍ଦିର ବେଢ଼ା ମଧ୍ୟରେ 'କାଳିକାନାଚ' ଏକ ଆକର୍ଷଣୀୟ ଦୃଶ୍ୟ। ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ସେଥିନେଇ ନିୟୋଜିତ। ସେହି ବ୍ୟକ୍ତି ମଙ୍ଗଳାଙ୍କ ଗୋଶାଳାରେ ମହାକାଳୀ ବେଶରେ ନିଜକୁ ସଜାଇ ଏକ ଖଡ୍‌ଗ ଧାରଣ ପୂର୍ବକ ଢୋଲ, ମହୁରୀ, ମଶାଲ ମଧ୍ୟରେ ମା'ଙ୍କ ମନ୍ଦିର ଅଭିମୁଖେ ନାଚି ନାଚି ଯାତ୍ରା କରେ। କାଳିକା ଅତିଶୟ ନାଚି ନାଚି ଶେଷରେ ଗୋଶାଳା ନିକଟରେ ନିସ୍ତେଜ ହୋଇ ପତିତ ହୁଏ ଏବଂ କାଳିକା ନାଚର ସମାପ୍ତି ଘଟେ। ଶକ୍ତିପୀଠ କାକଟପୁରର ମଙ୍ଗଳାଙ୍କ ମନ୍ଦିର ମଧ୍ୟରେ ଭାଗବତ ଓ ଗୀତଗୋବିନ୍ଦ ପାଠ, ବିବିଧ ବୈଷ୍ଣବ ପୂଜାର ପ୍ରଚଳନ, ସୂର୍ଯ୍ୟପୂଜା ଆଦି ଦେବନୀତି, ସର୍ବଦେବ, ସର୍ବଧର୍ମ ସମନ୍ୱୟତାର ଚରମ ପରାକାଷ୍ଠା ନିଦର୍ଶନ ପ୍ରମାଣିତ କରେ। ଚଇତ ମାସର ଝାଞ୍ଜି ଖରାବେଳେ ଓଡ଼ିଶାର ପୁରପଲ୍ଲୀରେ ମଙ୍ଗଳାଙ୍କ ପଷ୍ଠେଇ ପୂଜା ବା ଦାଣ୍ଡପୂଜା କରାଯାଏ। ଝିଅ ବୋହୂମାନେ ଶୁଦ୍ଧପୂତ ହୋଇ ଦାଣ୍ଡରେ ଚତୁଃଷ୍କୋଣ ବିଶିଷ୍ଟ ଦେବୀଙ୍କ ଆହ୍ୱାନ କରି ପୂଜା କରନ୍ତି ଏବଂ ଦେବୀଙ୍କୁ ଧୂପ, ଦୀପ, ନୈବେଦ୍ୟ, ହଳଦୀପାଣି, ଫୁଲ, ଲିଆ ଆଦି ସମର୍ପଣ କରି ହଳଦୀ ପାଣି ପିଅନ୍ତି। ସବୁ ଦୃଷ୍ଟିକୋଣରୁ ସମୀକ୍ଷା କଲେ ଜଣାଯାଏ, ମହାମଙ୍ଗଳାଙ୍କ ପୂଜା କେବଳ କାକଟପୁରର କାମେଶ୍ୱରୀ ପୀଠରେ ପୂଜିତ ଦେବୀ ପୂଜା ମାଧ୍ୟମରେ ସର୍ବଧର୍ମ ସମନ୍ୱୟ ଭାବ, ଶକ୍ତି ପୂଜାର ବୈଶିଷ୍ଟ୍ୟ, ଭକ୍ତି ଭାବନା ଓ ସାଂସ୍କୃତିକ ବିଭବ ପରିସ୍ଫୁଟ ହୁଏ।

ବିମାନବନ୍ଧୁ ସାହି, ପୁରୀ

◆◆◆



# ଶ୍ରୀକ୍ଷେତ୍ର ଦର୍ଶନ

**ଅଧ୍ୟାପିକା ସୌଦାମିନୀ ବେହେରା**

ସର୍ବଶକ୍ତିମାନ ଈଶ୍ୱର,ବିଶ୍ୱ ନିୟନ୍ତା, ପରଂବ୍ରହ୍ମ ସ୍ୱୟଂ ଶ୍ରୀଜଗନ୍ନାଥ । ଜୀବନରେ ତାଙ୍କ ବିନା ଗତି ନାହିଁ, ମୁକ୍ତି ନାହିଁ। ଇହକାଳ, ପରକାଳର ଦେବତା ସେଇ କାଳିଆ ଠାକୁର ଅନାଦି, ଅନନ୍ତ । ସେ ସ୍ୱୟଂଭୂ, ପରିଭୂ । ତେତିଶିକୋଟି ଦେବାଦେବୀ, ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ତ୍ରାଣକର୍ତ୍ତା ଶ୍ରୀଜଗନ୍ନାଥ । ହିନ୍ଦୁ ଧର୍ମର ଧର୍ମଧାରା, ପରମ୍ପରା ଓ ସଂସ୍କୃତିକୁ ଅନୁଧ୍ୟାନ ଓ ପଠନ କଲେ ଜଣାପଡେ ଯେ, ଶ୍ରୀଜଗନ୍ନାଥ ସଂସ୍କୃତି ଏକ ବିଶାଳ ସମୁଦ୍ରର ଅଗଣିତ ଜଳରାଶିର ଭଣ୍ଡାର । ଏହା ଭକ୍ତକୁ ବିମୋହିତ, ଉଲ୍ଲାସିତ, ଆମୋଦିତ, ଚକିତ ଓ ଭାବ ବିହ୍ୱୋଳିତ କରିଦିଏ । ସେଇ ଚକାନୟନର କ୍ଷଣିକ ଦର୍ଶନରେ ଆନନ୍ଦର ଅଶ୍ରୁ ନିଗିଡି ପଡେ । ଆତ୍ମବିଭୋର ହୋଇପଡେ । କି ଅପୂର୍ବ ଆକର୍ଷଣ । ମନଲୋଭା ଚାହାଣି, ଓଠରେ ରଙ୍ଗର ହସପସରା । ଏ ସଂସାର ଅଳିକ, ଅସାର । ଦୁନିଆରେ ସବୁ ବସ୍ତୁବାଦୀ, କ୍ଷଣଭଙ୍ଗୁର, ପର । କିନ୍ତୁ ଭଗବାନ ଭକ୍ତର ଏକାନ୍ତ ନିଜର । ସେ ଆନନ୍ଦର ସାଗର । ଭକ୍ତ ବାରମ୍ବାର ଭକ୍ତିରେ ଲୀନ ହେବାପାଇଁ ବ୍ୟାକୁଳ, ଭକ୍ତିରସର ଭୋଗରେ ସେ ଶାନ୍ତି ପାଇଥାଏ ।

ଓଡିଶାର ମାଟି ଧନ୍ୟ ହୋଇଛି ଶ୍ରୀମନ୍ଦିର ପାଇଁ । ଶ୍ରୀକ୍ଷେତ୍ର ସାରା ପୃଥିବୀରେ ଜଗନ୍ନାଥ ଧାମ ନାମରେ ବିଖ୍ୟାତ । ଚାରି ତୀର୍ଥଧାମରୁ ଶ୍ରୀଜଗନ୍ନାଥ ଧାମ ଶ୍ରେଷ୍ଠ ଅଟେ । କଥିତ ଅଛି, ତିନିଧାମର ଯାତ୍ରାପରେ ଶ୍ରୀଜଗନ୍ନାଥ ଧାମର ଦର୍ଶନ କରିବା ଜରୁରୀ ହୋଇଥାଏ । ନହେଲେ ଚାରିଧାମର ଦର୍ଶନର ଫଳ ପ୍ରାପ୍ତି ହୋଇପାରେ ନାହିଁ । ତେଣୁ ସମଗ୍ର ଉତ୍କଳବାସୀ ଆଜି ଶ୍ରୀଜଗନ୍ନାଥଙ୍କ ପାଇଁ ଗର୍ବିତ । ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ରତ୍ନସିଂହାସନରେ ବିରାଜମାନ ହୋଇଛନ୍ତି । ମନ୍ଦିରର ଅଗ୍ରଭାଗରେ ନୀଳଚକ୍ର ରହିଛି ଓ ତା' ଉପରେ ଉଡୁଛି ପତିତପାବନ ବାନା । ପାତକ ଦୋଷ ଲାଗିଥିଲେ ପତିତପାବନ ବାନା ଦର୍ଶନରେ ଭକ୍ତର ଦୋଷ ହରଣ ହୁଏ ବୋଲି ବିଶ୍ୱାସ ରହିଛି ।

ଶ୍ରୀଜଗନ୍ନାଥ କଳିଯୁଗର ଆରାଧ୍ୟ ଦେବତା, ଜୀବର ଜୀବନ । ପ୍ରତ୍ୟେକ ଆତ୍ମାରେ ସେ ବିଦ୍ୟମାନ । ଦେହ ମଧ୍ୟରେ ମନ । ଏହି ଶରୀର ମଧ୍ୟରେ ମନ ସର୍ବ ଉପଲବ୍ଧି, ଦେହ ଉପଲବ୍ଧି, ଆତ୍ମ ଉପଲବ୍ଧି । ମହାବାହୁ ଦୁଃଖୀଜନଙ୍କ ଦୁଃଖର ବିନାଶ ପାଇଁ ଶ୍ରୀମନ୍ଦିରରେ ବିଦ୍ୟମାନ । ଯେ ନିଜକୁ ହେୟ ମଣିଥାଏ ତାକୁ ପତିତ କୁହାଯାଏ । ସେହି ପତିତମାନଙ୍କ ଦୁଃଖ ହରଣ ପାଇଁ ଚକାନୟନ ଶ୍ରୀ ପତିତପାବନ ରୂପେ ଶ୍ରୀମନ୍ଦିରର ପ୍ରବେଶ ଦ୍ୱାର ସିଂହଦ୍ୱାର ଗୁମୁଟରେ ବିରାଜମାନ ହୋଇଛନ୍ତି । ପ୍ରଭୁ ଶ୍ରୀପତିତପାବନ ରୂପରେ ଭକ୍ତମାନଙ୍କର ଦର୍ଶନ ଇଚ୍ଛାକୁ ଚରିତାର୍ଥ କରିବା ପାଇଁ ସେମାନଙ୍କୁ ଖୋଲା ଦର୍ଶନ ଦେଇଥାନ୍ତି । ଭକ୍ତ ପ୍ରଭୁଙ୍କୁ ଦେଖି ଆତ୍ମସନ୍ତୋଷ ଲାଭ କରେ । ସତରେ ପ୍ରଭୁଙ୍କ ଲୀଳା ଅପାର ଅଟେ ।

ବର୍ଷକ ବାରମାସ ପୁରୀ ଉତ୍ସବ ମୁଖରିତ ହୋଇଥାଏ । ପ୍ରଭୁମାନଙ୍କର ସ୍ୱତନ୍ତ୍ର ନୀତି, ନିୟମରେ ପ୍ରତିଦିନର ପୂଜାଅର୍ଚ୍ଚନାର ପରମ୍ପରା ସମ୍ପନ୍ନ ହେଉଅଛି । ସେ ଏ ଜଗତର ତ୍ରାଣକର୍ତ୍ତା । ଶହ ଶହ ସୁଆର, ପୂଜାପଣ୍ଡା, ସେବକ ଗୋଷ୍ଠୀ ଲାଗିପଡିଥାନ୍ତି ଠାକୁରମାନଙ୍କର ସେବାରେ । ଓଡିଶା ପ୍ରଶାସନଠୁ ଆରମ୍ଭ କରି ସରକାର, ସାଧାରଣ ଜନତାଙ୍କର ଠାକୁରଙ୍କ ସେବାରେ ଉତ୍ସାହ ଓ ଉଦ୍ଦୀପନା ସହିତ ଭକ୍ତିଭାବ ଦେଖିବାକୁ ମିଳେ । ଶ୍ରୀମନ୍ଦିରର ବେଢାରେ ଥରେ ବୁଲିଆସିଲେ ମନରେ ଅପୂର୍ବ ଆନନ୍ଦ,



ଶାନ୍ତି,ଏକାଗ୍ରତା, ସ୍ୱଚ୍ଛତା, ଭକ୍ତିଭାବ ଜାଗ୍ରତ ହୋଇଥାଏ । 'ଶ୍ରୀ'ର ଅର୍ଥ ହେଉଛି ସର୍ବଶ୍ରେଷ୍ଠ । ତେଣୁ ଶ୍ରୀଜଗନ୍ନାଥ ଧାମରେ ସବୁ ଶ୍ରେଷ୍ଠ ଅଟେ । ଉତ୍କଳୀୟ ପରମ୍ପରା ଆଜି ଖୁବ୍ ଉଚ୍ଚରେ । ଧନ୍ୟ ଓଡିଶାର ମାଟି, ପାଣି, ପବନ ।

ଶ୍ରୀମନ୍ଦିରକୁ ବେଢି ରହିଛି ମେଘନାଦ ପାଚେରୀ । ଶ୍ରୀମନ୍ଦିର ବେଢାରେ ସବୁ ଦେବାଦେବୀଙ୍କର ସମାଗମ ଦେଖିବାକୁ ମିଳେ । ତେଣୁ ଏଠାକୁ ଆସିଲେ ଭକ୍ତ ସମସ୍ତ ଦେବଦେବୀଙ୍କର ଦର୍ଶନର ସୁଯୋଗ ଲାଭ କରିଥାଏ ।

ମୁଖ୍ୟ ମନ୍ଦିରର ତିନି ଦିଗରେ ତିନି ଦେବତା ରହିଛନ୍ତି– ବରାହ, ନୃସିଂହ ଓ ବାମନ । ଭଗବାନଙ୍କର ଦଶାବତାରରେ ଏହି ତିନି ଅବତାରୀ ସ୍ଥାନ ପାଇଥିଲେ । ଶ୍ରୀମନ୍ଦିର ଭିତର ଓ ବାହାର ବେଢାରେ ଅନେକ ଛୋଟ ବଡ ମନ୍ଦିର ଓ ଦେବତା ଦେଖିବାକୁ ମିଳେ । ଯଥା– ଆଗ୍ନେଶ୍ୱର, ଅନନ୍ତ ବାସୁଦେବ, କୁତାମଚଣ୍ଡୀ, ଇନ୍ଦ୍ରାଣୀ, ଘଣ୍ଟମୁଣ୍ଡେଇ, କାଶୀବିଶ୍ୱନାଥ, ଚକ୍ରନାରାୟଣ, ନୀଳମାଧବ, ଦକ୍ଷିଣେଶ୍ୱର ମହାଦେବ, ନବଗ୍ରହ, ଦୁର୍ଗାମାଧବ, ଦଧିବାମନ, ମାର୍କଣ୍ଡେଶ୍ୱର, ନାଟୁଆ ଗଣେଶ, ପଞ୍ଚମୁଖୀ ହନୁମାନ, ପଶ୍ଚିମଦ୍ୱାର ହନୁମାନ, ମୁକ୍ତେଶ୍ୱର ମହାଦେବ, ପାଦପଦ୍ମ, ଫତେମହାବୀର, ବାଳମୁକୁନ୍ଦ, ବୈକୁଣ୍ଠନାଥ–ତପସ୍ୱୀ ମହାବୀର ଓ ସୁଷେଣ, ବଟ ଜଗନ୍ନାଥ, ପର୍ଶ୍ୱନାଥ–ଧବଳେଶ୍ୱର, ବଟକୃଷ୍ଣ, ବାଳମୁକୁନ୍ଦ, ବାରଭାୟା ହନୁମାନ, ବୁଢୀମା' ଠାକୁରାଣୀ, ବିମଳାଦେବୀ, ମହାଲକ୍ଷ୍ମୀ, ସର୍ବମଙ୍ଗଳା–ବାଟମଙ୍ଗଳା, ଲକ୍ଷ୍ମୀନାରାୟଣ, ଶୀତଳା–ଉତ୍ତରାୟଣୀ, ରାଧାକୃଷ୍ଣ, ବେଢାକାଳୀ, ସୋମନାଥ, କୋଇଲି ବୈକୁଣ୍ଠ, ବେଣୁମାଧବ, ଯଜ୍ଞନୃସିଂହ, ରାମନାଥ, ବଦ୍ରିନାଥ, ଦ୍ୱାରକାନାଥ, ଯୋଗେଶ୍ୱର ରାମଚନ୍ଦ୍ର, ରାଧାକାନ୍ତ, ସୂର୍ଯ୍ୟଦେବ, ସାକ୍ଷୀଗୋପାଳ, ସୀମାଞ୍ଚଳ ନୃସିଂହ, କ୍ଷେତ୍ରପାଳ ଭୈରବ, କ୍ଷୀରଚୋରା ଗୋପୀନାଥ, ତପସ୍ୱୀ ହନୁମାନ, ସତ୍ୟନାରାୟଣ, ବୃନ୍ଦାବନଚନ୍ଦ୍ର, ହରି ସହଦେବ, ପଞ୍ଚପାଣ୍ଡବ, ଲକ୍ଷ୍ମୀନୃସିଂହ, ମହାବୀର, ପାତାଳେଶ୍ୱର ଆଦି ମନ୍ଦିରମାନ ଦେଖିବାକୁ ମିଳେ । ସେଥିପାଇଁ କୁହାଯାଏ, ଶ୍ରୀମନ୍ଦିର ଦର୍ଶନରେ ସବୁ ରିଷ୍ଟ ଖଣ୍ଡନ ହୁଏ । ପାପରୁ ମୁକ୍ତି ମିଳେ ଓ ପୁଣ୍ୟର ଫଳ ମିଳିଥାଏ । ମନୁଷ୍ୟର ଜନ୍ମ ସାର୍ଥକ ଲାଭ କରେ । ଆଉ ପୁନର୍ଜନ୍ମ ମିଳେ ନାହିଁ ବୋଲି ବିଶ୍ୱାସ ରହିଛି । ଏହାଛଡା ମନ୍ଦିର ଭିତର ବେଢାରେ କଳ୍ପବଟ ରହିଅଛି । ଶହଶହ ବର୍ଷଧରି ଏହା ଦଣ୍ଡାୟମାନ । ଭକ୍ତ ଏଠାରେ ମାନସିକ ଯାଚିଲେ ତାକୁ ପୂର୍ଣ୍ଣଫଳ ମିଳେ ବୋଲି ବିଶ୍ୱାସ ରହିଛି । ଚତୁର୍ଦ୍ଧାମୂର୍ତ୍ତିଙ୍କର ଦର୍ଶନ ପରେ ଭକ୍ତ ଏ ବୃକ୍ଷ ଛାୟାରେ କିଛି ସମୟ ବିଶ୍ରାମ ନେଇଥାଏ ।

ମୁକ୍ତିମଣ୍ଡପ ନାମରେ ଏକ ମଣ୍ଡପ ରହିଛି । ଏହି ମଣ୍ଡପରେ ୧୬ ଶାସନର ବ୍ରାହ୍ମଣ ଓ ଶଙ୍କରାଚାର୍ଯ୍ୟ ବସିବାର ପରମ୍ପରା ରହିଛି । ମା' ବିମଳାଙ୍କ ମନ୍ଦିର ସମ୍ମୁଖରେ ରୋହିଣୀକୁଣ୍ଡ ରହିଛି । ଏହି କୁଣ୍ଡର ଜଳ ପବିତ୍ର । ମଥାରେ ସିଞ୍ଚିଲେ ପୁଣ୍ୟ ମିଳିଥାଏ ।

ଦେବଦେବୀଙ୍କୁ ସମର୍ପଣ ନୈବେଦ୍ୟକୁ ଭୋଗ କୁହାଯାଏ । କିନ୍ତୁ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅର୍ପିତ ନୈବେଦ୍ୟକୁ ମହାପ୍ରସାଦ କୁହାଯାଏ । ଶୁଦ୍ଧ ଅର୍ଥରେ କହିଲେ ଏହାକୁ ଶ୍ରୀ ମହାପ୍ରସାଦ ଅର୍ଥାତ ପ୍ରସାଦ ମଧ୍ୟରେ ଶ୍ରେଷ୍ଠ ଅଟେ । ମହାପ୍ରସାଦର ମହିମା ଅତୁଳନୀୟ, ଅବର୍ଣ୍ଣନୀୟ । ମହାପ୍ରସାଦ ସେବନ କଲେ କୋଟି ପୁଣ୍ୟପ୍ରାପ୍ତି ହୁଏ । ମହାପ୍ରସାଦର ସେବନରେ ଛୁଆଁ, ଅଛୁଆଁ, ଅଇଁଠାର ବାରଣ ନଥାଏ । ଲକ୍ଷଲକ୍ଷ ଭକ୍ତ ମହାପ୍ରଭୁଙ୍କ ଦର୍ଶନ ଓ ମହାପ୍ରସାଦ ସେବନ ଆଶାରେ କାହିଁ କେତେ ଦୂରୁ ଆସିଥାନ୍ତି । ମହାପ୍ରସାଦ ସେବନରେ ମହାପାତକ ବିନାଶ ହୋଇଥାଏ । ମାଟିକୁଡୁଆରେ ରନ୍ଧା ହୋଇ ମହାପ୍ରଭୁଙ୍କୁ ନୈବେଦ୍ୟ ପରେ ମାଟିକୁଡୁଆରୁ ନବାଢି ସମସ୍ତେ ସ୍ୱହସ୍ତରେ ନେଇ ସେବନ କରିଥାନ୍ତି । ତେଣୁ ମହାପ୍ରସାଦକୁ 'ଅବଢା' କୁହାଯାଏ । ମହାପ୍ରଭୁଙ୍କର ଶୁଷ୍କ ଅନ୍ନକୁ ନିର୍ମାଲ୍ୟ କୁହାଯାଏ । ଜୀବନ ନାଟିକା ସରିବା କିଛି କ୍ଷଣ ପୂର୍ବରୁ ମନୁଷ୍ୟ ତୁଣ୍ଡରେ ଟିକିଏ ନିର୍ମାଲ୍ୟ ଓ ତୁଳସୀପତ୍ର ପାଇଲେ ବିଷ୍ଣୁଙ୍କର ଶରୀରରେ ସେ ଜୀବର ଆତ୍ମା ଲୀନ ହୋଇଥାଏ ବୋଲି ପୁରାଣରେ ବର୍ଣ୍ଣିତ ହୋଇଅଛି । ପୃଥିବୀର ବଡ ଭୋଜନାଳୟ ହେଉଛି ଶ୍ରୀକ୍ଷେତ୍ରର ଆନନ୍ଦବଜାର । ଲକ୍ଷ ଲକ୍ଷ ଭକ୍ତ ଖାଇଲେ,



ବୋହିଲେ ସରେ ନାହିଁ । ମହାପ୍ରଭୁଙ୍କର ଭୋଜନ ନୀତିକୁ 'ମଣୋହି' କୁହାଯାଏ । ରତ୍ନବେଦୀରେ ବସିଥିବା ମହାପ୍ରଭୁଙ୍କର ଭୋଗକୁ 'ଅମୃତ ମଣୋହି ଭୋଗ' କୁହାଯାଏ । ଏହାର ଅନ୍ୟନାମ ରାଜଭୋଗ । ପ୍ରତ୍ୟେକ ଦିନ ୫ଥର ପ୍ରଭୁଙ୍କ ନିକଟରେ ରାଜଭୋଗ ଲାଗେ – ଗୋପାଳବଲ୍ଲଭ, ସକାଳଧୂପ, ମଧ୍ୟାହ୍ନ ଧୂପ, ସନ୍ଧ୍ୟା ଧୂପ ଓ ବଡ ସିଂହାର ଧୂପ ।

ଦୈନନ୍ଦିନ ଭୋଗ ବ୍ୟତୀତ ଶ୍ରୀମନ୍ଦିରରେ କେତେକ ସ୍ୱତନ୍ତ୍ର ପ୍ରକାରର ଭୋଗ ହୁଏ । ମହାପ୍ରସାଦ ଦୁଇଟି ଭାଗରେ ବିଭକ୍ତ ଯଥା–ଶଙ୍ଖୁଡି ମହାପ୍ରସାଦ ଓ ଶୁଖିଲା ମହାପ୍ରସାଦ । ଶ୍ରୀଜଗନ୍ନାଥଙ୍କୁ ଛାତିଏ ପଉଟି ଭୋଗୀ ବୋଲି କୁହାଯାଏ । କାରଣ ଠାକୁରମାନଙ୍କ ନିକଟରେ ନିତିଦିନ ଛପନ ପଉଟି ଭୋଗ ଲାଗେ । ସେଗୁଡିକ ହେଲା–ଅଟାଳିକା, ଅମାଲୁ, ମାଲପୁଆ, ଆରିସା, ଏଣ୍ଡୁରୀ, କଡମ୍ବା, କାକରା, କାନ୍ତି, କେଳି, କୋରା , ଖଇରଚୂଳ, ଖଜା, କ୍ଷିରୀ, ଖିରିସା, ଖୁରୁମା, ଖେଚେଡି, ଗଇଣ୍ଠା, ଗଜା, ଗୋଟାଳି, କଦଳୀ, ଚକୁଳି, ଚିଡଉ, ଛୁଞ୍ଚିପତ୍ର, ଜଗନ୍ନାଥ ବଲ୍ଲଭ, ଜେନାମଣି, ଝିଲି, ଟାକୁଆ, ଡାଳିମ୍ବ, ତାଡିଆ, ତ୍ରିପୁରୀ, ଧଉଳା, ନାଡି, ପଣସୁଆ, ପଣା, ଅଦାପାଚେଡି, ସାରପାପୁଡି, ପାଳୁଅ, ପଖାଳ, ପୋଡପିଠା, ପୁରୀ, ପୁଳି, ଫେଣା, ବଡା, ବାଳୀବାମନ, ସରଉଜା, ମଣ୍ଡା, ମନୋହର, ମହାଦେଇ, ଛେନା ମାଣ୍ଡୁଆ, ମୋହନଭୋଗ, ରସାବଳୀ, ରାଧାବଲ୍ଲଭ, ଲଡୁ, ଲହୁଣିଆ, ଲକ୍ଷ୍ମୀବିଳାସ, ସରସ୍ୱତୀଆ ଓ ହସଂବଲ୍ଲବ ଆଦି ଛପନ ପ୍ରକାର ଭୋଗ । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କୁ ଯେତେ ପ୍ରକାରର ଓ ଯେତେ ପରିମାଣର ବ୍ୟଞ୍ଜନ ପ୍ରସ୍ତୁତି ହୋଇ ପ୍ରତିଦିନ ଭୋଗ ହୁଏ ସେଭଳି ସାରା ସଂସାରର ଅନ୍ୟ ଦେଉଳମାନଙ୍କରେ ଦୃଷ୍ଟିଗୋଚର ହୁଏ ନାହିଁ । ତେଣୁ ଶ୍ରୀଜଗନ୍ନାଥ ହେଉଛନ୍ତି ଛପନ ଭୋଗୀ ।

ନୀଳାଚଳ ଧାମରେ ଶ୍ରୀଜଗନ୍ନାଥ ସଂସ୍କୃତିର ବାରମାସରେ ତେର ପର୍ବର ବିଧି ରହିଛି । ସ୍ନାନଯାତ୍ରା, ରଥଯାତ୍ରା, ଶୟନ, ଦକ୍ଷିଣାୟନ, ପାର୍ଶ୍ୱପରିବର୍ତ୍ତନ, ପୁଷ୍ୟ ପୂଜା, ଦୋଳ ଦମନକ ଚତୁର୍ଦ୍ଦଶୀ, ଅକ୍ଷୟତୃତୀୟା ଆଦି ପର୍ବ ଶ୍ରୀମନ୍ଦିରରେ ପାଳନ ହୁଏ । କିନ୍ତୁ ସ୍ନାନଯାତ୍ରା ଓ ରଥଯାତ୍ରା ରତ୍ନବେଦୀର ବାହାରେ ପାଳିତ ହୁଏ । ରଥଯାତ୍ରା ସାରା ପୃଥିବୀର ବଡଯାତ୍ରା ଅଟେ । ଚତୁର୍ଦ୍ଧାମୂର୍ତ୍ତି ୩ଟି ରଥରେ ବିରାଜମାନ ହୁଅନ୍ତି । ରଥଯାତ୍ରା ଘୋଷଯାତ୍ରା ନାମରେ ପ୍ରସିଦ୍ଧି ଲାଭ କରିଛି । ଲକ୍ଷଲକ୍ଷ ଜନତା ଛୁଟି ଆସନ୍ତି ଓଡିଶା ଓ ଓଡ଼ିଶା ବାହାରୁ ଶ୍ରୀକ୍ଷେତ୍ରଧାମକୁ । ରଥର ଦଉଡି ସ୍ପର୍ଶକରି ତିନି ଠାକୁରଙ୍କ ଅପରୂପ ବେଶ ଦର୍ଶନ କରି ନିଜକୁ ଧନ୍ୟ ମଣନ୍ତି । ଭକ୍ତ ସାଲବେଗ, ଦାସିଆ ବାଉରୀ, ବନ୍ଧୁ ମହାନ୍ତି, ବଳରାମ ଦାସ, ତୁଳସୀ ଦାସ ଆଦି ଭକ୍ତଙ୍କ ଶ୍ରୀଜଗନ୍ନାଥଙ୍କ ପ୍ରତି ନିଚ୍ଛକ ଭକ୍ତିର ନିଦର୍ଶନ ଇତିହାସରେ କାଳ କାଳକୁ ରହିଯାଇଅଛି । ପ୍ରଭୁ କେବଳ ଭକ୍ତିରେ ବନ୍ଧା । ସେ ପରଂବ୍ରହ୍ମ । ମନୁଷ୍ୟ ଜନ୍ମ ପରେ ମୃତ୍ୟୁର ସମ୍ମୁଖୀନ ହୁଏ । ଠିକ୍ ସେହିପରି ଆମ ଠାକୁର ଦାରୁ ଦେବତା । ଯେଉଁ ବର୍ଷ ଦୁଇଗୋଟି ଆଷାଢ (ଯୋଡା ଆଷାଢ) ମାସ ପଡିଥାଏ ସେତେବେଳେ ନବକଳେବର ଅନୁଷ୍ଠିତ ହୁଏ । ପୁରାତନ ବିଗ୍ରହରୁ ନୂତନ ବିଗ୍ରହକୁ ଓ ବ୍ରହ୍ମ ପରିବର୍ତ୍ତନକୁ ନବକଳେବର କୁହାଯାଏ । ଗତ ନବକଳେବର ମହା ଆଡମ୍ବର, ଉତ୍ସାହ, ଉଲ୍ଲାସରେ ପାଳନ ହୋଇଯାଇଛି । ରାଜ୍ୟର ବିଭିନ୍ନ ସ୍ଥାନରୁ ଚତୁର୍ଦ୍ଧାମୂର୍ତ୍ତିଙ୍କ ଦାରୁ ମିଳିଥିଲା । ଏହି ଦିବ୍ୟଦାରୁଙ୍କ ପାଇଁ ସେ ସ୍ଥାନସବୁ ପବିତ୍ର ହୋଇଗଲା । ଧନ୍ୟ ହୋଇଗଲା ସେ ମାଟି, ପାଣି, ପବନ । କଳିଯୁଗରେ ସ୍ୱୟଂ ପରଂବହ୍ମ ଶ୍ରୀଜଗନ୍ନାଥ ନାମରେ ଜଗତରେ ବିଖ୍ୟାତ । ସେଇ ପ୍ରଭୁଙ୍କର ଏସବୁ ଅପୂର୍ବଲୀଳା । ତାଙ୍କର ଇଚ୍ଛାରେ ଏ ସଂସାର ଆତଜାତ । ଏ ଜୀବଜଗତର ପ୍ରତ୍ୟେକ ଜୀବ ଗୋଟିଏ ଗୋଟିଏ ବିନ୍ଦୁ ସମ । ତାଙ୍କ ହସ୍ତରେ ସଂସାରର ରଜ୍ଜୁ, ସେ ଯେଉଁ ଆଡେ ଟାଣନ୍ତି ଆମେ ସେହି ଆଡକୁ ଆପେ ଆପେ ଟାଣି ହୋଇ ଯାଉ । ଶେଷରେ ଏତିକି କାମନା ଉତ୍ତମ କର୍ମ କରିବାର ପଥ ଦେଖାଅ ଓ ତୁମ୍ଭ ଚରଣରେ ଶରଣ ଦିଅ ପ୍ରଭୁ ।

ରାଜନୀତି ବିଜ୍ଞାନ ବିଭାଗ
ଶ୍ରୀ ସୋମନାଥ ବାଲୁଙ୍କେଶ୍ୱର ମହିଳା ମହାବିଦ୍ୟାଳୟ
କନ୍ତିଆ, ଜଟଣୀ, ଖୋର୍ଦ୍ଧା



# ପରମାତ୍ମା ଶ୍ରୀଜଗନ୍ନାଥ

**ଶିବସୁନ୍ଦର ପଟ୍ଟନାୟକ**

ସମଗ୍ର ଜଗତର ସ୍ରଷ୍ଟା ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପେ ନୀଳାଚଳ ଧାମରେ ବିଜେ କରିଅଛନ୍ତି । ଜଗତରେ ସେ ଲୀଳା କରୁଥିଲେ ହେଁ ସେ ସେଥିରେ ନିର୍ଲିପ୍ତ ରହିଥାନ୍ତି । ସେ ନିର୍ମଳ, ଶୁଦ୍ଧ-ଚୈତନ୍ୟ, ଶୁଦ୍ଧ କ୍ଷେତ୍ରଜ୍ଞ ଅଟନ୍ତି । ସେ ରୂପ ରହିତ ବା ନିରାକାର ହେଲେ ହେଁ ସାକାର ରୂପେ ଜଗତରେ ପ୍ରକଟ ହୋଇଥାନ୍ତି । ସଂସାରରେ ଯାହା କିଛି ତାଙ୍କର ଦାରୁ, ଧାତୁ ବା ମଣି ବିଗ୍ରହ ଦେଖୁଅଛେ, ତାହା ତାଙ୍କର ବାଚ୍ୟ ରୂପ ଏବଂ ଜଗତରେ ଯାହା ତାଙ୍କର ନାମ ଶୁଣିବାକୁ ମିଳୁଅଛି ସେସବୁ ତାଙ୍କର ବାଚକରୂପ ଅଟେ । ଗୋଲକ ଧାମର ପରମବ୍ରହ୍ମ ବା ନୀଳାଚଳ ଧାମର ଶ୍ରୀଜଗନ୍ନାଥ ଏବଂ ତାଙ୍କର ସମସ୍ତ ବାଚ୍ୟ ବା ବାଚକ ରୂପ ସ୍ୱୟଂ ପରମାତ୍ମା ଶ୍ରୀଜଗନ୍ନାଥ ଅଟନ୍ତି । ସେ ଏକ ଏବଂ ଅଦ୍ୱିତୀୟ ଅଟନ୍ତି । ତାଙ୍କ ପାଇଁ ଯାହା କିଛି ବିଶେଷଣ ବ୍ୟବହାର କରାଯାଏ ସେଥିମଧ୍ୟରୁ ଏକ ବିଶିଷ୍ଟ ବିଶେଷଣ ବ୍ୟବହାର କରାଯାଇପାରେ ଯେ ଶ୍ରୀଜଗନ୍ନାଥ ଅପ୍ରମେୟ ଅଟନ୍ତି ।



ଅପ୍ରମେୟ ଶବ୍ଦର ଅର୍ଥ କ'ଣ ? ଏହା ସଂସ୍କୃତ ଶବ୍ଦ ଅଟେ । ଅପ୍ରମେୟ ଶବ୍ଦର ଅର୍ଥ ଜାଣିବା ପୂର୍ବରୁ ଆମେ ପ୍ରମେୟ ଶବ୍ଦ କ'ଣ ଜାଣିବା । ପ୍ରମେୟ ଶବ୍ଦର ଅର୍ଥ ଯାହାକୁ ମାପି ବା କଳନା କରିପାରିବା, ସିଦ୍ଧି କରିବା ଯୋଗ୍ୟ ବସ୍ତୁ, ଯାହା ସମ୍ବନ୍ଧରେ ନିଶ୍ଚିତ ରୂପେ ଜ୍ଞାନ କରିପାରିବା । ଅପ୍ରମେୟ ଶବ୍ଦର ଅର୍ଥ ଅପରିମିତ । ଯିଏ ଆମ୍ଭମାନଙ୍କ ଜ୍ଞାନଗାରିମାର ଊର୍ଦ୍ଧ୍ୱରେ ଅଟନ୍ତି ବା ପରମାତ୍ମା ଅଟନ୍ତି ।

ଶ୍ରୀଜଗନ୍ନାଥଙ୍କୁ ଜାଣିବା ପାଇଁ ଆମ୍ଭେମାନେ ପ୍ରାଚୀନ ମୁନିଋଷିମାନଙ୍କ ରଚନାର ସାହାଯ୍ୟ ନେବାକୁ ହେବ । ସେମାନେ ଉପନିଷଦ, ପୁରାଣ ଇତ୍ୟାଦି ରଚନା କରି ସେଥିରେ ଭଗବାନ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ କିଛି ବର୍ଣ୍ଣନା କରିଅଛନ୍ତି । ବେଦରେ ମଧ୍ୟ ଭଗବାନଙ୍କ ସମ୍ବନ୍ଧରେ କୁହାଯାଇଅଛି । କୁରୁକ୍ଷେତ୍ର ଯୁଦ୍ଧରେ ଭଗବାନ ଶ୍ରୀକୃଷ୍ଣ ଗୀତା ମାଧ୍ୟମରେ ନିଜ ସମ୍ବନ୍ଧରେ କିଛି କହିଅଛନ୍ତି, ଯେଉଁଥିରୁ ଆମ୍ଭେମାନେ ତାଙ୍କ ସମ୍ବନ୍ଧରେ କିଛି ଜାଣିବାକୁ ପାଉଅଛୁ ।

ଆମ୍ଭର ସ୍ଥୂଳ ଚକ୍ଷୁରେ ଆମ୍ଭେମାନେ ଶ୍ରୀଜଗନ୍ନାଥଙ୍କ ଆକାର ଯେତେ ବୃହତ ଦେଖିବାକୁ ପାଇଲେ ମଧ୍ୟ ସେ ସେହି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସୀମିତ ନୁହନ୍ତି । ସ୍ଥୂଳ ଚକ୍ଷୁରେ ଆମ୍ଭେମାନେ ତାଙ୍କର ହାତଗୋଡ଼ ନଥିବା ଦେଖୁଅଛେ । ଭଗବାନ ଶ୍ରୀଜଗନ୍ନାଥଙ୍କ ଆକାର ସମ୍ବନ୍ଧରେ ଆମ୍ଭେମାନେ ଜାଣିବାକୁ ହେଲେ ଆମ୍ଭେମାନେ ବେଦର ସାହାଯ୍ୟ ନେବାକୁ ହେବ । ଋଗ୍ ବେଦରେ ବର୍ଣ୍ଣନା ଅଛି ଯେ-



ହେ ପ୍ରଭୁ ଶ୍ରୀଜଗନ୍ନାଥ !

ଆପଣ ସହସ୍ର ମସ୍ତକ ବିଶିଷ୍ଟ ପୁରୁଷ, ଆପଣ ସହସ୍ର ଚକ୍ଷୁ ଏବଂ ସହସ୍ର ପାଦ ବିଶିଷ୍ଟ ଅଟନ୍ତି । ଆପଣ ଏତେ ବିଶାଳ ଯେ ସମଗ୍ର ବିଶ୍ୱ ମଣ୍ଡଳ ଆପଣଙ୍କର ଦଶ ଆଙ୍ଗୁଳି ପରିସୀମା ସଙ୍ଗେ ସମାନ ଅଟେ ।

ଶ୍ରୀ ବିଷ୍ଣୁ ପୁରାଣରେ ମଧ୍ୟ ସେହି କଥା ଅଂଶ ୧/୧୨/୫୬ରେ ବର୍ଣ୍ଣନା ଅଛି ।

ଆମ୍ଭେମାନେ ଶ୍ରୀଜଗନ୍ନାଥଙ୍କ ହାତ ପାଦ ଦେଖିବାକୁ ପାଉନାହୁଁ । ଯଦି ତାଙ୍କର ପାଦ ନାହିଁ ସେ ବିଭିନ୍ନ ଜାଗା ଭ୍ରମଣରେ ଯାଉଛନ୍ତି କିପରି ଏବଂ ଜୀବର ଦୁଃଖ ଦୁର୍ଦ୍ଦଶା ଲାଘବ ହେଉଛି କିପରି ? ପ୍ରବାଦ ଅଛି ଯେ ସେ ହସ୍ତ ପ୍ରସାରି ଦାସିଆ ବାଉରୀ ପ୍ରଦତ୍ତ ନଡ଼ିଆ ନେଇଥିଲେ ।

ଆମ୍ଭେମାନେ ଅନେକ ସମୟରେ ଭଗବାନଙ୍କ ବିଷୟରେ ସନ୍ଦେହରେ ପଡୁ । ଗୋଟିଏ କଥା ସ୍ୱୀକାରଯୋଗ୍ୟ ଯେ ଗୋଲକ ଧାମରେ ଭଗବାନ ଏବଂ ଭଗବାନଙ୍କର ଅନ୍ୟଠାରେ ଥିବା ଅର୍ଚ୍ଚା ବିଗ୍ରହ, ଜଗତରେ ଲୀଳା କରୁଥିବା ସମସ୍ତ ଅବତାର ଏକ ଓ ଅଭିନ୍ନ । ଭଗବାନ ଅବତାର ନେଲେ ମଧ୍ୟ ଗୋଲକ ଧାମରେ ଭଗବାନ ବା ନୀଳାଚଳ ଧାମର ଶ୍ରୀଜଗନ୍ନାଥଙ୍କର କିଛି କ୍ଷୟ ହୁଏ ନାହିଁ । ସେ ନେଇଥିବା ଅବତାର ବା ଅଂଶ ମୂଳ ଭଗବାନଙ୍କ ପରି ପୂର୍ଣ୍ଣ ଅଟନ୍ତି ।

ଆମ୍ଭେମାନେ ଯାହା କିଛି ଦେଖୁଅଛେ ସମସ୍ତେ ଭଗବାନଙ୍କ ଅଂଶ ବା ଭଗବାନ ଅଟନ୍ତି । ବାସୁଦେବ ସର୍ବଂ (ଶ୍ରୀମଦ୍ ଭଗବଦ୍ ଗୀତା-୭/୧୯) (ସମସ୍ତେ ବାସୁଦେବ ଅଟନ୍ତି ।) ଈଶା ବାସ୍ୟ ମେଦଂ ସର୍ବଂ (ଈଶୋପନିଷଦ-୧) (ସବୁ କିଛି ଈଶ୍ୱର ଅଟନ୍ତି ।) ପରିପଶ୍ୟନ୍ତୁ ପରମେତ୍ (ଶ୍ରୀମଦ୍ ଭାଗବତମ୍ - ୧୧/୨୯/୧୮) (ଯାହା କିଛି ଆମ୍ଭେମାନେ ଦେଖୁଅଛେ ତାହା ବ୍ରହ୍ମସ୍ୱରୂପ ବା ପରମାତ୍ମା ବା ଉପରମେତ୍ ଅଟନ୍ତି ।) ଖାଣ୍ଡିକ୍ୟଜନକ (ସୀତାଦେବୀଙ୍କ ପିତାମହ)ଙ୍କ ପ୍ରଶ୍ନରେ ମହର୍ଷି କେଶିଧ୍ୱଜ ଅନନ୍ତଙ୍କ ବାସୁଦେବ ନାମକୁ ବ୍ୟାଖ୍ୟା କରି କହିଥିଲେ ଯେ-

ଭୂତେଷୁ ବସତେ ସୋନ୍ତ ର୍ବସନ୍ତ୍ୟତ୍ର ଚ ତାନିଯତ୍ ।
ଧାତା ବିଧାତା ଜଗତାଂ ବାସୁଦେବସ୍ତତଃ ପ୍ରଭୁ ॥

(ଶ୍ରୀବିଷ୍ଣୁ ପୁରାଣ- ଅଂଶ ୬/୫/୮୨)

(ପ୍ରଭୁ ସମସ୍ତ ଭୂତରେ ବ୍ୟାପ୍ତ ଓ ସମସ୍ତ ଭୂତ ମଧ୍ୟ ତାଙ୍କଠାରେ ଅବସ୍ଥାନ କରନ୍ତି ଏବଂ ସେ ମଧ୍ୟ ସଂସାରର ରଚୟିତା ଓ ରକ୍ଷକ ଅଟନ୍ତି । ଏଥିପାଇଁ ତାଙ୍କୁ ବାସୁଦେବ କହନ୍ତି ।)

ମନରେ ପ୍ରଶ୍ନ ଉଠୁଅଛି ଭଗବାନ ସାକାର ନା ନିରାକାର । ଗୋଲକ ଧାମରେ ବ୍ରହ୍ମ ନିରାକାର ନୁହନ୍ତି ବୋଲି ଅନେକ ଯୁକ୍ତି ବାଢ଼ିଥାନ୍ତି । ଅନେକ ବି କହିଥାନ୍ତି ଯେ ଭଗବାନ ସାକାର ବୋଲି ।

ଆଦିତ୍ୟ ମଣ୍ଡଳରେ ଥିବା ବ୍ରହ୍ମଙ୍କ ମୁଖ ଜ୍ୟୋତିର୍ମୟ ପାତ୍ରରେ ଆଚ୍ଛାଦିତ ହୋଇଅଛି । ହେ ଜଗତ ପୋଷକ ସୂର୍ଯ୍ୟ ! ଆପଣ ଆପଣଙ୍କ ଜ୍ୟୋତି ହଟାଇ ଦିଅନ୍ତୁ । ଫଳରେ ମୁଁ କଲ୍ୟାଣମୟ ସତ୍ୟଧର୍ମ ବିସ୍ତାରକାରୀ ଭଗବାନଙ୍କ ସ୍ୱରୂପ ଦେଖିପାରିବି ।

ଭଗବାନଙ୍କୁ ଉଜ୍ଜ୍ୱଳମୟ ଜ୍ୟୋତି ଆଚ୍ଛାଦିତ କରିଥିବାରୁ ଆମ୍ଭେମାନେ ତାଙ୍କୁ ଦର୍ଶନ କରିପାରୁ ନାହୁଁ । ଭଗବାନ ନିଜକୁ ସର୍ବଦା ପ୍ରକାଶ କରନ୍ତି ନାହିଁ । ଯଦି ଉଜ୍ଜ୍ୱଳମୟ ଜ୍ୟୋତିର ଅପସାରଣ ହେବ ବା ଭଗବାନ ଆମ୍ଭମାନଙ୍କୁ ଇଚ୍ଛା କରି ଦର୍ଶନ ଦେବେ ତେବେ ଆମ୍ଭେମାନେ ତାଙ୍କୁ ଦର୍ଶନ କରିପାରିବା । ଭଗବାନ ଯଦି ନିରାକାର ତେବେ ଆମ୍ଭେମାନେ ଉଜ୍ଜ୍ୱଳମୟ ଜ୍ୟୋତି ଅପସାରଣରେ କ'ଣ ଶୂନ୍ୟସ୍ଥାନ ଦେଖିବା ! ସୁତରାଂ ଭଗବାନ ସାକାର ଅଟନ୍ତି । ପ୍ରଶ୍ନ ଉଠେ ଭଗବାନ ଶ୍ରୀଜଗନ୍ନାଥ ସଗୁଣ ବା ନିର୍ଗୁଣ ଅଟନ୍ତି ? ସମସ୍ତ ଗୁଣର ସ୍ରଷ୍ଟା ଶ୍ରୀଜଗନ୍ନାଥ ଅଟନ୍ତି । କିନ୍ତୁ ସେ ନିଜେ ନିର୍ଗୁଣ ଅଟନ୍ତି । କୁହାଯାଇଛି -





ଶ୍ରୀଜଗନ୍ନାଥ ଗୁଣ ରହିତ ବା ନିର୍ଗୁଣ ଅଟନ୍ତି । ସୃଷ୍ଟି, ସ୍ଥିତି ଓ ପ୍ରଳୟ ନିମନ୍ତେ ସେ ମାୟାର ତିନିଗୁଣ – ସତ୍ୱ,ରଜ ଓ ତମ ଗୁଣଗୁଡ଼ିକୁ ଗ୍ରହଣ କରିଥାନ୍ତି ।

ଅନନ୍ତ ବୀର୍ଯ୍ୟ ବିଷ୍ଣୁଙ୍କର କିଏ ବୀର୍ଯ୍ୟ ଗଣନା କରିବ । ବରଂ ପୃଥିବୀର ରେଣୁରାଶି ଗଣନା କରାଯାଇପାରେ । ବାମନ ଅବତାରରେ ବଳିର ବାକ୍ ଦାନରୁ ପୃଥିବୀଠାରୁ ସତ୍ୟଲୋକ ପର୍ଯ୍ୟନ୍ତ କମ୍ପମାନ ହେଲା । ସେତେବେଳେ ଭଗବାନ ନିଜର ତ୍ରିସାମ୍ୟ ସଦନଠାରୁ ଶେଷ ପର୍ଯ୍ୟନ୍ତ ନିଜ ବଳ (ଶକ୍ତି) ଦ୍ୱାରା ଧାରଣ କରି ଦେଇଥିଲେ । ସେହି କଥା ମଧ୍ୟ ବେଦମାନଙ୍କରେ ବର୍ଣ୍ଣନା ଅଛି ।

ଅନନ୍ତ କୀର୍ତ୍ତିମାନ ଉରୁଗାୟ ବିଷ୍ଣୁଙ୍କର ପରାକ୍ରମ ବର୍ଣ୍ଣନା କରିବାକୁ କିଏ ସମର୍ଥ ହେବ । ସେ ଏକପାଦ ବିଭୂତିରେ ଅସଂଖ୍ୟ ବ୍ରହ୍ମାଣ୍ଡ ସୃଷ୍ଟି କରିଅଛନ୍ତି । ତ୍ରିପାଦ ବିଭୂତିରେ ସମଗ୍ର ବିଶ୍ୱମଣ୍ଡଳକୁ ଧାରଣ କରିଥିବା ପରମ ଅକ୍ଷର, ସଦାନିତ୍ୟ, ଅପ୍ରାକୃତ, ସର୍ବଶ୍ରେଷ୍ଠ ବିଷ୍ଣୁପଦ' ଗୋଲକ ଧାମ ସର୍ଜନା କରିଅଛନ୍ତି ।

ସୁତରାଂ ଶ୍ରୀଜଗନ୍ନାଥ ଅପ୍ରମେୟ ଅଟନ୍ତି । ତାଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନଶକ୍ତି ଅଳ୍ପ ଅଟେ । ଆମ୍ଭେମାନେ ଶାସ୍ତ୍ର ପ୍ରମାଣ ଅନୁସାରେ ଯାହା କିଛି ସାମାନ୍ୟ ଧାରଣା କରୁଅଛେ ।

କନକ ମୃଗ
କାରାଗାର ପଥ, ଖୋର୍ଦ୍ଧା

# ନିଶବଦ ଭୂଇଁ

ପୁନେଶ୍ କୁମାର ସେନାପତି

ନୀଳକନ୍ଦରରେ ନୀଳାଦ୍ରିମଣ୍ଡପେ ନୀଳଗିରି ନାଥ ଥାଇ
ନିତି ନିତ୍ୟରାସ ମଣ୍ଡଳୀ ରଚନ୍ତି ନୀଳଚକ୍ର ଆଢୁଆଇ ।

ସଖା ସଙ୍ଗେ ସଖା ସାକ୍ଷୀପ୍ରାୟ ଥାନ୍ତି ଆଖି ପିଛୁଳାକେ ନାହିଁ
ଗୁପତେ ଗୁପତ ରାସ ଚାଲିଥାଇ ସଖୀ ମେଳେ ମାଧୋଇ ।

ସଞ୍ଜରୁ ସିନ୍ଦୁରା ଚବିଶପ୍ରହର କଳନା କରିନୁହଁଇ
କୁଞ୍ଜରେ କୁଞ୍ଜରେ ଖଞ୍ଜରେ ଖଞ୍ଜରେ
ଭେଟାଭେଟି ଗୋପ ଗୋଇ ।
ରାଧାକୁଞ୍ଜ ଶ୍ୟାମ କୁଞ୍ଜର ସୁଷମା ଅକଳନ ଶୋଭାବନ
କୁସୁମ ସୁବାସ ବାସ ଚହଟଇ ମଧୁପ ମୃଦୁ ଗୁଞ୍ଜନ ।

ପକ୍ଷୀଙ୍କ କାକଳି ପଶୁଙ୍କ ବୋବାଳି ଏକୁଆରେକ ମଧୁର
ଶ୍ୟାମବଂଶୀ ତାନ ବାଜିଗଲେ କାନ ପ୍ରାଣ ହୁଅଇ ଅଧୀର ।

ନିଶବଦ ଘରୁ ଗୁମୁରି ଉଠୁଛି କଟି କିଙ୍କିଣି ଶବଦ
ଅଙ୍ଗର ବସନ ଭୂଷଣ ଲୋଟିଛି ଧରାଦିଶଇ ଆହ୍ଲାଦ ।

'ଅ'କାର 'ଉ'କାର 'ମ'କାର ନାଦରେ ନାଗରା ଡାକୁଛି ରହି
ନିଶବଦ ଭୂଇଁ ନାଦ ପ୍ରକଟଇ ଶୁଣୁଛି ବଧିର ରହି ।

ଗୀତଗୋବିନ୍ଦର ଗୁପତ ନିନାଦ ଗୁପ୍ତ ମଣ୍ଡଳେ ଗୁପତ
ଗୁରୁଘର ବିଦ୍ୟା ଗୁରୁପାଦ ସେବା କଲେ ହୁଅଇ ପ୍ରାପତ ।

ଗୋପ, ପୁରୀ–୭୫୨୧୧୦



# ଶ୍ରୀଜଗନ୍ନାଥ – ସ୍ୱାଭିମାନୀ ମହାପ୍ରଭୁ

ଡକ୍ଟର ଦୁର୍ଗାପ୍ରସନ୍ନ ଚୌଧୁରୀ

ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ବିଲୟର କାରଣ। ସେ ଲୀଳାମୟ ପୁରୁଷ ଅଟନ୍ତି। କେତେବେଳେ ସେ ଶ୍ରୀକୃଷ୍ଣ ରୂପ ଓ କେତେବେଳେ ଶ୍ରୀ ରାମଙ୍କ ରୂପ, ଆଉ କେତେବେଳେ ବାମନ ରୂପ ହୋଇ ଅବତାର ହୋଇଥାଆନ୍ତି। ତାଙ୍କର ରୂପ ଅବର୍ଣ୍ଣନୀୟ। ତାଙ୍କ ବିନା ଏ ସୃଷ୍ଟି ଅସମ୍ଭବ ।

ଏହି ଦେବଭୂମିର କର୍ତ୍ତା, ସ୍ରଷ୍ଟା ଅଦ୍ଭୁତ ମାୟା ହେଉଛନ୍ତି ଶ୍ରୀଜଗନ୍ନାଥ । ସେ ଅପାର, ଅମୃତ, ଅମ୍ଳାନ ଓ ମାନବିକତାର ଏକ ଜ୍ୱଳନ୍ତ ଉଦାହରଣ । ସେ ତ୍ରିକାଳଦର୍ଶୀ, ସମସ୍ତ ଜାତିର ପ୍ରତୀକ, କି ଦରିଦ୍ର, କି ଧନୀ ସମସ୍ତେ ତାଙ୍କ ପାଦତଳେ ନତମସ୍ତକ ଓ ଆଶ୍ରିତ। ସେ ମାୟାର ବର୍ଣ୍ଣନା ଏ ସାମାନ୍ୟ ଲେଖକ ନିମିତ୍ତ କଷ୍ଟସାଧ୍ୟ । ସେ ଯାହାହେଉ, ଯେତେବେଳେ ତାଙ୍କ ପରିକଳ୍ପନା କରାଯାଏ, ସେ ସ୍ମୃତିର ମାନସ ପଥରେ ଅବସ୍ଥାନ କରନ୍ତି ଓ ଅପସରି ଯାଆନ୍ତି। ସେ ସୁଖ ଦେଇଥାନ୍ତି ଓ ଦୁଃଖ ନେଇଯାଆନ୍ତି । ଏଣୁ ମାନବତାର ପରିଚୟ ଦେଇ ଶ୍ରୀମନ୍ଦିରରେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ଏ ମନ୍ଦିର ତାଙ୍କର କିପରି ହେଲା ଏହା କାହାକୁ ଅଗୋଚର ନାହିଁ ।

ଇନ୍ଦ୍ରଦ୍ୟୁମ୍ନ ବୃହତ୍ ଜଗନ୍ନାଥ ମନ୍ଦିରର ନିର୍ମାତା ବୋଲି ଜନମାନସରେ ଧାରଣା ସୃଷ୍ଟି କରିବାରେ ସ୍କନ୍ଦ ପୁରାଣରେ, ପୁରୁଷୋତ୍ତମ ଖଣ୍ଡ, ବ୍ରହ୍ମପୁରାଣର ପୁରୁଷୋତ୍ତମ ଖଣ୍ଡ, ସାରଳା ମହାଭାରତର ମୂଳୀ ପର୍ବ, କପିଳ, ସଂହିତା, ନୀଳାଦ୍ରି, ମହୋଦଧି ଓ ଦେଉଳ ବେଢ଼ାର ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ଆବୁଲ-ଫାଜଲଙ୍କର ଆଇନ-ଇ-ଆକବରୀ ଓ ମାଦଳା ପାଞ୍ଜିର ରାଜଭୋଗ ମଧ୍ୟ ଏସବୁ ଉପାଦାନରୁ ତଥ୍ୟ ସଂଗ୍ରହ କରିଥିଲେ । ଯଦିବା ସୋମବଂଶୀ ସମ୍ରାଟ ଯଯାତି ଓ ଗଙ୍ଗବଂଶୀ ରାଜାମାନେ ମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳା ପାଞ୍ଜିରେ ସୂଚନା ଦିଆଯାଇଛି, ତଥାପି ଇନ୍ଦ୍ରଦ୍ୟୁମ୍ନ ଇତିହାସ ପୂର୍ବଭଳି ମାନବାଧିପତି ସର୍ବପ୍ରଥମ ଏହି ଧାମରେ ଅଗ୍ରଗତି ପାଇଁ ଚେଷ୍ଟିତ ଥିଲେ ସ୍ୱୀକାର କରାଯାଇ ପାରେ ।

ସ୍କନ୍ଦପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡର ରଚନା ପରେ ପରେ ଆଞ୍ଚଳିକ ଚିନ୍ତାଧାରାରେ ଏହି ମନ୍ଦିରର ନିର୍ମାଣ ହିସାବରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରତିଷ୍ଠା କରାଇ ଦେବାରେ ସେତେବେଳେ ମନ୍ଦିର ସେବକ, ପୂଜକମାନଙ୍କ ମୁଖ୍ୟ ଭୂମିକା ଥିଲା। ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀ ମାଧ୍ୟମରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରସଙ୍ଗରେ ରାଜଶକ୍ତି ଭୂମିକାରେ ଆଭାସ ଦିଆଯାଇଛି । ଅବଶ୍ୟ ଆଦିମ ଶବର ସେବକ, ବ୍ରାହ୍ମଣ ସେବକ ତଥା ରାଜସେବକ ତିନୋଟି ମୌଳିକ ଭକ୍ତି ବିଭିନ୍ନ ସମୟରେ ଏହି ମନ୍ଦିରର ନିର୍ମାଣ ଓ ଉନ୍ନତିରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ବିଶ୍ୱାବସୁ, ଅଣଆର୍ଯ୍ୟ ଶକ୍ତିର ସଂକେତ, ବିଦ୍ୟାପତି (ବ୍ରାହ୍ମଣ) ଆର୍ଯ୍ୟଶକ୍ତିର ସଂକେତ ଓ ସର୍ବୋପରି ଇନ୍ଦ୍ରଦ୍ୟୁମ୍ନ ରାଜଶକ୍ତିର ସଂକେତ। ଗୋଟିଏ ଶକ୍ତି ଅନ୍ୟ ଶକ୍ତି ଉପରେ ପ୍ରାଧାନ୍ୟ ବିସ୍ତାର କରି ଶ୍ରୀମନ୍ଦିରର ଅଧିକ ଉନ୍ନତି କରିବା ପ୍ରସଙ୍ଗ ସେହି ଶକ୍ତିର ପ୍ରତିନିଧିମାନେ ହିଁ ଦାବି କରିଛନ୍ତି। ମାତ୍ର ତିନୋଟି ଶକ୍ତିର ଅପୂର୍ବ ଉଦ୍ୟମରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ଧାମ ବିଶ୍ୱରେ ପ୍ରସିଦ୍ଧ ହୋଇଛି ।

ଶ୍ରୀଜଗନ୍ନାଥ ମନ୍ଦିର ଇନ୍ଦ୍ରଦ୍ୟୁମ୍ନଙ୍କ ପରିକଳ୍ପନା ହୋଇପାରେ, କିନ୍ତୁ ଏହାସବୁ ସେହି ମହାପ୍ରଭୁଙ୍କ ନିର୍ଦ୍ଦେଶରେ ।



ମହାପ୍ରଭୁ ନିଜେ ଇନ୍ଦ୍ରଦ୍ୟୁମ୍ନ ମାନବ ରାଜାଙ୍କୁ ନିଜର ଭକ୍ତର ସ୍ଥାନ ଦେଇ ମାନବତାର ପରିଚୟ ଦେଇଛନ୍ତି । ଶବର ରାଜା ଜଣେ ମାନବ। ସେ ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାରା ସୃଷ୍ଟି । ଏହିସବୁ ବିଶିଷ୍ଟ ମାନବମାନଙ୍କର ସୃଷ୍ଟି କେବଳ ମହାପ୍ରଭୁଙ୍କ ଇଚ୍ଛା । ଯେପରି ମାନବ ମଧ୍ୟରେ ଆତ୍ମା, ଶରୀର, ମାଂସ ମେଦ ଆଦିଥାଏ, ଠିକ୍ ସେହିଭଳି ମହାପ୍ରଭୁ ମାନବ ଶରୀର ପରିତ୍ୟାଗ କରିଥାଆନ୍ତି ।

ମହା ବ୍ରହ୍ମସ୍ୱରୂପଂ ଚ ଅସ୍ଥିଃ ଦାରବୀତନୁ
ତୈଳାକ୍ତ ବସ୍ତ୍ରଂ ଡୋରଂ ଚ ଝିଲ୍ଲୀ ରୁସଂ ପ୍ରକ୍ଲିପିତେ
ମେଦଂ କର୍ପୂରଂ ଲେପଂ ଚ ଲେହତତ୍ ମାଂସମେବଚ
ରକ୍ତ ବାସ ତଦାରକ୍ତଂ ଶୁକ୍ଳଂ ବସ୍ତ୍ରାତ୍ୟ ଚନ୍ଦନଂ
ଚର୍ମରୂପେ ସମାକ୍ଷାତ, ସପ୍ତାବରଣ ରୁଚତେ ।

ବ୍ରହ୍ମ ହେଉଛି ମଜ୍ଜା, ଦାରୁ ଶରୀର ହେଉଛି ଅସ୍ଥି, କର୍ପୂର ଲେପନ ହେଉଛି ମେଦ, ଚନ୍ଦନ – କର୍ପୂର– କସ୍ତୁରୀ–କୁଙ୍କୁମ ଏକତ୍ର ଲେପନ ହେଉଛି ମାଂସ, ନାଲି ରଙ୍ଗର ଚେହେଲି ବସ୍ତ୍ର ହେଉଛି ରକ୍ତ, ପରସ୍ତ ପରସ୍ତ ଶୁକ୍ଳ ବସନ ଓ ଚନ୍ଦନ ଲେପନ ହେଉଛି ଚର୍ମ ଓ ଝୁଣାଯୁକ୍ତ ରାଶିତେଲ କର୍ପୂର ଲେପନକୁ ଝିଲ୍ଲୀ ମାନ୍ୟରେ ସପ୍ତାବରଣ ସେବା ହୁଏ ।

ଉପରୋକ୍ତ ଉକ୍ତିର ଅର୍ଥ ହେଉଛି, ମହାପ୍ରଭୁ ମାନବ ରୂପରେ ବ୍ରହ୍ମ ସ୍ୱରୂପ ଆତ୍ମା ବହନ କରନ୍ତି। ସେ ମାନବତାରେ ନିଜକୁ ହଜାଇ ଦେବା ପାଇଁ ଓ ମାନବତାର ସୃଷ୍ଟି ପରିପୃଷ୍ଟ କରିବାରେ ନିଜକୁ ୧୨ ବର୍ଷରେ ଥରେ କାୟା ଓ ବ୍ରହ୍ମ ପରିବର୍ତ୍ତନ କରାଇ ମାନବତାର ଉତ୍ସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

୨୦୧୫ ମସିହାରେ ମହାପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର, ମା' ସୁଭଦ୍ରା ଓ ସୁଦର୍ଶନ ବିଗ୍ରହ ଅବସ୍ଥାପିତ ହୋଇ ନବକଳେବର ହୋଇଥିଲେ । ଏହି ଲେଖକ ମହାପ୍ରଭୁଙ୍କ ନବକଳେବର ରଥଯାତ୍ରାରେ ଶ୍ରୀଜଗନ୍ନାଥ ଓ ଅନ୍ୟାନ୍ୟ ବିଗ୍ରହମାନଙ୍କୁ ଦର୍ଶନ କରିଥିଲେ । ୧୨ବର୍ଷ ପରେ ପ୍ରଭୁ ନବକଳେବର ହୋଇ ନବଯୌବନ ଦର୍ଶନ ଦେଲେ । ତାଙ୍କର ପାଦରେ ଯେ ସମସ୍ତ ଭକ୍ତି, ଶକ୍ତି, ମନ, ଧ୍ୟାନ ଓ ପ୍ରକୃତି ସମର୍ପି ଦେଇଛି ସେ ଅପାର କୃପାମୟ ମାନବ ରୂପେ । ସବୁବେଳେ ଏ ମଣିଷ ଜାତି ପାଇଁ ଆର୍ବିଭୂତ । ସେ ନିରାକାର, ଅନେକ ଅନୁଭୂତି ଏ ଲେଖକର ଅଛି ଯାହାକି ଭାଷାରେ ଅବର୍ଣ୍ଣନୀୟ । ଦାରୁ ବିଗ୍ରହ ରୂପେ ମହାପ୍ରଭୁ ଦର୍ଶନ ଦେଉଛନ୍ତି । ଏ ମାନବ ସମାଜକୁ ଚକାଚକା ଆଖିରେ ସମସ୍ତ ନିର୍ଦ୍ଦେଶ ଦେଇଛନ୍ତି। କେବଳ ଆମର ଏକନିଷ୍ଠ ପ୍ରାର୍ଥନା ଓ ସଂପୂର୍ଣ୍ଣ ସମର୍ପଣ ମହାପ୍ରଭୁଙ୍କ ପ୍ରତି ଦରକାର । ତାହାହେଲେ ମହାପ୍ରଭୁ ଶୁଭ ଦୃଷ୍ଟିରେ ଆଶୀର୍ବାଦ କରିବେ । ମନେ ପଡ଼ିଲେ ତାଙ୍କ କଥା ଆଖିରୁ ଲୁହ ଝରିଆସେ । ମହାପ୍ରଭୁ ହେଉଛନ୍ତି ସ୍ୱାଭିମାନ ଓ ନିୟମ କର୍ତ୍ତା । ତାଙ୍କୁ ଯଦି ଆମେ ହୃଦୟର ସହିତ ପ୍ରାର୍ଥନା କରୁ, ସେ ଶୁଭଦୃଷ୍ଟିରେ ଆଶୀର୍ବାଦ କରିବେ । ତାଙ୍କୁ ଆମେ ଯଦି ଆବେଗ ସହିତ ପ୍ରାର୍ଥନା ନ କରୁ ତାହାହେଲେ ତାଙ୍କର ଆଶୀର୍ବାଦ ପାଇବାରୁ ବଞ୍ଚିତ ହେବୁ। କିନ୍ତୁ ମଣିଷଭଳି ମହାପ୍ରଭୁ କ୍ରୋଧ ସମ୍ୱରଣ କରିପାରିବେ ନାହିଁ । ଅନ୍ୟାୟ ଦେଖିଲେ ସେ ମାନବ ରୂପରେ ଆସି ଦୋଷଯୁକ୍ତ ଲୋକମାନଙ୍କୁ ଦଣ୍ଡ ମଧ୍ୟ ପ୍ରଦାନ କରନ୍ତି। ସେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆହ୍ୱାନ ଦିଅନ୍ତି । ତେଣୁ ସେ ସରଳ ଓ ଦୃଢ଼ତାର ସହିତ ଏ ମାନବ ସମାଜକୁ ପରିଚାଳିତ କରନ୍ତି ।

ମହାପ୍ରଭୁ ଯୁଗେ ଯୁଗେ ମାନବର ଅବତାରରେ ପଦାର୍ପଣ କରିଥାନ୍ତି । ଯଥା ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ଅବତାର ଓ ରାମାୟଣ ଯୁଗରେ ଶ୍ରୀରାମଙ୍କ ଅବତାର ଓ କଳିଯୁଗରେ ସେ ବିଭିନ୍ନ ମହାପୁରୁଷଙ୍କର ଶରୀରରେ ମଧ୍ୟ ଅବତୀର୍ଣ୍ଣ ହୋଇଥାନ୍ତି ।

ସି.ବି.–୧୮, କ୍ୟାଣ୍ଟନମେଣ୍ଟ ରୋଡ, କଟକ



# ମାଣତ୍ରୀ କଟକେ ପ୍ରଭୁ ଶ୍ରୀଜଗନ୍ନାଥ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଭଗବାନ ବିଷ୍ଣୁ ଦୁଷ୍ଟ ବିନାଶ ନିମିତ୍ତ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଅବତାର ଗ୍ରହଣ କରି ତାଙ୍କର ଲୀଳା ସଂପାଦନ କରିଥାନ୍ତି । ଭଗବାନ ବିଷ୍ଣୁ ଦଶ ଅବତାର ନେଇ ମର୍ତ୍ତ୍ୟରେ ଲୀଳା କରିଥିଲେ । ମାତ୍ର ଅବତାର ସୃଷ୍ଟିକାରୀ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଅବତାରୀ ହୋଇ ଲୀଳା କରିଛନ୍ତି । ଭଗବାନ ଅବତାରରେ ଦୁଷ୍ଟ ବିନାଶ କରିଥିବା ବେଳେ ଅବତାରୀରେ ଦୁଷ୍ଟର ଭୟରେ ଗୋପନରେ ସ୍ଥାନାନ୍ତର ହୋଇଥିଲେ । ଅବତାରୀ ଶ୍ରୀଜଗନ୍ନାଥ ଗୋପନରେ ସ୍ଥାନାନ୍ତର ହୋଇଥିବା ସ୍ଥାନକୁ ଲୀଳାକ୍ଷେତ୍ର କୁହାଯାଏ । ଏହିପରି ଥରେ ନୁହେଁ କି ଦୁଇଥର ନୁହେଁ, ଦିନ ନୁହେଁ କି ଦୁଇ ଦିନ ନୁହେଁ, ବର୍ଷ ବର୍ଷ ପାଇଁ ମହାପ୍ରଭୁ ସ୍ଥାନାନ୍ତର ହୋଇ ରହିଥିଲେ । କାରଣ ଅବତାରୀ ଶ୍ରୀଜଗନ୍ନାଥ ହେଉଛନ୍ତି ରହସ୍ୟମୟ ଓ ବିଚିତ୍ରମୟ ଠାକୁର । ତାଙ୍କର ଏହି ଲୀଳା ପଛରେ କ'ଣ ବିଚିତ୍ର ଓ କ'ଣ ରହସ୍ୟ ଥିଲା, ତାହା ତାଙ୍କୁ ହିଁ ଗୋଚର । ତାଙ୍କର ଏହି ଗୁପ୍ତ ଲୀଳା ମଧ୍ୟରୁ ଗଡ ମାଣତ୍ରୀରେ ମଧ୍ୟ ଲୀଳା ହୋଇଥିଲା । ମହାପ୍ରଭୁ ଏଠାରେ ଗୋପନରେ ଲୀଳା କରିଥିବାରୁ ଏହା ଏକ ମୁଖ୍ୟ ଲୀଳାକ୍ଷେତ୍ର ଅଟେ ।

ଖୋର୍ଦ୍ଧା ସହରଠାରୁ ପ୍ରାୟ ୧୬ ମାଇଲ ଦକ୍ଷିଣ ପଶ୍ଚିମ ଦିଗରେ ମାଣତୀର ମାଣିତ୍ରୀଗଡ ଅବସ୍ଥିତ । ଖୋର୍ଦ୍ଧା ଇତିହାସରେ ମାଣତ୍ରୀଗଡର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି, ଯେହେତୁ କେବଳ ଖୋର୍ଦ୍ଧା ରାଜବଂଶର ନୁହେଁ, ହିନ୍ଦୁ ଜଗତରେ ପରମ ଆରାଧ୍ୟ ଓଡିଶାର ଗଣ ଦେବତା ସ୍ୱୟଂ ପ୍ରଭୁ ଜଗନ୍ନାଥଙ୍କର ନିରାପତ୍ତା ଦୃଷ୍ଟିରୁ ମଧ୍ୟ ଏକ ଆପତ୍କାଳୀନ ନିରାପଦ ଆଶ୍ରୟସ୍ଥଳର ଭୂମିକା ଗ୍ରହଣ କରିବାରେ ଏହି ଗଡ ସହାୟକ ହୋଇଛି । ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କ ଦ୍ୱାରା ସ୍ଥାପିତ ଖୋର୍ଦ୍ଧା ରାଜ୍ୟର ମୂଳ ୭୧ଟି ଗଡ ମଧ୍ୟରେ ମାଣତ୍ରୀଗଡର ସ୍ଥାନ ନଥିଲେ ହେଁ, ବର୍ତ୍ତମାନ ଖୋର୍ଦ୍ଧା ଜିଲ୍ଲାର ବେଗୁନିଆ ତହସିଲ ଅନ୍ତର୍ଗତ ଗଡମାଣତ୍ରୀ ଗ୍ରାମ ଥିଲା ଗଜପତି ମହାରାଜାମାନଙ୍କ ଶାସନ କାଳରେ ଏକ ଐତିହ୍ୟପୂର୍ଣ୍ଣ ଗଡ । ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୁରୁଧା ସିଂହାସନ ଖ୍ରୀ୧୬୦୭ରେ ଆରୋହଣ କରିଥିଲେ । ଭୋଇ ରାଜବଂଶର ୨ୟ ରାଜା ଗଜପତି ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ୧୬୧୭ ଖ୍ରୀ.ରେ ମାଣତ୍ରୀଗଡ ତାଙ୍କ ପରିବାର ପାଇଁ ଏକ ଆପତ୍କାଳୀନ ରହଣି ସ୍ଥାନ ରୂପେ ନିର୍ମିତ ହେଉଥିଲା । ମକରମ ଖାଁ ପରାଭୂତ ହେବାଯାଏ ସେ ଏହିଠାରେ ଏକ ବର୍ଷ କାଳ ସପରିବାର ଅବସ୍ଥାନ କରିଥିଲେ । ଗଜପତି ପୁରୁଷୋତ୍ତମ ଦେବ ବହୁବାର ଏହି ଗଡରେ ରହି ଶାସନ ପରିଚାଳନା କରୁଥିବା ଏବଂ ମୋଗଲମାନଙ୍କ ଆକ୍ରମଣକୁ ପ୍ରତିହିତ କରିବା ପାଇଁ ମନ୍ତ୍ରଣା କରୁଥିବାର ଇତିହାସରୁ ଉପଲବ୍ଧ ହୁଏ । ଏପରିକି ଏହି ଗଡରେ ରହିଥିବାବେଳେ ଗଡଜାତ ରାଜାମାନଙ୍କ ସମେତ ରାଜମହେନ୍ଦ୍ରୀର ରାଜାଙ୍କୁ ନେଇ ମଧ୍ୟ ମେଳି ବାନ୍ଧିବାରେ ସଫଳ ହୋଇଥିଲେ । ପୁନଶ୍ଚ ୧୬୨୨ ଖ୍ରୀ.ରେ ମୀର୍ଜା ଅହମ୍ମଦ ବେଗ୍ କଟକର ସୁବାଦାର ହୋଇ ଆସିବା ପରେ ପରେ ଖୋର୍ଦ୍ଧା ଆକ୍ରମଣ କରିବାରୁ ପୁରୁଷୋତ୍ତମ ଦେବ ପୂର୍ବପରି ସପରିବାର ଯାଇ ମାଣତ୍ରୀ ଗଡରେ ଆଶ୍ରୟ ନେଇଥିଲେ ଏବଂ ସେ ସେହିଠାରେ ହିଁ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପୁରୁଷୋତ୍ତମ ଦେବଙ୍କ ରାଜଗୁରୁ ବଳଭଦ୍ର ମହାପାତ୍ର ରାଜାଙ୍କ ସାକ୍ଷାତ ପାଇଁ ଘୋଡାରେ ଚଢି ମାଣତ୍ରୀ ଗଡକୁ ଯାଇଥିବା ବାଟରେ ମୋଗଲ ଆତତାୟୀଙ୍କ ଦ୍ୱାରା ନିହତ ହୋଇଥିଲେ । ପୁରୁଷୋତ୍ତମ ଦେବଙ୍କ





ଅନ୍ତେ ତାଙ୍କ ପୁଅ ଗଜପତି ନରସିଂହ ଦେବ (୧୬୨୨-୧୬୪୭) ଖୋର୍ଦ୍ଧାର ରାଜା ହେଲେ । ଗଜପତି ନରସିଂହ ଦେବ ରାଜ୍ୟାଭିଷେକ ହୋଇ ବିଧର୍ମୀଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଏହି ଗଡକୁ ମୁଖ୍ୟ କେନ୍ଦ୍ର ଭାବରେ ଗ୍ରହଣ କରିଥିଲେ ଓ ସପରିବାର ଏହି ଗଡରେ ମଧ୍ୟ ରହୁଥିଲେ । ଏହି ସମୟରେ ଅହମ୍ମଦ ବେଗ୍ ନରସିଂହ ଦେବଙ୍କ ନିକଟକୁ ଏକ ଆଦେଶନାମା ଲେଖି ଜଣାଇଲେ ଯେ, ଯେହେତୁ ଖୋର୍ଦ୍ଧା ମୋଗଲ ସାମ୍ରାଜ୍ୟ ଅଧୀନସ୍ଥ ଏକ ବିରଳ ରାଜ୍ୟ, ତେଣୁ ସେ (ନରସିଂହ ଦେବ) ମୋଗଲ ସୁବାଦାରଙ୍କ ବଶ୍ୟତା ସ୍ୱୀକାର ପୂର୍ବକ ନିଜ ପରିବାର ବର୍ଗଙ୍କୁ ଖୋର୍ଦ୍ଧା ପରିବର୍ତ୍ତେ କଟକରେ ଆଣି ରଖନ୍ତୁ । ନରସିଂହ ଦେବ ଅତ୍ୟନ୍ତ ସାହସୀ ବୀର ଥିଲେ । ଅହମ୍ମଦ ବେଗଙ୍କର ଏପରି ହୀନ ପ୍ରସ୍ତାବକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସେ ନିଜ ପରିବାରବର୍ଗଙ୍କ ସହ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମତ୍ରୟଙ୍କୁ ଅଗମ୍ୟ ଅରଣ୍ୟବେଷ୍ଟିତ ମାଣତ୍ରୀ ଦୁର୍ଗକୁ ପଠାଇ ଦେଇ ବୀର ଦର୍ପରେ ଅହମ୍ମଦ ବେଗ ଆକ୍ରମଣର ସମ୍ମୁଖୀନ ହେଲେ । ଅହମ୍ମଦ ବେଗ ପରାଜିତ ହୋଇ ପଳାଇଥିଲେ ।

ଭୋଇ ରାଜବଂଶର ୯ମ ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ (୧୬୨୭-୩୬)ଙ୍କର କଳାବତୀ ଓ ଲଳିତା ନାମରେ ଦୁଇ ରାଣୀ ଥିଲେ । ପରେ ପୁଣି ରାମଚନ୍ଦ୍ର ଦେବ ଅବସ୍ଥାଚକ୍ରରେ ପଡି ମୁର୍ସିଦ୍ କୁଲିଖାଁଙ୍କ କନ୍ୟା ସୌରିୟାଙ୍କ ପାଣି ଗ୍ରହଣ କରିଥିଲେ ଏବଂ ସେହି କାରଣରୁ ସେ ମୌଳିକ ଧର୍ମବାଦୀମାନଙ୍କ ଦ୍ୱାରା ସମାଲୋଚିତ ଓ ପରିତ୍ୟକ୍ତ ହେବା ଫଳରେ ନିଜର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନ ପାରି ଶ୍ରୀମନ୍ଦିର ସିଂହଦ୍ୱାର ପ୍ରବେଶ ପଥର ଉତ୍ତର ପାର୍ଶ୍ୱରେ ପତିତପାବନ ମୂର୍ତ୍ତି ଅଙ୍କିତ କରାଇ ନିଜର ଜଗନ୍ନାଥ ଦର୍ଶନର ତୃଷା ମେଣ୍ଟାଇ ଥିଲେ । ତାଙ୍କର ପାଟରାଣୀ କଳାବତୀ (ଚିତ୍ରକଳା) ସେହି ସମୟରେ ନିଜର ସ୍ୱାମୀ ଏବଂ ଯବନୀ ସପତ୍ନୀଙ୍କଠାରୁ ବିଚ୍ଛିନ୍ନ ହୋଇ ତିନି ପୁତ୍ରଙ୍କ ସହ ଖୋର୍ଦ୍ଧାଗଡ ଛାଡି ଯାଇ ମାଣତ୍ରୀ ଗଡରେ ଶେଷ ଜୀବନ ବିତାଇଥିଲେ । ସୁତରାଂ ମାଣତ୍ରୀଗଡ ପ୍ରାୟ ଦେଢଶହ ବର୍ଷ ଧରି ରାଜବଂଶ ଦ୍ୱାରା ବିଭିନ୍ନ ସମୟରେ ଖୋର୍ଦ୍ଧାଗଡ ରାଜବାଟୀର ଏକ ବିକଳ୍ପ ରାଜବାଟୀ ଭାବେ ପ୍ରତିଷ୍ଠିତ ଥିଲା ।

ଜାହାଙ୍ଗୀରଙ୍କ ଆତ୍ମଜୀବନୀରୁ ଜଣାଯାଏ ଯେ, ୧୬୨୨ ଖ୍ରୀଷ୍ଟାବ୍ଦରେ ମୀର୍ଜା ଅହମ୍ମଦ ବେଗ୍ ଆକ୍ରମଣ କରିଥିଲେ । ଆକ୍ରମଣ ସମ୍ବାଦ ପାଇ ସେବକମାନେ ମହାପ୍ରଭୁଙ୍କୁ ବାଣପୁରର ମାଳ ଅଞ୍ଚଳର ଶେଷ ସୀମା ଘୋର ଜଙ୍ଗଲମୟ ପରିବେଶ ଅନ୍ଧାରୀ ମହିମ ନାମକ ଏକ ଗୁପ୍ତ ଗଡକୁ ନେଇଯାଇଥିଲେ । ସେତିକିବେଳେ ବୈଷ୍ଣବ ଦୀକ୍ଷାରେ ଦୀକ୍ଷିତ ହୋଇଥିବା କବି ଭକ୍ତ ସାଲବେଗଙ୍କ ହୃଦୟ କାନ୍ଦି ଉଠିଥିଲା । ଅହମ୍ମଦ ବେଗ ବାଣପୁର ସୀମା ପର୍ଯ୍ୟନ୍ତ ଆକ୍ରମଣ କରି ଅଧିକାର କରିଥିଲା । ବାଣପୁର ସୀମାରେ ଥିବା ଅନ୍ଧାରୀ ମହିମଠାରେ ସେତେବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସେବକମାନେ ଲୋକଲୋଚନର ଆଢୁଆଳରେ ସେବା ପୂଜା କରୁଥିଲେ । ବାଣପୁର ଅଧିକାର ସମ୍ବାଦ ପାଇବା ପରେ ଦଇତାପତିମାନେ ମହାପ୍ରଭୁଙ୍କ ବିଗ୍ରହ ସେଠାରୁ ଆଣିବାକୁ ଉଚିତ୍ ନ ଭାବି ସମୟର ସ୍ୱଳ୍ପତା ଦୃଷ୍ଟିରୁ ମହାପ୍ରଭୁମାନଙ୍କର ବ୍ରହ୍ମକୁ ଲୁଗାରେ ଗୁଡାଇ ମାଣତ୍ରୀଗଡକୁ ନେଇ ଆସିବା କଥା ମାଦଳାପାଞ୍ଜିରୁ ଜଣାଯାଏ । ଶାହାଜାହାନ ଓଡିଶା ବାଟ ଦେଇ ଅଯୋଧ୍ୟା ବିଜୟ କରିବାକୁ ଯିବାବେଳେ ମୀର୍ଜା ଅହମ୍ମଦ ବେଗ ଭୟଭୀତ ହୋଇ ବଙ୍ଗଳା ପ୍ରଦେଶକୁ ଚାଲି ଯାଇଥିଲେ । ତେଣୁ ଗଜପତି ଓ ସେବକମାନେ ରାତାରାତି ବ୍ରହ୍ମଙ୍କୁ ପୁରୁଷୋତ୍ତମ କ୍ଷେତ୍ରକୁ ଆଣି ସଙ୍ଖୁଡି ଭୋଗ କରିଥିବା କଥା ମାଦଳାପାଞ୍ଜିରୁ ଜଣାଯାଏ । ସେହି ସମୟରେ ମହାପ୍ରଭୁଙ୍କୁ ଶୀତଳମଣୋହି ହେଉଥିଲା ।

ଏହି ଗଡଟି ମାଣତ୍ରୀ, କପିଳେଶ୍ୱର ତଳଗଡ, ରାମଚନ୍ଦ୍ରପୁର ଓ ବାଲିବେରେଣୀକୁ ନେଇ ସମୃଦ୍ଧ । ସେତେବେଳେ ଏହି ଗଡରେ ୨୨ଟି ପୋଖରୀ ଓ ୨୩ଟି ଦଣ୍ଡା ରହିଥିବାର ଜଣାଯାଏ । ବର୍ତ୍ତମାନ ୧୧ଟି ପୋଖରୀ ଅଛି । ତନ୍ମଧ୍ୟରେ ଗଜପତିଙ୍କ ବ୍ୟବହୃତ 'ବଡ ପୋଖରୀ' ପୁଷ୍କରିଣୀଟି ଶ୍ରୀ କପିଳେଶ୍ୱର ଶିବ ମନ୍ଦିର ସାମ୍ନାକୁ ରହିଅଛି । ପରିବାରର ଅନ୍ୟମାନଙ୍କ ବ୍ୟବହୃତ 'ଲକ୍ଷ୍ମୀ ପୋଖରୀ' ଅପାଂକ୍ତେୟ ହୋଇ ପଡିରହିଛି । ତଳଗଡରେ ଗଜପତିଙ୍କର ଥିଲା କଚେରି ଗୃହ, ଫାଣ୍ଡି ଓ ଫାଣ୍ଡି କୂଅ । ଫାଣ୍ଡି କୂଅଟିର ଅବସ୍ଥିତି ଥିବାବେଳେ କଚେରି ଓ ଫାଣ୍ଡିର ଭଗ୍ନାବଶେଷ ରହିଅଛି । ଫାଣ୍ଡି କୂଅର ପୂର୍ବ ଦିଗକୁ ରହିଛି ବଡଦାଣ୍ଡ ।



ମହାପ୍ରଭୁଙ୍କ ବ୍ରହ୍ମ ସେତେବେଳେ ଫାଣ୍ଡି କୂଅର ପଶ୍ଚିମକୁ ଏକ ଚାଳ ଘର ଥିଲେ । ଏହି ଘରର ମୁଖଶାଳା ଓ ଜଗମୋହନ ଚାଳ ଛପର ଆଟୁ ଘର । ସେହିଠାରେ ବର୍ତ୍ତମାନ ତ୍ରିବିଗ୍ରହ ସ୍ମାରକୀ ରୂପେ ତିନି ବିଗ୍ରହ ପୂଜା ପାଉଛନ୍ତି । ଶ୍ରୀସୁଦର୍ଶନ ନାହାନ୍ତି । ଛଅ ଫୁଟ ଲମ୍ବାର ପ୍ରସ୍ତର ସିଂହାସନ ଚାରିକାନ୍ଥକୁ ୨ଫୁଟ ଛାଡି ରହିଅଛି । ଏହି ଜଗନ୍ନାଥ ମନ୍ଦିର ତୃତୀୟା ଦେବ ମନ୍ଦିର ଭାବରେ ବର୍ତ୍ତମାନ ପରିଚିତ ।

ରଥ ଓ ମହାପାତ୍ର ସାଂଗିଆଧାରୀ ୬ ଜଣ ସେବକ ଏଠାରେ ସେବା କରୁଛନ୍ତି । ତିନିବାଟି ଦଶମାଣ ଜମି ସେବାପୂଜା ନିମିତ୍ତ ଗଜପତି ମହାରାଜା ଖଞ୍ଜିଥିଲେ । ପ୍ରାଚୀନ କାଗଜାତ୍ ଦେଖିବା ପରେ ଜଣାଗଲା ଯେ ଜମିଗୁଡିକ ତୃତୀୟା ଦେବ ଓ ଶ୍ରୀଜଗନ୍ନାଥ ଦେବ ଉଭୟଙ୍କ ନାମରେ ରହିଅଛି । ଫାଣ୍ଡି କୂଅର ପୂର୍ବଦିଗକୁ ଥିବା ବଡଦାଣ୍ଡର ଅପର ପାର୍ଶ୍ୱରେ ଗୁଣ୍ଡିଚା ଘରର ଭଗ୍ନାବଶେଷ ରହିଅଛି । ଗୁଣ୍ଡିଚା ଘରର ଭଗ୍ନ ପ୍ରାଚୀର ଓ କେତେକ ପଥର ଖୁଣ୍ଟି ମଧ୍ୟ ଏବେ ରହିଛି । ଗୁଣ୍ଡିଚା ଘରଟି ୬ବଖରା ବିଶିଷ୍ଟ ଥିବାର ଜଣାଯାଉଛି । ଏଠାରେ ଥିବା କପିଳେଶ୍ୱର ଶିବ ମନ୍ଦିରଟି ଅତ୍ୟନ୍ତ ପ୍ରାଚୀନ ସମୟର ବୋଲି ଜଣାଯାଏ । କଥିତ ଅଛି ପୂର୍ବେ ଏହି ସ୍ଥାନ ମାଉସୀ ମା' ମନ୍ଦିର ନାମରେ ପରିଚିତ ଥିଲା । ଏଠାରେ ହରିହର ଭେଟ ପରମ୍ପରା ମଧ୍ୟ ରହିଛି ।

ମାଣତ୍ରୀ, ଯାହାକି ଉପରଗଡ ଭାବରେ ପରିଚିତ । ଏଠାରେ ଦଳବେହେରାଙ୍କ ଘର ରହିଅଛି । ମାଣତ୍ରୀଗଡର ଦଳବେହେରା ବଂଶର ଇତିହାସ ଯେଭଳି କୌତୁହଳପ୍ରଦ ସେହିଭଳି ତାତ୍ପର୍ଯ୍ୟପୂର୍ଣ୍ଣ । ଅଦ୍ୟାବଧି ଗହୀରରେ ଥିବା ଏକ ବନ୍ଧକୁ ପଠାଣ ବନ୍ଧ ଏବଂ ଦଳବେହେରା ବ୍ୟବହାର କରୁଥିବା କୂଅକୁ ପଠାଣ କୂଅ କୁହାଯାଉଛି । ସୂର୍ଯ୍ୟବଂଶ ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ସମୟରେ ଗଡମାଣିତ୍ରୀର ପାଇକମାନେ ଯୋଗ ଦେଇଥିଲେ ଏବଂ କାଞ୍ଚି ଅଭିଯାନରୁ କେତେକ ମୂର୍ତ୍ତି ଏହି ପାଇକବାହିନୀ ଆଣିଥିଲେ । ସେହି ମୂର୍ତ୍ତିଗୁଡିକ ଏବେବି ଏଠାରେ ଉପାସିତ ହେଉଛନ୍ତି । ଏହି ପାଇକବାହିନୀର ମୁଖ୍ୟ ଥିଲେ ଦଳବେହେରା । ବର୍ତ୍ତମାନ ଦଳବେହେରା ଶ୍ରୀ ଭରତ ଚନ୍ଦ୍ର ମାନ୍ଧାତାଙ୍କ ଗୃହରେ ପାରମ୍ପରିକ ଖଣ୍ଡା ରହିଅଛି । ଏହି ଖଣ୍ଡା ବର୍ଷକୁ ଥରେ ମହାସପ୍ତମୀ ବେଳେ ତିନି ଦିନ ପାଇଁ ଗଡଚଣ୍ଡୀଙ୍କ ପାଖକୁ ଯାଏ । ଏହି ଗଡର ଆରାଧ୍ୟ ଗଡଚଣ୍ଡୀ ମାଣତ୍ରୀଠାରେ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜା ପାଉଥିବା ବେଳେ ଅନତି ଦୂରରେ ଏକ ମୁଣ୍ଡିଆ ଉପରେ ଜାନି ଶବରମାନଙ୍କ ଦ୍ୱାରା ପୂଜା ପାଉଛନ୍ତି ରାମଚଣ୍ଡୀ । ଶବର ଓ ବନବାସୀମାନଙ୍କୁ ସଂଘବଦ୍ଧ କରିବା ପାଇଁ ଗଜପତି ଏହି ପ୍ରକାର ବ୍ୟବସ୍ଥା ପ୍ରଚଳନ କରିଥିବାର ଜଣାଯାଏ । ଯଦିଓ କାଳ ପ୍ରବାହରେ ଜାନି ଶବରଙ୍କ ଦ୍ୱାରା ପୂଜିତ ଦେବୀ 'ରାମଚଣ୍ଡୀ' ନାମରେ ବିଦିତ ହୋଇଛନ୍ତି, ତଥାପି ଗଡ ସହିତ ଥିବା ପ୍ରାଚୀନ ଉପାସନା ପରମ୍ପରା ଏବେ ଅବ୍ୟାହତ ଅଛି । କାରଣ ଦଳବେହେରାଙ୍କ ଘରୁ ତିନି ଦିନ ପାଇଁ ଖଣ୍ଡା ଯାଇ ପୂଜାରେ ବସୁଛି ଏବଂ ଦଶହରା ଦିନ ପୁନଃ ଘରକୁ ଫେରିଆସି ଖଣ୍ଡା ଘରେ ରହୁଅଛି । ଖଣ୍ଡାଘରଟି ଭଗ୍ନ ହୋଇଥିବାରୁ ଏବେ ଏକ ନୂତନ ଖଣ୍ଡା ଘର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଛି । ଦଳବେହେରାଙ୍କ ଘରକୁ ଲାଗି ରହିଛି କୋଠ କରଣଙ୍କର ପ୍ରାଚୀନ ଘର । ଏହିଠାରେ ଗଜପତି ସପରିବାରେ ରହୁଥିଲେ । ଗଜପତିଙ୍କ ରହଣିସ୍ଥଳ 'ଖୁଆଡ' ଢଙ୍ଗରେ ରହିଛି । ଚାରିପଟରେ ଦଳବେହେରା, ଝପଡସିଂହ, ଛୁଆଳସିଂହ, ପଶ୍ଚିମ କବାଟ, ଦକ୍ଷିଣ କବାଟ, ଯୁଝାରସିଂହମାନଙ୍କ ଖୁଆଡ ସଦୃଶ ଘର ରହିଛି । ଗଜପତିଙ୍କ ରହଣିସ୍ଥଳର ପଶ୍ଚିମ ଦିଗକୁ ପୂର୍ବକୁ ମୁଖ କରି ରହିଛି ଶ୍ରୀଗୋବିନ୍ଦ ଜୀଉ ମନ୍ଦିର । ଏଠାରେ ଶ୍ରୀକୃଷ୍ଣ ଓ ରାଧାଙ୍କ ଦକ୍ଷିଣ ପାର୍ଶ୍ୱରେ ରହିଛନ୍ତି ପତିତପାବନ । ଏହି ମନ୍ଦିରର ନିର୍ମାଣ ଶୈଳୀ ଓ ମୁଖ୍ୟ କବାଟ ବନ୍ଧର କାରୁକାର୍ଯ୍ୟ ଦେଖିଲେ ଜଣାଯାଏ ଯେ, ଏହା ଗଜପତିଙ୍କ ରହଣି ସମୟ ଅର୍ଥାତ୍ ଚାରିଶହ ବର୍ଷ ତଳେ ନିର୍ମିତ ହୋଇଥାଇପାରେ । ଶ୍ରୀଗୋବିନ୍ଦ ଜୀଉ ମନ୍ଦିର ବର୍ତ୍ତମାନ ମଧ୍ୟ ଦଳବେହେରାଙ୍କ ମାର୍ଫତ୍‌ରେ ରହିଅଛି ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ, କାଇପଦର, ଖୋର୍ଦ୍ଧା



# ବିଦେଶରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଓ ନବକଳେବର

**ଡକ୍ଟର ଅନନ୍ତ ରାମ କର କୌଣ୍ଡିନ୍ୟ**

ଶ୍ରୀଜଗନ୍ନାଥ ଚେତନା ଏକ ନିର୍ଦ୍ଦିଷ୍ଟ ଧର୍ମ ନ ହୋଇ ମଧ୍ୟ ଓଡ଼ିଶା ବାହାରେ, ଭାରତ ବାହାରେ ତଥା ଦରିଆ ସେପାରିରେ ଜଗତରେ ପ୍ରସାର ଲାଭ କରିଛି । ଭାରତର ବିଭିନ୍ନ ସ୍ଥାନରେ ଥିବା ଆଞ୍ଚଳିକ ଦେବତା ଆଞ୍ଚଳିକ ସଂସ୍କୃତି ମଧ୍ୟରେ ଜଗନ୍ନାଥ ହିଁ ସର୍ବାଧିକ ପ୍ରସାରବନ୍ତ ହୋଇପାରିଛନ୍ତି । ଜଗନ୍ନାଥ ନାମ ସାର୍ଥକ ହୋଇଛି ଜଗତ ନାଥ ରୂପେ । ଜଗତକୁ ପ୍ରଭାବିତ କରିଛି ଜଗତ ନାଥଙ୍କ ମହିମା ।

ଶ୍ରୀକ୍ଷେତ୍ରରୁ ଏହି ମହାଚେତନା ପ୍ରଥମେ କଳିଙ୍ଗ ସୌଦାଗରମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ପହଞ୍ଚାଇ ଥିଲେ । ଦରିଆ ସେପାରିର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବ୍ରହ୍ମଦେଶ ପ୍ରଭୃତି ଅଞ୍ଚଳରେ ପହଞ୍ଚି ଥିଲା । ପରେ ପରେ ଭାରତ ସଂଲଗ୍ନ ମଣିପୁର, ନେପାଳ, ବଙ୍ଗଳାଦେଶ ପ୍ରଭୃତି ସ୍ଥାନରେ ଜଗନ୍ନାଥଙ୍କ ମନ୍ଦିରମାନ ପ୍ରତିଷ୍ଠା ଲାଭ ହୋଇଥିଲା ।

ଭାରତ ବାହାରେ ସର୍ବପ୍ରଥମେ ନେପାଳରେ ଶ୍ରୀଜଗନ୍ନାଥଙ୍କ ମହିମା ପ୍ରତିଷ୍ଠା ଲାଭ କରିଥିଲା । ଶ୍ରୀକ୍ଷେତ୍ର ସହିତ ନେପାଳର ରାଜା ଓ ପ୍ରଜାଙ୍କ ସମ୍ପର୍କ ବିଗତ ସପ୍ତମ ଅଷ୍ଟମ ଶତାବ୍ଦୀରୁ । ଶ୍ରୀମନ୍ଦିରରେ ସଂରକ୍ଷିତ 'ମୁଦଲସିଦ୍ଧି' ନାମକ ଗ୍ରନ୍ଥରେ ଏ ସଂପର୍କରେ ସବିଶେଷ ତଥ୍ୟ ରହିଛି । ଓଡ଼ିଶାର ଗଜପତି ତଥା ବହୁ ରାଜବଂଶ ସହ ନେପାଳ ରାଜବଂଶର ବୈବାହିକ ସଂପର୍କ ରହିଛି । ନେପାଳରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା ପ୍ରଚଳିତ । ନେପାଳରୁ ବିଷ୍ଣୁଶୀଳା ଶ୍ରୀକ୍ଷେତ୍ରକୁ ଅଣାଯାଇଥିଲା । ଆଜି ସୁଦ୍ଧା ନେପାଳରୁ କସ୍ତୁରୀ ଆସୁଛି ଶ୍ରୀଜୀଉଙ୍କ ନିମନ୍ତେ ।

କଳିଙ୍ଗର ବଣିକମାନେ ଯେତେବେଳେ ନୌବାଣିଜ୍ୟ କରୁଥିଲେ, ସେକାଳରେ ବେପାର ବଣିଜ ସହ ଶ୍ରୀଜଗନ୍ନାଥ ମହିମାକୁ ମଧ୍ୟ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରଚାର କରିଥିଲେ ।

ଏହିସବୁ ଦ୍ୱୀପପୁଞ୍ଜରେ ଭାରତୀୟ ହିନ୍ଦୁ ସଂସ୍କୃତି ସମେତ ଉତ୍କଳୀୟ ଜଗନ୍ନାଥ ସଂସ୍କୃତି ମଧ୍ୟ ଆଜି ସୁଦ୍ଧା ବିଦ୍ୟମାନ । ବାଲି ଦ୍ୱୀପରେ ବୌଦ୍ଧ ଇନ୍ଦ୍ରଭୂତି ଜଗନ୍ନାଥ, ଆଦି ବୁଦ୍ଧଙ୍କୁ ପୂଜା କରିଥିଲେ । ଓଡ଼ିଶାରେ ଜଗନ୍ନାଥ ଓ ପୁରୁଷୋତ୍ତମଙ୍କ ମଧ୍ୟରେ ଯେପରି ସମନ୍ୱୟ ସ୍ଥାପିତ ହୋଇଥିଲା ବାଲିଦ୍ୱୀପରେ ସେହିପରି ଶିବ ଓ ଜଗନ୍ନାଥଙ୍କ ସମୀକରଣ ହୋଇଥିଲା । ସେଠାରେ ଶିବଙ୍କୁ ଜଗନ୍ନାଥ ବୋଲି ସ୍ତୁତି କରାଯାଏ ।

ଏ ତ ଥିଲା ଅତୀତର ପ୍ରସଙ୍ଗ । ସାଂପ୍ରତିକ କାଳରେ ଆନ୍ତର୍ଜାତିକ କୃଷ୍ଣ ଚେତନା ସଂଘ (ଇସ୍କନ) ଶ୍ରୀଜଗନ୍ନାଥଙ୍କ ଚେତନାକୁ ବିଶ୍ୱର କୋଣେ ଅନୁକୋଣେ ପହଞ୍ଚାଇ ସାରିଛନ୍ତି । ଅତୀତରେ ଗୋରା ଶାସକମାନେ ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥଙ୍କୁ କୁତ୍ସିତ କଦାକାର ଦେବତା ଜଗର୍ନ୍ନଟ ବୋଲି ଆକ୍ଷେପ କରିଥିଲେ । ଆଜି ସେମାନଙ୍କ ଶ୍ୱେତାଙ୍ଗ ବଂଶଧରମାନେ ଲଣ୍ଡିତ ମସ୍ତକ ହୋଇ ଶରଧାବାଲିରେ ଗଡ଼ିଥାନ୍ତି । ଇସ୍କନ ସଂସ୍ଥା ୧୯୬୭ମସିହାରେ ପ୍ରଥମେ ଆମେରିକାର ସାନ୍‌ଫ୍ରାନ୍ସିସ୍‌କୋଠାରେ ଶ୍ରୀବିଗ୍ରହ ପ୍ରତିଷ୍ଠା କରି ରଥଯାତ୍ରା ଅନୁଷ୍ଠିତ କରାଇଥିଲେ । ଏହାପରେ ୧୯୭୧ରେ ଲସ୍‌ଏଞ୍ଜୋଲସ୍‌ରେ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ୧୯୭୬ବେଳେ ନ୍ୟୁୟର୍କ, କାନଡ଼ାର ଟରେଣ୍ଟ ମଣ୍ଟ୍ରିଲ୍, ଫ୍ରାନ୍ସର ପ୍ୟାରିସ, ଅଷ୍ଟ୍ରେଲିଆର ମେଲ୍‌ବର୍ଣ୍ଣ, ବ୍ରିସବେନ୍ ସମେତ ପୃଥିବୀର ପ୍ରମୁଖ ୧୦ଗୋଟି



ମହାନଗରରେ ଅନୁଷ୍ଠିତ ହୋଇଥିଲା । ୧୯୮୯ବେଳେ ଦକ୍ଷିଣ ଆଫ୍ରିକାର ଡର୍ବାନ୍, ନାଇରୋବି ମମ୍ବାସାଠାରେ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ୨୦୦୩ ମସିହାରେ ନ୍ୟୁଜିଲ୍ୟାଣ୍ଡର ଅକ୍‌ଲାଣ୍ଡଠାରେ ଏବଂ ମେକ୍ସିକୋ, ବ୍ରାଜିଲ ଏବଂ ଋଷିଆର ମସ୍କୋଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା ।

ମାଲେସିଆର କ୍ୱାଲାଲାମ୍ପୁରଠାରେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି କୃଷ୍ଣଚେତନା ସଂଘ ରଥଯାତ୍ରା ଅନୁଷ୍ଠିତ କରାଉଛନ୍ତି । ଏପରିକି ବଙ୍ଗଳା ଦେଶରେ ମଧ୍ୟ କେଉଁ ପ୍ରାଚୀନ କାଳରୁ ରଥଯାତ୍ରା ଓ ଜଗନ୍ନାଥଙ୍କ ମହିମା ପ୍ରତିଷ୍ଠିତ। ଏତଦ୍‌ବ୍ୟତୀତ ବିଦେଶର ଜୁରିଚ, ସ୍ୱିଜରଲ୍ୟାଣ୍ଡ, ସ୍ପେନ୍, ମାଦ୍ରିଦ୍, ବାର୍ସିଲୋନା, ମାଲାଗା, ମିଲାନ୍‌ଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଛି । ଋଷର ମୁସଲମାନ ବହୁଳ ରାଷ୍ଟ୍ର କାଜକାସ୍ଥାନ, ବୁଦାପେଷ୍ଟ, ହଙ୍ଗେରି, ସୋଫିଆ, ବୁଲଗେରିଆ, ରିଗା, ଲାଟାଭିଆ, ଲୁଥାନିଆ, ମସ୍କୋ, ସେଣ୍ଟପିଟର୍ସବର୍ଗ, ରୋଷ୍ଟାଉ, ସୋଚି ଆଦି ଦେଶରେ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା ଅନୁଷ୍ଠିତ ହେଉଅଛି ।

ଆନ୍ତର୍ଜାତିକ କୃଷ୍ଣଚେତନା ସଂଘ ପକ୍ଷରୁ ଆନ୍ତର୍ଜାତିକ ରଥଯାତ୍ରା ସଂଘ ନାମରେ ଅନୁଷ୍ଠାନ ଗଢ଼ାଯାଇ ଲଣ୍ଡନ, ଜର୍ମାନ୍, ଜାପାନ୍, ୱାସିଂଟନ୍, ଆଟଲାଣ୍ଟା, ବାଲ୍ଟିମୋର, ବୋଷ୍ଟନ୍ ବାର୍ମିଂହାମ୍, ମାଞ୍ଚେଷ୍ଟର, ସ୍କାଣ୍ଡିନେଭିଆ ଆଦି ନଗରରେ ରଥଯାତ୍ରା ଅନୁଷ୍ଠିତ ହେଉଛି ।

ସାଂପ୍ରତିକ ମିୟାମାର ଦେଶ ଅତୀତରେ ବ୍ରହ୍ମଦେଶ ନାମରେ ପରିଚିତ ଥିଲା । ବହୁ ପ୍ରାଚୀନ କାଳରୁ କଳିଙ୍ଗ, ଉତ୍କଳ ସହ ବ୍ରହ୍ମଦେଶର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ସୁଦୃଢ଼ ଥିଲା । ବ୍ରହ୍ମଦେଶର ପ୍ରୋମ୍ ଅଞ୍ଚଳକୁ ଅତୀତରେ ଶ୍ରୀକ୍ଷେତ୍ର କୁହାଯାଉଥିଲା ।

ବ୍ରହ୍ମଦେଶର ଅଧିବାସୀମାନେ ବୌଦ୍ଧଧର୍ମାବଲମ୍ବୀ । ଅପର ପକ୍ଷରେ ପ୍ରାୟ ପଞ୍ଚଦଶ ଶତାବ୍ଦୀ ବେଳକୁ ବ୍ରହ୍ମଦେଶରେ ଶ୍ରୀଜଗନ୍ନାଥ ମନ୍ଦିରମାନ ପ୍ରତିଷ୍ଠା ହୋଇଥିଲା । ବିଶେଷ କରି ୧୮୫୦ମସିହା ବେଳେ ଗଞ୍ଜାମର କେତେକ ଲୋକ ବ୍ରହ୍ମ ଦେଶରେ ଏକ ଓଡ଼ିଆ ଉପନିବେଶ ସ୍ଥାପନ କରି ଏଠାକାର ମଙ୍ଗଳାଡୁନ୍, ପୁରୁଣା ରେଙ୍ଗୁନ୍, ଇନ୍‌ସିନ୍, ଏଲୋନ୍ ଆଦି ସ୍ଥାନରେ ଥିବା ଜଗନ୍ନାଥ ମନ୍ଦିରଗୁଡ଼ିକର ଜୀର୍ଣ୍ଣ ସଂସ୍କାର କରିଥିଲେ। ୧୯୩୧ ମସିହାର ନବକଳେବର ବେଳେ ବ୍ରହ୍ମଦେଶର ଜଗନ୍ନାଥ ମନ୍ଦିରଗୁଡ଼ିକରେ ନବକଳେବର ହୋଇଥିଲା । ଏଥି ନିମନ୍ତେ ଗଞ୍ଜାମର ଚିକିଟି ଅଞ୍ଚଳରୁ ଦାରୁ ସଂଗ୍ରହ ହୋଇ ଗୋପାଳପୁର ବନ୍ଦର ଦେଇ ବ୍ରହ୍ମଦେଶକୁ ଯାଇଥିଲା ।

ଗତ ୧୯୯୬ ମସିହାରେ ପୁଣି ବ୍ରହ୍ମଦେଶ ବା ମିୟାମାର ଦେଶର ରେଙ୍ଗୁନ୍ ସହର ନିକଟ ସିରିୟାମସ୍ଥିତ ଜଗନ୍ନାଥ ମନ୍ଦିରରେ ନବକଳେବର ହୋଇଥିଲା । ଏହି ମନ୍ଦିରକୁ ୧୯୧୭ ମସିହାରେ ବର୍ମାସ୍ଥିତ ଭାରତ ତୈଳ କମ୍ପାନୀରେ କାର୍ଯ୍ୟରତ ଗଞ୍ଜାମର ଶ୍ରମିକମାନେ ନିର୍ମାଣ କରିଥିଲେ। ଏହି ଅବସରରେ ପୁରୀର ପଣ୍ଡିତ ଅଧ୍ୟାପକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଏବଂ ପଣ୍ଡିତ ଶ୍ରୀ ଶରତଚନ୍ଦ୍ର ଷଡ଼ଙ୍ଗୀ ମିୟାମାର ଯାଇ ସିରିୟାମ୍ ଜଗନ୍ନାଥ ମନ୍ଦିରର ନବକଳେବର ସମ୍ପନ୍ନ କରାଇଥିଲେ ।

ଏହିସବୁ ପ୍ରସଙ୍ଗକୁ ଅନୁଧ୍ୟାନ କଲେ ମନକୁ ସ୍ୱତଃ ଆସିଯାଏ– ଦରିଆ କୂଳର ଜଗନ୍ନାଥ। ଦରିଆ ସେପାରିରେ ଥିବା ଜଗତକୁ ମଧ୍ୟ ମଗ୍ନ କରିଛନ୍ତି । ସତେ ଯେମିତି ଚକାଆଖି ଗୋଲାକାର ପୃଥିବୀ ହୋଇପାରେ ।

ନିମଖଣ୍ଡିପେଣ୍ଠ, ଗଞ୍ଜାମ





# ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ପ୍ରଚଳନ ପ୍ରସଙ୍ଗ

ବିଶ୍ୱନାଥ ରାଉତ

ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କ ବଡ଼ସିଂହାର ବେଶବେଳେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ବ୍ୟବହାର କରାଯାଏ । ମହାପ୍ରଭୁଙ୍କୁ ଏହି ଖଣ୍ଡୁଆପାଟରେ ଆବରଣ କରାଯାଏ । ଏହି ପାଟରେ ଗୀତଗୋବିନ୍ଦର ଶ୍ଳୋକ ଉଲ୍ଲେଖ ରହିଛି । ଏଥିରୁ ସ୍ୱଷ୍ଟ ପ୍ରତୀୟମାନ ହୁଏ ଯେ ମହାପ୍ରଭୁ ଜଗନ୍ନାଥ ଗୀତଗୋବିନ୍ଦ ପ୍ରିୟ। ଗୀତଗୋବିନ୍ଦ ସ୍ରଷ୍ଟା କବି ଜୟଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପରମ ଭକ୍ତ ଭାବେ ପରିଚିତ । ଏକଥା ଲୋକମୁଖରେ ପରମ୍ପରାକ୍ରମେ ପ୍ରଚଳିତ। ଦୀର୍ଘ ବର୍ଷ ପୂର୍ବେ ଭକ୍ତକବି ଜୟଦେବ ଶ୍ରୀମନ୍ଦିରର ଯେଉଁ ପରମ୍ପରା ସୃଷ୍ଟି କରିଥିଲେ, ତାହା ଏବେବି ପ୍ରଚଳିତ । ଏହାହିଁ ପରମ ଭକ୍ତ ଜୟଦେବଙ୍କର ଭକ୍ତିମତ୍ତାର ବୈଶିଷ୍ଟ୍ୟ ।



ଗୀତଗୋବିନ୍ଦ ଖଣ୍ଡୁଆପାଟ ସମ୍ପର୍କରେ ଏକ କାହାଣୀ ରହିଛି। ଭକ୍ତପ୍ରବର ଜୟଦେବ ସେତେବେଳେ କେନ୍ଦୁବିଲ୍ୱରେ ଅବସ୍ଥାନ କରୁଥିଲେ । ହଠାତ୍ ଏକ ଅଭିନବ ଚିନ୍ତା ଦିନେ ତାଙ୍କ ମୁଣ୍ଡରେ ଜୁଟିଲା। ଗୀତଗୋବିନ୍ଦର କେତୋଟି ନିର୍ବାଚିତ ଶ୍ଳୋକରେ ବୁଣାଯାଇଥିବା ଏକ ସ୍ୱତନ୍ତ୍ର ଧରଣର ଖଣ୍ଡୁଆପାଟ ଯଦି ମହାପ୍ରଭୁଙ୍କୁ ସମର୍ପଣ କରାଯିବ, ତା'ହେଲେ ଶ୍ରୀଜଗନ୍ନାଥ ଆହୁରି କମନୀୟ କାନ୍ତିରେ ହସି ଉଠିବେ। ଏହି ଚିନ୍ତା ଆନ୍ଦୋଳିତ କଲା ଜୟଦେବଙ୍କୁ ବରାବର। ଏ ଧରଣର ଖଣ୍ଡୁଆପାଟ ପ୍ରସ୍ତୁତି ନିମନ୍ତେ ସେ ଉଦ୍ୟମ ଜାରି ରଖିଲେ । ଗ୍ରାମର ବହୁ ବଦାନ୍ୟ ବ୍ୟକ୍ତି ତାଙ୍କୁ ସହଯୋଗର ହାତ ବଢ଼ାଇଲେ । ବୁଣାଳୀ ଭାଇମାନେ ମଧ୍ୟ ଜୟଦେବଙ୍କ ଇଚ୍ଛାକୁ ପୂରଣ କରିବା ନିମନ୍ତେ ଅଣ୍ଟା ଭିଡ଼ିଲେ ।

ଜୟଦେବ ବୁଣାଳୀ ଭାଇମାନଙ୍କ ସହ ଖଣ୍ଡୁଆପାଟର ପ୍ରସ୍ତୁତି ଶୈଳୀ ସମ୍ପର୍କରେ ଆଲୋଚନା କଲେ। ନିଜେ ନିଜ ରଚିତ ଗୀତଗୋବିନ୍ଦରୁ ଶ୍ଳୋକ ଚୟନ କଲେ । ସେହି ଶ୍ଳୋକଗୁଡ଼ିକୁ ଯେଉଁ ଶୈଳୀରେ ଖଣ୍ଡୁଆ ପାଟରେ ସ୍ଥାନ ଦିଆଯିବ, ସେ ସମ୍ପର୍କରେ ସେ ବିସ୍ତୃତ ଭାବରେ ବୁଣାଳୀମାନଙ୍କୁ ଅବଗତ କରାଇଲେ। ନିଜର ପରମ ଆରାଧ୍ୟ ଦେବତା ରାଧାକୃଷ୍ଣଙ୍କୁ ସ୍ମରଣ କରି ନିଜ ଉଦ୍ୟମକୁ ଚରିତାର୍ଥ କରିବା ନିମନ୍ତେ ପ୍ରୟାସ ଆରମ୍ଭ କଲେ । ଜୟଦେବ ଶ୍ରୀଜଗନ୍ନାଥଙ୍କଠାରେ କୃଷ୍ଣତ୍ୱ ଅଥବା ମାଧବତ୍ୱ ଆରୋପ କରି ଜଗନ୍ନାଥଙ୍କଠାରେ ନିଜକୁ ସମର୍ପଣ କରିଦେଇଥିଲେ। ଗ୍ରାମର ଏକ ପାର୍ଶ୍ୱରେ ଥିବା ମନ୍ଦିର ନିକଟବର୍ତ୍ତୀ ପୁଷ୍କରିଣୀକୁ ଲାଗି ରହିଥିଲା ବୁଣାଳୀ ବସ୍ତି । ପାଟ ପ୍ରସ୍ତୁତି କାର୍ଯ୍ୟରେ ବୁଣାଳୀମାନେ ନିୟୋଜିତ ହେଲେ। ଜୟଦେବଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ ଚାଲିଲା ।



ଜୟଦେବ ସୁଲଳିତ କଣ୍ଠରେ ଗୀତଗୋବିନ୍ଦର ପଂକ୍ତିମାନ ଗାନ କରୁଥିଲେ ଏବଂ ସେହି ଅନୁସାରେ ବୁଣାଳୀମାନେ ପାଟ ବୁଣୁଥିଲେ। ଏହି କାର୍ଯ୍ୟ କିଛିଦିନ ଚାଲିଲା । ହଠାତ୍ ଦିନେ ଗୀତଗୋବିନ୍ଦ ଗାନ କରୁଥିବାବେଳେ ଜୟଦେବ ଅତ୍ୟନ୍ତ ଭାବ ବିହ୍ୱଳିତ ହୋଇ ମୂର୍ଚ୍ଛା ହୋଇଗଲେ। ପାଟବୁଣା କାର୍ଯ୍ୟ ଅଧାରୁ ବନ୍ଦ ହୋଇଗଲା। ସମ୍ଭବତଃ ମହାପ୍ରଭୁ ଜଗନ୍ନାଥଙ୍କର ଏହାହିଁ ଥିଲା ଇଚ୍ଛା। ତାଙ୍କ ପାଇଁ ପ୍ରସ୍ତୁତ ହେଉଥିବା ସ୍ୱତନ୍ତ୍ର ପାଟ ତିଆରି ପ୍ରକ୍ରିୟା ଅନୁଧ୍ୟାନ କରିବା ନିମନ୍ତେ ବୋଧହୁଏ ମହାପ୍ରଭୁଙ୍କର ଇଚ୍ଛା ହେଲା । ସେଥିପାଇଁ ସେ ଏଭଳି କାଣ୍ଡ ରଚନା କଲେ। ଅଚେତ ଅବସ୍ଥାରେ ଜୟଦେବ ଥିବାବେଳେ ବୁଣାଳୀମାନେ ବିବ୍ରତ ହୋଇପଡ଼ିଲେ। ଠିକ୍ ସେତିକିବେଳେ ଜଣେ ବ୍ରାହ୍ମଣ ପାଟବୁଣା ସ୍ଥାନରେ ପହଞ୍ଚିଲେ । ତାଙ୍କ କଣ୍ଠରୁ ଝରିପଡୁଥିଲା ଗୀତଗୋବିନ୍ଦର ଅମୃତ ପଦାବଳୀ । ଠିକ୍ ଜୟଦେବଙ୍କ ଶୈଳୀରେ ବ୍ରାହ୍ମଣ ଗାନ କରୁଥିଲେ ଗୀତଗୋବିନ୍ଦର କମନୀୟ ଶ୍ଳୋକ। ଭଜନରତ ବ୍ରାହ୍ମଣଙ୍କୁ ଦର୍ଶନ କରି ବୁଣାଳୀମାନେ ଆନନ୍ଦ ଚିତ୍ତରେ ତାଙ୍କ ପାଦତଳେ ଲୋଟିପଡ଼ିଲେ। ସେମାନଙ୍କ ବିବ୍ରତ ଅବସ୍ଥାକୁ ଲକ୍ଷ୍ୟ କରି ବ୍ରାହ୍ମଣ କହିଲେ, ଭାଇମାନେ ଚିନ୍ତାକର ନାହିଁ। ପାଟବୁଣା ବନ୍ଦ ହେବନାହିଁ । ମୁଁ ଗୀତଗୋବିନ୍ଦ ଶ୍ଳୋକ ମନେ ରଖିଛି । ମୁଁ ବୋଲିବି, ତୁମ୍ଭେମାନେ ପାଟ ବୁଣିବ ।

ଜୟଦେବ ଶୈଳୀକୁ ଭଲଭାବରେ ନକଲ କରି ଗୀତଗୋବିନ୍ଦ ଗାନ କରୁଥିବାରୁ ବ୍ରାହ୍ମଣଙ୍କ କଥାରେ ବୁଣାଳୀମାନେ ଆଶ୍ୱସ୍ତ ହେଲେ ଏବଂ ପାଟ ବୁଣିବାକୁ ପ୍ରସ୍ତୁତ ହେଲେ । ବ୍ରାହ୍ମଣ ଗାନ କରି ଚାଲିଲେ ଗୀତଗୋବିନ୍ଦର ପୂର୍ବ ନିର୍ବାଚିତ ଶ୍ଳୋକ ସୁମଧୁର କଣ୍ଠରେ ଏବଂ ସାଙ୍ଗୀତିକ ମୂର୍ଚ୍ଛନାର ତାଳେ ତାଳେ ଭାବ ବିହ୍ୱଳିତ ବୁଣାଳୀମାନେ ମଧ୍ୟ ଖଣ୍ଡୁଆ ପାଟ ବୁଣି ଚାଲିଲେ । କିଛି ସମୟରେ ଗାନ ଶେଷ ହେଲା ଓ ପାଟ ବୁଣା ମଧ୍ୟ । ଗୀତଗୋବିନ୍ଦର ବାରଟିଯାକ ସର୍ଗ ବ୍ରାହ୍ମଣ ଗାନ କରିସାରିଥିଲେ । ବୁଣାଳୀମାନେ ମଧ୍ୟ ତତ୍ପରତାର ସହ ପାଟ ବୁଣାକାର୍ଯ୍ୟ ଶେଷ କରି ଦେଇଥିଲେ । ବ୍ରାହ୍ମଣ ବୁଣାଳୀଙ୍କଠାରୁ ବିଦାୟ ନେବାକୁ ଇଚ୍ଛା କରି କହିଲେ, ଏଥର ମୁଁ ଯାଉଛି । ମୋର ବହୁତ ବିଳମ୍ବ ହୋଇଗଲାଣି । ମଧ୍ୟାହ୍ନ ଭୋଜନ ସମୟ ଗଡ଼ି ଗଲାଣି । ମାତ୍ର ବୁଣାଳୀମାନେ ବ୍ରାହ୍ମଣଙ୍କୁ ବିଦାୟ ଦେବାକୁ ଅନିଚ୍ଛୁକ ହୋଇ କହିଲେ, ଜୟଦେବ ଚେତା ପାଇ ଉଠିଲେ, ଆମ ଉପରେ ବିରକ୍ତ ହେବେ। ଦୟାକରି ସେ ଉଠିବା ପର୍ଯ୍ୟନ୍ତ ଆପଣ ଅପେକ୍ଷା କରନ୍ତୁ । ବ୍ରାହ୍ମଣ କହିଲେ, ସେ ତ ଏତେ ଶୀଘ୍ର ଉଠିବେନି । ରାଧାମାଧବ ପ୍ରେମରେ ମଜ୍ଜି ସେ ଭାବରେ ଅଚେତ ହୋଇପଡ଼ିଛନ୍ତି । ସେ ଉଠିଲେ ମୁଁ ଆସିଥିଲି ବୋଲି ତାଙ୍କୁ କହିବେ । ଏକଥା କହି ବ୍ରାହ୍ମଣ ବୁଣାଳୀମାନଙ୍କଠାରୁ ବିଦାୟ ନେଇ କିଛିବାଟ ଗଲାପରେ ଅନ୍ତର୍ଦ୍ଧାନ ହୋଇଗଲେ ।

ବ୍ରାହ୍ମଣ ଚାଲିଯିବାର କିଛି ସମୟ ପରେ ଜୟଦେବଙ୍କ ଚେତା ଫେରିଲା । ସେ ଉଠି ବସିବା ମାତ୍ରକେ ବୁଣାଳୀମାନେ ତାଙ୍କୁ ବ୍ରାହ୍ମଣଙ୍କ ଖଣ୍ଡୁଆ ପାଟ ବୁଣା ସରିଯାଇଥିବା ସମ୍ପର୍କରେ ମଧ୍ୟ ସୂଚନା ଦେଲେ। ଏକଥା ଶୁଣି ଜୟଦେବ ଅତ୍ୟନ୍ତ ଉଲ୍ଲସିତ ହୋଇପଡ଼ିଲେ । ତନୁ ମନ ଶିହରିତ ହୋଇ ଉଠିଲା । ସେ ଚିନ୍ତାକଲେ ଗୀତଗୋବିନ୍ଦର ସମସ୍ତ ଶ୍ଳୋକ କେବଳ ତାଙ୍କୁ ଓ ତାଙ୍କ ପତ୍ନୀ ପଦ୍ମାବତୀଙ୍କୁ ଜଣା । ସେ ଦୁହିଁଙ୍କ ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ତେବେ ସେ ବ୍ରାହ୍ମଣ କିଏ ? ମହାପ୍ରଭୁ ନିଶ୍ଚୟ ହୋଇଥିବେ । ଏହା ମନରେ ଭାବି ଜୟଦେବ ପରମ କାରୁଣିକ ମହାପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସେଠାରେ ଲୋଟିଗଲେ। ଆଖିରେ ଥିଲା ଅଶ୍ରୁଭାବ ଓ ଭକ୍ତିର ଆନନ୍ଦାଶ୍ରୁ । ଓଠରେ ଥିଲା ଗୀତଗୋବିନ୍ଦର ସ୍ୱର। ସଂପୂର୍ଣ୍ଣ ଆତ୍ମସମର୍ପଣର ସ୍ୱର ମହାପ୍ରଭୁ ସତରେ ତାଙ୍କର ଇଚ୍ଛା ପୂରଣ କରିଛନ୍ତି । ହୃଦୟରେ ଥିଲା ମହାପ୍ରଭୁଙ୍କ ପ୍ରତି କୃତଜ୍ଞତାର କୋହ ଓ ଅଫୁରନ୍ତ ଉଲ୍ଲାସ ।

ଏଥର ଉଠିଲେ ଜୟଦେବ। ଆବେଗିକ ଉନ୍ମାଦନାରେ କହିଲେ ବୁଣାଳୀମାନଙ୍କୁ, ଭାଇମାନେ ତୁମମାନଙ୍କର ଉଦ୍ୟମ





ସଫଳ ହୋଇଛି । ଖଣ୍ଡୁଆ ପାଟକୁ ମହାପ୍ରଭୁ ଗ୍ରହଣ କରିଛନ୍ତି, ସ୍ୱୀକୃତି ପ୍ରଦାନ କରିଛନ୍ତି। ତୁମେମାନେ ଧନ୍ୟ । ମହାପ୍ରଭୁଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରି ନିଜ ନିଜ ଜୀବନକୁ ଧନ୍ୟ କରିପାରିଛ । ଯାହା ମୁଁ ପାରିନାହିଁ। ତାହା ତୁମେ ପାରିଛ। ଦୁନିଆରେ ତୁମମାନଙ୍କ ଛଡ଼ା ଆଉ କିଏ ବା ଅଛି ଭାଗ୍ୟବାନ । ବୁଣାଳୀ ବସ୍ତିରେ ଖେଳିଗଲା ଭକ୍ତି ଭାବର ଲହରୀ। ପରିବେଶ ହୋଇ ଉଠିଲା ଭକ୍ତିମୟ ।

ପରଦିନ ପତ୍ନୀଙ୍କ ସହ ଜୟଦେବ ଚାଲିଲେ ପୁରୀ ଅଭିମୁଖେ । ଶ୍ରୀଜଗନ୍ନାଥଙ୍କୁ ଖଣ୍ଡୁଆ ପାଟ ସମର୍ପଣ କରିବାର ପ୍ରବଳ ଇଚ୍ଛା ତାଙ୍କୁ ବିଚଳିତ କରି ପକାଇଲା । ଗୀତଗୋବିନ୍ଦ ଗାଇ ଗାଇ ପତିପତ୍ନୀ ପହଞ୍ଚିଲେ ଶ୍ରୀକ୍ଷେତ୍ରରେ । ସେବାୟତମାନଙ୍କୁ ଭେଟିଲେ ଓ ନିଜ ଇଚ୍ଛା ସଂପର୍କରେ ସେମାନଙ୍କୁ ଜଣାଇ ଖଣ୍ଡୁଆ ପାଟକୁ ମହାପ୍ରଭୁଙ୍କୁ ସମର୍ପଣ କରିବାର ଅଭିଳାଷ ପ୍ରକଟ କଲେ। ମାତ୍ର ସେବାୟତମାନେ ଏଥିରେ ଅମଙ୍ଗ ହେଲେ। ବରଂ ଜୟଦେବଙ୍କୁ ତିରସ୍କାର କଲେ। ଜୟଦେବ ଏଥିରେ ଭାଙ୍ଗି ନପଡ଼ି ଧୈର୍ଯ୍ୟର ସହ ସମୟକୁ ଅପେକ୍ଷା କଲେ । ରାଜାଙ୍କ କାନକୁ ଗଲା ଏହି ପ୍ରସଙ୍ଗ। ରାଜା ଏ ସଂପର୍କରେ ନିଷ୍ପତ୍ତି ନେବାକୁ ଦରବାର ଡକାଇଲେ । ଦରବାର ବସିଲା । ସେବାୟତଙ୍କ ସମେତ ଜୟଦେବ ସପତ୍ନୀକ ଉପସ୍ଥିତ ଥିଲେ। ବହୁ ବାଦାନୁବାଦ ଓ ବିଚାର ବିମର୍ଶ ଚାଲିଲା । ଶେଷରେ ରାଜା ନିଷ୍ପତ୍ତି ଘୋଷଣା କଲେ ଯେ ଜୟଦେବଙ୍କ ଖଣ୍ଡୁଆ ପାଟକୁ ମାର୍କଣ୍ଡେୟ ପୁଷ୍କରିଣୀରେ ଫିଙ୍ଗି ଦିଆଯିବ । ଯଦି ପାଟଟି ପାଣି ଭିତରେ ବୁଡ଼ି ନଯାଇ ପାଣି ଉପରେ ଭାସମାନ ଅବସ୍ଥାରେ ରହିବ, ତେବେ ପାଟଟିକୁ ମହାପ୍ରଭୁ ଗ୍ରହଣ କରିଛନ୍ତି ବୋଲି ବୁଝିବାକୁ ହେବ। ରାଜାଙ୍କ ଘୋଷଣା ମୁତାବକ ଜୟଦେବଙ୍କ ଖଣ୍ଡୁଆ ପାଟକୁ ପୁଷ୍କରିଣୀରେ ଫିଙ୍ଗି ଦିଆଗଲା ଏବଂ ଆଶ୍ଚର୍ଯ୍ୟର ବିଷୟ ଯେ ପାଟଟି ପାଣିରେ ନବୁଡ଼ି ଭାସିବାକୁ ଲାଗିଲା । ସେଠାରେ ଉପସ୍ଥିତ ସମବେତ ଜନତାଙ୍କ ହରିବୋଲ ହୁଳହୁଳି ଶବ୍ଦରେ ଗଗନ ପବନ ପ୍ରକମ୍ପିତ ହୋଇଉଠିଲା । ସମସ୍ତେ ଜୟଦେବଙ୍କୁ ପ୍ରଶଂସା କଲେ। ରାଜା ନିଜେ ତାଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ। ଜୟଦେବ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାରୁ ତାଙ୍କ ଆଖି ଆନନ୍ଦରେ ଛଳ ଛଳ ହୋଇଉଠିଲା । ନିଷ୍ପତ୍ତି ଅନୁସାରେ ଜୟଦେବଙ୍କ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କୁ ସମର୍ପଣ କରାଗଲା। ଭକ୍ତ ଓ ଭକ୍ତିର ବିଜୟ ହେଲା ।

ସେହିଦିନଠାରୁ ମହାପ୍ରଭୁଙ୍କ ବଡ଼ସିଂହାର ବେଶ ନୀତିରେ ଗୀତଗୋବିନ୍ଦ ଖଣ୍ଡୁଆ ପାଟ ବ୍ୟବହାର କରାଯାଇ ଆସୁଛି । ଏହି ବେଶ ହିଁ ଦିନଚର୍ଯ୍ୟାର ଶେଷ ବେଶ। ରାତିରେ ଏହି ବେଶରେ ମହାପ୍ରଭୁଙ୍କୁ ସଜାଇ ଦିଆଯିବା ସହ ଗୀତଗୋବିନ୍ଦ ଖଣ୍ଡୁଆ ପାଟରେ ମହାପ୍ରଭୁଙ୍କ ଶରୀରକୁ ଆବରଣ କରାଯାଏ । ଗୀତଗୋବିନ୍ଦର କାନ୍ତକୋମଳ ପଦାବଳୀ ଦେବଦାସୀମାନେ ଗାନ କରିବା ସହ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସମ୍ମୁଖରେ ନୃତ୍ୟ ପରିବେଷଣ କରୁଥିଲେ । ଏବେ ଅବଶ୍ୟ ଗାନ ଓ ନୃତ୍ୟପ୍ରଥା ବନ୍ଦ ହୋଇଯାଇଛି ।

ଗୀତଗୋବିନ୍ଦ ଖଣ୍ଡୁଆ ପାଟ ପ୍ରଚଳନ ପରମ୍ପରା ହିଁ ସୂଚାଇ ଦେଉଛି ଯେ ଜୟଦେବ ମହାପ୍ରଭୁଙ୍କର ଶ୍ରେଷ୍ଠ ଭକ୍ତ ଥିଲେ ଓ ତାଙ୍କଦ୍ୱାରା ରଚିତ ଗୀତଗୋବିନ୍ଦ ତାଙ୍କର ଅତି ପ୍ରିୟ ସଂଗୀତ ରୂପେ ପରିଚିତ ।

ନୂଆଗାଁ, କୁଜଙ୍ଗ
ଜଗତସିଂହପୁର





# ମହାପ୍ରଭୁଙ୍କ ରଥକାଠ ଓ ଏହାର ଭବିଷ୍ୟତ

ସ୍ୱପ୍ନେଶ୍ୱର ଗୋଚ୍ଛି

ଏ କଥା ସମସ୍ତଙ୍କୁ ଜଣା ଯେ ମହାପ୍ରଭୁ ଭାଇ, ଭଉଣୀ ଓ ସୁଦର୍ଶନଙ୍କ ସହ ବର୍ଷରେ ଥରେ ନବଦିନାତ୍ମକ ରଥଯାତ୍ରାରେ ବାହାରନ୍ତି। ସବୁ ବର୍ଷ ନନ୍ଦିଘୋଷ, ତାଳଧ୍ୱଜ ଓ ଦର୍ପଦଳନ ରଥ ନୂଆକରି ଗଢ଼ା ହୁଅନ୍ତି। ନୂଆରଥରେ ଖଣ୍ଡିଏ ହେଲେ ପୁରୁଣା କାଠ ଲାଗି ହୁଏ ନାହିଁ । ନନ୍ଦିଘୋଷରେ ୮୩୨ ଖଣ୍ଡ, ତାଳଧ୍ୱଜରେ ୭୬୩ ଖଣ୍ଡ ଓ ଦର୍ପଦଳନରେ ୫୯୩ ଖଣ୍ଡ ଓ ସର୍ବମୋଟ୍ ୨୧୮୮ ଖଣ୍ଡ କାଠ ଲାଗେ । ଏହି ୨୧୮୮ ଖଣ୍ଡ କାଠ ପାଇବା ପାଇଁ ୧୧୩୯ ଖଣ୍ଡ ବିଭିନ୍ନ ପ୍ରକାର ଓ ମାପର କାଠଗଣ୍ଡି ଯୋଗାଇ ଦେବା ପାଇଁ ସରକାରଙ୍କର ବନ ବିଭାଗକୁ ନିର୍ଦ୍ଦେଶ ଅଛି । ସେଥିମଧ୍ୟରୁ ୮୬୨ ଖଣ୍ଡ ଫାଶୀ, ଧଉରା ଓ ଅସନ ପରି ଟାଣ କାଠ ଓ ବାକି ୨୭୭ ଖଣ୍ଡ ଶିମିଳି, ଦେବଦାରୁ, ପାଳଧୁଆ, କଅଁସ ଓ ମହାନିମ୍ବ ପରି ହାଲୁକା କାଠର ଗଣ୍ଡି ।



ରଥର ଚକ କେବଳ ଫାଶୀକାଠରେ ଗଢ଼ାଯାଏ । ଚକର ତୁମ୍ବ ଓ ପଇ ଗଢ଼ିବା ପାଇଁ ୭୨ ଖଣ୍ଡ ୬ ଫୁଟିଆ ଫାଶୀ ଗଣ୍ଡି ଆବଶ୍ୟକ ହୁଏ । ଅର ବା ଦାଣ୍ଡିଆ ଗଢ଼ିବା ପାଇଁ ୪୨୧ ଖଣ୍ଡ ୩ ଫୁଟିଆ କାଠଗଣ୍ଡି ଦରକାର ହୁଏ । ଆଜିକାଲି ଫାଶୀକାଠ ପର୍ଯ୍ୟାପ୍ତ ପରିମାଣରେ ମିଳୁ ନଥିବାରୁ କିଛି ଅସନ ବା ଧଉରା ଗଣ୍ଡି ଫାଶୀଗଣ୍ଡି ସହ ମିଶାଇ ଅର ଗଢ଼ା ଯାଉଛି । ରଥର ଅଖ ଓ ଦଣ୍ଡା କେବଳ ଧଉରା କାଠରେ ତିଆରି ହୁଏ । ଓଡ଼ିଶା, ପଶ୍ଚିମବଙ୍ଗ ଓ ଝାଡ଼ଖଣ୍ଡ ଅଞ୍ଚଳରେ ଶଗଡ଼ ଅଖ ପାଇଁ ଧଉରା କାଠ ଲୋକମାନଙ୍କର ପ୍ରଥମ ପସନ୍ଦ। ଅଖ ଓ ଦଣ୍ଡା ପାଇଁ ୫୦ ଖଣ୍ଡ ୩ ଫୁଟିଆ ଧଉରା ଗଣ୍ଡି ଲାଗେ। ରଥର ବାକି ଅଂଶ ୩୧୨ ଖଣ୍ଡ ୩ ଫୁଟିଆ ଫାଶୀ, ଧଉରା ବା ଅସନ କାଠଗଣ୍ଡିରେ ଗଢ଼ାଯାଏ । ୨୭୭ ଖଣ୍ଡ ହାଲୁକା କାଠର ଗଣ୍ଡି ପଟା ପାଇଁ ଦରକାର ପଡ଼େ। ସେଗୁଡ଼ିକର ଗୋଲେଇ ୩ ଫୁଟ୍‌ରୁ ୫ ଫୁଟ୍ ହେବା ଦରକାର। ଆଗେ କେବଳ ଶିମିଳି କାଠ ପଟା ପାଇଁ ବ୍ୟବହାର ହେଉଥିଲା । ଏବେ ଶିମିଳି କାଠ ଅଭାବ ଯୋଗୁଁ ଦେବଦାରୁ, କଅଁସ, ପାଳଧୁଆ ଓ ମହାନିମ୍ବ କାଠ ଯୋଗାଇ ଦିଆଯାଉଛି । ତା' ବାହାରେ ୬୦ ଖଣ୍ଡ କାଳଚୂଆ ତରୁଆ ରଥ ସଂପର୍କିତ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଯୋଗାଇ ଦିଆଯାଉଛି । ଏସବୁ କାଠ ପରମ୍ପରା ଅନୁସାରେ ଆଗେ ଦଶପଲ୍ଲା ରାଜା ଓ ଏବେ ନୟାଗଡ଼ ଡିଏଫ୍‌ଓ ଯୋଗାଇ ଆସୁଛନ୍ତି । ବର୍ତ୍ତମାନ ନୟାଗଡ ଓ ଖୋର୍ଦ୍ଧା ଡି.ଏଫ୍.ଓ ଠିକ୍ ସମୟରେ ଠିକ୍ ଗୁଣ, ମାନ ଓ ମାପର କାଠ ଦରକାର ମୁତାବକ ଯୋଗାଇ ଦେବା ପାଇଁ ମନ୍ଦିର ପ୍ରଶାସନ ପାଖରେ ପ୍ରତିଶ୍ରୁତିବଦ୍ଧ । ଅତୀତରେ ଯେତେବେଳେ ଯାନବାହନର ପ୍ରଚଳନ ନଥିଲା, ରଥକାଠ ମହାନଦୀ ଓ ତା'ର ଶାଖା



ନଦୀମାନଙ୍କରେ ଭାସି ଭାସି ପୁରୀରେ ପହଞ୍ଚୁଥିଲା । ସେଥିପାଇଁ ରଥକାଠରେ ତିନୋଟି ମୁଖ୍ୟ ଗୁଣ ରହିବା ଦରକାର ଥିଲା । ଏକ ବୃହଦାକାର ରଥ ନିର୍ମାଣ କରିବା ପାଇଁ ବ୍ୟବହୃତ ହେଉଥିବା କାଠ ଶକ୍ତ ହେବା ଦରକାର । ପାଣିରେ ଭାସି ଆସିବା ପାଇଁ ଏହା ଅପେକ୍ଷାକୃତ ହାଲୁକା ହେବା ଆବଶ୍ୟକ । ଦୂରରୁ କାଠ ଆଣି ନଦୀକୂଳରେ ପହଞ୍ଚାଇବା କଷ୍ଟସାଧ୍ୟ ହୋଇଥିବାରୁ ଏ ଗଛଗୁଡ଼ିକ ନଦୀକୂଳ ଜଙ୍ଗଲରେ ମିଳୁଥିବା ଦରକାର । ଫାଶୀ ଓ ଧଉରା ବେଶ୍ ଶକ୍ତ ଓ ଟାଣ କାଠ । ଧଉରା ଗଛ ଓଡ଼ିଶାର ସବୁ ଅଞ୍ଚଳରେ ମିଳେ । ଫାଶୀ ଗଛ କେବଳ ନଦୀ ଓ ବଡ଼ ନାଳ କୂଳରେ ମିଳେ । କଞ୍ଚା ଫାଶୀ ଓ ଧଉରା କାଠ ପାଣିରେ ଭାସେ । ଶିମିଳି କାଠ ହାଲୁକା ଓ ଜଙ୍ଗଲର ସବୁ ଅଞ୍ଚଳରେ ମିଳେ । ଆଗେ ମହାନଦୀ କୂଳର ଦଶପଲ୍ଲା ଜଙ୍ଗଲରୁ ଏ କାଠ କାଟି ସେଥିରେ ସିନ୍ଦୂର ଲଗେଇ ହରିବୋଲ ହୁଳହୁଳି ସଂକୀର୍ତ୍ତନ ସହ ନଦୀରେ ଭସେଇ ଦିଆଯାଉଥିଲା । କାଠ ଭାସିଗଲାବେଳେ କୂଳରେ ଲାଗିଗଲେ, ପାଖ ଗାଆଁଲୋକେ ସିନ୍ଦୂରରୁ ଜଗନ୍ନାଥଙ୍କ କାଠ ଚିହ୍ନି ଶୁଦ୍ଧପୂତ ଭାବରେ ଖୋଳ କୀର୍ତ୍ତନ ହରିବୋଲ ହୁଳହୁଳି ସହ ପୁଣି ନଦୀରେ ଭସାଇ ଦେଉଥିଲେ । ନଦୀକୂଳିଆ ଗାଆଁ ଲୋକଙ୍କର ନଦୀରୁ କାଠ ସଂଗ୍ରହ କରିବା ଗୋଟେ ନିତିଦିନିଆ ସାଧାରଣ କାମ ହୋଇଥିଲେ ମଧ୍ୟ ସିନ୍ଦୂର ଲଗା ରଥକାଠକୁ ହଡ଼ପ କରିବାର ସାହସ କେହି କରୁ ନଥିଲେ ।

ଆଜିକାଲି ରଥକାଠ ଟ୍ରକ୍‌ରେ ବୁହା ହୋଇ ଆସୁଥିଲେ ମଧ୍ୟ ଏବଂ ଫାଶୀ ଓ ଧଉରା କାଠର ଅନେକ ବିକଳ୍ପ ଆମ ଜଙ୍ଗଲରେ ଉପଲବ୍ଧ ହେଉଥିଲେ ମଧ୍ୟ ପୁରୁଣା ପରମ୍ପରାକୁ ସମ୍ମାନ ଦେଇ ସେଇ ଫାଶୀ ଓ ଧଉରାରେ ରଥ ନିର୍ମାଣ ହୁଏ । ଅତୀତରେ ଜଙ୍ଗଲର ଆୟତନ ବେଶୀ ଥିଲା । ପ୍ରତି ଏକର ଜଙ୍ଗଲରୁ ଆଜିଠାରୁ ବହୁ ଗୁଣରେ ବେଶୀ ପରିମାଣର ଓ ମାନର କାଠ ମିଳୁଥିଲା । ତେଣୁ ରଥ କାଠ ଯୋଗାଇ ଦେବା ପାଇଁ ଆଗେ ଦଶପଲ୍ଲା ରାଜା ଓ ପରେ ନୟାଗଡ଼ ଡିଏଫ୍‌ଓଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁ ନଥିଲା । ପରେ କେବେ ଦରକାର ପଡୁଥିବା କାଠ ସଂଗ୍ରହ ଓ ଯୋଗାଣକୁ ସହଜ କରିବା ପାଇଁ ହାଲୁକା କାଠର ଯୋଗାଣ ଦାୟିତ୍ୱ ଖୋର୍ଦ୍ଧା ଡିଏଫ୍‌ଓଙ୍କ ଉପରେ ନ୍ୟସ୍ତ କରାଗଲା ।

ଏବେ ରଥକାଠ ଯୋଗାଣ ଜଙ୍ଗଲ ବିଭାଗର ମୁଣ୍ଡବ୍ୟଥାର ଏକ କାରଣ ହୋଇଛି । ଉପଯୁକ୍ତ ମାନ ଓ ମାପର କାଠ କାଳକ୍ରମେ ବିରଳ ହେବାକୁ ବସିଲାଣି । ତଥାପି ଏ ପର୍ଯ୍ୟନ୍ତ ସୁରୁଖୁରୁରେ କାଠ ଯୋଗାଣ ଚାଲିଛି । କିନ୍ତୁ ଆଉ ବର୍ଷ କେତେଟା ପରେ ନୟାଗଡ଼ ଓ ଖୋର୍ଦ୍ଧା ଡିଏଫ୍‌ଓ ରଥ କାଠ ଯୋଗାଇବାରେ ଅସମର୍ଥ ହେବେ । ତେଣୁ ଆଜିଠାରୁ ସେ ସମ୍ବନ୍ଧରେ ଚିନ୍ତା କରିବାର ଆବଶ୍ୟକତା ଅନୁଭବ କରି ଜଙ୍ଗଲ ବିଭାଗ ଜଗନ୍ନାଥ ବନ ପ୍ରକଳ୍ପ ଆରମ୍ଭ କରିଛନ୍ତି । ଫାଶୀ ଗଛ ସ୍ୱଚ୍ଛନ୍ଦରେ ବଢ଼ିବା ପାଇଁ ନଦୀକୂଳିଆ ବାଲିଆ ଦୋରସା ମାଟି ଦରକାର କରେ । ସେ ଗଛକୁ ପଥୁରିଆ, ମୋରମ, ଟାଣ, ଖଳି ମାଟିରେ ଲଗେଇଲେ, ସେ ଉଧେଇବ ନାହିଁ । ଦ୍ୱିତୀୟତଃ ସର୍ବସାଧାରଣ ଜାଗାରେ ଗାଈଗୋରୁ ଅହରହ ଚରୁ ଥିବାରୁ ଏ ପ୍ରକଳ୍ପ ସଫଳ ହୋଇପାରୁ ନାହିଁ ।

ଫାଶୀ ଓ ଧଉରା କାଠ ବିନା ରଥ ନିର୍ମାଣ କରିବା ଅସମ୍ଭବ । ଧଉରା ଗଛ ଓଡ଼ିଶାର ସବୁ ଜଙ୍ଗଲରେ ଦେଖାଯାଏ । ଫାଶୀ ଗଛ ଯେ କେବଳ ନୟାଗଡ଼ ଜଙ୍ଗଲରେ ଦେଖାଯାଏ, ସେ କଥା ନୁହେଁ । ସୁନ୍ଦରଗଡ଼ ଜିଲ୍ଲାର ବ୍ରାହ୍ମଣୀ ଓ ତା'ର ଉପନଦୀମାନଙ୍କର ଦୁଇ କୂଳରେ ଏ ଗଛ ବହୁ ପରିମାଣରେ ମିଳେ । କାଂଶବାହାଲ ସହର ନିକଟରେ କେବଳ ଫାଶୀ ଗଛର ଗୋଟେ ଛୋଟ ଜଙ୍ଗଲ ଥରେ ମୁଁ ତତ୍‌କାଳୀନ ପ୍ରଧାନ ମୁଖ୍ୟ ବନ ସଂରକ୍ଷକ ଶ୍ରୀଯୁକ୍ତ ଗୌରହରି ମିଶ୍ରଙ୍କୁ ଦେଖାଇଥିଲି ଓ ନୟାଗଡ଼ ଜଙ୍ଗଲକୁ କିଛି ବର୍ଷ ବିଶ୍ରାମ ଦେଇ ଓଡ଼ିଶାର ଅନ୍ୟ ଜଙ୍ଗଲରୁ ଫାଶୀ ଓ ଧଉରା କାଠ ସଂଗ୍ରହ କରି ଯୋଗାଇ ଦେବାକୁ ଅନୁରୋଧ କରିଥିଲି । ମହାନଦୀ କୂଳେ କୂଳେ ବୌଦ୍ଧ, ସୋନପୁର, ଅନୁଗୋଳ ଓ ଆଠମଲ୍ଲିକ ଇଲାକାରେ ଏ ଗଛ ଅନେକ ପରିମାଣରେ ଦେଖାଯାଏ । ତେଲ ନଦୀର ଦୁଇ କୂଳରେ ଏ ଗଛ ମିଳେ ବୋଲି ମୋର ଜଙ୍ଗଲ ଅଧିକାରୀ



ବନ୍ଧୁମାନଙ୍କ ଠାରୁ ଶୁଣିଛି । ତେଣୁ ବର୍ତ୍ତମାନ ପାଇଁ ନୟାଗଡ଼କୁ ଛାଡ଼ି ଉପରୋକ୍ତ ଅଞ୍ଚଳର ଜଙ୍ଗଲରୁ ଏ କାଠ ସଂଗ୍ରହ ପାଇଁ ନିଷ୍ପତ୍ତି ନିଆଯିବା ଉଚିତ୍ ।

ଉପରୋକ୍ତ ଅଞ୍ଚଳରେ ଅନେକ ଲୋକଙ୍କ ଘରବାଡ଼ି, ଚାଷଜମି, ତୋଟା ତଇଲାରେ ଫାଶୀ ଗଛ ବଢ଼ି ଠିଆ ହୋଇଛି । ଜଗନ୍ନାଥଙ୍କ ରଥ ପାଇଁ କାଠ ଯୋଗାଇ ଦେବା ପାଇଁ ସେମାନେ ନିଜର ପରମ ସୌଭାଗ୍ୟ ମଣିବେ । ରଥ କାଠ ଯୋଗାଇ ଦେବା ପାଇଁ ଇଚ୍ଛୁକ ଲୋକ ଅନ୍ଦାଜରେ ଗଛର ଉଚ୍ଚତା ଓ ଛାତିଏ ଉଚ୍ଚରେ ଗଛର ଗୋଲେଇ ମାପି ନିକଟସ୍ଥ ରେଞ୍ଜ ଅଫିସ୍‌ରେ ଜଣାନ୍ତୁ ବୋଲି ଗଜପତି ମହାରାଜା ଅନୁରୋଧ କଲେ ହଜାର ହଜାର ସଂଖ୍ୟାରେ କାଠ ଦାନ ଆକାରରେ ମିଳିବ । ମାପ ଓ ମାନ ପରୀକ୍ଷା କରି ଜଙ୍ଗଲ ବିଭାଗ ଏ କାଠ ଯୋଗାଇ ଦେଇ ପାରିବେ ।

ଭବିଷ୍ୟତରେ କାଠ ଯେପରି ନିରବଚ୍ଛିନ୍ନ ଭାବେ ମିଳିପାରିବ, ସେଥିପାଇଁ ଚିନ୍ତା କରିବା ଦରକାର । ଆଗପରି ଆଜି ମଧ୍ୟ ସବୁ ଜଙ୍ଗଲରେ ମଞ୍ଜି ପଡ଼ି ଫାଶୀ ଓ ଧଉରା ଗଛ ଉଠୁଛି । କିନ୍ତୁ ସେଗୁଡ଼ିକ ଛାତିଏ ଉଚ୍ଚରେ ୪୦ ସେ.ମି. ଗୋଲେଇ ହୋଇଗଲେ ପାଖ ଗାଆଁର ଲୋକ ନିଜର ଚାହିଦା ମେଣ୍ଟାଇବା ପାଇଁ ସେ ଗଛକୁ କାଟି ନେଇ ଯାଉଛନ୍ତି । ଘର ମରାମତି, ଲଙ୍ଗଳ, ଈଷ, ଶଗଡ଼ ଦଣ୍ଡା, ଫସଲରେ ବାଡ଼ ଦେବା, ଏପରିକି ଜାଳ ପାଇଁ ସେ ଗଛ ସବୁ କାଟି ନେଉଛନ୍ତି । ତେଣୁ ନୟାଗଡ଼, ଖୋର୍ଦ୍ଧା, ସୋନପୁର, ଆଠମଲ୍ଲିକ, ଅନୁଗୋଳ ଓ ଆଠଗଡ଼ ଜଙ୍ଗଲରେ ଫାଶୀ ଧଉରା, ଅସନ, ଶିମିଳି ଗଛର ଗୋଲେଇ ଛାତିଏ ଉଚ୍ଚର ୪୦ ସେ.ମି. ହୋଇଗଲେ, ସେ ଗଛ ଜଗନ୍ନାଥଙ୍କ ପାଇଁ ଉତ୍ସର୍ଗୀକୃତ ବୋଲି ଗଛରେ ଛାତିଏ ଉଚ୍ଚର ନାଲି ରଙ୍ଗର ବ୍ୟାଣ୍ଡ୍ ଲଗାଇ ଦେବାକୁ ହେବ । ନାଲି ବ୍ୟାଣ୍ଡ୍ ଚିହ୍ନିତ ଗଛ ରଥ ପାଇଁ ଉତ୍ସର୍ଗ କରାଯାଇଛି ବୋଲି ମନ୍ଦିର ପ୍ରଶାସନ ଆଖପାଖ ଅଞ୍ଚଳରେ ପ୍ରଚାର କରିଦେବେ । ଗାଁ ଗହଳର ଜଗନ୍ନାଥ ପ୍ରେମୀ ଲୋକ ଏ ଗଛକୁ କାଟିବା ତ ଦୂରର କଥା, ଏପରି ଗଛଟିଏ ଦେଖିଲେ ପାଖକୁ ଆସି ମୁଣ୍ଡିଆ ମାରିବେ । ବହୁ ଅତୀତରେ ନଦୀ ସୁଅରେ ଭାସିଗଲାବେଳେ ରଥ କାଠକୁ ସିନ୍ଦୂର ଚିହ୍ନରୁ ଚିହ୍ନି ହଡ଼ପ କରିବାର ସାହସ କେହି କରୁନଥିଲେ । ଥରେ ଠାକୁରଙ୍କୁ ଉତ୍ସର୍ଗ ହୋଇଗଲେ, ଦାରୁ ପ୍ରସାଦ ନିଜେ ନିଜକୁ ରକ୍ଷା କରିବେ ।

ଏହି ପ୍ରକାରେ ଚିହ୍ନିତ ଗଛମାନଙ୍କର ତାଲିକା କ୍ରମିକ ସଂଖ୍ୟା ସହ ମାପ ଲେଖି ନିକଟସ୍ଥ ରେଞ୍ଜ ଅଫିସ୍ ଓ ଡିଭିଜନ ଅଫିସ୍‌ରେ ରହିବ । ପ୍ରତିବର୍ଷ ୪୦ ସେ.ମି. ଗୋଲେଇର ନୂଆ ଗଛ ସନ୍ଧାନ କରି ତାକୁ ସେହିପରି ଚିହ୍ନିତ କରି ତାଲିକାଭୁକ୍ତ କରିବେ । ସେତେବେଳେ ଆଗରୁ ଚିହ୍ନିତ ଗଛର ମାପ ନେଇ ତାଲିକା ସଂଶୋଧନ କରିବେ । ଗଛଗୁଡ଼ିକ ରଥ କାଠ ଯୋଗ୍ୟ ହେଲେ ଚାଲାଣ କରି ତାଲିକାରୁ ବାଦ୍ ଦେବେ ।

ଏଠି ଗୋଟେ କଥା ଲକ୍ଷ୍ୟ କରିବାର କଥା ଯେ ଗଛର ତୁମ୍ବ ଓ ପଇ ନିର୍ମାଣ ପାଇଁ ୬ ଫୁଟିଆ ୭୨ ଖଣ୍ଡ ଫାଶୀଗଣ୍ଡି ଦରକାର । ଫାଶୀକାଠ ଗଣ୍ଡି ୬ ଫୁଟ୍ ହେବା ପାଇଁ ଶତାଧିକ ବର୍ଷ ଲାଗେ । ତେଣୁ ୬ ଫୁଟିଆ ଫାଶୀ ଗଛ କିଛି ବର୍ଷ ପରେ ନୟାଗଡ଼ ଜଙ୍ଗଲରେ ମିଳିବ ନାହିଁ । ଏହି ମାପର ଗଛ ଓଡ଼ିଶା ଜଙ୍ଗଲରେ ଯେଉଁ ଜଙ୍ଗଲ ବା ଘରୋଇ ଜମିରେ ଅଛି, ତା'ର ଏକ ତାଲିକା ପ୍ରସ୍ତୁତ କରି ରଖାଯିବା ଦରକାର । ସେସବୁ ଗଛକୁ ନାଲି ବ୍ୟାଣ୍ଡରେ ଚିହ୍ନିତ କରି ରଥ କାଠ ପାଇଁ ରହିଲା ବୋଲି ପ୍ରଚାର କରାଯିବା ଦରକାର । ନୟାଗଡ଼ ଜଙ୍ଗଲରେ ସେ କାଠ ନ ମିଳିଲେ ଅନ୍ୟ ଜାଗାରୁ ସେ କାଠ ଆଣି ପାରିବା ଅବସ୍ଥାରେ ଆମେ ରହିବା ଦରକାର । ଏସବୁ ଅଞ୍ଚଳରେ ଏ ଗଛ ୫ ଫୁଟ୍‌ରୁ ଊର୍ଦ୍ଧ୍ୱ ହୋଇଗଲେ, ସେଗୁଡ଼ିକ ମଧ୍ୟ ଚିହ୍ନିତ କରି ୬ ଫୁଟିଆ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ସେସବୁ ଗଛକୁ ତିନି ଫୁଟିଆ କାଠ ଜାଗାରେ ଯୋଗାଇ ଦେବା ଠିକ୍ ନୁହେଁ ।

ଅଖ ଓ ଦଣ୍ଡ ପାଇଁ ଦରକାର ହେଉଥିବା ୭୨ ଖଣ୍ଡ କାଠକୁ ଛାଡ଼ିଦେଲେ ବାକି ଦରକାର ହେଉଥିବା ଟାଣ କାଠର



ଚାହିଦା ଫାଶୀ ପୂରଣ କରିପାରିବ । ଉପକୂଳ ଅଞ୍ଚଳର ମାଟି ବାଲିଆ ଦୋରସା ହୋଇଥିବାରୁ ସେ ଅଞ୍ଚଳରେ ଫାଶୀ ଗଛ ସ୍ୱଚ୍ଛନ୍ଦରେ ବଢ଼ିପାରିବ। ଗଛ ରଥ କାଠ ଯୋଗ୍ୟ ହେଲେ ଉପକୂଳ ଅଞ୍ଚଳରୁ ସହଜରେ ପୁରୀକୁ ବୋହି ନେଇ ହେବ। ପୁରୀ, କଟକ, ଜଗତସିଂହପୁର, ଯାଜପୁର, କେନ୍ଦ୍ରାପଡ଼ା, ଭଦ୍ରକ ଓ ବାଲେଶ୍ୱର ଜିଲ୍ଲାରେ ରଥକାଠ ପାଇଁ ଫାଶୀ ଗଛର ଚାରା ଲୋକଙ୍କୁ ଦେଲେ ସେମାନେ ଆନନ୍ଦରେ ବାଡ଼ି କଡ଼ରେ, ଖଳା ଚାରିପଟେ ଏହାକୁ ଲଗେଇ ବଢ଼େଇବାକୁ ପୁଣ୍ୟ ମନେ କରିବେ। ଓଡ଼ିଶାର ସାମାଜିକ ବନ ପ୍ରକଳ୍ପର ଅନୁଭୂତିରୁ ମୁଁ ଦୃଢ଼ତାର ସହ କହିପାରେ ଯେ ଏ ପ୍ରକାର ବୃକ୍ଷରୋପଣ କାର୍ଯ୍ୟକ୍ରମ ଅନ୍ୟସବୁ ବୃକ୍ଷରୋପଣ କାର୍ଯ୍ୟକ୍ରମଠାରୁ ଅନେକ ଗୁଣରେ ଶସ୍ତା ଓ ସଫଳ କାର୍ଯ୍ୟକ୍ରମ ଥିଲା । ଅଧିକନ୍ତୁ ଏ କାର୍ଯ୍ୟକ୍ରମ ଆରମ୍ଭରୁ ମହାପ୍ରଭୁଙ୍କ ନାମରେ ହେଲେ ସଫଳତାହାର ବହୁ ଗୁଣରେ ବଢ଼ିଯିବ ।

ଏବେ ପଟା ପାଇଁ ଦେବଦାରୁ, କଦମ୍ବ, ମହାନିମ୍ବ, ପାଳଧୁଆ ଓ କଅଁସ କାଠ ବ୍ୟବହାର କରାଯାଉଛି। ଦେବଦାରୁ ବାଲୁଗାଁର ବରବେରା ଜଙ୍ଗଲରେ ମହାଦ୍ରୁମ ଆକାରରେ ଦେଖାଯାଏ । ପଥପାର୍ଶ୍ୱ ବୃକ୍ଷରୋପଣ କାର୍ଯ୍ୟକ୍ରମରେ କଦମ୍ବ ଓ ମହାନିମ୍ବର ଆଦର ବେଶୀ । ଏ ପ୍ରକାର କାର୍ଯ୍ୟକ୍ରମରେ ଦେବଦାରୁ ଓ ପାଳଧୁଆ ମଧ୍ୟ ଲଗାଯାଇପାରିବ । ଏହି କାର୍ଯ୍ୟକ୍ରମରେ ଲଗାଯାଉଥିବା ଗଛର ସିଂହଭାଗ ରଥ କାଠ ଗଛ ରଖିବା ପାଇଁ ବନ ବିଭାଗ ବା କାର୍ଯ୍ୟକ୍ରମ ହାତକୁ ନେଇଥିବା ଯେକୌଣସି ସଂସ୍ଥାକୁ ଅନୁରୋଧ କରାଯାଇପାରେ ବା ସରକାରୀ ନିର୍ଦ୍ଦେଶନାମା ପଠାଯାଇପାରେ ।

ଚାରା କରି ବଣ୍ଟନ କରିବା କାର୍ଯ୍ୟକ୍ରମ ପାଇଁ ଗୋଟିଏ ବର୍ଷ ଗୋଟିଏ ଜିଲ୍ଲାକୁ ନିଆଯାଇପାରେ। ଉଦାହରଣ ସ୍ୱରୂପ ପ୍ରଥମ ବର୍ଷ ପୁରୀ ଡିଏଫ୍‌ଓ ରଥକାଠ ଲଗେଇବା ପାଇଁ ଇଚ୍ଛୁକ ବ୍ୟକ୍ତିଙ୍କଠାରୁ ଦରଖାସ୍ତ ଆହ୍ୱାନ କରି ସେମାନଙ୍କୁ ଚାରା ଯୋଗାଇ ଦେବେ। ଚାରା ଲଗେଇଥିବା ଲୋକର ଠିକଣା ଓ ଚାରାର ବିବରଣୀ ଲେଖି ତା'ର ତାଲିକା ରଖିବେ। ଅତି କମ୍‌ରେ ବର୍ଷକୁ ଥରେ ଜଣେ ବନ ବିଭାଗ କର୍ମଚାରୀ ଏ ଗଛ ପରିଦର୍ଶନ କରି ରେଜିଷ୍ଟରରେ ତାଙ୍କର ମନ୍ତବ୍ୟ ଲେଖି ରଖିବେ। ଦ୍ୱିତୀୟ ବର୍ଷ ଆଉ ଏକ ଜିଲ୍ଲାରେ ସେ କାର୍ଯ୍ୟକ୍ରମ କରାଯିବ । ସବୁ ଜିଲ୍ଲାରେ ଥରେ ଏ କାର୍ଯ୍ୟକ୍ରମ ହେଲା ପରେ ଦଶମ ବର୍ଷ ପୁଣି ପୁରୀ ଜିଲ୍ଲାକୁ ଫେରିବେ। ଗୋଟିଏ ଜିଲ୍ଲାରେ ବର୍ଷକୁ ୫୦ ହଜାର ଚାରା ରୋପଣ କରାଯିବ। ଚାରା ପିଛା ବର୍ତ୍ତମାନ ହାରରେ ୩ ଟଙ୍କା କରି ଦେଢ଼ ଲକ୍ଷ ଟଙ୍କା ମନ୍ଦିର ପ୍ରଶାସନ ବହନ କରିବେ। ରଥ ନିର୍ମାଣ ପାଇଁ ଯେତେ ସଂଖ୍ୟକ ଫାଶୀକାଠ ଦରକାର, ତା'ର ପ୍ରାୟ ଅଧା ସଂଖ୍ୟକ ହାଲୁକା କାଠର ଗଣ୍ଡି ଦରକାର ହୁଏ । ତେଣୁ ୫୦ ହଜାର ଚାରାରୁ ୩୫ ହଜାର ଫାଶୀ ଓ ୧୫ ହଜାର ଦେବଦାରୁ, ମହାନିମ୍ବ, କଦମ୍ବ ଗଛର ଚାରା ପ୍ରସ୍ତୁତ କରି ବଣ୍ଟାଯିବା ଉଚିତ୍ ।

ଏ କାର୍ଯ୍ୟକ୍ରମରେ ସଫଳତା ହାର ଶତକଡ଼ା ଦଶରୁ ଅଧିକ ହେବ। ଅତି କମ୍‌ରେ ଶତକଡ଼ା ଦଶ ହେଲେ, ଚାଳିଶ ବର୍ଷ ପରେ ବର୍ଷକୁ ୫ ହଜାର ଗଛ ଉପଲବ୍ଧ ହେବ ଓ ଏହା ଚାରି ବର୍ଷର ରଥକାଠ ଚାହିଦା ପୂରଣ କରିବ। ରଥକାଠର ଚାହିଦା ପୂରଣ କରିବା ସଂଗେ ସଂଗେ ପରିବେଶର ସନ୍ତୁଳନ ରକ୍ଷା କରିବାରେ ଏ କାର୍ଯ୍ୟକ୍ରମ ସହାୟକ ହୋଇପାରିବ ।

ଅବସରପ୍ରାପ୍ତ ଭାରତୀୟ ବନ ସେବା
ଏସ୍-୯୭, ମୈତ୍ରୀ ବିହାର, ଭୁବନେଶ୍ୱର
ପିନ୍- ୭୫୧୦୨୩





# ମାନବୀୟ ଚେତନାରେ ଭକ୍ତି ରସ

**ଶାଶ୍ୱତୀ ସୌମ୍ୟା ମିଶ୍ର**

ଭକ୍ତିରେ ଭଗବାନଙ୍କର ସ୍ଥିତି ଅନନ୍ତକାଳ ପାଇଁ । ସେ କୌଣସି କାଳର ପରିଧି ମଧ୍ୟରେ ସୀମିତ ନୁହନ୍ତି । କୌଣସି ନିର୍ଦ୍ଦିଷ୍ଟ ଗୁଣର ଅଠାକାଠିରେ ଲାଖି ରହିବା ପରି ପକ୍ଷୀଟିଏ ନୁହନ୍ତି । ଅପର କି ପର କେହି ତାଙ୍କୁ ଠାବ କରିପାରେନା । ଏଣୁ ତ ସେ ପୁରୁଷ ଶ୍ରେଷ୍ଠ, ପୁରୁଷୋତ୍ତମ । ସଂସାରର ମଙ୍ଗଳ ପାଇଁ ସେ ଉଦାରତାର ନିଚ୍ଛକ ପ୍ରତିଛବିଟିଏ ତ କେବେକେବେ ଦରଦୀ ବନ୍ଧୁର ମଧୁର ଆସ୍ୱାଦନଟିଏ । ଭକ୍ତି ଭାବରେ ବନ୍ଧା ହୋଇଥିବା ସଖାଟିଏ ତ ପୁଣି ବୋଲକରା ଦାସଟିଏ । କେତେବେଳେ ବିଦୂରର ଶାଗଭଜା ତ କେବେ ସୁଦାମାର ଖୁଦ ଭଜା ଅଥବା ଶବରୀର ଅଇଁଠା ଫଳ ବାନ୍ଧି ରଖେ ତାଙ୍କୁ ଚିରଦିନ ପାଇଁ ଜନମାନସରେ ପୁରାଣ ପୃଷ୍ଠା ମାଧ୍ୟମରେ ।

ଭକ୍ତ ଏବଂ ଭଗବାନଙ୍କର ଅନାବିଳ ସମ୍ପର୍କର ମୂକସାକ୍ଷୀ ପାଲଟିଛନ୍ତି କେତେ ଯେ ଯୁଗ ତା'ର କଳନା କରିବା ନିହାତି ଭାବେ ଅସମ୍ଭବ । ଯୁଗ ଯୁଗ ଧରି ଭକ୍ତିର ନାଆକୁ ଅବିରତ ବାହି ଚାଲିଛନ୍ତି ନାବିକଟିଏ ହୋଇ ସେହି ପରମପୁରୁଷ ।

ବିଦ୍ୟାପତି ନୀଳାଦ୍ରିନାଥ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନ ପାଇ ମଧ୍ୟ କେବଳ ତାଙ୍କ ନାମ, ରୂପ, ଗୁଣ, ଯଶ ଏବଂ ଲୀଳାକୁ ଚିନ୍ତନ କରି ବାନ୍ଧି ଦେଇଛନ୍ତି ନିଜ ମନ ଏବଂ ଆତ୍ମାକୁ ସେହି ଆଧ୍ୟାତ୍ମିକ ବନ୍ଧନରେ । ସମଗ୍ର ଶରୀର ତାଙ୍କର ଭଗବଦ୍ ପ୍ରେମରେ ଉତ୍ଫୁଲ୍ଲିତ । ହୃଦୟର ପ୍ରତ୍ୟେକ କୋଣ ଅନୁକୋଣ ପ୍ରେମାଶ୍ରୁରେ ପରିମାର୍ଜିତ । କୁହାଯାଏ, ଯେତେବେଳେ ଭକ୍ତ ଭଗବାନଙ୍କର ଶରଣାଗତ ହୁଏ । ସେତେବେଳେ ତା'ର ସମସ୍ତ ଧାର୍ମିକ କ୍ରିୟା ସୁଚାରରୂପେ ସମ୍ପନ୍ନ ହେଉଥିବାର ସେ ଅନୁଭବ କରେ । ଭଗବଦ୍ ପ୍ରେମୀଟିଏ ପ୍ରତ୍ୟେକ ମୁହୂର୍ତ୍ତରେ ଶୁଦ୍ଧ ମନରେ ପ୍ରଭୁଙ୍କ ଲୀଳା, ଗୁଣାଦି ଚିନ୍ତନ କରିଥାଏ । କାରଣ ଚିନ୍ତନ ସୁଦୃଢ ହେଲେ ବୌଦ୍ଧିକ, କାୟିକ ଓ ଐନ୍ଦ୍ରିୟିକ ଭାବ ଭକ୍ତିର ଉଦ୍ରେକ ସମ୍ଭବ ହୋଇଥାଏ । ମନରେ ଦୃଢତା ନ ଥାଇ କେବଳ ଲୋକ ଦେଖାଣିଆ ଭକ୍ତିରେ କ'ଣ ଭଗବଦ୍ ପ୍ରାପ୍ତି ସମ୍ଭବ ? ତେଣୁ ସତ୍ୟ ଯୁଗର ରାଜ ପୁରୋହିତ ବିଦ୍ୟାପତିଙ୍କ ଅମ୍ଳାନ ଆଦର୍ଶ ଅପ୍ରକାଶରେ ପ୍ରକାଶିତ ଏବଂ ପ୍ରକାଶରେ ଅପ୍ରକାଶିତ ସବୁ କାଳରେ ଏକାନ୍ତ କାମ୍ୟ । ଏହା ହିଁ ସନାତନ ଧର୍ମର ଚରମ ଲକ୍ଷ୍ୟ, ଯାହାକି ପରବର୍ତ୍ତୀ ମୁହୂର୍ତ୍ତରେ ଭାଗବତ ଧର୍ମରେ ରୂପାନ୍ତରିତ ହୋଇଛି ।

ଭକ୍ତି ଭାବର ଅଭିବୃଦ୍ଧି କେବଳ ଯେ ସତ୍ୟଯୁଗର, ତାହା ନୁହେଁ, କାରଣ ତ୍ରେତା ଯୁଗରେ ବିଭୀଷଣଙ୍କ ସତ୍ୟ ପ୍ରତି ପ୍ରତିବଦ୍ଧତା ଏକାନ୍ତ ସ୍ୱାଗତଯୋଗ୍ୟ । ରାମାୟଣର ସୁନ୍ଦରକାଣ୍ଡରେ ବର୍ଣ୍ଣିତ ଅଛି ଏକଦା ବିଭୀଷଣ ଜ୍ୟେଷ୍ଠ ଭ୍ରାତା ରାବଣର ଶୁଭ ମନାସି ନିବେଦନ କରିଥିଲେ ।

ଅର୍ଥାତ୍ ହେ ରାଜନ୍ ! ଆପଣମାନେ ସମସ୍ତ ଧନରତ୍ନ, ସୁନ୍ଦର ଆଭୂଷଣ, ଦିବ୍ୟବସ୍ତୁ ଏବଂ ବିଚିତ୍ର ମଣି ମାଣିକ୍ୟ ଏବଂ ସ୍ୱୟଂ ଦେବୀ ସୀତାଙ୍କୁ ଶ୍ରୀରାମଙ୍କ ହସ୍ତରେ ଅର୍ପଣ କରି ଶୋକରହିତ ହୋଇଯିବା ଏବଂ ନିର୍ଭୟରେ କାଳାତିପାତ କରିବା, ଏହାଦ୍ୱାରା ଆମ୍ଭ କୁଳ ସମେତ ସମଗ୍ର ସଂସାରର କଲ୍ୟାଣ ହେବ । ମାତ୍ର ବିଭୀଷଣର ଏହି ଅପ୍ରିୟ ସତ୍ୟ ବଚନ ଶ୍ରବଣ କରି ଦଶାନନ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବିଭୀଷଣକୁ ପଦାଘାତ କରି ଲଙ୍କାରୁ ନିର୍ବାସିତ କଲା । ଅନନ୍ୟୋପାୟ ହୋଇ ଅତ୍ୟନ୍ତ



ଆନନ୍ଦ ଚିତ୍ତରେ ବିଭୀଷଣ ସମସ୍ତ ଆତ୍ମୀୟତାକୁ ତ୍ୟାଗ କରି ରଘୁନନ୍ଦନଙ୍କ ନିକଟକୁ ଅଗ୍ରସର ହେବାବେଳର ଚିନ୍ତାଧାରା ଅତ୍ୟନ୍ତ ସୁନ୍ଦର ଭାବରେ ରାମଚରିତ ମାନସର ସୁନ୍ଦର କାଣ୍ଡରେ ବର୍ଣ୍ଣିତ ହୋଇଅଛି ।

ଦେଖିହଉଁ ଜାଇ ଚରନ ଜଲ ଜାତା
ଅରୁନ ମୃଦୁଲ ସେଓ୍ୱକ ସୁଖଦାତା ।
ଯେ ପଦ ପରସି ତରୀ ଋଷିନାରୀ
ଦଂଡକ କାନନ ପାଓ୍ୱନକାରୀ ।
ଯେ ପଦ ଜନକ ସୁତାଁ ଉର ଲାଏ
କପଟ କୁରଂଗ ସଂଗ ଧରି ଧାଏ ।
ହର ଉରସର ସରୋଜ ପଦ ଜେଇ
ଅହୋ ଭାଗ୍ୟ ମୈଂ ଦେଖି ହଉଁ ତେଇ ।
(ରାମଚରିତ ମାନସ ସୁନ୍ଦରକାଣ୍ଡ)

ଭାବୁଛନ୍ତି ବିଭୀଷଣ, ମୁଁ ଯାଇ ପ୍ରଭୁଙ୍କ ପାଦପଦ୍ମ ଦର୍ଶନ କରିବି, ଯେଉଁ ପାଦପଦ୍ମ ଅରୁଣ, ମୃଦୁଳ ଓ ସେବକଙ୍କୁ ସୁଖପ୍ରଦ । ଯେଉଁ ପାଦକୁ ସ୍ପର୍ଶ କରି ଗୌତମ ଋଷିଙ୍କ ପତ୍ନୀ ଅହଲ୍ୟା ମୁକ୍ତି ପାଇଲେ, ଯେଉଁ ପାଦ ଦଣ୍ଡକାରଣ୍ୟକୁ ପବିତ୍ର କରିଛି, ଯେଉଁ ପାଦକୁ ଜନକ ନନ୍ଦିନୀ ସୀତା ନିଜ ବକ୍ଷସ୍ଥଳରେ ଧାରଣ କରିଛନ୍ତି, ଯେଉଁ ପାଦ କପଟ କୁରଙ୍ଗର ଅନୁଧାବନ କଲା ଏବଂ ଯାହା ମହା ଶିବଙ୍କ ଉର ସ୍ଥଳ ରୂପକ ପୁଷ୍କରିଣୀର କମଳ, ଅହୋ ଭାଗ୍ୟ ! ମୁଁ ଆଜି ସେଇ ପଦଦ୍ୱୟ ଦର୍ଶନ କରିବି, ଏକଥା ଚିନ୍ତା କରି ଶିହରିତ ହେଉଛନ୍ତି ବିଭୀଷଣ । ଉକ୍ତ ପଂକ୍ତିରୁ ସତ୍ୟଯୁଗର ବିଦ୍ୟାପତିଙ୍କ ଭାବଭକ୍ତି ଅଖଣ୍ଡିତ ହୋଇ ବିଭୀଷଣଙ୍କ ହୃଦୟରେ ସକ୍ରିୟ ହୋଇଥିବା ସ୍ପଷ୍ଟ ରୂପେ ପରିଲକ୍ଷିତ ହୋଇଅଛି ।

କେବଳ ଯେ ସତ୍ୟ ଏବଂ ତ୍ରେତାରେ ଭକ୍ତିଭାବର ଉଦ୍ରେକ ଏବଂ ଅଭିବୃଦ୍ଧି ତାହା ନୁହେଁ, ଦ୍ୱାପରରେ ମଧ୍ୟ ଏହା ମହାତ୍ମା ଅକ୍ରୁରଙ୍କ ପାବନ ଚରିତ୍ରରେ ଦୃଷ୍ଟିଗୋଚର ହୁଏ । ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଦରେ ବର୍ଣ୍ଣିତ ଅଛି ଯେତେବେଳେ ମଥୁରାଧିପତି କଂସ ଧନୁର୍ଯଜ୍ଞ ଛଳରେ ରାମକୃଷ୍ଣଙ୍କୁ ଆଣିବା ପାଇଁ ଅକ୍ରୁରଙ୍କୁ ବୃନ୍ଦାବନ ପଠାଇଲା, ସେତେବେଳେ ଅକ୍ରୁର ଚିନ୍ତା କରୁଛନ୍ତି :

କିଂ ମୟାଚରିତଂ ଭଦ୍ରଂ କିଂ ତପ୍ତଂ ପରମଂ ତପଃ
କିଂ ବାଥାପ୍ୟର୍ହତେ ଦତ୍ତଂ ଯଦ୍ ଦ୍ରକ୍ଷ୍ୟାମ୍ୟଦ୍ୟ କେଶବମ୍ ।
(ଭାଗବତ)

ଅର୍ଥାତ୍, ମୁଁ କେଉଁ ସତ୍‌କର୍ମ କରିଛି, କେଉଁ ପରମ ତପସ୍ୟା କରିଛି, ଅଥବା ସତ୍‌ପାତ୍ରରେ କ'ଣ ବା ଦାନ କରିଛି ଯେ ଯାହାଦ୍ୱାରା କେଶବଙ୍କ ଦର୍ଶନ କରିବି ।

ପୁଣି ପୁରୁଷୋତ୍ତମଙ୍କ ପରମ କରୁଣା ଉପରେ ଆସ୍ଥା ରଖୁଛନ୍ତି ଅକ୍ରୁର । ମନେ ମନେ ଉଲ୍ଲସିତ ହେଉଛନ୍ତି ଏବଂ ଭାବୁଛନ୍ତି :

ମୈବଂ ମମାଧମସ୍ୟାପି ସ୍ୟାଦେବା ଚ୍ୟୁତ ଦର୍ଶନମ୍
ହ୍ରିୟମାଣଃ କାଳନଦ୍ୟା କ୍ୱଚିତ୍ତରତି କଶ୍ଚନ ।।
(ଭାଗବତ)

ଅର୍ଥାତ୍ ଏସବୁ ଅନାବଶ୍ୟକ ଚିନ୍ତାର କୌଣସି ଆବଶ୍ୟକତା ନାହିଁ । ମୁଁ ଅଧମ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଦର୍ଶନ ଯେ କରିପାରିବି ନାହିଁ ତାହା ନୁହେଁ କାରଣ ନଦୀସ୍ରୋତରେ ଭାସି ଯାଉଥିବା ଘାସକୁଟାଟିଏ ମଧ୍ୟ ବେଳେବେଳେ କୂଳରେ ଲାଗିଯାଇଥାଏ, ସେହିପରି କର୍ମବଶତଃ କାଳନଦୀ ଭସେଇ ନେଉଥିବା ଜୀବମାନଙ୍କ ମଧ୍ୟରୁ କଦାଚିତ୍ କେହି ଜଣେ ସଂସାର ସାଗର ଉତ୍ତୀର୍ଣ୍ଣ ହୋଇଥାଏ ।

ନିଜ ଚତୁଃପାର୍ଶ୍ୱର ଅନୁକୂଳ ପରିବେଶକୁ ଦେଖି ଅଧିକ ଆଶାବାଦୀ ହୋଇପଡୁଛନ୍ତି ଅକ୍ରୁର ।

ଅର୍ଥାତ୍ – ଭାବୁଛନ୍ତି ଅକ୍ରୁର ମୁଁ ନିଶ୍ଚୟ ଶ୍ରୀକୃଷ୍ଣଙ୍କ ମୁଖ ଦର୍ଶନ କରିବି, ଯେଉଁ ମୁଖ ସୁରମ୍ୟ କପାଳ ଏବଂ ସୁନ୍ଦର ନାସିକାଯୁକ୍ତ, ଦରହାସଯୁକ୍ତ ଦୃଷ୍ଟିପାତ ଏବଂ ରକ୍ତକମଳ ତୁଲ୍ୟ



ନୟନ ଦ୍ୱାରା ବିଭୂଷିତ ତଥା ସୁନ୍ଦର କେଶରାଜିରେ ଆଚ୍ଛାଦିତ । ଏସବୁକୁ ମୁଁ ନିଶ୍ଚିତ ଦର୍ଶନ କରିବି କାରଣ ମୃଗମାନେ ମୋ ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କରୁଛନ୍ତି ।

ଉପରୋକ୍ତ ବିଶ୍ଳେଷଣରୁ ସ୍ପଷ୍ଟ, ଭକ୍ତି ଭାବର ମୂଳପିଣ୍ଡ ହେଉଛି ବିଶ୍ୱାସ ଏବଂ ବିଶ୍ୱାସର ମୂଳଦୁଆ ଉପରେ ଏ ସମଗ୍ର ସୃଷ୍ଟି ଦଣ୍ଡାୟମାନ । ବିଶ୍ୱାସରୁ ଭକ୍ତି ଏବଂ ଭକ୍ତିରୁ ମୁକ୍ତି । କେବଳ ଯେ ଏହି ପୌରାଣିକ ଚରିତ୍ରମାନେ ଭକ୍ତିଭାବର ବଶବର୍ତ୍ତୀ ହୋଇଛନ୍ତି ତାହା ନୁହେଁ, ପୁରାତନ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ସବୁ କାଳରେ ଏହି ମହାନ୍ ଭକ୍ତମାନଙ୍କର ଅଭ୍ୟୁଦୟ ହୋଇଛି ଏବଂ ନିଜର ଅପାର ଭକ୍ତି ମାଧ୍ୟମରେ ସେମାନେ ମହାପୁରୁଷ ବୋଲାଇଛନ୍ତି । ସୁଦାମାଙ୍କଠାରୁ ଆରମ୍ଭ କରି ସାଲବେଗଙ୍କ ପର୍ଯ୍ୟନ୍ତ, ଚୈତନ୍ୟଙ୍କଠାରୁ ଆରମ୍ଭ କରି ଦାସିଆ ବାଉରୀ ପର୍ଯ୍ୟନ୍ତ ସମସ୍ତେ ଭକ୍ତିଭାବରେ ବଶୀଭୂତ ହୋଇ କୃଷ୍ଣ ପ୍ରେମର ବିରହ ଜ୍ୱାଳାରେ ଜର୍ଜରିତ ହୋଇଛନ୍ତି । କୁହାଯାଏ, ମହାପୁରୁଷମାନେ ସାଧାରଣତଃ ଦୁଇଟି ଭାବ ନେଇ ଭଗବାନଙ୍କ ସଚ୍ଚିଦାନନ୍ଦ ସ୍ୱରୂପକୁ ଉପଲବ୍‌ଧି କରିଥାଆନ୍ତି । ପ୍ରଥମଟି ବିରହ ଏବଂ ଦ୍ୱିତୀୟଟି ମିଳନ । ଯେଉଁଠି ବିରହ ନାହିଁ ସେଠି ମିଳନର କୌଣସି ଆନନ୍ଦ ନାହିଁ  କାରଣ ବିରହ ସର୍ବଦା ଭଗବତ୍ ସତ୍ତାର ଉପଲବ୍‌ଧି କରାଇଥାଏ । ଯେଉଁଠାରେ ଭଗବତ୍ ସତ୍ତାର ସ୍ପର୍ଶ ଅଛି ସେ ମିଳନରେ ସ୍ୱର୍ଗୀୟ ସୁଖର ଆସ୍ୱାଦନ ଅଛି । ତେଣୁ ଭଗବାନ ଏବଂ ତାଙ୍କଦ୍ୱାରା ରଚିତ ସ୍ୱର୍ଗୀୟ ନନ୍ଦନକାନନରେ ଭକ୍ତି ରୂପକ ସୁବାସକୁ ସଞ୍ଚରିତ କରୁଥିବା ପାରିଜାତ ପୁଷ୍ପ ସଦୃଶ ମହାତ୍ମାମାନେ ସଦାକାଳେ ଚିର ନମସ୍ୟ ।

ଦରଖା ପାଟଣା, କଲ୍ୟାଣୀ ନଗର

କଟକ – ୧୩

# କଳା ଚିକ୍‌ଚିକ୍ ଚେହେରା

**ସଂଗ୍ରାମ କେଶରୀ ମହାନ୍ତି**

କଳା ଚିକ୍‌ଚିକ୍ ଚେହେରାକୁ ଚକାଆଖି ତୋର
ଲାଲ୍ ଟୁକ୍ ଟୁକ୍ ଓଠକୁ ଯେ ହସ ମନୋହର
ହାୟ ତୁଇ ଜୀବନ ଧନ ମୋର
ଆହା– ଗଳାର ମାଳି ମୋର
ତୋର ବିନାରେ ମୋର ଆକୁଳ ଅନ୍ତର ।

ଶଙ୍ଖବାଜେ ଘଣ୍ଟାବାଜେ ବାଜେ କରତାଳି
ହରିବୋଲ ହୁଳହୁଳି ପଡଇ ଉଚ୍ଛୁଳି
ରଥଯାଏ ଗଡିଗଡି ଚକ ଯାଏ ଗଡି
ଚାଲିଛୁ ତୁ ହଲିଝୁଲି ନନ୍ଦିଘୋଷ ଚଢି
ଯିବାର ଲାଗି ମାଉସୀର ଘର ହୋ ସାଆନ୍ତେ
ମନହୁଏ ତର ତର ତୋର ।



କେରି କେରି ପାଟସୂତା କାନ୍ଧରେ ପଇତା
ତୁଳସୀ ଦୟଣା ମାଳ ସୁବର୍ଣ୍ଣର ଚିତା
ଯତନେ ସାଜି ପିନ୍ଧିଛୁ ପାଟପୀତାମ୍ୱର
ଗଳାରେ କୌସ୍ତୁଭମଣି କରେ ଝଲମଲ

ଦେଖିଦେଲେ ଉଲୁସେ ଅନ୍ତର ହୋ ସାଆନ୍ତେ
ତତେ ଛାଡି ଯିବିନି ମୁଁ ଘର ।

ଜେଲ୍‌ରୋଡ୍, ବାରିପଦା

ପୋ– ଭଞ୍ଜପୁର, ଜିଲ୍ଲା– ମୟୂରଭଞ୍ଜ



# ଶ୍ରୀଜଗନ୍ନାଥଙ୍କ ମହିମା ଅନନ୍ତ, କଥା ବି ଅନନ୍ତ

**ଶିବ ପ୍ରସାଦ ତ୍ରିପାଠୀ**

ଶ୍ରୀଜଗନ୍ନାଥାଷ୍ଟକମ୍‌ରେ ଆଦିଶଙ୍କର ଶ୍ରୀକ୍ଷେତ୍ରର ତିନି ଠାକୁରଙ୍କ ମହିମା ବର୍ଣ୍ଣନା ସହ ପ୍ରଣିପାତ ଜଣାଇଛନ୍ତି । ଏହି ଅଷ୍ଟପଦାବଳୀ ପରି ଯୁଗେ ଯୁଗେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନାରେ ବିଜ୍ଞ ପଣ୍ଡିତବର୍ଗ ଶତମୁଖର । ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ରକୁ ସ୍କନ୍ଦପୁରାଣ, ବାମଦେବ ସଂହିତା ଓ ସୁତପୁରାଣ ପ୍ରଭୃତିରେ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।



ଆବହମାନ କାଳରୁ ଆମ ଦେଶ ଧର୍ମ, ସଂସ୍କୃତି ଓ ସଭ୍ୟତାର ମୂଳାଧାର ଭାବରେ ସ୍ୱୀକୃତ । ତା’ ମଧ୍ୟରେ ପୁଣ୍ୟତୋୟା ଉତ୍କଳ ଭୂମି ବା ଓଡ଼ିଶା ଜଗତର ନାଥଙ୍କ ଲୀଳାଭୂମି ଭାବରେ ଆର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ସମ୍ମିଳିତ ଏକ ଉଦାର ସ୍ୱରୂପର ଉଦ୍‌ଗାତା । କୋଟି କୋଟି ଜନତାର ଆଶା, ଆକାଂକ୍ଷା ଓ ଆସ୍ଥାର ପ୍ରତୀକ ମହାପ୍ରଭୁ ଶ୍ରୀଜଗନ୍ନାଥ ।

ଦାରୁଦେବତା ଶ୍ରୀଜଗନ୍ନାଥ ଯୁଗେ ଯୁଗେ ଓଡ଼ିଶାବାସୀଙ୍କୁ ଆଶ୍ୱାସନା, ସାହସ, ଶକ୍ତି ଓ ଚେତନା ପ୍ରଦାନ କରିଆସିଛନ୍ତି । ମୁକ୍ତି ଓ ମୋକ୍ଷ ଦେଇଛନ୍ତି ଭକ୍ତମାନଙ୍କୁ । ଏଣୁ ଆମ ଶାସ୍ତ୍ର କହେ–

ଦୋଳେଷ୍ଟ ଦୋଳଗୋବିନ୍ଦ, ଚାପେଷ୍ଟ ମଧୁସୂଦନ
ରଥେତୁ ବାମନଂଦୃଷ୍ଟ୍ୱା, ପୁନର୍ଜନ୍ମ ନ ବିଦ୍ୟତେ ।

ବୈଦିକ ଯୁଗରେ ଦ୍ରାବିଡ଼ମାନେ ମହୋଦଧିର ପୂର୍ବତଟରେ ଦାରୁ ଉପାସନା କରୁଥିଲେ । ଉତ୍କଳ ଭୂଖଣ୍ଡକୁ ଦୈତ୍ରଯାତ୍ରା କାଳରେ ବୈଦିକ ଯଜ୍ଞ ତଥା ଅନ୍ୟ କର୍ମକର୍ମାଣି ପରେ ବ୍ରହ୍ମାଙ୍କ ପଞ୍ଚମ ପୁରୁଷ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଯଜ୍ଞରେ ପୂଜାର୍ଚ୍ଚିତ ମହାଦାରୁକୁ ଚତୁର୍ଦ୍ଧାମୂର୍ତ୍ତିରେ ରୂପାନ୍ତର କରିଥିଲେ । ପୂର୍ବେ ଆର୍ଯ୍ୟମାନେ ବିଗ୍ରହ ଆରାଧନା ପ୍ରତି ଆଗ୍ରହୀ ବା ଆସକ୍ତ ହୋଇନଥିଲେ ମଧ୍ୟ କ୍ରମେ ଏହି ମହାଦାରୁକୁ ଅନନ୍ତ ବ୍ରହ୍ମାଣ୍ଡର ସ୍ୱରୂପ ବୋଲି ବିଶ୍ୱାସ କରିବାକୁ ଲାଗିଲେ ଏବଂ ରଜା ଇନ୍ଦ୍ରଦ୍ୟୁମ୍ନ ଦାରୁ ଉପାସନା ସ୍ଥଳରେ ପହଞ୍ଚିଥିଲେ ବୋଲି ଗବେଷକମାନେ ମତପ୍ରକାଶ କରିଛନ୍ତି । ତେଣୁ ସାତହଜାର ବର୍ଷ ପୂର୍ବରୁ ଚତୁର୍ଦ୍ଧାମୂରତି ବୈଦିକ ଦେବତା ରୂପରେ ମହିମା ମଣ୍ଡିତ । ନିର୍ଗୁଣ ଓ ସଗୁଣ ବ୍ରହ୍ମଙ୍କର ଏକାତ୍ମତାର ପ୍ରତୀକ ରୂପରେ ବିବେଚିତ ହେଲେ ଏହି ଦେବତା ।

ଶ୍ୱେତ ଶ୍ୱେତରୋପନିଷଦରେ ମଧ୍ୟ ଆର୍ଯ୍ୟଋଷିଗଣ ଦାରୁରେ ପରମ ପୁରୁଷର ପରିକଳ୍ପନା କରିଛନ୍ତି ।

କୈବଲ୍ୟ ଉପନିଷଦରେ ମଧ୍ୟ ଦାରୁବ୍ରହ୍ମଙ୍କ ମୂର୍ତ୍ତିରୂପର ପରିକଳ୍ପନା ବର୍ଣ୍ଣିତ । ତେଣୁ ଏହା ସ୍ପଷ୍ଟ ଯେ ପୂର୍ବରୁ ଦ୍ରବିଡ଼ମାନଙ୍କ ଦ୍ୱାରା ସାଗରର ପୂର୍ବତଟରେ ଉପାସନା କରାଯାଉଥିବା ଦାରୁରୁ ଆର୍ଯ୍ୟମାନଙ୍କ ଦ୍ୱାରା ଅପାଣିପାଦ (ହସ୍ତପଦ ବିହୀନ) ବିଗ୍ରହ



ନିର୍ମାଣ କରାଯାଇ ଶ୍ରୀଜଗନ୍ନାଥ, ବଳଭଦ୍ର ସ୍ୱାମୀ ଓ ଭଗବତୀ ସୁଭଦ୍ରାଙ୍କର ଆରାଧନା କରାଗଲା । ମୂଳତଃ ଦ୍ରାବିଡ଼ ଦେବତା ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆର୍ଯ୍ୟ, ବୌଦ୍ଧ, ଜୈନ ଓ ଶିଖ୍ ଆଦି ଧର୍ମାବଲମ୍ବୀଙ୍କର ମଧ୍ୟ ଗ୍ରହଣୀୟ ଆରାଧ୍ୟ ଦେବତା ଭାବରେ ପୂଜିତ । ଏପରିକି ଦରିଆପାରି ଦେଶଗୁଡ଼ିକରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ଆରାଧନା ଆରମ୍ଭ ହେଲା । ଓଡ଼ିଶା ଭୂଖଣ୍ଡରେ ଭୌମ ରାଜତ୍ୱ କାଳରେ ତନ୍ତ୍ରର ମାହାତ୍ମ୍ୟ ବୃଦ୍ଧି ପାଇଥିଲା । ଏହି କାଳରେ ଶାକ୍ତ ତାନ୍ତ୍ରିକଗଣ ଶ୍ରୀକ୍ଷେତ୍ରକୁ ଏକ ତନ୍ତ୍ରପୀଠ ଭାବରେ ସ୍ୱୀକାର କରିଥିଲେ । ସେମାନେ ବଳଭଦ୍ରଙ୍କୁ ତାରା, ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ଓ ଜଗନ୍ନାଥଙ୍କୁ ଦକ୍ଷିଣକାଳୀ ଭାବରେ ବିବେଚନା କରିଥିଲେ । ତେଣୁ ଉଲ୍ଲେଖ ଅଛି–

ତାରାଯନ୍ତ୍ର ମହାଶେଷ ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମ ଚକ୍ରେ ଜଗନ୍ନାଥ ଦକ୍ଷିଣ କାଳିକା ସ୍ୱୟମ୍ ।

ବିଭିନ୍ନ ତନ୍ତ୍ରଶାସ୍ତ୍ରରେ ଓଡ଼ିଶା ତନ୍ତ୍ରସାଧନାର ଆଦିଭୂମି ଭାବରେ ବର୍ଣ୍ଣିତ । ସହରାଞ୍ଚଳ ସମେତ ପ୍ରତ୍ୟେକ ଗ୍ରାମାଞ୍ଚଳରେ ଗ୍ରାମଦେବତୀଙ୍କ ଆସ୍ଥାନ ରହିଛି । 'କାଳିକା ପୁରାଣ'ର ବର୍ଣ୍ଣନାନୁସାରେ ବିଶ୍ୱର ପ୍ରଧାନ ତନ୍ତ୍ର ପୀଠ ଉଡ୍ଡୀୟାନ ତନ୍ତ୍ରକ୍ଷେତ୍ର ଯାଜପୁରରେ ପ୍ରତିଷ୍ଠିତ । ଓଡ଼ିଶା ଶ୍ରେଷ୍ଠ ତନ୍ତ୍ରସାଧକମାନଙ୍କର ନିବାସସ୍ଥଳ । ଭୌମକର ବଂଶର ରାଜାମାନେ ଉଡ୍ଡୀୟାନ ପୀଠରେ ରାଜଧାନୀ ପ୍ରତିଷ୍ଠା ସମେତ ତନ୍ତ୍ର ଆରାଧନା କ୍ଷେତ୍ରରେ ବ୍ୟାପକ ବିକାଶ ସାଧନ କରିଥିଲେ । ଶାକ୍ତତନ୍ତ୍ରର ବିକାଶ ପ୍ରକ୍ରିୟାରେ ଶ୍ରୀମନ୍ଦିର ପରିସରରେ ମହାଭୈରବୀ ବିମଳାଙ୍କ ମନ୍ଦିର ପ୍ରତିଷ୍ଠା ଦ୍ୱାରା ପୁରୀ ଏକ ବିଶ୍ୱବିଦିତ ତନ୍ତ୍ର କ୍ଷେତ୍ରର ମାନ୍ୟତା ଲାଭ କରିଛି ତଥା ପୁରୀ ସହରର ବିଭିନ୍ନ ସ୍ଥାନରେ ହରଚଣ୍ଡୀ ବାସେଳୀ, ମଙ୍ଗଳା, ଶୀତଳା, ଚର୍ଚ୍ଚିକା, ଶ୍ୟାମାକାଳୀ, ଇନ୍ଦ୍ରାଣୀ ଏବଂ ସର୍ବୋପରି ରତ୍ନସିଂହାସନରେ ଜଗତରନାଥ ଶ୍ରୀଜଗନ୍ନାଥ ଏବଂ ବଳଭଦ୍ର ମହାପ୍ରଭୁଙ୍କ ସହ ଭଗବତୀ ସୁଭଦ୍ରାଙ୍କ ଆରାଧନା ଏହି ମତକୁ ବଳିଷ୍ଠ କରୁଛି ବୋଲି 'କରୁଣାମୟୀ ସମଲେଶ୍ୱରୀ' ପୁସ୍ତକରେ ଉଲ୍ଲେଖିତ ।

ଇତିହାସ କହେ, ଭୌମକର ଯୁଗରେ ଯବନ ଦୌରାତ୍ମ୍ୟଜନିତ କାରଣରୁ ଚତୁର୍ଦ୍ଧାମୂର୍ତ୍ତି ସୋନପୁର ଅଞ୍ଚଳରେ ୧୪୪ ବର୍ଷକାଳ ପାତାଳି ହୋଇ ରହିଲେ । ଅଧୁନା ଉକ୍ତ ସ୍ଥାନକୁ ପାତାଳି ଶ୍ରୀକ୍ଷେତ୍ର କୁହାଯାଉଛି । ନବମ ଶତାବ୍ଦୀର ପ୍ରାରମ୍ଭରେ ଆଦି ଶଙ୍କରାଚାର୍ଯ୍ୟ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଉଦ୍ଧାର କରି ପୁରୀକୁ ଆଣିଲେ ଓ ପ୍ରଥମ ଯଯାତିକେଶରୀଙ୍କ ଦ୍ୱାରା ନିର୍ମିତ ଭବ୍ୟ ମନ୍ଦିରରେ ପ୍ରତିଷ୍ଠା କଲେ । ଏହି ମନ୍ଦିର ହିଁ ଶ୍ରୀମନ୍ଦିର । କଥିତ ଅଛି, ଶ୍ରୀଜଗନ୍ନାଙ୍କଠାରେ ମହାବିଷ୍ଣୁତ୍ୱ ଆରୋପଣ କାମନାରେ ଆଦିଶଙ୍କରାଚାର୍ଯ୍ୟ ନେପାଳ ନରେଶ ଶଙ୍କରଦେବଙ୍କଠାରୁ ଜୀବନ୍ତ ଶାଳଗ୍ରାମ ଆଣି ଠାକୁରଙ୍କ ନାଭି କମଳରେ ସ୍ଥାପନ କଲେ । ପରବର୍ତ୍ତୀ କାଳରେ ଚୋଡ଼ଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀରେ ଶ୍ରୀମନ୍ଦିରର ଜୀର୍ଣ୍ଣସଂସ୍କାର କରାଇ ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରୀୟଦେବତା ଭାବରେ ଗ୍ରହଣ କଲେ । ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଉପାସନାରୁ ଜନ୍ମ ନେଇଥିବା ଜଗନ୍ନାଥ ସଂସ୍କୃତିର ଉଦ୍ଭବ ଘଟିଥିଲା । ପ୍ରାଗ୍ ବୈଦିକ ଯୁଗରୁ ଦିବ୍ୟ ନୀଳାଚଳରେ ଦାରୁ ଉପାସନାର ପ୍ରବହମାନ ଧାରା ସଂପର୍କରେ ଋଗ୍‌ବେଦରେ ଉଲ୍ଲିଖିତ ଥିବାରୁ ପ୍ରମାଣିତ ହୁଏ ଯେ ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ପ୍ରାଗ୍‌ବୈଦିକ ସଂସ୍କୃତି ବୋଲି 'ଶ୍ରୀଜଗନ୍ନାଥ ସଂସ୍କୃତି' ଗ୍ରନ୍ଥରେ ଗବେଷକ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର ମତବ୍ୟକ୍ତ କରିଛନ୍ତି ।

ବାଲ୍ମୀକି ରାମାୟଣର ଉତ୍ତରାକାଣ୍ଡର ଏକ ଶ୍ଳୋକରେ ରଘୁକୁଳ ତିଳକ ପ୍ରଭୁ ଶ୍ରୀରାମଚନ୍ଦ୍ର ରାକ୍ଷସରାଜ ବିଭୀଷଣଙ୍କୁ ଶ୍ରୀଜଗନ୍ନାଥଙ୍କୁ ଆରାଧନା କରିବା ନିମନ୍ତେ ପରାମର୍ଶ ଦେଉଥିଲେ ।

କିଂ ଚାନ୍ୟାତ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳଃ
ଆରାଧୟ ଜଗନ୍ନାଥ ମିକ୍ଷାକୁ କୁଳ ଦୈବତମ୍ ।

'ଜଗନ୍ନାଥ' ଶବ୍ଦ ଏହିଠାରେ ହିଁ ସର୍ବପ୍ରଥମ ଥର ପାଇଁ ବ୍ୟବହୃତ ହୋଇଥିଲା ବୋଲି ଗବେଷକମାନେ ମତବ୍ୟକ୍ତ କରିଛନ୍ତି । ଶ୍ରୀମନ୍ଦିରରେ ପ୍ରଚଳିତ ବିଭୀଷଣ ବନ୍ଦାପନା ନୀତି ଉପରୋକ୍ତ ଶ୍ଳୋକର ପ୍ରାମାଣିକତାକୁ ପ୍ରକଟ କରୁଛି । ପୁନଶ୍ଚ



ବେଦୋତ୍ତର ପୁରାଣ ସାହିତ୍ୟ ଯଥା ବ୍ରହ୍ମ ପୁରାଣ, ନାରଦ ପୁରାଣ, ମତ୍ସ୍ୟ ପୁରାଣ, ଗରୁଡ ପୁରାଣ, ପଦ୍ମ ପୁରାଣ ଓ ବିଷ୍ଣୁ ପୁରାଣ ଆଦିରେ ଶ୍ରୀଜଗନ୍ନାଥ ତତ୍ତ୍ୱ ଓ ଏ ସମ୍ବନ୍ଧୀୟ ତଥ୍ୟମାନ ବର୍ଣ୍ଣିତ। ଅନେକେ ପ୍ରଶ୍ନ କରନ୍ତି ଯେ, ବିଷ୍ଣୁ ସହସ୍ର ନାମରେ ଶ୍ରୀଜଗନ୍ନାଥଙ୍କ ନାମୋଲ୍ଲେଖ କାହିଁକି ହୋଇନାହିଁ। ଶ୍ରୀଜଗନ୍ନାଥ ସ୍ୱୟଂ ମହାବିଷ୍ଣୁ ହୋଇଥିବାରୁ ବିଷ୍ଣୁ ସହସ୍ର ନାମରେ ତାଙ୍କ ନାମ ଉଲ୍ଲେଖ ନାହିଁ ବୋଲି ଭାଷ୍ୟକାରମାନେ ମତବ୍ୟକ୍ତ କରିଛନ୍ତି ।ପରବର୍ତ୍ତୀ କାଳରେ କ୍ରମେ ଓଡ଼ିଶାର ପୁରପଲ୍ଲୀ ସମେତ ଦେଶ ବିଦେଶର ବିଭିନ୍ନ ପ୍ରାନ୍ତରେ ଶ୍ରୀଜଗନ୍ନାଥଙ୍କ ଆରାଧନା ନିମନ୍ତେ ଛୋଟବଡ଼ ହଜାର ହଜାର ମନ୍ଦିର ପ୍ରତିଷ୍ଠିତ ହୋଇଛି। ବ୍ରହ୍ମଦେଶର ପ୍ରୋମ୍ ନଗରୀରେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ବହୁ ପ୍ରାଚୀନ ବୋଲି ଐତିହାସିକ ପ୍ରାମାଣିକତା ରହିଛି । ଅସୀମ ଆକାଶ ଓ ଅକଳନ ବାରାନିଧି ପରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା ଅନନ୍ତ, କଥା ବି ଅନନ୍ତ ।

ତିନିଠାକୁରଙ୍କ ଅଧିଷ୍ଠାନ ବା ବିଜେସ୍ଥାନ ରତ୍ନସିଂହାସନ ଉପରକୁ ଆରୋହଣ ନିମନ୍ତେ ସେବାୟତମାନଙ୍କ ବ୍ୟତୀତ କେବଳ ନେପାଳ ନରେଶଙ୍କ ଅଧିକାର ରହିଥିବାରୁ ଶଙ୍କରଦେବ ପ୍ରସଙ୍ଗ ମଧ୍ୟ ପ୍ରମାଣିତ ହେଉଛି ।

ପୁରୀ ଗୋବର୍ଦ୍ଧନ ପୀଠାଧୀଶ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଦଣ୍ଡଧାରଣ ସମୟରେ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟଦେବତା ଭାବରେ ସ୍ମରଣ କରନ୍ତି। ଶ୍ରୀମନ୍ଦିର ଭିତରକୁ ଦଣ୍ଡଧାରଣ କରି ପ୍ରବେଶ କରିବା ଓ ଗମ୍ଭୀରାରେ ଆସନାସୀନ ହୋଇ ଆରାଧନା କରିବା ନିମନ୍ତେ ସେ ଅଧିକାରପ୍ରାପ୍ତ। ଆଦି ଶଙ୍କରାଚାର୍ଯ୍ୟ ପୁରୀରେ ଚତୁର୍ଦ୍ଧାମ ମଧ୍ୟରୁ ଗୋଟିଏ ଧାମ ପୂର୍ବାମ୍ନାୟ ଗୋବର୍ଦ୍ଧନ ଧାମ ବା ଗୋବର୍ଦ୍ଧନ ମଠ ବା ଗୋବର୍ଦ୍ଧନ ପୀଠ ସ୍ଥାପନ କରିବା ପରେ ବିଭିନ୍ନ ସଂପ୍ରଦାୟର ବହୁ ସାଧୁସନ୍ଥ ଶ୍ରୀକ୍ଷେତ୍ରକୁ ଆସି ସର୍ବଧର୍ମ ଓ ସର୍ବମତ ସମନ୍ୱୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀଜଗନ୍ନାଥଙ୍କ ସେବାରେ ନିଜକୁ ନିୟୋଜିତ କରିଛନ୍ତି। ମହାଭାରତ ଯୁଗରେ ମଧ୍ୟ ଜଗନ୍ନାଥ ଧର୍ମ ଥିଲା ଭାରତର ରାଷ୍ଟ୍ରଧର୍ମ।

ବଡ଼ବଜାର, ସମ୍ବଲପୁର-୩

# ବିଲୀନ

ଡକ୍ଟର ନିବେଦିତା ମହାନ୍ତି

ଏ ଆଖି ଦେଖିଛି ତୁମ ଚକାଆଖି
ଆଖିରେ ଭରିଛି ତୁମର ପ୍ରତୀକ୍ଷା
ହଜିଯାଇଛି ଏ ଆଖି ଦୁଇ ଯାହା
ଅମାନିଆ ଆଖି ପାଏ ନାହିଁ ରାହା ।

ଏ ଦୁଇ ହାତର ବ୍ୟାକୁଳିତ ଆଶା
ଛୁଇଁବାକୁ ତୁମ କଳା ବଦନ
ତୁମରି ପରଶ ଆତ୍ମାରେ ଭିଜି
ଲିଭିଯାଉ ଏ ମୋ ପ୍ରାଣ ସ୍ପନ୍ଦନ ।



ଥକା ପାଦ ଦୁଇ ଚାଲିଛି ଚାଲିଛି
ତୁମରି ଦୁଆରେ ଅଟକି ରହୁ
ତୁମ ନନ୍ଦିଘୋଷ ରଥର ପଛରେ
ମୁଠାଏ ଧୂଳି ସେ ପାଲଟି ଯାଉ ।

ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ
କିସ୍, କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରରେ ମହାବୀର ଉପାସନା

**କାଞ୍ଚି ନାରାୟଣ ମହାନ୍ତି**

ବିଶ୍ୱ ବ୍ରହ୍ମାଣ୍ଡର ନାୟକ ପୁଣି ଅନାଦି କାଳରୁ ସର୍ବ ଉପାସ୍ୟ ଦେବତା । ସେ ଅଜ୍ଞେୟ। କେତେ ମତ, କେତେ ତତ୍ତ୍ୱ, କେତେ ଧର୍ମ ଓ କେତେ ଦର୍ଶନ, କେତେ ଶରଣାଗତି, କେତେ ଆକ୍ରମଣ, କେତେ ବୈଚିତ୍ର୍ୟ କେତେ ଉପାସ୍ୟ ସବୁ ସମନ୍ୱୟର ଅଧୀଶ୍ୱର ! ତାର ପ୍ରତିଦିନ ଚାଲିଥାଏ ନୂଆ ଉଦ୍‌ବୋଧନ । ଯୁଗ ଯୁଗ ଅବତାର ଗ୍ରହଣ କରି ସଂସାରକୁ ବିପତ୍ତିରୁ ଉଦ୍ଧାର କରିଛ। ସଂକଟମୋଚନ କରିଛ। ସାଧୁସନ୍ଥମାନଙ୍କୁ ପରିତ୍ରାଣ କରିଛ। ଦୁଃଖୀର ଦୂରିତ ନାଶନ କରିଛ। ତୁମେ ନାରାୟଣ, ତୁମେ ରାମ, ତୁମେ ଶ୍ୟାମ ପୁଣି ପରଂବ୍ରହ୍ମ। କଳିଯୁଗର ଅଲୌକିକ ଲୀଳା ପ୍ରକଟ କରି ଦାରୁଦେବତା ପରିଗ୍ରହ କରିଛନ୍ତି ପରଂବ୍ରହ୍ମ ଭାବରେ ।

ପରମପୁରୁଷ ପୁରୁଷୋତ୍ତମ, ସର୍ବଧର୍ମ ସମନ୍ୱୟର ପ୍ରତୀକ ଦେବତା। ଭାବ, ଭକ୍ତି, ଉପଚାରରେ ଯାହାଙ୍କ ଉପାସନା। ଗୁଣାତୀତ, ତର୍କାତୀତ, ସର୍ବମୂଳାଧାର ସର୍ବବ୍ୟାପୀ, ସର୍ବମୟ, ସର୍ବ ନିୟନ୍ତା, ସର୍ବନାମ। ତାଙ୍କୁ ଯେ ଯେଉଁ ନାମରେ ଡ଼ାକିଛି ସେ ତା'ର ଅନ୍ତରର କଥା ବୁଝିଛନ୍ତି ।

ତାଙ୍କର ଶାଶ୍ୱତ ସଂସ୍କୃତିର ମହାସାଗରରେ ବିଲୀନ ହୋଇଯାଇଛି କେତେ ଧର୍ମ ଓ ବିଶ୍ୱାସ । ତମ ନିକଟରେ ସବୁ ତତ୍ତ୍ୱ ତୁଚ୍ଛ । କେବଳ ସ୍ୱଚ୍ଛ , ଶୁଦ୍ଧଚିତ୍ତ ଭକତ ହାତରୁ ତୋଳି ନିଅନ୍ତି ନୀଳକଇଁ, ଆମ୍ବ, ନଡ଼ିଆ, ଖୁଦଭଜା, କୋଳି । ସବୁଧର୍ମର ଉପାସକମାନେ ତୁମଠାରେ ଉପଲବ୍‌ଧି କରିଛନ୍ତି ସେମାନଙ୍କର ଉପାସ୍ୟ ଦେବତାଙ୍କୁ ।

ତମ ପାଇଁ ମନ୍ତ୍ରତନ୍ତ୍ରର ଆବଶ୍ୟକତା ନାହିଁ । ତମ ପାଖରେ ଜାତି ଅଜାତି ଭେଦଭାବ ନାହିଁ। ତମେ ଗଣଦେବତା ଜଗତଜୀବନ। ତମେ ଭକ୍ତ ବତ୍ସଳ, ସତେ ଯେମିତି ଭକ୍ତମାନଙ୍କୁ ବାହୁମେଲି କୋଳେଇ ନେବାକୁ ଉଦ୍‌ଗ୍ରୀବ ତମ ବିଶାଳ ହୃଦୟ। ଭକତ ମେଳିରେ ପ୍ରତିବର୍ଷ ତୁମେ ରତ୍ନ ସିଂହାସନ ତ୍ୟାଗକରି ପାର୍ଶ୍ୱ ଦେବଦେବୀମାନଙ୍କୁ ଏପରି କି ମାଆ ଲକ୍ଷ୍ମୀଙ୍କୁ ଭୁଲି ଗୁଣ୍ଡିଚା ରାଣୀଙ୍କର କଥା ରକ୍ଷା କରି ଜନ୍ମବେଦିରୁ ଚାଲିଆସ । ଏଭଳି ମହାପ୍ରଭୁ ଚଳନ୍ତି ଠାକୁରଙ୍କର ରଥଯାତ୍ରା ପରମ୍ପରା ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ଶ୍ରୀମନ୍ଦିରରେ ଅବା ଶ୍ରୀକ୍ଷେତ୍ରରେ ପୂଜିତ ଯେତେ ଦେବଦେବୀ ସମସ୍ତ ପ୍ରଭୁଙ୍କର ଉପାସନା, ସେବା, ସଂସ୍କୃତି ସହିତ ବିବିଧ ଭାବରେ ଜଡ଼ିତ ହେତୁ ପ୍ରଭୁଙ୍କ ପରିପାର୍ଶ୍ୱ ଦେବଦେବୀଗଣ ମଧ୍ୟ ସମଭାବରେ ମହତ୍ତ୍ୱପୂର୍ଣ୍ଣ ଓ ଉପାସ୍ୟ। କେଉଁ ସ୍ମରଣାତୀତ କାଳରୁ ଶ୍ରୀମନ୍ଦିରରେ ମହାବୀର ହନୁମାନଙ୍କର ସେବା ପୂଜାର ବ୍ୟବସ୍ଥା ରହିଛି ।

ମହାପ୍ରଭୁଙ୍କ ସମ୍ପର୍କରେ ରଚିତ ଇନ୍ଦ୍ରମଣି ପୁରାଣରେ ଭଗବାନ ମହାବଳୀ ହନୁମାନଙ୍କର ଭକ୍ତିରେ ପ୍ରସନ୍ନ ହୋଇ ବର ପ୍ରଦାନ କରିଥିଲେ । ପୁରାଣ ବର୍ଣ୍ଣନା ଅନୁଯାୟୀ ପ୍ରଭୁ କହିଥିଲେ– ହେ କପିବର ! ତୁମ ସମର୍ପିତ ସେବା ଜଗତରେ ଶ୍ରେଷ୍ଠ ଓ କରଣୀୟ। ତୁମେ ଏ ଶ୍ରୀକ୍ଷେତ୍ର ପୁରୁଷୋତ୍ତମରେ ମୋର ପ୍ରିୟତମ ଭକ୍ତ ରୂପେ ରହିବା ପାଇଁ ସ୍ଥାନ ପାଇବ। ପ୍ରତି ଗୃହେ, ଗ୍ରାମେ, ନଗ୍ରେ ତୁମର ପୂଜା ଅନୁଷ୍ଠିତ ହେବ ଏବଂ ଏହି ପୁଣ୍ୟକ୍ଷେତ୍ରରେ ପ୍ରତି ଧ୍ୱଜାରେ କପି ଚିହ୍ନିତ ହୋଇ ଗଗନ ପବନକୁ ପବିତ୍ର କରିବ। ଶ୍ରୀଗୁଣ୍ଡିଚା ରଥଯାତ୍ରାରେ ପ୍ରଭୁଙ୍କର ଝୁଲଣଯାତ୍ରା ଚନ୍ଦନଯାତ୍ରା ବିମାନରେ ନବକଳେବର ଦାରୁ ସନ୍ଧାନ ସମୟରେ କପିକେତନ ନେବା ପରମ୍ପରା ରହିଛି । ମହାଭାରତ ଯୁଦ୍ଧ ସମୟରେ ନନ୍ଦିଘୋଷ ରଥରେ କପିବର ନେତରେ ସ୍ୱୟଂ



ମହାବୀର ରହି ରଥକୁ ନିୟନ୍ତ୍ରଣ କରୁଥିଲେ ବୋଲି ବର୍ଣ୍ଣନା ରହିଛି ।

ହନୁମାନ ହେଉଛନ୍ତି, ଭାରତୀୟ ଆଧାତ୍ମିକ ଦର୍ଶନରେ ଜଣେ ଆଦର୍ଶ ଭକ୍ତର ନିଦର୍ଶନ, ଭକ୍ତ ଶିରୋମଣି ସେ ହେଉଛନ୍ତି ଶକ୍ତି ଅର୍ଥାତ୍ ସୀତାମାତା, ବ୍ରହ୍ମ ଅର୍ଥାତ୍ ଶ୍ରୀରାମଙ୍କ ଏକୀଭୂତ ବିଗ୍ରହ । ଜୀବ ଓ ପରମର ସଂଯୋଗ ନିମିତ୍ତ ଆୟୁଧ । ସେ ଅଚଳାଚଳ ଭକ୍ତି ସ୍ୱରୂପ ତାଙ୍କ ହୃଦୟରେ ସଦା କଳନା କରୁଥିବା ପରମ ବନ୍ଦନୀୟ ସୀତାରାମଙ୍କୁ ଛାତି ଚିରି ଦେଖାଇ ଦେଇଥିଲେ। ଭଗବତ୍ କୃପା ଲାଭକରି ସେ ଚିର ଅମର ହୋଇ ରହିଛନ୍ତି । ଶାସ୍ତ୍ର କହେ, ଯେଉଁ ସାତଜଣ ଶ୍ରେଷ୍ଠ ଦିବ୍ୟସତ୍ତା ଚିରଞ୍ଜୀବୀ ହୋଇ ରହିଛନ୍ତି ସେମାନେ ହେଲେ – ସତ୍ୟଯୁଗରେ ବାଲୀ, ତ୍ରେତୟାରେ ମହାବୀର ହନୁମାନ, ପରଶୁରାମ ଓ ବିଭୀଷଣ, ଦ୍ୱାପରରେ କୃପାଚାର୍ଯ୍ୟ, ବ୍ୟାସଦେବ ଓ ଅଶ୍ୱତ୍ଥମା ।

ପ୍ରଭୁ ଶ୍ରୀରାମଙ୍କର ପରମ ଭକ୍ତ ହନୁମାନ ବାନର ରୂପ ଧାରଣ କରିଥିଲେ ସତ କିନ୍ତୁ ଅସୀମ ସଦ୍‌ଗୁଣ ଯୋଗୁଁ ସେ ଏଭଳି ବରପ୍ରାପ୍ତ ହୋଇଥିଲେ ଯେ ତାଙ୍କୁ ଉପାସନା କଲେ ସବୁ କିଛି ଅଭିଳାଷ ପୂରଣ ହୋଇଥାଏ ।

ପ୍ରଭୁ ହନୁମାନ ଦେବାଦେବୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେବାର ଚାରିଟି ମୁଖ୍ୟ କାରଣ ରହିଛି । ପ୍ରଥମତଃ ସେ ଅତୁଳନୀୟ ବଳବିକ୍ରମର ଅଧିକାରୀ, ଦ୍ୱିତୀୟରେ ଜ୍ଞାନଗରିମା ସହିତ ଗୁଣବାନ ମଧ୍ୟ, ତୃତୀୟରେ ସବୁକିଛି ସଦ୍‌ଗୁଣର ଅଧିକାରୀ ହୋଇ ମଧ୍ୟ ସେ ସମର୍ପିତ ପ୍ରଭୁ ଭକ୍ତି ପରାୟଣ, ଚତୁର୍ଥରେ ସେ ଚିର ଅମର ଓ ମୃତ୍ୟୁଞ୍ଜୟ। ଅଞ୍ଜନୀ ପୁତ୍ର ହନୁମାନଙ୍କର ଜନ୍ମ ଯେଭଳି ଅପୂର୍ବ ତାଙ୍କର ଅମାପ ଶକ୍ତିର ପରୀକ୍ଷା ମଧ୍ୟ ଯୁଗେ ଯୁଗେ ପରୀକ୍ଷିତ। ଆଜନ୍ମ ବ୍ରହ୍ମଚାରୀ ସେ। ଭୀମ ଆତ୍ମଗର୍ବୀ ଥିଲେ। ସେ ଭାବୁଥିଲେ ତାଙ୍କଠାରୁ ବଳି ଶକ୍ତିମାନ କେହି ନାହିଁ। ହନୁମାନଙ୍କୁ ଦେଖି ସାମାନ୍ୟ ବାନର ଜ୍ଞାନ କରୁଥିଲେ। ହନୁମାନଙ୍କର ପରାକ୍ରମ ପରୀକ୍ଷା କରିବେ କ'ଣ ତାଙ୍କର ଲାଞ୍ଜଟାକୁ ମଧ୍ୟ ଭୂମିରୁ ଉଠାଇ ପାରି ନଥିଲେ ।

ସେହିପରି ଚକ୍ରଧାରୀ ଶ୍ରୀକୃଷ୍ଣ ପତ୍ନୀ ସତ୍ୟଭାମା, ସୁଦର୍ଶନ ଓ ଗରୁଡ଼ଙ୍କର ଗରିମା ହନୁମାନଙ୍କର ସହାୟତାରେ ଭାଙ୍ଗି ଦେଇଥିଲେ ।

ପ୍ରଭୁ ଶ୍ରୀରାମଙ୍କର କୃପାଲାଭ କରିଥିବା ଗୋସ୍ୱାମୀ ତୁଳସୀ ଦାସ ତାଙ୍କ ରଚିତ ଚାଳିଶାରେ ବିଷୟାସକ୍ତ ମୋହମଗ୍ନ ମୂଢ଼ ମନୁଷ୍ୟକୁ ବିବିଧ ସଂକଟରୁ ଉଦ୍ଧାର କରିବା ପାଇଁ ହନୁମାନଙ୍କୁ ସ୍ମରଣ କଲେ ସନ୍ତାପରୁ ମୁକ୍ତି ମିଳିବ ବୋଲି ଦମ୍ଭୋକ୍ତି ପ୍ରକାଶ କରିଛନ୍ତି । ସେ ଏ କଥା ମଧ୍ୟ ସ୍ପଷ୍ଟ କରିଛନ୍ତି ଯେ ହନୁମାନ ଚାଳିଶା ହେଉଛି ବହୁ ପରୀକ୍ଷିତ ମହାମନ୍ତ୍ର ସଦୃଶ ।

ମହାବିଷୁବ ସଂକ୍ରାନ୍ତିରେ ହନୁମାନ ଜୟନ୍ତୀ ପାଳନ କରାଯାଏ । ଏହା ମଧ୍ୟ ଉତ୍କଳର ନବବର୍ଷର ଶୁଭଦିନ । ଶ୍ରୀମନ୍ଦିରରେ ହନୁମାନ ଜୟନ୍ତୀ ପାଳନ ଉପଲକ୍ଷେ ପୂଜାପଣ୍ଡା ସେବକ ପ୍ରଭୁଙ୍କର ଆଜ୍ଞାମାଳ ପ୍ରାପ୍ତ ହୋଇ ଦକ୍ଷିଣ ଘରେ ବିରାଜିତ ହନୁମାନଙ୍କୁ ନେଇ ଝୁଲଣ ମଣ୍ଡପ ନିକଟରେ ସଜ ହୋଇଥିବା ବିମାନରେ ବିଜେ କରାନ୍ତି ।

ଶ୍ରୀମନ୍ଦିରର ଚାରି ଦୁଆରେ ବିରାଜିତ ମହାବୀର ଓ ଦକ୍ଷିଣ ପାର୍ଶ୍ୱ ବେଢ଼ା ବାହାରେ ଥିବା ମହାବୀରଙ୍କୁ ମହା ସମାରୋହରେ ଘଣ୍ଟଘଣ୍ଟା, କାହାଳୀ, ବାଦ୍ୟବାଜଣା ମଧ୍ୟରେ ଜଗନ୍ନାଥ ବଲ୍ଲଭ ମଠ ପ୍ରାଙ୍ଗଣକୁ ଯାଆନ୍ତି । ସେଠାରେ ଅବସ୍ଥିତ ହନୁମାନଙ୍କୁ ଲାଗି କରାନ୍ତି। ସେଠାରୁ ପଟୁଆର ନେଇ ଦରିଆପାରି ହନୁମାନଙ୍କୁ ଲାଗି କରିବାକୁ ବାହାରନ୍ତି ।

ସେଠାରୁ ଫେରିବା ପରେ ଜଗନ୍ନାଥ ବଲ୍ଲଭ ମଠରେ ବିଶେଷ ଭୋଗରାଗ ବ୍ୟବସ୍ଥା ହୋଇଥାଏ। ସେଠାରୁ ଶ୍ରୀମନ୍ଦିରର ଦକ୍ଷିଣ ଦୁଆରକୁ ଯେଉଁ ବାହୁଡ଼ାବିଜେ କରିଥାନ୍ତି, ତାହା ଭକ୍ତଜନମାନେ ଦେଖି ବିଭୋର ହୋଇଥାନ୍ତି ।

ଶ୍ରୀରାମଙ୍କ ଭକ୍ତମାନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମ ରୂପେ ଆରାଧନା କରିଥାନ୍ତି । ପ୍ରଭୁ ଶ୍ରୀରଘୁନାଥ ଯେତେବେଳେ ଶ୍ରୀମନ୍ଦିରରେ ରହିଲେ ତାଙ୍କର ସେବକ ହନୁମାନ ଅବଶ୍ୟ ରହିବେ। ସେଥିପାଇଁ ତାଙ୍କୁ ମନ୍ଦିରରେ ବିବିଧ ସ୍ଥାନରେ ସ୍ଥାପନା



କରାଯାଇଛି। ଅନେକ ଗବେଷକମାନଙ୍କର ମତ ଯେ ସେ ଶ୍ରୀନୀଳଚକ୍ର ଓ ଶ୍ରୀମନ୍ଦିର ସହିତ ମହୋଦଧି ଓ ପ୍ରାକୃତିକ ବିପର୍ଯ୍ୟୟରୁ ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରକୁ ସୁରକ୍ଷା ଦେଇଥାନ୍ତି । ଶ୍ରୀମନ୍ଦିର ସୁରକ୍ଷା ଦାୟିତ୍ୱରେ ଚାରିଦ୍ୱାରରେ ଚାରି ହନୁମାନ ବା ଚାରି ମହାବୀର ବିଦ୍ୟମାନ। ସେମାନେ ହେଲେ– ପୂର୍ବ ଦ୍ୱାରରେ ଫତେ ମହାବୀର, ପଶ୍ଚିମ ଦ୍ୱାରରେ କାନପତା ବା ବୀର ବିକ୍ରମ ମହାବୀର, ଦକ୍ଷିଣ ଦ୍ୱାରରେ ବାରଭାଇ ମହାବୀର, ଉତ୍ତର ଦ୍ୱାର ରକ୍ଷକ ଭାବେ ଚାରିଚକ୍ର ମହାବୀର ବା ତପସ୍ୱୀ ମହାବୀର । ତାଙ୍କୁ ମଧ୍ୟ ଅଷ୍ଟଭୁଜା ମହାବୀର କୁହାଯାଏ । କାନପତା ମହାବୀରଙ୍କ ଯୋଗୁଁ ସମୁଦ୍ର ଯେତେ ଗର୍ଜନ କଲେ ମଧ୍ୟ ଶ୍ରୀମନ୍ଦିର ପାଚେରି ଭିତରକୁ ପ୍ରବେଶ କରେ ନାହିଁ । ବସ୍ତୁତଃ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ସମୁଦ୍ର ଗର୍ଜନ ଶୁଭେ ନାହିଁ ।

ଏହାଛଡ଼ା ଶ୍ରୀକ୍ଷେତ୍ରର ପଞ୍ଚକୋଶି ମଧ୍ୟରେ ଅନେକ ମହାବୀର ବିରାଜିତ ରହି ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରର ସୁରକ୍ଷା କରି ଚାଲିଛନ୍ତି। ଷୋଳମୂର୍ତ୍ତି ହନୁମାନ ବିଗ୍ରହ ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ଦାୟିତ୍ୱରେ ରହିଛନ୍ତି । ଏମାନେ ସିନ୍ଦୂର ବିହୀନ ମୂର୍ତ୍ତି । ଅନ୍ୟ ସମସ୍ତ ହନୁମାନଙ୍କଠାରେ ସିନ୍ଦୂର ମଖା ଯାଇଥାଏ କେବଳ ଏମାନେ ବ୍ୟତିକ୍ରମ। ଆନନ୍ଦ ବଜାରରେ କୋଠଭୋଗ, ଭୋଗ ବିକ୍ରୟ, ଭକ୍ତମାନଙ୍କ ଆତ୍ମତୃପ୍ତି ମହାପ୍ରସାଦର ମାହାତ୍ମ୍ୟ ରକ୍ଷା ତଥା ଶୃଙ୍ଖଳା ପାଇଁଏହି ହନୁମାନମାନେ ବିରାଜିତ ।

ଶ୍ରୀମନ୍ଦିରର କାରୁକାର୍ଯ୍ୟମୟ ନାଟମଣ୍ଡପ ହନୁମାନ ବିରାଜମାନ କରିଛନ୍ତି। ତାଙ୍କର ଦାୟିତ୍ୱ ହେଲା ଆଗନ୍ତୁକ ଯାତ୍ରୀ, ଭକ୍ତ, ସାଧକ, ସନ୍ନ୍ୟାସୀ ମୁନିଋଷି ମହାପୁରୁଷମାନେ ଯେପରି ଶୃଙ୍ଖଳିତ ଭାବେ ପ୍ରଭୁଙ୍କ ଦର୍ଶନ ସୁଯୋଗ ଲାଭ କରିବେ, ତାହା ସେ ଦେଖନ୍ତି। ପଶ୍ଚିମ ପାର୍ଶ୍ୱ ବାହାର ବେଢ଼ାରେ ବିରାଜିତ ପ୍ରତ୍ୟକ୍ଷ ମହାବୀର ହେଲେ ଦେବ ଦ୍ୱାରପାଳ ପଞ୍ଚମୁଖୀ ହନୁମାନ। ଶ୍ରୀଜଗନ୍ନାଥ ମନ୍ଦିର ହୁଣ୍ଡିକୁ ଯେଉଁମାନେ ମୁକ୍ତ ହସ୍ତରେ ଦାନ କରନ୍ତି ସେହି ଭକ୍ତଜନମାନଙ୍କୁ ପଞ୍ଚମୁଖୀ ହନୁମାନ ଆଶୀର୍ବାଦ ପ୍ରଦାନ କରିଥାନ୍ତି। ଯେଉଁମାନେ ନାମ ଫଳକ ପକାଇବାକୁ ଚାହିଁଥାନ୍ତି ସେସବୁ ତାଙ୍କ ପାଖରେ ଦେଖିବାକୁ ମିଳେ ।

ଶ୍ରୀମନ୍ଦିରର ନାଟମଣ୍ଡପରେ, ସ୍ତମ୍ଭମାନଙ୍କରେ, ସରଘରେ, କୂର୍ମ ବେଢ଼ାରେ ପଥର, ଧାତୁ ତଥା ରଙ୍ଗତୂଳୀର ଚିତ୍ରିତ ମହାବୀର ପୂଜା ପାଉଥିବା ଦେଖାଯାଏ। ଏହି ମହାବୀରମାନେ ଭକ୍ତଜନମାନଙ୍କର ସଂକଟମୋଚନ କରିଥାନ୍ତି।

ପଞ୍ଚମୁଖୀ ମହାବୀରଙ୍କର ପାଞ୍ଚମୁଖ କାହିଁକି ହେଲା ଓ ସେ କାହିଁକି ସ୍ଥାପିତ ହେଲେ ଏ ସମ୍ପର୍କରେ ଚମତ୍କାର ଆଖ୍ୟାୟିକା ରହିଛି। ସେ ସମସ୍ତ ବିସ୍ତୃତ ଅଧ୍ୟାୟ ଏହି କ୍ଷୁଦ୍ର ନିବନ୍ଧରେ ଉପସ୍ଥାପନା ସମ୍ଭବ ନୁହେଁ । ଅନୁରୂପ ଭାବରେ ଶ୍ରୀମନ୍ଦିର ସହ ସଂପୃକ୍ତ ଅନ୍ୟ ଅନେକ ମହାବୀର ଅଛନ୍ତି, ସେମାନେ ହେଲେ– ସିଦ୍ଧ ମହାବୀର, ଦରିଆ ମହାବୀର, ସୁଡ଼ଙ୍ଗ ମହାବୀର, ଶିରୁଳୀ ମହାବୀର, ମକରଧ୍ୱଜ ମହାବୀର, ମଶାଣି ମହାବୀର, ବର୍ଗୀ ମହାବୀର । ସମସ୍ତଙ୍କର ମଧ୍ୟ ସ୍ୱତନ୍ତ୍ର ମହିମା ରହିଛି । ସେମାନଙ୍କର ଶ୍ରୀମନ୍ଦିର ସହ ସଂପୃକ୍ତି ମଧ୍ୟ ସମୟକ୍ରମେ ଆଲୋଚିତ ହୋଇସାରିଛି କିମ୍ବା ଉପସ୍ଥାପିତ ହୋଇପାରେ ।

ସର୍ବୋପରି ସାରା ଓଡ଼ିଶାର ଯେତେ ଦେବଦେବୀ, ଯେତେ ମଠ, ଭାଗବତ ଅନୁଷ୍ଠାନ ଓ ଆଶ୍ରମ ଅଛି, ସବୁର ଉପରେ ସେଇ ନାଥ ମଉଡ଼ମଣି ଶ୍ରୀଜଗନ୍ନାଥ। ଆମ ଜାତିର ସେ ହେଲେ ଇଷ୍ଟ । ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ହେଲା ଆମର ଇଷ୍ଟକ୍ଷେତ୍ର । ପୁରୀ ହେଲା ସବୁ ତୀର୍ଥର ତୀର୍ଥ ତୀର୍ଥରାଜ। ମହୀମଣ୍ଡଳରେ ପୁରୀ ହେଲା ମହାମଣ୍ଡଳ। ସେ ଆମ ଓଡ଼ିଆମାନଙ୍କର ଦିଅଁ ଯେ କି ଏକମାତ୍ର ଧ୍ୟେୟ। ସେ ପୁଣି ବିଶ୍ୱ ଚିନ୍ତାମଣି। ପବିତ୍ର ଶ୍ରୀଗୁଣ୍ଡିଚାରେ ପ୍ରତି ବର୍ଷ ତାଙ୍କର ଘୋଷଯାତ୍ରା ଜଗତବାସୀ ଦେଖିବା ପାଇଁ ସତୃଷ୍ଣ ନୟନରେ ଚାହିଁ ରହିଥାନ୍ତି।

---

ଆଶ୍ରମ, ଶ୍ରୀବିହାର, କଟକ



# ଶ୍ରୀକ୍ଷେତ୍ରରେ କଳ୍ପବଟ ଉପାସନା

ଗଙ୍ଗୋତ୍ରୀ ଦେବୀ

ଭାରତୀୟ ଧର୍ମ କେବଳ ମୂର୍ତ୍ତି ଉପାସନା ଉପରେ ଗୁରୁତ୍ୱ ଦେଇନଥାଏ । ତତ୍ ସଙ୍ଗେ ସଙ୍ଗେ ପ୍ରାକୃତିକଭାବେ ସୃଷ୍ଟି ହୋଇଥିବା ନଦନଦୀ, ସମୁଦ୍ର, ପର୍ବତ, ବୃକ୍ଷଲତା ପଶୁପକ୍ଷୀଙ୍କ ଭିତରେ ନିଜ ବିଶ୍ୱାସର ଧର୍ମ ଦର୍ଶନ କରିଥାଏ । ଜଡ଼ ମଧ୍ୟରେ ଚେତନର ଅଲୌକିକତା ଅନୁଭବୀ ଥାଏ । ନିଜଠାକୁରଙ୍କ ବାହାନ ଭାବରେ ପଶୁ , ପକ୍ଷୀ, ସରୀସୃପ ଆଦିଙ୍କୁ ଗ୍ରହଣ କରିଥାଏ ତ ନିଜ ଅଭୀଷ୍ଟ ପୂରଣ କରିବାକୁ ବଟବୃକ୍ଷ, ନିମ୍ବ, ଅଶ୍ୱତଥ୍, ତୁଳସୀ, ବେଲ ଆଦି ବୃକ୍ଷଙ୍କର ଯତ୍ନନେବା ସହ ପୂଜା ମଧ୍ୟ କରିଥାଏ । ପୁରାଣକାର କହିଛନ୍ତି, ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର । ଏଣୁ ବୃକ୍ଷପୂଜାର ପରମ୍ପରା, ଦୃଢ଼ବିଶ୍ୱାସ କେଉଁ ଆବହମାନ କାଳରୁ ଆମ ଭାରତବର୍ଷରେ ଚଳିଆସିଛି, ତାହା ଆଲୋଚନା ସାପେକ୍ଷ ।

ଶ୍ରୀମନ୍ଦିର ମଧ୍ୟରେ ଥିବା ବିଭିନ୍ନ ମନ୍ଦିର ମଧ୍ୟରେ ଅଧିଷ୍ଠିତ ଦେବଦେବୀ ଧାତୁ କିମ୍ବା ପ୍ରସ୍ତର ନିର୍ମାଣ ହୋଇଥିବାବେଳେ ପ୍ରଭୁ ଶ୍ରୀଜଗନ୍ନାଥ, ପ୍ରଭୁ ବଳଭଦ୍ର, ମାଆ ସୁଭଦ୍ରା ଓ ପ୍ରଭୁ ସୁଦର୍ଶନ ଦାରୁ ନିର୍ମିତ । ପ୍ରକୃତିର ବିଭିନ୍ନ ବିଭବ ମଧ୍ୟରେ ମନୁଷ୍ୟ ସର୍ବ ପ୍ରଥମେ ବୃକ୍ଷକୁ ନିଜର ଉପାସ୍ୟ ରୂପେ ଗୃହୀତ କରିଛି । ବୃକ୍ଷ ହିଁ ମନୁଷ୍ୟର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସାଥେ ସାଥେ ରହିଆସିଛି । ବୃକ୍ଷ ମନୁଷ୍ୟର ପିତା, ମାତା, ବନ୍ଧୁ, ସଖା, ଭାବରେ ବିବେଚିତ ହୋଇଛି । ଏହା ମଧ୍ୟ ଖାଦ୍ୟ, ବସ୍ତ୍ର, ପାନୀୟ, ଆଶ୍ରୟାଦିରେ ସାହାଯ୍ୟ କରିଥାଏ ବୋଧହୁଏ ଶ୍ରୀମନ୍ଦିରରେ ସ୍ତମ୍ଭାକୃତି କାଷ୍ଠ ଉପାସନା ପରବର୍ତ୍ତୀ କାଳରେ ଦାରୁନିର୍ମିତ ବିଗ୍ରହରେ ରୂପାନ୍ତରିତ ହୋଇଥିବାର ବିଶ୍ୱାସ କରାଯାଏ । କିନ୍ତୁ ଶ୍ରୀମନ୍ଦିର ମଧ୍ୟରେ ଶ୍ରୀଜୀଉଙ୍କର ରହସ୍ୟ ଜାଣିବା ପୂର୍ବରୁ ମନ୍ଦିର ମଧ୍ୟସ୍ଥ କଳ୍ପବଟ ସମ୍ପର୍କରେ କିଞ୍ଚିତ ଆଲୋଚନା କରାଯାଇପାରେ । ଶ୍ରୀକ୍ଷେତ୍ରର ଏହି କଳ୍ପବଟଙ୍କ ମହିମା ଅଲୌକିକ । ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ଏହି ବଟବୃକ୍ଷରୂପୀ ନାରାୟଣଙ୍କ ଦର୍ଶନରେ ମନୁଷ୍ୟର ପାପ କ୍ଷୟ ହୋଇଯାଏ । ତାଙ୍କର ପୂଜାସ୍ତବ କରି ଯେଉଁ ବିସ୍ତୃତ ଫଳଲାଭ ହୁଏ, ତାହା ବର୍ଣ୍ଣନାତୀତ । ପଞ୍ଚତୀର୍ଥ ମାହାତ୍ମ୍ୟ କୀର୍ତ୍ତନରେ ସ୍କନ୍ଦପୁରାଣରେ କଳ୍ପବଟ ପ୍ରସଙ୍ଗରେ ବର୍ଣ୍ଣନା ଅଛି ଯେ, ମାର୍କଣ୍ଡେୟ ବଟ ତୀର୍ଥରେ ସ୍ନାନ କରି ମୌନତାର ସହ ଏହାର ଦକ୍ଷିଣ ଦିଗରେ ଅବସ୍ଥିତ ସାକ୍ଷାତ ନାରାୟଣ ସ୍ୱରୂପ ଅକ୍ଷୟ ବଟ ନିକଟକୁ ଗମନ କଲେ ସମସ୍ତ ପାପ କ୍ଷୟ ହୋଇଥାଏ । ଦୂରରୁ ସେହି ବୃକ୍ଷଙ୍କୁ ପ୍ରଣାମ କଲେ ପୁରୁଷୋତ୍ତମଙ୍କୁ ପ୍ରଣାମ କରିବା ବୋଧ ହୋଇଥାଏ । ତାହାଙ୍କୁ ପ୍ରଣାମ ପୂର୍ବକ କୁହାଯିବ, ହେ ବଟବୃକ୍ଷ ! ତୁମ୍ଭେ କଳ୍ପାନ୍ତକାଳ ପର୍ଯ୍ୟନ୍ତ ଅମର । ତୁମେହିଁ ବିଷ୍ଣୁଙ୍କର ଆବାସ ଭୂମି । ହେ ବିଷ୍ଣୁ ସ୍ୱରୂପ, ତୁମ୍ଭଙ୍କୁ ବାରମ୍ବାର ପ୍ରଣିପାତ କରୁଛି, ମୋର ସମସ୍ତ ପାପତାପ ହରଣ ହେଉ । ଏହି ମନ୍ତ୍ର ପାଠକରି ବୃକ୍ଷଙ୍କୁ ତିନିଥର ପ୍ରଦକ୍ଷିଣ କରାଯିବ । ଅକ୍ଷୟବଟଙ୍କୁ ଏହି ସ୍ତୁତି କରି ଏହାଙ୍କ ମୂଳଦେଶରେ ଥିବା ଜନାର୍ଦ୍ଦନଙ୍କୁ ପୂଜା କରାଯିବା ଦ୍ୱାରା ସମସ୍ତ ପାପକ୍ଷୟ ଘଟିବ ।

ଏହା ସ୍ୱୀକାର୍ଯ୍ୟ ଯେ କଳ୍ପବଟ କେଉଁ କାଳରୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଶୋଭା ପାଉଛନ୍ତି । ଯାହା ମହାକବି ସାରଳା ଦାସଙ୍କ ମହାଭାରତରେ କଳ୍ପବଟର ମହିମା ଗାନ କରିଛନ୍ତି । ବ୍ୟାସଦେବ କୃତ ସଂସ୍କୃତ ଶ୍ରୀମଦ୍ ମହାଭାରତରେ କଳ୍ପବଟର ଚିତ୍ର ବ୍ୟାସଦେବ ମାର୍କଣ୍ଡେୟ ଉପାଖ୍ୟାନରେ ବର୍ଣ୍ଣନା କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ଅଙ୍ଗରୁ କଳ୍ପବୃକ୍ଷଙ୍କ ଉତ୍ପତ୍ତି ବୋଲି ବ୍ୟାସଦେବଙ୍କ ମତ । ବ୍ରହ୍ମତେଜରେ ତେଜୀୟାନ ଏହି ବୃକ୍ଷ ବିଷ୍ଣୁ ସ୍ୱରୂପ । ଏଣୁ ଏହାଙ୍କୁ ଦର୍ଶନ କଲେ ରାଜସୂୟ ଓ ଅଶ୍ୱମେଧ



ଯଜ୍ଞର ଫଳ ଲାଭ ଘଟେ । ମାନବ ସ୍ୱବଂଶ ଉଦ୍ଧାର କରି ବିଷ୍ଣୁ ଲୋକଙ୍କୁ ଗମନ କରେ। ଏହାକୁ ପ୍ରଦକ୍ଷିଣ କରି ପ୍ରଣାମ କଲେ ସର୍ପ ନିଜ ପୁରୁଣା ଖୋଳପା ତ୍ୟାଗ କରି ନୂତନ କଳେବର ଧାରଣ କଲାଭଳି ମନୁଷ୍ୟ ନିଜକୁ ପାପମୁକ୍ତ କରି ନିଷ୍ପାପ ଜୀବନଯାପନ କରେ। ବ୍ରହ୍ମ ହତ୍ୟା ଭଳି ପାପ ମଧ୍ୟ ଏହାଙ୍କ ପ୍ରସାଦରୁ ଧ୍ୱଂସ ହୋଇଥାଏ । (ବ୍ରହ୍ମପୁରାଣ ସଂସ୍କୃତ)

ଶ୍ରୀକ୍ଷେତ୍ରରେ ଥିବା ବହୁ ପ୍ରାଚୀନ ବସ୍ତୁମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି କଳ୍ପବଟ । ନୀଳାଦ୍ରିର ନାଭିଦେଶକୁ ମଣ୍ଡନ କରିଥିବା ଏହି ବୃକ୍ଷ କେଉଁ କାଳରୁ ଅବସ୍ଥାନ କରିଛନ୍ତି, ତାହା କହିହେବ ନାହିଁ । କଥିତ ଅଛି, ସଂସାର ପ୍ରଳୟ ହେବାର ସୂଚନା ପାଇବା ମାତ୍ରେ ପାତାଳରୁ ଅନନ୍ତଦେବ ଆସି ନିଜେ କଳ୍ପବଟ ରୂପେ ବିରାଜମାନ କରିଛନ୍ତି । ଏଯାବତ୍ ସେ ଶ୍ରୀକ୍ଷେତକୁ ନିଜର ଅତି ପ୍ରିୟ ଓ ପବିତ୍ର ସ୍ଥାନ ରୂପେ ଗ୍ରହଣ କରିଆସିଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପୂର୍ବରୁ ନୀଳମାଧବ ଉପାସିତ ହେଉଥିଲେ ଏହା ସର୍ବସମ୍ମତ । ମହା ପ୍ରଳୟରେ ନୀଳଗିରିର କଳ୍ପବଟ ନିମଗ୍ନ ହୋଇନଥିବାର ମହର୍ଷି ମାର୍କେଣ୍ଡୟ ଦେଖି ଏହାଙ୍କ ମୂଳରେ ନାରାୟଣ ମୂର୍ତ୍ତିକୁ ଦର୍ଶନ କରି ନିଜକୁ ଧନ୍ୟ ମନେ କରିଥିଲେ ଓ ତତ୍ ସଙ୍ଗେ ସଙ୍ଗେ ଉକ୍ତ ବୃକ୍ଷଙ୍କର ମହିମାରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ। ନୀଳଗିରି ଉପରେ ଏହି ବୃକ୍ଷ ଏକକୋଶ ବ୍ୟାପୀ ଆଚ୍ଛାଦିତ ହୋଇଥିବାର ସ୍କନ୍ଦ ପୁରାଣ, ବିଷ୍ଣୁଖଣ୍ଡ ୧୦ ଅଧ୍ୟାୟରେ ରହିଅଛି। ମହର୍ଷି ମାର୍କଣ୍ଡେୟ ଏହି ବୃକ୍ଷଙ୍କୁ ଦେଖି ଚିନ୍ତା କରିଥିଲେ ଯେ, ମହାପ୍ରଳୟରେ ସମସ୍ତ ସ୍ଥାବର ଜଙ୍ଗମ ନଷ୍ଟବିନଷ୍ଟ ହୋଇଯିବା ବେଳେ କିପରି ଏ ବୃକ୍ଷ ଭୂଭାଗରେ ସ୍ଥିର ରହିଲା। ନିଶ୍ଚୟ ଏହା ବିଷ୍ଣୁ ସ୍ୱରୂପ । 'ନୀଳସୁନ୍ଦର' ପୁରାଣ କହନ୍ତି, ମାର୍କଣ୍ଡେୟ ମୁନି ପ୍ରଳୟ ଜଳରେ ଭାସି ଭାସି ସେଠାରେ ପହଞ୍ଚି ବିଶ୍ୱାତ୍ମାଙ୍କୁ ଦର୍ଶନ କରି ପ୍ରଣାମ କରିବା ପରେ ସେହି ସ୍ଥାନରେ ଅବସ୍ଥାନ କରିବା ପାଇଁ ଅନୁମତି ପ୍ରାର୍ଥନା କଲେ। ପ୍ରଭୁ ତାଙ୍କୁ କୃପାକରି ତାଙ୍କୁ ପଦାଗ୍ରରେ ଶତପାଦ ଦୂରକୁ ଠେଲି ଦେଇଥିଲେ। ଯେଉଁଠାରେ କି ଏକ ଗର୍ତ୍ତ ସୃଷ୍ଟି ହେଲା। ଏହା ମାର୍କଣ୍ଡେୟ ପୁଷ୍କରିଣୀ ନାମରେ ଖ୍ୟାତ ଓ ଏହାର ରକ୍ଷକ ହେଲେ ଅଘୋର ଶିବ । ଏହି ପବିତ୍ର କଳ୍ପବଟଙ୍କର କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ତିଥିରେ ଆବିର୍ଭାବ ହୋଇଥିବାର କୁହାଯାଏ। ଏହି ତିଥିରେ କଳ୍ପବଟଙ୍କର ଜନ୍ମ ଦିବସ ପାଳନ କରାଯାଇଥାଏ। ପରମ୍ପରାକ୍ରମେ ବଟ ଦେବତାଙ୍କୁ ବ୍ରାହ୍ମଣ ପଞ୍ଚାମୃତ ଦ୍ୱାରା ଗାଧୋଇ ଦେଇ ନୂଆ ଲୁଗା ପିନ୍ଧାଇ ଭୋଗ ଲଗାଇ ଥାଆନ୍ତି। ଜଗନ୍ନାଥ ଓ କଳ୍ପବଟ ଭିନ୍ନାଭିନ୍ନ ନୁହଁନ୍ତି । ଜଗନ୍ନାଥଙ୍କ ପୂଜାବିଧି ସହିତ କଳ୍ପବଟ ସଂପୃକ୍ତ। ଏହାଙ୍କୁ ବାଦ୍‌ଦେଇ ପ୍ରଭୁଙ୍କ ପୂଜା କରାଯାଇପାରେନା। ବାହୁଡ଼ା ଦିନ ଠାକୁର ଯେତେବେଳେ ପହଞ୍ଚି ଯାଆନ୍ତି, ସେତେବେଳେ କଳ୍ପବଟଙ୍କୁ ବନ୍ଦାପନା କରାଯାଏ। କଳ୍ପବଟଙ୍କୁ ବନ୍ଦାପନା ନ ସରିବା ଯାଏଁ ପ୍ରଭୁ ଭିତରକୁ ଯାଆନ୍ତି ନାହିଁ। ଏଥିରୁ କଳ୍ପବଟଙ୍କ ମହନୀୟତା ପ୍ରତିପାଦିତ ହୁଏ ।

ଲୋକମାନଙ୍କ ହୃଦୟରେ କଳ୍ପବଟ ପ୍ରତି ଯୁଗେ ଯୁଗେ ବିଶ୍ୱାସ ରହିଆସିଛି। ଶ୍ରୀଜଗନ୍ନାଥ ଦର୍ଶନ କରି ଭକ୍ତ ଯେତିକି ତୃପ୍ତି ପାଇଥାଆନ୍ତି, କଳ୍ପବଟଙ୍କୁ ପ୍ରଦକ୍ଷିଣ କରି ତା'ରି ଛାୟାତଳେ ଦଣ୍ଡେ ବସି ଓ ମନେ ମନେ ଅଭୀଷ୍ଟପୂରଣ ପାଇଁ ମାନସିକ କରି ସେତିକି ଶାନ୍ତି ପାଇଥାଆନ୍ତି। କଳ୍ପବଟ ତଳେ ମାନସିକଧାରିଣୀ ସ୍ତ୍ରୀ ଲୋକମାନେ ନିଜର ଶାଢ଼ୀ କାନିପାତି ବସି ରହନ୍ତି। ଯେପର୍ଯ୍ୟନ୍ତ ବଟଫଳଟିଏ ଉକ୍ତ କାନିରେ ନ ପଡ଼ିଛି, ସେଠାରୁ ଉଠନ୍ତି ନାହିଁ। ପ୍ରାୟତଃ ପୁତ୍ର ପ୍ରାର୍ଥିନୀ ମହିଳାମାନେ ମନେ ମନେ ପ୍ରଭୁ ବିଷ୍ଣୁଙ୍କୁ ଧାରଣା ପୂର୍ବକ ଏହି ବୃକ୍ଷତଳେ ବସି ରହନ୍ତି। ଫଳଟିଏ ପାଇଲେ, ତାହାକୁ ପ୍ରଭୁଙ୍କର ଦାନ ବୋଲି ମନେକରି ମହା ଆନନ୍ଦରେ ଉଠାଇ ନେଇଥାନ୍ତି। ବିଶ୍ୱାସ ଅଛି, କଳ୍ପବଟ ମୂଳେ ମାନସିକ କରି ବନ୍ଧ୍ୟାନାରୀ ସନ୍ତାନସମ୍ଭବା ହୋଇଥାନ୍ତି। ଆର୍ତ୍ତୀମାନେ ତାଙ୍କର ଛାୟାତଳେ ଦଣ୍ଡେ ବସିଯାଇ ନିଜକୁ ମାନସିକ ଭାରାକ୍ରାନ୍ତରୁ ବିମୁକ୍ତ କରିପାରିଛନ୍ତି। କଳ୍ପବଟ ତଳେ ଉପବିଷ୍ଟ ହୋଇ ନୀଳଚକ୍ରକୁ ଚାହିଁଦେଲେ ହୃଦୟରେ ଅପୂର୍ବ ଶାନ୍ତି, ସୁଖ ଓ ଆତ୍ମ ସନ୍ତୋଷ ମିଳିଥାଏ ।

ପ୍ରଧାନ ଶିକ୍ଷୟିତ୍ରୀ
ଏଗ୍ରିକଲ୍‌ଚର କଲୋନୀ ପ୍ରାଥମିକ ବିଦ୍ୟାଳୟ
ୟୁନିଟ୍–୮, ଭୁବନେଶ୍ୱର –୧୨





# ଶ୍ରୀଗୁଣ୍ଡିଚା ଯାତ୍ରା

ଅଧ୍ୟାପକ ଉଦୟନାଥ ତ୍ରିପାଠୀ

ସ୍କନ୍ଦ ପୁରାଣ ଅନୁଯାୟୀ ଶ୍ରୀକ୍ଷେତ୍ର ନୃସିହ କ୍ଷେତ୍ର ନାମରେ ପରିଚିତ। ପୁରୁଷୋତ୍ତମଙ୍କ ଉପସ୍ଥିତି ଯୋଗୁଁ ଶ୍ରୀକ୍ଷେତ୍ର ସର୍ବୋତ୍ତମ କ୍ଷେତ୍ର ଭାବେ ପରିଚିତ ଓ ମର୍ତ୍ତ୍ୟ ବୈକୁଣ୍ଠ ନାମରେ ବିଦିତ। ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ କୃଷ୍ଣ, ଶ୍ୱେତ, ପୀତ ଓ ଲୋହିତ ବର୍ଣ୍ଣ ବିଶିଷ୍ଟ। ଶ୍ରୀବଳଭଦ୍ର ଜ୍ଞାନଯୋଗ, ଶ୍ରୀଜଗନ୍ନାଥ ଭକ୍ତି ଯୋଗ ଓ ଦେବୀ ସୁଭଦ୍ରା ହେଉଛନ୍ତି କର୍ମଯୋଗର ପ୍ରତୀକ। କର୍ମର ହସ୍ତ, ଜ୍ଞାନର ଚକ୍ଷୁ ଓ ଭକ୍ତିର ହୃଦୟ ଓ ଭକ୍ତି ରସର ସମନ୍ୱୟରେ ମାନବ ଜୀବନ ସାର୍ଥକ ହୁଏ ଓ ଏହି ତ୍ରିଗୁଣ ସମନ୍ୱୟରେ ସେ ବ୍ରହ୍ମତ୍ୱ ପ୍ରାପ୍ତ କରି ମୁକ୍ତ ହୁଏ । ସଂସାରର ମାୟା ଚକ୍ରରେ ପଡ଼ି ବାରମ୍ବାର ଜନ୍ମ ମୃତ୍ୟୁର ଯନ୍ତ୍ରଣା ପାଏ ନାହିଁ ।

ଜଗନ୍ନାଥ ନାରାୟଣ ରୂପରେ, ବଳଭଦ୍ର ତ୍ରିଲୋଚନ ରୂପରେ, ସୁଭଦ୍ରା ଯୋଗମାୟା ରୂପରେ ଏବଂ ସୁଦର୍ଶନ ଗଣଦେବତା ମାଧବ ରୂପରେ ବିଦ୍ୟମାନ। ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଓଁକାର ଭାବେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ରୂପରେ ସତ୍‌ଚିତ୍ ଆନନ୍ଦ ଭାବରେ, ଋକ୍, ଯଜୁ ସାମ, ବେଦଭାବେ, ହ୍ରୀଁ, ଶ୍ରୀଁ, କ୍ଲୀଁ ବୀଜ ଭାବେ ଏବଂ ସତ୍ତ୍ୱ, ରଜ, ତମ ଭାବେ ପ୍ରତିପାଦିତ କରାଯାଇଛି। ଚତୁର୍ଦ୍ଧାମୂର୍ତ୍ତି ଏକ, ଅଭିନ୍ନ ଏବଂ ବିଭିନ୍ନ ଧର୍ମାବଲମ୍ବୀଙ୍କୁ ପ୍ରୀତ କରିବା ପାଇଁ ଆରାଧ୍ୟ ଦେବତା ରୂପେ ରତ୍ନସିଂହାସନରେ ବିଜେ କରିଛନ୍ତି । ଏହି ସର୍ବଧର୍ମର ଆରାଧ ଦେବତା ପୁଣି ଜାତି ପାତି ଭେଦଭାବର ଊର୍ଦ୍ଧ୍ୱରେ ।

ଯେଉଁ ବ୍ୟକ୍ତି ଭକ୍ତ ଭାବରେ ପରମେଶ୍ୱରଙ୍କ ନିକଟରେ ପ୍ରାଣ ଅର୍ପଣ କରି ତତ୍ପରତା ସହିତ ପରମ ଶ୍ରଦ୍ଧାରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଉପାସନା କରେ, ସେ ପରମେଶ୍ୱରଙ୍କ ଶ୍ରଦ୍ଧା ଓ ପ୍ରିୟପାତ୍ରର ଯୋଗ୍ୟତା ଅର୍ଜନ କରିଥାଏ । ପ୍ରଭୁ ଭକ୍ତର ଡାକରା ସର୍ବଦା କର୍ଣ୍ଣପାତି ଶ୍ରବଣ କରିଥାନ୍ତି ଓ ଭକ୍ତର ଆଗ୍ରହ ଦେଖି ରତ୍ନ ସିଂହାସନର ସମସ୍ତ ସୁଖ, ପୂଜା ମାର୍ଜନା ଦିବ୍ୟ ଅନ୍ନ ପ୍ରସାଦ ଇତ୍ୟାଦି ତ୍ୟାଗ କରି ନବଦିନ ପାଇଁ ବଡ଼ଦାଣ୍ଡକୁ ଭକ୍ତମାନଙ୍କର ଦର୍ଶନ ପାଇଁ ଶ୍ରୀଗୁଣ୍ଡିଚା ବା ରଥଯାତ୍ରା ଅବସରରେ ଅବତରଣ କରିଥାନ୍ତି । ଜାତି ବର୍ଣ୍ଣ ଧର୍ମର ଊର୍ଦ୍ଧ୍ୱରେ ରହି ଭକ୍ତମାନଙ୍କ ମନୋବାଞ୍ଛା ପୂରଣ କରିଥାନ୍ତି। ଖରା, ବର୍ଷା, ଝଡ଼ଝଞ୍ଝା ଇତ୍ୟାଦି ପ୍ରାକୃତିକ କ୍ରିୟାକୁ ଭ୍ରୂକ୍ଷେପ ନକରି ପ୍ରଭୁ ହସ ହସ ବଦନରେ, ଦାସିଆ ପରି ଭକ୍ତମାନଙ୍କ ହାତରୁ ଶ୍ରୀଫଳ ନେଇଥାନ୍ତି । ସାଲବେଗ ପରି ଜୀବନ ଭକ୍ତର ଭକ୍ତି ଅର୍ଘ୍ୟ ଲାଭ କରିବା ପାଇଁ ରଥ ଉପରେ ଦାଣ୍ଡଧୂଳିରେ ଅପେକ୍ଷା କରି ରୁହନ୍ତି। ଶିରରେ ଟାହିଆ ବାନ୍ଧନ୍ତି, ଶଙ୍ଖ, ଘଣ୍ଟା କାହାଳୀ, ମର୍ଦ୍ଦଳର ଶବ୍ଦ ଝଙ୍କାରରେ ଆତ୍ମବିଭୋର ହୋଇପଡ଼ନ୍ତି । ଶ୍ରୀଚୈତନ୍ୟ ଦେବଙ୍କ ପରି ଭକ୍ତମାନଙ୍କ ଗହଣରେ ସଂକୀର୍ତ୍ତନରେ ଆତ୍ମନିବେଶ କରନ୍ତି । ସାମ୍ୟ, ମୈତ୍ରୀ, ବିଶ୍ୱ ଭ୍ରାତୃତ୍ୱର ନିଦର୍ଶନ ଜନସମୁଦ୍ରରେ ଦେଖିବାକୁ ଭଲ ପାଆନ୍ତି । ସେ ତତ୍ତ୍ୱ ନିରଞ୍ଜନ ଅନାଦି ଆଦିରାମ ପୁରୁଷ ରୂପରେ ରଥଯାତ୍ରା ଦିନ ଅଚ୍ୟୁତ ଶୂନ୍ୟ ନିତ୍ୟ ରାସ, ଶୂନ୍ୟ ବାଙ୍ଫି, ଗନ୍ଧର୍ବ ମଠଠାରେ ଦ୍ୱାଦଶ ଗୋପାଳଙ୍କ ସହିତ ନିତ୍ୟରାସ କୀର୍ତ୍ତନ ଶ୍ରବଣ କରନ୍ତି। ଭକ୍ତ ବଳରାମ ଦାସଙ୍କ ବାଲି ତିଆରି ରଥ ନିକଟରେ ଉଭା ହୁଅନ୍ତି । ମାଉସୀ ମା' ଘର ନିକଟରେ ଠିଆ ହୋଇ ତାଙ୍କ ଶ୍ରଦ୍ଧା ସ୍ୱରୂପ ପୋଡ଼ପିଠା ଭକ୍ଷଣ କରନ୍ତି। ଭକ୍ତର ଗର୍ବ ଅହଂକାର ଗଞ୍ଜନ ପାଇଁ ବଡ଼ଦାଣ୍ଡରେ ଅଚଳ ମହାମେରୁ ହୋଇ ଘଣ୍ଟାଘଣ୍ଟା ଧରି ନ ଖାଇ ନ ପିଇ ଦଣ୍ଡାୟମାନ ହୋଇ ଉଭା ହୁଅନ୍ତି । ଥଟ୍ଟା, ତାମସା, ଢଗ, ଢମାଳି,



କୁସାରଚନା, ତୁଣ୍ଡଗାଳିକୁ ଭ୍ରୂକ୍ଷେପ ନକରି ନିର୍ବିକାର, ନିରାକାର ଦାରୁଭୂତ ମୂରାରୀ ସାଜି ନିଜର, ଗରିମାର ପରିଚୟ ଦିଅନ୍ତି । ପ୍ରଥମ ଭକ୍ତ ପରମ ଭକ୍ତ ରାଜ ଶିରୋମଣି ପୁରୀ ରାଜାଙ୍କ ଛେରାପହଁରା, ଜଳମିଶ୍ରିତ ସୁଗନ୍ଧିତ ଚନ୍ଦନ କର୍ପୂରର ପରଶ ଲାଭ କରିବା ପାଇଁ ଚାହିଁ ବସନ୍ତି । ମହିଳା, ପୁରୁଷ, ଶିଶୁ, ବୃଦ୍ଧ, ଯୁବକ ଯୁବତୀଙ୍କ ଆତ୍ମ ନିବେଦନ ଓ ଗୁହାରୀ କର୍ଣ୍ଣଡେରି ଶ୍ରବଣ କରନ୍ତି ଓ ତାଙ୍କ ମନୋବାଞ୍ଛା ପୂରା କରନ୍ତି ଇତ୍ୟାଦି । ସ୍କନ୍ଦ ପୁରାଣ ଅନୁଯାୟୀ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଏହି ମହୋତ୍ସବକୁ ଦର୍ଶନ କଲେ ଭକ୍ତଜନଙ୍କ ସାତକୋଟି ପାପରାଶି ନଷ୍ଟ ହୁଏ । ମହାଦେବୀଙ୍କ ଗମନ କାଳରେ ରଥାରୂଢ଼ ପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ ମାନବର ଜନ୍ମାର୍ଜିତ ପାପ ସମୂହ କ୍ଷୟ ହୋଇଯାଏ ।

ରଥଯାତ୍ରା ଦିନ ପହଣ୍ଡି ବିଜେ ସମୟରେ ଶ୍ରୀସୁଦର୍ଶନ ପରେ ବଳଭଦ୍ର, ତା'ପରେ ଦେବୀ ସୁଭଦ୍ରା ଓ ସର୍ବଶେଷରେ ଶ୍ରୀଜଗନ୍ନାଥଙ୍କୁ ଧାଡ଼ି ପହଣ୍ଡିରେ ବିଜେ କରାଯାଇଥାଏ । ଶ୍ରୀବିଗ୍ରହମାନେ ରଥାରୂଢ଼ ହେବା ପରେ ଦଇତାପତିମାନେ ରୁନ୍ଧା କାର୍ଯ୍ୟ ଶେଷ କରନ୍ତି ।

ରଥ ଉପରେ ରୁନ୍ଧା, ମାଳଫୁଲ ଦେବା, ସୋଲ ଚିତା ଇତ୍ୟାଦି ଲାଗି ହେବା ପରେ ଗୋବର୍ଦ୍ଧନ ପୀଠର ପୀଠାଧୀଶ ଜଗତଗୁରୁ ଶଙ୍କରାଚାର୍ଯ୍ୟ ତିନି ରଥ ଉପରେ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରନ୍ତି।

ଏହାପରେ ଗଜପତି ମହାରାଜା ବ୍ରତାଚାରଣ ପୂର୍ବକ ରାଜଗୁରୁଙ୍କ ଉପସ୍ଥିତିରେ ରାଜନଅରରେ ଥିବା ଇଷ୍ଟଦେବୀ କନକ ଦୁର୍ଗା ଓ ପଞ୍ଚଦେବଙ୍କ ଉପାସନା କାର୍ଯ୍ୟ ସମାପନ କରି ରଥ ଉପରେ ଛେରାପହଁରା ନିମନ୍ତେ ରାଜାଙ୍କୁ ପଟୁଆରରେ ରାଜଗୁରୁଙ୍କ ସହିତ କାହାଳିଆମାନଙ୍କର କାହାଳୀ ବାଦନ କରାଯାଇ ରଥମାନଙ୍କ ନିକଟକୁ ନିଆଯାଏ । ବଡ଼ଦାଣ୍ଡରେ ଉପସ୍ଥିତ ଲୋକାରଣ୍ୟ ଛାମୁଙ୍କୁ ଦର୍ଶନ କରି କୃତାର୍ଥ ହୋଇଥାନ୍ତି ।

ବିଧି ମୁତାବକ ମହାରାଜା ସମସ୍ତ ପ୍ରକାର ପୂଜାର୍ଚ୍ଚନା କରିସାରିବା ପରେ ତାଙ୍କ ହାତରେ ସୁନାବେଷ୍ଟିଯୁକ୍ତ ଖଡ଼ିକାମୁଠା ଧରାଇ ଦିଆଯାଏ । ରଥ ଉପରେ ରାଜା ଛେରାପହଁରା ଆରମ୍ଭ କଲେ ପଛରୁ ପୂଜାପଣ୍ଡା ଓ ଅନ୍ୟ ସେବକମାନେ ଚନ୍ଦନ, କର୍ପୂର ଓ ସୁବାସିତ ଜଳ ସିଞ୍ଚନ କରି ମନ୍ତ୍ର ଉଚ୍ଚାରଣ ସହିତ ରଥ ଶୁଦ୍ଧ କରିଥାନ୍ତି। ଏହି କ୍ରମରେ ମହାରାଜା ଛେରାପହଁରା କାର୍ଯ୍ୟ ଶେଷ କରି, ଦଣ୍ଡ ପ୍ରଣାମ ପରେ ଶ୍ରୀନଅରକୁ ଫେରି ଯାଇଥାନ୍ତି।

ପରେ ପରେ ରଥଟଣା ଆରମ୍ଭ ହେବା ସହିତ ରଥ ଉପରୁ କାହାଳିଆ ସେବକମାନେ କାହାଳୀ ବଜାଇଥାନ୍ତି। ଏହା ପରେ ଘଣ୍ଟୁଆ ସେବକମାନେ ରଥ ଉପରେ ଦୁଇପାର୍ଶ୍ୱରେ ଠିଆ ହୋଇ ସମତାଳରେ ଘଣ୍ଟ ବାଦନ କରିଥାନ୍ତି ।

ପ୍ରଥମେ ବଳଭଦ୍ରଙ୍କ ରଥଟଣା ଆରମ୍ଭ ହେଲା ପରେ ପରେ ଟଣାଯାଏ ସୁଭଦ୍ରାଙ୍କର ରଥ ଓ ଶେଷରେ ଟଣାଯାଏ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ।

ରଥଗୁଡ଼ିକ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ପହଞ୍ଚିବା ପରେ ରଥ ଉପରେ ବିଭିନ୍ନ ରୀତିନୀତି ପାଳନ କରାଯାଇ ମହାପ୍ରଭୁଙ୍କୁ ଶ୍ରୀଗୁଣ୍ଡିଚା ମନ୍ଦିର ପହଣ୍ଡି ବିଜେ କରାଯାଇଥାଏ । ତା'ପରେ ମହାପ୍ରଭୁଙ୍କୁ ବାହୁଡା ଦିନ ରଥରେ ବସାଇ ଶ୍ରୀମନ୍ଦିର ଅଭିମୁଖେ ବାହୁଡ଼ା ଯାତ୍ରା ପୂର୍ବବିଧି ଅନୁସାରେ କରାଯାଇ, ସୁନାବେଶ, ଅଧରପଣା ନୀତି ଉତ୍ସବ ପାଳନ କଲା ପରେ ଶ୍ରୀମନ୍ଦିରକୁ ପଟୁଆରରେ ନିଆଯାଇ ରଥଯାତ୍ରା କାର୍ଯ୍ୟ ସମାପ୍ତ ହୁଏ ।

---

ଶ୍ରଦ୍ଧା, ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଳବାଇ କଲୋନୀ, ଭୁବନେଶ୍ୱର–୧୭



# ତୁଳସୀ କ୍ଷେତ୍ରର ସିଦ୍ଧ ବଳଦେବ

ଡକ୍ଟର ବାସୁଦେବ ଦାସ

ପୁରୁଷୋତ୍ତମ ପୀଠ ପଞ୍ଚମ ଷଷ୍ଠ ଶତାବ୍ଦୀ ବେଳକୁ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲା ବୋଲି ପୂଜାରୀପାର୍ଲି ଶିଳାଲେଖରୁ ପ୍ରମାଣିତ ହୁଏ । ୬ଷ୍ଠ ଶତାବ୍ଦୀର ମଣିନାଗ ବଳଭଦ୍ର ଅଧିକ ଲୋକପ୍ରିୟ ଓ ପ୍ରସିଦ୍ଧ ହୋଇଥିବାରୁ ଶମ୍ଭୁଯଶ ରାଷ୍ଟ୍ରୀୟ ମର୍ଯ୍ୟାଦା ଦେଉଥିଲେ । ଏହି ମଣିନାଗ ବଳଭଦ୍ର ସଂପ୍ରତି ପୂଜା ପାଉଥିବା 'ମଣିଶୃଙ୍ଗ' ବଳଦେବ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ଦୁଇଟି ଅର୍ଥରେ ମଣି ଶବ୍ଦ ପ୍ରଯୁକ୍ତ ହୋଇଥିବାର ବିଶ୍ୱାସ: ମଣିନାଗ ପର୍ବତରେ ପୂଜା ପାଇଥିବା ବଳଭଦ୍ର ଅଥବା 'ମଣିଗର୍ଭିତ' ବଳଦେବଙ୍କୁ ସୂଚିତ କରାଯାଇଥାଏ । ଏଠାରେ ବୈଦିକ ଯୁଗର 'ହିରଣ୍ୟଗର୍ଭ' ଧାରଣାକୁ ମଧ୍ୟ ସ୍ୱୀକାର କରାଯାଇପାରେ । ତୁଳସୀକ୍ଷେତ୍ର କେନ୍ଦ୍ରାପଡ଼ାର ଅଧିଷ୍ଠାତା ଦେବତା ସିଦ୍ଧ ବଳଦେବ ସ୍ତୋତ୍ରରେ ତାହାକୁ 'ମଣିଶୃଙ୍ଗ ନିବାସାୟ ବଳଦେବାୟତେ ନମଃ' ସ୍ତୁତି କରାଯାଉଥିବାରୁ ମୁଦ୍‌ଗଳ ରାଜନ ଶମ୍ଭୁଯଶଙ୍କର ରାଷ୍ଟ୍ରଦେବତା ହିଁ ଏହି ବଳଭଦ୍ର ବା ବଳଦେବ ।



ପୁରାଣବର୍ଣ୍ଣିତ ଶ୍ରୀକୃଷ୍ଣ ଶ୍ରୀ ବଳଦେବ ସମର ଓ କୃଷିର ପ୍ରତୀକ ଭାବରେ ଭାରତବର୍ଷରେ 'ପଞ୍ଚ ଦୈବ୍ରଜମଣ୍ଡଳେ' କାଷ୍ଠ ନିର୍ମିତ ମୂର୍ତ୍ତି ଭାବେ ପୂଜା ପାଉଥିଲେ । ବଳଦେବଙ୍କର ଦେହାବସାନକୁ ଅଲୌକିକ ସହସ୍ରଶୀର୍ଷା ପୁରୁଷ ଅନନ୍ତ ବା ଶେଷ ନାଗର କଳ୍ପନା କରାଯାଇ ବଳଦେବ ଚେତନାକୁ ଅଧିକ ବିଶ୍ୱାସଯୋଗ୍ୟ କରାଯାଇଅଛି । ସହସ୍ର ଶୀର୍ଷା ନାଗ ବା ସପ୍ତଫଣାଙ୍କିତ ନାଗ ରୂପୀ ଅନନ୍ତ, ଯାହାଙ୍କର ଗୋଟିଏ ଫଣା ଉପରେ ବିଶ୍ୱର ସ୍ଥିତି ବୋଲି ବୈଷ୍ଣବ ଦର୍ଶନରେ ପ୍ରତିଫଳିତ ହୁଏ । ବିଶ୍ୱର ମାଧ୍ୟାକର୍ଷଣ ଶକ୍ତିକୁ ସହସ୍ରଶୀର୍ଷା ସଂକର୍ଷଣର ବୌଦ୍ଧିକ ବିଚାର ସ୍ୱୀକାର କରିନେଲା । ଏଠାରେ ଉଲ୍ଲେଖନୀୟ ଯେ 'ମଣିନାଗ ବଳଭଦ୍ର'ଙ୍କ ପୂର୍ବରୁ ନାଗବଂଶୀ ନରପତିମାନେ ନାଗ ବା ସର୍ପ ଦେବତାଙ୍କର ପୂଜା ଏହି ଶିବରୂପୀ ସଂକର୍ଷଣଙ୍କଠାରେ ସ୍ଥାପିତ ହୋଇଗଲା । ଏଣୁ ପଞ୍ଚରାତ୍ର, ଭାଗବତ ଧର୍ମ, ନାଗଧର୍ମ ଓ ସଂକର୍ଷଣ ବଳଦେବ ଏକ ସଂହତିର ରୂପ ଗ୍ରହଣ କରି ଭାରତବର୍ଷରେ ବିଭିନ୍ନ ସ୍ଥାନରେ ପୂଜା ପାଇଲେ । ଆଧୁନିକ କେନ୍ଦ୍ରାପଡ଼ା 'ବ୍ରହ୍ମକ୍ଷେତ୍ର' ଓ ବ୍ରାହ୍ମଣୀ ତୁଳସୀଙ୍କୁ ସମ୍ମିଳିତ କରି ପରବର୍ତ୍ତୀ ସମୟରେ 'ତୁଳସୀ କ୍ଷେତ୍ର' ହୋଇଅଛି । ସ୍ଥୂଳତଃ ଜଗନ୍ନାଥ ଚେତନାର ବିକାଶ ପୂର୍ବରୁ ବଳଦେବ ଚେତନାର ବିକାଶ ଘଟିଥିବାରୁ ବଳଦେବ 'ବଡ଼ଭାଇ' ମର୍ଯ୍ୟାଦା ଲାଭ କରିଅଛନ୍ତି ।

ଶ୍ରୀତୁଳସୀ କ୍ଷେତ୍ର ମାହାତ୍ମ୍ୟର ରଚୟିତା ୧୬ଶ ଶତାବ୍ଦୀର ବିପ୍ରଶ୍ରୀ ମାଧୁରୀ । ସେଥିରେ 'ବେଦ ସସ୍ରଯୁଗ'ରେ



ପୂଜା ପାଇବାର କଥା ଉଲ୍ଲେଖ ଅଛି । ବୈଦିକ ଯୁଗର ପ୍ରଭାବ ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପର୍ଯ୍ୟନ୍ତ ଥିଲା ବୋଲି ଆଲୋଚକମାନେ ପ୍ରତିପାଦିତ କରିଅଛନ୍ତି । ଏହାର ପରବର୍ତ୍ତୀ ଏକ ହଜାର ବର୍ଷ ଅର୍ଥାତ୍ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ବଳଦେବଙ୍କର ଆରାଧନାକୁ ସ୍ୱୀକାର କରାଯାଏ । ରାଜା ଶମ୍ଭୁଯଶଙ୍କ କାଳରେ ଏହି ଅଧିଷ୍ଠାତ୍ରି ଦେବତାଙ୍କର ଲୋକପ୍ରିୟତା ଓ ଆଧାତ୍ମିକ ଚେତନା ଅନନ୍ୟ ସାଧାରଣ ଥିବାରୁ ତାଙ୍କର 'ତୋଷଳୀ' ସାମ୍ରାଜ୍ୟରେ ବହୁ ସ୍ଥାନରେ ବଳଦେବଙ୍କର ପୂଜୋପାସନା ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମହାନଦୀର ଉତ୍ତରରେ ତୋଷଳୀ ରାଜ୍ୟ ହୋଇଥିବାରୁ ଅଧିକାଂଶ ସ୍ଥାନରେ ତ୍ରିମୂର୍ତ୍ତି (ବଳଦେବ, ଜଗନ୍ନାଥ ଓ ସୁଭଦ୍ରା) ପୂଜା ପାଉଥିଲେ ମଧ୍ୟ ସେଗୁଡ଼ିକ ବଳଦେବ ମନ୍ଦିର ନାମରେ ନାମିତ । ଏହିଭଳି ସାଲେପୁର, ଇନ୍ଦୁପୁର, ଢେଙ୍କାନାଳ, କେନ୍ଦୁଝର, କୁପାରୀ, ଔରଙ୍ଗବାଦ ଓ ମଂଜୁରିରୋଡ ଆଦି ସ୍ଥାନରେ ବଳଦେବଜୀଉଙ୍କର ପୂଜା ପ୍ରଚଳିତ । ମହାନଦୀର ଦକ୍ଷିଣ ଦିଗରେ ଅର୍ଥାତ୍ କଙ୍ଗୋଦ ରାଜ୍ୟର ରାଷ୍ଟ୍ରଦେବତା ଜଗନ୍ନାଥ ପୂଜା ପାଉଅଛନ୍ତି । ପ୍ରଥମେ ବଳଦେବ ଏକାକୀ ଏକମାତ୍ର ବିଗ୍ରହ ଶ୍ୱେତ ମାଧବ ବା ମୁଦ୍‌ଗଲ ମାଧବ ରୂପେ ପୂଜା ପାଉଥିଲେ । ପରେ ତାଙ୍କ ସହ ଶକ୍ତିରୂପା ରେବତୀଙ୍କୁ ସ୍ଥାପନ କରାଯାଇଥିଲା ।

ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବଳଦେବ ଏକ ମଣିମୟ ମଣ୍ଡପ 'ଚତୁରସ୍ର' ଉପରେ ପୂଜା ପାଉଥିଲେ । ଭୌମବଂଶୀ ରାଣୀ କଲାଣୀ ଦେବୀ ବଳଦେବଙ୍କ ନିମନ୍ତେ ବିଶାଳ ମଣ୍ଡପ ନିର୍ମାଣ କରାଇଥିଲେ । ଦେବଗଣ ତୁଳସୀକ୍ଷେତ୍ରରେ ଦେଖିଲେ ମନୋରମ ମଣ୍ଡପ । 'ଚତୁରସ୍ର' ମଧ୍ୟରେ ରତ୍ନବେଦୀ ସୁବର୍ଣ୍ଣସ୍ତମ୍ଭରେ ସଂଯୁକ୍ତ । ମଣ୍ଡପର ଦୈର୍ଘ୍ୟ ୨୫୦ହାତ ଏବଂ ପ୍ରସ୍ଥ ୨୫୦ ହାତ ଥିଲା । ଏହି ସ୍ଥଳୀ ବୈକୁଣ୍ଠ ସଦୃଶ ପବିତ୍ର ଓ ଶୋଭନୀୟ । ଦେବଗଣ ଅମର୍ତ୍ତ୍ୟ ଦୁର୍ଲଭ ଦୃଶ୍ୟ ସଂଦର୍ଶନ କରି ନିଜକୁ ଧନ୍ୟ ମଣିଥିଲେ । ସପ୍ତମ–ଅଷ୍ଟମ ଶତାବ୍ଦୀରେ ଏଠାରେ ବୌଦ୍ଧ ଓ ଜୈନ ଧର୍ମର ପ୍ରଭାବ ପଡ଼ିଥିଲା । ଭୌମ ରାଜବଂଶୀ ଶାସକଗଣ ବିଶେଷ ଭାବେ ବୌଦ୍ଧ ଭାବଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ ।

ଇନ୍ଦ୍ରଦ୍ୟୁମ୍ନ ମହାରାଜ ନୀଳାଚଳ ଧାମ ଯାତ୍ରା କରିବାର କାହାଣୀ ସର୍ବଜନବିଦିତ । ତାଙ୍କର ଏହି ଯାତ୍ରା ପଥର ଅନୁସଂଧାନ କଲେ, ମହାନଦୀର ଉତ୍ତର ପଟରେ ଆସି ଉଡ୍ର ରାଜାଙ୍କ ସହିତ ରାତ୍ର ତୃତୀୟ ପ୍ରହର ପର୍ଯ୍ୟନ୍ତ ବିଭିନ୍ନ ବିଷୟ ଆଲୋଚନା ପୂର୍ବକ ପରଦିନ ପ୍ରଭାତରେ 'ଧାତୁ କନ୍ଦର' ଅରଣ୍ୟରେ ମାଧବ–ପୂଜା ସଂପନ୍ନ କରି ମହାନଦୀ–ଚିତ୍ରୋପ୍ତଳା ପାରହୋଇ ନୀଳାଚଳ ଧାମକୁ ଯାତ୍ରା କରିଥିଲେ । ଯେଉଁ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ଅବସ୍ଥାନ କରିଥିଲେ ତାହା 'ଇନ୍ଦ୍ରପୁର' ବା ଇନ୍ଦୁପୁର ନାମରେ ଖ୍ୟାତ । ଯେଉଁ ମାଧବଙ୍କୁ ଇନ୍ଦ୍ରଦ୍ୟୁମ୍ନ ମହାରାଜ ପୂଜା କରିଥିଲେ ତାହା ହିଁ 'ଶ୍ୱେତମାଧବ' ବା ମୁଦ୍‌ଗଳ ମାଧବ । ଯଯାତିକେଶରୀଙ୍କୁ ନୀଳକଣ୍ଠ ଦାସ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ବିଚାର କରିଛନ୍ତି । ଏହି ପରିପ୍ରେକ୍ଷୀରେ ଯଯାତି କେଶରୀ ଏଠାରେ ମାଧବ ପୂଜା କରିବା ସହିତ ଛୋଟ ମନ୍ଦିରଟି ବଳଦେବଙ୍କ ପାଇଁ ଚତୁରସ୍ର ମଣ୍ଡପରେ ନିର୍ମାଣ କରାଇଥିଲେ ।

ପ୍ରାଚୀନ ଦେଉଳ ନିର୍ମାଣ– ଓଡ଼ିଶାର ଧାର୍ମିକ ଓ ସାଂସ୍କୃତିକ ଇତିହାସର ମହାମହିମ ସମ୍ରାଟ ତୃତୀୟ ଅନଙ୍ଗଭୀମ ଦେବ ଅବିସ୍ମରଣୀୟ । ଯଯାତି କେଶରୀଙ୍କ ନିର୍ମିତ ୩୮ ହାତ ଉଚ୍ଚତା ବିଶିଷ୍ଟ ମନ୍ଦିରକୁ ତୃତୀୟ ଅନଙ୍ଗଭୀମଦେବ ବିଶାଳ ଶ୍ରୀମନ୍ଦିରରେ ପରିଣତ କରିବା ଇତିହାସ କହେ । ବଳଦେବଙ୍କ ପୂଜାଉପାସନା କ୍ଷେତ୍ରରେ କୁହାଯାଏ ଯେ ମହାପ୍ରଭୁ ପାତାଳି ହୋଇଯାଇଥିଲେ । ପାତାଳି ହେବାର ସମୟ ସମ୍ଭବତଃ ନବମ ଶତାବ୍ଦୀ ପରେ ତୃତୀୟ ଅନଙ୍ଗ ଭୀମଦେବ ବିଶାଳ ଶ୍ରୀମନ୍ଦିରରେ ପରିଣତ କରିବା ଇତିହାସ କହେ । ବଳଦେବଙ୍କ ପୂଜା ଉପାସନା କ୍ଷେତ୍ରରେ କୁହାଯାଏ ଯେ ମହାପ୍ରଭୁ ପାତାଳି ହୋଇ ଯାଇଥିଲେ । ପାତାଳି ହେବାର ସମୟ ସମ୍ଭବତଃ ନବମ ଶତାବ୍ଦୀ ପରେ ତୃତୀୟ ଅନଙ୍ଗଭୀମ ବା ଗଙ୍ଗ ବଂଶ ରାଜତ୍ୱର ଅଭ୍ୟୁଦୟ ପର୍ଯ୍ୟନ୍ତ । ବୌଦ୍ଧ ଧର୍ମ ପ୍ରାଧାନ୍ୟ ହେତୁ ତାହାକୁ ପାତାଳି



କରାଯାଇଥିଲା ଏବଂ ଆବିଷ୍କାର ସ୍ୱପ୍ନାଦିଷ୍ଟ ଛଳରେ ବ୍ୟକ୍ତ କରାଯାଇଅଛି । ଏହି ପ୍ରସଙ୍ଗ ରାଜାଙ୍କ କର୍ଣ୍ଣଗୋଚର କରାଯାଇ ମନ୍ଦିର ନିର୍ମାଣ ଓ ମୂର୍ତ୍ତି ପ୍ରତିଷ୍ଠା ହୋଇଥିଲା । ଏହି ମନ୍ଦିରରେ ରେବତୀ ଓ ବଳଦେବଙ୍କର ପୂଜା ହୋଇଥିଲା । ଷାଠିଏ ହାତ ଉଚ୍ଚତାର ଏକ ରେଖ ଦେଉଳି ନିର୍ମିତ ହୋଇଥିଲା, ଯାହାର ଏକ ମଡ଼େଲ ସଂପ୍ରତି ଇଚ୍ଛାପୁର ମନ୍ଦିରସ୍ଥ ବେଢ଼ାରେ ବିଦ୍ୟମାନ ।

ମୂଳ ମନ୍ଦିରର ବିକାଶ ଓ ଜଗନ୍ନାଥ ମୂର୍ତ୍ତି– ଶ୍ରୀବଳଦେବଙ୍କର ଗୌରବମୟ ଅଧ୍ୟାୟ ବିକଶିତ ହୋଇଥିଲା ଭକ୍ତିଯୁଗ ବା ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ । ଅତିବଡ଼ୀ ଜଗନ୍ନାଥ ଦାସ ଏହି କ୍ଷେତ୍ରରେ ଅଧିକାଂଶ ସମୟ ବିତାଉଥିଲେ । ରେବତୀ ଓ ପୂଜାରିଣୀ ତୁଳସୀଙ୍କ ପରିବର୍ତ୍ତେ ମନ୍ଦିରରେ ବିଜେ କଲେ ଜଗନ୍ନାଥଙ୍କ ଶ୍ରୀମୂର୍ତ୍ତି । ଏହି ମୂର୍ତ୍ତି ଓ ସୁଭଦ୍ରା ଭାଗବତକାର ଜଗନ୍ନାଥ ଦାସ ଓ ଅଚ୍ୟୁତାନନ୍ଦ ଦାସଙ୍କ ପରାମର୍ଶ ଓ ତତ୍ତ୍ୱାବଧାନରେ ନିର୍ମିତ ତଥା ପ୍ରତିଷ୍ଠା ହୋଇଥିଲା । 'ତୁଳସୀ'ଙ୍କୁ ବୈଷ୍ଣବ ଭାବାଦର୍ଶରେ ପ୍ରାଧାନ୍ୟ ଦିଆଯାଇଥିଲେ ହେଁ, ଦେଉଳ ମଧ୍ୟସ୍ଥ ତୁଳସୀ ସୁଭଦ୍ରାରେ ପରିଣତ ହେବା ଏବଂ ତୁଳସୀ 'ବାଣୀ' ରୂପୀ ହୋଇ ଅନତି ଦୂରରେ ପୂଜା ପାଇଲେ । ଶ୍ରୀଚୈତନ୍ୟ ପ୍ରତିବର୍ଷ ତୁଳସୀ କ୍ଷେତ୍ରକୁ ଆସି ସଂକୀର୍ତ୍ତନ ରସ ପ୍ରସାରଣ ପୂର୍ବକ ସ୍ନାନ ପୂର୍ଣ୍ଣିମା ବେଳକୁ ଶ୍ରୀକ୍ଷେତ୍ର ପ୍ରତ୍ୟାବର୍ତ୍ତନ କରୁଥିଲେ । ନବମ ଦଶମ ଶତାବ୍ଦୀର ହରିହର ବିଚାରଦୃଷ୍ଟେ ମନ୍ଦିରରେ ବିଲ୍ୱପତ୍ର ଓ ତୁଳସୀ ଜଳର ପ୍ରବର୍ତ୍ତନ କରାଯାଇଥିଲା । ଉଲ୍ଲେଖନୀୟ ଯେ ଜଗନ୍ନାଥ ଶ୍ରୀମୂର୍ତ୍ତି ଶ୍ରୀକ୍ଷେତ୍ର ସଦୃଶ ଚକାଡୋଳା ନହୋଇ ବଙ୍କାଡୋଳା ବା ପୁଣ୍ଡରୀକାକ୍ଷ ହୋଇଅଛନ୍ତି ।

ବିଗ୍ରହ ଓ ପୂଜା ସଂପର୍କରେ ସେବକ ସ୍ୱର୍ଗତ ନାରାୟଣ ମେକାପ ଏକ ପାଣ୍ଡୁଲିପିରେ ଉଲ୍ଲେଖ କରିଛନ୍ତି ଯେ ଆଜିକାଲି ପରି ବିଗ୍ରହ ବୃହଦାକାର ନଥିଲେ । ଭାଗବତ ରଚୟିତା ଭକ୍ତ କବି ଜଗନ୍ନାଥ ଦାସଙ୍କ ସମୟରେ ପରିବର୍ତ୍ତନ ହୋଇଥିଲା । ଏହି ସମୟରେ ଯାତ୍ରା ସଙ୍ଗତ ନଥିଲା କିନ୍ତୁ ନୀତିଖଞ୍ଜା ପ୍ରଚୁର ଥିଲା । ସେବା ନୀତି ମହାଜନ ପାଣିଗ୍ରାହୀ ସୁଚାରୁପେ ଚଳାଉଥିଲେ । ପୂଜକ ଥିଲେ ପତ୍ରୀ, ଏହା ପୂର୍ବରୁ ସୂପକାର କାନ୍ୟକୁବ୍‌ଜରୁ ଅଣାଯାଇ କାର୍ଯ୍ୟ କରୁଥିଲେ । ଶ୍ରୀଜୀଉଙ୍କର ଯାବତୀୟ ପଦାର୍ଥ ବସ୍ତ୍ର ଗୋଡ୍ରୀୟଙ୍କ ହସ୍ତରେ ନ୍ୟସ୍ତ ଥିଲା । ଏମାନେ ମଣିମୁକ୍ତା ରତ୍ନାଦିଠାରୁ ଶ୍ରୀଜୀଉଙ୍କ ସାମାନ୍ୟ ବସ୍ତ୍ର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟର ଭାର ନେଇ ଭୋଗ କରୁଥିଲେ । ଜଗନ୍ନାଥ ଦାସ ଶ୍ରୀଜୀଉଙ୍କ ସେବକମାନଙ୍କୁ ସ୍ୱ ଅତିବଡ଼ୀ ଧର୍ମରେ ଦୀକ୍ଷିତ କରାଇ ସେବକଙ୍କୁ ଛତିଶା ନିଯୋଗୀରେ ବିଭକ୍ତ କରାଇ ସେବାର ଶୃଙ୍ଖଳା କରାଇ ଦେଲେ । ଠାକୁର ରାଜା, ପରିଛା, ସୁଆର, ମେକାପ ପ୍ରଭୃତି ବିଭାଗ ଯୋଗାଇବାକୁ ହୋଇଥିଲା ।

କଳାପାହାଡ– ହିନ୍ଦୁ ବିଦ୍ୱେଷୀ କଳାପାହାଡ ତତ୍‌କାଳ ଆକ୍ରମଣ କରି ବହୁ ଦେବ ମନ୍ଦିର ଧ୍ୱଂସ ଓ ଲୁଣ୍ଠନ କରିଥିଲେ । କେନ୍ଦ୍ରାପଡାସ୍ଥ ବଳଦେବଙ୍କୁ ଆକ୍ରମଣ କରି ସୁନା, ହୀରା ଓ ରତ୍ନାଦି ଲୁଟି ନେଇଥିଲେ ମାତ୍ର ମନ୍ଦିର ଧ୍ୱଂସ କରି ପାରି ନଥିଲେ । ପୂଜକ ଓ ସେବାୟତମାନେ ଦିଅଁଙ୍କୁ ସ୍ଥାନାନ୍ତର କରି ଝାଡ଼ ଜଙ୍ଗଲରେ ଲୁଚାଇଥିଲେ । କଳାପାହାଡ଼ ଯିବା ପରେ ପୁନଶ୍ଚ ମନ୍ଦିରରେ ପ୍ରତିଷ୍ଠା ପାଇଥିଲେ ଶ୍ରୀବଳଦେବ ।

ଇଚ୍ଛାପୁର ଇଚ୍ଛାବିହାରୀ– ଲୁଣାନଦୀ ତଟରୁ ଶ୍ରୀସିଦ୍ଧ ବଳଦେବଙ୍କୁ କୁଜଙ୍ଗ ରାଜା ନେଇଯିବାର ଉଦ୍ୟମ କରିଥିଲେ । କିମ୍ବଦନ୍ତୀ ଅଛି– ମଧୁସାଗରରେ ପୋତ ଅଟକି ରହିଲା । ରାଜାଦେଶ ସତ୍ତ୍ୱେ ନାବିକ ନୌକା ଚଳାଇ ପାରିଲେ ନାହିଁ । ଯେଉଁଠି ଆଜି ଶ୍ରୀଜୀଉ ବିରାଜମାନ, ତାହା 'ଛେଦରା' ଭୂମି । ଛେଦରା ରାଜାଙ୍କୁ ସ୍ୱପ୍ନାଦେଶ ହୋଇ ମନ୍ଦିର ନିର୍ମାଣ କରିବା ସହିତ ଭୂସଂପତ୍ତି କିଛି ଖଞ୍ଜା କରିଥିଲେ । ଛେଦରା ରାଜାଙ୍କ ସହଯୋଗ ଓ ସଦିଚ୍ଛାରେ ପ୍ରଥମ ଅର୍ଥାତ୍ ଆଜିର ବାଟଦେଉଳ ନିର୍ମାଣ କରାଯାଇ ପୂଜାର୍ଚ୍ଚନା ହୋଇଥିଲା । 'ଇଚ୍ଛାପୁର' ବୋଲି ଏକ ମୌଜା ନଥିଲା । ତାହା ଶାମଗୁଡିଆ ଗ୍ରାମର ଅନ୍ତର୍ଭୁକ୍ତ । ଶ୍ରଦ୍ଧାଳୁ ଭକ୍ତମାନଙ୍କର ବିଶ୍ୱାସ ସେ ମହାପ୍ରଭୁ ଇଚ୍ଛାକରି ଏଠାରେ ରହିବାରୁ ସେ ଇଚ୍ଛା ବିହାରୀ ଏବଂ ତାଙ୍କର ବିଜେସ୍ଥଳୀ



'ଇଚ୍ଛାପୁର' । ଛେଦରା ରାଜା ଠାକୁର ବେଢ଼ା ନିର୍ମାଣାଦି କେତେକ କାର୍ଯ୍ୟ ଓ ନୀତି ଚଳାଇ ବଂଶାନୁକ୍ରମେ ସୁରୁଖୁରୁରେ ନୀତି ଚଳାଇଥିଲେ ।

ଠାକୁର ରାଜା – ଚତୁର୍ଦ୍ଦଶ ଶତାବ୍ଦୀରେ ଆଳି ରାଜପୁତ୍ର ଶୈଳନାଥ ସନ୍ନ୍ୟାସୀରୁ ସଂସାର ଗ୍ରହଣ କରିଥିଲେ । ସେହି ସମୟରେ ଛେଦରା ରାଜବଂଶର ଉତ୍ପତ୍ତି । କୁଜଙ୍ଗ ଆଳି ରାଜବଂଶର ବୈବାହିକ ସଂପର୍କ ସ୍ଥାପନ ପରେ ଛେଦରା ରାଜା ରଥଯାତ୍ରାରେ ଛେରାପହଁରା କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ଏହି ବଂଶର ଦୁର୍ଗା ପ୍ରସାଦ ନରେନ୍ଦ୍ର ମହାପାତ୍ର ଦୁଇଟି କନ୍ୟା ସଂତାନ ଛାଡ଼ି ପରଲୋକ ଗମନ କରିବା ପରେ ତାଙ୍କର ରାଣୀ ପାଟ ମହାଦେଈ କନ୍ୟା ବିବାହ ପାଇଁ ବଡ଼କୋଠା ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କୁ ତାଙ୍କର ରାଜସ୍ୱତ୍ୱ ବିକ୍ରୟ କରିଦେବା ପରେ ନରେନ୍ଦ୍ର ଓ ପରବର୍ତ୍ତୀ କାଳରେ ବଳରାମ ଭ୍ରମରବର ଆଦି ପୁରୁଷାନୁକ୍ରମେ ଠାକୁର ରାଜାର ମାନ୍ୟତା ଲାଭ କରିଥିଲେ । ଏହି ବଂଶର ଭ୍ରାତୃତ୍ୱ ବିବାଦ ହେବାରୁ ଉକ୍ତ ସେବା ତାଙ୍କ କୁଳ ପୁରୋହିତ ଗୋସାଇଁ ବଂଶକୁ ଅର୍ପଣ କରିଥିଲେ । ସେବେଠାରୁ ଗୋସାଇଁ ବଂଶ ଛେରାପହଁରା କରନ୍ତି ।

୬ଷ୍ଠ ଶତାବ୍ଦୀର ରାଜା ବସୁକଳ୍ପ କେଶରୀଙ୍କ ପତ୍ନୀ ତୁଳସୀ ନାମରେ ତୋଷଳୀ ରାଜ୍ୟ ତୁଳସୀ କ୍ଷେତ୍ର ହେବା ବିଶ୍ୱାସଯୋଗ୍ୟ । ଶ୍ରୀକ୍ଷେତ୍ର ଲକ୍ଷ୍ମୀଙ୍କର କ୍ଷେତ୍ର ହେବାବେଳେ ଶ୍ରୀତୁଳସୀ କ୍ଷେତ୍ର ଅତୁଳନୀୟ ଧାର୍ମିକ ଓ ଐତିହାସିକ ବିଭବରେ ପରିପୂର୍ଣ୍ଣ । ୧୯୪୨ ପରେ ଟ୍ରଷ୍ଟି ଶ୍ରୀଧର ସାହୁଙ୍କ ଦ୍ୱାରା ଅନେକ କିଛି ଉନ୍ନତି ସାଧିତ ହୋଇଥିଲା । ୧୯୮୦ ପରେ ଆନନ୍ଦ ବଜାର କୋଠା ନିର୍ମାଣ ପାର୍ଶ୍ୱ ମନ୍ଦିର କସ୍ତୁରୀ ଚରଣ ଦାଶ କରାଇଥିଲେ ଓ ଜନ ପ୍ରତିନିଧିମାନଙ୍କ ଜରିଆରେ ରଥ ଦାଣ୍ଡ, ରାସ୍ତା ଓ ଚନ୍ଦନ ପୋଖରୀର ଉନ୍ନତି ହୋଇପାରିଅଛି । ଏହି କ୍ଷେତ୍ରର ଅଂଶବିଶେଷ ବହୁ ଦେବାଦେବୀ ଓ ତୀର୍ଥ ରହିଅଛି, ଯାହାର ଧାର୍ମିକ ଓ ଆଧାତ୍ମିକ ବୈଶିଷ୍ଟ୍ୟ ବେଶ୍ ଉପଲବ୍ଧ । ଇନ୍ଦୁପୁର ବଳଦେବ, ଲଚ୍ଛମନଜୀ, ସଖୀବଟ, ସିଦ୍ଧଦାସ ପୀଠ କୁହୁଡି, କିଆରବାଙ୍କ ମଠ, ବାୟାମଠ, ହନୁମାନ ମଠ, ସିଦ୍ଧ ସରୋବର ଓ ଗୋବିନ୍ଦଜୀଉ ଆଦି ବଳଦେବ ପୀଠର ଅବିଚ୍ଛେଦ୍ୟ ଅଙ୍ଗ ।

ଗବେଷକ
ଜୟୀପୁରା, ତୁଳସୀ କ୍ଷେତ୍ର, କେନ୍ଦ୍ରାପଡା–୭୫୪୨୧୧

# ଜଗନ୍ନାଥ

ମଧୁସୂଦନ ଦାଶ



ସବୁ ବାଲି ହେଉ, ଶରଧାବାଲି
ସବୁ କ୍ଷେତ୍ର ହେଉ ତୋ ଶ୍ରୀକ୍ଷେତ୍ର
ସବୁ ଦାଣ୍ଡ ହେଉ ତୋ ବଡଦାଣ୍ଡ
ସବୁ ଯାତ ହେଉ ଗୁଣ୍ଡିଚା ଯାତ

ଏ ମଣିଷ ଭିତରେ
ଉଡୁଥାଉ ଖାଲି
ଶାନ୍ତି ମୈତ୍ରୀର
ପତିତପାବନ ନେତ ।

ଉପ ଜିଲ୍ଲାପାଳ, ପୁରୀ





# ଓଡ଼ିଶାରେ ବୈଷ୍ଣବ ଧର୍ମ ଓ ଭଗବାନ ପୁରୁଷୋତ୍ତମ ନରସିଂହ

ଡକ୍ଟର ଭାରତୀ ପାଲ

ଓଡ଼ିଶାର ଧାର୍ମିକ ଚେତନାକୁ ଅଧିକ ଋଦ୍ଧିମନ୍ତ କରିଅଛି ଦ୍ୱାଦଶ ଶତାବ୍ଦୀରେ ପୁରୀଠାରେ ସ୍ଥାପିତ ହୋଇଥିବା ପ୍ରସିଦ୍ଧ ଏବଂ ବିଶାଳକାୟ ପୁରୁଷୋତ୍ତମ - ଶ୍ରୀଜଗନ୍ନାଥ ମନ୍ଦିର। ଏହି ମନ୍ଦିରର ନିର୍ମାତା ଯଥା ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବ ଉତ୍କଳ ଅଧିକାର କରି ତାଙ୍କର ରାଜଧାନୀକୁ କଳିଙ୍ଗ ନଗରରୁ କଟକକୁ ଉଠାଇ ଆଣିଥିଲେ। ରାଜା ଚୋଡ଼ଗଙ୍ଗ ତାଙ୍କର ପୂର୍ବ ପୁରୁଷମାନଙ୍କ ପରି ପରମ ଶିବଭକ୍ତ ଥିଲେ, କିନ୍ତୁ ପରବର୍ତ୍ତୀ ସମୟରେ ସେ ନିଜର ମତ ପରିବର୍ତ୍ତନ କରି ନିଜକୁ ପରମ ମହେଶ୍ୱର, ପରମ ବୈଷ୍ଣବ ଏବଂ ପରମ ବ୍ରାହ୍ମଣ୍ୟ ରୂପେ ପରିଚିତ କରାଇଥିବାର ଖ୍ରୀଷ୍ଟାବ୍ଦ ୧୧୧୨ରେ ପ୍ରଦତ୍ତ କୋର୍ଣ୍ଣ ତାମ୍ର ଫଳକରୁ ସୂଚନା ମିଳେ। ଏହି ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଓ ପ୍ରଚାର ବହୁଳ ଭାବରେ ବୃଦ୍ଧି ପାଇଥିଲା ଏବଂ ପୁରୁଷୋତ୍ତମ ଜଗନ୍ନାଥ ଧାମ ପୂର୍ବ ଭାରତରେ ଏକ ପ୍ରସିଦ୍ଧ ଧାର୍ମିକ କ୍ଷେତ୍ର ଭାବରେ ପରିଗଣିତ ହୋଇ ଆସିଅଛି।



ବିଶ୍ୱ ବ୍ରହ୍ମାଣ୍ଡର ପରମ ଆରାଧ୍ୟ ଦେବତା ପ୍ରଭୁ ପୁରୁଷୋତ୍ତମ ସମୟାନୁକ୍ରମେ ବିଭିନ୍ନ ଚେତନା ମାଧ୍ୟମରେ ବିଭିନ୍ନ ନାମରେ ଏବଂ ରୂପରେ ପୂଜା ପାଇ ଆସୁଛନ୍ତି। ଶୈବ ଧର୍ମ ପରି ବୈଷ୍ଣବ ଧର୍ମ ମଧ୍ୟ ବହୁ ପ୍ରାଚୀନ ଅଟେ। ଐତିହାସିକ ଦୃଷ୍ଟିରୁ ଅବଲୋକନ କଲେ ଜଣାଯାଏ ଗଙ୍ଗ ବଂଶର ବହୁ ପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲା। ଖ୍ରୀଷ୍ଟାବ୍ଦ ୪ର୍ଥ ଶତାବ୍ଦୀରେ ଗୁପ୍ତ ବଂଶର ସମ୍ରାଟ୍ ସମୁଦ୍ର ଗୁପ୍ତଙ୍କର ଦକ୍ଷିଣ ଭାରତ ଅଭିଯାନ ପରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଉତ୍ପତ୍ତି ହୋଇଥିଲା।

ପରବର୍ତ୍ତୀ ସମୟରେ ଖ୍ରୀଷ୍ଟାବ୍ଦ ପଞ୍ଚମ ଶତାବ୍ଦୀରେ ଓଡ଼ିଶାର କଳାହାଣ୍ଡି ଏବଂ କୋରାପୁଟ ଜିଲ୍ଲାରେ ରାଜୁତି କରୁଥିବା ନଳବଂଶର ରାଜାମାନେ ପୃଷ୍ଠପୋଷକତା କରିଥିଲେ ଏବଂ ଭଗବାନ ବିଷ୍ଣୁଙ୍କର ଏକ ପାଦଚିହ୍ନ ପ୍ରତିଷ୍ଠା କରିବା ସଙ୍ଗେ 'ରାଜୀବ ଲୋଚନ' ନାମରେ ମନ୍ଦିର ପ୍ରତିଷ୍ଠା କରୁଥିବାର ବିଭିନ୍ନ ଶିଳାଲେଖରୁ ସୂଚନା ମିଳେ। ଏହି ବଂଶର ଶିଳାଲେଖରୁ ମଧ୍ୟ ଭଗବାନ ବିଷ୍ଣୁଙ୍କର 'ବାମନ' ଅବତାର ସମ୍ବନ୍ଧରେ ସୂଚନା ମିଳେ। ସେହିପରି ଭାବରେ ଦକ୍ଷିଣ କୋଶଳ ରାଜ୍ୟ ଯଥା ସମ୍ବଲପୁର, ବଲାଙ୍ଗିର, ସୋନପୁର ଏବଂ କଳାହାଣ୍ଡି ଜିଲ୍ଲାରେ ରାଜୁତି କରୁଥିବା ଶରଭ ପୁରୀୟ ବଂଶର ଶାସକମାନେ ମଧ୍ୟ 'ପରମ ଭଗବତ' ଉପାଧି ଧାରଣା କରିଥିଲେ ଏବଂ ସେମାନଙ୍କର ପ୍ରଦତ୍ତ ସୁବର୍ଣ୍ଣ ମୁଦ୍ରାରେ ଗରୁଡ଼ ଦେବତାଙ୍କର ପ୍ରତିଚ୍ଛବି ରହିଅଛି। ଏହି ବଂଶର ଶାସକ ପ୍ରସନ୍ନ ମାତ୍ରାଙ୍କର



ସୁବର୍ଣ୍ଣ ମୁଦ୍ରାରେ ଗରୁଡ଼ ଦେବତା ତାଙ୍କର ଦୁଇ ହାତରେ ଶଙ୍ଖ ଓ ଚକ୍ର ଧାରଣ କରିଥିବାର ପ୍ରତିଛବି ଦେଖିବାକୁ ମିଳେ।

ଶରଭ ପୁରୀୟଙ୍କ ପରେ ପାଣ୍ଡୁବଂଶୀ ରାଜାମାନେ ଦକ୍ଷିଣ କୋଶଳରେ ଶାସନ କରୁଥିଲେ । ଏହି ବଂଶର ଶାସକ ତିବର ଦେବ 'ପରମ ବୈଷ୍ଣବ' ପଦବୀ ଧାରଣ କରିଥିଲେ ଏବଂ ଏହି ଧର୍ମର ପ୍ରସାର ଓ ପ୍ରଚାର ଘଟିଥିଲା । ହର୍ଷଗୁପ୍ତ ଏବଂ ତାଙ୍କ ରାଣୀ ବାସୁଟାଙ୍କ ସମୟରେ ରାଣୀ ବାସୁଟାଙ୍କର ଅଷ୍ଟମ ଶତାବ୍ଦୀ ଶିର୍‌ପୁରର ଲକ୍ଷ୍ମଣ ମନ୍ଦିର ଅଭିଲେଖରେ ପ୍ରଥମେ ଭଗବାନ ପୁରୁଷୋତ୍ତମଙ୍କର ପ୍ରଶସ୍ତି ବର୍ଣ୍ଣନା କରାଯାଇଅଛି ଏବଂ ଏହି ଶିଳାଲେଖର ପ୍ରଥମ ତିନିଟି ପଦରେ ବିଷ୍ଣୁଙ୍କର ନୃସିଂହ ବା ନରସିଂହ ଅବତାରର ସମ୍ବନ୍ଧରେ ବର୍ଣ୍ଣନା କରାଯାଇଅଛି ଏବଂ ପୁରୁଷୋତ୍ତମଙ୍କୁ ନରସିଂହ ନାମରେ ଅଭିହିତ କରାଯାଇଅଛି । ଯଦିଓ ଭଗବାନ ପୁରୁଷୋତ୍ତମ – ଜଗନ୍ନାଥ ବିଷ୍ଣୁ ନାମରେ ଗୁପ୍ତ ସମୟର ପୂଜା ପାଇଁ ଆସୁଛନ୍ତି, ଦକ୍ଷିଣ କୋଶଳର ପ୍ରାଚୀନ ରାଜଧାନୀ ମହାନଦୀ କୂଳସ୍ଥିତ ଶିର୍‌ପୁର ଅଭିଲେଖରେ ପ୍ରଥମ କରି ପୁରୁଷୋତ୍ତମ–ନରସିଂହଙ୍କ ପ୍ରଶସ୍ତି ବର୍ଣ୍ଣନା କରାଯାଇଅଛି। ନରସିଂହ ବହୁ ପ୍ରାଚୀନ କାଳରୁ ଜଗନ୍ନାଥଙ୍କ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ବର୍ତ୍ତମାନ ମଧ୍ୟ ଭଗବାନ ନରସିଂହ ନବକଳେବର ସମୟରେ ପ୍ରମୁଖ ସ୍ଥାନ ଗ୍ରହଣ କରୁଛନ୍ତି, ଅଣବସର ସମୟରେ ଯେତେବେଳେ ପ୍ରଭୁ ବଳଭଦ୍ର, ଜଗନ୍ନାଥ ଏବଂ ସୁଭଦ୍ରା ଅସୁସ୍ଥ ହୋଇପଡ଼ନ୍ତି ସେହି ସମୟରେ ଭକ୍ତମାନେ ନରସିଂହଙ୍କର ପୂଜାର୍ଚ୍ଚନା କରିଥାନ୍ତି। ନରସିଂହ ପୁରୀ ଜଗନ୍ନାଥ ମନ୍ଦିରର ମୁଖ୍ୟ ଦେବତା ଅଟନ୍ତି। ମନ୍ଦିରର ରୋଷେଇଠାରୁ ଆରମ୍ଭ କରି ସମସ୍ତ ବିଧି ବା ପୂଜା ପ୍ରଥମେ ନରସିଂହଙ୍କୁ ସମର୍ପଣ କରାଯାଏ । ନବକଳେବର ସମୟରେ ଦାରୁ ଚିହ୍ନଟଠାରୁ ଆରମ୍ଭ କରି ଦାରୁ ଛେଦନ ଓ ମୂର୍ତ୍ତି ନିର୍ମାଣ ପର୍ଯ୍ୟନ୍ତ ସମସ୍ତ ପୂଜାବିଧି ନୃସିଂହ ମନ୍ତ୍ରରେ ସମ୍ପାଦିତ ହୋଇଥାଏ। କିମ୍ବଦନ୍ତୀ ଅନୁସାରେ ଅବନ୍ତୀ ରାଜା ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ନବକଳେବର ମୂର୍ତ୍ତି ସ୍ଥାପନ କରିବାକୁ ଯାଆନ୍ତି ସେତେବେଳେ ସେହି ସ୍ଥାନରେ ନରସିଂହଙ୍କୁ ପ୍ରଥମେ ପ୍ରାର୍ଥନା କରନ୍ତି ଏବଂ ବ୍ରହ୍ମାଙ୍କ ଆଦେଶ ଅନୁଯାୟୀ ଦାରୁଦେବତାଙ୍କୁ ନୃସିଂହ ମନ୍ତ୍ରରେ ପୂଜାର୍ଚ୍ଚନା କରିଥିଲେ।

ଶିର୍‌ପୁର ଶିଳାଲେଖ ବ୍ୟତୀତ ନବମ ଶତାବ୍ଦୀର ନାରାୟଣ ପାଳ ଦେବ ସମୟରେ ଗୟା ଶିଳାଲେଖରେ ମଧ୍ୟ ପ୍ରଭୁ ପୁରୁଷୋତ୍ତମ ଜଗନ୍ନାଥଙ୍କର ବହୁଳ ପ୍ରଶଂସା ପରିଲକ୍ଷିତ ହେବା ସହ ରାକ୍ଷସ ରାଜାଙ୍କୁ ନଖରେ ବିଦାରୀ ଥିବା ପ୍ରଭୁ ନରସିଂହଙ୍କର ବର୍ଣ୍ଣନା ମଧ୍ୟ ରହିଅଛି। ସେହିପରି ଖଜୁରାହ ଶିଳାଲେଖରେ ଏକ ନୂତନ ଶବ୍ଦର ଉଲ୍ଲେଖିତ ହୋଇଅଛି, ଯଥା– ପୁରୁଷସିଂହ, ଏହା ସାଧାରଣତଃ ଭଗବାନ ପୁରୁଷୋତ୍ତମ– ନରସିଂହ ସମ୍ବନ୍ଧରେ ହିଁ ବର୍ଣ୍ଣନା କରାଯାଇଅଛି।

ଏହିସବୁ ବିଭିନ୍ନ ଐତିହାସିକ ତଥ୍ୟରୁ ସୂଚନା ମିଳେ ଯେ ପୁରୁଷୋତ୍ତମ ଜଗନ୍ନାଥଙ୍କର ବହୁ ପୂର୍ବରୁ ନରସିଂହଙ୍କର ପୂଜାର୍ଚ୍ଚନା ହୋଇଆସୁଅଛି ଏବଂ ନବକଳେବର ସମ୍ବନ୍ଧରେ ଏହି ଦେବତା ପ୍ରମୁଖ ସ୍ଥାନ ଗ୍ରହଣ କରିଆସୁଛନ୍ତି। ସେହିପରି ଭାବରେ ପୁରୀଠାରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ପୂର୍ବରୁ ଭଗବାନ ନରସିଂହଙ୍କର ଏକ ମନ୍ଦିର ପ୍ରତିଷ୍ଠା ହୋଇଥିଲା। ଏହାର ପ୍ରକୃଷ୍ଟ ଉଦାହରଣ ମନ୍ଦିରର ଦ୍ୱାର ବନ୍ଧରେ ଥିବା ଚୋଡ଼ଗଙ୍ଗ ଦେବଙ୍କର ଏକ ଶିଳାଲେଖ, ଯେଉଁଥିରେ ରାଜା ପୁରୁଷୋତ୍ତମଙ୍କୁ ଏକ ଅଖଣ୍ଡଦୀପ ପ୍ରଦାନ କରିବାର ବର୍ଣ୍ଣନା କରାଯାଇଅଛି।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର





# ରସଗୋଲା: ନୀଳାଦ୍ରି ବିଜେର ନୈବେଦ୍ୟ

**ଅସିତ ମହାନ୍ତି**

ରସଗୋଲା ଓଡ଼ିଶାର । ଏଥିରେ କୌଣସି ସନ୍ଦେହ ନାହିଁ । ଯଥେଷ୍ଟ ତଥ୍ୟ, ପ୍ରମାଣ ବି ଏ ବାବଦରେ ରହିଛି । ଶ୍ରୀଜଗନ୍ନାଥ ମନ୍ଦିରର ପାରମ୍ପରିକ ଭୋଗ ଭିତରେ ମଧ୍ୟ ଏହା ସ୍ଥାନ ପାଇଛି । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଅନ୍ତିମପର୍ବ 'ନୀଳାଦ୍ରି ବିଜେ'ରେ ଏହା ପାରମ୍ପରିକ ଭାବରେ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଦେବୀ ଲକ୍ଷ୍ମୀଙ୍କୁ ଅର୍ପିତ ହୋଇଥାଏ । ଅଥଚ ଦୁର୍ଭାଗ୍ୟର ବିଷୟ



ଏହି ଯେ ବହୁ ଫମ୍ପା ଓ ମନଗଢ଼ା ତଥ୍ୟକୁ ନେଇ ପଡ଼ୋଶୀ ପଶ୍ଚିମବଙ୍ଗ 'ରସଗୋଲା' ନାମକ ମିଠା ଓ 'ରସଗୋଲା' ଶବ୍ଦକୁ ନିଜର ବୋଲି ଦାବି କରୁଛି । ଶ୍ରୀମନ୍ଦିରର ଏହି 'ନୀଳାଦ୍ରି ବିଜେ'ର ନୈବେଦ୍ୟ ତାଙ୍କ ପାଇଁ କେବଳ ଏକ ପଣ ।

ରସଗୋଲା ଗୋଟିଏ ଛୋଟ ଆଉ ନରମ ମିଠା । ଆକାର ବାଟୁଳିଠାରୁ ଟିକିଏ ବଡ଼ ଅଥଚ ତାହାକୁ ନେଇ ଏକ 'ମିଠାଯୁଦ୍ଧ' ଜାରି ରହିଛି ଦୁଇ ପଡ଼ୋଶୀ ରାଜ୍ୟ ବଙ୍ଗଳା ଓ ଓଡ଼ିଶା ମଧ୍ୟରେ । ୨୦୧୫ ମସିହା ଜୁଲାଇ ମାସ ୩୦ ତାରିଖରେ ଓଡ଼ିଶାରେ 'ରସଗୋଲା ଦିବସ' ପାଳନ କରି ବଙ୍ଗଳାକୁ ଏକ ଜୋରଦାର ଜବାବ ଦେଇଛି ଓଡ଼ିଶା । 'ରସଗୋଲା ଓଡ଼ିଶାର' ଓ 'ରସଗୋଲା ଶ୍ରୀଜଗନ୍ନାଥ ଓ ଦେବୀ ଲକ୍ଷ୍ମୀଙ୍କ ନୀଳାଦ୍ରି ବିଜେ' ନୀତିର ବୋଲି କହିବାକୁ ହେଲେ, ବଙ୍ଗଳାର ଦାବିକୁ ତଥ୍ୟ ଓ ଯୁକ୍ତି ବଳରେ ଖଣ୍ଡନ କରିବା ସହିତ ଓଡ଼ିଶାର ଦାବିକୁ ପ୍ରାମାଣିକ ଭାବରେ ସାବ୍ୟସ୍ତ କରିବାକୁ ପଡ଼ିବ ।

ଗତ ୨୦୧୫ ମସିହାର ମଧ୍ୟଭାଗରେ ରାଜ୍ୟ ସରକାରଙ୍କ ପକ୍ଷରୁ ପାହାଳ ରସଗୋଲା ପାଇଁ ଜି.ଆଇ. (ଭୌଗୋଳିକ ଉପଦର୍ଶନ) ମାନ୍ୟତା ହାସଲ ଉଦ୍ୟମ ଆରମ୍ଭ ହୋଇଥିଲା । ଏହି ମାନ୍ୟତାର ବିଶେଷତ୍ୱ ହେଉଛି- କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ ଉଦ୍ଭବ ହେଉଥିବା ଉତ୍ପାଦନ ବା ସାମଗ୍ରୀକୁ ଏହାଦ୍ୱାରା ସ୍ୱତନ୍ତ୍ର ଭାବରେ ଚିହ୍ନିତ କରାଯାଏ । ୨୦୦୫-୦୬ରେ ଓଡ଼ିଶାର କୋଟପାଡ଼ ହସ୍ତତନ୍ତ ଲୁଗା ଓ ଇକତ, ୨୦୦୮-୦୯ରେ କୋଣାର୍କର ପଥର ଖୋଦେଇ, ପଟ୍ଟଚିତ୍ର ଓ ପିପିଲିର ଚାନ୍ଦୁଆ କାମ, ୨୦୦୯-୧୦ରେ ଖଣ୍ଡୁଆ ଶାଢୀ, ୨୦୧୧-୧୨ରେ ଗୋପାଳପୁରର ଟସର ବୁଣା, ଗଞ୍ଜାମର କିଆ ଫୁଲ ଓ ଦ୍ରବଣ (ରୁହ), ୨୦୧୨-୧୩ରେ ଧଳାପଥରର ପରଦା ଓ ତନ୍ତବୁଣା, ସମ୍ବଲପୁରୀ ବାନ୍ଧଶାଢୀ ଓ ତନ୍ତବୁଣା ଲୁଗା, ବୋମକାଇ ଶାଢୀ ଓ ଲୁଗା ଏବଂ ବ୍ରହ୍ମପୁରୀ ପାଟ (ଫୋଡ଼ା କୁମ୍ଭ) ଶାଢୀ ଓ ଯୋଡ଼, ୨୦୧୩-୧୪ରେ ଓଡ଼ିଶା ପଟ୍ଟଚିତ୍ର



(ଲୋଗୋ) ଏହି ମାନ୍ୟତାରେ ପଞ୍ଜୀକୃତ ହୋଇଛି । କିନ୍ତୁ ସେହିସବୁ ସାମଗ୍ରୀର ଜି.ଆଇ. ମାନ୍ୟତା ହାସଲ ନେଇ କୌଣସି ବିବାଦର ସୂତ୍ରପାତ ହୋଇନଥିଲା । ହେଲେ ରସଗୋଲା ଯେ ଓଡ଼ିଶାର– ଏ ଦାବି ପାଇଁ ଉଦ୍ୟମ, ଓଡ଼ିଶା ଓ ବଙ୍ଗ ମଧ୍ୟରେ ଦୀର୍ଘଦିନ ଧରି ସୁପ୍ତ ଥିବା ଏକ ବିବାଦକୁ ପୁଣି ଥରେ ତେଜିଦେଲା । ବଙ୍ଗବାସୀ ଚମକି ଉଠିପଡ଼ିଲେ ଏବଂ 'ରସଗୋଲା କେବଳ ଆମର' ବୋଲି ଦୃପ୍ତ କଣ୍ଠରେ ଦାବି କଲେ । ଓଡ଼ିଶାର ସଚେତନ ମହଲ ମଧ୍ୟ ପଛରେ ପଡ଼ିନଥିଲେ । ସମ୍ବାଦପତ୍ର, ପତ୍ରପତ୍ରିକା, ଟେଲିଭିଜନ ଚ୍ୟାନେଲ– ସବୁଠି ଏ ନେଇ ଖବର, ଆଲୋଚନା, ବିତର୍କ ସରଗରମ ହେଲା । ବିଧାନସଭାରେ ବି କଥା ଉଠିଲା । ଫଳରେ ରାଜ୍ୟ ସରକାର ୨୨ ସେପ୍ଟେମ୍ବର, ୨୦୧୫ରେ ତିନିଟି କମିଟି ଗଢ଼ିଦେଲେ । ସେହି ତିନି କମିଟିର କାମ ଥିଲା– ୧. ରସଗୋଲାର ଉଦ୍ଭବ ବା ଆଦିଭୂମି ଯେ ଓଡ଼ିଶା, ସେ ବାବଦରେ ତଥ୍ୟ, ପ୍ରମାଣ ସଂଗ୍ରହ କରି ତାହାର ଜି.ଆଇ. ମାନ୍ୟତା ପାଇଁ ଭାରତ ସରକାରଙ୍କ ବୌଦ୍ଧିକ ସଂପଦ (ଇଣ୍ଟେଲେକ୍ଚୁଆଲ୍ ପ୍ରପର୍ଟି) ସଂସ୍ଥାକୁ ଆବେଦନ କରିବା, ୨. ରସଗୋଲାର ଉଦ୍ଭବ ସ୍ଥଳ ବା ଆଦିଭୂମି ବୋଲି ପଶ୍ଚିମବଙ୍ଗ ଯେଉଁ ଦାବି କରୁଛି, ସେହି ଦାବିର ଅଯଥାର୍ଥତା ସାବ୍ୟସ୍ତ କରିବା ଏବଂ ୩. ବଙ୍ଗର ଯୁକ୍ତିକୁ ଖଣ୍ଡନ ଏବଂ ଓଡ଼ିଶାର ଦାବିକୁ ମଣ୍ଡନ କରି ରସଗୋଲା ଯେ ଓଡ଼ିଶାର ତାହା ସାବ୍ୟସ୍ତ କରିବା ପାଇଁ ଦାବିପତ୍ର ଦେବା ।

ଏ ଭିତରେ କେତେକ ଜି.ଆଇ. ବିଶେଷଜ୍ଞ ଗୋଟିଏ ଯୁକ୍ତି ନେଇ ଉଭା ହୋଇଛନ୍ତି ଯେ ରସଗୋଲା ପରି ଏକ ଖାଦ୍ୟ–ଉତ୍ପାଦ ପାଇଁ ଜି.ଆଇ. ମାନ୍ୟତା ଦାବି ଅଯଥାର୍ଥ । କିନ୍ତୁ ତିରୁପତିର ଲଡ୍ଡୁ, ମଧ୍ୟପ୍ରଦେଶର ରତଲାମି ସେଓ, ଧାରୱାଡ଼ର ପେଡ଼ା, ହାଇଦ୍ରାବାଦର ହାଲିମ ଓ ଜଇନଗର (ପଶ୍ଚିମବଙ୍ଗ)ର ମୁଆଁ ପରି ଖାଦ୍ୟସାମଗ୍ରୀକୁ ଯଦି ଜି.ଆଇ. ମାନ୍ୟତା ମିଳିଛି, ତେବେ 'ଓଡ଼ିଶାର ରସଗୋଲା' ପାଇଁ ସେହି ମାନ୍ୟତା ଦାବି କାହିଁକି ଯଥାର୍ଥ ହେବ ନାହିଁ ?

ଓଡ଼ିଶା ହେଉ ବା ବଙ୍ଗଳା– ରସଗୋଲାର ପ୍ରସ୍ତୁତି ଠିକ୍ କେବେଠାରୁ ଓ କେଉଁଠୁ ଆରମ୍ଭ, ତାହାର ଇତିହାସ ଅଜ୍ଞାତ । ତେବେ ବଙ୍ଗଳାରୁ ଏହାର ଉଦ୍ଭବ ବୋଲି ଯେଉଁମାନେ କହନ୍ତି ସେମାନଙ୍କ ପାଇଁ ଗଢ଼ା ହୋଇଛି ନାନା ରୋଚକ କାହାଣୀ ।

**କାହାଣୀ: କର୍ଣ୍ଣୱାଲିସ୍**

ବଙ୍ଗଦେଶରେ ଗଢ଼ା ସେହିପରି ଏକ କାହାଣୀ କହେ, ଇଂରେଜ ରାଜତ୍ୱ କାଳରେ ଲର୍ଡ଼ କର୍ଣ୍ଣୱାଲିସ୍ ଥିଲେ ଭାରତର ବଡ଼ଲାଟ୍ । ଥରେ ଜମିଦାରମାନଙ୍କଠାରୁ ଅଧିକ ଖଜଣା ପାଇବା ପାଇଁ ସେମାନଙ୍କୁ ସେ ଖୁସି କରିବାକୁ ଚାହିଁଲେ । ସେମାନଙ୍କ ପାଇଁ ଏକ ବଡ଼ ଭୋଜିସଭାର ଆୟୋଜନ କରାଗଲା । ସେତେବେଳର ପ୍ରଥା ଅନୁସାରେ ବଡ଼ ବଡ଼ ଭୋଜିସଭାରେ ବରେଣ୍ୟ ଅତିଥିମାନଙ୍କୁ ମିଠା 'ପୁଡ଼ିଂ' ପରିବେଷଣ କରାଯାଉଥିଲା । କିନ୍ତୁ ଯେଉଁ ବଙ୍ଗାଳୀ ରୋଷେଇଆ ଜଣକ ପୁଡ଼ିଂ ତିଆରି କରିବାରେ ନିଯୁକ୍ତ ଥିଲା, ସେ ହଠାତ୍ ଅସୁସ୍ଥ ହୋଇପଡ଼ିବାରୁ ସେହି ଦାୟିତ୍ୱ ଆଉ ଜଣଙ୍କ ଉପରେ ପଡ଼ିଲା । ସେ ଲୋକଟି ପୁଡ଼ିଂ ତିଆରି ଜାଣି ନଥିଲା । ଫଳରେ ଯେଉଁ କ୍ଷୀରରେ ପୁଡ଼ିଂ ତିଆରି ହେବା କଥା, ସେହି କ୍ଷୀରକୁ ଗରମ କରି ଠିକ୍ ଭାବରେ ସେ ପ୍ରକ୍ରିୟାକରଣ କରିପାରିଲା ନାହିଁ । ଫଳରେ କ୍ଷୀରତକ ଛିଣ୍ଡିଗଲା । ସେଇ ଛିଣ୍ଡାକ୍ଷୀରର ଛେନାକୁ କ'ଣ କରିବ ଜାଣି ନପାରି ସେହି ଲୋକଟି ତାହାକୁ ଗୋଟିଏ ଧୋତିରେ ବାନ୍ଧି ଟାଙ୍ଗିଦେଲା । କିନ୍ତୁ କେମିତି କେଜାଣି ରାତିରେ ତାହାର ଗଣ୍ଠି ଖୋଲିଯାଇ ପାଣି ନିଗିଡ଼ି ଯାଇଥିବା ଛେନାତକ ତଳେ ଥିବା ଗୋଟିଏ କଡ଼େଇ ଭିତରେ ଅଜାଡ଼ି ହୋଇ ପଡ଼ିଲା । ସେହି କଡ଼େଇରେ ଚିନିସିରା ରଖାଯାଇଥିଲା । ପରଦିନ ସକାଳେ ଦେଖିବା ବେଳକୁ ଛେନାତକ ଚିନିସିରାରେ ଭାସୁଛି । ସେଥିରୁ ଟିକିଏ ନେଇ ସେ ଚାଖି ଦେଖିଲା, ଖୁବ୍ ସୁଆଦିଆ ଲାଗୁଛି । ପୁଡ଼ିଂ ବଦଳରେ ସେଇ ଚିନିସିରା–ଭିଜା ଛେନାରୁ କିଛିକିଛି ଅତିଥିମାନଙ୍କୁ ପରିବେଷଣ କରାଗଲା । ସେପରି ସୁଆଦିଆ ମିଠା ସେମାନଙ୍କ ଭିତରୁ କେହି ବି ଆଗରୁ ଖାଇ ନଥିଲେ । ତେଣୁ



ସମସ୍ତେ ତାହାର ଉଚ୍ଚ ପ୍ରଶଂସା କଲେ । ସେହି କାହାଣୀ ଅନୁସାରେ, ତାହା ହିଁ ଥିଲା ରସଗୋଲାର ଆଦି ରୂପ ।

କିନ୍ତୁ ଏହି କାହାଣୀକୁ ସତ ସାବ୍ୟସ୍ତ କରିବା ପାଇଁ ସେପରି କିଛି ନିର୍ଭରଯୋଗ୍ୟ ତଥ୍ୟ, ପ୍ରମାଣ ମିଳେନାହିଁ । କିନ୍ତୁ କାହାଣୀଟିକୁ ଯଦି ସତ ବୋଲି ଗ୍ରହଣ କରାଯାଏ, ତେବେ ଦେଖାଯିବ ଯେ ଲର୍ଡ଼ କର୍ଣ୍ଣୱାଲିସ୍ ଇଂରେଜ ଶାସିତ ଭାରତର ପ୍ରଥମ ବଡ଼ଲାଟ୍ (ଗଭର୍ଣ୍ଣର ଜେନେରାଲ) ଥିଲେ ୧୭୮୬ରୁ ୧୭୯୩ ପର୍ଯ୍ୟନ୍ତ । ଅର୍ଥାତ ଏହି କାହାଣୀ ଅନୁସାରେ ବଙ୍ଗଳାରେ ରସଗୋଲାର ପ୍ରଥମ ପ୍ରସ୍ତୁତିର ସମୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ । କିନ୍ତୁ ସେହି ବଙ୍ଗବାସୀ ଦେଉଥିବା ତଥ୍ୟ ଅନୁସାରେ, କଲିକତାରେ ରସଗୋଲା ପ୍ରସ୍ତୁତ ହୋଇଛି ତାହାର ପ୍ରାୟ ୮୦-୯୦ ବର୍ଷ ପରେ, ୧୮୬୮ ମସିହାରେ ।

'ରସଗୋଲା' ପୁସ୍ତକର ଲେଖକ ଶ୍ରୀ ଭୌମିକ ଇତିହାସ ଓ ସଂସ୍କୃତିର ଚର୍ଚ୍ଚା ସମ୍ବଳିତ ପ୍ରବନ୍ଧ ଲେଖୁଥିବା ଜଣେ ଲେଖକ ଭାବରେ ବଙ୍ଗଳାର ବିଦ୍ୱତ ସମାଜରେ ସୁପ୍ରତିଷ୍ଠିତ ବୋଲି ପୁସ୍ତକର ମଲାଟ ପୃଷ୍ଠାରେ ସୂଚିତ ହୋଇଛି । ଅଥଚ ତାଙ୍କ ପୁସ୍ତକର ଏହି ଉଦ୍ଧୃତି ପାଠ କଲେ ତାଙ୍କର ବକ୍ତବ୍ୟ କି ବିଭ୍ରାନ୍ତିକର ତାହା ଅନାୟାସରେ ବୁଝିହୁଏ । 'କ୍ଷୀରମୋହନ'ର ନାମାନ୍ତର ହେଉଛି 'କ୍ଷୀରସାଗର' । 'ଉତ୍କଳ ମିଷ୍ଟାନ୍ନ ବ୍ୟବସାୟୀ ସମିତି'ର ସଭାପତି ବିମ୍ବାଧର ବେହେରାଙ୍କ ଅନୁସାରେ– ଛେନାର ଛୋଟ ଛୋଟ ଗୁଳିକୁ ସିରାରେ ସିଝାଇ ଏବଂ ତାହାକୁ ସିଝା କ୍ଷୀରରେ ପକାଇ 'କ୍ଷୀରସାଗର' ପ୍ରସ୍ତୁତ ହୁଏ । ଏହାର ଅନ୍ୟନାମ କ୍ଷୀରମୋହନ । ଏଣୁ ଏହାର ମୁଖ୍ୟ ଉପାଦାନ କ୍ଷୀର ଓ ଛେନା । ଏଣୁ ଏହାକୁ 'ଛେନାର କ୍ଷୀରମୋହନ' କହିବା ଭୁଲ କାହିଁକି ହେବ ? ପୁଣି ତାହା କିପରି 'ସୁନାର ପଥରବାଟି' ପରି ହେବ ? 'କ୍ଷୀରମୋହନ' ପ୍ରକୃତରେ 'କ୍ଷୀରଗୋଲକ' ନୁହେଁ କ୍ଷୀରର ସିରାରେ ଅବଗାହନ କରୁଥିବା ଛେନାଗୋଲକ । ଓଡ଼ିଶାର ପ୍ରସିଦ୍ଧ ଓ ପାରଂପରିକ ରସାବଳିର ପ୍ରସ୍ତୁତି ବିଧି ମଧ୍ୟ ମୋଟାମୋଟି ଏହି ଧରଣର ।

**ଛେନା କେବଳ ବଙ୍ଗଳାର ?**

ଶ୍ରୀ ଭୌମିକ ତାଙ୍କ ପୁସ୍ତକରେ ଛେନା ସଂପର୍କରେ ଗୋଟିଏ ହାସ୍ୟାସ୍ପଦ ଦାବି କରି କହିଛନ୍ତି, ''ଛେନା ଶବ୍ଦଟି ବଙ୍ଗରେ ହିଁ ପ୍ରଚଳିତ ହୋଇଥିଲା । ସଂସ୍କୃତ ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ । ସେଠାରେ ଗରମ ଦୁଧକୁ ଦହି ସଂଯୋଗରେ ନଷ୍ଟ କରି ଦେବାର ବିକୃତ ଦ୍ରବ୍ୟକୁ 'ଆମିକ୍ଷା', 'କିଲାଟ' ଏବଂ 'ଦଧିକୁର୍ଚ୍ଚିକା' କୁହାହୋଇଛି । ସଂସ୍କୃତ 'ଛିନ୍ନ' ଶବ୍ଦରୁ 'ଛାନା' ବା 'ଛେନା' ଆସିଛି । ଏହି ଶବ୍ଦଟି ବଙ୍ଗଳାର ନିଜସ୍ୱ ଶବ୍ଦ ।'' କିନ୍ତୁ ଓଡ଼ିଶାର ଆଦିକବି ସାରଳା ଦାସଙ୍କ 'ମହାଭାରତ' ଓ ବଳରାମ ଦାସଙ୍କ 'ରାମାୟଣ'ଠାରୁ ଆରମ୍ଭ କରି ପରବର୍ତ୍ତୀ କାଳର ଅନେକ ରଚନାରେ କେବଳ 'ଛେନା' ନୁହେଁ, ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ମଧ୍ୟ ପ୍ରଚୁର ଉଲ୍ଲେଖ ମିଳେ । ତୁଳନାତ୍ମକ ଭାବରେ ସେସମୟର ବଙ୍ଗଳା ସାହିତ୍ୟ ପ୍ରାୟ କିଛି ନାହିଁ ।

ଓଡ଼ିଶାର ଆଦିକବି ହେଉଛନ୍ତି ସାରଳା ଦାସ । ତାଙ୍କ 'ମହାଭାରତ'ର 'ମଧ୍ୟପର୍ବ'ରେ ଥିବା ବର୍ଣ୍ଣନା ଅନୁସାରେ, ଧର୍ମଯଜ୍ଞର ଆୟୋଜନ କାଳରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ବାରୁଣାବନ୍ତ ଘେନି ଆସିଛନ୍ତି ଏବଂ ମାତା କୁନ୍ତୀ ନିଜ ପୁତ୍ରମାନଙ୍କୁ ଓ ତାଙ୍କୁ ଅନେକ ସୁସ୍ୱାଦୁ ଖାଦ୍ୟ ପରଷିଛନ୍ତି । ସେହି ଖାଦ୍ୟଦ୍ରବ୍ୟ ମଧ୍ୟରେ ଛେନା ଓ ଛେନାଜାତ ସାମଗ୍ରୀ ରହିଛି । ତାହାର ବର୍ଣ୍ଣନା ପ୍ରସଙ୍ଗରେ ସାରଳା ଦାସ ଲେଖିଛନ୍ତି,

ଚକୁଳି ଛୁଞ୍ଚି ପତର ଛେନା ମନୋହର
ଖିରୀ ଖିରିସା ଶାକର ସକଳ ଦ୍ରବ୍ୟ ସାର ।

ସେହିପରି 'ଦାଣ୍ଡି ରାମାୟଣ' ବା 'ଜଗମୋହନ ରାମାୟଣ' ଭାବରେ କଥିତ ବଳରାମ ଦାସଙ୍କ 'ରାମାୟଣ' । ସେଥିରେ ମଧ୍ୟ ଛେନା ଓ ଛେନାଜାତ ସାମଗ୍ରୀର ପ୍ରଚୁର ବର୍ଣ୍ଣନା ଅଛି । ଏହାର ପ୍ରଥମ ସଂପାଦକ ଓ ପ୍ରକାଶକ ପଣ୍ଡିତ ଗୋବିନ୍ଦ ରଥ । ବାଙ୍କିର ପାଟପୁର (ପଦ୍ମନାଭପୁର) ଶାସନରେ ୧୮୪୮ ମସିହାରେ ତାଙ୍କର ଜନ୍ମ । ୧୯୧୮ ମସିହା ମେ ମାସ ୨୯



ତାରିଖରେ ଇହଲୀଳା ସମ୍ବରଣ କରିବା ପୂର୍ବରୁ ଓଡ଼ିଆ ଭାଷା ସାହିତ୍ୟ ପାଇଁ ସେ ଅନେକ କାମ କରିଥିଲେ । ୨୦୦ରୁ ଉର୍ଦ୍ଧ୍ୱ ପୁସ୍ତକର ସଂଗ୍ରହ, ସଂପାଦନା ଓ ରଚନା କରିଥିଲେ । କଟକରେ 'ରଥ ପ୍ରେସ' ନାମରେ ଏକ ମୁଦ୍ରଣାଳୟ ପ୍ରତିଷ୍ଠା କରି ବିଦଗ୍ଧକବି ଅଭିମନ୍ୟୁ ସାମନ୍ତ ସିଂହାର, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟ ବଳଦେବ ରଥ ପ୍ରମୁଖଙ୍କ ରଚିତ ପ୍ରାଚୀନ ଓଡ଼ିଆ କାବ୍ୟର ପ୍ରକାଶନ ସହିତ ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକୀର ମୋହନ ସେନାପତିଙ୍କର କେତେକ ପୁସ୍ତକ ମଧ୍ୟ ପ୍ରକାଶ କରିଥିଲେ । ସେ ପ୍ରକାଶ କରିଥିବା 'ଦାଣ୍ଡି ବାଲ୍ମୀକି ରାମାୟଣ' ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ । ତାହାର ଦ୍ୱିତୀୟ ସଂସ୍କରଣ ଏବେ ଭୁବନେଶ୍ୱରର ପ୍ରାଚୀନ ଗବେଷଣା ଅନୁଷ୍ଠାନ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ'ରେ ଉପଲବ୍ଧ । ସେଥିରେ 'ରସଗୋଲା' ରହିଛି ।

ବଳରାମ ଦାସଙ୍କ ରଚିତ ରାମାୟଣର 'ଅଯୋଧ୍ୟା କାଣ୍ଡ'ରେ ଥିବା ବର୍ଣ୍ଣନା ଅନୁସାରେ, ରାମଙ୍କ ବନବାସ ପରେ ଭରତ ଓ ଶତ୍ରୁଘ୍ନ ତାଙ୍କୁ ଫେରାଇ ଆଣିବା ପାଇଁ ଯାଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ଆତିଥ୍ୟ ଗ୍ରହଣ କରିଛନ୍ତି । ସେତେବେଳେ ଭରଦ୍ୱାଜ ଋଷି ମାୟାବ୍ରାହ୍ମଣଙ୍କ ଦ୍ୱାରା ପ୍ରସ୍ତୁତ କରାଇ ଭରତ ଓ ଶତ୍ରୁଘ୍ନ ଏବଂ ତାଙ୍କର ଅନୁଚରବର୍ଗଙ୍କୁ ଯେଉଁସବୁ ଖାଦ୍ୟଦ୍ରବ୍ୟ ପରିବେଷଣ କରିଛନ୍ତି, ସେଥି ମଧ୍ୟରେ 'ଦୁଧ ଛେନା' ରହିଛି । ଛେନାରୁ ପ୍ରସ୍ତୁତ ସାମଗ୍ରୀ ମଧ୍ୟରେ ରହିଛି 'ଛେନାପୁରୀ' 'ଛେନା ଲଡ଼ୁ', 'ରସଗୋଲା' ଓ 'ରସାବଳି' । ତାହାର ପୃଷ୍ଠା ୭୫-୭୬ରେ ଥିବା ବର୍ଣ୍ଣନା ଅନୁସାରେ, ବଳରାମ ଦାସ ଲେଖିଛନ୍ତି–

'ହିଙ୍ଗୁ ଜିରା ମରିଚ ନଡ଼ିଆ ଦୁଧଛେନା
ଘୃତରେ କରି ନାନାଦି ପିଷ୍ଟକ ରଚନା ।
ମାଛ ମାଏଁସ ଯେ ଛଡ଼ା ଝଡ଼ା ଜଣ ପ୍ରତି
ପଣା ପଇଡ଼ ଯେ ଆଣି ବଳେ ଯାଚି ଦନ୍ତି ।
କ୍ଷୀରି କ୍ଷୀରିଷା ଶାକର ପରଷନ୍ତି ଆଣି
ଏମନ୍ତ ଅନେକ ଦ୍ରବ୍ୟ କେ ପାରେ ବଖାଣି ।
ନାଡ଼ୀ ସରପୁଳି ଯେ ଆରିଷା ଛେନା ପୁରୀ
କାକରା ଛେନାଲଡ଼ୁ ଯେ ମାଳପୁଆ ପୁରୀ ।
ସଜମରା ଘିଅ ଆଣି ଦନ୍ତି ବଡ଼ା ବଡ଼ା
ଗଜା କଚୁରୀ ପଣସ ଖୋସା ବିରିବରା ।
କୋରା ରସଗୋଲା ଯେ ଅମୃତ ରସାବଳି
ମଣ୍ଡା ନାନମାନ ଅମୃତପାଣି କଦଳୀ ।'

ସେହିପରି ବ୍ରଜନାଥ ବଡ଼ଜେନାଙ୍କ 'ଅମ୍ବିକା ବିଳାସ' ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ରହିଛି ଛେନା ଓ ଛେନାରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟର ପ୍ରଚୁର ଉଲ୍ଲେଖ ।

ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ଯେ ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ, ଏହାକୁ କେବଳ ବଙ୍ଗଳାର ବୋଲି କହି, ରସଗୋଲା କେବଳ ବଙ୍ଗଳାର ଏହା ସାବ୍ୟସ୍ତ କରିବା ପାଇଁ ଏକ ହାସ୍ୟାସ୍ପଦ ଉଦ୍ୟମ କରିଛନ୍ତି 'ରସଗୋଲା' ପୁସ୍ତକର ଲେଖକ ହରିପଦ ଭୌମିକ । କିନ୍ତୁ ସାରଳା ଦାସ, ବଳରାମ ଦାସ, ବ୍ରଜନାଥ ବଡ଼ଜେନା ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଉପରୋକ୍ତ କୃତିଗୁଡ଼ିକର ଉଲ୍ଲେଖ ତାଙ୍କର ଏହି ଦାବିକୁ ଅସାର ପ୍ରତିପାଦିତ କରେ । କାରଣ, ଗବେଷକଙ୍କ ମତରେ ସାରଳା ଦାସଙ୍କ ସମୟ ହେଉଛି ସୂର୍ଯ୍ୟବଂଶୀ ଗଜପତି ମହାରାଜା କପିଳେନ୍ଦ୍ର ଦେବ (୧୪୩୫-୬୮) ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ (୧୪୬୮-୯୭)ଙ୍କ ସମୟ । ବଳରାମ ଦାସଙ୍କ ସମୟ ୧୪୭୨-୧୫୫୦ ଖ୍ରୀଷ୍ଟାବ୍ଦ ଏବଂ ତାହା ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱର ସମୟ । ବ୍ରଜନାଥ ବଡ଼ଜେନାଙ୍କ ସମୟ ୧୭୩୦-୧୮୦୦ ଖ୍ରୀଷ୍ଟାବ୍ଦ ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ସମୟ ୧୭୬୦-୧୮୦୬ ଖ୍ରୀଷ୍ଟାବ୍ଦ । ଏସବୁ ବଙ୍ଗଳାରେ ନବୀନ ଚନ୍ଦ୍ର ଦାଶଙ୍କ ତଥାକଥିତ 'ରସଗୋଲା'ର ଉଦ୍ଭବ କାଳ ବା ୧୮୬୮ର ବହୁ ପୂର୍ବବର୍ତ୍ତୀ ।

**'ଆମିକ୍ଷା' ଆକ୍ଷେପ**

ଏବେ ଦେଖାଯାଉ ଶ୍ରୀ ଭୌମିକଙ୍କ 'ଆମିକ୍ଷା' ଆକ୍ଷେପ ପ୍ରସଙ୍ଗକୁ । 'ରସଗୋଲ୍ଲା' ପୁସ୍ତକରେ ସେ କହିଛନ୍ତି, ସଂସ୍କୃତ



ସାହିତ୍ୟ ବା ଅଭିଧାନରେ 'ଛେନା' ଶବ୍ଦ ନାହିଁ ଅଛି 'ଆମିକ୍ଷା'। କିନ୍ତୁ 'ଆମିକ୍ଷା' କ'ଣ ଛେନା ନୁହେଁ ? ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ଗୁପ୍ତ ଯୁଗରେ ଅମର ସିଂହଙ୍କ ଦ୍ୱାରା ରଚିତ କୋଷଗ୍ରନ୍ଥ 'ଅମରକୋଷ'ରେ 'ଆମିକ୍ଷା'ର ଉଲ୍ଲେଖ ଅଛି। 'ଅମରକୋଷ'ର ରଚନାକାଳ ପ୍ରାୟ ୪୦୦ ଖ୍ରୀଷ୍ଟାବ୍ଦ । 'ଆମିକ୍ଷା'ର ପ୍ରସ୍ତୁତି ବିଧିରୁ ସ୍ୱଷ୍ଟ ସୂଚିତ ଯେ ଏହା କ୍ଷୀରଛେନାର ଏକ ସଂସ୍କୃତ ପ୍ରତିଶବ୍ଦ । ଉଷ୍ମ କ୍ଷୀରରେ ଦହି (ବା ଅମ୍ଳ ଦ୍ରବ୍ୟ) ଯୋଗ କଲେ ଆମିକ୍ଷା (କ୍ଷୀରଛେନା) ପ୍ରସ୍ତୁତ ହୁଏ। 'ରସଗୋଲ୍ଲା' ପୁସ୍ତକର 'ଛାନା ନାମକରଣ' (ଛେନା ନାମକରଣ) ଅଧ୍ୟାୟରେ ମଧ୍ୟ ଶ୍ରୀ ଭୌମିକ ଏହାକୁ ସ୍ୱୀକାର କରିଛନ୍ତି। ଏହା ସତ୍ତ୍ୱେ ''ପ୍ରାଚୀନ ଭାରତରେ 'ଛେନା' ନଥିଲା'ଆମିକ୍ଷା' ଥିଲା'' ବୋଲି ସେ ଯାହା କହିଛନ୍ତି, ତାହାର ଯଥାର୍ଥତା କିଛି ନାହିଁ। କାରଣ 'ଛେନା' ଓ 'ଆମିକ୍ଷା' ସମାନ। ପୁଣି 'ଅମରକୋଷ'ରେ ଛେନାର ପ୍ରସ୍ତୁତିବିଧି ସଂପର୍କରେ ସ୍ୱଷ୍ଟ ଉଲ୍ଲେଖ ଥିବା ବେଳେ, ନିଜ ପୁସ୍ତକରେ ''ପ୍ରାଚୀନ ଭାରତରେ 'ଛେନା'ର ବ୍ୟବହାର ନଥିଲା'' ବୋଲି ସେ କହିବା ଅତ୍ୟନ୍ତ ଅସମୀଚୀନ।

ଏ ପ୍ରସଙ୍ଗରେ ଏକ ଆକସ୍ମିକ ସଂଯୋଗ ହେଲା– ଯେଉଁ ୧୮୬୮ ମସିହାରେ ବଙ୍ଗଳାରେ 'ରସଗୋଲା'ର ଆବିଷ୍କାର ହେଲା ବୋଲି କୁହାଯାଉଛି, ସେହି ୧୮୬୮ ମସିହାରେ ଓଡ଼ିଶାରେ ଓ ଓଡ଼ିଆ ଭାଷାରେ 'ଉତ୍କଳ ଭାଷାର୍ଥାଭିଧାନ' ନାମରେ ଏକ ଶବ୍ଦକୋଷ ପ୍ରକାଶ ପାଇଛି। ତାହାର ପୃ–୮୦ରେ ଅଛି 'ଛେନା' ଶବ୍ଦ । ତାହାର ପ୍ରତିଶବ୍ଦ ଓ ଅର୍ଥଭାବେ 'ଆମିକ୍ଷା' ଓ 'ଦୁଗ୍ଧର ବିକାର' ବୋଲି ସ୍ୱଷ୍ଟ ଉଲ୍ଲେଖ ଅଛି। ଏଣୁ ଯାହା 'ଆମିକ୍ଷା', ତାହା 'ଛେନା'।

**'ଛେନା' ଦୁଧର ଶବ !**

ଏଥିରେ କୌଣସି ସନ୍ଦେହ ନାହିଁ ଯେ 'ଛେନା' ଶବ୍ଦର ମୂଳ ହେଉଛି ସଂସ୍କୃତ 'ଛିନ୍ନ'। ଓଡ଼ିଆରେ ମଧ୍ୟ ଏ ଦୃଷ୍ଟିରୁ 'ଛେନା ଛିଣ୍ଡିବା'ର ପ୍ରୟୋଗ ଅଛି। ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ତାଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ରେ ମଧ୍ୟ 'ଛେନା' 'ଛିନ୍ନ' ଶବ୍ଦରୁ ସୃଷ୍ଟ ବୋଲି କହିଛନ୍ତି। ତାଙ୍କ ଅନୁସାରେ, ଏହା 'ଦୁଗ୍ଧ ବିକାର ବିଶେଷ'। କିନ୍ତୁ 'ଛିନ୍ନ'କୁ ଆଧାର କରି ଶ୍ରୀ ଭୌମିକ ତାଙ୍କ 'ରସଗୋଲ୍ଲା' ପୁସ୍ତକରେ ଛେନାର ଯେଉଁ ବିକୃତ ଅର୍ଥ କରିଛନ୍ତି, ତାହା ସଂପୂର୍ଣ୍ଣ ଭିତ୍ତିହୀନ ମନେହୁଏ। ସେ କହିଛନ୍ତି, ଛେନା ହୁଏ ଦୁଧକୁ ଛିନ୍ନ କରି। ଅମ୍ଳ ସହଯୋଗରେ ଦୁଧକୁ ଛିଣ୍ଡାଇ ଛେନା ହେଉଥିବାରୁ ସଂସ୍କାରର ଜଟିଳ ଜାଲରେ ଅବଙ୍ଗାଳୀ ଭାରତୀୟଙ୍କ ପାଇଁ ତାହା 'ନା–ପାକ' (ଅ–ପାକ) ହୋଇଯାଏ। ଏଣୁ ବଙ୍ଗଦେଶ ବ୍ୟତୀତ ଭାରତରେ ସର୍ବତ୍ର ମିଷ୍ଟାନ୍ନର ପ୍ରଧାନ ଉପକରଣ କ୍ଷୀର। ବଙ୍ଗଦେଶ– କେବଳ ବଙ୍ଗଦେଶ କିନ୍ତୁ ଛେନାକୁ ଅଛୁଆଁ କରି ରଖି ନାହିଁ। ବରଂ ତାହାକୁ ଉପକରଣ ରୂପେ ଉପଯୋଗ କରି ପ୍ରସ୍ତୁତ କରିଛି ନାନା ମିଠା। ଶ୍ରୀ ଭୌମିକ ପୁଣି ଏତିକିରେ ଅଟକି ନାହାନ୍ତି। ଏ ଦିଗରେ ଆଉ ପାଦେ ଆଗେଇ ଯାଇ ଛେନାକୁ ଏକ ମୃତ ପଦାର୍ଥ ରୂପେ ଗ୍ରହଣ କରାଯାଉଥିଲା ବୋଲି ମଧ୍ୟ କହିଛନ୍ତି ।

କିନ୍ତୁ କେବଳ ଯେ ହରିପଦ ଭୌମିକ ଏପରି ମତ ଦିଅନ୍ତି, ତା' ନୁହେଁ। ରସଗୋଲାକୁ ବଙ୍ଗଳାର ବୋଲି ସୂଚାଇବାକୁ ଯାଇ ଭାରତୀୟ ଖାଦ୍ୟର ଖ୍ୟାତନାମା ଗବେଷକ କେ.ଟି. ଆଚାୟା ମଧ୍ୟ ତାଙ୍କ 'ଏ ହିଷ୍ଟୋରିକାଲ ଡିକ୍ସନାରୀ ଅଫ ଇଣ୍ଡିଆନ ଫୁଡ଼'ରେ ଏହାକୁ ସମର୍ଥନ କରନ୍ତି। ରସଗୋଲାର ମୁଖ୍ୟ ଉପାଦାନ ଛେନା ହୋଇଥିବାରୁ ଛେନା ପ୍ରସ୍ତୁତିର ଇତିହାସକୁ ସେ ପର୍ତ୍ତୁଗୀଜମାନଙ୍କର ଭାରତ ଆଗମନର ଇତିହାସ ସହିତ ଯୋଡ଼ିଛନ୍ତି। ତାଙ୍କ ଅନୁସାରେ, ପର୍ତ୍ତୁଗୀଜମାନେ ହୁଗୁଳିର ଚନ୍ଦନ ନଗରଠାରେ ବାଣିଜ୍ୟ ଘାଟି ସ୍ଥାପନ କରିବା ପରେ ବଙ୍ଗାଳୀମାନଙ୍କୁ ଛେନାର ପ୍ରସ୍ତୁତି ଶିଖାଇଥିଲେ।

କିନ୍ତୁ ଇତିହାସ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ ପର୍ତ୍ତୁଗୀଜମାନେ ଭାରତକୁ ଆସିଲେ ଷୋଡ଼ଶ ଶତାବ୍ଦୀର ତୃତୀୟ ଦଶକରେ। କେବଳ ଯେ ହୁଗୁଳି ନଦୀତଟର ଚନ୍ଦନ ନଗର ତାଙ୍କର ବାଣିଜ୍ୟପେଣ୍ଠ ଥିଲା, ତାହା ନୁହେଁ । ସମକାଳରେ



ଓଡ଼ିଶାର ବାଲେଶ୍ୱରଠାରେ ମଧ୍ୟ ତାଙ୍କର ବାଣିଜ୍ୟପେଣ୍ଠ ରହିଥିଲା । ତେଣୁ ବଙ୍ଗାଳୀମାନେ ଯଦି ସେମାନଙ୍କଠାରୁ କ୍ଷୀରଛେନାର ପ୍ରସ୍ତୁତି ବିଧି ଶିଖିପାରିଲେ, ତେବେ ଓଡ଼ିଆମାନେ ଶିଖିବାରେ କି ଅସୁବିଧା ଥିଲା ? ଅନ୍ୟ ଦୃଷ୍ଟିରୁ ଦେଖିଲେ, ସାରଳା ଦାସ ଓ ବଳରାମ ଦାସଙ୍କ କୃତିରେ 'ଛେନା'ର ଉଲ୍ଲେଖ ଅଛି ଏବଂ ଏହା ପର୍ତ୍ତୁଗୀଜମାନଙ୍କ କଲିକତା ଆଗମନର ପୂର୍ବବର୍ତ୍ତୀ ।

**ଛେନା ପାଇଁ ମନ୍ଦିର ମନା !**

ଅନ୍ୟ କେତେକ ଖାଦ୍ୟ ଗବେଷକ ନିଜ ନିଜର ଲେଖାରେ, 'କ୍ଷୀରର ବିକାର' ହେତୁ ଛେନା ଦେବଭୋଗ ନୁହେଁ ତେଣୁ ତା'ପାଇଁ ମନ୍ଦିର ମନା ବୋଲି ଦର୍ଶାଇଛନ୍ତି । ଶ୍ରୀ ଭୌମିକ ଓ ଶ୍ରୀ ଆଚାର୍ଯ୍ୟା ମଧ୍ୟ ସେମାନଙ୍କର ପକ୍ଷଧର । କିନ୍ତୁ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସମେତ ଅନ୍ୟାନ୍ୟ ଦେବଦେବୀ ମନ୍ଦିରରେ ଛେନାରୁ ପ୍ରସ୍ତୁତ ସାମଗ୍ରୀ ଭୋଗ ରୂପେ ସୁପ୍ରାଚୀନ କାଳରୁ ପ୍ରଚଳିତ ରହିଆସିଛି । ଶ୍ରୀଜଗନ୍ନାଥଙ୍କ ଅଣସର ଓ ନବକଳେବର ସମୟର ମହାଅଣସର ଗୁପ୍ତନୀତିର ଭୋଗନୈବେଦ୍ୟ ମଧ୍ୟରେ ଛେନା ଏକ ମୁଖ୍ୟ ଉପାଦାନ ରୂପେ ଉପଯୋଗ ହୁଏ । ଏହାବ୍ୟତୀତ ଶ୍ରୀଗୁଣ୍ଡିଚା ଓ ବାହୁଡ଼ାଯାତ୍ରା ସମୟରେ, ମାଉସୀ ମା' ମନ୍ଦିରର ପ୍ରସିଦ୍ଧ ପୋଡ଼ପିଠା ଓ ରଥଉପରର ଅଧରପଣା, ଚନ୍ଦନଯାତ୍ରା ସମୟର ତାଡ଼ିଆ ଓ ମାଣ୍ଡୁଅ ଭୋଗ ଏବଂ କେଳି, ଘେଉଳି ଓ ପାରିଜାତକ ଆଦି ପିଠାରେ ଛେନା ଏକ ମୁଖ୍ୟ ଉପାଦାନ । କ୍ଷୀରରେ ଛେନା ତାଡ଼ିଆ ପଡ଼ି ପ୍ରସ୍ତୁତ ହେଉଥିବା ମଧ୍ୟାହ୍ନ ଧୂପର ଭୋଗରେ ମଧ୍ୟ ଛେନାର ସ୍ଥାନ ରହିଛି । ଏଣୁ ଏହା ଶତ ପ୍ରତିଶତ ଅଭ୍ରାନ୍ତ ଯେ ପର୍ତ୍ତୁଗୀଜ ବା ଫରାସୀଙ୍କ ପୂର୍ବରୁ ଭାରତବାସୀ ଛେନାର ବ୍ୟବହାର ଜାଣିଥିଲେ । ଭାରତର ଅନ୍ୟ କୌଣସି ପ୍ରାନ୍ତରେ ଏହା ହୁଏତ 'ଦୁଗ୍ଧର ବିକାର' ଭାବରେ ଦେବଭୋଗ ନ ହୋଇଥାଇପାରେ, ଅନ୍ୟ କୌଣସି ସ୍ଥାନରେ ହୁଏତ ଛେନାପାଇଁ ମନ୍ଦିର ମନା ହୋଇଥାଇପାରେ, କିନ୍ତୁ ଓଡ଼ିଶାର ମନ୍ଦିରମାନଙ୍କରେ ଛେନାପାଇଁ ବାରଣ ନାହିଁ । ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିରରେ ଏହା ଆବହମାନ କାଳରୁ ଶ୍ରୀଜିଉମାନଙ୍କର ଭୋଗ ନୈବେଦ୍ୟ ରୂପେ ବହୁଳ ଭାବରେ ଉପଯୋଗ ହୋଇ ଆସିଛି ।

**ଢେଲା ରସଗୋଲା କଥା**

ଉପରୋକ୍ତ କାହାଣୀଗୁଡ଼ିକ ମଧ୍ୟରେ ସ୍ପଷ୍ଟ ସୂଚନା ଅଛି ଯେ ଫୁଲିୟା ହେଉ ବା ଶାନ୍ତିପୁର କି ବାଗବାଜାର– ସେତେବେଳେ ବଙ୍ଗଦେଶରେ ଯେଉଁ ଧରଣର ରସଗୋଲା ତିଆରି ହେଉଥିଲା, ତାହାର ନାଆଁ ଥିଲା 'ଡେଲା ରସଗୋଲା' । ଓଡ଼ିଆରେ ତାହା ହେବ 'ଢ଼େଲା ରସଗୋଲା' । କାରଣ ଆଜିର ରସଗୋଲା ପରି ନରମପଣ ସେଥିରେ ନଥିଲା । ତାହା ଥିଲା ମାଟିଟେଲା ପରି ଟାଣ । ବାଗବାଜାରର କାଳୀଇନ୍ଦ୍ର ଦୋକାନରେ ଜଣେ ଶିକ୍ଷାନବିଶ ଭାବରେ କାର୍ଯ୍ୟ ଆରମ୍ଭ କରିଥିବା ନବୀନ ଚନ୍ଦ୍ର ଦାଶ ହିଁ ପରବର୍ତ୍ତୀ କାଳରେ ସେହି 'ଡେଲା ରସଗୋଲା' ବା 'ଟେଳା ରସଗୋଲା'କୁ ଦେଇଥିଲେ ଏକ ନରମ ରୂପ । ତାହା ହେଉଛି କଲିକତାର 'ସ୍ପଞ୍ଜ ରସଗୋଲା' ।

**ରସଗୋଲାର କଲମ୍ୱସ !**

ମିଠାପ୍ରିୟ ବଙ୍ଗାଳୀ ଜାତି ରସଗୋଲାର ଏହି ନୂଆ ରୂପ ପାଇଁ ନବୀନ ଚନ୍ଦ୍ର ଦାଶଙ୍କୁ ଉଚ୍ଛ୍ୱସିତ ପ୍ରଶସ୍ତି କରିଛି । ତାଙ୍କୁ 'ରସଗୋଲାର କଲମ୍ୱସ' ଆଖ୍ୟା ଦେଇଛି । କାରଣ ସେତେବେଳେ କଲିକତାରେ ପ୍ରସ୍ତୁତ ହେଉଥିବା 'ଡେଲା ରସଗୋଲା' ଓ ଅନ୍ୟ କିସମର 'ଦାନାଦାର ରସଗୋଲା'କୁ ସେ ନୂଆ ଚରିତ୍ର ଦେଇଥିଲେ । ତେବେ ଅନ୍ୟ ତଥ୍ୟ ଅନୁସାରେ, କଲିକତାର ବେନେଟୋଲାର ସୀତାନାଥ ଘୋଷ ଷ୍ଟ୍ରୀଟରେ ଦୀନୁ ମୟରାଙ୍କ ପୂର୍ବପୁରୁଷ ବ୍ରଜ ମୟରା କଲିକତା ହାଇକୋର୍ଟ ନିକଟରେ ଗୋଟିଏ ଦୋକାନ କରି ସେଠାରେ ପ୍ରଥମ କରି ରସଗୋଲାର ଆବିଷ୍କାର କରିଥିଲେ । ଶ୍ରୀ ଭୌମିକଙ୍କ 'ରସଗୋଲା' ପୁସ୍ତକରେ ମଧ୍ୟ ଏହାର ବିବରଣୀ ଲିପିବଦ୍ଧ ହୋଇଛି । ଏଣୁ କଲିକତୀ ରସଗୋଲାର ପ୍ରଥମ ଉନ୍ନତ କିସମର





ଆବିଷ୍କାରକ ଭାବରେ ଅନେକେ ବ୍ରଜ ମୟରାଙ୍କୁ ମଧ୍ୟ ମାନ୍ୟତା ପ୍ରଦାନ କରନ୍ତି।

### ଛେନାବରା: ଛେନାଝିଲ୍ଲୀ

କଲିକତାରେ ଗୋଟିଏ କଥା ବେଶ୍ ପ୍ରଚଳିତ ଯେ 'ଛେନାବଡ଼ା' (ଛେନାବରା) ହେଉଛି ରସଗୋଲାର ବୃଦ୍ଧ ପ୍ରପିତାମହ ବା ପୂର୍ବସୂରୀ। ଏହାର ପ୍ରସ୍ତୁତି ବିଧି ସଂପର୍କରେ ବଙ୍ଗଳାର ବିଭିନ୍ନ ଖାଦ୍ୟ ଗ୍ରନ୍ଥରେ ଯେଉଁ ବର୍ଣ୍ଣନା ଅଛି, ସେଥିରୁ ଜଣାଯାଏ ଯେ ଏହା ଓଡ଼ିଶାର ନିମାପଡ଼ାରେ ପ୍ରସ୍ତୁତ ହେଉଥିବା 'ଛେନାଝିଲ୍ଲୀ' ବା କେନ୍ଦ୍ରାପଡ଼ାର 'ରସାବଳି' ସହିତ ତୁଳନୀୟ। ପୁରୀ ଶ୍ରୀମନ୍ଦିରର 'ଛପନଭୋଗ' ମଧ୍ୟରେ ବି ଝିଲ୍ଲୀର ସ୍ଥାନ ଅଛି। ଏହି 'ଝିଲ୍ଲୀ' ବା 'ରସାବଳି' ଯେ କଲିକତା 'ଛେନାବରା'ର ବହୁ ପୂର୍ବବର୍ତ୍ତୀ, ଏଥିରେ ସନ୍ଦେହ ନାହିଁ।

### ଗୋପାଳଗୋଲା: ଯତୀନ ଗୋଲା: ଭବାନୀ ଗୋଲା

ବଙ୍ଗୀୟମାନଙ୍କର ତଥ୍ୟ ଯେ କେବଳ ରସଗୋଲାର ପୂର୍ବସୂରୀ ଭାବରେ 'ଛେନାବଡ଼ା'କୁ ସ୍ୱୀକାର କରେ, ତାହା ନୁହେଁ । ଆହୁରି ଅନେକ 'ଗୋଲା'ର ଉପସ୍ଥିତି ମଧ୍ୟ ବଙ୍ଗଳାର ମିଠା ଇତିହାସରେ ରହିଛି। ସେମାନଙ୍କର 'ଅତୀତ ପୃଷ୍ଠା' କହେ, ବିପ୍ରଦାସ ମୁଖୋପାଧ୍ୟାୟ ୧୮୮୭ ଖ୍ରୀଷ୍ଟାବ୍ଦରେ 'ମିଷ୍ଟାନ୍ନ ପାକ' ନାମକ ଏକ ଗ୍ରନ୍ଥରେ ରସଗୋଲାର ପ୍ରସ୍ତୁତି ବିଧି ପ୍ରଥମେ ଲିପିବଦ୍ଧ କରିଥିଲେ। ସେହି ପୁସ୍ତକର ପ୍ରଥମ ସଂସ୍କରଣ ୧୩୦୫ ସାଲ ବା ୧୯୦୦ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଥିବା ଜଣାଯାଏ। ତାହାର ଦ୍ୱିତୀୟ ସଂସ୍କରଣ ୧୯୦୬ରେ ପ୍ରକାଶ ପାଇଥିବା ବିଷୟ 'ଅକ୍ସଫୋର୍ଡ଼ କଂପାନିୟନ ଅଫ ସୁଗାର ଆଣ୍ଡ ସୁଇଟ୍ସ'ରେ ଉଲ୍ଲେଖ ଅଛି। ତଦନୁସାରେ, ଗୋପାଳ ମୟରା ବର୍ଦ୍ଧମାନର ରସଗୋଲା ପରି ଏକ ପ୍ରକାରର ମିଠା ପ୍ରସ୍ତୁତ କରିଥିଲେ। ତାହାର ନାମ ଥିଲା 'ଗୋପାଳ ଗୋଲା'। 'ମିଷ୍ଟି କଥା' ନାମରେ ପଶ୍ଚିମବଙ୍ଗ ମିଷ୍ଟାନ୍ନ ବ୍ୟବସାୟୀ ସଂଘ ପକ୍ଷରୁ ପ୍ରକାଶିତ ଏକ ସମ୍ବାଦପତ୍ରିକା ଅନୁସାରେ, ଆହୁରି ଅନେକ ସମଜାତୀୟ ମିଷ୍ଟାନ୍ନ ମଧ୍ୟ ସମକାଳୀନ ବଙ୍ଗଳାରେ ପ୍ରସ୍ତୁତ ହେଉଥିଲା। ସେସବୁ 'ଯତୀନ ଗୋଲା', 'ଭବାନୀ ଗୋଲା', 'ରସୁଗୋଲା' ଆଦି ନାମରେ ମଧ୍ୟ ପରିଚିତ ଥିଲା।

ଏ ଦୃଷ୍ଟିରୁ ନବୀନ ଚନ୍ଦ୍ର ଦାଶଙ୍କୁ ରସଗୋଲାର ଜନକ ଭାବରେ ଏକକ ମାନ୍ୟତା ଦିଆଯିବା ସର୍ବାଦୌ ଅଯଥାର୍ଥ ମନେହୁଏ।

### ରସକୋରା: ରସଗୋଲା

କିନ୍ତୁ 'ରସକୋରା' ନାମକ ଏକ ମିଷ୍ଟାନ୍ନ ଓଡ଼ିଶାରେ ଅନେକ ଶତାବ୍ଦୀ ପୂର୍ବରୁ ସୁପ୍ରଚଳିତ ଥିବା ଜଣାଯାଏ। ଓଡ଼ିଶାରେ 'କୋରା' କହିଲେ ସାଧାରଣ ଭାବରେ ବୁଝାଯାଏ, କୋରା ନଡ଼ିଆ ସହିତ ଚିନି ପାଗରେ ପ୍ରସ୍ତୁତ ଏକପ୍ରକାରର ଗୋଲାକାର ମିଠାକୁ। ଏଣୁ 'ରସକୋରା' ରସ ମିଶ୍ରିତ ଏକ ଗୋଲାକାର ମିଷ୍ଟାନ୍ନର ଏକ ନାମ ହୋଇଥିବା ଖୁବ୍ ସମ୍ଭବ। ଏହାର ବହୁଳ ପ୍ରଚଳନର ପ୍ରମାଣ ମିଳେ ପ୍ରାଚୀନ ଓଡ଼ିଆ ଶବ୍ଦକୋଷମାନଙ୍କରୁ। ଖ୍ରୀଷ୍ଟିଆନ ମିସ୍‌ନାରୀ ରେଭରେଣ୍ଡ ଆମସ ସଟନଙ୍କ ୧୮୪୩ ମସିହାର ଓଡ଼ିଆ–ଇଂରାଜୀ ଶବ୍ଦକୋଷ ଏହାର ଏକ ପ୍ରମାଣ। ତାଙ୍କ ପ୍ରଣୀତ 'ଆନ ଓରିୟା ଆଣ୍ଡ ଇଂଲିଶ ଡିକ୍ସନାରୀ'ରେ 'ରସକୋରା'କୁ ଏକପ୍ରକାରର ମିଷ୍ଟାନ୍ନ (ଏ କାଇଣ୍ଡ ଅଫ ସୁଇଟ୍‌ମିଟ୍) ତୃପ୍ତିଦାୟକ (ସାଭୋରୀ) ଓ ରସଯୁକ୍ତ (ଲିକ୍ୱିଫାଏଡ଼) ବୋଲି କୁହାଯାଇଛି। ଏହା ରସଗୋଲାକୁ ହିଁ ସୂଚାଏ। ସେହିପରି ୱିଲିୟମ ବ୍ରୁକସଙ୍କ ୧୮୪୭ର 'ଓଡ଼ିଆ–ଇଂରାଜୀ ଶବ୍ଦକୋଷ (ଆନ ଓରିୟା ଆଣ୍ଡ ଇଂଲିଶ ଡିକ୍ସନାରୀ)ରେ ଏହାକୁ 'ଗୋଲାକୃତି ମିଷ୍ଟାନ୍ନ' ବୋଲି କୁହାଯାଇଛି। 'ରସକୋରା'କୁ ତେଣୁ 'ରସଗୋଲା'ର ନାମାନ୍ତର ବୋଲି କୁହାଯାଇପାରିବ। ଏହି ଦୁଇ ଶବ୍ଦକୋଷ ନବୀନ ଚନ୍ଦ୍ର ଦାଶଙ୍କ ତଥାକଥିତ ରସଗୋଲା ଉଦ୍ଭାବନ(୧୮୬୮)ର ବହୁ ପୂର୍ବବର୍ତ୍ତୀ।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର 'ଛେନାବଡ଼ା' ମଧ୍ୟ ଏହାର ସମପର୍ଯ୍ୟାୟବାଚୀ। କାରଣ 'ଛେନାବଡ଼ା' ସଂପର୍କରେ ସେଥିରେ ଲେଖାଅଛି,



'ଗୁଡ଼ପକ୍ୱ ଛେନାର ପିଠା ବା ମିଷ୍ଟାନ୍ନ ବିଶେଷ'। ଓଡ଼ିଶାରେ ଚିନିର ବ୍ୟବହାର ପୂର୍ବରୁ ଏହି 'ଗୁଡ଼ ରସଗୋଲା'ର ପ୍ରସ୍ତୁତି ହେଉଥିବା ଜଣାଯାଏ।

**ଦାଣ୍ଡି ରାମାୟଣର 'ରସଗୋଲା'**

କିନ୍ତୁ ଏହିସବୁ ଶବ୍ଦ ସାମ୍ୟ 'ରସଗୋଲା' ବାବଦରେ ଶତପ୍ରତିଶତ ନିର୍ଦ୍ଦିଷ୍ଟତା ବହନ କରୁ ନଥିବା ବେଳେ, ଶତପ୍ରତିଶତ ନିର୍ଦ୍ଦିଷ୍ଟତା ମିଳେ 'ଦାଣ୍ଡି ରାମାୟଣ'ରୁ। ଏ ପ୍ରସଙ୍ଗ ପୂର୍ବରୁ ଆଲୋଚିତ ହୋଇଛି। ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ 'ଓଡ଼ିଆ ସାହିତ୍ୟର ଇତିହାସ', ପ୍ରଥମ ଭାଗ (୧୯୬୩)ର ପୃ-୪୩୨ରେ ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ରେ 'ରସଗୋଲା'ର ଉଲ୍ଲେଖ ଅଛି। ସେ କହିଛନ୍ତି, ''ଭରଦ୍ୱାଜ ଆଶ୍ରମରେ ଭରତଙ୍କୁ ଋଷିମାନେ ଯେଉଁ ଅଭ୍ୟର୍ଥନା କରିଥିଲେ, ସେଥିରେ ଖାଦ୍ୟର ପରିପାଟୀ ରାଜୋଚିତ ହୋଇଥିଲେ ମଧ୍ୟ ତାହା ଊଣା ଅଧିକରେ ଓଡ଼ିଶାରେ ସମସ୍ତଙ୍କ ଘରେ ଚଳେ। ଏହା ଭୋଜିରେ ଜାତୀୟ ଖାଦ୍ୟର ଚିତ୍ର ମାତ୍ର। ଋଷି ମାୟାରେ ବହୁ ପୁରୁଷ ଓ ସ୍ତ୍ରୀଙ୍କୁ ସର୍ଜ୍ଜନାକରି ଅଭ୍ୟର୍ଥନାରେ ଲଗାଇଥିଲେ। ମାୟା ବ୍ରାହ୍ମଣମାନେ ରୋଷେଇ କରି ପରଷିଥିଲେ। ଏଥିରୁ ବ୍ରାହ୍ମଣମାନେ ଭୋଜିରେ ରୋଷେଇ କରିବା ଓ ପରଷିବା କାର୍ଯ୍ୟ କରୁଥିବା ରୀତି ପ୍ରଚଳିତ ଥିବା ଜଣାଯାଉଛି। ବସା, ଘୃତ, ଅଦା, ଲୁଣ ଦେଇ ନିରାମିଷ, ଆମିଷ ବହୁ ପ୍ରକାର ତିଅଣ କଲେ। ହେଙ୍ଗୁ, ଜୀରା, ମରିଚ ଦେଇ, ନଡ଼ିଆ, ଦୁଧଛେନା ପ୍ରଭୃତି ବହୁ ପିଷ୍ଟକ ଘୃତପାକରେ କଲେ। ମାଛ-ମାଂସ ଛଡ଼ା, ଝଡ଼ା ତିଅଣ, କ୍ଷୀରି, କ୍ଷୀରିଷା, ଶାକର ପରଷିଲେ। ପଣା, ପଇଡ଼ ବଳେ ଯାଚି ଦେଲେ।

ନାଡ଼ି, ସରପୁଳି, ଆରିଷା, ଛେନାପୁରୀ, କାକରା, ଛେନାଲଡ଼ୁ, ମାଲପୁଆ, ପୁରୀ, ସଜମରା ଘିଅ ବଡ଼ାରେ ଆଣି ଦେଲେ। ଗଜା, କଚୁରୀ, ପଣସଖୋସା, ବିରିବଡ଼ା, କୋରା, ରସଗୋଲା, ଅମୃତରସାବଳୀ, ମଣ୍ଡା, ନାନମାନ, ଅମୃତପାଣି କଦଳୀ ଦେଲେ। ଝୁମ୍ପା, ଝରିରେ ନାନା ତୀର୍ଥଜଳ ଆଣି ଦେଲେ। ପଣସିଆ ମଣ୍ଡା, ଲବଣୀ, ପାଣି, ପଣା, ଫେଣା, ଖୁଡ଼ୁମୁଆ ପ୍ରଭୃତି ଖାଇଖାଇ ଲୋକେ ଚିଟା ହୋଇଗଲେ।''

ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଗବେଷକ ଡକ୍ଟର ଭୋଳାନାଥ ରାଉତ ମଧ୍ୟ ତାଙ୍କ 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି' ଶୀର୍ଷକ ଗବେଷଣା ସନ୍ଦର୍ଭ (୧୯୯୮)ରେ ଦାଣ୍ଡି ରାମାୟଣରେ 'ରସଗୋଲା' ଶବ୍ଦର ଉଲ୍ଲେଖ କରିଛନ୍ତି।

କଲିକତା ବିଶ୍ୱବିଦ୍ୟାଳୟରୁ ୧୯୨୧ରେ ପ୍ରକାଶିତ ଏବଂ ବିଜୟ ଚନ୍ଦ୍ର ମଜୁମଦାରଙ୍କ ସଂପାଦିତ 'ଟିପିକାଲ ସିଲେକ୍ସନ୍ସ ଫ୍ରମ୍ ଓଡ଼ିଆ ଲିଟରେଚର'ର ପ୍ରଥମ ଭାଗରେ ଓଡ଼ିଶାର ଆଦିକବିମାନଙ୍କ କୃତିର ଯେଉଁ ନିର୍ବାଚିତ ଅଂଶ ଦିଆଯାଇଛି, ସେଥିରେ ବଳରାମ ଦାସଙ୍କ 'ରାମାୟଣ'ର ନିର୍ବାଚିତ ଅଂଶ ଅଛି। ସେହି ନିର୍ବାଚିତ ଅଂଶ (ଓଡ଼ିଆ ସାହିତ୍ୟର ପରିଚୟ, ପୃ-୮୪)ରେ ମଧ୍ୟ ଛେନା, ଛେନାଜାତ ସାମଗ୍ରୀ ଓ ରସଗୋଲାର ଉଲ୍ଲେଖ ଅଛି। ଏହାର ପ୍ରତିଲିପି 'ୱାର୍ଲ୍ଡ଼ ଇ ବୁକ୍ ଲାଇବ୍ରେରୀ'ରେ ଉପଲବ୍ଧ। କଲିକତା ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ସାର୍ ଆଶୁତୋଷ ମୁଖାର୍ଜୀ ତାହାର ମୁଖବନ୍ଧ ଲେଖିଛନ୍ତି। ପୁସ୍ତକର ଆରମ୍ଭରେ ଯେଉଁ ଦୀର୍ଘ ଇଂରାଜୀ ପ୍ରବନ୍ଧ ଅଛି, ସେଥିରେ ସ୍ପଷ୍ଟ ସୂଚିତ ହୋଇଛି ଯେ ବଳରାମ ଦାସଙ୍କ ସମୟ ହେଉଛି ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ଉଭୟ ଗଜପତି ମହାରାଜାଙ୍କର ସମୟ। ୩୨ ବର୍ଷ ବୟସରେ ବଳରାମ ଦାସ ଏହି 'ରାମାୟଣ'ର ରଚନା ସଂପୂର୍ଣ୍ଣ କରିସାରିଥିଲେ। ଏହା ଥିଲା ଗଜପତି ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟ (୧୪୬୮-୧୯୪୭)। ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ବେଳକୁ ବଳରାମ ପରିଣତ ବୟସରେ ପଦାର୍ପଣ କରିଥିଲେ। ଏହା ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନର ଅର୍ଦ୍ଧଶତାବ୍ଦୀ ପୂର୍ବର ଏବଂ ବଙ୍ଗଳାର ତଥାକଥିତ ଆଧୁନିକ ରସଗୋଲାର ଜନ୍ମ (୧୮୬୮ ଖ୍ରୀଷ୍ଟାବ୍ଦ)ର ପ୍ରାୟ ୩୫୦ ବର୍ଷ ପୂର୍ବବର୍ତ୍ତୀ ।



### ବଙ୍ଗୀୟ 'ବିଶ୍ୱକୋଷ'ର 'ରସଗୋଲା'

ଏ ପ୍ରସଙ୍ଗରେ ଆଉ ଏକ ବଳିଷ୍ଠ ପ୍ରମାଣ ହେଉଛି ନଗେନ୍ଦ୍ର ନାଥ ବସୁ (୧୮୬୬-୧୯୩୬)ଙ୍କ ବଙ୍ଗୀୟ 'ବିଶ୍ୱକୋଷ'। ଏହା ହେଉଛି ବଙ୍ଗଳା ଭାଷାର ପ୍ରଥମ ବିଶ୍ୱକୋଷ। ଦୀର୍ଘ ୨୭ ବର୍ଷର ଅକ୍ଳାନ୍ତ ଅଧ୍ୟବସାୟ ଫଳରେ ନଗେନ୍ଦ୍ର ନାଥ ବସୁ ଏହାର ୨୪ଟି ଭାଗ ପ୍ରକାଶ କରିପାରିଥିଲେ ଏବଂ ଶେଷ ଭାଗଟି ପ୍ରକାଶ ପାଇଥିଲା ୧୯୧୧ରେ। ସେଥିରେ 'ରସଗୋଲା' ଶବ୍ଦଟିକୁ 'ଦେଶଜ' ବୋଲି କୁହାଯାଇଛି। ଏହା ବଙ୍ଗଳା ଭାଷାର ଶବ୍ଦ ବା 'ରସଗୋଲା' ବଙ୍ଗଳାର ଉଦ୍ଭାବନ ବୋଲି ସେଥିରେ କୌଣସି ଉଲ୍ଲେଖ ନାହିଁ। ଏ ଦୃଷ୍ଟିରୁ ବିଶିଷ୍ଟ ଇତିହାସ ପ୍ରଫେସର ତଥା ଊନବିଂଶ ଶତାବ୍ଦୀର କାଳଖଣ୍ଡ ସଂପର୍କରେ ବିଶେଷ ଗବେଷଣା କରିଥିବା ପ୍ରଫେସର କୈଳାସ ଚନ୍ଦ୍ର ଦାଶ 'ଫ୍ରେଶ ଲାଇଟ ଅନ୍ ରସଗୋଲା' ଶୀର୍ଷକ ଏକ ଇଂରାଜୀ ଗବେଷଣା ନିବନ୍ଧରେ ପ୍ରଶ୍ନ କରିଛନ୍ତି, ଊନବିଂଶ ଶତାବ୍ଦୀର ଶେଷ ଦଶକରେ ମୁଦ୍ରିତ ଏହି ବିଶ୍ୱକୋଷରେ କାହିଁକି 'ରସଗୋଲା' ଏକ ଦେଶଜ ଶବ୍ଦ ବୋଲି ଲେଖାଅଛି ? କାହିଁକି 'ରସଗୋଲା' ଏକ ବଙ୍ଗୀୟ ଉଦ୍ଭାବନ ବୋଲି ସେଥିରେ ଲେଖା ନାହିଁ ? ରସଗୋଲାର ଉଦ୍ଭବ ଯେ କଲିକତାରେ ଏବଂ ୧୮୬୮ରେ, ସେ ବାବଦରେ କୌଣସି ପ୍ରାମାଣିକ ତଥ୍ୟ ଅଛି କି ?

ଏସବୁ ପ୍ରଶ୍ନର ଉତ୍ତର ଏବେ ବଙ୍ଗଳା ଦେବାର ସମୟ ଆସିଛି।

### ନଗେନ୍ଦ୍ର ନାଥ ବସୁଙ୍କ 'ହିନ୍ଦୀ ରସଗୁଲା'

ନଗେନ୍ଦ୍ର ନାଥ ବସୁ ଯେ କେବଳ 'ବଙ୍ଗଳା ବିଶ୍ୱକୋଷ'ର ପ୍ରଣେତା ଥିଲେ, ତାହା ନୁହେଁ 'ଦ ଏନସାଇକ୍ଲୋପିଡ଼ିଆ ଇଣ୍ଡିକା' ଅନ୍ତର୍ଗତ 'ହିନ୍ଦୀ ବିଶ୍ୱକୋଷ'ର ମଧ୍ୟ ସେ ସଂପାଦକ ଥିଲେ। ୧୯୧୯ ମସିହାରେ ପ୍ରକାଶିତ ଏହି 'ହିନ୍ଦୀ ବିଶ୍ୱକୋଷ'ର ଊନବିଂଶ ଭାଗରେ 'ରସଗୁଲା' ଶବ୍ଦ ଅଛି ଏବଂ ଆଶ୍ଚର୍ଯ୍ୟଜନକ ବିଷୟ ଏହି ଯେ ନଗେନ୍ଦ୍ର ନାଥ ବସୁ ତାହାକୁ ଏକ 'ହିନ୍ଦୀ' ଶବ୍ଦ ଭାବରେ ସୂଚିତ କରିଛନ୍ତି। ଏହା ସ୍ପଷ୍ଟ ସୂଚାଏ, 'ରସଗୋଲା' ଯେ ଏକ ବଙ୍ଗଳା ଶବ୍ଦ ଏବଂ ଛେନାରୁ ପ୍ରସ୍ତୁତ ଏହି ମିଷ୍ଟାନ୍ନ ଯେ ବଙ୍ଗଳାର ଏକ ଉଦ୍ଭାବନ– ସେ ବାବଦରେ ନଗେନ୍ଦ୍ର ନାଥ ସନ୍ଦିହାନ ଥିଲେ।

### ଓଡ଼ିଶାର ରସଗୋଲା

ରସଗୋଲାକୁ ନେଇ ଓଡ଼ିଶାରେ ମଧ୍ୟ କଥା, ଉପକଥା, ସ୍ମୃତିକଥା ଆଦିର ଅଭାବ ନାହିଁ। 'ସାରଳା ମହାଭାରତ'ଠାରୁ ଆରମ୍ଭ କରି 'ଦାଣ୍ଡି ରାମାୟଣ', 'ଅମ୍ବିକା ବିଳାସ', 'ବିଦଗ୍ଧ ଚିନ୍ତାମଣି' ଆଦି ଅନେକ କାବ୍ୟକୃତିରେ ଓଡ଼ିଆ ଖାଦ୍ୟ ପରଂପରାର ପ୍ରଚୁର ଉଲ୍ଲେଖ ରହିଛି। ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ଯେ 'ରସଗୋଲା' ଶବ୍ଦ ପ୍ରସଙ୍ଗରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ''ସଂକଳ୍ପର ମଣ୍ଡା ହେଲା ସତ ରସଗୋଲା''ର ଉଲ୍ଲେଖ ଅଛି। ସେ ସଂପର୍କିତ ସୂଚନାରେ ଅଛି 'ଚିନ୍ତାମଣି'। ଓଡ଼ିଆ ଲୋକସାହିତ୍ୟର ଏକ ଆଲୋଚନା ପ୍ରସଙ୍ଗରେ ବିଶିଷ୍ଟ ଗବେଷିକା ଡକ୍ଟର ତୁଳସୀ ଓଝା ଏହାକୁ ଷୋଡ଼ଶ ଶତାବ୍ଦୀର 'ଚିନ୍ତାମଣି' କାବ୍ୟର ଅଂଶ ବୋଲି କହିଛନ୍ତି। ସେହି ଆଲୋଚନାରେ ଓଡ଼ିଶାର ପାରଂପରିକ ବ୍ରତ 'ସୁଦଶାବ୍ରତ'ର ଶୁକ୍ଳମଣ୍ଡା ଭୋଗ ସହିତ ଶୁଭ୍ର ରସଗୋଲାର ସାମ୍ୟ ସେ ସୂଚିତ କରିଛନ୍ତି। ଏହି ସୁଦଶାବ୍ରତ ଦେବୀ ଲକ୍ଷ୍ମୀଙ୍କର ପୂଜା। ଓଡ଼ିଶାର ପାରଂପରିକ ଓଷାବ୍ରତର ବିଧାନ ଅନୁସାରେ, ମାର୍ଗଶିର ମାସ ଗୁରୁବାର ଦିନ ଏହି ବ୍ରତରେ ମହାଲକ୍ଷ୍ମୀଙ୍କୁ ଛେନା ଓ ଗୁଡ଼ ମିଶ୍ରିତ ଗୁଳା ଭୋଗ କରିବାର ବିଧି ଅଛି। ଡକ୍ଟର ଓଝାଙ୍କ ଅନୁସାରେ, ଛେନାମଣ୍ଡା ଓ ଛେନାଗୁଳା ଭୋଗ ଦେବୀ ଲକ୍ଷ୍ମୀଙ୍କର ଅତି ପ୍ରିୟ ହୋଇଥିବାରୁ, ମହାପ୍ରଭୁ ଶ୍ରୀଜଗନ୍ନାଥ ଲକ୍ଷ୍ମୀଦେବୀଙ୍କର ମାନଭଞ୍ଜନ କରିବା ନିମିତ୍ତ ନୀଳାଦ୍ରିବିଜେ ଦିନ ନିଜ ସାଙ୍ଗରେ ରସଗୋଲା ନେଇ ଶ୍ରୀମନ୍ଦିରକୁ ଯାଇଥାନ୍ତି।

ଉପଲବ୍ଧ ତଥ୍ୟଗୁଡ଼ିକର ସଂକଳନ ମଧ୍ୟ କରାଯାଇନାହିଁ। ବିଶିଷ୍ଟ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଆତ୍ମଜୀବନୀ



'ପଥିକ'ର 'କଟକ ରସଗୋଲା ଓ କଲିକତୀ ରସଗୋଲା' ଏହାର ଏକ ଉତ୍କୃଷ୍ଟ ଉଦାହରଣ । ସେଥିରେ ଓଡ଼ିଶା ଓ ବଙ୍ଗଳା– ଏହି ଦୁଇ ପ୍ରତିବେଶୀ ରାଜ୍ୟର ରସଗୋଲା ସଂପର୍କରେ ତୁଳନାତ୍ମକ ବିବରଣୀ ରହିଛି ଏବଂ କଲିକତା ରସଗୋଲା ତୁଳନାରେ କଟକ ରସଗୋଲାର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଛି ।

ଓଡ଼ିଶାର ସମସ୍ତଙ୍କୁ ଜଣା ଯେ ଭୈରବ ଚନ୍ଦ୍ର ମହାନ୍ତି ଓଡ଼ିଶାର କ୍ରୀଡ଼ା ଇତିହାସର ଏକ ଚିରସ୍ମରଣୀୟ ବ୍ୟକ୍ତିତ୍ୱ । ଗୋପାଳ ଛୋଟରାୟଙ୍କ ବର୍ଣ୍ଣନା ଅନୁସାରେ, ଦିନେ କଲିକତାର ଦୁଇଟି ଦମ୍ପତି ଆସି ତାଙ୍କର ଅତିଥି ହୋଇଥିଲେ । ସେଦିନ ଗୋପାଳବାବୁଙ୍କୁ ଭୈରବବାବୁ କହିଲେ, କଲିକତାରୁ ଏମାନେ ଆସିଛନ୍ତି । ତମେ ତ ବାଲୁବଜାର ଅଞ୍ଚଳରେ ରହୁଚ– ଯେଉଁଠି ରଙ୍ଗିଆ ଦୋକାନ ପ୍ରଭୃତି ଭଲ ମିଠା ଦୋକାନ ଅଛି । ତମେ କୁହ, ଏମାନଙ୍କୁ ଆମେ କି ମିଠା ଖୁଆଇବା ?

ଗୋପାଳବାବୁ କହିଲେ, ଆମ କଟକ ସହର କଲେଜଛକର ବାଞ୍ଛା ସାହୁ ଦୋକାନ, ଆମ ବାଲୁବଜାରର ରଙ୍ଗିଆ ଦୋକାନର ରସଗୋଲା, କ୍ଷୀରମୋହନ ବା ରାଜଭୋଗ, ପୁଣି ହାଇକୋର୍ଟ ପାଖ ଗୋବିନ୍ଦ ସାହୁଙ୍କ ଦୋକାନର ସ୍ପଞ୍ଜ ରସଗୋଲାର ପରିଚୟ ଆପଣମାନଙ୍କର ଅତିଥି ନିଶ୍ଚୟ ପାଇନାହାନ୍ତି । ମୁଁ ଏ ତାଲିକା କରିଦେଉଚି । ଆପଣ ରଙ୍ଗିଆ ଦୋକାନରୁ ଏ ମିଠା ମଗେଇ ଆଣନ୍ତୁ ।

ଭୈରବବାବୁ ତାହା କଲେ । ପରେ ଯେତେବେଳେ ତାଙ୍କ ସହ ଗୋପାଳ ଛୋଟରାୟଙ୍କର ଭେଟ ହେଲା, ଭୈରବବାବୁ ଖୋଲା ମନରେ କହିଲେ, ତୁମ କଥା ଠିକ୍ । ଆମ ଏଠିକା ଛେନା ଜିନିଷ, ବିଶେଷତଃ ରସଗୋଲା, ରାଜଭୋଗର ପ୍ରଶଂସା ସେମାନେ ମୁକ୍ତ କଣ୍ଠରେ କରିଯାଇଚନ୍ତି । ଏହି ପ୍ରସଙ୍ଗର ବର୍ଣ୍ଣନା କରି ପରିଶେଷରେ ଶ୍ରୀ ଛୋଟରାୟ କହିଛନ୍ତି, ତାଙ୍କ କଥାରୁ ମୁଁ ଜାଣିଲି, କଲିକତା ରସଗୋଲା ଅପେକ୍ଷା ଆମର ଏଠିକା ରସଗୋଲାକୁ ସେମାନେ ବେଶୀ ପସନ୍ଦ କରନ୍ତି ।

ନୀରଦ ସି. ଚୌଧୁରୀ ଜଣେ ବିଶିଷ୍ଟ ଭାରତୀୟ–ଇଂରାଜୀ ଲେଖକ । ଏକଦା ଭାରତର ପ୍ରସିଦ୍ଧ ଇଂରାଜୀ ସାପ୍ତାହିକ ପତ୍ରିକା 'ଇଲଷ୍ଟ୍ରେଟେଡ୍ ୱିକ୍ଲି'ରେ ଭାରତୀୟ ଖାଦ୍ୟ ବିଷୟରେ ସେ ଗୋଟିଏ ଲେଖା ଲେଖିଥିଲେ । ଖାଦ୍ୟ ଗବେଷକ କେ.ଟି. ଆଚାୟାଙ୍କ ପରି ସେ ମଧ୍ୟ ସେଥିରେ ଛେନା ଓ ଦୁଗ୍ଧ ଉପାଦାନରେ ପ୍ରସ୍ତୁତ ମିଠାର ଆଦିଶ୍ରେୟ ବଙ୍ଗଦେଶକୁ ହିଁ ଦେଇଥିଲେ । ତାଙ୍କର ସେହି ଲେଖାର ଅବତାରଣା କରି ଗୋପାଳ ଛୋଟରାୟ କହିଛନ୍ତି, ହାୟ, ଛେନା ଓ ଦୁଗ୍ଧ ଉପାଦାନରେ ପ୍ରସ୍ତୁତ ମିଷ୍ଟାନ୍ନର ଏକ ପୀଠସ୍ଥଳୀ ରୂପେ ବଙ୍ଗଦେଶର ପଡ଼ୋଶୀ ରାଜ୍ୟ ଓଡ଼ିଶା– ବିଶେଷତଃ ଉପକୂଳ ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ୱର ଯେ ବହୁ କାଳରୁ ସୁପ୍ରସିଦ୍ଧ, ତା'ର ସୂଚନା ନୀରଦବାବୁଙ୍କ ଲେଖାରେ ଦୃଷ୍ଟିଗୋଚର ହେଲା ନାହିଁ କାହିଁକି ?

ଏପରି ପକ୍ଷପାତ ଯେ କେବଳ ବଙ୍ଗୀୟ ନୀରଦ ସି. ଚୌଧୁରୀ ଓ ଦକ୍ଷିଣ ଭାରତୀୟ କେ.ଟି. ଆଚାୟା କହିଛନ୍ତି, ତାହା ନୁହେଁ । ଆହୁରି ଅନେକେ ବି କହିଛନ୍ତି । କିନ୍ତୁ ଓଡ଼ିଶା ଯେ ରସଗୋଲାର ଆଦିଭୂମି, ସେ କଥାଟି ସେହିସବୁ ଆକ୍ଷେପ ଓ ଉପସ୍ଥାପନାର ତୀବ୍ରତା ମଧ୍ୟରେ ନିର୍ବାପିତ ହୋଇଯାଇ ନାହିଁ । ଆହୁରି ଅନେକ ବଙ୍ଗୀୟ, ଭାରତୀୟ ଓ ବିଦେଶୀ ଖାଦ୍ୟ ଗବେଷକ ଓଡ଼ିଶାର ଶ୍ରେୟ ସପକ୍ଷରେ ଦୃଢ଼ ସ୍ୱର ଉଠାଇଛନ୍ତି ।

ତେବେ ଓଡ଼ିଶା ନା ବଙ୍ଗଳା– ରସଗୋଲାର ଆଦିଭୂମି କେଉଁଟି, ସେ ସଂପର୍କରେ ଉତ୍କଳଗୌରବ ମଧୁସୂଦନ ଦାଶଙ୍କ ଜୀବନର ଏକ ଆଲେଖ୍ୟ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ।

୧୯୫୧ ମସିହାରେ 'ଉତ୍କଳଗୌରବ ମଧୁସୂଦନ' ଶୀର୍ଷକ ଏକ ପୁସ୍ତକ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶ ପାଇଥିଲା । ତାହାର ଲେଖକ ଥିଲେ ନବକିଶୋର ଦାସ । ମଧୁବାବୁଙ୍କ ମୃତ୍ୟୁଶଯ୍ୟାରେ ତାଙ୍କର ସେବା କରିବାର ସୁଯୋଗ ଶ୍ରୀ ଦାସଙ୍କୁ ମିଳିଥିଲା । ସେତେବେଳେ ତାଙ୍କର ଜୀବନୀ ଲେଖିବା





ଚିନ୍ତା ମଧ ନବକିଶୋରଙ୍କ ମନରେ ଜାଗ୍ରତ ହୋଇଥିଲା । କିନ୍ତୁ ମଧୁବାବୁ ସେଥିପାଇଁ ବିଶେଷ ଆଗ୍ରହ ପ୍ରକାଶ କରିନଥିଲେ ।

ମଧୁବାବୁଙ୍କ ମୃତ୍ୟୁ ପରେ ଶ୍ରୀ ଦାସ ସେହି 'ଉତ୍କଳଗୌରବ ମଧୁସୂଦନ' ପୁସ୍ତକଟିକୁ ଲେଖିଛନ୍ତି । ସେଥିରେ ସେ ସୂଚାଇଛନ୍ତି, ''ମଧୁସୂଦନଙ୍କ ଜୀବନୀ ବିଷୟରେ ଯାହା ଏହି ବହିରେ ଲେଖାଯାଇଛି, ତାହା ସମସ୍ତ ପ୍ରାୟ ଲିଖିତ କାଗଜପତ୍ରରୁ ସଂଗୃହୀତ । ଶୁଣାକଥା ସମାନ ।'' ସେହି ପୁସ୍ତକରେ ଅଛି ଚିନ୍ତାମଣି ଆଚାର୍ଯ୍ୟଙ୍କର ଏକ ମୁଖବନ୍ଧ । ସେଥିରେ ମଧୁବାବୁଙ୍କ ଓକିଲାତି ଜୀବନର ଗୋଟିଏ ଆଖ୍ୟାୟିକା ବର୍ଣ୍ଣିତ ହୋଇଛି । ତାହାର ଆଧାରରେ 'ମିଠାରୁ ଲୁଣ ଯାଏ' ଶୀର୍ଷକରେ, ୨୦୧୨ ମସିହା ମେ ୧୨ ତାରିଖ 'ସମ୍ବାଦ'ରେ ଦାଶ ବେନହୁର ଗୋଟିଏ ଲେଖା ଲେଖିଥିଲେ । ପରେ ତାହା ତାଙ୍କ ଉପନ୍ୟାସ 'ପଗଡ଼ି ପୁରୁଷ'ର ୫୨ ଅଧ୍ୟାୟ ରୂପେ ସଂକଳିତ ହୋଇଛି । ସେଥିରେ ଅଛି ମଧୁସୂଦନ ଦାସ ଲଢ଼ିଥିବା ଏକ ମକଦ୍ଦମାର ବିବରଣୀ । ମକଦ୍ଦମାଟି ୧୯୦୧–୦୨ର ବୋଲି ଜଣାଯାଏ । ସେଥିରେ ଜଣେ ମଧୁବୈଶଙ୍କୁ ମଧୁବାବୁ ସାକ୍ଷୀ ଭାବରେ ଜେରା କରିବାର ବୃତ୍ତାନ୍ତ ଅଛି । ତାହାର ବିବରଣୀ ଏହିପରି–

''ମଧୁସୂଦନ ପଚାରିଲେ– ଭାଇ ନାଁଟା କ'ଣ ଟି ଭୁଲିଗଲି ।

ସାକ୍ଷୀ– ବରଜାନନ୍ଦ ସାହୁ ।

ମଧୁସୂଦନ– ସାହୁ ବୋଇଲେ ?

ସାକ୍ଷୀ– ଜାତିରେ ଆମ୍ଭେ ମଧୁବୈଶ ।

ମଧୁସୂଦନ କହିଲେ– ଜାଣିଲି । ତୁମେ ପ୍ରସିଦ୍ଧ ମିଠା ପ୍ରସ୍ତୁତକାରୀ କାଙ୍ଗାଳୀ ସାହୁଙ୍କ ବଂଶଜ ।

ସାକ୍ଷୀଟି ଏବେ ଆଗ୍ରହୀ ଆଖିରେ ଚାହିଁଲା ମଧୁସୂଦନଙ୍କୁ । ମଉକା ଠିକ୍ ଜାଣି ମଧୁସୂଦନ କହିଲେ– ''ଆରେ ଭାଇ, ବାପା ଜେଜେବାପା ଅମଳରୁ ମିଠେଇ, ରସଗୋଲା, ମୋହନ ଭୋଗ କରି ଲୋକଙ୍କ ପାଟି ମିଠା କରୁଚ, ସେଥିପାଇଁ ଓଡ଼ିଶାରେ ଓଡ଼ିଆଙ୍କଠାରୁ ଆରମ୍ଭ କରି ବଙ୍ଗାଳୀଯାଏଁ ସମସ୍ତଙ୍କ ବଚନ ମଧୁର, ଆଉ ତୁମ ପାଟିରେ ମଧୁର ବଚନ ନାହିଁ କାହିଁକି ?

ସାକ୍ଷୀଟି ବିଚରା ମୁହଁ ପୋତିଦେଲା । ତେଣିକି ମଧୁସୂଦନ ଯାହା ପଚାରିଲେ, ମଧୁର ବଚନ କହୁ କହୁ ସତକଥା ଗୁଡ଼ାକ ଗାଳି ପକାଇଲା ଗୋଟିଗୋଟି କରି । ବିଚାରପତି ମଧ ହସି ପକାଇଲେ ମନେ ମନେ । ମଧୁସୂଦନଙ୍କର ଜିତାପଟ ହେଲା ।''

ଆନୁମାନିକ ୧୯୦୧–୦୨ ମସିହାର ଏହି ମକଦ୍ଦମା ବିବରଣୀ ସୂଚାଏ ଯେ ଉକ୍ତ ମଧୁବୈଶଙ୍କର ପରିବାରରେ ବାପା–ଜେଜେବାପା ଅମଳରୁ ରସଗୋଲା ସମେତ ଅନ୍ୟ ମିଠା ପ୍ରସ୍ତୁତ କରିବାର ପରଂପରା ଥିଲା । ତାଙ୍କ ବାପା–ଜେଜେବାପା ଅମଳକୁ ଯଦି ଅତି କମରେ ୭୦–୮୦ ବର୍ଷ ବୋଲି ହିସାବକୁ ନିଆଯାଏ, ତେବେ ସେହି ପରିବାରରେ ରସଗୋଲା ପ୍ରସ୍ତୁତିର ସମୟ ହେବ ନବୀନ ଚନ୍ଦ୍ର ଦାଶଙ୍କ ରସଗୋଲା ଉଦ୍ଭାବନର ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବରୁ ।

ତେବେ, ବିଶିଷ୍ଟ ସାମ୍ବାଦିକ ସୁଭାଷ ଚନ୍ଦ୍ର ପଟ୍ଟନାୟକ ତାଙ୍କ 'ଓ୍ୱେବ ଜର୍ନାଲ'ର ୩୧ ଜୁଲାଇ ୨୦୧୫ ସଂଖ୍ୟାରେ ନାନା ଐତିହାସିକ ତଥ୍ୟର ଆଧାରରେ ଓଡ଼ିଶାର ବାଙ୍କୀ ଗଡ଼ଜାତ ଅନ୍ତର୍ଗତ ବନ୍ଦାଳର ଏକ ପରିବାର ସାତପୁରୁଷ ଧରି ରସଗୋଲା ତିଆରି କରୁଥିବା ବିଷୟ ଉଲ୍ଲେଖ କରିଛନ୍ତି । ଅପରପକ୍ଷେ କଲିକତାର ନବୀନ ଚନ୍ଦ୍ର ଦାଶଙ୍କ ପରିବାର ପକ୍ଷରୁ ରସଗୋଲା ମାତ୍ର ତିନିପୁରୁଷ ଧରି ପ୍ରସ୍ତୁତ ହେଉଥିବା ଜଣାଯାଏ । ବାଙ୍କୀର ପରିବାର ତତ୍‌କାଳୀନ ରାଜାଙ୍କୁ ରସଗୋଲା ଖୁଆଇ ତାଙ୍କ ପରିବାର ସାତ ମାଣ ନିଷ୍କର ଜମି ଦାନ ରୂପେ ପାଇଥିଲେ ବୋଲି ସେଥରୁ ଜଣାଯାଏ ।

ତେବେ କେବଳ ଯେ ଓଡ଼ିଶାର ଲେଖକ ଓ ଗବେଷକ ରସଗୋଲା ଓଡ଼ିଶାର ବୋଲି କହୁଛନ୍ତି, ତାହା ନୁହେଁ ବଙ୍ଗଳାର କେତେକ ଲେଖକ ଓ ଗବେଷକ ମଧ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି ।

◆◆◆



ଏହାର ଗୋଟିଏ ବଡ଼ ପ୍ରମାଣ କଲିକତାରୁ ପ୍ରକାଶ ପାଉଥିବା ବଙ୍ଗଳା ଭାଷାର ଲୋକପ୍ରିୟ ପତ୍ରିକା 'ସାପ୍ତାହିକ ବର୍ତ୍ତମାନ'ର ଏପ୍ରିଲ, ୨୦୧୧ ସଂଖ୍ୟା। ସେଥିରେ ଅଛି ସମ୍ରାଟ ନନ୍ଦୀଙ୍କର ଏକ ଲେଖା। ପତ୍ରିକାର 'ଏକଟୁ ଜାନୁନ ଏକଟୁ ଭାବୁନ'(ଟିକିଏ ଜାଣନ୍ତୁ, ଟିକିଏ ଭାବନ୍ତୁ)ରେ ସେ ଏହାର ଏକ ରୋଚକ ବିବରଣୀ ଦେଇ କହିଛନ୍ତି-

''ରସଗୋଲା ଶବ୍ଦଟି ଶୁଣିଲେ ହିଁ ଆପେଆପେ ଜିଭ ଓଦା ହୋଇଯାଏ। ଏହି ମିଠାଟି ବଙ୍ଗାଳୀପଣର ଏକ ବାହକ ରୂପେ ବିବେଚିତ ହୁଏ। ଅଥଚ ଶୁଣିଲେ ଚକିତ ହେବାକୁ ପଡ଼େ ଯେ ରସଗୋଲାକୁ ବଙ୍ଗାଳୀମାନେ ଯେତେ ନିଜର ବୋଲି ଦାବି କରନ୍ତୁ ନା କାହିଁକି, ଏହାର ସୃଷ୍ଟି କିନ୍ତୁ ଓଡ଼ିଶାରେ। ଯୁଗଯୁଗ ଧରି ଏଇଟି ଓଡ଼ିଶାର ମିଠା। ଏପରିକି ପୁରୀର ଜଗନ୍ନାଥ ମନ୍ଦିରରେ ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀଙ୍କୁ ଏହି ମିଠା ଭୋଗ ଦିଆଯାଏ। ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରୁ ଅନେକ ବ୍ରାହ୍ମଣ ପାଚକ (ଯାହାଙ୍କୁ ଆମେ 'ଠାକୁର' କହୁ) କାର୍ଯ୍ୟୋପଲକ୍ଷେ ଏ ରାଜ୍ୟକୁ ଆସୁଥିଲେ। ବସ୍ତୁତଃ ତାଙ୍କରି ସୂତ୍ରରେ ହିଁ ସେ ରାଜ୍ୟରୁ ଅନେକ 'ରେସିପି' ସହିତ ରସଗୋଲା ବି ପଦାର୍ପଣ କରିଛି ବଙ୍ଗଳାରେ। ତେବେ ଏଠି ରସଗୋଲାର ପ୍ରଚଳନ କରନ୍ତି ଏନ.ସି. ଦାଶ ନାମକ ଜଣେ ମିଷ୍ଟାନ୍ନ ନିର୍ମାତା। ପରବର୍ତ୍ତୀ କାଳରେ ତାଙ୍କ ପୁତ୍ର କେ.ସି. ଦାଶ ସେହି ବ୍ୟବସାୟର ଶ୍ରୀବୃଦ୍ଧି ସାଧନ କରିଛନ୍ତି। ତାଙ୍କରି ହାତଧରି ରସଗୋଲା ଯାଇଛି ସାଗର ପାରି ରାଇଜକୁ।'' ଏହା ସ୍ପଷ୍ଟ ସୂଚାଏ ଯେ ଓଡ଼ିଶାର ରସଗୋଲା ପ୍ରଥମେ କଲିକତାକୁ ଯାଇ ସେଠାରେ ପ୍ରସିଦ୍ଧିଲାଭ କରିଛି।

ଏହାର ସଦ୍ୟତମ ସମର୍ଥକ ହେଉଛନ୍ତି ଆଉ ଜଣେ ବଙ୍ଗୀୟ ସାମ୍ବାଦିକ ବିଶ୍ୱବିଜୟ ମିତ୍ର। ୨୦୧୫ ଜୁଲାଇ ୬ ତାରିଖ ଦିନ 'ଟାଇମ୍ସ ଅଫ ଇଣ୍ଡିଆ'ରେ ତାଙ୍କର ଏକ ଲେଖାର ଶୀର୍ଷକ ଥିଲା, 'ରସଗୋଲାର ଉଦ୍ଭାବକ କିଏ?' ସେଥିରେ ଦୁଇ ପଡ଼ୋଶୀ ରାଜ୍ୟ- ଓଡ଼ିଶା ଓ ବଙ୍ଗଳା ମଧ୍ୟରେ ରସଗୋଲାକୁ ନେଇ ରହିଥିବା ବିବାଦର ଅବତାରଣା କରି, ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ବହୁ ପୂର୍ବରୁ ଏହାର ପ୍ରଚଳନ ଅଛି ବୋଲି ସେ କହିଥିଲେ। ଭାରତବର୍ଷର ଜଣେ ବିଶିଷ୍ଟ ଇତିହାସ ପ୍ରଫେସର ତଥା ଖାଦ୍ୟ ଗବେଷକ ପୁଷ୍ପେଶ ପନ୍ତ ମଧ୍ୟ ଏହାକୁ ସମର୍ଥନ କରନ୍ତି। ସେ କହନ୍ତି- ଓଡ଼ିଶା ଯେ ରସଗୋଲାର ଆଦିଭୂମି ଏ ତଥ୍ୟରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

ଗତ ୨୦୧୫ ମସିହା ଅଗଷ୍ଟ ମାସ ୨୪ ତାରିଖ ଦିନ ଓଡ଼ିଶାର ଭୁବନେଶ୍ୱରଠାରେ 'ନ୍ୟୁ ଇଣ୍ଡିଆନ ଏକ୍ସପ୍ରେସ୍' ପକ୍ଷରୁ ଆୟୋଜିତ ହୋଇଥିଲା ଏକ ସାହିତ୍ୟ ଉତ୍ସବ। ତାହାର ଏକ ଅଧିବେଶନରେ ଆଲୋଚନାର ବିଷୟ ଥିଲା, 'ଭାରତୀୟ ରନ୍ଧନରେ ଏତେ ଆବର୍ଜନା କାହିଁକି ?' ସେଥିରେ ଯୋଗଦେଇ ପ୍ରଫେସର ପନ୍ତ ତାଙ୍କ ମତର ପୁନରାବୃତ୍ତି କରିଥିଲେ। ସେହି ଉତ୍ସବରେ, ଅଗଷ୍ଟ ୨୩ ତାରିଖ ଦିନ ଭାରତର ବିଖ୍ୟାତ ସିନେ ବ୍ୟକ୍ତିତ୍ୱ ଇମତିଆଜ ଅଲ୍ଲି ମଧ୍ୟ ବଙ୍ଗଳା ରସଗୋଲା ତୁଳନାରେ ଓଡ଼ିଶା ରସଗୋଲାର ଉତ୍କର୍ଷ ଦୃଷ୍ଟିରୁ, ଏହାର ଉଦ୍ଭବ ଓଡ଼ିଶାରୁ ବୋଲି କହିଥିଲେ। ସେହିପରି ୨୪ ତାରିଖର ଅନ୍ୟ ଏକ ଅଧିବେଶନରେ ଭାରତର ବିଖ୍ୟାତ ଡିଟେକ୍ଟିଭ ଲେଖକ, ବଙ୍ଗୀୟ ଶୋଭନ ଚୌଧୁରୀ ମଧ୍ୟ ରସଗୋଲାକୁ ନେଇ ଏକ ବ୍ୟଙ୍ଗ କରିଥିଲେ। ସେ କହିଥିଲେ, ''ଦିନେ ବଙ୍ଗୀୟମାନେ ସେମାନଙ୍କ ସତ୍ୟଜିତ ରାୟ ଓ ରବୀନ୍ଦ୍ରନାଥ ଠାକୁରଙ୍କୁ ନେଇ ଗର୍ବ କରୁଥିଲେ। ମାତ୍ର ଏବେ ବୋଧେ ଗର୍ବ କରିବାକୁ କିଛି ନାହିଁ ବୋଲି ସେମାନେ ଓଡ଼ିଆମାନଙ୍କୁ କହୁଛନ୍ତି, ରସଗୋଲାକୁ ଆମଠାରୁ ନେଇଯାଅ ନାହିଁ। ତୁମ ପାଖରେ ତ ଗର୍ବ କରିବାପାଇଁ କୋଣାର୍କ ଓ ପୁରୀର ମନ୍ଦିର ଅଛି ଆମ ପାଖରେ ଅଛି କ'ଣ !''

ଏ ପ୍ରସଙ୍ଗରେ ଆଉ ଜଣେ ଅଧ୍ୟାପକ ଓ ଗବେଷକ ପ୍ରଫେସର ଉତ୍ପଳ ରାୟ ଚୌଧୁରୀଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ। ପ୍ରାୟ ପାଞ୍ଚବର୍ଷ ତଳେ, ୨୦୧୧ ମସିହା ଅଗଷ୍ଟ ମାସ ପ୍ରଥମ ସପ୍ତାହରେ, ଓଡ଼ିଶାର ପ୍ରମୁଖ ରସଗୋଲା ନିର୍ମାତା ବିକଳାନନ୍ଦ



କରଙ୍କ ସ୍ମୃତିରେ ପ୍ରତିଷ୍ଠିତ ଏକ ଟ୍ରଷ୍ଟ ପକ୍ଷରୁ ନିମନ୍ତ୍ରିତ ହୋଇ ସେ ଆସିଥିଲେ ଓଡ଼ିଶା। ଡକ୍ଟର ରାୟଚୌଧୁରୀ ଯାଦବପୁର ବିଶ୍ୱବିଦ୍ୟାଳୟର 'ଫୁଡ଼ ଟେକ୍ନୋଲୋଜି ଆଣ୍ଡ ବାୟୋ କେମିକାଲ' ବିଭାଗର ପ୍ରଫେସର। ସେତେବେଳେ, ''ତ୍ରୟୋଦଶ ଶତାବ୍ଦୀଠାରୁ (ଅର୍ଥାତ ଦୀର୍ଘ ପ୍ରାୟ ସାତଶହ ବର୍ଷ ଧରି) ପୁରୀ ମନ୍ଦିରରେ ରସଗୋଲା ଭୋଗ ପ୍ରଚଳିତ ଅଛି'' ବୋଲି ସେ କହିଥିଲେ। ସେ ସଂକ୍ରାନ୍ତ ରିପୋର୍ଟ ପ୍ରଖ୍ୟାତ ଇଂରାଜୀ ଦୈନିକ 'ଦ ପାଇଓନିୟର'ର ୫ ଅଗଷ୍ଟ, ୨୦୧୧ ସଂଖ୍ୟା ସମେତ ଅନ୍ୟାନ୍ୟ ଗଣମାଧ୍ୟମରେ ପ୍ରକାଶ ପାଇଛି। ବିଶିଷ୍ଟ ଟେଲିଭିଜନ ସାମ୍ବାଦିକା ଆଲୋକାନନ୍ଦା ମୁଖାର୍ଜୀ, ବିଶିଷ୍ଟ ଗବେଷିକା ଦୀପ୍ତି ରାୟ, ବିଶିଷ୍ଟ ଖାଦ୍ୟ ଗବେଷକ ଚାର୍ମିନ ଓ ବ୍ରିଏନ, କଲିକତାର ବିଶିଷ୍ଟ ଖାଦ୍ୟ ଗବେଷକ ଏସ.ଏମ ଗନି ପ୍ରମୁଖ ମଧ୍ୟ ଓଡ଼ିଶା ହିଁ ରସଗୋଲାର ଆଦିଭୂମି ବୋଲି ମତ ଦିଅନ୍ତି।

ସେହିପରି ଶାମସୁଦ୍ଦିନ ମହମ୍ମଦ ଗନି। ସେ କେବଳ ଭାରତ ସରକାରଙ୍କ ପର୍ଯ୍ୟଟନ ମନ୍ତ୍ରାଳୟ ଅଧୀନରେ ଉତ୍ତର-ପୂର୍ବ ଭାରତର ଆଞ୍ଚଳିକ ନିର୍ଦ୍ଦେଶକ ନଥିଲେ କୋଲକାତା ଇନଷ୍ଟିଚ୍ୟୁଟ ଅଫ ହୋଟେଲ ମ୍ୟାନେଜମେଣ୍ଟର ଅଧ୍ୟକ୍ଷ ମଧ୍ୟ ଥିଲେ। ନିକଟରେ ବିଶିଷ୍ଟ ଜର୍ମାନ ଗବେଷକ ପ୍ରଫେସର ହରମାନ କୁଲକେଙ୍କ ସଂପାଦନାରେ, ଦୁଇଖଣ୍ଡରେ ପ୍ରକାଶ ପାଇଛି 'ଇମେଜିଂ ଓଡ଼ିଶା' ଶୀର୍ଷକ ସୁଦୃଶ୍ୟ ଗ୍ରନ୍ଥ। ସେଥିରେ ଏସ. ଏମ. ଗନି ଓଡ଼ିଶାର ଦୁଗ୍ଧମୂଳ ମିଠା ମଧ୍ୟରେ ଛେନା ପୋଡ଼ପିଠା, ଛେନା ଝିଲ୍ଲୀ ଓ ରସଗୋଲାକୁ ସ୍ଥାନ ଦେଇଛନ୍ତି।

**'ନୀଳାଦ୍ରି ବିଜେ'ର ରସଗୋଲା**

ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ବହୁ ଶତାବ୍ଦୀ ଧରି 'ନୀଳାଦ୍ରି ବିଜେ' ଦିନ ମହାଲକ୍ଷ୍ମୀଙ୍କ ମାନଭଞ୍ଜନର ମଧୁର ନୈବେଦ୍ୟ ଭାବରେ ରସଗୋଲା ଭୋଗ ଅର୍ପିତ ହୋଇଆସୁଛି। କେବଳ ସେତିକି ନୁହେଁ, ଶ୍ରୀଜଗନ୍ନାଥଙ୍କ ସେବା ପୂଜା ସହିତ ଜଡ଼ିତ ବଡ଼ ଓଡ଼ିଆ ମଠ, ଉତ୍ତର ପାର୍ଶ୍ୱ ମଠ, ରାଧାବଲ୍ଲଭ ମଠ, କଟକୀ ମଠ, ନେବଳ ଦାସ ମଠ ଓ ରାଧାଶ୍ୟାମ ମଠ ଆଦିରେ ମଧ୍ୟ ରସଗୋଲା ଭୋଗ ୧୦୦ ବର୍ଷରୁ ୩୦୦ ବର୍ଷ ହେଲା ପ୍ରଚଳିତ ଥିବା ଜଣାଯାଇଛି। ଏ ପ୍ରସଙ୍ଗରେ ପୁରୀ 'ମଠ ପରଂପରା'ର ବିଶିଷ୍ଟ ଗବେଷକ ଡକ୍ଟର ଭାସ୍କର ମିଶ୍ର ରାଘବ ଦାସ ମଠର ସ୍ୱତନ୍ତ୍ର ଉଲ୍ଲେଖ କରନ୍ତି। ସେ କହନ୍ତି, ''ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀକ୍ଷେତ୍ରର ଏଇ ଗୋଟିଏ ମଠ, ଯାହାର କି ରସଗୋଲା ଭୋଗ ଜଗମୋହନକୁ ଆସି ଶ୍ରୀଜଗନ୍ନାଥ ଓ ଶ୍ରୀଦେବୀ (ମହାଲକ୍ଷ୍ମୀ)ଙ୍କର ବିବାହ ଗଇଣ୍ଠାଳ ଫିଟିବା ସମୟରେ ଜନୈକ ପୂଜାପଣ୍ଡା ସେବକଙ୍କ ଦ୍ୱାରା ସର୍ପାମଣୋହି ବିଧିରେ ଶ୍ରୀଜଗନ୍ନାଥଙ୍କୁ ନିବେଦିତ ହୋଇଥାଏ। ଏହାର ପରଂପରା ପ୍ରାୟ ୩୦୦ବର୍ଷର।'' ତେବେ ଏ ପ୍ରସଙ୍ଗରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସୂଚନା ହେଉଛି, ଶ୍ରୀଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ଶ୍ରୀମନ୍ଦିରରେ ଛେନା ଭୋଗର ପ୍ରଥମ ପ୍ରଚଳନ କରିଥିଲେ ବୋଲି ବଙ୍ଗୀୟ ଗବେଷକ ଦାବି କରୁଥିବାବେଳେ, ପୁରୀର ଶ୍ରୀଚୈତନ୍ୟ ଗୌଡ଼ୀୟ ମଠରେ ନୀଳାଦ୍ରି ବିଜେରେ ମଧ୍ୟ ରସଗୋଲା ଭୋଗ ହୁଏନାହିଁ। ସେହିପରି, ଶ୍ରୀଜଗନ୍ନାଥଙ୍କର ଅଣସର ସମୟରେ ତାଙ୍କର ଦର୍ଶନ ନପାଇ ବିରହରେ ଶ୍ରୀଚୈତନ୍ୟ ନିକଟବର୍ତ୍ତୀ ଅଲାରନାଥ ପୀଠକୁ ଯାଇ ଅଲାରନାଥ ଦେବଙ୍କ ଦର୍ଶନ କରୁଥିଲେ ମଧ୍ୟ ସେଠାରେ ରସଗୋଲା ଭୋଗର ପ୍ରଚଳନ ନାହିଁ। ସେଠାର ପ୍ରିୟ ଭୋଗ ହେଉଛି କ୍ଷୀରି।

ଓଡ଼ିଶାର ଶ୍ରୀଜଗନ୍ନାଥ ମନ୍ଦିର ପରଂପରାର ଗୋଟିଏ ବିଶେଷତ୍ୱ ହେଉଛି- 'ରଥଯାତ୍ରା'ର ଅନ୍ତିମ ଉତ୍ସବ 'ନୀଳାଦ୍ରି ବିଜେ'ରେ ରସଗୋଲା ଭୋଗର ପାରମ୍ପରିକ ପ୍ରଚଳନ ଅଛି। ଶ୍ରୀଜଗନ୍ନାଥ ଚେତନାର ବିଶିଷ୍ଟ ଗବେଷକ ଜଗବନ୍ଧୁ ପାଢ଼ୀ ଏହାକୁ ଶ୍ରୀମନ୍ଦିରର ଛଅଶହ ବର୍ଷର ପରମ୍ପରା ବୋଲି କହିଥିବା ବେଳେ, ଅନ୍ୟମାନେ ଏହାକୁ ଅନ୍ୟୂନ ତିନିଶହ ବର୍ଷର ବୋଲି କହିଛନ୍ତି।

ଶ୍ରୀଜଗନ୍ନାଥ ଚେତନାରେ ଶ୍ରୀଜୀଉଙ୍କର ଅନେକ ଅନ୍ତରଙ୍ଗ ନୀତି ଗୋପନୀୟ ଓ ଅବର୍ଣ୍ଣନୀୟ। ଏ ବାବଦରେ



ଆମେ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କବି ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ର ଏକ ଉଦାହରଣ ଦେଇପାରିବା। 'ଉତ୍କଳୀୟ ପ୍ରାଚୀ ଗ୍ରନ୍ଥମାଳା (ଓଡ଼ିଆ)' ଅନ୍ତର୍ଗତ ସେହି ଗ୍ରନ୍ଥ ୧୯୯୧ ମସିହାରେ ଓଡ଼ିଶା ସଂସ୍କୃତି ନିର୍ଦ୍ଦେଶାଳୟ ପକ୍ଷରୁ ପ୍ରକାଶିତ। ଏହି ପୁସ୍ତକର ୨୬ଟି ଅଧ୍ୟାୟ ମଧ୍ୟରୁ ପ୍ରଥମ ଅଧ୍ୟାୟରେ ମଙ୍ଗଳାଚରଣ ଶେଷ ଅଧ୍ୟାୟ ହେଉଛି ଶ୍ରୀଜଗନ୍ନାଥଙ୍କ ଦୈନିକ ନୀତି। ତାହାର ସପ୍ତଦଶ ଅଧ୍ୟାୟରେ ଅଛି ଶ୍ରୀଜଗନ୍ନାଥଙ୍କ 'ଶ୍ରୀମନ୍ଦିର ପ୍ରବେଶ' ବା 'ନୀଳାଦ୍ରି ବିଜେ'ର ବର୍ଣ୍ଣନା।

ପାରମ୍ପରିକ ପ୍ରଥା ଅନୁସାରେ ନୀଳାଦ୍ରିବିଜେରେ ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ଶ୍ରୀମନ୍ଦିରରେ ପ୍ରବେଶ କରିବା ପରେ ଦେବୀ ଲକ୍ଷ୍ମୀଙ୍କ ଆଦେଶରେ ଦାସୀମାନେ ଶ୍ରୀମନ୍ଦିର ଦ୍ୱାର ରୁଦ୍ଧ କରି ଦିଅନ୍ତି। ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରରେ ପ୍ରବେଶ କରି ନପାରି ଶ୍ରୀଜଗନ୍ନାଥ ଦାସୀଙ୍କ ମାଧ୍ୟମରେ ଦେବୀ ଲକ୍ଷ୍ମୀଙ୍କୁ ବିନୟ ବଚନ ସମ୍ବଳିତ ଅନୁରୋଧ କରିବା ପରେ ଦେବୀ ଲକ୍ଷ୍ମୀ ଦ୍ୱାର ଖୋଲନ୍ତି। 'ନୀଳାଦ୍ରି ମହୋତ୍ସବ'ର ବର୍ଣ୍ଣନା ଅନୁସାରେ, ସହଚରୀମାନେ ଯାଇ ଦେବୀ ଲକ୍ଷ୍ମୀଙ୍କୁ ବିନୟ ବଚନ ସମ୍ବଳିତ ଶ୍ରୀଜଗନ୍ନାଥଙ୍କ ଅନୁରୋଧ ଜଣାଇବା ପରେ, ଲକ୍ଷ୍ମୀଦେବୀ ତାଙ୍କର ଛଦ୍ମ କଠୋରତା ପରିହାର କରି, ଆନନ୍ଦ ବିହ୍ୱଳ ଚିତ୍ତରେ ଶ୍ରୀମନ୍ଦିରର ଦ୍ୱାର ଖୋଲି ଦେବାପାଇଁ ସେମାନଙ୍କୁ ଆଦେଶ ଦେଇଛନ୍ତି।

ଶ୍ରୀମନ୍ଦିରରେ 'ନୀଳାଦ୍ରି ବିଜେ' ନୀତିର ପାରମ୍ପରିକ ପ୍ରଥା ଅନୁଯାୟୀ, ଏହା ପରେ ଦାସୀ ବା ସହଚରୀ ଭୂମିକାରେ ଥିବା ସେବକମାନେ ଶ୍ରୀମନ୍ଦିରର କବାଟ ଖୋଲି ଦିଅନ୍ତି ଏବଂ ପ୍ରଭୁ ଭିତରକୁ ବିଜେ କରନ୍ତି। ଭଣ୍ଡାର ଦ୍ୱାର ସମ୍ମୁଖରେ ଲକ୍ଷ୍ମୀ–ନାରାୟଣ ଭେଟ ସହିତ 'ବିବାହ ଗଇଣ୍ଠାଳ' ଫିଟା ହୁଏ ଏବଂ ସେହି ଅପୂର୍ବ ମିଳନ ମୁହୂର୍ତ୍ତରେ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଲକ୍ଷ୍ମୀଦେବୀଙ୍କ ମାନଭଞ୍ଜନଜନିତ ମଧୁର ନିଦର୍ଶନ ସ୍ୱରୂପ ରସଗୋଲା ଭୋଗ ଅର୍ପିତ ହୁଏ।

ଏଇ 'ଗଇଣ୍ଠାଳ'ର ଏକ ଗୁରୁତ୍ୱପୂର୍ଣ୍ଣ ବିଶେଷତ୍ୱ ହେଉଛି, ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ରୁକ୍ମିଣୀ ହରଣ ପରେ ଶ୍ରୀଜଗନ୍ନାଥଙ୍କର ଯେଉଁ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ, ତାହା ପରେ ପରେ ପ୍ରଭୁ ସ୍ନାନଯାତ୍ରାକୁ ଆସି ସ୍ନାନନୀତି ପରେ ଜ୍ୱରରେ ପଡ଼ନ୍ତି ଏବଂ ଜ୍ୱରରୁ ଉଠିବା ପରେ ନବଯୌବନ ଦର୍ଶନ ଦେଇ ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କୁ ନେଇ ପରଦିନ ଘୋଷଯାତ୍ରାରେ ବାହାରି ଯାଆନ୍ତି। ତେଣୁ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ପଡ଼ିଥିବା ବିବାହ ଗଇଣ୍ଠାଳ ଫିଟିପାରି ନଥାଏ। ତାହା ଯାଇ ଫିଟେ ରଥଯାତ୍ରା ଓ ବାହୁଡ଼ା ପରର 'ନୀଳାଦ୍ରି ବିଜେ' ଦିନ। ଯେଉଁ ବର୍ଷ ନବକଳେବର ହୁଏ, ସେ ବର୍ଷର ବିଶେଷତ୍ୱ ହେଉଛି, ଏହି ଗଇଣ୍ଠାଳ ବିଦାୟୀ ବିଗ୍ରହଙ୍କ ସହିତ ପଡ଼ିଥିବା ବେଳେ, ନୂତନ ବିଗ୍ରହଙ୍କଠାରେ ଗଇଣ୍ଠାଳ ଫିଟା ନୀତି ଅନୁଷ୍ଠିତ ହୁଏ।

କିନ୍ତୁ ଗଇଣ୍ଠାଳ ଫିଟା ନୀତି ସହିତ, ପାରଂପରିକ ଭାବରେ ହେଉଥିବା ରସଗୋଲା ଭୋଗର ଉଲ୍ଲେଖ 'ନୀଳାଦ୍ରି ବିଜେ' ପ୍ରସଙ୍ଗରେ କାହିଁକି ନାହିଁ ତାହାର ଏକ ସଂକେତ ମିଳେ ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ର ପରବର୍ତ୍ତୀ ବର୍ଣ୍ଣନାରୁ।

ଏହି ଅନ୍ତରଙ୍ଗ ନୀତି କେବଳ ଦର୍ଶନଯୋଗ ବର୍ଣ୍ଣନୀୟ ନୁହେଁ। କେବଳ ଦର୍ଶନକାରୀ ଭକ୍ତ ତାହାର ଅନୁଭବ ପାଆନ୍ତି ଏବଂ ଦେବୀଲକ୍ଷ୍ମୀ ଓ ତାଙ୍କ ନାହା ଶ୍ରୀଜଗନ୍ନାଥ ତାହା ଜାଣନ୍ତି। ସେଥିପାଇଁ ପାରଂପରିକ ଭାବେ ପ୍ରତିବର୍ଷ ହେଉଥିବା 'ଲକ୍ଷ୍ମୀ ନାରାୟଣ ବଚନିକା' ଓ 'ରସଗୋଲା ଭୋଗ' ଆଦି ନୀତିର ବିଶେଷ ଉଲ୍ଲେଖ ସ୍ୱତ୍ୱଲିପି ବା ଓଡ଼ିଆ ସାହିତ୍ୟ କୃତିଗୁଡ଼ିକରେ ପ୍ରାୟ ମିଳେନାହିଁ। ସଂପୃକ୍ତ ସେବକମାନଙ୍କ ଗୃହରେ ଥିବା ପାରମ୍ପରିକ ପୋଥି ଅନୁସାରେ ବଚନିକା ହେଉଥିବା ବେଳେ, ରସଗୋଲା ଭିତରଚ୍ଛ ମହାପାତ୍ର ସେବକ ନିଜ ଘରେ ଶୁଦ୍ଧପୂତ ଭାବରେ ପ୍ରସ୍ତୁତ କରି ଆଣି ଭୋଗ କରିଥାଆନ୍ତି। ପ୍ରମୁଖ ମଠମାନଙ୍କ ପକ୍ଷରୁ ମଧ୍ୟ ଏହି ଭୋଗ ରଥସ୍ଥ ଠାକୁରଙ୍କୁ ବା ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ହୋଇଥାଏ।



ଏ ସବୁରୁ ସ୍ପଷ୍ଟ ସାବ୍ୟସ୍ତ ଯେ କଲିକତାରେ ନବୀନ ଚନ୍ଦ୍ର ଦାଶଙ୍କ ଦ୍ୱାରା ୧୮୬୮ରେ ପ୍ରସ୍ତୁତ ହେବାର ବହୁ ପୂର୍ବରୁ ରସଗୋଲା ଓଡ଼ିଶାରେ ଲୋକପ୍ରିୟ ଥିଲା। କୌଣସି ଏକ ଲୋକ ପରଂପରାର ନିର୍ଦ୍ଦିଷ୍ଟ ପ୍ରବର୍ତ୍ତନ ସମୟ ସବୁବେଳେ କହି ହୁଏନାହିଁ। ଏ ଦୃଷ୍ଟିରୁ 'ନୀଳାଦ୍ରିବିଜେ'ରେ ରସଗୋଲା ଭୋଗ ପ୍ରଚଳନର ନିର୍ଦ୍ଦିଷ୍ଟ ସମୟ ମିଳୁ ନଥିଲେ ହେଁ, ଅନ୍ୟୂନ ତିନି ଶହ ବର୍ଷରୁ ସାତଶହ ବର୍ଷ ଧରି ଏହା ପୁରୀ ଶ୍ରୀମନ୍ଦିରରେ ପ୍ରଚଳିତ ଅଛି ବୋଲି କୁହାଯାଇପାରିବ। 'ଦାଣ୍ଡି ରାମାୟଣ'ର 'ରସଗୋଲା' ଓଡ଼ିଶା ରସଗୋଲାର ୫୦୦ ବର୍ଷର ପ୍ରମାଣ। ଏହା ସହିତ 'ନୀଳାଦ୍ରି ବିଜେ' ଦିନ ଏହା ପରଂପରାକ୍ରମେ ଶ୍ରୀଜଗନ୍ନାଥ ଓ ମା' ମହାଲକ୍ଷ୍ମୀଙ୍କୁ ଭୋଗରୂପେ ଅର୍ପିତ ହେବା ମଧ୍ୟ ସ୍ପଷ୍ଟ ଓ ଦୃଢ଼ ଭାବରେ ପ୍ରମାଣ କରେ ଯେ ଓଡ଼ିଶା ହିଁ ରସଗୋଲାର ଆଦିଭୂମି।

୪ ଆର୍- ୧/୨, ୟୁନିଟ୍-୩
ଖାରବେଳ ନଗର, ଭୁବନେଶ୍ୱର

# କାହିଁକି ବିଳମ୍ବ କରୁଚ ଆଉ

ରାଧାନାଥ ଦାସ

ମଉସୁମୀର ଏ ପହିଲି ଛୁଆଁରେ, ନିଦାଘର ତାତି ହଜିଲାଣି
ବରଷାରେ ମାଟି ଭିଜିଲାଣି, ଶ୍ରୀଗୁଣ୍ଡିଚା ଯାତ ବାରତା ଆଣି
ଆସିଚି ଆଷାଢ ଧରାକୁ ପୁଣି, ପୁଣ୍ୟ ଶ୍ରୀକ୍ଷେତ୍ରେ ପହଣ୍ଡି ବିଜୟେ
ଘଣ୍ଟ, ମର୍ଦ୍ଦଳ ବାଜିଲାଣି ।
ଆହାକି ସୁନ୍ଦର ଦିଶେ ବଡଦାଣ୍ଡ, ତିନିରଥ ପାଉଥାନ୍ତି ଶୋଭା
ଦିଶୁଥାନ୍ତି ବଡ ମନଲୋଭା, ପହଣ୍ଡି ହୁଅନ୍ତି କାଳିଆ ଧନ
ଫୁଲର ଟାହିଆ ମୋହୁଚି ମନ ଭକତଙ୍କୁ ଦରଶନ ଦେବା ପାଇଁ
ନନ୍ଦିଘୋଷ ରଥେ ହେବେ ଉଭା ।
ଭକତ ଭୋଳିଆ ଜଗତର ନାଥ, କରୁଛନ୍ତି ଶ୍ରୀଗୁଣ୍ଡିଚା ଲୀଳା
ଭକତ ଭାବରେ ହୋଇ ଭୋଳା, ସଂକୀର୍ତ୍ତନ ପଡୁଅଛି ଉଚ୍ଛୁଳି
ହରିବୋଲ ସାଙ୍ଗକୁ ହୁଳହୁଳି ।
ବଡଦାଣ୍ଡେ ରଥ ଟାଣିବା ପାଇଁକି, ଭକତିରେ ମଥା କରି ନତ
ଚାହିଁ ରହିଛନ୍ତି ଯେ ଭକତ, କାହିଁକି ବିଳମ୍ବ କରୁଚ ଆଉ
ରଥେ ବିଜେ କର ହେ ମହାବାହୁ
ବଡଦାଣ୍ଡେ ରଥ ଟାଣିବେ ଭକତ
ମୁଖେ କହି ଜୟ ଜଗନ୍ନାଥ ।

ଆଠଗଡ ଟାଉନ୍, କଟକ

# ଭାବଗ୍ରାହୀ

ଦିଲ୍ଲୀପ କୁମାର ବେହୁରା

ଜଗତ ଠାକୁର ନାମ ବହିଅଛ
ଭକତରେ ଦେଇ ଦୁଃଖ
ଭକତ ଆଖିରେ ଲୁହକୁ ଦେଖିଲେ
ଲାଗେ କିଆଁ ପ୍ରଭୁ ସୁଖ
ବାଇଶି ପାହାଚେ ଗଡଇ ଭକତ
ବଡଦାଣ୍ଡେ ଯାଏ ପଡି
ଯେତେ ଡାକିଲେ ବି ଡାକ ଶୁଭେ ନାହିଁ
ଛାଡୁଥିଲେ ସେଠି ରଡି
ରାଗିଲେ କାହିଁକି ରାଗ ଭୁଲିଯାଏ
ଦେଖିଦେଲେ କଳାମୁଖ ।
ଅରୁଣ ସ୍ତମ୍ଭକୁ ଜାବୁଡି ଧରିଲେ
ଲାଗେ ଗଲା ସବୁ ମିଳି
ଗରୁଡ ଖମ୍ବରୁ ତୋତେ ଦେଖିଦେଇ
ଦୀପଟିଏ ଦେଲେ ଜାଳି
ଭାବଗ୍ରାହୀ ତୁମେ ଭାବକୁ ଜାଣୁଛ ଭକତର ମାନ ରଖ ।



ଗ୍ରାମ-ପୋଖରିଆ, ପୋ.ଅ-ମହୁଲିଆ
ଥାନା-ରାଜନଗର, ଜିଲ୍ଲା-କେନ୍ଦ୍ରାପଡା



# ଶ୍ରୀଜଗନ୍ନାଥ: ଶ୍ରୀକୃଷ୍ଣଙ୍କର ବିବର୍ତ୍ତିତ ପ୍ରତିଭୂ

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ଭାରତୀୟ ଧାର୍ମିକ ଚେତନା ଓ ସଂସ୍କୃତିରେ କୃଷ୍ଣାବତାରର ମହତ୍ତ୍ୱ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଏହି ଅବତାରରେ କୃଷ୍ଣଙ୍କ ଲୀଳାକୁ ବାଳଲୀଳା,ଐଶ୍ୱର୍ଯ୍ୟ ଲୀଳା, ମାଧୁର୍ଯ୍ୟ ଲୀଳାରେ ଚିହ୍ନିତ କରାଯାଇଛି। କୃଷ୍ଣ ଚେତନା ଦିନେ ଭାରତର ଏକ ବିସ୍ତୃତ ଅଞ୍ଚଳକୁ ତା'ର ଆଧ୍ୟାତ୍ମିକ ଶୀତଳ ଛାୟାରେ ରସସ୍ନିଗ୍ଧ କରି ରଖିଥିଲା । ଅତ୍ୟାଚାରୀ କଂସର ନିର୍ମମ ଅତ୍ୟାଚାରରେ ଯେତେବେଳେ ସମଗ୍ର ଧରଣୀ ଭୟ ଓ ଯନ୍ତ୍ରଣାରେ ଅସ୍ଥିର ହୋଇ ଉଠିଥିଲା, ମାନବ ସଭ୍ୟତାର ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜନକ ବସୁଦେବଙ୍କ ଔରସରୁ ଓ ଜନନୀ ଦେବକୀଙ୍କ ଗର୍ଭରୁ ଭଗବାନ୍ କୃଷ୍ଣ ଜନ୍ମଗ୍ରହଣ କଲେ । କେବଳ କଂସ ନିଧନ ନୁହେଁ ସମକାଳୀନ ସମାଜର ଦେଖାଦେଇଥିବା ଚରମ ବିଶୃଙ୍ଖଳା, ଅଧର୍ମ ଓ ଅନୀତିର ବିଲୋପ ସାଧନ କରି ଧର୍ମ ସଂସ୍ଥାପନ ପାଇଁ ତାଙ୍କର ଆବିର୍ଭାବ ଘଟିଥିଲା । ସୁସ୍ଥ- ସୁନ୍ଦର ତଥା ଭୟ ଓ ଆଶଙ୍କା ମୁକ୍ତ ଏକ ଆଦର୍ଶ ସମାଜ ପ୍ରତିଷ୍ଠା ପାଇଁ ଦିଗ୍‌ଦର୍ଶନ ଦେବାକୁ ଭଗବାନ ଏକ ଏକ ଚେତନା ନେଇ ଏ ପୃଥିବୀରେ ଜନ୍ମଗ୍ରହଣ କରିଥାନ୍ତି ଏବଂ ସେହି ଚେତନାକୁ ମଧ୍ୟ ଏ ଧରାରେ ଆଦର୍ଶରୂପେ ପ୍ରତିଷ୍ଠା କରନ୍ତି । ଏହିଭଳି ଏକ ଉଚ୍ଚତର ଚେତନା ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରା ଭାରତୀୟ ସମାଜରେ ପ୍ରତିଷ୍ଠା ଲାଭ କରିଥିବା ସୁବିଦିତ ।

ଓଡ଼ିଶାରେ ମଧ୍ୟ ଏହି ଚେତନାର ଉଲ୍ଲେଖଯୋଗ୍ୟ ଉତ୍ତରଣ ସଂଘଟିତ ହୋଇଅଛି । ଏହି ଉତ୍ତରଣର ନେପଥ୍ୟରେ ଯେଉଁ ପ୍ରେରଣା ଉତ୍କଳୀୟଙ୍କୁ ବିଶେଷ ଭାବେ ଉତ୍ସାହିତ କରିଛି, ତାହା ହେଉଛି ଉତ୍କଳରେ ଶ୍ରୀଜଗନ୍ନାଥଙ୍କ ଅଧିବାସ। ସମାଲୋଚକଙ୍କ ମତରେ ଆନୁମାନିକ ଦ୍ୱାଦଶ ଶତାବ୍ଦୀ ଶେଷଭାଗକୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଅଭିନ୍ନ ବୋଲି ପରିଗୃହୀତ ହୋଇଥିଲେ । ପରବର୍ତ୍ତୀ ସମୟରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀରେ ରଚିତ ବହୁ ଭକ୍ତି ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପରେ ଚିତ୍ରଣ କରାଯାଇଛି । ସାରଳା ଦାସଙ୍କ ମହାଭାରତର ମୂଷଳି ପର୍ବରେ ଶ୍ରୀକୃଷ୍ଣଙ୍କର ଦେହାବଶେଷ ହିଁ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହର ରୂପାନ୍ତର ବୋଲି ଉଲ୍ଲେଖ କରାଯାଇଛି ଏବଂ କଳିଯୁଗରେ ଶ୍ରୀଜଗନ୍ନାଥ ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କର ପରିବର୍ତ୍ତିତ ଅବତାର କଥା ସାରଳା ଦାସ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଏତଦ୍‌ବ୍ୟତୀତ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ ଓ ଦିବାକର ଦାସ ଇତ୍ୟାଦିଙ୍କ ବହୁ ଗ୍ରନ୍ଥରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ଅଭିନ୍ନତ୍ୱ ପ୍ରକାଶିତ। କିନ୍ତୁ ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ଅପୋଡ଼ା ପିଣ୍ଡ କଳିଯୁଗରେ ନୀଳକନ୍ଦରରେ ବୌଦ୍ଧ ରୂପରେ ପ୍ରକାଶିତ ହେବା କଥା କୁହାଯାଇଥିଲେ ହେଁ ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ପରେ ଅର୍ଥାତ୍ ୧୫୦୯ ଖ୍ରୀଷ୍ଟାବ୍ଦ ପରେ ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀକୃଷ୍ଣଙ୍କର ଅଭିନ୍ନତ୍ୱ ବଳିଷ୍ଠ ଭାବରେ ପରିଲକ୍ଷିତ ହେଲା । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ବିଗ୍ରହ ରୂପରେ ସଂଦର୍ଶନ କରିଥିଲେ ଏବଂ ଶ୍ରୀଜଗନ୍ନାଥ ପରମ ପ୍ରେମପୁରୁଷ ଶ୍ରୀକୃଷ୍ଣ ଓ ପ୍ରକୃତି ସ୍ୱରୂପା ଶ୍ରୀରାଧାଙ୍କର ନିତ୍ୟରାସର ଯୁଗନଦ୍ଧ ମୂର୍ତ୍ତିରୂପେ ଦେଖିଥିଲେ। କୃଷ୍ଣ ଧର୍ମର ପ୍ରବର୍ତ୍ତକ ତଥା ପ୍ରଚାରକ ଶ୍ରୀଚୈତନ୍ୟ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ଉତ୍କଳକୁ ଆସିଥିଲେ । ସେତେବେଳକୁ ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱ ବିଶେଷ ଭାବରେ ଆରୋପିତ ହୋଇନଥିଲା । ଗଜପତି ପ୍ରତାପରୁଦ୍ରଦେବ ଚୈତନ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମରେ ଦୀକ୍ଷିତ



ହେଲାପରେ ଶ୍ରୀଜଗନ୍ନାଥ ସମ୍ପୂର୍ଣ୍ଣ ରୂପରେ ଉତ୍କଳୀୟ ଜନମାନସରେ ରାଧାକୃଷ୍ଣଙ୍କର ମିଳିତ ତନୁ ରୂପ ଗୃହୀତ ହେଲେ। ଚୈତନ୍ୟଙ୍କ ଆଗମନ ପୂର୍ବରୁ ଜଗନ୍ନାଥ ବହୁ ଭାବରେ ବିଷ୍ଣୁ ରୂପରେ ଗୃହୀତ ହୋଇ ଆସିଥିଲେ । ଶ୍ରୀଚୈତନ୍ୟଙ୍କ ସମସାମୟିକ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ ପ୍ରଭୃତି ପଞ୍ଚ ବୈଷ୍ଣବ କବିଙ୍କ ଲେଖନୀରେ ଜଗନ୍ନାଥଙ୍କଠାରେ କୃଷ୍ଣୈକତ୍ୱ ଧାରଣା ବଳବତ୍ତର ହୋଇ ଉଠିଲା । ଏହା ଶ୍ରୀଚୈତନ୍ୟଙ୍କ ପ୍ରଭାବରେ ତଥା ରାଜାନୁସାରି ଧର୍ମର ପ୍ରେରଣା ଯୋଗୁଁ ହିଁ ଘଟିଥିଲା ବୋଲି କୁହାଯାଇପାରେ। କିନ୍ତୁ ଉତ୍କଳରେ ଥିବା ଜ୍ଞାନମିଶ୍ରା ଉପାସନା ଓ ଚୈତନ୍ୟଙ୍କର ପ୍ରେମଭକ୍ତି ଉପାସନାର ସମିଶ୍ରଣରେ ପଞ୍ଚସଖା ଯୁଗୀୟ ବୈଷ୍ଣବ କବି ସେମାନଙ୍କର ସାହିତ୍ୟ ସୃଷ୍ଟି କରିଥିଲେ ହେଁ ଶ୍ରୀଜଗନ୍ନାଥଙ୍କୁ ସର୍ବୋତ୍କୃଷ୍ଟ ଉପାସ୍ୟ ଦେବତା ରୂପରେ ଗ୍ରହଣ କରିଛନ୍ତି ।

ପଞ୍ଚସଖା ମଧ୍ୟରୁ ଅନ୍ୟତମ କବି ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟସଂହିତାରେ ଜଗନ୍ନାଥ ଯିଏ କୃଷ୍ଣ ସେହି ବୋଲି ଦର୍ଶାଯାଇଛି । ମହାମନ୍ତ୍ର କୃଷ୍ଣ ଯେହୁ ଜଗନ୍ନାଥ ସେହି ବୋଲି ସେ କହିଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଅବତାରୀ କହି ଶ୍ରୀକୃଷ୍ଣଙ୍କୁ ଅବତାର ରୂପରେ ଗ୍ରହଣ କରିଛନ୍ତି । ଅଚ୍ୟୁତାନନ୍ଦ ଶୂନ୍ୟସଂହିତାରେ ଉଲ୍ଲେଖ କରି କହନ୍ତି– ଅବତାର ଦାଶ, ଏହି ଦାରୁରୂପ, ଏହି ଦାରୁରେ ସେ ଲୀନ। ଜୟଦେବଙ୍କ ଗୀତଗୋବିନ୍ଦରେ କୃଷ୍ଣଙ୍କୁ ଅବତାର ରୂପରେ ଗ୍ରହଣ କରାଯାଇନାହିଁ । ଦଶାବତାର ମଧ୍ୟରେ କୃଷ୍ଣ ଅନ୍ତର୍ଭୁକ୍ତ ନୁହଁନ୍ତି, କିନ୍ତୁ ଅଚ୍ୟୁତାନନ୍ଦ କୃଷ୍ଣଙ୍କୁ ଅବତାର ବୋଲି ଗ୍ରହଣ କରିଛନ୍ତି ।

ଜଗନ୍ନାଥ ବଳଭଦ୍ର ଭଦ୍ରା ସୁଦର୍ଶନ
ମହାମନ୍ତ୍ର ମନ୍ତ୍ରରାଜ ରୂପ ଦାରୁବ୍ରହ୍ମ
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଘେନି ସିଂହାସନପରେ
ବିଜୟ କରି ଅଛନ୍ତି ଚତୁର୍ଦ୍ଧା ରୂପରେ। (ଶୂନ୍ୟ ସଂହିତା)

ଅନ୍ୟତମ ବୈଷ୍ଣବ କବି ଦିବାକର ଦାସ ତାଙ୍କର ଜଗନ୍ନାଥ ଚରିତାମୃତରେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ଓ କୃଷ୍ଣଙ୍କୁ ଅବତାର ବୋଲି ସ୍ପଷ୍ଟ କହିଛନ୍ତି –

ଈଶ୍ୱର ଉପରେ ଈଶ୍ୱର, ପରମ ପରେ ପରାପର
ବ୍ରହ୍ମ ଉପରେ ବ୍ରହ୍ମ ଏହି, କୃଷ୍ଣ ଉପରେ କୃଷ୍ଣ ସେହି।
ଅନାଦି ଉପରେ ଅନାଦି, ସର୍ବ କାରଣ ପରସିଦ୍ଧି
ଶ୍ରୀଜଗନ୍ନାଥ ଶ୍ରୀମୂରତି, ଏଥୁଁଟି ସର୍ବ ଉତପତି।

ଏବଂ

ଅବତାରୀ ଏ ଜଗନ୍ନାଥ
ଏ ତହୁଁ ଅବତାର ଜାତ।(ଦ୍ୱାଦଶ ଅଧ୍ୟାୟ)
ପରମ ବ୍ରହ୍ମ ଜଗନ୍ନାଥ।
ଅବତାରଟି ଏଥୁଁ ଜାତ।
କୋଟିକୋଟି ଯେ ଅବତାର।
ଏ ତହୁଁ ହୁଅନ୍ତି ବାହାର।
ଏଥିରେ ସନ୍ଦେହ ନକର
ଏହା ଅଟଇ ତତ୍ତ୍ୱସାର।(ଚତୁର୍ଥ ଅଧ୍ୟାୟ)

ବଳରାମ ଦାସ ତାଙ୍କ ବେଦାନ୍ତ ସାର ଗୀତାରେ ଲେଖିଛନ୍ତି–

ଓଡ୍ର ରାଷ୍ଟ୍ରରେ ନୀଳଗିରି, ଯହିଁ ବିଜୟ ନରହରି।
ଜଗତ ଈଶ୍ୱର ଠାକୁର, ଲୀଳା ଏ ନାନା ଅବତାର।

ଏବଂ

ସର୍ବଦା ନୀଳାଦ୍ରିରେ ସ୍ଥିତି।
ଏଥୁ ସକଳ ଜାତ ହୋନ୍ତି।
ସମସ୍ତ ଅବତାର ମାନ।
ଜାତ ହୋଇଣ ପଶେ ପୁଣ।
ବେଦାନ୍ତ ସାର ବ୍ରହ୍ମ ଏହି।
ବେଦ ହିଁ ବର୍ଣ୍ଣି ନ ପାରଇ।

ଦୀନକୃଷ୍ଣ ଦାସ ତାଙ୍କ 'ରସକଲ୍ଲୋଳ' କାବ୍ୟରେ ଲେଖିଛନ୍ତି–

କଲେ ଇଚ୍ଛା ମନେ ହେବା କଂସ ଅନ୍ତକ,
କରିବା ଉଶ୍ୱାସ ମହୀ ଭାରା ଯେତେକ।



କପଟେ ହୋଇବା ନନ୍ଦ ବ୍ରଜ ବାଳକ,
କଉତୁକେ ବୋଲାଇବା ପଶୁ ପାଳକ ।
କରିଏ ବିଚାର କଇବଲ୍ୟ ଦାୟକ,
କଂସ ଆଦି ମାରିବାକୁ ହେଲେ ଉତ୍ସୁକ।
କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ,
କରିବାକୁ ଜାତ ଜଗନ୍ନାଥ ଜନକ। (ପ୍ରଥମ ଛାନ୍ଦ)

ଶ୍ରୀଜଗନ୍ନାଥ ହିନ୍ଦୁ ଜଗତର ସର୍ବଶ୍ରେଷ୍ଠ ଦେବତା ରୂପରେ ପରିଗୃହୀତ ହୋଇ ଆସିଛନ୍ତି । ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ଓ ସୌର ଉପାସକମାନେ ନିଜ ନିଜର ଉପାସ୍ୟଭାବେ ଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି । ଶ୍ରୀଜଗନ୍ନାଥଙ୍କର ମୂର୍ତ୍ତିରେ, ରୂପରେ, ବେଶରେ ତଥା ପୂଜାନୀତିରେ ନିଜ ନିଜର ଧର୍ମର ସଂକେତକୁ ଦେଖି ତାଙ୍କୁ ଉପାସ୍ୟ ଭାବରେ ଗ୍ରହଣ କରିନେବା ସ୍ୱାଭାବିକ। ବହୁ ଧର୍ମର ଆରାଧ୍ୟ ଦେବତା ରୂପେ ଗୃହୀତ ହୋଇଥିଲେ ହେଁ ଜଗନ୍ନାଥଙ୍କର ଦୈନନ୍ଦିନ ପୂଜାନୀତି ଓ ବେଶ ଇତ୍ୟାଦିକୁ ଦେଖିଲେ ସେ ଯେ ବହୁ ଭାବରେ ଶ୍ରୀକୃଷ୍ଣଙ୍କର ପ୍ରତିନିଧିତ୍ୱ କରୁଛନ୍ତି, ଏହା ସହଜରେ ଜଣାପଡ଼େ। ହୁଏତ ପ୍ରେମଭକ୍ତି ପ୍ରଚାରିତ ହେବା ପରେ ଜଗନ୍ନାଥଙ୍କଠାରେ କୃଷ୍ଣଙ୍କର ଅଭେଦତ୍ୱ କଳ୍ପନା କରି ଶ୍ରୀଜଗନ୍ନାଥଙ୍କ ଦୈନିକ ନୀତି ଓ ପୂଜାପାର୍ବଣ ତଥା ବେଶ ଇତ୍ୟାଦି ଆରୋପିତ ହୋଇଅଛି। ଜଗନ୍ନାଥଙ୍କ ରତ୍ନ ସିଂହାସନ ନିତ୍ୟ ଗୋଲକ ରୂପେ ପରିଗୃହୀତ ହେବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ଚାରିଦ୍ୱାରକୁ ବୈଷ୍ଣବଧର୍ମ ସଂପ୍ରଦାୟର ନିମ୍ବାର୍କ, ମାଧ୍ୱ, ବିଷ୍ଣୁସ୍ୱାମୀ ଓ ରାମାନନ୍ଦ ସଂପ୍ରଦାୟର ପ୍ରତୀକ ଭାବରେ ବର୍ଣ୍ଣନା କରାଯାଇଛି । ଶ୍ରୀଜଗନ୍ନାଥଙ୍କ ପୂଜାରେ ଦ୍ୱାଦଶାକ୍ଷର ମନ୍ତ୍ରରାଜ ଓଁ ନମୋ ଭଗବତେ ବାସୁଦେବାୟ ଉଚ୍ଚାରିତ ହେବା ସଙ୍ଗେ ସଙ୍ଗେ ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନଃ ବଲ୍ଲଭାୟ ସ୍ୱାହା କୃଷ୍ଣ ମନ୍ତ୍ରରେ ପୂଜା କରାଯାଇଥାଏ । ଶ୍ରୀମନ୍ଦିରର ଅନବସର ପିଣ୍ଡିର ଉଭୟ ପାର୍ଶ୍ୱରେ ଶ୍ରୀରାଧା ଓ ଚନ୍ଦ୍ରାବଳୀଙ୍କ ମୂର୍ତ୍ତି ବିରାଜମାନ ଏବଂ ଶ୍ରୀମନ୍ଦିରର ଜଗମୋହନରେ କୃଷ୍ଣଲୀଳା ସଂପର୍କୀୟ କାରୁକାର୍ଯ୍ୟ ତଥା ଚିତ୍ର ଦେଖିବାକୁ ମିଳିଥାଏ । ଜୟବିଜୟ ଦ୍ୱାର ନିକଟରେ ରାଧାକୃଷ୍ଣଙ୍କର ପ୍ରେମ ସଂପର୍କିତ ଉକ୍ତି – ପ୍ରତ୍ୟୁକ୍ତି ତଥା ଛେକୋକ୍ତି ଶ୍ରୀ ରାଧାମାଧବ ରସସୁଧା ଲିପିପବ୍ଧ କରାଯାଇଛି । ଶ୍ରୀଜଗନ୍ନାଥଙ୍କ ଉତ୍ସବମାନଙ୍କ ମଧ୍ୟରେ ମଦନମୋହନଙ୍କ ଧାତବ ବିଗ୍ରହ ପ୍ରତିନିଧିତ୍ୱ କରିଥାନ୍ତି । କୃଷ୍ଣ ଭକ୍ତିରେ ପରମ ପୁରୁଷ କୃଷ୍ଣଙ୍କୁ ପାଇବାକୁ ହେଲେ ନାରୀଭାବ ଭକ୍ତକୁ ଗ୍ରହଣ କରିବାକୁ ପଡ଼ିଥାଏ । ଏକମାତ୍ର ପୁରୁଷ ଶ୍ରୀକୃଷ୍ଣ ଓ ଅନ୍ୟ ସମସ୍ତେ ନାରୀ । ଏହି ଚିନ୍ତାଧାରାର ନିଦର୍ଶନ ଜଗନ୍ନାଥଙ୍କ ସେବା ପୂଜାରେ ପରିଲକ୍ଷିତ। ଗୋପୀ ଭାବରେ ନାରୀ ଭଳି ବସ୍ତ୍ର ପରିଧାନ ଏବଂ ଗୋପୀ ତିଳକରେ ନାସାଗ୍ରରୁ ଊର୍ଦ୍ଧ୍ୱ ପୁଣ୍ଡରିକ ଚିତା ଗ୍ରହଣ ପୂର୍ବକ ପୂଜା ଅର୍ଚ୍ଚନା କରାଯାଇଥାଏ । ଶ୍ରୀମନ୍ଦିରରେ ଅନୁଷ୍ଠିତ ଗୁଣ୍ଡିଚା ଯାତ୍ରା ଜଗନ୍ନାଥଙ୍କର ବ୍ରଜପୁରକୁ ଗମନ ଯାତ୍ରା ଭାବରେ ଚିତ୍ରିତ। ଶ୍ରାବଣରେ ଝୁଲଣ ଯାତ୍ରା, ଭାଦ୍ରବରେ ଜନ୍ମାଷ୍ଟମୀ ପାଳନ ଓ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା କାଳୀନ ବେଶ, କାର୍ତ୍ତିକ ମାସରେ ରାଧାଦାମୋଦର ବେଶ, ମାର୍ଗଶିରରେ ପ୍ରଥମାଷ୍ଟମୀ, ପୌଷ ମାସରେ ପହିଲି ଭୋଗ ନୀତି, ମାଘ ମାସରେ ଗଜ ଉଦ୍ଧାରଣ ବେଶ, ଫାଲ୍‌ଗୁନରେ ବାସନ୍ତିକ ଦୋଳଉତ୍ସବ, ରୁକ୍ମିଣୀ ହରଣ, ବୈଶାଖରେ ଚନ୍ଦନ ଉତ୍ସବ ଇତ୍ୟାଦିରେ କୃଷ୍ଣ ଚେତନା ଜଗନ୍ନାଥଙ୍କଠାରେ ପରିଦୃଷ୍ଟ ।

ପଞ୍ଚସଖା କବି ବଳରାମ ଦାସ ତାଙ୍କ ବେଦାନ୍ତ ସାର ଗୁପ୍ତ ଗୀତାରେ ନୀଳଗିରିକୁ ନିତ୍ୟରାସ ସ୍ଥଳୀରୂପେ ଚିତ୍ରଣ କରିଛନ୍ତି ।

ଜଗନ୍ନାଥଙ୍କୁ ନିର୍ଗୁଣ ନିରାକାର ରୂପରେ ଉତ୍କଳୀୟ ବୈଷ୍ଣବମାନେ ଗ୍ରହଣ କରିବା ସହିତ ଶ୍ରୀକୃଷ୍ଣଙ୍କୁ ମଧ୍ୟ ସଗୁଣ, ନିର୍ଗୁଣ, ସାକାର, ନିରାକାର ରୂପରେ ଉପାସନା କରିଛନ୍ତି । ସାଧକର ସାଧନା ସାକାର ହୋଇପାରେ କିନ୍ତୁ ସାଧ୍ୟ ବସ୍ତୁ ନିରାକାର, ନିର୍ଗୁଣ ହେବା ହିଁ ଜଗନ୍ନାଥ ଚେତନାର ବୀଜମନ୍ତ୍ର। ଶ୍ରୀଜଗନ୍ନାଥଙ୍କୁ ପାଇବା ପାଇଁ ଜ୍ଞାନ ଓ ଭକ୍ତି ଉଭୟ ମିଶ୍ରଣ ଯେ ଆବଶ୍ୟକ, ଏହା ବୈଷ୍ଣବୀୟ ଚିନ୍ତାଧାରାରେ ସ୍ୱୀକୃତ । ଅବତାର ପୁରୁଷ ଶରୀରଧାରୀ ତଥା ବିଗ୍ରହବନ୍ତ ଅଟନ୍ତି। ତେଣୁ ସେମାନେ



ସସୀମ, ଶାନ୍ତ, ଉପାଧିଯୁକ୍ତ ଓ ଅଚିର ହୁଅନ୍ତି । ସେମାନେ ଯେତେ ଊର୍ଦ୍ଧ୍ୱ ଚେତନାରେ ରହିଲେ ଏବଂ ସେମାନଙ୍କ ଶରୀର ଯେତେ ଚିନ୍ମୟ ହେଲେ ମଧ୍ୟ ଆବିର୍ଭାବ ଓ ତିରୋଭାବ ସେମାନଙ୍କ ଜୀବନରେ ଦେଖା ଦେଇଥାଏ । ଜଗନ୍ନାଥ ଏସବୁର ଊର୍ଦ୍ଧ୍ୱରେ । ସେ ନିରାକାର, ନିର୍ବିକଳ୍ପ, ନିତ୍ୟ ଓ ସନାତନ। ବିଭିନ୍ନ ଲୀଳା ପାଇଁ ରାମକୃଷ୍ଣାଦି ଅବତାର ରୂପରେ ସେ ଆବିର୍ଭୂତ ହୁଅନ୍ତି । ଜଗନ୍ନାଥଙ୍କଠାରୁ ସମସ୍ତ ସଗୁଣବାଦର ସୃଷ୍ଟି । ସେ ନିଜେ ପରମତତ୍ତ୍ୱ ସ୍ୱରୂପ।

ପୁରୁଷୋତ୍ତମ ତତ୍ତ୍ୱ ବ୍ରହ୍ମ ଭଗବତ୍ ଓ ଆତ୍ମତତ୍ତ୍ୱର ତ୍ରିଗୁଣାତ୍ମକ ସମାବେଶ। ସୁତରାଂ ଗୀତାରେ କଥିତ ଭଗବାନ କୃଷ୍ଣଙ୍କର ମୁଖ ନିସୃତ ଉକ୍ତି ସହିତ ଶ୍ରୀଜଗନ୍ନାଥଙ୍କ ସାମ୍ୟତା କୃଷ୍ଣ ଓ ଜଗନ୍ନାଥ ଅଭିନ୍ନତ୍ୱ ପ୍ରମାଣ କରିଥାଏ । ଏଥି ସହିତ ଜଗନ୍ନାଥଙ୍କ ରୂପ ବିଗ୍ରହରେ ଦୁଇଟି ପରସ୍ପର ବିରୋଧୀ କୃଷ୍ଣ ଓ ଗୌରବର୍ଣ୍ଣର ସମ୍ମିଶ୍ରଣ ହୋଇଥିବାରୁ ସେ ଯେ କୃଷ୍ଣ ଏବଂ ରାଧାଙ୍କର ମିଳନାତ୍ମକ ବିଗ୍ରହ, ଏହା କୁହାଯାଇପାରେ । ଏଣୁ ବୈଷ୍ଣବମାନଙ୍କର ଗତିମୁକ୍ତିର କ୍ଷେତ୍ର ରୂପରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପରିଗଣିତ । ଶ୍ରୀଜଗନ୍ନାଥ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ବିବର୍ତ୍ତିତ ପ୍ରତିଭୂ ।

ପି.ଏମ୍. ବି- ୬୪, ହାଉସିଂବୋର୍ଡ଼ କଲୋନୀ
ବଳିଆପଣ୍ଡା, ପୁରୀ-୭୫୨୦୦୧

# ଜଗାରେ ...

ସ୍ୱର୍ଣ୍ଣଲତା ତ୍ରିପାଠୀ

ଜଗାରେ !
ତୋତେ ଝୁରିବି ନା କାହାକୁ,
କାଳିଆ ସାଆନ୍ତ ଝୁରନ୍ତି ଭକତ
ବାସଛୁଟେ ଚଉଦିଗକୁ ।

ଭାଇ ଓ ଭଗିନୀ ନିଜ ସଙ୍ଗେ ଘେନି
ବିଜେ ରତ୍ନସିଂହାସନକୁ
ଦେବ ଅଧିରାଜ ମହାପ୍ରଭୁ ତୁମେ
ପ୍ରସାରିଛ ମହାବାହୁକୁ

ନମୋ ଚକ୍ରପାଣି କମନୀୟ ଠାଣି
କଳା କଳେବର କାଳକୁ,
ନନ୍ଦ ନନ୍ଦନ ପଦେ କରି ଧ୍ୟାନ
କେବଳ ପତିତ ଜନକୁ ।





ତିନିପୁର ସାର କରୁଣା ସାଗର
ସକଳ ତୀର୍ଥ ତୋ' ପୁରକୁ,
ଦ୍ୱାରିକା, ବଦ୍ରିକା କି କାରଣେ ଯିବା
ଲୀଳା ନାନା ଅବତାରକୁ ।

ହେ ଭବ ସାଗର ଭବୁ କର ପାର
ଜପୁଥିଲେ ନାମ ଗାନକୁ
ତନୁ, ମନ, ଧନ କରି ନିବେଦନ
ପ୍ରସନ୍ନତା କାଳକାଳକୁ,
ତୋତେ ଝୁରିବି ନା କାହାକୁ ।

ପ୍ରଧାନ ଶିକ୍ଷୟିତ୍ରୀ
ବାଲିଦୋକାନ ନୋଡାଲ୍ ଉ.ପ୍ରା. ବିଦ୍ୟାଳୟ
କୋଣାର୍କ, ଜିଲ୍ଲା-ପୁରୀ



# ଶ୍ରୀକ୍ଷେତ୍ରରେ ଶାକ୍ତ ଉପାସନାର ଐତିହ୍ୟ

ଡକ୍ଟର ହରିଶ୍ଚନ୍ଦ୍ର ବେହେରା

ପ୍ରାୟ ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶାରେ ତନ୍ତ୍ରର ପ୍ରାଧାନ୍ୟ ବିଶେଷଭାବେ ପରିଲକ୍ଷିତ ହୋଇଥିଲା । ବିଭିନ୍ନ ସଂସ୍କୃତ ଶକ୍ତି ପୁରାଣଗୁଡ଼ିକରେ ଶ୍ରୀଜଗନ୍ନାଥ ମଧ୍ୟ ତାନ୍ତ୍ରିକ ଦେବତାଭାବରେ ବର୍ଣ୍ଣିତ ହେବାକୁ ଲାଗିଲେ । ଶ୍ରୀମନ୍ଦିର ମଧ୍ୟରେ ବିମଳା, ଲକ୍ଷ୍ମୀ, କୁତାମଚଣ୍ଡି, ଅପରାଜିତା, ଜୟା, ବିଜୟା ପ୍ରଭୃତି ଶକ୍ତିଙ୍କର ପୂଜାମାନ ତାନ୍ତ୍ରିକ ପଦ୍ଧତିରେ ହେବାକୁ ଲାଗିଲା । ଶ୍ରୀଜଗନ୍ନାଥଙ୍କଠାରେ ପଞ୍ଚମକାର ପୂଜାର ପ୍ରଚଳନ ହେଲା ଏବଂ ଏହି ଉପାସନା ପଦ୍ଧତିରେ ଶ୍ରୀଜଗନ୍ନାଥଙ୍କୁ ଜଣେ ତାନ୍ତ୍ରିକ ଦେବତା ଭାବରେ ମଧ୍ୟ ପ୍ରତିଷ୍ଠା ଦିଆଗଲା । ପଞ୍ଚଦଶ ଶତାବ୍ଦୀବେଳକୁ ସର୍ବଭାରତୀୟ ସ୍ତରରେ ବୈଷ୍ଣବ ଓ ଶାକ୍ତଧର୍ମର ଏକପ୍ରକାର ସମନ୍ୱୟ ହୋଇ ତାନ୍ତ୍ରିକ ବୈଷ୍ଣବ ଧର୍ମର ସୂତ୍ରପାତ ହୋଇଥିଲା । ତନ୍ତ୍ରରେ ଯନ୍ତ୍ରର ପରିକଳ୍ପନା ହେବା ସଙ୍ଗେ ସଙ୍ଗେ ଏହି ଯନ୍ତ୍ରରେ ପ୍ରକୃତି ଓ ପୁରୁଷର ମିଳନ ମଧ୍ୟ ସଂଗଠିତ ହେଲା । ଶ୍ରୀଜଗନ୍ନାଥ ମଧ୍ୟ ତନ୍ତ୍ରପ୍ରଚାରରେ ଉପାସିତ ହେଲେ । ଶ୍ରୀଜଗନ୍ନାଥଙ୍କୁ ସ୍ୱୟଂ ଦକ୍ଷିଣ କାଳିକା (ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକାଃ) ଭାବରେ ଚିନ୍ତାକରି ଶାକ୍ତମାନେ ବିଭିନ୍ନ ଯନ୍ତ୍ରର ପରିକଳ୍ପନା କଲେ । ଓଡ଼ିଶାକୁ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ଆଗମନ ପରେ ଏହି ତାନ୍ତ୍ରିକ ମତବାଦ ଅଧିକରୁ ଅଧିକ ପରିବ୍ୟାପ୍ତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କ ପୂଜାପଦ୍ଧତିରେ ନୃସିଂହମନ୍ତ୍ର ସନ୍ନିବେଶିତ ହୋଇ ତାଙ୍କୁ ତନ୍ତ୍ରଦେବତା ଭାବରେ ରୂପାୟିତ କରାଗଲା । ଶ୍ରୀମନ୍ଦିରରେ ହେଉଥିବା ତାନ୍ତ୍ରିକ ପଞ୍ଚମକାର ପୂଜାରେ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରର ଆରାଧ୍ୟ ଦେବତାଭାବେ ଉପାସନା କରାଯାଇଥାଏ ।

ପଞ୍ଚସଖା ଯୁଗର ଅନ୍ୟତମ ସାଧକ ଅଚ୍ୟୁତାନନ୍ଦ ଦାସ ସଂସ୍କୃତ ଶୂନ୍ୟ ସଂହିତାରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ରତ୍ନବେଦୀକୁ ପଞ୍ଚବୀଜ ପଞ୍ଚତତ୍ତ୍ୱରେ ପରିକଳ୍ପନା କରିଛନ୍ତି–

ହ୍ରୀଂ ବୀଜ ବଳଭଦ୍ରଶ୍ଚ ଶ୍ରୀଂ ସୁଭଦ୍ରିକାସ୍ତଥା
କ୍ଲୀଂ ଶୈବ ଜଗନ୍ନାଥମ୍ ଧ୍ରୀଂ ସୁଦର୍ଶନମ୍ ଭବେତ୍
ଶ୍ରୀଂ ସିଂହାସନମ୍ ବ୍ରହ୍ମଂ ପଞ୍ଚବୀଜମ୍ ଇଦଂ ଭବେତ୍ ।

ଏହି ପଞ୍ଚବୀଜ ପଞ୍ଚତତ୍ତ୍ୱକୁ ଯନ୍ତ୍ରମଧ୍ୟରେ ସ୍ଥାପନ କରି ଆରାଧନା କଲେ ପରମାର୍ଥ ଲାଭହୁଏ । ଅନ୍ୟ ପଞ୍ଚସଖାମାନେ ମଧ୍ୟ ନୀଳାଚଳକୁ ଯନ୍ତ୍ର ମଣ୍ଡଳଭାବେ ପରିକଳ୍ପନା ପୂର୍ବକ ଶ୍ରୀଜଗନ୍ନାଥଙ୍କୁ ଉଭୟ ଭୈରବ ଏବଂ ଶାକ୍ତଭାବେ ଉଲ୍ଲେଖ କରିଛନ୍ତି । ତନ୍ତ୍ରରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀଭାବେ ମଧ୍ୟ କଳ୍ପନା କରାଯାଇଛି ।

ଉତ୍କଳ ନାଭିଦେଶଶ୍ଚ ବିରଜାକ୍ଷେତ୍ର ମୁଚ୍ୟତେ
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।

ସ୍କନ୍ଦପୁରାଣ ଉତ୍କଳ ଖଣ୍ଡରେ ସୁଭଦ୍ରାଙ୍କୁ ଭଦ୍ରକାଳୀ ଭାବରେ ମଧ୍ୟ ବର୍ଣ୍ଣନା କରାଯାଇଛି–

ଜୟ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷାଂ ଉଦ୍ରଦାୟିନୀ
ଭଦ୍ରୀ ଭଦ୍ର ସ୍ୱରୂପାଂ ତ୍ୱ ଭଦ୍ରକାଳୀ ନମୋସ୍ତୁତେ ।

ନୀଳାଚଳ ଧାମ ବୈଷ୍ଣବ କ୍ଷେତ୍ର ହେବାପୂର୍ବରୁ ଶୈବକ୍ଷେତ୍ର ଭାବରେ ବିଶେଷ ପ୍ରସିଦ୍ଧି ଥିଲା । ଶୈବମାନେ ବଳଭଦ୍ରଙ୍କୁ ଶିବ ଏବଂ ଶାକ୍ତମାନେ ସୁଭଦ୍ରାକୁ ଭଦ୍ରକାଳୀ ରୂପରେ ଦେଖନ୍ତି । ଶିଖର ଦାସ ତାଙ୍କ 'ନୀଳସୁନ୍ଦର ଗୀତା'ରେ ଉଲ୍ଲେଖ କରିଛନ୍ତି ଯେ ଶ୍ରୀକୃଷ୍ଣଙ୍କର ଗୋପଲୀଳା କାଳରେ ଦିନେ ବ୍ରହ୍ମା



ତାଙ୍କର ଗୋବତ୍ସ ହରଣ କରିନେବାରୁ ଶ୍ରୀକୃଷ୍ଣ ବ୍ରହ୍ମାଙ୍କୁ ଅପୂଜା ରହିବାର ଅଭିଶାପ ଦେଲେ । ପରେ ବ୍ରହ୍ମାଙ୍କର ସ୍ତୁତିରେ ପ୍ରୀତ ହୋଇ ତାଙ୍କୁ ବରଦେଲେ ଯେ ନୀଳାଚଳରେ ସେ ତାଙ୍କର ଭଗିନୀ ରୂପରେ ପୂଜା ପାଇବେ–

ବୋଇଲେ କଳିରେ ଦାରୁବ୍ରହ୍ମ ହେବି ମୁହିଁ
ଏ ମୋର ଶାପ୍ୟତ ମେଣ୍ଟି ଯିବ ନାହିଁ ।
ଗୁପତେ ପୂଜା ପାଇବୁ ଭାଇଙ୍କ ସଂଗତେ
ନ ଚିହ୍ନିବେ ବୋଲି ବୋଲିବେ ସୁଭଦ୍ରେ ।
ଶୁଣ ଫାଲ୍‌ଗୁନୀ ମୋ ଶାପ୍ୟର ମହିମା
ସୁଭଦ୍ରାରୂପେ ପୂଜା ପାଇବେଟି ବ୍ରହ୍ମା ।

('ନୀଳସୁନ୍ଦର' ଗୀତା ୬ଷ୍ଠ ଅଧ୍ୟାୟ)

ସାରଳା ଦାସ ମଧ୍ୟ ତାଙ୍କ ମହାଭାରତରେ ବ୍ରହ୍ମାଙ୍କ ଅଭିଶାପ ପାଇ ସୁଭଦ୍ରାରୂପ ଧାରଣ କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

ସ୍କନ୍ଦ ପୁରାଣରେ ମଧ୍ୟ ସୁଭଦ୍ରାଙ୍କୁ ଶ୍ରୀଜଗନ୍ନାଥଙ୍କର ଶକ୍ତି ସ୍ୱରୂପିଣୀ ଭାବେ ଉଲ୍ଲେଖ କରାଯାଇଛି । ସୁଭଦ୍ରା ଭୁବନେଶ୍ୱରୀ ଯନ୍ତ୍ରରେ ଅବସ୍ଥାନ କରନ୍ତି ଓ ଭୁବନେଶ୍ୱରୀ ମନ୍ତ୍ରରେ ଉପାସିତ ହୁଅନ୍ତି । ଭୁବନେଶ୍ୱରୀ ଯନ୍ତ୍ରରେ ମା' ସୁଭଦ୍ରାଙ୍କୁ ଅଷ୍ଟଦଳ ପଦ୍ମରେ ସ୍ଥାପନ କରାଯାଇଛି । ପଦ୍ମର ପ୍ରତି ପାଖୁଡ଼ାରେ ଜଣେ ଜଣେ ପୀଠଶକ୍ତି ବିରାଜମାନ । ସେମାନେ ହେଲେ ଅନଙ୍ଗ କୁସୁମା, ଅନଙ୍ଗ କୁସୁମ ମାତୁରା, ଅନଙ୍ଗ ମଦନା, ଅନଙ୍ଗ ମଦାନାତୁରା, ଅନଙ୍ଗବେଦଗା, ଅନଙ୍ଗ ମେଖଳା, ଅନଙ୍ଗଭୁଜା ପ୍ରଭୃତି ।

ଗୌତମୀୟ ତନ୍ତ୍ରରେ ଲକ୍ଷ୍ମୀଙ୍କୁ ପୁରୁଷୋତ୍ତମଙ୍କ ଅଙ୍କାଶ୍ରିତା ବୋଲି ମଧ୍ୟ ପରିକଳ୍ପନା କରାଯାଇଛି । କୃଷ୍ଣାନନ୍ଦ ଭଟ୍ଟାଚାର୍ଯ୍ୟଙ୍କ ତନ୍ତ୍ରସାର ଗ୍ରନ୍ଥରେ ହ୍ଲୀଂ କ୍ଲୀଂ ଶ୍ଲୀଂ ଭାବରେ ବଳଭଦ୍ର, ଶ୍ରୀଜଗନ୍ନାଥ ଓ ସୁଭଦ୍ରାଙ୍କୁ ପରିକଳ୍ପନା କରାଯାଇଛି ।

ଶ୍ରୀଜଗନ୍ନାଥଙ୍କ ପୂଜାବିଧିରେ ଅଷ୍ଟାଦଶାକ୍ଷର ମନ୍ତ୍ରର ପ୍ରୟୋଗ 'ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନାମଃ' – ଏଥିରେ ବୈଦିକ ଓଁ ସହ ତାନ୍ତ୍ରିକ କ୍ଲୀଂ ବୀଜକୁ ନେଇ ଶ୍ରୀଜଗନ୍ନାଥଙ୍କୁ ଗୋରକ୍ଷକ ଗୋବିନ୍ଦ ଓ ଗୋପୀଜନପ୍ରିୟ ଶ୍ରୀକୃଷ୍ଣ ଭାବରେ ଅର୍ଚ୍ଚନା କରାଯାଏ । ଶ୍ରୀଜଗନ୍ନାଥ ଯେତିକି ବୈଦିକ ସେତିକି ତାନ୍ତ୍ରିକ ।

ଆଜି ମଧ୍ୟ ଶ୍ରୀଜୀଉମାନଙ୍କଠାରେ ଉତ୍ସର୍ଗୀକୃତ ନୈବେଦ୍ୟ ମା' ବିମଳାଙ୍କଠାରେ ପୁନଃ ସମର୍ପିତ ହେବାପରେ ତାହା ନିର୍ମାଲ୍ୟ ବା ମହାପ୍ରସାଦରେ ପରିଣତ ହୁଏ । ବିମଳା ପ୍ରଥମେ ଥିଲେ ପରମ ବୈଷ୍ଣବୀ । ବୈଷ୍ଣବ ମାତୃଭୁଜା ରୀତିରେ ତାଙ୍କର ଉପାସନା ହେଉଥିଲା । ବୈଷ୍ଣବ ଧର୍ମ ସହ ତାନ୍ତ୍ରିକ ମତବାଦର ସମନ୍ୱୟ ସାଧିତ ହେଲା । ଶ୍ରୀକ୍ଷେତ୍ରରେ କ୍ରମେ ବିମଳାରୂପୀ ଦୁର୍ଗାଙ୍କସହ ଶ୍ରୀଜଗନ୍ନାଥ ରୂପୀ ମାଧବଙ୍କର ସମନ୍ୱୟ କରାଯାଇ ଦୁର୍ଗାମାଧବ ପୂଜାର ପ୍ରଚଳନ କରାଗଲା ।

ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଆଶ୍ୱିନ ଶୁକ୍ଳ ମହାଷ୍ଟମୀ ପର୍ଯ୍ୟନ୍ତ ମା'ଙ୍କର ବୋଧନ, ଆମନ୍ତ୍ରଣ, ଅଧିବାସ, ମହାସ୍ନାନ, ହୋମାନୁଷ୍ଠାନ ପ୍ରଭୃତି ମହା ପୂଜାବିଧି ପ୍ରଚଳିତ ଥିଲେ ହେଁ ମହାସପ୍ତମୀ ଦିନ ପୂଜନ, ପୁରୋହିତ, ପରିଛା ଆଦି ୧୦ଜଣ ସେବକ ସଂକଳ୍ପ କରିବାପରେ ତାନ୍ତ୍ରିକ ହୋମ ହୋଇ ତ୍ରିଦିନାତ୍ମକ ମହାପୂଜାର ଆୟୋଜନ କରାଯାଏ । ଏଇ ସମୟରେ ମା' ବିମଳା ରାଜନଅରରୁ ଆସିଥିବା କାଣ୍ଡହେଙ୍ଗୁଳ ଶାଢ଼ୀ ପରିଧାନ କରନ୍ତି । ପଶ୍ଚିମ–ଉତ୍ତରପଟ ମେଘନାଦ ପାଚେରିକୁ ଲାଗି ଏକ ଅସ୍ଥାୟୀ ନଡ଼ିଆଚାଞ୍ଚର ବାଡ଼ ବଳୟ ଭିତରେ ବିମଳାଙ୍କ କୂଅ ପାଖରେ ଏକ ଅସ୍ଥାୟୀ ରୋଷର ବ୍ୟବସ୍ଥା କରାଯାଏ । ବିମଳା ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ପରମଶକ୍ତି ଭୈରବୀ ଏବଂ ଶ୍ରୀଜଗନ୍ନାଥ ହେଉଛନ୍ତି ସ୍ୱୟଂ ଭୈରବ ।

ଶ୍ରୀଜୀଉମାନେ ଅଣସର ଘରେ ଥିବା ସମୟରେ ମା' ଦୁର୍ଗାଙ୍କର ପାର୍ଶ୍ୱଚରୀ ଦେବୀମାନଙ୍କର ଶ୍ରୀକ୍ଷେତ୍ରରେ ଅଦୃଶ୍ୟ ସମାବେଶ ହୋଇଥାଏ । ସେମାନଙ୍କ ମଧ୍ୟରୁ କ୍ରୋଧସମ୍ଭୂତା ଦେବୀମାନେ ରଥଯାତ୍ରାପରେ ଅଧରପଣା ଖାଇ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରୁଥିବାବେଳେ ଦେବୀଙ୍କର ଅଟ୍ଟହାସରୁ ଉଦ୍‌ଭବ



ଅନୁଚରୀଗଣ ଅଶରୀରୀ ଭାବେ ଅପେକ୍ଷା କରିଥାନ୍ତି । ଏହି ଅଶରୀରୀ ଯୋଗିନୀ ବା ଏମାନଙ୍କ ପ୍ରତୀକ ବିଗ୍ରହ ଗୋସାଣୀମାନଙ୍କୁ ପୂଜା କରିବାପରେ ଦଶହରା ଶେଷରେ ବିଦାୟ ଦିଆଯାଇଥାଏ । ଏହି ଗୋସାଣୀମାନେ ହେଉଛନ୍ତି ରକ୍ତମୁଖା ଦେବୀଙ୍କର ପାର୍ଶ୍ୱଚରୀ ପିଶାଚୀ ଡ଼ାହାଣୀ । ଗୋସାଣୀମାନଙ୍କ ନାଁ କାକୁଡ଼ି ଖାଇ, ଜହ୍ନିଖାଇ, କଖାରୁ ଖାଇ, ବେଲଖାଇ ପ୍ରଭୃତି । ଦଶହରା ଦିନ କେବଳ କାକୁଡ଼ିଖାଇ ଗୋସାଣୀଙ୍କୁ ମଧ୍ୟରାତ୍ରରେ ବିସର୍ଜନ ଦିଆଯାଇଥାଏ । ଦଶହରା ଦିନ ଶ୍ରୀମନ୍ଦିରରୁ ଚନ୍ଦନ ଓ ବଳଦେବଙ୍କଠାରୁ ବାରହାତି ଶାଢ଼ୀ ଆସି ଲାଗିହୋଇ ପଣା ସମର୍ପଣ ପରେ କାକୁଡ଼ି ଖାଇ ପଦାକୁ ବାହାରନ୍ତି। ତାଙ୍କୁ ବାରବାଟି ଗୋସାଣୀଙ୍କ ପର୍ଯ୍ୟନ୍ତ ନେଇ ସେଠାରୁ ବିସର୍ଜନ ଉଦ୍ଦେଶ୍ୟରେ ଜଳଘାଟକୁ ନିଆଯାଇଥାଏ । କାକୁଡ଼ି ଖାଇଙ୍କର ବିସର୍ଜନ ପ୍ରକ୍ରିୟା ମଧ୍ୟ ଭିନ୍ନ। ତାଙ୍କୁ ପ୍ରଥମେ ବିମାନରେ ବସେଇ ସେବକ ଓ ଦର୍ଶକମାନେ ଶୋଭାଯାତ୍ରାରେ ଯାଇ ରାଜନବର ସମ୍ମୁଖରେ ଶାଢୀ ପ୍ରସାଦ ଲାଗି ହୋଇ ବନ୍ଦାପନା ସରିବା ପରେ ପଶ୍ଚାତ୍‌ମୁଖୀ କରି ଜଳଘାଟ ଯାଏଁ ନିଆଯାଇଥାଏ । କଥିତ ଅଛି ଏଇ ସମୟରେ କାକୁଡ଼ି ଖାଇଙ୍କ ଦୃଷ୍ଟି ସାମ୍ନାରେ ପଡ଼ିଲେ ସେଇ ଲୋକର ଆସନ୍ନ ମୃତ୍ୟୁ ହୁଏ, ତେଣୁ ଶ୍ରୀନଅର ଅତିକ୍ରମ ପରେ କାକୁଡ଼ିଖାଇ ଗୋସାଣୀଙ୍କ ମୁହଁ ସାମ୍ନାରେ କଳାଶାଢୀ ଢ଼ାଙ୍କି ଦିଆଯାଏ । ତା'ପରେ ନରେନ୍ଦ୍ର ପୁଷ୍କରିଣୀ ସଂଲଗ୍ନ ମୂଷାନଈରେ ତାଙ୍କର ଭସାଣି ହୁଏ । ଭସାଣି ପୂର୍ବରୁ ୧୦୮ ବେଲପତ୍ର ଅଗ୍ନିରେ ଆହୂତି ଦିଆଯାଏ । କାକୁଡ଼ି ଖାଇଙ୍କ ବିସର୍ଜନପରେ ପୁରୀର ଅନ୍ୟାନ୍ୟ ଦୁର୍ଗାମେଢ଼ଙ୍କୁ ବିସର୍ଜନ ଦିଆଯାଏ ।

ଦଶହରା ପରଦିନ ଅର୍ଥାତ୍ ଶୁକ୍ଳ ଏକାଦଶୀ ଅପରାହ୍ନରେ ଅନ୍ୟାନ୍ୟ ଗୋସାଣୀମାନଙ୍କର ବିସର୍ଜନ ପାଇଁ ସେମାନଙ୍କ ଆସ୍ଥାନରୁ ଧୂପ, ଦୀପ, ଦିହୁଡ଼ି, ଛତ୍ରଚାମର, ଚାହୁଆ, ଘଣ୍ଟଘଣ୍ଟା, କାହାଳୀ, ମର୍ଦ୍ଦଳ, ଶଙ୍ଖ,ତୂରୀ, ତେଲିଙ୍ଗି ବାଇଦ ବଜେଇ ପଟୁଆରରେ ସେମାନଙ୍କୁ ଅଣାଯାଇ ସିଂହଦ୍ୱାର ସମ୍ମୁଖସ୍ଥ ଅରୁଣସ୍ତମ୍ଭ ସଂଲଗ୍ନ ପ୍ରଶସ୍ତ ସ୍ଥାନରେ ସମବେତ କରାଯାଏ । ଏହାକୁ ଗୋସାଣୀ ମିଳନ କୁହାଯାଏ । ଏଇଠି ଜହ୍ନିଖାଇ, କଖାରୁଖାଇ, ବେଲଖାଇ, ହାଡ଼ବାଇ, ଗେଲବାଇ, ପ୍ରାଣଦନ୍ତ, ବନଦୁର୍ଗା, ହରଚଣ୍ଡୀ, ମହଢେଶ୍ୱରୀ, ଚକ୍ରକୋଟ ଠାକୁରାଣୀ, ଯମକୋଟ ଠାକୁରାଣୀ ପ୍ରଭୃତି ଏକତ୍ର ହୋଇ ମହାଭୈରବ ଶ୍ରୀଜଗନ୍ନାଥ ଓ ଭୈରବୀ ବିମଳାଙ୍କୁ ଦର୍ଶନ କରନ୍ତି ବୋଲି କୁହାଯାଏ । ସଂଧ୍ୟାରେ ସେବକମାନେ ନିଜ ନିଜର ଗୋସାଣୀଙ୍କୁ ସୋଲ ଜରିର ମକୁଟ ପିନ୍ଧେଇ ନାନା ଭାବରେ ସଜେଇ ସମବେତ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିଥାନ୍ତି । ଦର୍ଶକଙ୍କ ମନୋରଞ୍ଜନ ଲାଗି ଗୋସାଣୀମାନଙ୍କ ସମ୍ମୁଖରେ ବିଭିନ୍ନ ନୃତ୍ୟ, ସଂଗୀତ ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମମାନ ଆୟୋଜିତ ହୁଏ । ଶେଷରେ ବିଭିନ୍ନ ବିଜ୍ଞାପନ ସଂସ୍ଥାମାନଙ୍କ ଦ୍ୱାରା ଶ୍ରେଷ୍ଠ ମୂର୍ତ୍ତି ନିର୍ମାତା, ସାଜସଜ୍ଜା କଳାକାର ତଥା ଶୃଙ୍ଖଳିତ ଅନୁଷ୍ଠାନଙ୍କୁ ପୁରସ୍କୃତ କରାଯାଇଥାଏ । ଶେଷରେ କିଛି ଗୋସାଣୀଙ୍କୁ ମୂଷାନଈରେ ଆଉ କେତେକଙ୍କୁ ମହୋଦଧିରେ ବିସର୍ଜନ ଦିଆଯାଏ ।

ଶ୍ରୀଜଗନ୍ନାଥ ଧାମକୁ ନିଜ ନିଜ ଧାର୍ମିକ ମତବାଦ ତଥା ଦାର୍ଶନିକ ମତବାଦ ପ୍ରଚାରର ଶ୍ରେଷ୍ଠତମ ପୀଠଭାବେ ମନେକରି ବିଭିନ୍ନ ସଂପ୍ରଦାୟର ଆଚାର୍ଯ୍ୟଗଣ ଏହି ଧାମକୁ ଆସି ସେମାନଙ୍କର ମତବାଦକୁ ଶ୍ରୀଜଗନ୍ନାଥଙ୍କ ଉପାସନା ସହ ମିଶେଇବାର ପ୍ରୟାସ କରିଛନ୍ତି । ଏଇ ନ୍ୟାୟରେ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରେ ଶାକ୍ତ ମତବାଦ ମଧ୍ୟ ଶତାବ୍ଦୀ ଶତାବ୍ଦୀ ଧରି କ୍ଷୀରନୀର ପରି ମିଶିଯାଇଛି ।

କଲ୍ୟାଣ ନଗର
ବାଲେଶ୍ୱର–୧



# ଶ୍ରୀଜଗନ୍ନାଥ ଉବାଚ

ଏକାଦଶୀ ଜେନା

କାଳେକାଳେ ଭଗବାନ ହେଉଛନ୍ତି ଭକ୍ତର । ଏ ମାୟା ସଂସାରରୁ ଭକ୍ତଗଣଙ୍କୁ ଉଦ୍ଧାର କରିବା ନିମନ୍ତେ ମହାପ୍ରଭୁଙ୍କ ଲୌକିକ ଲୀଳା ବାସ୍ତବିକ୍ ଚେତନା ଉଦ୍ରେକକାରୀ । ପ୍ରଭୁ ତାଙ୍କର ମହାବାହୁରେ ଭକ୍ତଗଣଙ୍କୁ କୋଳାଗ୍ରତ କରିବା ନିମନ୍ତେ ଅପଲକ ନୟନରେ ଚାହିଁ ରହିଥାନ୍ତି ଓ ଭକ୍ତଙ୍କ ଉଦ୍ଦେଶ୍ୟରେ ସ୍ମିତହାସ୍ୟ ପୂର୍ବକ କହିଥାନ୍ତି ...

ପ୍ରିୟ ଅମୃତର ସନ୍ତାନ !

ତୁମେମାନେ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ମୋର ଦାରୁ ବିଗ୍ରହକୁ ଯେଭଳି ପୂଜା କରୁଛ, ତା'ର ପଟାନ୍ତର ନାହିଁ । ମୋର ଜୀର୍ଣ୍ଣ ଶରୀରକୁ ବଦଳାଇ ନୂତନ ଦାରୁ ବିଗ୍ରହ ନିର୍ମାଣ କରୁଛ । ସେଥିପାଇଁ ମୋ' ଆଜ୍ଞାମାଳ ଲାଭ ସହ ଦାରୁ ଅନ୍ୱେଷଣ, ଯଜ୍ଞ, ଜପ ଆଦି ଅନୁଷ୍ଠାନ ପୂର୍ବକ ଦାରୁ ଛେଦନ କରୁଛ । ପ୍ରତ୍ୟେକ ପର୍ଯ୍ୟାୟରେ ଯେଭଳି ଶ୍ରଦ୍ଧା ଭକ୍ତି ପ୍ରଦର୍ଶନ କରୁଛ ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ । ଯଦିଓ ମୁଁ ଏକ, ଅଦ୍ୱିତୀୟ, ଅଜ, ଅନନ୍ତ, ଅଚିନ୍ତ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ, ସର୍ବାନ୍ତର୍ଯ୍ୟାମୀ, ସର୍ବାଧାର ସଚ୍ଚିଦାନନ୍ଦ ସ୍ୱରୂପ ତଥାପି ତୁମର ଶ୍ରଦ୍ଧା ହେତୁ ସାକାର ବିଗ୍ରହ ଗ୍ରହଣ କରିଛି ଓ ତୁମର ନୀତିରେ ତୁମମାନଙ୍କୁ ଦର୍ଶନ ଦେଉଛି । ବାସ୍ତବରେ ତୁମର ମୋର ମଧ୍ୟରେ କୌଣସ ଫରକ ନାହିଁ । ବ୍ରହ୍ମରୁ କୀଟ ପର୍ଯ୍ୟନ୍ତ ଚରାଚର ବିଶ୍ୱରେ ମୁଁ ପରିବ୍ୟାପ୍ତ । ମୋ' ବ୍ୟତୀତ ଆଉ କିଛି ନାହିଁ । ମୁଁ ହିଁ ବିଶ୍ୱରୂପ । ଅନାଦି, ଅଚ୍ୟୁତ, ଅପରିମେୟ, ସୃଷ୍ଟି ସ୍ଥିତି ଲୟର କାରଣ । ଲୀଳା ପାଇଁ ବିଶ୍ୱର ସୃଷ୍ଟି । ସ୍ୱମାୟାରେ ନିଜେ ସଂସାର ମଧ୍ୟରେ ଅବତାର ନେଇ ସୃଷ୍ଟି ରକ୍ଷା କରେ । ନୂତନ ସୃଷ୍ଟି ପୂର୍ବରୁ ସମସ୍ତଙ୍କୁ ମୋ'ଠାରେ ସଂଗ୍ରହ କରିଦିଏ । ଅର୍ଥାତ୍ ମୋର ସତ୍ତା ସ୍ଫୁର୍ତ୍ତିରେ ପ୍ରକୃତି ଏସବୁ କରୁଥାଏ । ପ୍ରକୃତି ମୋର ହିଁ ଶକ୍ତି । ତୁମେମାନେ ମୋରିଠାରେ ସମର୍ପଣ କରି ପ୍ରକୃତିର ଦାନକୁ ଭୋଗ କରୁଛ । ତୁମେ ମୋତେ ପିତା, ମାତା, ଭ୍ରାତା, ସଖା, ଗୁରୁ ଆଦି ରୂପରେ ଖୋଜୁଛ ଏବଂ ତୁମର ଶ୍ରଦ୍ଧା ଅନୁରୂପ ତୁମକୁ ପ୍ରାପ୍ତ ହୋଇଥାଏ । ଏଥିପାଇଁ ମୁଁ ନିରାକାର, ନିର୍ବିକାର ହେଲେ ମଧ୍ୟ ତୁମ ଶ୍ରଦ୍ଧା ବିଗ୍ରହରେ ଅବତୀର୍ଣ୍ଣ ହୋଇ ତୁମର ଯାଚଜ୍ଞା ପୂରଣ କରିଥାଏ । ଲୀଳା କଳେବର ଧରିଥିଲେ ମଧ୍ୟ ଶାସ୍ତ୍ର ଓ ଗୁରୁବାକ୍ୟ ଦ୍ୱାରା ତୁମେମାନେ ମୋର ସାକାର ବିଗ୍ରହରୁ ମୋର ନିର୍ବିକାର ସଚ୍ଚିଦାନନ୍ଦ ସ୍ୱରୂପକୁ ଜାଣି ମୋର ଉପାସନା କରିଥାଅ । ଯାହା ମୋତେ ପରମ ଆନନ୍ଦ ଦିଏ ଏବଂ ଏହି ଆନନ୍ଦ ସ୍ୱରୂପରେ ସବୁଠାରେ ସବୁ ସମୟରେ ସର୍ବତୋଭାବେ ପ୍ରାପ୍ତ ମୋତେ ଏହି ଭାବରେ ସମସ୍ତଙ୍କଠାରେ ଦେଖିବା ହିଁ ତୁମର କର୍ତ୍ତବ୍ୟ ଓ ଧର୍ମ । ଏହା ହିଁ ଏକମାତ୍ର ପଥ ।

ମୋର କଳେବର ହାତ, ପାଦ, କାନ ନାହିଁ । ତାହା ହିଁ ମୋର ଅସୀମତାକୁ ସୂଚାଉଛି । ହାତର ପାପୁଲି ଥିଲେ ମୁଁ ସୀମିତ ହୋଇଥାନ୍ତି । ମୁଁ ମୋର ଅନନ୍ତ ହସ୍ତରେ ସାରା ସୃଷ୍ଟିକୁ କୋଳେଇ ଧରିଛି । ଅପଲକ ନେତ୍ରରେ ତିନି ଲୋକକୁ ଯୁଗପତ୍ ପ୍ରତ୍ୟକ୍ଷ କରୁଛି । ସବୁଠି ମୋର କାନ ଅଛି, ତା'ମାନେ ଯିଏ ଯେଉଁଠି ଯେତେବେଳେ ଡାକିଲେ ମୁଁ ଶୁଣୁଛି । ସମସ୍ତଙ୍କ ପାଦ ମୋର ହିଁ ପାଦ, ମୁଁ ସହସ୍ର ଶୀର୍ଷ, ସହସ୍ରବାହୁ, ସହସ୍ରପାତ୍ ପୁରୁଷ ପୁଣି ନିଷ୍କଳ । ଭୂତ ବର୍ତ୍ତମାନ ଓ ଭବିଷ୍ୟତକୁ ଯୁଗପତ୍ ଦେଖୁଥିଲେ ବି ମୁଁ କାଳାତୀତ । ପୁଣି ତୁମ ଶରୀର ରୂପକ ରଥରେ ମୁଁ ବାମନ ରୂପରେ ବିରାଜିତ । ମୋରି ସତ୍ତା ସ୍ଫୁର୍ତ୍ତି



ଦ୍ୱାରା ସମସ୍ତ ଅଙ୍ଗପ୍ରତ୍ୟଙ୍ଗ କାର୍ଯ୍ୟକ୍ଷମ ଅଟନ୍ତି । ମାତ୍ର ମୁଁ ସାକ୍ଷୀ ବା ଦ୍ରଷ୍ଟା ରୂପରେ ଥାଏ । ତୁମେମାନେ ମୋର ଅବସ୍ଥିତିକୁ ଅବଜ୍ଞା କରି ଅହଂ ବଶତଃ ନିଜକୁ କର୍ତ୍ତା ଓ ଭୋକ୍ତା ବୋଲି ମାନି ନେଇ କର୍ମଫଳକୁ ପାପ ପୁଣ୍ୟ ଭାବରେ ଭୋଗ କରୁଛ । ତୁମେ ମୋତେ ମାନିଲେ ବା ନ ମାନିଲେ, ଜାଣିଲେ ବା ନ ଜାଣିଲେ ମଧ ମୁଁ ଅନ୍ତର ବାହାରେ ସର୍ବତ୍ର ବିଦ୍ୟମାନ । ମୁଁ କର୍ତ୍ତା, ଧର୍ତ୍ତା ଓ ହର୍ତ୍ତା । ଏହା ହିଁ ସତ୍ୟ ।

ନାମ ରୂପମୟ ଜଗତ୍ ଯାହା ଦେଶ ଓ କାଳର ଅଧୀନ ସେଥିରୁ ମୋର ସ୍ଥିତି ଊର୍ଦ୍ଧ୍ୱରେ । ସବୁର କାରଣ ହେଲେ ମଧ ମୁଁ ଅକାରଣ, ନିର୍ଲିପ୍ତ, ନିର୍ବିକାର, ନିରୀହ, ନିରଞ୍ଜନ, ନିତ୍ୟ, ନିରବଦ୍ୟ, ମୋଠାରେ ସବୁ ଦ୍ୱନ୍ଦ୍ୱର ପର୍ଯ୍ୟବସାନ । ତଥାପି ମୁଁ ନିର୍ଦ୍ୱନ୍ଦ୍ୱ, ନିର୍ବିକଳ୍ପ, ଅବିଚଳିତ ସ୍ଥାଣୁ । ସୃଷ୍ଟି ଲୀଳାର ସାକ୍ଷୀ ମାତ୍ର । ମୋତେ ଏହିଭଳି ଜାଣିଗଲେ ତୁମେ ମଧ ଜନ୍ମମୃତ୍ୟୁ ଚକ୍ରର ଊର୍ଦ୍ଧ୍ୱରେ ନିଜକୁ ଆବିଷ୍କାର କରିବ ଓ ସେତେବେଳେ ତୁମ ଓ ମୋ ଭିତରେ ଥିବା ଅଜ୍ଞାନଜନିତ ସୀମାର ପ୍ରାଚୀର ଆଉ ନଥିବ । ଯେ ମୁଁ– ସେ– ତୁମେ–ଏକ ଅଭିନ୍ନ ସତ୍ତା । ଅସ୍ତି ଭାତି ଆନନ୍ଦ ବା ସତ୍ ଚିତ୍ ଆନନ୍ଦ ଭାବରେ ଅସୀମ, ଅପରିଚ୍ଛିନ୍ନ, ଅନନ୍ତ ରୂପରେ ନିଜକୁ ପାଇବ । ନାମ, ରୂପ, ଉପାଧିର ସକଳ ସୀମିତ, ପରିଚ୍ଛିନ୍ନ ବନ୍ଧନ କେତେବେଳୁ ହଜିଯାଇଥିବ । ବିଶ୍ୱର ଲୀଳାକୁ ବୁଝିଯାଇ ଆନନ୍ଦରେ ଜୀବନ୍ମୁକ୍ତ ହୋଇ ବିଚରଣ କରିବ । ସଂସାର ନିୟମ ତଥା କାଳର ପ୍ରଭାବରେ ତୁମର ପଞ୍ଚଭୂତ ନିର୍ମିତ ଶରୀର ନଶ୍ୱର ହେଲେ ବି ତୁମେ ଆମ ଭାବରେ ଅମର, ସାଂସାରିକ ବାଧା ବନ୍ଧନରୁ ମୁକ୍ତ: ନିତ୍ୟ ଆନନ୍ଦ ସ୍ୱରୂପ । ଏହି ଭାବରେ ନିଜକୁ ଆବିଷ୍କାର କର । ମୁଁ ତୁମକୁ ସବୁଠାରେ ପ୍ରାପ୍ତ ଅଟେ । ତୁମର ହୃଦୟରେ ମୁଁ ଅନବରତ ସ୍ଫୁରିତ ହେଉଛି । ସଂସାର ମଧରେ ପିତା, ମାତା, ଆତ୍ମୀୟ ସ୍ୱଜନ, ବନ୍ଧୁ ପରିଜନ, ଗୁରୁ, ପ୍ରାଜ୍ଞ, ପଞ୍ଚଭୂତ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର ଆଦି ରୂପରେ ଦର୍ଶନ ଦେଉଛି । ତାଙ୍କୁ ମୋରି ଜ୍ଞାନରେ ଦେଖ । ତୁମର ଶ୍ରଦ୍ଧାବିବେଶ ହୋଇ କାମନା ପୂରଣ ପାଇଁ ବିଭିନ୍ନ ଗୁରୁ, ଦେବତା ଆଦି ପୂଜା କରୁଛ । ସେମାନଙ୍କୁ ମିଳୁଥିବା ପୂଜା ଓ ଭକ୍ତିକୁ ଗ୍ରହଣ କରିଥାଏ । ପ୍ରକାରାନ୍ତରେ ସେମାନଙ୍କଠାରୁ ପ୍ରାପ୍ତ ବର ମୁଁ ହିଁ ପ୍ରଦାନ କରେ । ତୁମେ କିନ୍ତୁ ନ ବୁଝିବା କାରଣରୁ ମୋର ଓ ସେମାନଙ୍କ ମଧରେ ଭିନ୍ନତା ଆଣ । ଏଭଳି ନାନାତ୍ୱ ଆଣିଲେ ଭ୍ରମରେ ପଡ଼ିବ । ଭ୍ରମବଶତଃ ନାନା ମତ, ପନ୍ଥ, ଧର୍ମ, ବେଶଭୂଷା, ଭାଷା ଆଦି ବିଭେଦ ସୃଷ୍ଟି ହୋଇଛି । ଜାତି ଓ ବର୍ଣ୍ଣକୁ ନେଇ ବାଦ ରହିଛି । ଯାହା ମଧ ଠିକ୍ ନୁହେଁ । ସେଥିରୁ ନିବୃତ୍ତ ନ ହେଲେ ମୋତେ ପାଇବା କଷ୍ଟ ହେବ । କାରଣ ଈଶ୍ୱର ଏକ ଓ ସମସ୍ତେ ତାଙ୍କର ସନ୍ତାନ । ତେଣୁ ସମସ୍ତେ ସମାନ ଭାବରେ କୃପାର ପାତ୍ର ବରଂ ମୋ ବିଗ୍ରହ ପାଖରେ ଥିବା ଲୋକ ଅପେକ୍ଷା ମୋ ପାଖରେ ପହଞ୍ଚି ପାରୁ ନଥିବା ଲୋକ ପାଇଁ ମୋର ଅଧିକ ଚିନ୍ତାଥାଏ । ମୋତେ ଦର୍ଶନ କରିବା ଓ ସ୍ୱର୍ଶାନନ୍ଦ ଅନୁଭବ କରିବା ପାଇଁ ନିଜ ଭିତରେ ପ୍ରତିଯୋଗିତା କରିଥାଅ, ଠେଲାପେଲା ହୁଅ । ଯାହା ଠିକ୍ ନୁହେଁ, ମୁଁ ତ ତୁମ ହୃଦୟରେ ଅଛି । ସ୍ଥୂଳ ବିଗ୍ରହ ଅପେକ୍ଷା ମୋର ସୂକ୍ଷ୍ମ ରୂପକୁ ଦେଖ, ବେଶି ଆନନ୍ଦ ପାଇବ । ସବୁ ପ୍ରାଣୀଙ୍କୁ ବଞ୍ଚିବାର ସମାନ ଅଧିକାର ଦିଅ । ପିମ୍ପୁଡ଼ିଟିର ମଧ ବଞ୍ଚିବାର ସେତିକି ଅଧିକାର ଅଛି ।

ପ୍ରକୃତିର ଦାନକୁ ସମସ୍ତଙ୍କ ମଧରେ ସେମାନଙ୍କ ପ୍ରାପ୍ୟ ଅନୁଯାୟୀ ବାଣ୍ଟିସାରି ଅବଶିଷ୍ଟାଂଶରେ ସନ୍ତୁଷ୍ଟ ହୁଅ । ଏହିପରି ଯଜ୍ଞ ଶେଷ ଭୋଗ କରି ପୂର୍ଣ୍ଣ ଆୟୁ ଆନନ୍ଦରେ ଉପଭୋଗ କର । ମୋର ନବକଳେବର ପାଇଁ ଗୋଟିଏ ବୃକ୍ଷ ଛେଦନ କଲେ ଆଉ ୧୦ ଗୋଟି ବୃକ୍ଷ ରୋପଣ କର । ତୁମର ମଙ୍ଗଳ ହେବ । ଆଜି ବୁଦ୍ଧି ବଳରେ ସବୁକିଛି ଜୟକରି ଯାଇଛ, କିନ୍ତୁ ଦୁଃଖ ଓ ଅଶାନ୍ତିରୁ ମୁକ୍ତି ପାଉନାହଁ । ଯେଉଁ ପ୍ରକୃତି ତୁମର ଶରୀର ନିର୍ମାଣ କରି ଲାଳନ ପାଳନ କରୁଛି ତୁମେ ତାକୁ ଉଜାଡ଼ି ଦେଉଛ । ତେଣୁ ତୁମେ ପୂର୍ଣ୍ଣ ସୁଖରୁ ବଞ୍ଚିତ ହେଉଛ । ଯେଉଁ ମଣିଷକୁ ସବୁ ସୃଷ୍ଟି ମଧରେ ସାର କରିଛି ତା'ର ଦୈବୀଗୁଣ ତିରୋହିତ ହୋଇ ଆସୁରିକ ପ୍ରବୃତ୍ତି ବୃଦ୍ଧି ପାଉଛି । ଧର୍ମ, ମତ, ପନ୍ଥ, ବେଶଭୁଷା, ଭାଷାକୁ ଆଳ କରି ଯଦୁବଂଶୀଙ୍କ ଭଳି ପରସ୍ପରର ବିରୋଧୀ ହେଉଛ । ଏହା କେତେଦୂର ଠିକ୍ ।



ତାହା ବିଚାର କରୁନାହଁ । ଯେ ବିଚାରଶୀଳ ଗୁଣିଜ୍ଞାନୀ ବ୍ୟକ୍ତି ଅଛନ୍ତି ତାଙ୍କୁ ଉପେକ୍ଷା କରୁଛ । ବିଚାର ହିଁ ଧର୍ମ ନିର୍ଣ୍ଣୟ କରେ । ଉକ୍ତ ବିଚାର ବୁଦ୍ଧିଦୀପ୍ତ ଓ ହୃଦୟ ପ୍ରଚୋଦିତ ହେବା ଉଚିତ । ଧର୍ମ ବା ନୀତି ଉପରେ ପ୍ରତିଷ୍ଠିତ ମାର୍ଗ ସୁଖ ଆଣେ । ଅନୀତି ମାର୍ଗରେ ସୁଖ ସ୍ଥାୟୀ ନୁହେଁ । ଅନୀତି ଓ ସୁଖ ପରସ୍ପର ବିରୋଧୀ ।

ତୁମେ ମୋତେ ଜଗତର ସ୍ୱାମୀ ବୋଲି ଡାକୁଛ । ମୋର ମହିମା ବଖାଣି ନାନା ଭଜନ, ଜଣାଣ ଓ ବନ୍ଦନା ଗାଉଛ । ଭକ୍ତ କଣ୍ଠରୁ ଏପରି ଭଜନ ଓ ଜଣାଣ ଶୁଣିଲେ ମୁଁ ଅତ୍ୟନ୍ତ ପ୍ରସନ୍ନ ହୁଏ । ପ୍ରଚାର ନ କରି ଏକାନ୍ତ ଭକ୍ତି ମୋର ଅଧିକ ପ୍ରିୟ । ତୁମେମାନେ ''ଦେଖାଦିଅ କୃପାକର'' ବୋଲି ଅଳି କର । ତାହା ତ ମୁଁ ତୁମେ ନ ମାଗିବା ଆଗରୁ କରିସାରିଛି । ସଂସାରରେ ପ୍ରତ୍ୟେକ ଜୀବ ତଥା ତୁମର ମାତା, ପିତା ଗୁରୁଜନ, ବନ୍ଧୁ ସହୋଦର ଆଦି ରୂପରେ ମୁଁ ଦେଖା ଦେଉଛି । ମୁଁ କୃପା ଓ କ୍ଷମାର ସାଗର, ତାହା ତୁମେ ଜାଣ । ମୋର କୃପା ବଳରେ ତୁମେ ଦୁର୍ଲଭ ମଣିଷ ଜନ୍ମ ପାଇଛ, ଅନେକ ଦୈବୀଗୁଣ, ଅଙ୍ଗପ୍ରତ୍ୟଙ୍ଗରେ ଶକ୍ତି, ମସ୍ତିଷ୍କରେ ବୁଦ୍ଧି, ହୃଦୟରେ ମମତା, ସମାଜରେ ବନ୍ଧୁ ପରିଜନ ଓ ପ୍ରକୃତିର ଆନନ୍ଦର ସମ୍ଭାର ସବୁତ ମୋର କରୁଣା । ତାହା ତୁମେ ଅନ୍ୟ ସହିତ ଭାଗ କଲେ ମୋର ଆହୁରି କୃପାଭାଜନ ହେବ । ମାତ୍ର ତୁମେ ଅହଂକାର ପରାୟଣ ହୋଇ ଈର୍ଷା, ଦ୍ୱେଷ, ଲୋଭର ବଶବର୍ତ୍ତୀ ହୋଇ ତାହା ଉପଭୋଗ କରିପାରୁନା । ମୁଁ ସମସ୍ତଙ୍କ ପିତା । ସମସ୍ତ ସନ୍ତାନମାନଙ୍କୁ ସମାନ ଭାବରେ ଦେଖିବା ମୋର କାମ । ତୁମେ ମଧ୍ୟ ମୋର ସନ୍ତାନ ହେତୁ ମୋ ଭଳି ଅନ୍ୟମାନଙ୍କୁ ଦେଖିବା କଥା । ଯାହା ନିଜ ପାଇଁ ଭଲ ତାହା ଅନ୍ୟପାଇଁ ଚାହିଁବ । ଯାହା ନିଜକୁ ଭଲ ନଲାଗେ ତାହା ଅନ୍ୟପ୍ରତି ଆଚରଣ କରିବ ନାହିଁ । ଏହା ହିଁ ମାନବିକ ଧର୍ମ ।

ତୁମେମାନେ ମୋତେ ମହାବାହୁ, ମହାପ୍ରଭୁ ବୋଲି ମାନୁଛ । ମୋ ଦେଉଳକୁ ବଡ଼ଦେଉଳ, ଦାଣ୍ଡକୁ ବଡଦାଣ୍ଡ ବୋଲି ଅଭିହିତ କରିଛ । ତା'ର ତାତ୍ପର୍ଯ୍ୟ କ'ଣ ? ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଉଠି ବିଶାଳତା ବା ଭୂମାକୁ ପ୍ରାପ୍ତ ହୁଅ । ସେଥିରେ ନିତ୍ୟ ସୁଖ ଅଛି । ଅଳ୍ପରେ ଦୁଃଖ ଅଛି । ଦୁଃଖ ବୋଲି ଯେଉଁ ପରିସ୍ଥିତିକୁ ତୁମେ ଏତେ ଭୟ କରୁଛ ତାହା ବାସ୍ତବରେ ମୋ ଆଡ଼କୁ ଆସିବାର ନିମନ୍ତ୍ରଣ । ତୁମେ ଯେ ଅମୃତର ବା ଆନନ୍ଦର ସନ୍ତାନ, ତାହା ଅନୁଭବ କରିବା ପାଇଁ ଦୁଃଖ ଅଭାବ ଅଧିକ ସମ୍ବେଦନଶୀଳ ପରିସ୍ଥିତି ଉତ୍ପନ୍ନ କରି ଆନନ୍ଦର ଉତ୍ସ ମୋ ଆଡ଼କୁ ପ୍ରେରିତ କରେ । ମୁକ୍ତି ପାଇଁ ବାଟ ଦେଖାଏ । ଶାଶ୍ୱତ ମାର୍ଗରେ ଚାଲିବା ପାଇଁ ଶିକ୍ଷା ଦିଏ । ତାହା ତୁମେ ବୁଝି ସେହି ଆହ୍ୱାନକୁ ସାମ୍ନା କରି ଦୃଢ଼ ହୁଅ, ଦେଖିବ ତୁମେ ମୃତ୍ୟୁଞ୍ଜୟୀ ହୋଇଯିବ । ଦୁଃଖ, ଦୈନ୍ୟ ତୁମ ବନ୍ଧୁ ତେଣୁ ମୁଁ ଦୀନବନ୍ଧୁ । ମୁଁ ଗୁରୁ ଓ ଶାସ୍ତ୍ରଦ୍ୱାରା ଶିକ୍ଷା ଦେଇଛି । ଦୁଃଖରେ ଉଦ୍‌ବିଗ୍ନ ହେବ ନାହିଁ କି ସୁଖରେ ଆସକ୍ତ ହେବ ନାହିଁ । ତା' ହେଲେ ତୁମେ ଦୃଢ଼ ଭାବେ ମୋତେ ଧରିବ, ସ୍ଥିର ହୋଇଯିବ । ଆଉ କେଉଁ ପରିସ୍ଥିତି ତୁମକୁ ବିଚଳିତ କରିପାରିବ ନାହିଁ । ଏହିପରି ଭକ୍ତର ବିନାଶ ନାହିଁ । ଇହ ଲୋକରେ ସେ ପ୍ରଶଂସନୀୟ କାର୍ଯ୍ୟ କରି ଯଶର ଅଧିକାରୀ ହୁଏ ଓ ମୃତ୍ୟୁରେ ଆନନ୍ଦରେ ପରଲୋକ ଗମନ କରେ, ତେଣୁ ତୁମର ହୃଦୟକୁ ଆକାଶ ଭଳି ବିଶାଳ କର । ତହିଁରେ ଦୟା, କ୍ଷମା, ତିତିକ୍ଷା, ପରୋପକାର, ସାହସ, ଧୈର୍ଯ୍ୟ ଆଦି ଦୈବୀଗୁଣକୁ ବିକଶିତ କରିବ, ଯାହା ମୋର ଲକ୍ଷଣ ବା ସ୍ୱରୂପ ଅଟେ । ଏଥିପାଇଁ ଅଯଥା ଇନ୍ଦ୍ରିୟ ସୁଖ ଲୋଭକୁ ତିରସ୍କାର କରିବାକୁ ପଡ଼ିବ ।

ଅତିରିକ୍ତ ଜିଲ୍ଲାପାଳ, କୋରାପୁଟ





# ଜଗନ୍ନାଥ ଧର୍ମରେ ସୁଭଦ୍ରା ତତ୍ତ୍ୱ

ମମତା ପାଣିଗ୍ରାହୀ

ଶ୍ରୀଜଗନ୍ନାଥ କେବଳ ଓଡ଼ିଶାରେ ନୁହଁନ୍ତି କି ଭାରତବର୍ଷରେ ନୁହଁନ୍ତି, ଭାରତବାହାରେ ତଥା ଦେଶବିଦେଶରେ ମଧ୍ୟ ପରମ ଉପାସ୍ୟ ଦେବତା ଭାବରେ ପୂଜିତ ହୁଅନ୍ତି । ଶ୍ରୀଜଗନ୍ନାଥ ତତ୍ତ୍ୱ ଜଗନ୍ନାଥ, ବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନ ରୂପୀ ମୂର୍ତ୍ତି ଚତୁଃଷ୍ଟୟର ମନୋଜ୍ଞ ସମାହାର । ଗୋଟିକର ଅନୁପସ୍ଥିତିରେ ସମଗ୍ର ଜଗନ୍ନାଥ ତତ୍ତ୍ୱ ଅପୂର୍ଣ୍ଣ । ତେଣୁ କୁହାଯାଇଛି 'ଜ'କାରଶ୍ଚ ଜଗନ୍ନାଥ, 'ଗ' କାରଶ୍ଚ ବଳଦେବ, ଭଦ୍ରା 'ନ'କାର ଭାବେନ, 'ଥ'କାରଶ୍ଚ ସୁଦର୍ଶନ । ଜଗନ୍ନାଥ ତତ୍ତ୍ୱରେ ଦେବୀ ସୁଭଦ୍ରାଙ୍କ ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମହାଭାରତର ନାରାୟଣୀୟ ଉପାଖ୍ୟାନକୁ ଅନୁଶୀଳନ କଲେ ଜଣାଯାଏ ଯେ ଏହି ଚାରିମୂର୍ତ୍ତିଙ୍କ ଉପାସନାର ଆରମ୍ଭ ପୂର୍ବରୁ ପ୍ରଥମେ ବାସୁଦେବ ବିଷ୍ଣୁ ବିରାଜିତ ହୋଇଥିଲେ । ଦ୍ୱିବ୍ୟୁହ ତତ୍ତ୍ୱରେ ଶଙ୍କର୍ଷଣ ଶିବରୂପେ ଗୃହୀତ ହେଲେ । ପରବର୍ତ୍ତୀ କାଳରେ ଜଗନ୍ନାଥ ଓ ବଳଭଦ୍ରଙ୍କ ସହିତ ଦେବୀ ସୁଭଦ୍ରା ବିରାଜିତ ହେଲେ । ସୁଭଦ୍ରା ଯେ ବ୍ରହ୍ମା ଏଥିରେ ସନ୍ଦେହ ନାହିଁ । ବ୍ରହ୍ମା ତୀର୍ଥଗୁରୁ ପୁଷ୍କରକୁ ଯଜ୍ଞ ପାଇଁ ପ୍ରକୃଷ୍ଟ ସ୍ଥାନଭାବରେ ମନୋନୀତ କରି ଯଜ୍ଞ ଆରମ୍ଭ କରିବା ପୂର୍ବରୁ ନିଜ ପତ୍ନୀ ସାବିତ୍ରୀଙ୍କର ଜରୁରୀ ଆବଶ୍ୟକତା ମନେକରି ତାଙ୍କୁ ଆଣିବାକୁ ନିଜର ପୁଅ ନାରଦଙ୍କୁ ପଠାଇ ଥିଲେ । ନାରଦ ଓ ସାବିତ୍ରୀ ଆସିବାରେ ବିଳମ୍ବ କରିବାରୁ ବ୍ରହ୍ମା ଗାୟତ୍ରୀଙ୍କୁ ପୁନଃବିବାହ କରି ଯଜ୍ଞ ଆରମ୍ଭ କଲେ, ପରେ ସାବିତ୍ରୀ ସେଠାରେ ପହଞ୍ଚି ବ୍ରହ୍ମାଙ୍କର ଏତାଦୃଶ ଆଚରଣ ଦେଖି ବ୍ରହ୍ମାଙ୍କୁ ଅଭିଶାପ ଦେଲେ ଯେ 'ତୁମ୍ଭେ ସୃଷ୍ଟିକର୍ତ୍ତା ହୋଇଥିଲେ ହେଁ ଏହି ପୁଷ୍କର ସ୍ଥାନ ବ୍ୟତୀତ ଅନ୍ୟକୌଣସି ସ୍ଥାନରେ ପୂଜା ପାଇପାରିବ ନାହିଁ ।' ସତକୁ ସତ କେବଳ ରାଜସ୍ଥାନର ଥର୍ ମରୁଭୂମି ନିକଟସ୍ଥ ଏହି ତୀର୍ଥ ଶ୍ରେଷ୍ଠ ପୁଷ୍କର ହ୍ରଦ ନିକଟରେ କେବଳ ଚତୁର୍ମୁଖ ବ୍ରହ୍ମା ପୂଜା ପାଉଛନ୍ତି । ଅନ୍ୟତ୍ର କୌଣସି ସ୍ଥାନରେ ବ୍ରହ୍ମା ପୂଜା ପାଉନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ। ସେହି ଦୃଷ୍ଟିରୁ ଜଗନ୍ନାଥ ବଳଭଦ୍ରଙ୍କ ସହିତ ସୁଭଦ୍ରା ବ୍ରହ୍ମା ବୋଲି ପରିଗଣିତ ହୁଅନ୍ତି । ଆଦିକବି ସାରଳା ଦାସ ଦେବୀଙ୍କୁ ବ୍ରହ୍ମାବୋଲି ପ୍ରକାଶ କରି କୁହନ୍ତି–

ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ ହରିବ୍ରହ୍ମା ।

ଚାରିବେଦ ମଧ୍ୟରେ ସୁଭଦ୍ରାଙ୍କୁ ଭକ୍ତମାନେ କେତେବେଳେ ଋଗ୍‌ବେଦ ରୂପେ ଗ୍ରହଣ କରିଛନ୍ତି ତ ପୁଣି କେତେବେଳେ ଯର୍ଜୁବେଦ ଭାବରେ ଗ୍ରହଣ କରିଛନ୍ତି । ବେଦର ମାହାତ୍ମ୍ୟ ଜାଣିବାକୁ ହେଲେ ଆମର ପ୍ରତ୍ୟେକ ଦିନର ଜୀବନଚର୍ଯ୍ୟାରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଜାଣିବା ଅତ୍ୟନ୍ତ ପ୍ରୟୋଜନୀୟ । ଶ୍ରୀଜଗନ୍ନାଥ ଅବ୍ୟକ୍ତ ଜଗତରୁ ଜୀବ ମଧ୍ୟରେ ମନ୍ତ୍ରପ୍ରକାଶ କରୁଥିବାରୁ ସେ ହେଉଛନ୍ତି ଋଗ୍‌ବେଦ । ଏହି ମନ୍ତ୍ରକୁ ଶକ୍ତିମୟୀ ସୁଭଦ୍ରା ଅନୁଭବ ସ୍ତରରେ ଯୋଗ କରୁଥିବାରୁ ସେ ହେଉଛନ୍ତି ଯର୍ଜୁବେଦ । ଏହି ସମ୍ବେଦନ କର୍ମେନ୍ଦ୍ରୀୟ ରୂପୀ ବଳରାମ ସାମ୍ୟଧାରଣ କରନ୍ତି ବୋଲି ସେ ହେଉଛନ୍ତି ସାମବେଦ ଓ ସୁଦର୍ଶନଙ୍କୁ ଅଥର୍ବ ବେଦଭାବରେ ବିବେଚନା କରାଯାଏ ।

ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବର୍ଣ୍ଣ ଯଥାକ୍ରମେ କୃଷ୍ଣ, ଶ୍ୱେତ ଓ ପୀତ । ଏହି ବର୍ଣ୍ଣସବୁ ବିଭିନ୍ନ ବର୍ଣ୍ଣର ଲୋକମାନଙ୍କ ସୂଚନା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଭ୍ରାତୃଭାବର ସମ୍ପର୍କ ସୃଷ୍ଟି କରିଥାଏ । ପିଣ୍ଡ ମଧ୍ୟରେ





ଆତ୍ମତତ୍ତ୍ୱ, ପ୍ରକୃତିତତ୍ତ୍ୱ ଓ ପୁରୁଷତତ୍ତ୍ୱ ଇତ୍ୟାଦି ନିହିତ ଅଛି । ଯୋଗତତ୍ତ୍ୱ ଏମାନଙ୍କ ମଧ୍ୟରେ ପ୍ରଧାନ । ଏହାକୁ ବିଶେଷ କରି ଆଧାର, ଲିଙ୍ଗ, ନାଭି, ହୃଦୟ ଓ କଣ୍ଠ ଇତ୍ୟାଦିକୁ ପିଣ୍ଡର ଅଂଶ ସ୍ୱରୂପ ବିଚାର କରିଛନ୍ତି ।

ସନାତନ ଧର୍ମର ମୁଖ୍ୟ ତ୍ରିଧାରା ହେଉଛନ୍ତି ଶାକ୍ତ, ବୈଷ୍ଣବ ଓ ଶୈବ । ଶାକ୍ତମାନଙ୍କର ଉପାସିତା ଦୁର୍ଗା ବା ଯୋଗମାୟା ହେଉଛନ୍ତି ଦେବୀ ସୁଭଦ୍ରା । ସ୍କନ୍ଦ ପୁରାଣରେ ସୁଭଦ୍ରାଙ୍କର ଦୁଇଗୋଟି ହସ୍ତର କଳ୍ପନା କରାଯାଇଛି । ଦେବୀ ସୁଭଦ୍ରା ଗୋଟିଏ ହସ୍ତରେ ପଦ୍ମ ଓ ଅନ୍ୟହସ୍ତରେ ଅଭୟ ଦାନ କରୁଥିବାର ବର୍ଣ୍ଣନା ଅଛି । ନୀଳମାଧବ ବା ମାଧବ ତତ୍ତ୍ୱରେ ଜଗନ୍ନାଥ ଧର୍ମର ଆଦିମତା ବା ପ୍ରାଚୀନତା ନିହିତ ଥିବା କୁହାଯାଇଥାଏ । ନୀଳ + ମା + ଧବ । ଏହି ମା'ଶବ୍ଦର ପ୍ରତୀକ ମା' ସୁଭଦ୍ରା ହୋଇଥିବା କେତେକ ମତବ୍ୟକ୍ତ କରନ୍ତି ।

ବୌଦ୍ଧମତରେ ତ୍ରିମୂର୍ତ୍ତି ହେଉଛନ୍ତି ବୌଦ୍ଧ ତ୍ରିରତ୍ନ । ବୁଦ୍ଧ, ଧର୍ମ ଓ ସଂଘ । ବୁଦ୍ଧର ଅର୍ଥ ପୁରୁଷ, ଧର୍ମର ଅର୍ଥ ପ୍ରକୃତି ଓ ସଂଘ ଉଭୟ ପୁରୁଷ ଓ ପ୍ରକୃତିର ମିଳନସ୍ଥଳ । ଅନେକଙ୍କ ମତରେ ଏହି ତ୍ରିରତ୍ନ ହେଉଛନ୍ତି ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା ଓ ଶ୍ରୀବଳଭଦ୍ର । ଏହାବ୍ୟତୀତ ଏହି ମୂର୍ତ୍ତିତ୍ରୟ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦର ପ୍ରତୀକ । ସତ୍‌ରୂପୀ ଜଗନ୍ନାଥ ଜଡ ହୋଇଥିବା ସ୍ଥଳେ, ଚିତ୍‌ରୂପୀ ବଳଭଦ୍ର କ୍ରିୟାଶୀଳ, ଆନନ୍ଦସ୍ୱରୂପା ଦେବୀ ସୁଭଦ୍ରାହିଁ ସତ୍‌ରୂପୀ ଶ୍ରୀଜଗନ୍ନାଥଙ୍କ ପ୍ରାଣଧାର । ଏହାବ୍ୟତୀତ ଏହି ତିନିମୂର୍ତ୍ତି ଓଁକାର ରୂପିଣୀ ହ୍ଲୀଂ, ଶ୍ରୀଂ,କ୍ଲୀଂ । ଈଶ୍ୱରୀୟ ଶକ୍ତିତତ୍ତ୍ୱରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ସମନ୍ୱିତ ପ୍ରକୃତି ସ୍ୱରୂପା ଭାବରେ ସୁଭଦ୍ରା ମଧ୍ୟ ପ୍ରତିଷ୍ଠିତା । ସୃଷ୍ଟି ପାଳନ ଓ ସଂହାର ତତ୍ତ୍ୱରେ ବିଚାର କରାଗଲେ ସେ ସାବିତ୍ରୀରୂପରେ ସୃଷ୍ଟିକର୍ତ୍ତ୍ରୀ ଓ କାତ୍ୟାୟନୀ ଭାବରେ ସଂହାର କର୍ତ୍ତ୍ରୀ ଏବଂ ମହାଲକ୍ଷ୍ମୀ ଭାବରେ ପାଳନକର୍ତ୍ତ୍ରୀ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଅଙ୍ଗରେ ସେ ଜଡିତଥିବାର ପ୍ରମାଣ ସ୍ୱରୂପ କୁହାଯାଇଛି –

ବକ୍ଷସ୍ଥଳେ ସ୍ଥିତୋ ବିଷ୍ଣୋ ଶମ୍ଭୋ ଅର୍ଦ୍ଧାଙ୍ଗ ଶୋଭିତା
ପଦ୍ମଯୋନି ମୁଖାଦ୍‌ବାସ୍ଥାଂ ତାଂ ନମାମି ହରିପ୍ରିୟାମ୍ ।

ସେ ଚଣ୍ଡୀରେ ଶକ୍ତି, ଜ୍ଞାନ, ବିଦ୍ୟା ଓ ଲକ୍ଷ୍ମୀ ଇତ୍ୟାଦି ସର୍ବଗୁଣର ଅଧୀଶ୍ୱରୀ ହେଲେ ହେଁ ନାରାୟଣୀ ଭାବରେ ସମସ୍ତେ ତାଙ୍କୁ ନମସ୍କାର କରିଥାନ୍ତି । ମହାଭାରତ ସମୟରୁ ଦେବୀ ସୁଭଦ୍ରା ହିଁ ଏକାଂନସାରୂପେ ପରିଗଣିତ ହୋଇଥିଲେ । ମହାଭାରତର ବିରାଟ ପର୍ବରେ ତାଙ୍କୁ ଯଶୋଦା ଗର୍ଭ ସମ୍ଭୁତ ବିଜୁଳି କନ୍ୟାରୂପେ ପରିକଳ୍ପନା କରାଯାଇଛି । ବିଷ୍ଣୁ ପୁରାଣରେ ସେ ନିଦ୍ରାଦେବୀରୂପେ ପରିଚିତା । ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରତିଷ୍ଠିତ ହେବାପରେ ସେ ଶାକ୍ତ ମତରେ ଦେବୀଭାବରେ ପରିଚିତ ନହୋଇ ବୈଷ୍ଣବ ମତାନୁସାରେ ନୀରାଜିତ ହୋଇ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଭଗ୍ନୀରୂପେ ସର୍ବସାଧାରଣରେ ଗୃହୀତ ହୋଇଛନ୍ତି । ବରାହମିହିର ତାଙ୍କ ବୃହତ୍ ସଂହିତାରେ ଏକାଂନସା ଓ ସୁଭଦ୍ରାଙ୍କ ମଧ୍ୟରେ ଅଭେଦ କଳ୍ପନା କରି କହିଛନ୍ତି ।

ଏଣୁ ଦେବୀ ସୁଭଦ୍ରା ଉଭୟ ଶିଳାବ୍ରହ୍ମ ଓ ଦାରୁବ୍ରହ୍ମ ରୂପରେ ଶକ୍ତିଭାବରେ ନୀରାଜିତା ହୋଇ ଆସୁଛନ୍ତି । ରତ୍ନବେଦୀରେ ସୁଦର୍ଶନ ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ଶୋଭା ପାଉଥିବା ବେଳେ ରଥଯାତ୍ରା ସମୟରେ ସେ ଦେବୀ ସୁଭଦ୍ରାଙ୍କ ସହିତ ରୁନ୍ଧା (ବନ୍ଧା) ହୋଇଥାନ୍ତି । ଲିଙ୍ଗସ୍ୱରୂପ ସୁଦର୍ଶନ ସୁଭଦ୍ରାଙ୍କ ସହ ରୁନ୍ଧା ହେଉଥିବାରୁ ଦେବୀ ଶକ୍ତିସ୍ୱରୂପା ବୋଲି ପ୍ରମାଣିତ ହୁଏ ।

ଶ୍ରୀଜଗନ୍ନାଥ ବିଭିନ୍ନ ମତାବଲମ୍ବୀଙ୍କ ଦ୍ୱାରା ବିବିଧରୂପେ ନିରାଜିତ ହେବାପରି ଦେବୀ ସୁଭଦ୍ରା ମଧ୍ୟ ହୋଇଛନ୍ତି ବୈଚିତ୍ର୍ୟମୟୀ । ସେ ଜଗତ (ବଳଭଦ୍ର) ଓ ଜଗନ୍ନାଥଙ୍କ ମଧ୍ୟରେ ଅବସ୍ଥାପିତ ହୋଇ କର ପଦାଦି ରହିତ । ବିଶ୍ୱର ସବୁ ନରନାରୀ, ସ୍ତ୍ରୀ ଓ ପୁରୁଷ ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କର ଅଂଶ ବିଶେଷ ଏଥିରେ ସନ୍ଦେହ ନାହିଁ ।

ଅଷ୍ଟଶମ୍ଭୁ ବାଳିକା ଉଚ୍ଚ ବିଦ୍ୟାଳୟ
ହାଜିପୁର, ବିରିଡି



# ଶ୍ରୀଜୀଉଙ୍କ ପହଣ୍ଡିବିଜେ - ଏକ ଅନୁଶୀଳନ

ଶ୍ୟାମ ପ୍ରକାଶ ସେନାପତି

ଶ୍ରୀଜୀଉଙ୍କ ପହଣ୍ଡି ଏକ ବ୍ୟାପକ ଓ ପ୍ରାଚୀନ ଶବ୍ଦ । ପହଣ୍ଡି ଅର୍ଥ ଚାଲିବା । ଶ୍ରୀବିଗ୍ରହମାନଙ୍କର ପହଣ୍ଡିରୂପକ ଗମନ ହିଁ ପହଣ୍ଡି ବିଜେ । ଏହା ସ୍ୱୟଂ ଜଗନ୍ନାଥ ତତ୍ତ୍ୱକୁ ଉଦ୍‌ଘାଟନ କରେ । ଏହି ପହଣ୍ଡି ଯାତ୍ରା ଯେତିକି କୌତୁହଳପ୍ରଦ ସେତିକି ବିସ୍ମୟକର ମଧ୍ୟ । ଚତୁର୍ଦ୍ଧାମୂର୍ତ୍ତିଙ୍କ ପହଣ୍ଡି ଯେପରି ଦର୍ଶନୀୟ ସେହିପରି ଆଧାତ୍ମିକତା ଦୃଷ୍ଟିରୁ ତତ୍ତ୍ୱପୂର୍ଣ୍ଣ ମନେହୁଏ । ଏହି ପହଣ୍ଡିର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଭକ୍ତ ମନରେ ଏହି ଦୃଶ୍ୟ ଅପୂର୍ବ ଭାବ ସଂଚାର କରେ । ପହଣ୍ଡି ସାଧାରଣତଃ ଦୁଇ ପ୍ରକାର- ଗୋଟି ପହଣ୍ଡି ଓ ଧାଡ଼ି ପହଣ୍ଡି । ଏକ ବିଗ୍ରହଙ୍କୁ ସ୍ୱ ଆସ୍ଥାନରୁ ଉଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇବା ପରେ ଅନ୍ୟ ଏକ ବିଗ୍ରହ ଆସ୍ଥାନ ଛାଡ଼ି ବିଜେ ହେଲେ ଏହାକୁ 'ଗୋଟି ପହଣ୍ଡି' ଏବଂ ଏକାଦିକ୍ରମେ କ୍ରମାନ୍ୱୟରେ ସମସ୍ତ ବିଗ୍ରହଙ୍କୁ ବିଜେ କରାଇଲେ ତାହା 'ଧାଡ଼ିପହଣ୍ଡି' ନାମରେ ଅଭିହିତ ହୋଇଥାଏ । ବିଶେଷତଃ ଶ୍ରୀଗୁଣ୍ଡିଚା ବା ରଥଯାତ୍ରାରେ ଶ୍ରୀବିଗ୍ରହମାନଙ୍କର ଅନୁଷ୍ଠିତ ପହଣ୍ଡିବିଜେକୁ 'ମହାପହଣ୍ଡି' ବୋଲି କୁହାଯାଇଥାଏ । ଶ୍ରୀମନ୍ଦିରରେ ପାଳିତ ହେଉଥିବା ଶ୍ରୀଜୀଉଙ୍କର ଦ୍ୱାଦଶଯାତ୍ରା ମଧ୍ୟରେ ସ୍ନାନ ଓ ଗୁଣ୍ଡିଚା ଯାତ୍ରା ହେଉଛି ଶ୍ରେଷ୍ଠ ଯାତ୍ରା । ଏହି ଦୁଇ ଯାତ୍ରାରେ ହିଁ ଶ୍ରୀଜୀଉମାନେ ପହଣ୍ଡି ହୋଇ ଆସନ୍ତି ଓ ଏହି ଦୁଇ ଯାତ୍ରା ସହିତ କେବଳ ପହଣ୍ଡି ସଂପୃକ୍ତ । ଏହି ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ ପହଣ୍ଡି ବିଜେ ଯେପରି ମନୋମୁଗ୍ଧକର, ସେହିପରି ଭକ୍ତି ଉଦ୍ରେକକାରୀ ମଧ୍ୟ । ଶ୍ରୀମଦ୍ ଭାଗବତର ଅଷ୍ଟବିଂଶ ଅଧ୍ୟାୟରେ ଲେଖାଅଛି-

ଦାରୁ ପାଷାଣ ଧାତୁମୟୀ, ଲେପ ଲେଖନ ମଣିମୟୀ
ବାଲୁକାମୟୀ, ମନୋମୟୀ ଏମନ୍ତ ପ୍ରତିମା ଭିଆଇ ।



ଅର୍ଥାତ୍, ଭାଗବତର ବାକ୍ୟ ଅନୁଯାୟୀ ପ୍ରତିମା ଆଠ ପ୍ରକାରର । ଯଥା- ପ୍ରସ୍ତରମୟୀ, ଦାରୁମୟୀ, ଧାତୁମୟୀ, ଚନ୍ଦନ ପ୍ରକୃତି ଲେପମୟୀ, ଚିତ୍ରସ୍ୱରୂପା, ବାଲୁକାମୟୀ, ମନୋମୟୀ ଓ ମଣିମୟୀ । ଏଥିମଧ୍ୟରୁ ଦାରୁ ପ୍ରତିମା ଶ୍ରେଷ୍ଠ । ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଅଚଳ ମହାମେରୁ, ସେ ଦାରୁବ୍ରହ୍ମ ସ୍ୱରୂପା । ଦାରୁ ବିଗ୍ରହମାନେ ବିରାଟକାୟ ହୋଇଥିବାରୁ ଅନ୍ୟ ପ୍ରତିମାମାନଙ୍କ ପରି ଟେକିକରି ନେବା ସମ୍ଭବ ନୁହେଁ । ତେଣୁ ସେମାନଙ୍କ ପାଇଁ ଏହି ପହଣ୍ଡିର ବ୍ୟବସ୍ଥା । ଶିଶୁଠାରୁ ଆରମ୍ଭ କରି କିଶୋର-କିଶୋରୀ, ବୃଦ୍ଧ-ବୃଦ୍ଧା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରିବା ଭଳି ଦୃଶ୍ୟ ଏହି ପହଣ୍ଡି ବିଜେରେ ସଂଯୁକ୍ତ ହୋଇଛି । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏହି ପହଣ୍ଡିବିଜେ ସମସ୍ତଙ୍କର ଚିତ୍ତକୁ ଉଦ୍‌ବେଳିତ କରିପାରେ ଓ ମୋହିତ କରିପାରେ । ଭକ୍ତକବି ସାଲବେଗଙ୍କ ମତରେ ଏହା ହେଉଛି- ଅତି ମୋହନ ବେଶ । ଅତିମୋହନ ବେଶର ଦର୍ଶନରେ ମଣିଷ ପାପବନ୍ଧନରୁ ମୁକ୍ତ ହୋଇ ମହାଜାଗତିକ ଚେତନା ଆଡ଼କୁ ଆଗେଇଯାଏ । ଏହିବେଶ ଦ୍ୱାରା ତିନିପୁର ବଶୀଭୂତ ହୋଇଛି ବୋଲି କଥିତ



ଅଛି । ଏହି ବେଶକୁ କେହି କେହି ମଧ ତ୍ରୈଲୋକ୍ୟ ସୁଖଦାୟକ, ତ୍ରୈଲୋକ୍ୟ ମୋହନରୂପ ଓ ତ୍ରିପୁରା ମୋହନରୂପ ବୋଲି କହିଥାନ୍ତି । ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ରସର ବିଳାସ ପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ସଂପୂର୍ଣ୍ଣ ଭାବେ ବିକଶିତ ହୁଏ । ଐଶ୍ୱର୍ଯ୍ୟ ଶକ୍ତିକୁ ଅତିକ୍ରମ କରି ଜଗତର ନାଥ ଜଗନ୍ନାଥ ବ୍ରଜଦାଣ୍ଡରେ ପହଣ୍ଡିବିଜେ କରି ଗୋପୀଜନବଲ୍ଲଭ ରୂପରେ କୋଟି ନୟନ ସାର୍ଥକ କରି ବିପୁଳ ଉଲ୍ଲାସରେ ହଲିଦୋହଲି ନବଘନ ସୁନ୍ଦର ତ୍ରିଭୁବନ ଠାଣିରେ ଅପଲକ ନେତ୍ରରେ ଅଗଣିତ ଭକ୍ତଜନଙ୍କର ହୃଦୟକୁ ଆକର୍ଷଣ କରିଥାନ୍ତି । ପହଣ୍ଡିର ପ୍ରଥମ ପର୍ବ ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀବିଗ୍ରହମାନେ ରତ୍ନସିଂହାସନ ଛାଡ଼ି ଦିଅନ୍ତି । ଏହାକୁ କୁହାଯାଏ 'ଚକାଛାଡ଼' । ଏଠି ଜାଣି ରଖିବା କଥା ଯେ, ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀଜୀଉମାନେ ଚକାଛାଡ଼ କଲେ ଆଉ ରତ୍ନସିଂହାସନକୁ ଫେରନ୍ତି ନାହିଁ । ସ୍ନାନପୂର୍ଣ୍ଣମୀ ଦିନ ରତ୍ନସିଂହାସନରୁ ସ୍ନାନମଣ୍ଡପ-ଅଣସର ଗୃହ-ରଥଯାତ୍ରାଦିନ ଅଣସରଗୃହରୁ ରଥ ଉପରକୁ-ରଥରୁ ଗୁଣ୍ଡିଚା ମଣ୍ଡପକୁ-ବାହୁଡ଼ା ଯାତ୍ରା ଦିନ ରଥତ୍ରୟ ଶ୍ରୀମନ୍ଦିର ଦୁଆରେ ପହଞ୍ଚିବା ପରେ ବାହୁଡ଼ା ପରଦିନ ସୁନାବେଶ, ଅଧରପଣା ସରିବା ପରେ ତୃତୀୟ ଦିନ କିମ୍ବା ଚତୁର୍ଥ ଦିନ ରତ୍ନସିଂହାସନକୁ ଫେରନ୍ତି । ସେହି ଦିନକୁ 'ନୀଳାଦ୍ରିବିଜେ' କୁହାଯାଏ । ଏହା ବ୍ୟତୀତ ସ୍ନାନପୂର୍ଣ୍ଣମୀ ଦିନ ସିଂହାସନ ଉପରୁ ଗର୍ଭ ଗୃହର ଚଟାଣ ପର୍ଯ୍ୟନ୍ତ ଚାରମାଳ ବନ୍ଧା ଯାଇଥାଏ । ଏହି ଚାରମାଳକୁ କୋଠସୁଆଁସିଆ ନାମକ ସେବକ ନିର୍ମାଣ କରିଥାନ୍ତି । ସେହି ଦିନଠାରୁ ସେହି ଚାରମାଳ ସେଇଠି ସେହିପରି ବନ୍ଧା ହୋଇ ରହିଥାଏ । ନୀଳାଦ୍ରି ବିଜେ ଦିନ ସେହି ଚାରମାଳ ଉପରେ ବିଗ୍ରହମାନେ ରତ୍ନସିଂହାସନ ଉପରକୁ ବିଜେ କଲା ପରେ ଚାରମାଳ ଖୋଲାଯାଇଥାଏ ।

**ପହଣ୍ଡି ବିଜେର କ୍ରମ :** ପହଣ୍ଡିବିଜେ ସମୟରେ ଏକ ନିର୍ଦ୍ଦିଷ୍ଟ କ୍ରମ ଅନୁସୃତ ହୋଇଥାଏ । ଏହି ପ୍ରସଙ୍ଗରେ 'ନୀଳାଦ୍ରି ମହୋଦୟ'ରେ ଉଲ୍ଲେଖ ଅଛି –

ସୁଦର୍ଶନଂ ପୁରସ୍କୃତ୍ୟ ବଳଭଦ୍ରଂ ତତଃ ପରମ୍
ସୁଭଦ୍ରାଞ୍ଚ ତତୋନିତ୍ୱା ଜଗଦୀଶଂ ସୁରେଶ୍ୱରମ୍ ।

ଅର୍ଥାତ୍, ପହଣ୍ଡି ସମୟରେ ପ୍ରଥମେ ଶ୍ରୀସୁଦର୍ଶନ ବିଜେ ହୁଅନ୍ତି । ସେ ସାତ ପାହାଚ ଦ୍ୱାର ଅତିକ୍ରମ କରିବା ପରେ ଶ୍ରୀବଳଭଦ୍ରଙ୍କର ରୁନ୍ଧା (ବନ୍ଧା) ଖୋଲାଯାଏ । ପ୍ରଭୁ ଶ୍ରୀବଳଭଦ୍ର ସାତପାହାଚ ଦ୍ୱାର ପାରି ହେବା ପରେ ଶକ୍ତିରୂପା ଦେବୀ ସୁଭଦ୍ରାଙ୍କର ସାତ ପାହାଚ ଅତିକ୍ରମ ପରେ ପରେ ସର୍ବଶେଷରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ରୁନ୍ଧା ଖୋଲାଯାଏ । ସାତ ପାହାଚଠାରେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ମସ୍ତକରେ ଟାହିଆ ଲଗାଯାଇଥାଏ । ଏହି କ୍ରମରେ ପହଣ୍ଡି ବିଜେ ଉତ୍ସବ ଅନୁଷ୍ଠିତ ହୋଇଥାଏ । ପ୍ରଭୁ ଶ୍ରୀସୁଦର୍ଶନ ଓ ଦେବୀ ସୁଭଦ୍ରାଙ୍କ ପହଣ୍ଡି ଖୁବ୍ ଅଳ୍ପ ସମୟ ଏବଂ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ପହଣ୍ଡି ଦୀର୍ଘ ସମୟ ଲାଗିଥାଏ । ଏହି ଦିବ୍ୟ ପହଣ୍ଡିର ଶୁଭାରମ୍ଭ ପୂର୍ବରୁ ଚୂନରା ସେବକ ପରିଷ୍କୃତ ମାର୍ଗକୁ ଚୂନପାଣି ଛିଞ୍ଚି ଶୁଦ୍ଧପୂତ କରନ୍ତି । ପହଣ୍ଡିର ଯଥେଷ୍ଟ ପୂର୍ବରୁ ଶ୍ରୀଅଙ୍ଗକୁ ସୁରକ୍ଷିତ ରଖିବା ପାଇଁ ସେନାପଟା ଓ ବାହୁଟି ଆଦି ଲଗାଯାଇଥାଏ । ଶୁଭ ଶଙ୍ଖଧ୍ୱନି ଓ ବିଜେ କାହାଳୀ ବାଜିବା ପରେ ପହଣ୍ଡି ବିଜେର ଉପକ୍ରମ ଆରମ୍ଭ ହୋଇଥାଏ । ଦଇତା ସେବକମାନେ ପହଣ୍ଡିବିଜେ କାର୍ଯ୍ୟରେ ମୁଖ୍ୟଭୂମିକା ଗ୍ରହଣ କରିଥାନ୍ତି । ଶ୍ରୀଜୀଉଙ୍କୁ ପହଣ୍ଡି କରାଇବା ପାଇଁ ଅଂଶଗ୍ରହଣ କରିଥିବା ଅନ୍ୟାନ୍ୟ ସେବକମାନଙ୍କ ମଧ୍ୟରେ ସୁଆର, ମହାସୁଆର, ପଣ୍ଡା, ପ୍ରତିହାରୀ, ଭିତରସେବକ, ପଶୁପାଳକ ଆଦି ଅନ୍ୟତମ । ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ଦୁଇଭୁଜ ପାଖରେ ଦଇତାମାନେ, ପଶ୍ଚାତ୍‌ଭାଗରେ ସୁଆର ଓ ସମ୍ମୁଖ ଭାଗରେ ପୂଜାପଣ୍ଡା ଓ ପୁଷ୍ପାଳକ ଆଦି ରହି ପହଣ୍ଡି ସେବା ସଂପନ୍ନ କରୁଥିବାର ଦେଖାଯାଏ । ରାଜକୀୟ ଆଡ଼ମ୍ବରରେ ମହାପ୍ରଭୁଙ୍କୁ ମଣିମା ମଣିମା ଡାକ ସହିତ ଆଲଟ, ଚାମର, ଛତି, ତ୍ରାସ, ଘଣ୍ଟ, ମର୍ଦ୍ଦଳ ଓ ହରିବୋଲ ହୁଳହୁଳି ଧ୍ୱନି ଶୋଭାଯାତ୍ରାକୁ ଜୀବନ୍ତ କରିଦିଏ । ସମବେତ ଘଣ୍ଟନାଦ ଓ ଘଣ୍ଟୁଆମାନଙ୍କର ସମବେତ ଅଙ୍ଗଭଙ୍ଗୀ ଉପସ୍ଥିତ ଲକ୍ଷ ଲକ୍ଷ ଦର୍ଶକଙ୍କୁ ବିମୋହିତ କରିଥାଏ । ପ୍ରବଳ ଜନସମୁଦ୍ର ଅପଲକ ନେତ୍ରରେ ଏହି ଦୃଶ୍ୟ ଦେଖିବା ପାଇଁ ସିନ୍ଧୁଲହରୀ ଭଳି ମାଡ଼ି



ଆସୁଥିବାର ଦୃଶ୍ୟ ଅତ୍ୟନ୍ତ ମନୋରମ ଓ ହୃଦୟସ୍ପର୍ଶୀ । ଏହି ସମୟରେ ଆମ୍ବ, କଦଳୀ, ସପୁରୀ, ପଣସ ଆଦି ସୁମିଷ୍ଟ ଫଳ ଓ ବିଭିନ୍ନ ପ୍ରକାର ମିଷ୍ଟାନ୍ନ ଦ୍ରବ୍ୟ ପନ୍ତିଭୋଗ ଭାବରେ ଶ୍ରୀଜୀଉମାନଙ୍କ ପହଣ୍ଡିମାର୍ଗରେ ଅର୍ପଣ କରାଯାଏ । ବାହୁଡ଼ା ଯାତ୍ରାର ନୀଳାଦ୍ରିବିଜେ ଦିନ ଠାକୁରମାନେ ରଥରୁ ଶ୍ରୀମନ୍ଦିରକୁ ଯିବା ବେଳେ କେବଳ ବର୍ଷକରେ ଏଇ ଦିନ ରସଗୋଲା ଭୋଗ ହେବାର ଦେଖାଯାଏ ।

ରତ୍ନ ସିଂହାସନସ୍ଥ ବିଗ୍ରହମାନଙ୍କର ପହଣ୍ଡି ବିଜେ ବର୍ଷ ମଧ୍ୟରେ ଛଅ ଥର ହୁଏ । ସ୍ନାନପୂର୍ଣ୍ଣିମା (ଜ୍ୟେଷ୍ଠ ପୂର୍ଣ୍ଣିମା ତିଥି) ଦିନ ପୂର୍ବାହ୍ନରେ ରତ୍ନସିଂହାସନରୁ ସ୍ନାନବେଦୀକୁ ଧାଡ଼ି ପହଣ୍ଡିରେ, ସ୍ନାନ ପୂର୍ଣ୍ଣିମା ଦିନ ରାତ୍ରରେ ସ୍ନାନବେଦୀରୁ ରତ୍ନସିଂହାସନ ନିକଟ ଅଣସର ପିଣ୍ଡିକୁ ଗୋଟି ପହଣ୍ଡିରେ, ଶ୍ରୀଗୁଣ୍ଡିଚା ବା ରଥଯାତ୍ରା (ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା) ଦିନ ପୂର୍ବାହ୍ନରେ ଶ୍ରୀମନ୍ଦିର ଗର୍ଭଗୃହସ୍ଥ ଅଣସର ପିଣ୍ଡିରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ, ରଥଯାତ୍ରା ପରଦିନ ସଂଧ୍ୟାରେ ରଥ ଉପରୁ ଗୁଣ୍ଡିଚା ମନ୍ଦିର ସିଂହାସନକୁ ଗୋଟି ପହଣ୍ଡିରେ, ବାହୁଡ଼ାଯାତ୍ରା ଅର୍ଥାତ୍ ନବମୀ ସଂଧ୍ୟା ଦର୍ଶନ ପରଦିନ ପୂର୍ବାହ୍ନରେ ଗୁଣ୍ଡିଚା ସିଂହାସନରୁ ରଥ ଉପରକୁ ଧାଡ଼ି ପହଣ୍ଡିରେ ଏବଂ ସୁନାବେଶ, ଅଧରପଣା ପରଦିନ ଅର୍ଥାତ୍ ନୀଳାଦ୍ରି ବିଜେ ଦିନ ସଂଧ୍ୟାରେ ରଥରୁ ଶ୍ରୀମନ୍ଦିର ରତ୍ନସିଂହାସନକୁ ଗୋଟି ପହଣ୍ଡିରେ ବିଜେ ହୁଅନ୍ତି । ସ୍ନାନ ପୂର୍ଣ୍ଣମାଠାରୁ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଶ୍ରୀଜୀଉମାନେ ଦଇତାସେବକ (ବିଶ୍ୱାବସୁ ଶବର ବଂଶଜ) ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହୁଥିବାରୁ ସମସ୍ତ ପହଣ୍ଡି ବିଜେ ମୁଖ୍ୟତଃ ସେମାନଙ୍କ ଦ୍ୱାରା ନିର୍ବାହ ହୋଇଥାଏ ।

**ଟାହିଆ :** ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମସ୍ତକରେ ଧାରଣ କରିଥିବା ଟାହିଆର ଗଠନରେ ଉନ୍ନତ କଳାତ୍ମକ ରୁଚିବୋଧର ପରିଚୟ ମିଳିଥାଏ । ଏହି ଟାହିଆ ଭୂଷଣରେ ରହି ମହାପ୍ରଭୁ କୋଟି କୋଟି ଭାବପ୍ରବଣ ହୃଦୟକୁ କାଳକାଳ ଧରି ଆଲୋଡ଼ିତ କରି ଆସିଛନ୍ତି । ମହାପ୍ରଭୁ ଢଳି ଢଳି ଚାଲିବା ସମୟରେ ଏହି ଟାହିଆ ସତେଯେପରି ତାଙ୍କ ସହିତ ଝୁଲି ଝୁଲି ତାଳ ଦେଉଥାଏ । ଟାହିଆ ହେଉଛି ବାଉଁଶ ପାତିଆ ଦ୍ୱାରା ନିର୍ମିତ ଏକ ଛାଞ୍ଚ । ଏଥିରେ ନାନା ପ୍ରକାର ସୁବାସିତ ଫୁଲ, ତୁଳସୀ, ଦୁବ, ବରକୋଳିପତ୍ର, ସୋଲ ନିର୍ମିତ ଶ୍ୱେତ କଦମ୍ବ ଓ ପତ୍ର ଏବଂ ବିଭିନ୍ନ ପ୍ରକାରର ଜରିଜମ୍ଭୁରା ଆଦି ଖଞ୍ଜା ଯାଇଥାଏ । ଏହି ସୁନ୍ଦର ଟାହିଆକୁ ପ୍ରସ୍ତୁତ କରିବା ପାଇଁ ପୁରୀର ବାଲିସାହିରେ ଅବସ୍ଥିତ ରାଘବଦାସ ମଠ ଦାୟିତ୍ୱ ନେଇଥାନ୍ତି । ଏହା ସେହି ମଠର ଏକ ପରମ୍ପରା । ପହଣ୍ଡିକାଳୀନ ଏହି ରୂପକୁ ତ୍ରୈଲୋକ୍ୟ ସୁଖଦାୟକ ବୋଲି 'ନୀଳାଦ୍ରି ମହୋଦୟ'ରେ ଲେଖାଅଛି । ପହଣ୍ଡି ସମୟରେ ପ୍ରଭୁ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କ ମସ୍ତକ ଉପରେ ଶୋଭା ପାଉଥିବା ଏହି ଦୋଳାୟମାନ ଟାହିଆ ଯେଉଁ ମହାନ୍ ସତ୍ୟ ଘୋଷଣା କରେ ତାହା ଓଡ଼ିଆ କବିଙ୍କ ଲେଖନୀରେ ଜୀବନ୍ତ ହୋଇଛି । ଯଥା –

ଯାତ୍ରା ବେଳେ ଟାହିଆ ଭାଷଇ
ବ୍ରହ୍ମ ସଂସାରେ ସତ୍ୟ ଅଟଇ ।

ଅର୍ଥାତ୍ – ବ୍ରହ୍ମ ସତ୍ୟ ଓ ଜଗତ୍ ମିଥ୍ୟା, ଏହି ମହାନ୍‌ବାଣୀ ଟାହିଆର ଦୋଳନ ଫଳରେ ପ୍ରଚାରିତ ହୋଇଥାଏ । ଏହି ଟାହିଆ ସାତ ପାହାଚଠାରେ କେବଳ ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ମସ୍ତକରେ ଧାରଣ କରିଥାନ୍ତି ।

**ପହଣ୍ଡିର ମାର୍ଗ :** ସ୍ନାନ ପୂର୍ଣ୍ଣିମା ଦିନ ଶ୍ରୀଜୀଉମାନଙ୍କର ପ୍ରଥମ ପହଣ୍ଡି ଆରମ୍ଭ ହୁଏ । ରତ୍ନସିଂହାସନ ଉପରୁ ପୂର୍ବାଭିମୁଖୀ ହୋଇ ସିଧା ଗତି କରନ୍ତି ଜଗମୋହନସ୍ଥ ଗରୁଡ଼ସ୍ତମ୍ଭ ନିକଟକୁ । ଅଣସର ଗୃହ ଏବଂ ଜଗମୋହନ ମଧ୍ୟରେ ପଡ଼େ ଏକ ଗୁରୁତ୍ୱପୂର୍ଣ୍ଣ ଦ୍ୱାର, ଯାହାର ନାମ ଜୟ-ବିଜୟ ଦ୍ୱାର । ଜୟ ଓ ବିଜୟ ଏମାନେ ଦୁଇଭାଇ ଏବଂ ବିଷ୍ଣୁଭକ୍ତ । ସେଥିସକାଶେ ଏମାନେ ଶ୍ରୀମନ୍ଦିର ପ୍ରହରୀ ହିସାବରେ ଦୁଇ ପାର୍ଶ୍ୱରେ ରହିଛନ୍ତି । ଏହି ଦ୍ୱାର ନିକଟରେ ନୀତି ସଂପନ୍ନ ହେବା ପରେ ଗରୁଡ଼ ସ୍ତମ୍ଭ ସମ୍ମୁଖରେ ପହଞ୍ଚି ଉତ୍ତରାଭିମୁଖୀ ହୋଇ ସାତ ପାହାଚ ଦ୍ୱାରରୁ ପାଟଅଗଣା ମଧ୍ୟକୁ ଗତି କରନ୍ତି । ଏହି ସାତପାହାଚ ନିକଟରେ



ଟାହିଆ ଲାଗି ଓ ବନ୍ଦାପନା ହୁଏ । ପାଟଅଗଣାରେ ମହାଲକ୍ଷ୍ମୀଙ୍କୁ ସାମ୍ନାସାମ୍ନି ହୋଇଗଲେ ପୂର୍ବାଭିମୁଖୀ ହୋଇ ସିଧା ଆନନ୍ଦ ବଜାରକୁ ପ୍ରବେଶ କରି ଶେଷରେ ଉତ୍ତରାଭିମୁଖୀ ହୋଇ ସ୍ନାନମଣ୍ଡପ ଉପରକୁ ଉଠନ୍ତି ଏବଂ ପୂର୍ବାଭିମୁଖୀ ହୋଇ ବସନ୍ତି । ସ୍ନାନ ଉତ୍ସବ ପହଣ୍ଡିର ଯିବା ଆସିବା ମାର୍ଗ ଗୋଟିଏ । ସେଥିରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ତା'ପରେ ଶ୍ରୀଗୁଣ୍ଡିଚା ଉପଲକ୍ଷେ ମହାପହଣ୍ଡିରେ ଶ୍ରୀଜୀଉମାନେ ସ୍ନାନପୂର୍ଣ୍ଣିମା ପହଣ୍ଡି ପରି ଆନନ୍ଦ ବଜାରରେ ପ୍ରବେଶ ହେବା ପରେ ଠାକୁର ଦକ୍ଷିଣାଭିମୁଖୀ ହୋଇ ବାଇଶିପାହାଚ ଆଡ଼କୁ ଯାତ୍ରା କରି ପୂର୍ବାଭିମୁଖୀ ହୋଇ ଓହ୍ଲାଇ ଆସନ୍ତି ଏବଂ ଶେଷରେ ସିଂହଦ୍ୱାର ଅତିକ୍ରମ କରି ଥାଆନ୍ତି । ଯଥାକ୍ରମେ, ସର୍ବପ୍ରଥମେ ଶ୍ରୀସୁଦର୍ଶନ ଅରୁଣସ୍ତମ୍ଭ ଟପି ଦର୍ପଦଳନ ରଥ ଉପରକୁ, ପ୍ରଭୁ ଶ୍ରୀବଳଭଦ୍ର ତାଳଧ୍ୱଜ ରଥ ଉପରକୁ, ପରେ ଦେବୀ ସୁଭଦ୍ରା ଦର୍ପଦଳନ ରଥ ଉପରକୁ ଓ ଶେଷରେ ଜଗତରନାଥ ଜଗନ୍ନାଥ ମହାପ୍ରଭୁ ନନ୍ଦିଘୋଷ ରଥ ଉପରକୁ ଦକ୍ଷିଣାଭିମୂଖୀ ହୋଇ ଉଠନ୍ତି ଏବଂ ଉତ୍ତରାଭିମୁଖୀ ହୋଇ ରଥାରୂଢ଼ ହୁଅନ୍ତି । ଦର୍ପଦଳନ ରଥରେ ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ ଏକାଠି ବିଜେ ହୁଅନ୍ତି । ରଥଯାତ୍ରା ଉପଲକ୍ଷେ ରଥତ୍ରୟ ଯାତ୍ରା ସାରି ଗୁଣ୍ଡିଚା ମନ୍ଦିର ଆଗରେ ପହଞ୍ଚିବା ପରେ ତା' ପରଦିନ ରାତ୍ରୀ ସମୟରେ ରଥରୁ ଅବତରଣ କରି ଆଡ଼ପ ମଣ୍ଡପକୁ ପ୍ରବେଶ କରି ପ୍ରଥମେ ଗୁଣ୍ଡିଚା ମନ୍ଦିର ସିଂହଦ୍ୱାର ଅତିକ୍ରମ କରନ୍ତି ଏବଂ ପୂର୍ବାଭିମୁଖୀ ହୋଇ ସିଧା ଆସନ୍ତି ଦ୍ୱାରବତୀଙ୍କ ପାର୍ଶ୍ୱକୁ । ସେଠାରୁ ଅଗଣା ମଧ୍ୟକୁ ପ୍ରବେଶ କରି ଜଗମୋହନରେ ପ୍ରବେଶ କରନ୍ତି ଦକ୍ଷିଣାଭିମୁଖୀ ହୋଇ । ଗରୁଡ଼ଙ୍କ ଆଗରେ ପହଞ୍ଚି ପୁଣି ପଶ୍ଚିମାଭିମୁଖୀ ହୋଇ ଆଡ଼ପ ମଣ୍ଡପକୁ ଉଠନ୍ତି ଏବଂ ସର୍ବଶେଷରେ ପୂର୍ବାଭିମୁଖୀ ହୋଇ ଆସୀନ ହୁଅନ୍ତି । ଆଡ଼ପ ଉତ୍ସବର ପରିସମାପ୍ତି ପରେ ଗରୁଡ଼ଙ୍କ ସାମ୍ନା ହୋଇ ଜଗମୋହନସ୍ଥ ପ୍ରସ୍ଥାନ ଦ୍ୱାର ନିକଟରେ ଟାହିଆ ଲାଗି ଓ ବନ୍ଦାପନା ବଢ଼ିବା ପରେ ନାକଚଣା ଦ୍ୱାର ଦେଇ ଆସନ୍ତି ରଥ ଉପରକୁ । ଏହା ପୂର୍ବରୁ ଗୁଣ୍ଡିଚା ମନ୍ଦିରସ୍ଥ ସିଂହଦ୍ୱାରରୁ ରଥ ତ୍ରୟ ଆସି ଅନ୍ୟ ପାର୍ଶ୍ୱରେ ଥିବା ନାକଚଣା ଦ୍ୱାର ନିକଟରେ ଅବସ୍ଥାନ କରିଥାନ୍ତି । ଗୁଣ୍ଡିଚା ମନ୍ଦିରରେ ଠାକୁରମାନେ ପ୍ରବେଶ କରନ୍ତି ସିଂହଦ୍ୱାର ବାଟେ ଏବଂ ପ୍ରସ୍ଥାନ କରନ୍ତି ନାକଚଣା ଦ୍ୱାର ବାଟେ । ତେଣୁ ପ୍ରବେଶ ଏବଂ ପ୍ରସ୍ଥାନ ପହଣ୍ଡି ମାର୍ଗ ଏକ ନୁହେଁ । କିନ୍ତୁ ଶ୍ରୀମନ୍ଦିରରେ ସମସ୍ତ ପହଣ୍ଡି ମାର୍ଗ ଏକା ଅଟେ ।

ଶ୍ରୀଜୀଉମାନଙ୍କର ଏହି ଦିବ୍ୟ ପହଣ୍ଡି ଲୀଳା ଦର୍ଶନ କରି ନିଜକୁ ଧନ୍ୟ ମନେ କରିବା ପାଇଁ ଉଦ୍‌ବେଳିତ ହୋଇଉଠେ ଭକ୍ତର ହୃଦୟ । ବିଜେ କାହାଳୀ ବାଜିବା ସଂଗେ ସଂଗେ ଛାମୁଖୁଣ୍ଟିଆର 'ମଣିମା ମହାବାହୁ ହେ ବିଜେ କରିବା ହେଉ' ସମ୍ଭାଷଣ ପରେ ଭକ୍ତମାନଙ୍କର ଜୟ ଜଗନ୍ନାଥ, ପତିତପାବନ, ମହାବାହୁ, ବଳିଆର ଭୁଜ ଆଦି ସମ୍ବୋଧନ ସହ ବିବିଧ ବାଦ୍ୟର ନିନାଦ ମଧ୍ୟରେ ଲକ୍ଷ ଲକ୍ଷ ଦର୍ଶକଙ୍କ ହରିବୋଲ, ହୁଳହୁଳି ଧ୍ୱନି ମଧ୍ୟରେ କେତକୀ, ଦୟଣା, କସ୍ତୁରୀ, ଗୋରଚନା, ଚନ୍ଦନ, କର୍ପୂର, ଅଗୁରୁ ଆଉ କୁଙ୍କୁମର ଭୁରୁଭୁରୁ ବାସ ମଧ୍ୟରେ ଛତି, ତ୍ରାସ, ଆଲଟ, ଚାମରର ଦୋଳନ ମଧ୍ୟରେ ଶିରରେ ଦୁବ, ତୁଳସୀ, ବିଭିନ୍ନ ପୁଷ୍ପ ଓ ସୋଲଖଚିତ ଟାହିଆ ଲଗାଇ, କଟିରେ ପାଟଡୋର ବାନ୍ଧି, ସଂଗୀତଜ୍ଞମାନଙ୍କର ଗୀତ ତଥା ଛନ୍ଦୋମୟ ଦେବଦାସୀ ନୃତ୍ୟ ମଧ୍ୟରେ, ଘଣ୍ଟୁଆଳର ଏକତାଳି ଘଣ୍ଟର ତାଳେ ତାଳେ, ଝୁଲାହାତୀର ଝୁଲନ୍ତା ଚାଲିରେ, ଆଗକୁ ଦୁଇ ପାଦ ପଛକୁ ପାଦେ ଟାଣି ହୋଇ ଚତୁର୍ଦ୍ଦିଗରେ ପ୍ରେମାମୃତ ଧାରା ବର୍ଷଣ କରି କରି ଭକ୍ତମାନଙ୍କୁ କୋଳକରି ଶ୍ରୀଜୀଉମାନେ ପହଣ୍ଡି ବିଜେ କରିଥାନ୍ତି । ପହଣ୍ଡିବେଳେ ବିଗ୍ରହମାନଙ୍କୁ ଥରେ ସ୍ପର୍ଶ କରିବା ପାଇଁ ଜାତି–ଧର୍ମ–ବର୍ଣ୍ଣ ନିର୍ବିଶେଷରେ ଯେଉଁ ବ୍ୟାକୁଳତା ପ୍ରକାଶ ପାଉଥାଏ, ଯେଭଳି ଭାବେ ଠେଲାପେଲା, ଟଣାଓଟରା ଚାଲେ, ସେହି ମନୋରମ ଦୃଶ୍ୟକୁ ଦୂରରୁ ହେଉ ବା ନିକଟରୁ ହେଉ ଯିଏ ଥରେ ଦେଖିଛି, ତା'ର ମାନସପଟରୁ କେବେ ଲିଭିବାର ନୁହେଁ । ଭକ୍ତବତ୍ସଳ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରିୟସ୍ଥାନ ହେଉଛି ଭକ୍ତର ହୃଦୟ । ତେଣୁ ସେ ନିତ୍ୟ ବୈକୁଣ୍ଠସ୍ଥଳୀ ରତ୍ନସିଂହାସନ ପରିତ୍ୟାଗ ପୂର୍ବକ ଭକ୍ତମାନଙ୍କ ପରିସରକୁ ଆସି ତାଙ୍କର ଅଳି–ଅର୍ଦ୍ଦଳି, ମାନ–ଅଭିମାନ ଆଉ ଗାଳି–ଅପମାନ ସବୁ ସହ୍ୟ କରିଥାନ୍ତି । ପହଣ୍ଡି ସମୟରେ ତାଙ୍କ ମସ୍ତକରେ



ଦୋଳାୟିତ ଟାହିଆ, ଚାହାଣୀର ଅପୂର୍ବ ଠାଣି, ବାମକୁ ଦକ୍ଷିଣକୁ, ଆଗକୁ ପଛକୁ ଢଳି ପଡ଼ିବାର କମନୀୟ ଭଙ୍ଗୀ ଏସବୁ କୌଣସି ଦର୍ଶକକୁ ସ୍ଥିର କରି ରଖିପାରେନା । ତାଙ୍କ ଅସ୍ଥିର ଗତିରେ ସେବକ କୁଳ ଅସ୍ଥିର, ସାଜସଜ୍ଜା ଉପକରଣଧାରୀମାନେ ଅସ୍ଥିର, ଚାମର ସେବକ ଓ ସଂକୀର୍ତ୍ତନରତ ଭକ୍ତଗଣ ମଧ୍ୟ ଅସ୍ଥିର ହେବାର ଦେଖାଯାଏ । ପ୍ରଭୁଙ୍କର ଏହି ପହଣ୍ଡିକାଳୀନ ଛନ୍ଦାୟିତ, ଦୋଳାୟିତ, ମୁଦ୍ରାୟିତ ଘୁମନ୍ତ ଯାତ୍ରା କାହିଁ କେଉଁ କାଳରୁ ସଂଖ୍ୟାତୀତ ଭକ୍ତଗଣଙ୍କୁ ମୁଗ୍ଧ, ଚକିତ, ପ୍ରଭାବିତ, ରସାଣିତ,ଅନୁପ୍ରାଣିତ ଓ ଆମୋଦିତ କରି ଆସିଛି, ତା'ର ହିସାବ ନାହିଁ । ଜ୍ଞାନର ଗଭୀରତା ନେଇ କିଏ ତାଙ୍କର ଦିବ୍ୟଲୀଳାକୁ ଦେଖୁଛନ୍ତି ତ ଆଉ କିଏ ଆଧ୍ୟାତ୍ମିକ ଅନୁଭୂତି ସହ ଏକାକାର କରିଦେଇଛନ୍ତି ॥

ସଂପାଦକ– 'ଅଭିନନ୍ଦନିକା',
ସେନାପତି ଭବନ, ବଡ଼ଦାଣ୍ଡ, ପୁରୀ–୧

# ଯେତେ ଦୁଃଖ ମୋତେ ଦେ'ରେ କାଳିଆ

**ବିଜୟଲକ୍ଷ୍ମୀ ରାୟ**

ଯେତେ ଦୁଃଖ ମୋତେ ଦେ'ରେ କାଳିଆ ଆଞ୍ଜୁଳି ଭରି ମୁଁ ନେବି
ମୋତେ ଦୁଃଖ ଦେଇ ତୁ ହସୁଥିଲେ କାହାଆଗେ ଆଉ କହିବି
ପତିତ ପାବନ ଯାତ୍ରା ତୋର ଆଜି ପତିତ ଉଦ୍ଧାର ପାଇଁ
ମୋ ପରି ପତିତ ଜଗତରେ ନାହିଁ ଉଦ୍ଧାର କର ଗୋସାଇଁ
ନନ୍ଦିଘୋଷ ରଥେ ବିଜେ କରି ଅଛ ବାମନ ରୂପକୁ ଧରି
ସେ ରୂପ ଦେଖିଲେ ମଣିଷ ଜନମ ଆଉ ନୁହଁଇ କାହାରି
ନବଦିନ ଯାତ୍ରା କରିବା ପାଇଁକି ଯାଅ ଗୁପ୍ତ ବୃନ୍ଦାବନ
ତୋର ନାମ ଧ୍ୟାୟୀ ତୋର ନାମ ଗାଇ ସରିଯାଉ ମୋର ଦିନ
ଜନମେ ଜନମେ ତୋର ପଦ୍ମପାଦେ ମନମୋର ରହିଥାଉ
ତୋର ବଡଦାଣ୍ଡେ ନୀଳଚକ୍ର ଚାହିଁ ଏ ପିଣ୍ଡରୁ ପ୍ରାଣ ଯାଉ ।

ପ୍ଲଟ୍ ନଂ– ୬କେ, ଚିନ୍ତାମଣିଶ୍ୱର
ଭୁବନେଶ୍ୱର



# ଜଗତ ଜୀବନ

**ଗଣେଶ ଚନ୍ଦ୍ର ଦାଶ**

ହେ ପରମ ପିତା ପରମେଶ୍ୱର ହେ
ତୁମେ ଜଗଦୀଶ ଜଗନ୍ନାଥ
ତୁମ ନାମ ରସ ଜଗାଏ ଜୀବନେ
ସଦା ମୁକତିର ଗତିପଥ ।
ହେ ଜଗତ ବନ୍ଧୁ କୋଟି ପ୍ରାଣଇନ୍ଦୁ
ଏ ସାରା ଜଗତର ଜୀବନ
ହେ ଚକା ନୟନ ଶ୍ରୀମଧୁସୂଦନ
ଭକତର ଜଗମୋହନ
ତୁମେ ଗଢୁଥାଅ ଧରାରେ ଜୀବନ
ତା' ଭିତରେ ତା'ର ମନୋରଥ ।
ତୁମେ ଅମେଇଶା ଅମାବୋଲା ରାତି
ପୁନେଇଁ ରାତିର କଉମୁଦୀ
ଶୀଳାବୁକୁ ଚିରି ଆସ ଯେବେ ଝରି
କର ଝରଣାକୁ ରୂପବନ୍ତ ।

ଘର ନଂ ଇ–୨୨, ୟୁନିଟ୍–୭
ଭୁବନେଶ୍ୱର





# ସୂକ୍ଷ୍ମ ପରାଜୟ

ଡାକ୍ତର ସରୋଜିନୀ ଷଡଙ୍ଗୀ

ତୁମ ଦିବ୍ୟରୂପ ଏବଂ
ତୁମ ଦୁଇ ଅପଲକ
ନେତ୍ରର ପାଖୁଡ଼ା,
ତୁମ ମହାବାହୁ ଆଉ ପଦ୍ମପାଦ,
ଲେଖନୀ ମୁନରେ ଥରେ
ରଚନା କରିବେ ବୋଲି,
ତୁମ ଦାରୁବ୍ରହ୍ମ ମୂର୍ତ୍ତି
ଆଖିମେଲି ଥରଟିଏ
ଦର୍ଶନ କରିବେ ବୋଲି,
ତୁମ ସୂକ୍ଷ୍ମ ସତ୍ତାଟିକୁ
ଅନୁଭବୀ ନେବେ ବୋଲି,
କେତେ କେତେ କବି, ବାଗ୍ମୀ
କଥାକାର, ଋଷି ଓ ମହର୍ଷି
କେତେ ଶିଳ୍ପୀ, କେତେ ଭକ୍ତ
ସାଧୁ ଓ ସନ୍ନ୍ୟାସୀ,
ମହାମହା ଚିତ୍ରକରମାନେ
ଶହ ଶହ ବର୍ଷ ଧରି
ତୂଳୀରେ ଆଙ୍କିଲେ ତୁମ
ସୁଶୋଭିତ ଚିତ୍ର ।
ଶିଳ୍ପୀ ତ' ନିହାଣ ମୁନେ
ଫୁଟାଇଲେ ଅପୂର୍ବ ଶିଳ୍ପର କଳା
ପଥରର ବୁକୁଫାଟି
ଉଭାହେଲେ ଶ୍ରୀବିଗ୍ରହମାନେ
ହୋଇ ସତେ କେଡ଼େ ପ୍ରାଣବନ୍ତ !



କବି ଆଉ କଳାକାର
ଭକ୍ତିର ଅପୂର୍ବ କାଳି
ଭରିଦେଇ କଲମରେ
ଫୁଟାଇଲେ କାଗଜରେ
ମୁଗ୍ଧ ତୁମ ବେଶ ରୂପବନ୍ତ ।
ତୁମ ସୃଷ୍ଟି ସାରାଂଶର
ଉନ୍ମୋଚନ ପାଇଁ
ଭକ୍ତମାନେ, କେତେକେତେ
ଉପାୟ ଖୋଜିଲେ
କିଏ ନ୍ୟୁନ ହୋଇ ତୁମ ପାଦ ମଂଚାଳିଲା
କିଏ ଦେଲା ଆଲଟ ଚାମର,
କିଏ ସେ ଆଖି ଲୁହରେ
ପଦ୍ମ ପାଦ ଧୋଇଦେଇ
ପିନ୍ଧା ଗାମୁଛାରେ ତୁମ
ଦେହ ପୋଛିଦେଲା ।
କିଏ ଗାଳିଦେଲା ପୁଣି,
କିଏ ପଦାଘାତ କଲା
କିଏ ଦେଲା ଅରୁଣସ୍ତମ୍ଭ ପାଖରୁ,
ନଡ଼ିଆ ବଢ଼େଇ,
କିଏ ସେ ଅଭିମାନରେ
ଦର୍ଶନ ନକରିପାରି,
ନନ୍ଦିଘୋଷ ରଥେ,
ଲୁହରେ ଭିଜାଇ ବାଲି
ବାଙ୍କୀ ମୁହାଣକୁ ଯାଇ



ଗଢ଼ିଦେଲା ବାଲି ରଥ
ତୁମେ ସେଠି ବିଜେ ହେବ ବୋଲି !!
କିଏ ହେଲା ବଶମ୍ବଦ
କିଏ ଅନୁଗତ,
କେତେ ସାଧୁ ମନୀଷୀଙ୍କ
ତତ୍ତ୍ୱ, ତର୍କ, ଧର୍ମ ଆଉ
ବେଦ ମାଧ୍ୟମରେ
ହେଉଥିଲା ବାକ୍ୟ ବିନିମୟ,
ତୁମକୁ ବଖାଣିବାକୁ,
ତୁମ ପାଇଁ ଶବ୍ଦ, ଛନ୍ଦ, ତାଳ, ଲୟ
ଖୋଜୁ ଖୋଜୁ, ମିଳୁଥିଲା
ସୂକ୍ଷ୍ମ ପରାଜୟ ।
ସତରେ କି କେହି କେବେ
ପାଇଛନ୍ତି ତୁମ ପରିଚୟ ?
ନିର୍ଦ୍ଧାରଣ କରିଛନ୍ତି
ତୁମ ସୀମା ସରହଦ
ଦେଖିଛନ୍ତି ତୁମ ଦୁଇ
ଦ୍ୟୁତିର ଗୋଲକ ?
ତୁମ ରହସ୍ୟର ଉତ୍ସ ଖୋଜୁ ଖୋଜୁ
ଚାହିଁ ଚାହିଁ ସରିଯାଏ ଦିନରାତି,
ସରିଯାଏ ଅନନ୍ତ ସମୟ,
କେଉଁଠୁ ଆରମ୍ଭ ତୁମ
କେଉଁଠାରେ ଶେଷ ?
କେଉଁଯାଏ ବ୍ୟାପ୍ତ ତୁମ
ସୃଷ୍ଟିର ବଳୟ ?
କେଉଁଠାରେ ଅସ୍ତଯାଅ
କେଉଁଠାରେ ହୁଅ ତୁମେ
ପୁନଶ୍ଚ ଉଦୟ ?

ଲିଙ୍କ୍‌ରୋଡ଼, କଟକ-୧୨

# ଜଣାଣ

**ଚନ୍ଦ୍ରଶେଖର ପଣ୍ଡା**

ଜୟ ଜୟ ଜନପ୍ରିୟ ପ୍ରଭୁ ଅନ୍ତର୍ଯ୍ୟାମୀ
ସର୍ବଘଟେ ଅଛପୂରି ଜଗନ୍ନାଥ ସ୍ୱାମୀ
ତୁମେ ଗତି ମୁକ୍ତି ଧାମ
ତୁମ୍ଭ ଗୁଣ କିବର୍ଣ୍ଣିବି ମୁଁ ମୂଢ଼ ଅଧମ ।
ତ୍ରିଭୁବନ ମନୋଲୋଭା କିସୁନ୍ଦର ରୂପ
ବାର ବେନି ପୁରେ କେବା ହେବ ତୁମ୍ଭ ଯୋଖ
ଭକତ ହିତେ ଶ୍ରୀହରି
ନୀଳ କନ୍ଦରେ ବସିଛ ଶଂଖଚକ୍ରଧାରୀ ।
କିମଂଜୁଳ ଧଣ୍ଡାମାଳ ରାହୁରେଖା ଶିରେ
ପୁଣ୍ଡରୀକ ନେତ୍ରେ ଡୋଳା ଭୃଂଗ ଯେହ୍ନେ ଖେଳେ
ଶିରେ ସୁରମ୍ୟ ଟାହିଆ
ହେମ ବ୍ୟାଘ୍ର ନଖ ଦେଖି ଭକତେ ବାଇଆ ।
ନମୋ ନମଃ ଜଗଦୀଶ ଅନାଦି ପୁରୁଷ
ବରୁଣାଳୟ ଶ୍ରୀହରି ନୀଳାଚଳାଧିଶ
ରୂପ କେଡେ ମନୋଲୋଭା
କୋଟି କାମ ସମ ନୁହେଁ ତୋ ଶ୍ରୀଅଂଗ ଶୋଭା ।
ଶ୍ରୀରଙ୍ଗ ଅଧରେ ତୁମ ଦରୋଟିଆ ହସ
ଦେଖି କୋଟି ଜନ୍ମ ଦୁଃଖ ଆହେ ପୀତବାସ
ଅପଲକେ ଘୁଞ୍ଚିଯାଏ
ନବଜଳ ଧରେ ଯଥା ଚପଳା ପରାଏ ।





ନୟନାଭିରାମ ନବ ଦୂର୍ବାଦଳ ଶ୍ୟାମ
ଭକତ ବାନ୍ଧବ ହରି ଗତି ମୁକ୍ତି ଧାମ
ଭକ୍ତ ଜନ ମୋକ୍ଷ ଗୃହ
ତୁମ୍ଭ ଶ୍ରୀପୟରେ ମୋର ସଦା ଥାଉ ଲୟ ।
ଅନିତ୍ୟ ସଂସାରେ ନିତ୍ୟ ତୁମେ ଜଗଦୀଶ
ଜଗନ୍ମିଥ୍ୟା ତୁମେ ସତ୍ୟ ଅନାଦି ପୁରୁଷ
ନମୋ ନବ ଜଳଧର
ସଚିଦାନନ୍ଦ ବିଗ୍ରହ ମୁକତିର ଦ୍ୱାର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ତୁମେ ଆହେ ଦନୁଜାରି
ନାମଧରି ଦେଲେ ପାପୀ ଭବୁଯାନ୍ତି ତରି
ଆହେ ଶରଣ ପଂଜର
ବିଷୟା ବିଷକୁ ଗଦ ତୁମ୍ଭେ ଚକ୍ରଧର ।
ଶୁକ ସନାତନ ଆଦି କେତେ ବ୍ରହ୍ମବେତା
ନପାଇ ତୁମ ଦର୍ଶନ ତପସାଧି ବୃଥା
ଭାବି ହୋଇଲେ ବିମୁଖ
କେବା ତୁମକୁ ଜପୁଛି କଳପ କଳପ ।
ପତିତ ପାବନ ପତିତପାବନେ ଡାକି
ପାତକ ନାଶୁଛ ପରା ପରଖି ପରଖି
ଆହେ ଲକ୍ଷ୍ମୀ ପ୍ରାଣଧନ
ଆରତେ ଡାକୁଛି ଶୁଣ ଆରତ ନାଶନ ।
ଏ ଜନମେ ଅବା ପୂର୍ବ ଜନମେ ଯେତେକ
ପାତକ ଅରଜି ଅଛି ଆହେ ପଦ୍ମମୁଖ
କୃପାଜଳେ ଧୋଇ ଦେବ
ସମନ ଦଣ୍ଡ ଯେଶନ ମୋତେ ନଲାଗିବ ।

---

ପ୍ଲଟ୍ ନଂ –୧୮୫୩/୩୭୨୦, କପିଳ ପ୍ରସାଦ
ପୁରୁଣା ଭୁବନେଶ୍ୱର

# ନୀଳାଦ୍ରି ଭ୍ରମର ବଡ଼ ବିଚିତ୍ର !!

ଇଂଜିନିୟର ରଘୁନାଥ ପାତ୍ର

ଶ୍ରୀଭୁଜ, ଉଦରେ ପଦ୍ମହାର ଲୋଳେ
ହୃଦେ ହୃଦପଦ୍ମ ନିତି
କମଳିନୀ ପ୍ରିୟ କରୁଣା ଆଳୟ
ପ୍ରଭୁ ପଦ୍ମାଳୟା ପତି ।
ମାଳତୀ ଟଗର ପ୍ରିୟ ନଟବର
ସୁଗନ୍ଧରାଜ ସୁମନ
କେତକୀ ଚମ୍ପକ ଗୋଲାପେ ରସିକ
ଦିଶନ୍ତି କି ସୁଶୋଭନ ।
ତମିସ୍ରା ଗୋପନ ପୀରତିରେ ଧନ୍ୟ
ମଣେ କ୍ଷୁଦ୍ର ଜାଇ ଫୁଲ



ପ୍ରକାଶ୍ୟ ପ୍ରେମରେ କମଳିନୀ ଲୋଳେ
ଆଲୋକେ, ତିମିରେ ଖେଳ ।
ନିଭୃତ ନିକୁଞ୍ଜେ ରାଧା ସଙ୍ଗେ ରଞ୍ଜେ
ପ୍ରାସାଦେ ରକ୍ମିଣୀ ସାଥେ
ଗୋପନେ ପୀରତି ପ୍ରକାଶ୍ୟରେ ପ୍ରୀତି
କରନ୍ତି ରଚନା କେତେ !
ଜୀର୍ଣ୍ଣ କୁଟୀରରେ କୁବୁଜା ସଙ୍ଗରେ
ପୀରତି କଲେ ଗୋବିନ୍ଦ
ପୂର୍ଣ୍ଣକାମ ହରି ଭାବ ଅନୁସରି
ଦିଅନ୍ତି ଜୀବେ ଆନନ୍ଦ ।



କ୍ଷୁଦ୍ର ବା ବୃହତ ତିଳେ ବିଶ୍ୱତାତ
ନ ଆଣନ୍ତି ମନେ କେବେ
ସୃଷ୍ଟି ସଙ୍ଗେ ଲୀଳା ରଚି ଚକାଡୋଳା
ଲୀଳାମୟ ହରି ଭବେ !
ପୁରୁଷ ପ୍ରକୃତି ଲୀଳା ଦିବାରାତ୍ରି
ପ୍ରକାଶ୍ୟେ ଗୋପନେ ଚାଲେ
କେବେ ମାଧୁର୍ଯ୍ୟରେ କେବେ ଐଶ୍ୱର୍ଯ୍ୟରେ
ବୃନ୍ଦାବନେ, ଦ୍ୱାରକାରେ ।
ଗୋପିକା ଗୋପାଳ ଲୀଳା ସୁମଧୁର
ଦ୍ୱାରକାରେ ପଡ଼େ ମନେ
ସ୍ଥୂଳରେ ଐଶ୍ୱର୍ଯ୍ୟ ସୂକ୍ଷ୍ମରେ ମାଧୁର୍ଯ୍ୟ
ପ୍ରାସାଦେ, ହୃଦ ବିପିନେ ।

ଆଷାଢ଼ ମାସରେ ରଥଯାତ୍ରା ଛଳେ
ତେଜି ରତ୍ନସିଂହାସନ
ସୁନ୍ଦରାଚଳରେ ବିଜେ ପ୍ରେମ ଭୋଳେ
ନୀଳାଦ୍ରି ଆନନ୍ଦ ଘନ ।
କବି ରଘୁ ଭାଷେ ବାତ୍ସଲ୍ୟ ସୁରସେ
ଲୀଳା ପଦ୍ମାଳୟା କାନ୍ତ
ପୁରୁଷ ପ୍ରକୃତି ଲୀଳା ଦେଖି ନିତି
ଜୀବନ ମଣେ କୃତାର୍ଥ !

ବୃନ୍ଦାବନ ଧାମ
ଲୋକନାଥ ରୋଡ଼
ପାଟଣାହାଟ ସାହି ଛକ–ପୁରୀ–୭୫୨୦୦୧

# ଶଙ୍ଖରେ ପୂରାଇ ଚକ୍ରରେ ରଖ

ଡକ୍ଟର ସୁନାମଣି ରାଉତ

ଧନ୍ୟପ୍ରଭୁ ତୁମ ସୁନ୍ଦର ସଂସାର
ଧନ୍ୟ ତୁମର ଏ ମାନବ ଲୀଳା,
କେବେ ତୁମେ ବ୍ରହ୍ମ ଦାରୁରେ ବିରାଜ
କେବେ ପୁଣି ଶାଳଗ୍ରାମରେ ଶିଳା ।
ତୁମେ ତ ନିର୍ଗୁଣ, ସଗୁଣ ସଦୃଶ
କେବେ ହୁଅ ଦୃଶ୍ୟ, ଅଦୃଶ୍ୟ କେବେ,
ପରା–ଅପରାର ବିଦ୍ୟାରେ ତୁମେତ
ଅଗୋଚର ହୁଅ ମାନବେ, ଦେବେ ।



ତୁମ ଚକା ଆଖି ଭିତରେ ରହିଛି
ସସାଗରା ଧରା ବ୍ରହ୍ମାଣ୍ଡ ବିଶ୍ୱ
ତୁମେ କରିଅଛ କାହାକୁ କୁବେର
କାହାକୁ କରିଛ ନିରୀହ ନିଃସ୍ୱ ।
ହେ ବଡ଼ଠାକୁର ତୁମ ବଡ଼ଦାଣ୍ଡେ
ଗଡ଼ିଗଡ଼ି ଯାଉ ରଥର ଚକ
ଆହେ ଜଗନ୍ନାଥେ ଏଇ ଜଗତକୁ
ଶଙ୍ଖରେ ପୂରାଇ ଚକ୍ରରେ ରଖ ।

ରାଜାବଗିଚା, କଟକ –୯



# ଲୀଳାକମଳ

ରକ୍ଷକ ନାୟକ



ସମୟକୁ ସର୍ଜନା କରି
ତାକୁ ନାନା ରୂପ ଦେଲ
ଗ୍ରହ, ତାରା, ନକ୍ଷତ୍ର, ଅଥଳ ଶୂନ୍ୟତା
ଜୀବ ଓ ଜଗତ, ସୃଷ୍ଟିର ସ୍ଥାପତ୍ୟ
ପ୍ରାଣର ପୁରାଣର ତୁମେ ଲିପିକାର
ରହସ୍ୟର ସୌନ୍ଦର୍ଯ୍ୟରେ
ସମସ୍ତଙ୍କୁ ଆସକ୍ତ କରିଲ ।
ତୁମେ ହିଁ ସବୁର ସାରାଂଶ, କେବେ
ଅଣୁରେ ତ କେବେ ଅଣାକ୍ଷରରେ
କେବେ ଦ୍ୟୁତିରେ ତ କେବେ ଦର୍ଶନରେ
କେବେ ଭାବରେ ତ କେବେ ଚତୁର୍ଦ୍ଦଶ ଭୁବନରେ
ଜ୍ଞାନାତୀତ, ଚିର ଅଗୋଚର,
ଶୂନ୍ୟାକାର, ପୂର୍ଣ୍ଣାକାର ।
ତୁମେ ହିଁ ଆରମ୍ଭ, ତୁମେ ହିଁ ଅନ୍ତ
ତୁମେ ହିଁ ପୃଥିବୀ, ତୁମେ ହିଁ ପଥ
ତୁମେ ଆଲୋକର ଏକୁଡିଶାଳ
ଅନ୍ଧାରର ଲିପିକାର, ତୁମେ
ବିରଚିତ ଯେତେ ଯେତେ
ସେତେ ବେଶୀ ବିଷୟାନ୍ତର ।
ମିଛ ବୋଲି କିଛି ନାହିଁ ସତର ସୂତ୍ର ସ୍ଥିର ନାହିଁ
ଯେତିକି ଉଭା, ସେତିକି ପୋତା
ଠଉରାଇ ହୁଏ ନାହିଁ
ତୁମ ଠାର ବୁଝୁବୁଝୁ
ସହସ୍ର ବାର ସମୟର ସୃଷ୍ଟି ଓ ଲୟ
ହୋଇଥାଇ ।
ସବୁ ତୁମରି ଭିଆଣ
ଦୃଶ୍ୟ ଓ ଦର୍ଶକ, ଚିତ୍ର ଓ ଚେତନା
ଯେତିକି ଗମି ପାରିବ, ସେତିକି ପାଇବ
ଅନ୍ତହୀନ ଅନ୍ୱେଷଣ
ତୁମେ ଅନ୍ୱେଷଣର ଅନ୍ୟ ଏକ ନାମ ।
କେବେଠୁ କେଜାଣି, ତୁମେ ଏଇ
ସମୟର ସାଗର କୂଳରେ
ଲୀଳା ରଚିଛ, ନିଜେ ଲୀଳା ହୋଇ
ମାୟା ଲଗେଇଛ, ଲୀଳାକମଳ ହୋଇ
ସମସ୍ତଙ୍କୁ ବିଭୋର କରୁଛ ।

ରାଜ୍ୟପାଳଙ୍କ ଲୋକସମ୍ପର୍କ ଅଧିକାରୀ
ରାଜଭବନ, ଭୁବନେଶ୍ୱର

# ବେଗେ ହୁଅ ସଜବାଜ

ମିନତି ମହାପାତ୍ର

ମନ ଚାହୁଁଛି ଯିବି ଶ୍ରୀକ୍ଷେତ୍ର
ବେଗି ବେଗି ହୋଇ ବାହାରି ପଡ଼ିଲି
ଯିବାକୁ ମୁ ହିଁ 'ଶ୍ରୀକ୍ଷେତ୍ର' ।
ଶରଧା ବାଲିକୁ ମୁଣ୍ଡେ ମାରିଦେଇ
ଚଳିଲି ମୁଁ 'ଶ୍ରୀମନ୍ଦିର'
ସ୍ନାନ ମଣ୍ଡପରେ ବିଜେ କରିଛନ୍ତି
ଭାଇ, ଭଉଣୀ କି ସୁନ୍ଦର ।



ସ୍ନାନ କରାଇବେ, ସ୍ନାନ ମଣ୍ଡପରେ
ସେବକମାନେ ତାଙ୍କର
ଦୂର ଦୂରାନ୍ତରୁ ଭକତ ଆସିଛନ୍ତି
ଦେଖିବେ ସ୍ନାନ ତାଙ୍କର ।
ଆହା କେତେ ଜଳ ଢ଼ାଳି ଯାଉଛନ୍ତି
ନିଘାନାହିଁ ତ କାହାର,
ଅଣ୍ଡାଲାଗି ଜ୍ୱର ହୋଇବ ନିଶ୍ଚୟ
ଭାଇ,ଭଉଣୀଙ୍କୁ ଏଥର ।
ଘୋଡ଼ାଘୋଡ଼ି ହୋଇ ଶୋଇଯିବେ
କେତେ ବଇଦ ଆସିବେ ଧାଇଁ,
ପଥି ପାଚନ ତ ରନ୍ଧାହେବ
ଆଉ ଅବଢା ମିଳିବ ନାହିଁ ।



ବେଶ କରାଇବେ ଅପୂର୍ବ ରୂପରେ
ଦେହ ହୋଇଗଲେ ଭଲ,
ଆନନ୍ଦେ ସେବକ କହିବେ ଠାକୁରେ
'ରତ୍ନସିଂହାସନେ' ଚାଲ
'ନେତ୍ରୋତ୍ସବ' ଆଜି ହେବ ଯେ ତୁମର
ସଜଡ଼ା ହୋଇଛି ଚିଜ,
ମାଡ଼ି ଆସିଯିବେ ଭକତ ତୁମର
ବେଗେ ହୁଅ 'ସଜବାଜ' ।

ଏନ୍ ୧/୨୦ ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର

---

# ଧାନ ଦେଲେ ନାହିଁ କାହା ଚିନ୍ତାରେ

**ଉର୍ମିଳା ଷଡ଼ଙ୍ଗୀ**

ଝିପି ଝିପି ହେଇ ବରଷା ଝରେ
ଡ଼ାହୁକ ଡ଼ାକୁଛି ରଥ ଉପରେ
ଦେଇ ଘୋର ରଡ଼ି ରଥ ଯାଏ ଗଡ଼ି
ବଡ଼ ଦିଅଁଙ୍କର ବଡ଼ ଦାଣ୍ଡରେ ।
ମହାଦେଇଙ୍କର ଶୁଖିଛି ମୁହଁ
ଅନ୍ତର ଭିତରେ ଭରିଛି କୋହ
କାହାକୁ କହିବେ କିପରି କହିବେ
ପ୍ରଭୁ ନେଲେ ନାହିଁ ତାଙ୍କୁ ସାଥିରେ ।
କଳପ ବଟ ବିକଳେ ଚାହିଁଛି
ଗତ ଦିନ କଥା ମନେ ଭାବୁଛି
ପ୍ରଭୁ କରିଥିଲେ ମତେ କେତେ ଆପଣାର
କେଉଁ ଅପରାଧ ପାଇଁ କରିଲେ ସେ ପର



ଭାଇଭଉଣୀଙ୍କୁ ସଂଗତେ ନେଇ
ଜନମ ବେଦିକୁ ଗଲେ ଗୋସାଇଁ
ଆହକେ ଶୋଇବେ ମୋ ଛାଇରେ ।
ସିଂହଦ୍ୱାର କାନ୍ଦୁଛି ଶରଧା ବାଲି ହସୁଛି
ଦେବଦାସୀ ପଣତରେ ଲୁହ ପୋଛୁଚି
ଆନନ୍ଦ ଲହରି ଖେଳେ ଘଣ୍ଟ ଘଣ୍ଟା ଶବଦରେ
ବଡ଼ଦାଣ୍ଡ କହେ ମୋର ବଡ଼ ଭାଗ୍ୟରେ
ଭକ୍ତ ଭାବଭୋଳା ପ୍ରଭୁ ଚକାଡ଼ୋଳା
ଭକତଙ୍କୁ ଦେଖି ହୋଇ ମହା ଖୁସି
ଧାନ ଦେଲେନାହିଁ କାହା ଚିନ୍ତାରେ
ରଥ ଗଡ଼ିଯାଏ ବଡ଼ ଦାଣ୍ଡରେ ।

ନନ୍ଦ ଏନ୍‌କ୍ଳେଭ, କପିଳ ପ୍ରସାଦ, ଭୁବନେଶ୍ୱର–୨



# ମାଧବ ହେ ଦୀନ ବାନ୍ଧବ

ଶରତ କୁମାରୀ ମିଶ୍ର

ମାଧବ ହେ ଦୀନ ବାନ୍ଧବ ହରି
ତୁମର ମଧୁର ରୂପ
ମଧୁମୟ ତୁମ ଚରଣାମୃତକୁ
ପାଇବାକୁ ମୁଁ ଇଚ୍ଛୁକ ।
ମର୍ଯ୍ୟାଦା ପୁରୁଷୋତ୍ତମ ସଙ୍ଗ ପାଇଁ
ମୁହିଁ ଅଟଇ ପ୍ରଲୁବ୍ଧ
ମଧୁସ୍ୱନ ତୁମ ବଂଶୀରୁ ଝରିଲେ
ଶ୍ରବଣେ ଗୋପିକା ମୁଗ୍ଧ ।
ମନସ୍ଥ କରିଛ ତୁମକୁ ପୂଜିବି
ଥିବାଯାଏଁ ଜୀବନରେ
ମହିମା ତୁମର ଗାଇ ବୁଲୁଥିବି
ମୁଁ ମେଘ ମହ୍ଲାର ସୁରେ ।
ମନୋରଥ ମୋର କରିବି ପୂରଣ ତୁମେ ତ ଅନ୍ତରଯ୍ୟାମୀ
ମଙ୍ଗୁଆଳ ହୋଇ ପାରି କରିଦେବ
ମୋତେ ତପ୍ତ ବୈତରଣୀ ।



ମଂଜରୀ ତୁଳସୀ ଦେଇ ପଦ୍ମ ପାଦେ
ମନକଥା ଜଣାଇବି ମଙ୍ଗଳମୟହେ ତୁମକୁ ଦେଖିଲେ
ସବୁ ଦୁଃଖ ଭୁଲିଯିବି ।
ମହୀପାଳ ତୁମେ ମହୀୟାନ ଯେଣୁ
ମୋ କଥା ନିଶ୍ଚେ ବୁଝିବ
ମରଣ ବେଳରେ ସାହା ହେବ ମୋର
ତୁମ ରୂପ ଦେଖାଇବ ।
ମନ ମୋ କହୁଚି ତୁମ ଦୟା ହେଲେ
ହୋଇବ ସବୁ ପୂରଣ ।
ମାଧମ ହୋଇବ ଯଦି ତୁମେ ମୋର
ନାମ କରିବି ସ୍ମରଣ ।

ଏନ ୫/୧୨୮
ଆଇ.ଆର.ସି ଭିଲେଜ, ଭୁବନେଶ୍ୱର

# ଶୁଣ ମୋ ବିନତି

ରବି ମହାପାତ୍ର

ଦୁଃଖ ମନେ ଭରି
ଆସିଛି ମୁଁ ପୁରୀ
ଜଗତର ନାଥ ଭରସା ଚାହିଁ
ମୁଁ ଯେ ହୀନିମାନ କରେ ନିବେଦନ
ବଡ଼ଦାଣ୍ଡେ ହାତ ପାତୁଛି ରହି ।
ଯାଏ ଦିନବେଳା ଦେଖି ଚକାଡୋଳା
ରାତି ରାତି ବଳେ ନଖ ସଳିତା
ଜଳୁଥିଲେ ଦୀପ ଭକତ ହାତରେ
ମୋ ଦୁଃଖ ଜାଣିବେ ଦିଅଁ ଦେବତା



ଅସଜଡ଼ା ସିନା ମୋ ପରାଣ ଦୀପ
ସଜାଡୁଛି ପ୍ରଭୁ ଦୀପ ସଳିତା
ନିରିମାଖିର ଏ ଦଦରା ନାବରେ
ମୋହନ ମୂରଲୀ ଆହୁଲା ଦାତା
ଦୀନବନ୍ଧୁ ହେ ମାଗୁଛି ଏତିକି
ମୋ' ରାତି ଯାଉ ସଅଳ ପାହି ।

୩୪୪/୬୭, ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର-୧୮



# ଦାସିଆ ବାଉରି

ସୂର୍ଯ୍ୟ ମିଶ୍ର

ଶାଗ ଓ ପଖାଳ
ମାଟି କାଦୁଅର ଘର
ନାହିଁ ପିଲାପିଲିଙ୍କ ଜଂଜାଳ
କି ଦାଂପତ୍ୟର ଦାଉ, ଅବାଂତର
ନିରବ ସଂସାର
କେବଳ ନାମଟି ସାର ଜଗନ୍ନାଥଂକର ।

ଲୁହରେ ମାଖି ଶ୍ରୀଫଳ
ନାସିରେ ଗୁଂଥି ଜୀବନ ଯାତନାର
ଯାବତୀୟ ମୂଳ
ପଠାଇଦିଏ ଶ୍ରୀପୁରସ୍ତମ
ଅବିଦ୍ୟା ଅଂଧାରର ଅଗଣାରେ
ଫୁଲ ପ୍ରାୟେ ଫୁଟଂତି ତାରାଏ
ଯୋଡହାତରେ ଥରନ୍ତି ଭଗତେ ।
ବିରଳ ପ୍ରଣାମୀ
ଅଦୃଶ୍ୟରେ ଆଦରି ନିଅଂତି ହାତପାଦହୀନ ଈଶ୍ୱର,
କାନ ଡେରି ଶୁଣଂତି
ବ୍ରାହ୍ମଣ ଓଠରୁ ହଜିଯାଇଥିବା ନୈବେଦ୍ୟ ମଂତ୍ର
ନିରବ ଉଚ୍ଚାରଣରେ ଦଳିତର ।
ବାଡିଗଡିଆର ଜଳ ଭଉଁରୀରେ
ଛାଇ ପଡେ ରଥଯାତର,
ଶବ୍ଦରେ ତୋରାଣି କଂସାର
ନାଦ ମିଶେ ଘଂଟ କାହାଳୀର ।

ହାତ ଯୋଡେ ଜଣେ କୋତରା ଅଛବ
ଅଂଟିରେ ପାତି ଅଳଂକାର
ବରାଭୟ ଭକ୍ତିର, ସମର୍ପଣର ।
ଈଶ୍ୱରଂକୁ ଦାନ ଦିଆ ଯେତେ ଅଳଂକାର
ସବୁ ମହଳଣ ମୂଲ୍ୟହୀନ ବ୍ୟର୍ଥ ଆଡଂବର
ସମ୍ରାଟ ବସାଂତି ଦଳିତକୁ
ସିଂହାସନରେ ଆମ ସ୍ମୃତିକୋଷର,
ଜୀବନ ଆଗରେ ତୁଚ୍ଛ ଆମେ,
ଅଦୃଷ୍ଟର ଇଲାକାରେ ଅସ୍ତ୍ରହୀନ ଦୁଃସ୍ଥ ଅଧୀଶ୍ୱର ।
ପ୍ରମାଣ ରହେ ଚିରକାଳ–
ଜାତି ଭେଦ ଓ ସଂକୀର୍ଣ୍ଣତାର ଉପରେ
ସୂତ୍ରଟିଏ ସବୁ ମଣିଷଂକ ସମାନତାର,
ଈଶ୍ୱର ହିଁ ମହାନାୟକ ଗଣତଂତ୍ରର, ମାନବତାର,
ରାଜନୀତି ଓ ଦର୍ଶନର ଖୋଲାଯାଏ କବର,
ଘୋଷିତ ହୁଏ ଅଲିଖିତ ନିୟମଟି ଧର୍ମର ଓ ସାରା ସଂସାରର ।
ଅମୃତ ସଂତାନ ହୋଇ
ଦଳିତଟି ସବୁ କାଳେ ହାଣଇ ଆଘାତ,
ନିଃଶବ୍ଦେ ଘୋଷଣା ହୁଏ
ଆମର ତଥାକଥିତ ପ୍ରାର୍ଥନା ଓ ଅହଂକାର ଛଳନା ମିଶ୍ରିତ
ମୋଟେ ନୁହଁ ଅର୍ଥମୟ, ଆଦୌ ନୁହେଁ ସତ ।

୮୯୫/୮୯୬, ସତ୍ୟନଗର, ଭୁବନେଶ୍ୱର-୭





# ଜୀବନ ଯାଉଛି ସରି

ସନ୍ତୋଷ କୁମାର କାନୁନ୍‌ଗୋ



ଆସିଛି ଖାଲି ଯିବି ମୁଁ ଆଉ
ତୁମର ଏସବୁ ସୃଷ୍ଟି
ପ୍ରଣାମ କରୁଛି ବିନମ୍ର ଭାବରେ
ଦୁଇ ହାତ ଟେକି, ଟେକି ।
କରମ ଆଦେରି ପଡ଼ି ରହି ମୁହିଁ
ଜୀବନ ଜଞ୍ଜାଳେ ହେଲି ଋଣୀ
କେମିତି ଶୁଝିବି ଭାବିତ ପାରୁନି
ଜୀବନ ଯାଉଛି ସରି ।

ଯାହାତ ଚିନ୍ତଇ ଯାହାତ ଭାବଇ
ସବୁରି ଜଣେ ଗୋସାଇଁ
ଡ଼ାକି ଡ଼ାକି ମୁଁ ଥକିତ ଗଲିଣି
ମନତ ବୁଝିଲା ନାହିଁ ।
ମାଗିଅଛି କେତେ କାହା ପାଇଁ
ସବୁତ ଦେଇଛ ଭରି
ଆନନ୍ଦରେ ଗଡ଼ିଯାଏ ତୋ' ବେଢ଼ାରେ
ଦୁଃଖ କଷ୍ଟକୁ ପାଶୋରି ।
ସବୁରି ମନରେ ମନ୍ଦିର ରହିଛି
ସେ ଆତ୍ମାରୂପି ଠାକୁର,
ପୂଜା ଉପାସନା ଜାଣି ନାହିଁ କିଛି
କରିନାହିଁ ଉପଚାର ।

ପ୍ଲଟ ନଂ–୪୩/୧୨୫୫
କପିଳ ପ୍ରସାଦ, ଭୁବନେଶ୍ୱର–୨

# ଚେତନାର ପଥ

ନିରୁପମା କର

ଏ ଦେହ ରଥରେ ତୁମେ ହିଁ ତ ରଥୀ
ଗଢ଼େ ଜୀବନର ରଥ,
ସୁଖରେ ଦୁଃଖରେ ଭରସାର ବନ୍ଧ
ତୁମେ ପ୍ରଭୁ ଜଗନ୍ନାଥ ।
ଫୁଲରେ, କଣ୍ଟାରେ ତୁମେ ଦିଅ ଦେଖା,
ଭିତର, ବାହାର ସବୁଲାଗେ ଏକା,
ଶୟନରେ ତୁମେ, ଜାଗରଣେ ତୁମେ
ଏକା ମୋ, ଜୀବନ ବ୍ରତ
ତୁମ ପ୍ରେମେ ମଜ୍ଜି, ଆଖିଦେଲେ ବୁଜି
ଜୀବନ ଲାଗେ ପୁଷ୍ପିତ ।

ହୃଦୟକୁ ମୋର କରେ ଆମୋଦିତ
ତୁମେ ପ୍ରେମସିନ୍ଧୁ ରସ,
ମନମନ୍ଦିରର ଦେବତା ହେ ମୋର
ଚିନ୍ତା ଚେତନାର ପଥ ।
ମାଧବହେ, ତୁମେ ବାନ୍ଧବ ବେଭାରେ
ମନ୍ଦିରୁ ଆସ ବାହାରି ।
ଦେହ ସାଥେ ଦେହୀ ହୋଇ କୋଳାକୋଳି
ନବରସ ପଡ଼େ ଝରି,
ଭାବ ସମୁଦ୍ରର ଉଚ୍ଛୁଳା ସୁଅରେ
ଗଡ଼ିଚାଲେ ନନ୍ଦିଘୋଷ ।
ହୃଦସିନ୍ଧୁକେ ମୋ' ନାହିଁ ଟଙ୍କା ସୁନା
ଲୁଚାଇବି ସେଠି ତୁମକୁ ମୁଁ ସିନା

ପୂର୍ବକଚ୍ଛ, ମଧ୍ୟକଚ୍ଛ, ସାଲେପୁର, କଟକ



# କୁହ ତୁମେ ଜଗନ୍ନାଥ !

**ସ୍ନେହଲତା ପୃଷ୍ଟି**

ଜୀବନ ସରିନି କେମିତି ଗାଇବି
ଜୀବନର ଶେଷ ଗୀତ
ମାଗିଥିଲି ଯାହା ଏଯାଏଁ ପାଇନି
କେମିତି କୁହ ମୁଁ
ଫେରାଇ ନେବି ମୋ ହାତ
କୁହ କୁହ ତୁମେ ଜଗନ୍ନାଥ ।

ଭାବିଥିଲି ମୁଁ ଦୁଃଖ ସବୁ ମୋର
ତୁମ ଆଗେ ଦେବି କହି
କହିବା ଆଗରୁ ଲୁହ କହିଦେଲା
ଆଉ କିଛି ଲୋଡା ନାହିଁ ।



ରାତି ପାହି ନାହିଁ କେମିତି ଚାଲିବି
ଧରି ସକାଳର ହାତ
କୁହ ତୁମେ ଜଗନ୍ନାଥ ।

ମାଗିବା ଆଗରୁ ଯାଚିଦିଅ ବୋଲି
ଜାଣିଥିଲି ମହାବାହୁ
ମୁହଁ ଖୋଲି ପୁଣି ମାଗିବା ପରେ ବି
କୁହ କେତେ ଡେରି ଆଉ
ସପନ ସରିନି ନିଦକୁ କେମିତି
କହିବି ଭୁଲିଯା ବାଟ
କୁହ ତୁମେ ଜଗନ୍ନାଥ ।

ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଜଗନ୍ନାଥ ଶରଣ

**କିଶୋର ଚନ୍ଦ୍ର ଦାଶ**

ଶ୍ରୀକ୍ଷେତ୍ରେ ସୁନ୍ଦର ଶିରି ମନ୍ଦିରଲୋ ମନ୍ଦିରେ ଚକାନୟନ
ଶ୍ରୀମୁଖେ ଚନ୍ଦନ ହୀରାର ରତନ ଶ୍ରୀଅଙ୍ଗେ ପାଟ ବସନ
ଶ୍ରୀରଙ୍ଗ ଅଧର ଦିଶେ ମନୋହର ବାସେ ଗଜମୋତି ପାନ
ନବରତ୍ନ ହାର ଗଳାରେ ସୁନ୍ଦର ସୁନ୍ଦର କଳା ବଦନ
କଟିତଟେ ଝୁମ୍ପା ସୁନ୍ଦର ପଇତା ମଧୁର ବଇଁଶୀ ସ୍ୱନ
କି ସୁନ୍ଦର ଦିଶେ ମୟୂର ଚନ୍ଦ୍ରିକା ମୋହି ନିଏ ଭକ୍ତ ମନ
ରତନ ପଲଙ୍କ ଦେବଦାସୀ ନୃତ୍ୟ ଶୋଭା ରତ୍ନସିଂହାସନ
ଶଙ୍ଖ ଚକ୍ର ଗଦା ପଦ୍ମୁଅଁ ସୁନ୍ଦର ଚିତା ଦିଶେ ଶୋଭାବନ
ବାରମାସେ ତେର ଯାତରା ତୁମର କଳନା ନାହିଁ ସୁବର୍ଣ୍ଣ
ଦଶ ଅବତାର ଅତି ମନୋହର ନାନା ବେଶ ଶୋଭାବନ
ନାନା ରୂପ ନେଇ ଆସନ୍ତି ଓଲ୍ଲାଇ ସ୍ୱର୍ଗରୁ ଦେବତାଗଣ
ଭକ୍ତ ମୁନି ଋଷି ଶ୍ରୀମନ୍ଦିର ଆସି କରନ୍ତି ତବ ଦର୍ଶନ
ମୁହିଁ ଦୁଃଖୀଜନ ହେ ଦୁଃଖ ଭଞ୍ଜନ କୋଟି ପ୍ରଣାମ ମୋ ଘେନ
ତୁମ ଚରଣରେ ଶରଣ ରଖ ହେ ନମୋ ନମଃ ନାରାୟଣ ।

ଡାଇରୀ ଅଧିକ୍ଷକ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର